# ଭାରତ ଇତିହାସ

କୋକା ଆନ୍ତୋନଭା, ଗ୍ରିଗୋରି ବୋନ୍‌ଗାର୍ଦ-ଲେଭିନ୍,
ଗ୍ରିଗୋରି କୋଟୋଭସ୍କି

## ଦୁଇ ଖଣ୍ଡ ବିଶିଷ୍ଟ
## ୨ୟ ଖଣ୍ଡ



ପ୍ରଗତି ପ୍ରକାଶନ
ମସ୍କୋ

ଅନୁବାଦ — ବୈଷ୍ଣବ ଚରଣ ପରିଡ଼ା

ମୁଖ୍ୟ ପରିବେଷକ :
ନବଯୁଗ ଗ୍ରନ୍ଥାଳୟ,
ବକ୍ସିବଜାର ରୋଡ଼,
କଟକ-୧

**К. А. Антонова, Г. М. Бонгард-Левин, К. К. Котовский**

ИСТОРИЯ ИНДИИ

книга вторая

*на языке ория*

**K. Antonova, G. Bongard-Levin, G. Kotovsky**

A HISTORY OF INDIA

In Two Books

Book 2

*in Oriya*



ସୋଭିଏତ ୟୁନିଅନ୍‌ରେ ମୁଦ୍ରିତ

A $\frac{0506000000-686}{014(01)-85}$ 328—85

# ସୂଚୀପତ୍ର

## ଆଧୁନିକ ଭାରତ

### ବ୍ରିଟିଶ୍‌ମାନଙ୍କ ଭାରତ ଅଧିକାର (ଅଷ୍ଟାଦଶ ଶତାବ୍ଦୀ)



### ସାମ୍ରାଜ୍ୟବାଦର ଜନୁଲଗ୍ରେ ଭାରତବର୍ଷ (୧୮୬୦-୧୮୯୭)

### ଯୁଦ୍ଧପୂର୍ବ ସାମ୍ରାଜ୍ୟବାଦୀ କାଳ ତଥା ଏସିଆର ନବଜାଗରଣ ପର୍ଯ୍ୟାୟରେ ଭାରତବର୍ଷ
(୧୮୯୭-୧୯୧୭)



### ସାଂପ୍ରତିକ ଭାରତ

### ପ୍ରଥମ ବୈପ୍ଳବିକ ଆଘାତ ଏବଂ ଭାରତରେ ରାଜନୈତିକ ଗଣ ସଂଗଠନର ଉନ୍ମେଷ
(୧୯୧୮-୧୯୨୭)



### ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନର ବୃଦ୍ଧି ଓ ମିଳିତ ସାମ୍ମୁଖ୍ୟ ଗଠନ ପାଇଁ ସଂଗ୍ରାମ
(୧୯୨୮-୧୯୩୯)



### ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଭାରତବର୍ଷ



### ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟ (୧୯୪୫-୧୯୪୭)

## ଭାରତୀୟ ଡୋମିନିଅନ



## ଭାରତୀୟ ପ୍ରଜାତନ୍ତ୍ର — ସ୍ୱାଧୀନତାର ଭିତ୍ତି ପ୍ରତିଷ୍ଠା (୧୯୫୦-୧୯୬୪)



## "ନେହରୁ-ଧାରା" ଅନୁସରଣ ପାଇଁ ସଂଗ୍ରାମ (୧୯୬୪-୧୯୭୨)



## ସତୁରି ଦଶକର ମଧ୍ୟ ଭାଗ ଓ ଶେଷାର୍ଦ୍ଧରେ ଭାରତର ଆଭ୍ୟନ୍ତରୀଣ ବିକାଶରେ ଗଭୀର ଦ୍ୱନ୍ଦ୍ୱ (୧୯୭୩-୧୯୭୯)

# ବ୍ରିଟିଶ୍‌ମାନଙ୍କ ଭାରତ ଅଧିକାର
# (ଅଷ୍ଟାଦଶ ଶତାବ୍ଦୀ)

## ମୋଗଲ ସାମ୍ରାଜ୍ୟର ପତନ

ଅଷ୍ଟାଦଶ ଶତାବ୍ଦୀରେ ମୋଗଲ ସାମ୍ରାଜ୍ୟର ପତନ ଘଟିବା ସାଥେ ସାଥେ ଭାରତ ସ୍ୱାଧୀନତା ହରାଇଲା । ଭାରତୀୟ ରାଜ୍ୟସମୂହର ଏବଂ ସ୍ୱଦେଶର ପୃଷ୍ଠପୋଷକତା ଲାଭ କରି ଭାରତରେ ବ୍ୟବସାୟରତ ୟୁରୋପୀୟ ବାଣିଜ୍ୟ ସଂସ୍ଥାଗୁଡ଼ିକ ମଧ୍ୟରେ ଶକ୍ତିର ଭାରସାମ୍ୟତା ୟୁରୋପୀୟମାନଙ୍କ ଅନୁକୂଳରେ ନିରନ୍ତର ପରିବର୍ତ୍ତିତ ହେଉଥିଲା । ଷୋଡ଼ଶ ଶତାବ୍ଦୀରେ ଭାରତରେ ୟୁରୋପୀୟମାନଙ୍କର ଥିଲା ଅଳ୍ପ କେତୋଟି ଶକ୍ତ ଘାଟି ଏବଂ ମାଲଗୋଦାମ । ସପ୍ତଦଶ ଶତାବ୍ଦୀରେ ସେସବୁ ସ୍ଥାନରେ ଗଢ଼ି ଉଠିଲା ଅନେକ ବ୍ୟବସାୟ କେନ୍ଦ୍ର ଏବଂ ବସତି । ଅଷ୍ଟାଦଶ ଶତାବ୍ଦୀରେ ସେମାନେ ଭାରତୀୟ ରାଜ୍ୟଗୁଡ଼ିକୁ ଦଖଲ କରିବାରେ ଲାଗି ପଡ଼ିଲେ । ପ୍ରସଙ୍ଗତଃ ସ୍ମରଣ କରିବାର କଥା ଯେ, ୟୁରୋପୀୟମାନେ ବଳ ପ୍ରୟୋଗ କରି ବା ଭେଟି ଦେଇ ଯେଉଁ ମୋଗଲମାନଙ୍କ ଠାରୁ ଏକଦା ବ୍ୟବସାୟ ପାଇଁ ସୁବିଧା ସୁଯୋଗ ଲାଭ କରିଥିଲେ, ଅଷ୍ଟାଦଶ ଶତାବ୍ଦୀରେ ସେମାନେ ସେହି ମୋଗଲମାନଙ୍କ ସହିତ ଲଢ଼େଇ କରି ନଥିଲେ । ନିଜ ନିଜ ମଧ୍ୟରେ ଦ୍ୱନ୍ଦ୍ୱରତ ଭାରତୀୟ ରାଜ୍ୟଗୁଡ଼ିକ ସେତେବେଳେ ପରସ୍ପର ବିରୁଦ୍ଧରେ ୟୁରୋପୀୟମାନଙ୍କର ସାହାଯ୍ୟ ପ୍ରାର୍ଥୀ ହେଉଥିଲେ ଏବଂ ଏହି ଭାବେ ୟୁରୋପୀୟମାନେ ସଂଗ୍ରାମରେ ଅଂଶୀଦାର ହେବାର ସୁଯୋଗ ପାଇଥିଲେ ।

ଆଓରଙ୍ଗଜେବଙ୍କ ଶାସନକାଳରେ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହୋଇଥିଲା ଏବଂ ତାଙ୍କ ମୃତ୍ୟୁ ପରେ ଏହା ଆଉରି ତ୍ୱରାନ୍ୱିତ ହେବାକୁ ଲାଗିଲା । ସିଂହାସନର ଉତ୍ତରାଧିକାର ପାଇଁ ତାଙ୍କ ତିନି ପୁତ୍ରଙ୍କ ମଧ୍ୟରେ ଆରମ୍ଭ ହୋଇଗଲା ଯୁଦ୍ଧ ଏବଂ ଜ୍ୟେଷ୍ଠ ପୁତ୍ର ମୁଆଜ୍ଜାମଙ୍କ ବିଜୟ ଦ୍ୱାରା ଏହାର ସମାପ୍ତି ଘଟିଥିଲା । ମୁଆଜ୍ଜାମ ବାହାଦୂର ଶାହ୍ (୧୭୦୭-୧୭୧୨) ନାମ ଧାରଣ କରି ୧୭୦୭ ମସିହାରେ ଦିଲ୍ଲୀ ସିଂହାସନ ଆରୋହଣ କଲେ । ଏହି ବୟସ୍କ ଅସ୍ଥିରମତି ଶାସକଙ୍କର ଏକମାତ୍ର ପ୍ରୟାସ ଥିଲା ଶିଖମାନଙ୍କୁ ଦମନ କରିବା । ଶିଖମାନେ ଗୁରୁ ଗୋବିନ୍ଦଙ୍କ ହତ୍ୟା ପରେ ବାନ୍ଦାଙ୍କ ନେତୃତ୍ୱରେ ଶକ୍ତିଶାଳୀ ହୋଇ ଉଠିଥିଲେ । ଏହି ଶିଖ ନେତା ଥିଲେ ଖୁବ୍ ଦୃଢ଼ମନା ଏବଂ ସେ ବହୁ "ନୀଚ ଶ୍ରେଣୀର ଅସନ୍ତୁଷ୍ଟ ଭାରତୀୟମାନଙ୍କୁ" (ତତ୍‌କାଳୀନ ଐତିହାସିକଙ୍କ ଭାଷାରେ) ନିଜ ଲକ୍ଷ୍ୟର ଅନୁବର୍ତ୍ତୀ କରି ସିର୍‌ହିନ୍ଦ୍ ଦଖଲ କରି ନେଲେ । ତା'ପରେ ସତର ହଜାର ସୈନ୍ୟଙ୍କୁ ନେଇ ସେ ଶାହାରାନ୍‌ପୁର ଜିଲାଟି ହସ୍ତଗତ କଲା ପରେ ଲାହୋର ଅବରୋଧ କରି ଅସଫଳ ହୋଇଥିଲେ । ବାହାଦୂର ଶାହ୍ ନିଜେ ବାନ୍ଦାଙ୍କ ବିରୁଦ୍ଧରେ ସୈନ୍ୟବାହିନୀ ପରିଚାଳନା କରିଥିଲେ ଏବଂ ୧୭୧୧ ଖ୍ରୀଷ୍ଟାବ୍ଦରେ ଶିଖମାନଙ୍କ ପ୍ରଧାନ ଘାଟି ସିର୍‌ହିନ୍ଦ୍‌ର ପତନ ଘଟିଥିଲା । ମୋଗଲ ବାହିନୀ ଚାପରେ ଶିଖମାନେ ହିମାଳୟର ପାଦଦେଶ ପର୍ଯ୍ୟନ୍ତ ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ ହୋଇଥିଲେ ।

ବାହାଦୂର ଶାହଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଗଲା । ଏଥର ସବୁଠାରୁ ଅଯୋଗ୍ୟ ଜାହାନ୍ଦର ଶାହ୍ (୧୭୧୨-୧୭୧୩) ଜଣେକ ସୁଦକ୍ଷ ପରାମର୍ଶଦାତାଙ୍କ ସାହାଯ୍ୟରେ ସିଂହାସନ ଲାଭ କଲେ, କିନ୍ତୁ, ଏହାର କେଇ ମାସ ମଧ୍ୟରେ ସେ ତାଙ୍କ ଭ୍ରାତୃସୁତ୍ର ଫାରୁକ୍ ଶିୟାରଙ୍କ (୧୭୧୩-୧୭୧୯) ଦ୍ୱାରା କ୍ଷମତାଚ୍ୟୁତ ହୋଇ କାରାଗାର ମଧ୍ୟରେ ନିହତ ହେଲେ । କହିବାକୁ ଗଲେ, ସେତେବେଳେ ଫାରୁକ୍ ଶିୟାରଙ୍କର ପରାମର୍ଶଦାତାମାନେ ଥିଲେ ଦେଶର ପ୍ରକୃତ ଶାସକ । ଏମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଆକବରଙ୍କ ଅମଳରୁ ଯୋଦ୍ଧା ହିସାବରେ ଖ୍ୟାତ ବାର୍‌ହାର ସୈୟଦ ସଂପ୍ରଦାୟର ଭ୍ରାତୃଦ୍ୱୟ ।

ଇତିମଧ୍ୟରେ ବାନ୍ଦା ପଞ୍ଜାବରେ ପୁଣି ଥରେ ସାମରିକ ଅଭିଯାନ ଆରମ୍ଭ କରି ଦେଲେ । କିନ୍ତୁ, କମାଣ ଅଭାବରୁ ସେ ଲାହୋର ଦଖଲ କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ଶିଖମାନଙ୍କ ବିରୁଦ୍ଧରେ ଫାରୁକ୍ ଶିୟାର ସୈନ୍ୟ ପ୍ରେରଣ କରିଥିଲେ ଏବଂ ସେମାନେ ଗୁରଦାସପୁର ଦୁର୍ଗ ଅବରୋଧ କଲେ । ଅବରୁଦ୍ଧ ଶିଖ୍‌ମାନେ କ୍ଷୁଧାରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ମୋଗଲ ସୈନ୍ୟମାନେ ଦୁର୍ଗ ମଧ୍ୟରେ ପ୍ରବେଶ କରି ବ୍ୟାପକ ହତ୍ୟାଲୀଳା ଆରମ୍ଭ କରି ଦେଲେ । ବାନ୍ଦା ଓ ତାଙ୍କ ସହଯୋଗୀମାନଙ୍କୁ ବନ୍ଦୀ ଅବସ୍ଥାରେ ଦିଲ୍ଲୀକୁ ଅଣାଯାଇଥିଲା ଏବଂ ଦୀର୍ଘ ନିର୍ଯାତନା ଦେବା ପରେ ସେମାନଙ୍କୁ ହତ୍ୟା କରାଗଲା ।

ଫାରୁକ୍ ଶିୟାର ଏଥର ସୈୟଦ ଭାଇ ଦ୍ୱୟଙ୍କୁ ଅପସାରଣ କରିବା ପାଇଁ ଚେଷ୍ଟା କଲେ, କିନ୍ତୁ ନିଜେ ପରାଜିତ ହେଲେ । ଏହା ପରେ ବାହାଦୂର ଶାହ୍‌ଙ୍କ ଦୁଇ ପୌତ୍ର କିଛି କାଳ ପାଇଁ ଦିଲ୍ଲୀ ସିଂହାସନରେ କ୍ରମାନ୍ୱୟରେ ବସିଲେ । ଅବଶେଷରେ, ତୃତୀୟ ପୌତ୍ର ଦରବାରର ପରିଷଦବର୍ଗଙ୍କ ସହିତ ଷଡ଼ଯନ୍ତ୍ର କରିଆରେ ସୈୟଦ ଭାଇମାନଙ୍କୁ ହଟେଇ ମହମ୍ମଦ ଶାହ୍ (୧୭୧୯-୧୭୪୮) ନାମ ଧାରଣ କରି ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ । କିନ୍ତୁ ବିଳାସ ବ୍ୟତୀତ ତାଙ୍କର ଅନ୍ୟ କୌଣସି ଲକ୍ଷ୍ୟ ନଥିଲା । ମହମ୍ମଦ ଶାହ୍‌ଙ୍କ ବିଳାସବହୁଳ ରାଜସଭା ଓ ସୈନ୍ୟବାହିନୀ ପାଇଁ ବିପୁଳ ଅର୍ଥ ବ୍ୟୟ ହେଉଥିଲା । କୃଷକମାନଙ୍କ ଉପରେ ସମ୍ଭାବ୍ୟ ସର୍ବାଧିକ ମାତ୍ରାରେ ଶୋଷଣ ଚାଲିଥିଲା ଏବଂ ଖଜଣା ଆଦାୟର ପ୍ରକୃତ କୌଣସି ନିୟମକାନୁନ୍ ନଥିଲା । ଫଳରେ, ବହୁ କୃଷକ ଖଜଣା ଦେବାରୁ ରକ୍ଷା ପାଇବା ପାଇଁ ଘରବାଡ଼ି ଛାଡ଼ି ସୈନ୍ୟ ବାହିନୀରେ ଯୋଗ ଦେଉଥିଲେ । କିମ୍ବା ନିଜେ ସେନାଦଳ ଗଠନ କରି ଚତୁର୍ପାର୍ଶ୍ୱସ୍ଥ ଗାଁମାନଙ୍କରେ ଲୁଟପାଟ କରୁଥିଲେ, ଏପରିକି ଦିଲ୍ଲୀ ପର୍ଯ୍ୟନ୍ତ ଆକ୍ରମଣ କରୁଥିଲେ । ଅର୍ଥନୀତି ଭାଙ୍ଗି ପଡ଼ିଲା ଭଳି ଅବସ୍ଥାକୁ ଆସି ଯାଇଥିଲା । ବାରମ୍ବାର ଉତ୍ତରାଧିକାରୀ ପରିବର୍ତ୍ତନ ହେବା ଦ୍ୱାରା ସାମ୍ରାଜ୍ୟ ଗୋଟିକ ପରେ ଗୋଟିଏ ଅଞ୍ଚଳ ହରେଇବାକୁ ଲାଗିଲା ।

ଆଓରଙ୍ଗଜେବଙ୍କ କର୍ତ୍ତୃକ ନିଯୁକ୍ତ ବଙ୍ଗଳାର ଗଭର୍ଣ୍ଣର ମୁର୍ଶିଦ୍ କୁଲି ଖାଁ ୧୭୧୩ ଖ୍ରୀଷ୍ଟାବ୍ଦରେ ମୋଗଲମାନଙ୍କ ଦ୍ୱାରା ପ୍ରେରିତ ତାଙ୍କର ସରକାରୀ ଉତ୍ତରାଧିକାରୀଙ୍କୁ ପ୍ରଦେଶ ମଧ୍ୟରୁ ତଡ଼ି ଦେଲେ । ଦିଲ୍ଲୀକୁ କର ଦେବା ମଧ୍ୟ ସେ ବନ୍ଦ କରି ଦେଲେ ଏବଂ ମୁର୍ଶିଦାବାଦ ସହରରେ ଏକ ନୂଆ ରାଜଧାନୀ ସ୍ଥାପନ କଲେ । ୧୭୧୪ରୁ ୧୭୧୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ବିହାର ଏବଂ ଓଡ଼ିଶାକୁ ମଧ୍ୟ ବଙ୍ଗଳା ସହିତ ଯୁକ୍ତ କରି ନେଲେ ।

ଏହି ନୂତନ ବଙ୍ଗ ଦେଶ ଆନୁଷ୍ଠାନିକ ଭାବେ ମୋଗଲ ଶାସକମାନଙ୍କର ଅଧୀନତା ମାନି

ନେଇଥିଲେ ବି କାର୍ଯ୍ୟତଃ ଏହା ଥିଲା ସଂପୂର୍ଣ୍ଣ ସ୍ୱାଧୀନ । ଦୃଷ୍ଟାନ୍ତ ସ୍ୱରୂପ, କୁହାଯାଇ ପାରେ, ୧୭୧୭ ଖ୍ରୀଷ୍ଟାବ୍ଦରେ ଫାରୁକ୍ ଶିୟାରଙ୍କ କର୍ତ୍ତୃକ ଇଂରେଜ ବଣିକମାନଙ୍କୁ ପ୍ରଦତ୍ତ ବାଣିଜ୍ୟ ସୁବିଧା ସୁଯୋଗରାଜିକୁ ସେମାନେ ବଙ୍ଗ ଦେଶରେ କାର୍ଯ୍ୟକାରୀ କରି ପାରି ନଥିଲେ । ଦାକ୍ଷିଣାତ୍ୟର ମୋଗଲ ଗଭର୍ଣ୍ଣର ଆସଫ୍ ଜା ମଧ୍ୟ ମୋଗଲ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇଯାଇ ହାୟଦରାବାଦ ନାମରେ ଏକ ନୂତନ ରାଜ୍ୟ ଗଠନ କଲେ । ଗୋଲ୍‌କୋଣ୍ଡା ଦୁର୍ଗର ଅନତି ଦୂରରେ ହାୟଦରାବାଦ ନାମକ ଏକ ସ୍ଥାନରେ ଏହାର ନୂତନ ରାଜଧାନୀ ସ୍ଥାପିତ ହୋଇଥିଲା । ଆସଫ୍ ଜା ଓ ହାୟଦରାବାଦ ସିଂହାସନର ନିଜାମ ଉପାଧିଧାରୀ ତାଙ୍କ ଉତ୍ତରାଧିକାରୀମାନେ ଦକ୍ଷିଣ ଭାରତ ଅଧିକାର ପାଇଁ ମରହଟ୍ଟାମାନଙ୍କ ସହିତ ଯୁଦ୍ଧରେ ଲିପ୍ତ ହେଲେ । ଶେଷକୁ ୧୭୩୯ ଖ୍ରୀଷ୍ଟାବ୍ଦରେ ଅଯୋଧ୍ୟା ମଧ୍ୟ ମୋଗଲମାନଙ୍କ ହାତରୁ ମୁକ୍ତ ହୋଇଗଲା । ଲକ୍ଷ୍ନୌରେ ରାଜଧାନୀ ସ୍ଥାପନ କରି ଏହା ମଧ୍ୟ ଏକ ସ୍ୱାଧୀନ ରାଜ୍ୟରେ ପରିଣତ ହେଲା । ଏହା ପରେ ଦିଲ୍ଲୀର ଉତ୍ତର-ପୂର୍ବ ଅଞ୍ଚଳର ଉପଜାତି ରୋହିଲା-ଆଫ୍‌ଗାନମାନଙ୍କୁ ହଟେଇ ଅଯୋଧ୍ୟା ଚେଷ୍ଟା କଲା ନିଜର ସୀମା ବିସ୍ତାର କରିବାକୁ । ସେତେବେଳକୁ ମୋଗଲ ସାମ୍ରାଜ୍ୟ ଆଗ୍ରା ଆଉ ଦିଲ୍ଲୀ ଅଞ୍ଚଳ ମଧ୍ୟରେ ସୀମିତ ହୋଇ ପଡ଼ିଥିଲା ।

ଏହି ସମୟରେ ମରହଟ୍ଟାମାନେ ହିଁ ସାରା ଭାରତ ଉପରେ ନିଜ ଅଧିକାର ଦାବି କଲା ଭଳି ଅବସ୍ଥାକୁ ଆସି ଯାଇଥିଲେ । ମୋଗଲ ସିଂହାସନର ବିଭିନ୍ନ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଚାଲିଥିଲା ବେଳେ ମରହଟ୍ଟାମାନେ କେବଳ ପଶ୍ଚିମ ଭାରତରେ ନିଜର ଅବସ୍ଥାନକୁ ଦୃଢ଼ କରି ନେଇ ନଥିଲେ, ମଧ୍ୟ ଭାରତକୁ ମଧ୍ୟ ସେମାନଙ୍କ ସୈନ୍ୟବାହିନୀ ଅଗ୍ରସର ହୋଇଥିଲା । ସେଠାରେ ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ହେଲା ଭଳି କୌଣସି ସଂଗଠିତ ସେନାବାହିନୀ ନଥିବାରୁ ନିଜର ପ୍ରାପ୍ୟ ଚୌଠ ଓ ସରଦେଶମୁଖୀ ଆଦାୟ ବାହାନାରେ ସେମାନେ ସହର ଏବଂ ବସତି ଆକ୍ରମଣ କରୁଥିଲେ । ଦିଲ୍ଲୀରୁ ମୁକ୍ତିପ୍ରାପ୍ତ ଶମ୍ଭାଜୀଙ୍କ ପୁତ୍ର ଶାହୁ ଓ ଶାହୁଙ୍କ ଅନୁପସ୍ଥିତିରେ ତାଙ୍କର ସ୍ଥଳବର୍ତ୍ତୀ ଶାସନରତ ରାଜାରାମଙ୍କ ବିଧବା ପତ୍ନୀ ତାରାବାଈଙ୍କ ମଧ୍ୟରେ ସେତେବେଳେ ମହାରାଷ୍ଟ୍ରର ସିଂହାସନ ଘେନି ଦ୍ୱନ୍ଦ୍ୱ ଦେଖାଦେଲା ।

ଇତିମଧ୍ୟରେ ପେଶବା (ପ୍ରଧାନମନ୍ତ୍ରୀ) ବାଲାଜୀ ବିଶ୍ୱନାଥ (୧୭୧୩-୧୭୨୦) ଯଥେଷ୍ଟ ପ୍ରଭାବଶାଳୀ ହୋଇ ଉଠିଥିଲେ । ସେ ବସ୍ତୁତଃ ସମସ୍ତ କ୍ଷମତାକୁ ନିଜ ହାତରେ କେନ୍ଦ୍ରୀଭୂତ କରି ମହାରାଷ୍ଟ୍ରରେ ପେଶବା ବଂଶ ସ୍ଥାପନ କରିଥିଲେ । ଶିବାଜୀଙ୍କ ବଂଶର ସଦସ୍ୟମାନେ ସେତେବେଳେ ରାଜା ହିସାବରେ ଗଣ୍ୟ ହେଲେ ମଧ୍ୟ ନିଜର ବାସସ୍ଥାନ କୋଲ୍ହାପୁର ସହର ଛାଡ଼ି ସେମାନେ ଅନ୍ୟ କେଉଁଠି କି ଯାଇ ପାରୁ ନଥିଲେ । ସୈୟଦ ଭାଇମାନଙ୍କୁ ସମର୍ଥନ ପାଇଁ ବାଲାଜୀ ଦକ୍ଷିଣ ମୋଗଲ ସାମ୍ରାଜ୍ୟର ଛଅଟି ସୁବାରୁ (ପ୍ରଦେଶ) ଚୌଠ ଓ ସରଦେଶମୁଖୀ ଆଦାୟ କରିବାର ଅଧିକାର ଲାଭ କରିଥିଲେ । ଏହା ଫଳରେ ମରହଟ୍ଟାମାନଙ୍କର ଲୁଣ୍ଠନ ଆଇନ୍‌ସମ୍ମତ ହୋଇ ଉଠିଥିଲା । ଯେତେ ଅଧିକ ସଂଗ୍ରହ କରିବା ସମ୍ଭବ, ସେତେ ସଂଗ୍ରହ କରିବା ପାଇଁ ଏବଂ ଧନୀମାନଙ୍କ ଗୋପନ ଧନ ଭଣ୍ଡାରକୁ ଅଧିକାର କରିବା ପାଇଁ ସେମାନେ ସେମାନଙ୍କ କରସଂଗ୍ରହକାରୀ ଓ ସେନାବାହିନୀକୁ ଅଧିକାର ଦେଇ ସେସବୁ ପ୍ରଦେଶକୁ ପଠାଉଥିଲେ । ମରହଟ୍ଟାମାନଙ୍କ ଆଗମନ ସଂବାଦ ପାଇଲା କ୍ଷଣି ଏହିସବୁ ପ୍ରଦେଶର ବାସିନ୍ଦାମାନେ ଉଦ୍‌ବେଗରେ ଅସ୍ଥିର ହୋଇ ପଡ଼ୁଥିଲେ । ଭୟରେ ସେମାନେ ଘର ଦ୍ୱାର ଛାଡ଼ି ପଳାଇ ଯାଉଥିଲେ ।

ଅଷ୍ଟାଦଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ମଧ୍ୟ ଭାରତର ବିଶାଳ ଅଞ୍ଚଳ ମରହଟ୍ଟାମାନଙ୍କ ଅଧିକାରକୁ ଆସି ଯାଇଥିଲା । ତା' ଫଳରେ ସେମାନଙ୍କର ଗ୍ରରିଟି ବଡ଼ ମରହଟା ରାଜ୍ୟ ଗଢ଼ି ଉଠିଥିଲା –ନାଗପୁରରେ ଭୋଁସଲା, ଗୋଆଲିଅରରେ ସିନ୍ଧିଆ, ଇନ୍ଦୋରରେ ହୋଲକାର ଏବଂ ବରୋଦାରେ ଗାୟକୋଆଡ଼ ରାଜବଂଶ ଯଥାକ୍ରମେ ଏସବୁକୁ ଶାସନ କରୁଥିଲେ । ଏସବୁ ରାଜ୍ୟ ପୁନାରେ ଅବସ୍ଥିତ ପେଶବାମାନଙ୍କ ଶାସନ କେନ୍ଦ୍ର କିଛି ପରିମାଣରେ ଅଧୀନସ୍ଥ ଥିଲା । ଅବିଳମ୍ବେ ବିଭିନ୍ନ ଜାତି ଓ ଉପଜାତିମାନଙ୍କର ମିଶ୍ର ସମାହାର ମଧ୍ୟରେ ମରାଠାମାନଙ୍କର ଏହି ରାଜ୍ୟସଂଘରେ ମରହଟ୍ଟାମାନେ ଏକ ସଂଖ୍ୟାଲଘୁ ଶାସକରେ ପର୍ଯ୍ୟବସିତ ହୋଇ ପଡ଼ିଲେ । ଏହା ପରେ ମରହଟା ସେନାବାହିନୀ ଆଦର୍ଶହୀନ ଓ ଜାତୀୟ ଚେତନାହୀନ ଏକ ବିଚିତ୍ର ଜନସଂଘରେ ପରିଣତ ହୋଇଗଲା । ଏହିସବୁ ରାଜ୍ୟରେ ବହୁ ରକମର କରଭାରରେ ଜର୍ଜରିତ କୃଷକମାନଙ୍କର ଅବସ୍ଥା ଖୁବ୍ ଶୋଚନୀୟ ଥିଲା । ବସ୍ତୁତଃ, ମରହଟା ରାଜ୍ୟସଂଘ ଏକ ସାମନ୍ତବାଦୀ ସାମ୍ରାଜ୍ୟରେ ପରିଣତ ହେଲା । ମୋଗଲ ସାମ୍ରାଜ୍ୟ ଉନ୍ନତିର ଶିଖରରେ ପହଞ୍ଚିଲା ବେଳେ ଯେପରି ଥିଲା, ତା'ଠାରୁ ଏହାର ସହଜ ଭାବେ ପରିଲକ୍ଷିତ ପାର୍ଥକ୍ୟଟି ହେଲା, ଏହା ଥିଲା କିଛି ପରିମାଣରେ କମ୍ କେନ୍ଦ୍ରୀଭୂତ ।

ବାଲଜୀଙ୍କ ପୁତ୍ର ପ୍ରଥମ ବାଜୀ ରାଓ (୧୭୨୦-୧୭୪୦) ଉତ୍ତର ଦିଗ ପ୍ରତି ମରହଟ୍ଟାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ମରହଟ୍ଟାମାନେ ଦିଲ୍ଲୀ ଦଖଲ କରି ପାରିଲେ, ସମଗ୍ର ଭାରତ ତାଙ୍କ ହାତକୁ ଆସିଯିବ – ଏ ବିଷୟରେ ସେ ନିଃସନ୍ଦେହ ଥିଲେ । ସେ କହୁଥିଲେ, କୌଣସି ଏକ ଶୁଖିଲା ଗଛର ଗଣ୍ଡିରେ ଆଘାତ କଲେ, ତା'ର ଡାଳପତ୍ର ଆପଣାଛାଏଁ ଝରି ପଡ଼େ । କିନ୍ତୁ ଦକ୍ଷିଣରୁ ମରହଟାମାନେ ଦିଲ୍ଲୀ ଆଡ଼କୁ ଆଗେଇ ଗଲା ବେଳେ ୧୭୩୯ ମସିହାରେ ଉତ୍ତରରୁ ପାରସ୍ୟର ରାଜା ନାଦୀର ଶାହ୍‌ଙ୍କ ସୈନ୍ୟମାନେ ଭାରତ ଆକ୍ରମଣ କଲେ । ମୋଗଲ ସମ୍ରାଟ ମହମ୍ମଦ ଶାହ୍‌ଙ୍କର ହତାଶ ସୈନିକମାନେ ଏହି ଆକ୍ରମଣକୁ ରୋଧ କରିବାରେ ବ୍ୟର୍ଥ ହୋଇଥିଲେ । ନାଦୀର ଶାହ୍‌ଙ୍କ ସୈନ୍ୟମାନେ ବିନା ବାଧାରେ ଦିଲ୍ଲୀର ଉପକଣ୍ଠ ପର୍ଯ୍ୟନ୍ତ ଆସିଗଲା ପରେ ପାଣିପଥର ଅଦୂରରେ ଅବସ୍ଥିତ କର୍ଣ୍ଣାଲ ଠାରେ ଶେଷକୁ ମୋଗଲ ଏବଂ ପାରସୀମାନଙ୍କ ମଧ୍ୟରେ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । କିନ୍ତୁ ଯୁଦ୍ଧର ଫଳାଫଳ ନିଷ୍ପତ୍ତିମୂଳକ ନହେବାରୁ ନାଦୀର ଶାହ୍ ସୈନ୍ୟମାନଙ୍କୁ ସ୍ୱଦେଶକୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଠିକ୍ ସେଇ ମୁହୂର୍ତ୍ତରେ ମହମ୍ମଦ ଶାହ୍‌ଙ୍କ ଦୂତ ଶାନ୍ତି ପ୍ରସ୍ତାବ ନେଇ ତାଙ୍କ ପାଖରେ ଉପସ୍ଥିତ ହେଲା । ଏହା ପରେ ନାଦୀର ଶାହ୍ ଦୁଇ ମାସ କାଳ ଦିଲ୍ଲୀରେ ଅବସ୍ଥାନ କରିଥିଲେ, ବ୍ୟାପକ ହତ୍ୟାକାଣ୍ଡ ଘଟାଇ, ସିନ୍ଧୁ ନଦୀର ଉତ୍ତରରେ ଥିବା ମୋଗଲ ଏଲକା (ବର୍ତ୍ତମାନର ଆଫ୍‌ଗାନିସ୍ତାନ) ନିଜ ଦଖଲକୁ ନେବାର ପ୍ରତିଶ୍ରୁତି ଆଦାୟ କଲେ । ତା'ପରେ ମୋଗଲମାନଙ୍କର ପ୍ରଚୁର ଧନଦୌଲତ୍ ଓ ବିଜୟଭେଟି ଆଦାୟ କରି ସେ ଫେରି ଯାଇଥିଲେ ସ୍ୱଦେଶକୁ । ନାଦୀର ଶାହ୍‌ଙ୍କ ପ୍ରତ୍ୟାବର୍ତ୍ତନ ପରେ ବିଧ୍ୱସ୍ତ ଦିଲ୍ଲୀରେ ଲୁଣ୍ଠନକାରୀମାନଙ୍କର ରାଜତ୍ୱ ଚାଲିଲା, ବାସିନ୍ଦାମାନଙ୍କ ମଧ୍ୟରୁ ଅଧିକାଂଶ ପଳେଇ ଗଲେ ଏବଂ ସାମନ୍ତ ନେତାମାନେ ଅନ୍ୟ ଅଭିଜାତମାନଙ୍କ ଦରବାରରେ, ବିଶେଷତଃ, ଲକ୍ଷ୍ନୌରେ (ଅଯୋଧ୍ୟାର ରାଜଧାନୀ) ଆଶ୍ରୟ ଗ୍ରହଣ କଲେ ।

ଆଫ୍‌ଗାନମାନେ ବେଶି ଦିନ ପାରସୀମାନଙ୍କ ଅଧୀନରେ ରହି ନଥିଲେ । ୧୭୪୭ ଖ୍ରୀଷ୍ଟାବ୍ଦରେ ନାଦୀର ଶାହ୍ ନିହତ ହେଲା ପରେ ସେମାନେ ଆହ୍‌ମଦ ଶାହ୍ ଆବ୍‌ଦାଲୀଙ୍କ (ଦୁର୍‌ରାନୀ) ନେତୃତ୍ୱରେ ଏକ ସ୍ୱାଧୀନ ଆଫ୍‌ଗାନ ରାଜ୍ୟ ପ୍ରତିଷ୍ଠା କରିଥିଲେ ।

ଆହ୍ମଦ ଶାହ୍ କିନ୍ତୁ ନାଦୀର ଶାହ୍‌ଙ୍କ ସୈନ୍ୟମାନଙ୍କ ସହିତ ଦିଲ୍ଲୀକୁ ଆସିଥିଲେ । ସେଠାରେ ସେ ମୋଗଲମାନଙ୍କ ଦୁର୍ବଳତା ଟିକକ ବୁଝି ପାରି ସାରା ଭାରତ ଜୟ କରିବାକୁ ଅଭିଳାଷୀ ହୋଇଥିଲେ । ସେ ୧୭୪୮, ୧୭୫୦, ୧୭୫୨, ୧୭୫୬-୧୭୫୭ ଏବଂ ୧୭୫୮ରେ ପାଞ୍ଚ ଥର ଭାରତ ଆକ୍ରମଣ କରିଥିଲେ । ମୋଗଲମାନଙ୍କ ପରିବର୍ତ୍ତେ ମୁଖ୍ୟତଃ ସେ ଶିଖମାନଙ୍କ ପକ୍ଷରୁ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ଆଫ୍‌ଗାନିସ୍ତାନ ସହିତ ତାଙ୍କର ସରବରାହ ପଥଟିକୁ ବାରମ୍ବାର ଛିନ୍ନ କରି ଦେଇ ଶିଖ୍‌ମାନେ ତାଙ୍କୁ ସ୍ୱଦେଶକୁ ଫେରିଯିବା ପାଇଁ ବାଧ୍ୟ କରିଥିଲେ ।

ଇତିମଧ୍ୟରେ ପେଶବା ବାଳାଜୀ ବାଜୀ ରାଓଙ୍କ (୧୭୪୦-୧୭୬୧ ଖ୍ରୀଷ୍ଟାବ୍ଦରେ) ନେତୃତ୍ୱରେ ମରହଟ୍ଟାମାନେ ଉତ୍ତର ଦିଗକୁ ଅଗ୍ରସର ହୋଇଥିଲେ । ସେଠାରେ ସେମାନେ ଆହ୍ମଦ ଶାହ୍‌ଙ୍କ ସେନାବାହିନୀର ସମ୍ମୁଖୀନ ହେଲେ । ୧୭୬୧ ଖ୍ରୀଷ୍ଟାବ୍ଦରେ ଦୁଇ ପ୍ରତିପକ୍ଷଙ୍କ ମଧ୍ୟରେ ଭାରତ ଦଖଲର ମୂଳ ଲଢ଼ାଇଟି ଅନୁଷ୍ଠିତ ହୋଇଥିଲା ପାଣିପଥ ଠାରେ । ଏଥିରେ ମରହଟ୍ଟାମାନେ ଚୂଡ଼ାନ୍ତ ଭାବେ ପରାଜିତ ହୋଇଥିଲେ । ଯୁଦ୍ଧରେ ନାମକରା ମରହଟ୍ଟା ସେନାପତିମାନେ ନିହତ ହେଲେ ଏବଂ ଆହତ ପେଶବା ମଧ୍ୟ ପ୍ରାଣ ହରାଇଲେ । ତେବେ ଏହି ବିଜୟ ଆହ୍ମଦ ଶାହ୍‌ଙ୍କ ପକ୍ଷରେ ମୋଟେ ସହଜ ସାଧ୍ୟ ନଥିଲା । ତାଙ୍କର ଏତେ କ୍ଷୟକ୍ଷତି ଘଟିଥିଲା ଯେ, ତାଙ୍କୁ ଆଫ୍‌ଗାନିସ୍ତାନକୁ ଫେରିଯିବାକୁ ପଡ଼ିଥିଲା । ତାଙ୍କ ସେନାବାହିନୀ ହୀନବଳ ହୋଇ ପଡ଼ିଥିବାରୁ ସେ ସେଥିରେ ନୂତନ ସୈନ୍ୟ ଓ ଶକ୍ତି ଯୋଗ କରିବାକୁ ଚାହିଁଥିଲେ । କିନ୍ତୁ ଆଭ୍ୟନ୍ତରୀଣ ସଂକଟ ହେତୁ ଦୀର୍ଘ କାଳ ପାଇଁ ଦେଶ ମଧ୍ୟରେ ତାଙ୍କୁ ବାଧ୍ୟ ହୋଇ ରହିବାକୁ ପଡ଼ିଥିଲା । ତାଙ୍କ ମୃତ୍ୟୁ ପରେ ସେଠାରେ ସାମନ୍ତବାଦୀ ଦ୍ୱନ୍ଦ୍ୱ ଫଳରେ ଭାରତ ଉପରେ ଆଫ୍‌ଗାନ ଆକ୍ରମଣର ଅବସାନ ଘଟିଥିଲା ।

ଭାରତରୁ ଆହ୍ମଦ ଶାହ୍‌ଙ୍କ ସୈନ୍ୟ ପ୍ରତ୍ୟାହୃତ ହୋଇଯିବା କ୍ଷଣି ଶିଖ୍‌ମାନେ ଅବିଳମ୍ବେ ପଞ୍ଜାବରୁ ଆଫ୍‌ଗାନମାନଙ୍କୁ ତଡ଼ିବାକୁ ଅଭିଯାନ ଆରମ୍ଭ କରି ଦେଲେ । ତା'ପରେ ସେମାନଙ୍କ ଉଦ୍ୟୋଗରେ ସେଠାରେ ସ୍ୱାଧୀନ ପଞ୍ଜାବ ରାଜ୍ୟ ପ୍ରତିଷ୍ଠିତ ହେଲା । ଯୁଦ୍ଧରେ ଧ୍ୱସ୍ତବିଧ୍ୱସ୍ତ ଦେଶର ଅର୍ଥନୈତିକ କର୍ମକେନ୍ଦ୍ର ସେତେବେଳକୁ ଆଗ୍ରା ଏବଂ ଦିଲ୍ଲୀରୁ ବଙ୍ଗଳା ଏବଂ ଦକ୍ଷିଣ ଭାରତକୁ ସ୍ଥାନାନ୍ତରିତ ହୋଇ ଯାଇଥିଲା । ଏହି ବ୍ୟାପକ ସଂଘାତ ଫଳରେ ଭାରତବର୍ଷ ଏପରି ପ୍ରାଣହୀନ ହୋଇ ପଡ଼ିଥିଲା ଯେ, ତା ପକ୍ଷରେ ୟୁରୋପୀୟ ଔପନିବେଶିକମାନଙ୍କୁ ରୋକିବା ସମ୍ଭବ ନଥିଲା ।

ଏଥି ସଙ୍ଗେ ସଙ୍ଗେ ଦକ୍ଷିଣ ଭାରତରେ ହାୟଦରାବାଦ ଓ ମରହଟ୍ଟାମାନଙ୍କ ମଧ୍ୟରେ, ସ୍ୱାଧୀନ ରାଜ୍ୟ ମଦ୍ରାଜ ଓ ହାୟଦରାବାଦର ସାମନ୍ତ ରାଜ୍ୟ ଆର୍କଟ ମଧ୍ୟରେ ଯୁଦ୍ଧର ଅବ୍ୟାହତି ନଥିଲା । ବିଜୟନଗରର ଧ୍ୱଂସ ସ୍ତୂପ ଉପରେ ଗଢ଼ି ଉଠିଥିବା ମହୀଶୂର ରାଜ୍ୟଟି ମଧ୍ୟ ଏଥିରେ ଜଡ଼ିତ ହୋଇ ପଡ଼ିଲା ।

ଷୋଡ଼ଶ ଶତାବ୍ଦୀରୁ ମିରାଜଦାର ନାମରେ ପରିଚିତ ଭୂସ୍ୱାମୀ ଗୃଷୀମାନଙ୍କର ସଂଖ୍ୟା ସପ୍ତଦଶ ଶତାବ୍ଦୀର ଶେଷ ଏବଂ ଅଷ୍ଟାଦଶ ଶତାବ୍ଦୀରେ ଦ୍ରୁତ କମି ଆସିଥିଲା । ଏହି ସମୟରେ ଗ୍ରାମୀଣ ପ୍ରଜାମାନେ ରାଜସ୍ୱଦାତା ହିସାବରେ ନିଜ ଜମିରେ ମାଲିକ ହୋଇ ଉଠୁଥିଲେ ଏବଂ ଜମିର ମାଲିକାନା ଉପରେ ବିଭିନ୍ନ ବର୍ଗର କୃଷକମାନଙ୍କର ଅଧିକାର ମଧ୍ୟ ସମାନ ହୋଇ ଆସୁଥିଲା : ରାଜସ୍ୱ ଦେବା ସର୍ତ୍ତରେ କୃଷକମାନେ ସେମାନଙ୍କ ଜମି ସହିତ ଛନ୍ଦା ହୋଇ ରହିଲେ ମଧ୍ୟ ଏହା ଦ୍ୱାରା ସେମାନଙ୍କ ଉତ୍ତରାଧିକାରୀ ହେବାର ଅଧିକାର ବଜାଏ ରହୁଥିଲା । ଜମି ଉପରେ ରୟତର ଅଧିକାର ସେପର୍ଯ୍ୟନ୍ତ

ନିର୍ଭର କରୁଥିଲା ଖଜଣା ଦେବାର ସାମର୍ଥ୍ୟ ଉପରେ । କୁଟୀର ଶିଳ୍ପ ଓ ଭୂମି ଚାଷର ଏକତ୍ରୀକରଣକୁ ଭିତ୍ତି କରି ପ୍ରତିଷ୍ଠିତ ଗ୍ରାମ୍ୟ ସମାଜ ସେତେବେଳେ ଟିକି ରହିଥିଲା । କିନ୍ତୁ ସମଗ୍ର ଗ୍ରାମ ଉପରେ ରାଜସ୍ୱ ଦେବାର ଦାୟିତ୍ୱ ଏବେ ନ୍ୟସ୍ତ କରାଗଲା, ଏପରିକି ଯେଉଁସବୁ ଅଞ୍ଚଳରେ ଇତିପୂର୍ବରୁ ଏହା ପ୍ରଚଳିତ ନଥିଲା ସେସବୁ ଅଞ୍ଚଳରେ ମଧ୍ୟ । ଗ୍ରାମ୍ୟ ସମାଜକୁ ଛୋଡ଼ିବା ଓ ଗ୍ରାମାଞ୍ଚଳରେ ସାମନ୍ତ ଭୂସ୍ୱାମୀମାନେ ନିରଙ୍କୁଶ କ୍ଷମତାଶାଳୀ ହୋଇ ଉଠିବା ଫଳରେ ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ ନିମ୍ନୋକ୍ତ ଭାବେ ଜମିର ପୁନର୍ବଣ୍ଟନ ଘଟିଥିଲା : ଯେଉଁମାନେ ବେଶି ଟଙ୍କା ଦେଇ ପାରୁଥିଲେ, ସେଇମାନେ ହିଁ ବେଶି ଜମି ପାଉଥିଲେ । କ୍ରମାଗତ ଭାବେ ରାଜସ୍ୱ ବୃଦ୍ଧି ପାଇବା ହେତୁ କୃଷକମାନଙ୍କ ପକ୍ଷରେ ଜମି ଏକ ବୋଝରେ ପରିଣତ ହୋଇ ଉଠୁଥିଲା । ଏଭଳି ଏକ ଅବସ୍ଥାରେ କୃଷକମାନେ ବୃଦ୍ଧି ପାଇଥିବା ରାଜସ୍ୱକୁ ଏଡ଼ାଇବାକୁ ଯାଇ "ଅଧିକା" ଜମିକୁ ହସ୍ତାନ୍ତର କରି ଦେବାକୁ ଚାହୁଁଥିଲେ । ଛୋଟ ଛୋଟ ସାମନ୍ତ ଭୂସ୍ୱାମୀ ହିସାବରେ ମୁଖିଆ ଏବଂ ମୁନସୀମାନଙ୍କର ବ୍ୟାପକ ଅଭ୍ୟୁଦୟ ଘଟିଥିଲା । ଏହି ଅଧିକାର ବଳରେ ବହିରାଗତ ତହସିଲଦାରମାନେ କୌଣସି ଗ୍ରାମ୍ୟ ସମାଜଭୁକ୍ତ ହୋଇ ଯାଇ ମୁଖିଆ ପଦ ଅଧିକାର କରି ନେଉଥିଲେ । ପଣ୍ୟ ବନାମ ମୁଦ୍ରା ଅର୍ଥନୀତିର ଅଗ୍ରଗତି ସାମନ୍ତବାଦୀ ବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରିବା ପରିବର୍ତ୍ତେ ଗ୍ରାମକୁ ସାମନ୍ତ ଭୂସ୍ୱାମୀମାନଙ୍କ ଉପରେ ଅଧିକତର ନିର୍ଭରଶୀଳ କରି ପକାଉଥିଲା ଏବଂ ଗ୍ରାମ୍ୟ ସମାଜର ସଂସ୍ଥାକୁ ବଜାଏ ରଖି ସାମନ୍ତବାଦୀ ଶୋଷଣକୁ ତୀବ୍ରତର କରିଥିଲା ।

୧୭୪୮ ଖ୍ରୀଷ୍ଟାବ୍ଦରେ ହାୟଦରାବାଦର ଶାସକ ଆସଫ୍ ଜାଙ୍କ ମୃତ୍ୟୁ ପରେ ତାଙ୍କ ଦୁଇ ପୁତ୍ର ନାସୀର ଜଙ୍ଗ୍ ଏବଂ ମୁଜଫ୍‌ଫର ଜଙ୍ଗ୍‌ଙ୍କ ମଧ୍ୟରେ ଉତ୍ତରାଧିକାର ଘେନି ସଂଘର୍ଷ ଉପୁଜିଲା । ସେତେବେଳେ ବନ୍ଦର ସଂଲଗ୍ନ ଛୋଟ ଛୋଟ ଏଲାକାରେ ମାଲିକ ହୋଇ ଉଠିଥିବା ୟୁରୋପୀୟ ବ୍ୟବସାୟୀ କଂପାନିଗୁଡ଼ିକ ଏହି ସଂଘର୍ଷରେ ଯୋଗ ଦେଲେ । ଫଳରେ, ବାସ୍ତବ କ୍ଷେତ୍ରରେ ଫ୍ରାନ୍‌ସ ଏବଂ ବ୍ରିଟେନ୍—ଏହି ଦୁଇ ପ୍ରଧାନ ୟୁରୋପୀୟ ଶକ୍ତି ମଧ୍ୟରେ ବାଣିଜ୍ୟ ଯୁଦ୍ଧ ଆରମ୍ଭ ହୋଇଗଲା । ଏହିସବୁ ଯୁଦ୍ଧର ଶେଷ ପରିଣତି ଥିଲା ଭାରତ ବିଜୟ ।

## ଭାରତରେ ୟୁରୋପୀୟ ବାଣିଜ୍ୟ କଂପାନି

ଭାରତବର୍ଷ ସହିତ ବାଣିଜ୍ୟ କାରବାର ଥିଲା ୟୁରୋପୀୟ ବଣିକମାନଙ୍କ ପକ୍ଷରେ ଏକାଧାରରେ ଗୁରୁତ୍ୱପୂର୍ଣ୍ଣ ଏବଂ ଜଟିଳ । ବଣିକମାନେ ସାଧାରଣତଃ କଂପାନି ସ୍ଥାପନ କରୁଥିଲେ ଏବଂ ସେମାନଙ୍କ ଦେଶର ସରକାର ସେସବୁକୁ ଅନୁମୋଦନ କରୁଥିଲେ । ଏ କ୍ଷେତ୍ରରେ, ମୂଳତଃ, ବିଭିନ୍ନ ବଣିକମାନଙ୍କ ପରିବର୍ତ୍ତେ ବିଭିନ୍ନ ସରକାର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେତୁ ସଂଘାତ ଦେଖା ଦେଉଥିଲା । ଭାରତବର୍ଷକୁ ପର୍ତ୍ତୁଗୀଜ୍ ଅଭିଯାନ ପାଇଁ ପର୍ତ୍ତୁଗାଲର ରାଜା ସାଜସରଞ୍ଜାମ ଏବଂ ଅର୍ଥ ଯୋଗାଇଥିଲେ । ଓଲନ୍ଦାଜ ଏବଂ ବ୍ରିଟିଶ୍ କଂପାନିଗୁଡ଼ିକ ସେମାନଙ୍କ ସରକାର ନିକଟରୁ ସନନ୍ଦ ପାଇଥିଲେ । ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରତିଷ୍ଠିତ ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନିକୁ ବ୍ରିଟିଶ୍ ସରକାର କ୍ରମାନ୍ୱୟରେ ଅଧିକରୁ ଅଧିକ ଅଧିକାର ପ୍ରଦାନ କରିଥିଲା । ବ୍ରିଟିଶ୍ ସରକାର କର୍ତ୍ତୃକ ଅନୁମୋଦିତ କେତେକ ସନନ୍ଦର କଲ୍ୟାଣରୁ ବ୍ରିଟେନ୍‌ରେ କଂପାନିଗୁଡ଼ିକର ଅବସ୍ଥାନ ଖୁବ୍ ମଜବୁତ ହୋଇ ଉଠିଥିଲା । ୧୬୫୭ ଖ୍ରୀଷ୍ଟାବ୍ଦର କ୍ରମୱେଲ ସନନ୍ଦ ଏବଂ ୧୬୬୧ ଖ୍ରୀଷ୍ଟାବ୍ଦର ସନନ୍ଦ ଇଷ୍ଟ ଇଣ୍ଡିଆ କଂପାନିକୁ ଯୁଦ୍ଧ ଘୋଷଣା ଓ ଶାନ୍ତି ପ୍ରତିଷ୍ଠାର ଅଧିକାର ଏବଂ ୧୬୮୬ ଖ୍ରୀଷ୍ଟାବ୍ଦର ସନନ୍ଦ ଇଷ୍ଟ ଇଣ୍ଡିଆ କଂପାନିକୁ

ମୁଦ୍ରା ତିଆରି ଏବଂ ସାମରିକ ଦଣ୍ଡବିଧି ସମେତ ନିଜସ୍ୱ ସୈନ୍ୟ ଓ ନୌବାହିନୀ ରଖିବାର କ୍ଷମତା ଦେଇଥିଲା । ୧୬୯୮ ଖ୍ରୀଷ୍ଟାବ୍ଦରେ କେତେକ ବଣିକ ବ୍ୟକ୍ତିଗତ ମାଲିକାନାଧୀନରେ ଆଉ ଏକ ଇଷ୍ଟ ଇଣ୍ଡିଆ କଂପାନି ଗଠନ କଲେ ଏବଂ ୧୭୦୨ ଖ୍ରୀଷ୍ଟାବ୍ଦରେ କଂପାନି ଦୁଇଟିର ମିଳନ ଘଟିବା ଫଳରେ, ୧୭୦୮ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟର ଏକ ଆଇନ୍ ମାଧ୍ୟମରେ ଉଦ୍ୟୋଗଟିକୁ ଅନୁମୋଦନ ପ୍ରଦାନ କରାଯାଇଥିଲା । ତା'ପରଠୁଁ ଭାରତରେ କଂପାନିର କାର୍ଯ୍ୟକଳାପ ଦ୍ରୁତ ବୃଦ୍ଧି ପାଇବାକୁ ଲାଗିଲା ।

ବ୍ରିଟିଶ୍ ଏବଂ ପର୍ତ୍ତୁଗୀଜ୍‌ମାନଙ୍କ ମଧ୍ୟରେ ସଂଘାତ ଘଟାଇବା ଆଶାରେ ଜାହାଙ୍ଗିର ମୋଗଲ ସାମ୍ରାଜ୍ୟରେ ବ୍ରିଟିଶ୍ ବଣିକମାନଙ୍କୁ ଅବାଧ ବାଣିଜ୍ୟ ଅଧିକାର ଦେଇଥିଲେ । କିନ୍ତୁ ଉପକୂଳ ସାରା ବ୍ରିଟିଶ୍‌ମାନେ ନିଜକୁ ସୁପ୍ରତିଷ୍ଠିତ କଲା ପରେ ମୋଗଲ ଶାସକମାନେ ବାରମ୍ବାର ସେମାନଙ୍କୁ ବହିଷ୍କାର କରିବାକୁ ଉଦ୍ୟମ କଲେ । ଦୃଷ୍ଟାନ୍ତ ସ୍ୱରୂପ, ୧୬୮୭ ଖ୍ରୀଷ୍ଟାବ୍ଦରେ ଆଓରଙ୍ଗଜେବଙ୍କ କର୍ତ୍ତୃକ ବଙ୍ଗଳାରୁ ବ୍ରିଟିଶ୍‌ମାନଙ୍କୁ ବହିଷ୍କାର କରିବାର ଉଦ୍ୟମଟି ଉଲ୍ଲେଖଯୋଗ୍ୟ । ୧୬୯୦ ଖ୍ରୀଷ୍ଟାବ୍ଦରେ ଏକ ବିଶାଳ ମୋଗଲ ବାହିନୀ ବମ୍ବେ (ବ୍ରାଗାନ୍‌ଜାର କ୍ୟାଥେରିନ୍ ଦ୍ୱିତୀୟ ଚାର୍ଲସ୍‌ଙ୍କୁ ବିବାହ କରି ଉପହାର ସ୍ୱରୂପ ପର୍ତ୍ତୁଗୀଜ୍‌ମାନେ ଦ୍ୱୀପଟିକୁ ୧୬୬୧ରେ ବ୍ରିଟେନ୍‌କୁ ଦେଇଥିଲେ) ଅବରୋଧ କଲେ । ବମ୍ବେ ଥିଲା ପଶ୍ଚିମ ଉପକୂଳରେ ବ୍ରିଟିଶ୍ ଆଧିପତ୍ୟର ସବୁଠାରୁ ଶକ୍ତ ଘାଟି । କିନ୍ତୁ ମୋଗଲ ଶାସକମାନଙ୍କର ଏହି ଚେଷ୍ଟା ବ୍ୟର୍ଥ ହୋଇଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟିଶ୍ କଂପାନି ଥିଲା ଭାରତରେ ସର୍ବାପେକ୍ଷା ଧନଶାଳୀ । ୧୬୩୯-୧୬୪୦ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଶାସକମାନଙ୍କ ନିକଟରୁ ଦଖଲ କରିଥିବା କରମଣ୍ଡଳ ଉପକୂଳସ୍ଥ ମାନ୍ଦ୍ରାଜ ଥିଲା ସେମାନଙ୍କର ପ୍ରଧାନ ଘାଟି । ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ବ୍ରିଟିଶ୍‌ମାନେ ସେଠାରେ ସେଣ୍ଟ୍ ଜର୍ଜ ଦୁର୍ଗ ଏବଂ ଗୋଟିଏ ବନ୍ଦର ନିର୍ମାଣ କରିବା ଦ୍ୱାରା ଅବିଳମ୍ବେ ଏହା ଏକ ସମୃଦ୍ଧ ଏବଂ ଜନାକୀର୍ଣ୍ଣ ସହର ହିସାବରେ ଗଢ଼ି ଉଠିଲା ।

ବଙ୍ଗଳାରେ କଲିକତା କ୍ରମଶଃ ବ୍ରିଟିଶ୍ କଂପାନିର କାର୍ଯ୍ୟକଳାପର କେନ୍ଦ୍ରରେ ପରିଣତ ହୋଇ ଉଠିଲା । ୧୬୯୦ ଖ୍ରୀଷ୍ଟାବ୍ଦରେ ହୁଗୁଳୀ ନଦୀ ତୀରରେ କଲିକତା ସହର ପ୍ରତିଷ୍ଠିତ ହୋଇଥିଲା ଏବଂ କଂପାନି ତା'ର ମାଲଗୋଦାମଗୁଡ଼ିକର ସୁରକ୍ଷଣ ପାଇଁ ସପ୍ତଦଶ ଶତାବ୍ଦୀରେ ଏକ ଦୁର୍ଗ ନିର୍ମାଣ କଲା । ଇଂଲଣ୍ଡର ରାଜା ତୃତୀୟ ଉଇଲିୟମ୍‌ଙ୍କ ସମ୍ମାନାର୍ଥେ ଏହାର ନାମକରଣ କରାଯାଇଥିଲା ଫୋର୍ଟ-ଉଇଲିୟମ୍ । ଏହି ଦୁର୍ଗରୁ ଇଷ୍ଟ ଇଣ୍ଡିଆ କଂପାନି ବଙ୍ଗଳାରେ ତା'ର କାର୍ଯ୍ୟକଳାପ ପରିଚାଳନା କରୁଥିଲା । କଲିକତାର ପାର୍ଶ୍ୱବର୍ତ୍ତୀ ତିନୋଟି ଗ୍ରାମର ଜମିଦାର ରୂପେ କଂପାନି ବିବେଚିତ ହେଲା ।

୧୭୧୭ ଖ୍ରୀଷ୍ଟାବ୍ଦରେ ଫାରୁକ୍ ଶିୟାର ବ୍ରିଟିଶ୍‌ମାନଙ୍କୁ ଆଉରି ଅଠତିରିଶଟି ଗ୍ରାମ ଇଜାରା ଦେଲେ । ମୋଗଲମାନଙ୍କ କୋଷାଗାରରେ ବାର୍ଷିକ ୩ ହଜାର ଟଙ୍କା ନଜରାନା ଦେବା ସର୍ତ୍ତରେ ବ୍ରିଟିଶ୍‌ମାନଙ୍କୁ ପଣ୍ୟ ଶୁଳ୍କ ଛାଡ଼ କରି ଦିଆଗଲା । ତା'ଛଡ଼ା ବାଣିଜ୍ୟ କେନ୍ଦ୍ରର ମୁଖ୍ୟଙ୍କ କର୍ତ୍ତୃକ ପ୍ରଦତ୍ତ ଦାସ୍ତାକ (ବିଶେଷ ଅନୁମତି) ହେତୁ ଶୁଳ୍କ ଦପ୍ତରର ପରିଦର୍ଶନ ବ୍ୟତୀତ ବ୍ରିଟିଶ୍‌ମାନଙ୍କୁ ମାଲ ଚଳାଚଳର ସୁବିଧା ଦିଆଯାଇଥିଲା । ସେବେଠୁଁ ଏଠାକାର ବ୍ରିଟିଶ୍ ରପ୍ତାନିରେ ବଙ୍ଗଳାର ପଣ୍ୟର ଅଂଶ ଦ୍ରୁତ ଭାବରେ ବଢ଼ିବାକୁ ଲାଗିଲା । କଂପାନିର ଆୟ ଅବିଳମ୍ବେ ୧୭୧୭ ଖ୍ରୀଷ୍ଟାବ୍ଦରେ ୨ ଲକ୍ଷ ୭୮ ହଜାର ୬ ଶହ ପାଉଣ୍ଡରୁ ବୃଦ୍ଧି ପାଇ ୧୭୨୯ ଖ୍ରୀଷ୍ଟାବ୍ଦରେ ୩ ଲକ୍ଷ ୬୪ ହଜାର ପାଉଣ୍ଡରେ ପହଞ୍ଚିଥିଲା ।

କଲିକତା, ଢାକା, କାସିମବଜାର ଏବଂ ବଙ୍ଗଳାର ଅନ୍ୟ କେତୋଟି ସ୍ଥାନରେ ଇଷ୍ଟ ଇଣ୍ଡିଆ କଂପାନିର ବାଣିଜ୍ୟ କେନ୍ଦ୍ରର ଆଖପାଖରେ ତନ୍ତୁବାୟମାନେ ବସତି ସ୍ଥାପନ କରିବାକୁ ଲାଗିଲେ । କଲିକତାର ଅଦୂରରେ "କୃଷ୍ଣ ନଗରରେ" କଂପାନି ପାଇଁ କର୍ମରତ ତନ୍ତୁବାୟମାନଙ୍କ ସଂଖ୍ୟା ଥିଲା ପ୍ରାୟ ଆଠ ହଜାର । ଇଷ୍ଟ ଇଣ୍ଡିଆ କଂପାନିର ଭାରତୀୟ ଦଲାଲମାନେ ତନ୍ତୁବାୟମାନଙ୍କୁ କଞ୍ଚାମାଲ ଯୋଗାଉଥିଲେ ଏବଂ ୟୁରୋପୀୟ ବଜାରରେ ବିକ୍ରୟ ପାଇଁ ବସ୍ତ୍ରାଦି ବୁଣିବାକୁ ବରାଦ ଦେଉଥିଲେ । ଏହି ଦଲାଲମାନେ କେବଳ କଂପାନିର ପ୍ରତିନିଧି ହିସାବରେ ନୁହେଁ, ନିଜେ ମଧ୍ୟସ୍ଥ ହିସାବରେ ବଣିକମାନଙ୍କ ଠାରୁ ପଣ୍ୟାଦି କ୍ରୟ କରୁଥିଲେ ।

ବ୍ରିଟିଶ୍‌ମାନଙ୍କର ବାଣିଜ୍ୟ ପ୍ରସାର କ୍ଷେତ୍ରରେ ବଙ୍ଗଳାର ନବାବ ଖୁବ୍ ଉଦ୍‌ବିଗ୍ନ ହୋଇ ଉଠିଥିଲେ । ଇତିମଧ୍ୟରେ ସେ ପ୍ରକୃତରେ ସ୍ୱାଧୀନ ଶାସକ ହୋଇ ପଡ଼ିଥିଲେ । ଏକଦା ଏହିସବୁ ସହର ଓ ସୁରକ୍ଷିତ ପଣ୍ୟ ଗୋଦାମଗୁଡ଼ିକ ଯେ ବ୍ରିଟିଶ୍‌ମାନଙ୍କ ପାଇଁ ଶକ୍ତିଶାଳୀ ଘାଟିରେ ପରିଣତ ହେବ ଏବଂ ସେସବୁ ସ୍ଥାନରୁ ସେମାନଙ୍କୁ ହଟାଇବା କଠିନ ହୋଇ ପଡ଼ିବ, ସେଥି ପାଇଁ ସେ ଭୟଭୀତ ହୋଇ ପଡ଼ିଥିଲେ । କଂପାନିର କର୍ମଚାରୀମାନଙ୍କର ବ୍ୟକ୍ତିଗତ ବ୍ୟବସାୟ, ଏପରିକି, କଂପାନିକୁ ଚପି ଯାଉଛି ଏବଂ ଦେଶ ସାରା ଏହା ବ୍ୟବସାୟକୁ ଏକଚାଟିଆ କରୁଛି ବୋଲି ନବାବ କଂପାନି ବିରୁଦ୍ଧରେ ଅଭିଯୋଗ ଆଣିଥିଲେ ।

ବ୍ରିଟିଶ୍‌ମାନେ ବଙ୍ଗଳାରୁ ମୁଖ୍ୟତଃ ସୂତା ଏବଂ ରେଶମୀ ବସ୍ତ୍ର, କଞ୍ଚା ରେଶମ, ସୋଡ଼ା, ଚିନି, ଅଫିମ, ନୀଳ, ଘିଅ, ଉଦ୍‌ଭିଜ୍ଜ ତୈଳ ଏବଂ ଚାଉଳ ରପ୍ତାନି କରୁଥିଲେ । କଂପାନି ପାଖରେ ଥିଲା ଅମାପ ଅର୍ଥ ଏବଂ ତେଣୁ ଏହା ପାଇକାରି ହାରରେ ଜିନିଷପତ୍ର କିଣୁଥିଲା । ପ୍ରସଙ୍ଗକ୍ରମେ ଚାଉଳ କିଣିବା ବିଷୟଟି ବଡ଼ ଆଗ୍ରହପ୍ରଦ : ଫସଲ ଅମଳର ଅନେକ ପୂର୍ବରୁ ମଧ୍ୟସ୍ଥ ଭୂମିକା ପାଳନ କରୁଥିବା ଶକ୍ତିଶାଳୀ ଭାରତୀୟ ମହାଜନମାନଙ୍କର ସୁପାରିସ୍ ଅନୁଯାୟୀ କଂପାନିର କର୍ମଚାରୀମାନେ ଭାରତୀୟ ବଣିକମାନଙ୍କୁ ବିଭିନ୍ନ ପରିମାଣର ଟଙ୍କା ଦେଉଥିଲେ । ସେମାନେ ସେସବୁ ଅର୍ଥକୁ କ୍ରେତାମାନଙ୍କୁ ଦେଉଥିଲେ ଏବଂ କ୍ରେତାମାନଙ୍କ ମାଧ୍ୟମରେ ତାହା ଯାଉଥିଲା କୃଷକମାନଙ୍କ ହାତକୁ । ଅର୍ଥାତ୍, ଅମଳ ହେବାର ଅନେକ ଆଗରୁ ଧାନ ଫସଲ ଶସ୍ତାରେ କିଣା ହୋଇ ଯାଉଥିଲା ।

ବ୍ରିଟିଶ୍‌ମାନଙ୍କର ସ୍ଥାନୀୟ ଦଲାଲମାନେ (ଗୁମାସ୍ତା) କାରିଗରମାନଙ୍କ ସହିତ ନେଣ ଦେଣ କଲା ବେଳେ ଏହି ପଦ୍ଧତି ଅବଲମ୍ବନ କରୁଥିଲେ ଏବଂ କାରିଗରମାନଙ୍କୁ ଦାଦନ ଦେବା ଜରିଆରେ ସେମାନଙ୍କୁ ବସ୍ତୁତଃ ଦାସ ସ୍ତରକୁ ଘେନି ଯାଉଥିଲେ ।

ମରହଟ୍ଟାମାନଙ୍କର ଓଡ଼ିଶା ଆକ୍ରମଣ ବିରୁଦ୍ଧରେ ବଙ୍ଗଳାର ନବାବ ଆଲିବର୍ଦୀ ଖାଁଙ୍କ (୧୭୪୦-୧୭୫୬) ଦ୍ୱାରା କଂପାନି ନିକଟରୁ ଗୃହୀତ ଅର୍ଥ ସାହାଯ୍ୟର ପ୍ରତିଦାନରେ ସେ କଂପାନିକୁ କେତେକ ବିଶେଷ ସୁବିଧା ମଞ୍ଜୁର କରିଥିଲେ । ନବାବ, ଅବଶ୍ୟ, ବ୍ରିଟିଶ୍ ବଣିକମାନଙ୍କର ବର୍ଦ୍ଧମାନ ପ୍ରଭାବ ସଂପର୍କରେ ଶଙ୍କିତ ଥିଲେ । ଏହିସବୁ ବଣିକମାନେ ଇତି ମଧ୍ୟରେ ସେମାନଙ୍କ ଘାଟିଗୁଡ଼ିକରେ ହଜାର ହଜାର ତନ୍ତୁବାୟ ନିଯୁକ୍ତ କରିଥିଲେ ଏବଂ ଭାରତୀୟ ମହାଜନ, ବ୍ୟାଙ୍କର ଓ ବଣିକମାନଙ୍କ ସହିତ ବ୍ୟବସାୟ ଚଳାଉଥିଲେ ଏବଂ ପ୍ରାଚ୍ୟର ସାମୁଦ୍ରିକ ବାଣିଜ୍ୟ କ୍ଷେତ୍ରରୁ କ୍ରମଶଃ ଭାରତୀୟ ବଣିକମାନଙ୍କୁ ହଟେଇ ଦେଉଥିଲେ ।

ଅନ୍ୟାନ୍ୟ ୟୁରୋପୀୟ କଂପାନିର ଅନୁକରଣରେ ଫରାସୀ କୂଟନୀତିଜ୍ଞ କଲବେର୍ଟଙ୍କ ଉଦ୍ୟୋଗରେ

୧୬୬୪ ଖ୍ରୀଷ୍ଟାବ୍ଦରେ ଫରାସୀ ଇଷ୍ଟ ଇଣ୍ଡିଆ କଂପାନି ଗଢ଼ାଯାଇଥିଲା । ଏହି କଂପାନିକୁ ଦିଆଯାଇଥିଲା ବ୍ୟାପକ କ୍ଷମତା । ଅଧିକୃତ ଅଞ୍ଚଳରେ ଅବାଧ କର୍ତ୍ତୃତ୍ୱ ସ୍ଥାପନ, ବିଚାର ବ୍ୟବସ୍ଥା ପରିଚାଳନା, ସେଠାକାର ବାସିନ୍ଦାମାନଙ୍କୁ ଶାସ୍ତି ଦାନ ଏବଂ ଅବସ୍ଥାନୁଯାୟୀ ଯୁଦ୍ଧ ଘୋଷଣା ଏବଂ ଶାନ୍ତି ପ୍ରତିଷ୍ଠାର ଅଧିକାର ଏହା ଲାଭ କରିଥିଲା । ଶତ୍ରୁ ନିକଟରୁ କଂପାନିକୁ ରକ୍ଷା କରିବା ଏବଂ ତା'ର ଜାହାଜଗୁଡ଼ିକୁ ପହରା ଦେବାର ଆଶ୍ୱାସନା ଫରାସୀ ସରକାର ତାକୁ ପ୍ରଦାନ କରିଥିଲେ । କିନ୍ତୁ ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ ଏହା ସାମନ୍ତବାଦୀ ନିୟମାଧୀନରେ ଥିବା ହେତୁ ରାଜା, ପ୍ରଧାନ ନିୟାମକ, ବଣିକ ସଂଘ, ଉପନିବେଶ ଓ ନୌବାହିନୀର ମନ୍ତ୍ରୀ, ସମସ୍ତେ ନିଜ ନିଜର ବହୁବିଧ ନିର୍ଦ୍ଦେଶ ପଠାଇ କଂପାନିର କାର୍ଯ୍ୟକର୍ମରେ ବାଧା ସୃଷ୍ଟି କରିଥିଲେ । ଫଳରେ, କଂପାନି ଫଳପ୍ରସୂ ଭାବେ କାର୍ଯ୍ୟ କରିବାକୁ ବ୍ୟର୍ଥ ହୋଇଥିଲା ।

କଂପାନିର ପରିଚାଳକ ମଣ୍ଡଳୀରୁ କେତେକ ସଦସ୍ୟ ସରକାର ଦ୍ୱାରା ମନୋନୀତ ହେଉଥିଲେ । କାର୍ଯ୍ୟତଃ ସରକାର ଦ୍ୱାରା ମନୋନୀତ ପ୍ରଧାନ ନିୟାମକ ଏବଂ ତାଙ୍କ ସହକାରୀ, ବିଶେଷ କମିସାର କଂପାନିର କାର୍ଯ୍ୟ ପରିଚାଳନା ସଂପର୍କରେ ନିଷ୍ପତ୍ତି ନେଉଥିଲେ । ରାଜସଭାର ଅନୁଗ୍ରହ ପ୍ରାପ୍ତ ଓ ସମର୍ଥକବୃନ୍ଦ କଂପାନିର ମୂଳ ଅଂଶୀଦାର ଥିଲେ ଏବଂ ସେଇମାନେ ହିଁ ଏହାର ବିଷୟାଦି ତତ୍ତ୍ୱାବଧାନ କରିବା ସଙ୍ଗେ ସଙ୍ଗେ ସୈନ୍ୟ ତଥା ନୌବାହିନୀକୁ ନିୟନ୍ତ୍ରଣ କରୁଥିଲେ । ପରିଚାଳକମାନଙ୍କ ମଧ୍ୟରେ ଏବଂ ପ୍ରଶାସକ ତଥା ଇଜାରାକାରକମାନଙ୍କ ମଧ୍ୟରେ କଳହ ଲାଗି ରହିଥିଲା । ଏହି ଭାବେ କଂପାନିର ବ୍ୟାପାର ସଂପୂର୍ଣ୍ଣ ବିଶୃଙ୍ଖଳା ମଧ୍ୟରେ ବିନଷ୍ଟ ହେବାକୁ ଲାଗିଲା ଏବଂ ଉତ୍କୋଚ କଥାଟା କେବଳ ଭାରତସ୍ଥ କର୍ମଚାରୀମାନଙ୍କ ମଧ୍ୟରେ ନୁହେଁ, ଖୋଦ୍ ଫ୍ରାନ୍ସରେ ବ୍ୟାପକ ଭାବେ ବିସ୍ତାର ଲାଭ କରିଥିଲା ।

୧୬୮୩ ଖ୍ରୀଷ୍ଟାବ୍ଦରେ ଅଧିକୃତ କରମଣ୍ଡଳ ଉପକୂଳର ପଣ୍ଡିଚେରୀରେ ଫରାସୀମାନେ ସେମାନଙ୍କ ପ୍ରଧାନ ଘାଟି ସ୍ଥାପନ କରିଥିଲେ । ସେମାନଙ୍କ ଦ୍ୱାରା ଅଧିକୃତ ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ସହରଟି ଥିଲା ବଙ୍ଗଳାର ଚନ୍ଦନନଗର । ଫରାସୀ ଜାହାଜରେ ବଙ୍ଗଳାରେ ପ୍ରସ୍ତୁତ ବସ୍ତ୍ରାଦିକୁ ପଠାଇବା ନିମିତ୍ତ ଏଠାରେ ମହଜୁତ୍ କରି ରଖାଯାଉଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟିଶ୍‌ମାନଙ୍କ ତୁଳନାରେ ଫରାସୀ କଂପାନିର ବ୍ୟବସାୟ ଅନେକ କମ୍ ଥିଲା । ରପ୍ତାନି ପଣ୍ୟ ମଧ୍ୟରେ ଦକ୍ଷିଣ ଭାରତରୁ କିଣାଯାଉଥିବା କାର୍ପାସ ଓ ବିଶେଷତଃ ରେଶମୀ ବସ୍ତ୍ର ପ୍ରଧାନତଃ ସେମାନେ ରପ୍ତାନି କରୁଥିଲେ । ଫରାସୀ ସରକାର ତା'ର ପ୍ରାଚ୍ୟ ଉପନିବେଶ ଓ ବାଣିଜ୍ୟକୁ ଆଦୌ ଗୁରୁତ୍ୱ ଦେଉ ନଥିଲା । ବରଂ, ପଞ୍ଚଦଶ ଲୁଇଙ୍କର ଜନୈକ ମନ୍ତ୍ରୀ ତାଙ୍କର ଏକ ଉକ୍ତି ପାଇଁ ଯଥେଷ୍ଟ ଖ୍ୟାତି ଲାଭ କରିଥିଲେ ଏବଂ ସେ ଉକ୍ତିଟି ହେଲା, ସେ ଦେଶରେ ରାଜା ହେଲେ, ଗୋଟିଏ ପିନ୍‌କଣ୍ଟାର ଦାମ୍‌ରେ ସମସ୍ତ ଉପନିବେଶକୁ ବିକ୍ରି କରି ଦେବେ ।

ଫରାସୀ କଂପାନି ଅଧୀନରେ କୌଣସି ଶକ୍ତିଶାଳୀ ନୌବାହିନୀ ନଥିଲା ଏବଂ ଅପରାଧୀମାନଙ୍କୁ ନେଇ ଗଠିତ ହୋଇଥିଲା ତା'ର ସୈନ୍ୟଦଳ । ତା'ଛଡ଼ା ସେନାବାହିନୀର ଅଫିସରମାନେ ଯୁଦ୍ଧ କୌଶଳ ସଂପର୍କରେ ବିଶେଷ କିଛି ଜାଣି ନଥିଲେ ଏବଂ ସେମାନଙ୍କୁ ପ୍ରାୟ ଅର୍ଥ ଦେଇ କ୍ରୟ କରାଯାଉଥିଲା ।

ଭାରତରେ ବିଦେଶୀ କଂପାନିଗୁଡ଼ିକ ମଧ୍ୟରେ ବ୍ରିଟିଶ୍ ଓ ଫରାସୀ କଂପାନିଗୁଡ଼ିକ ସର୍ବାପେକ୍ଷା

ପ୍ରଭାବଶାଳୀ ଥିଲେ । ଏମାନଙ୍କ ବାଣିଜ୍ୟ କେନ୍ଦ୍ର ଏବଂ ବସତିଗୁଡ଼ିକ ଛଡ଼ା ସପ୍ତଦଶ ଶତାବ୍ଦୀରେ ଗଠିତ ଓଲନ୍ଦାଜ କଂପାନି ଓ ୧୬୭୬ ଖ୍ରୀଷ୍ଟାବ୍ଦରେ ଗଠିତ ଦିନାମାର କଂପାନି ଏ ଦେଶରେ ବ୍ୟବସାୟ କରୁଥିଲେ । ଓଲନ୍ଦାଜମାନେ କରମଣ୍ଡଳ ଉପକୂଳରେ (ନାଗାପଟମ୍) ଓ ବଙ୍ଗଳାରେ (ମୂଳ ବ୍ୟବସାୟ କେନ୍ଦ୍ର ଢାକା ଏବଂ ଚୁଁଚଡ଼ା) ଏବଂ ଦିନାମାରମାନେ ବଙ୍ଗଳାର ଶ୍ରୀରାମପୁରରେ ଘାଟି ତିଆରି କରିଥିଲେ । ଓଲନ୍ଦାଜ ଏବଂ ଦିନାମାରମାନେ, ଅବଶ୍ୟ, ଏ ଦେଶରେ କୌଣସି ଉଲ୍ଲେଖଯୋଗ୍ୟ ଭୂମିକା ପାଳନ କରି ନଥିଲେ ।

## ଭାରତ-ରୁଷ୍ ସଂପର୍କ

ସପ୍ତଦଶ ଶତାବ୍ଦୀରେ ଭାରତର ସାମୁଦ୍ରିକ ବାଣିଜ୍ୟ ପୂରାପୂରି ୟୁରୋପୀୟ କଂପାନିଗୁଡ଼ିକର ହସ୍ତଗତ ହୋଇଯିବା ଫଳରେ ଭାରତୀୟମାନେ ସେମାନଙ୍କ ଉତ୍ତରରେ ଅବସ୍ଥିତ ପ୍ରତିବେଶୀମାନଙ୍କ ସହିତ କ୍ରମଶଃ ଅଧିକରୁ ଅଧିକ ପରିମାଣରେ କ୍ୟାରାଭାନ ବା ଓଟଯୂଥ ଯୋଗେ ଯୋଗାଯୋଗ ସ୍ଥାପନ କରିଥିଲେ । ପାରସ୍ୟ ଏବଂ ବୋଖାରା ପଥରେ ଭାରତୀୟ ବଣିକମାନେ ଆସ୍ତ୍ରାଖାନରେ ପହଞ୍ଚିଥିଲେ ଏବଂ ୧୬୪୦ ଦଶକରେ ସେଠାରେ ନିଜକୁ ସୁପ୍ରତିଷ୍ଠିତ କରି ପାରିଥିଲେ । ୧୬୪୯ ଖ୍ରୀଷ୍ଟାବ୍ଦରେ ସେଠାକାର ଏକ ବିଶେଷ ପ୍ରାଚୀର ବିଶିଷ୍ଟ ଅଞ୍ଚଳରେ ଏକ ବିଶେଷ ଦରବାର, ଦୋକାନ ଏବଂ ଘରବାଡ଼ି ସମେତ ଏକ ବିଷ୍ଣୁ ମନ୍ଦିର ନିର୍ମାଣ କରିଥିଲେ । ଆସ୍ତ୍ରାଖାନରୁ ରୁଷ୍ ସହରଗୁଡ଼ିକୁ ଆସିବା ପଥରେ ରୁଷ୍ ପ୍ରତିଦ୍ୱନ୍ଦ୍ୱୀମାନଙ୍କର ପ୍ରବଳ ବିରୋଧିତା ସତ୍ତ୍ୱେ ଭାରତୀୟ ବଣିକମାନେ ମସ୍କୋ ଓ ନିଝନି-ନୋଭଗୋରଦ ସହରର (ମାକାରେଭ୍ସାୟା) ମେଳାକୁ ପ୍ରଧାନତଃ ପ୍ରାଚ୍ୟର (ପାରସିକ ଏବଂ ଭାରତୀୟ) ପଣ୍ୟାଦି ବିକ୍ରି କରିବା ପାଇଁ ଆସୁଥିଲେ । ପ୍ରାଚ୍ୟ ସହିତ ରୁଷିଆର ବାଣିଜ୍ୟ କ୍ଷେତ୍ରରେ ଗୁରୁତ୍ୱ ଦିଗରୁ ଜୁଲଫାର (ଇସ୍ଫାହାନ) ଆର୍ମେନୀୟମାନଙ୍କ ପରେ ଭାରତୀୟମାନଙ୍କ ସ୍ଥାନ ଥିଲା । ଆର୍ମେନୀୟମାନେ ପ୍ରଧାନତଃ ଇରାନ୍ ଶାହ୍‌ଙ୍କ ବ୍ୟବସାୟୀ (ପାରସ୍ୟରୁ ସରକାରୀ ପଣ୍ୟ ଆଣି) ରୂପେ ବ୍ୟବସାୟ କରୁଥିଲେ । କିନ୍ତୁ ଭାରତୀୟମାନେ ମୂଳତଃ ବ୍ୟକ୍ତିଗତ ସାମର୍ଥ୍ୟରେ ବ୍ୟବସାୟ ଚଳଉଥିଲେ । ତା'ଛଡ଼ା ସେମାନଙ୍କ ବ୍ୟବସାୟ ଥିଲା ଯଥେଷ୍ଟ ବ୍ୟାପକ (ଏମାନଙ୍କ ମଧ୍ୟରୁ କେହି କେହି ହଜାର ହଜାର ରୁବଲ ମୂଲ୍ୟର କିଣାବିକା କରୁଥିଲେ) ।

ସପ୍ତଦଶ ଶତାବ୍ଦୀରେ ଜାର୍ ସରକାର ଭାରତବର୍ଷ ସହିତ ପ୍ରତ୍ୟକ୍ଷ ବାଣିଜ୍ୟ ଓ କୂଟନୈତିକ ସଂପର୍କ ସ୍ଥାପନ କରିବାକୁ କେତେକ ଉଦ୍ୟୋଗ ଗ୍ରହଣ କରିଥିଲେ । କିନ୍ତୁ ପ୍ରାଚ୍ୟର କେତେକ ଦେଶ ମଧ୍ୟ ଦେଇ ଯାତାୟତ କରିବାର ଅସୁବିଧା ହେତୁ ତାହା ବାସ୍ତବାୟିତ ହୋଇ ପାରି ନଥିଲା । ନିକିତା ସିରୋୟେଜିନ୍‌ଙ୍କ ନେତୃତ୍ୱରେ ୧୬୪୬ ଖ୍ରୀଷ୍ଟାବ୍ଦରେ ଏବଂ ରଦିଓନ୍ ପୁଶ୍‌ନିକଭ୍ ଓ ଇଭାନ୍ ଦେରେଭେନ୍‌ସିଙ୍କ ନେତୃତ୍ୱରେ ୧୬୫୧ ଖ୍ରୀଷ୍ଟାବ୍ଦରେ ଦୁଇଥର ଶାହ୍ ଜାହାନଙ୍କ ଦରବାରକୁ ଦୂତ ପଠାଇବାକୁ ଚେଷ୍ଟା ହୋଇଥିଲା । କିନ୍ତୁ ପଥରେ ସେମାନେ ପାରସୀୟ କର୍ତ୍ତୃପକ୍ଷଙ୍କ ହାତରେ ବନ୍ଦୀ ହେବାରୁ ଏହି ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ବୋଖାରାର ମହମ୍ମଦ ଇଉସୁଫ୍ କାସିମଭ୍‌ଙ୍କ ନେତୃତ୍ୱରେ ଆଉରି ଏକ ଦୂତଦଳ ମୋଗଲ ସାମ୍ରାଜ୍ୟର ଉପକଣ୍ଠରେ କାବୁଲ ପର୍ଯ୍ୟନ୍ତ ଗଲା ପରେ ଆଓରଙ୍ଗଜେବ ତାଙ୍କୁ ଆଉ ଆଗେଇବାକୁ ଅନୁମତି ଦେଇ ନଥିଲେ । ଶେଷକୁ ୧୬୯୫ ଖ୍ରୀଷ୍ଟାବ୍ଦରେ ସେମିଓନ୍ ମାଲେନ୍‌କିଙ୍କ ନେତୃତ୍ୱରେ ଏକ ବାଣିଜ୍ୟ ପ୍ରତିନିଧିଦଳ କେବଳ ଦିଲ୍ଲୀ, ଆଗ୍ରା, ସୁରାଟ ଓ

ବୁର୍‌ହାନ୍‌ପୁରରେ ପହଞ୍ଚିବାକୁ ସମର୍ଥ ହୋଇଥିଲେ । ଏହି ଦଳଟି ଆଓରଙ୍ଗଜେବଙ୍କ ନିକଟରୁ ତୁର୍କୀକୁ ଲିଖିତ ଅବାଧ ବାଣିଜ୍ୟର ଏକ ରାଜାଜ୍ଞା ପାଇଥିଲେ । କିନ୍ତୁ ଦେଶକୁ ଫେରିବା ପୂର୍ବରୁ ପାରସ୍ୟରେ ମାଲେନ୍‌କିଙ୍କ ମୃତ୍ୟୁ ଘଟିଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ମଧ୍ୟ ଆସ୍ତ୍ରାଖାନର ଭାରତୀୟ ବସତିରେ ବ୍ୟବସାୟ ବାଣିଜ୍ୟ ଅବ୍ୟାହତ ରହିଥିଲା । କିନ୍ତୁ ଭାରତ ସହିତ ଏହି ବଣିକମାନଙ୍କର ଯୋଗାଯୋଗ ବିଚ୍ଛିନ୍ନ ହୋଇ ପଡ଼ିବାରୁ ସେମାନେ ପ୍ରଧାନତଃ ପାରସ୍ୟ ସହିତ ଏବଂ ଆଂଶିକ ଭାବେ କକେଶସ୍ ସହିତ ବ୍ୟବସାୟ ଚଳେଇଥିଲେ । ଇତିମଧ୍ୟରେ ଭାରତୀୟ ବଣିକମାନେ ମହାଜନୀ ବ୍ୟବସାୟରେ ଅର୍ଥ ଲଗ୍ନୀ କରିବାକୁ ଲାଗିଲେ ଏବଂ ଉଚ୍ଚପଦସ୍ଥ ରୁଷ୍ କର୍ମଚାରୀମାନେ ସେମାନଙ୍କ ଅଧମର୍ଣ୍ଣ ହେବା ସତ୍ତ୍ୱେ ଜାର୍ ସରକାର ସେମାନଙ୍କୁ ଏହି କାର୍ଯ୍ୟରେ ସମର୍ଥନ ଯୋଗାଇଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଆସ୍ତ୍ରାଖାନର ଭାରତୀୟ ବଣିକମାନେ ରୁଷିଆରେ ଏକ ବାଣିଜ୍ୟ ସଂସ୍ଥା ଗଠନ କରି ତା ସାହାଯ୍ୟରେ ବ୍ୟାପକ ବ୍ୟବସାୟ ବାଣିଜ୍ୟ ଚଳାଇଥିଲେ । ରୁଷ୍ ବ୍ୟବସାୟୀମାନେ ନିଜ ଦିଗରୁ ଭାରତବର୍ଷରେ ବାଣିଜ୍ୟ ଚଳାଇବା ପାଇଁ ଜାର୍ ସରକାରର ପୃଷ୍ଠପୋଷକତାରେ କେଇ ଥର ଉଦ୍ୟୋଗ ଗ୍ରହଣ କରିଥିଲେ । କିନ୍ତୁ ସ୍ଥଳ ପଥରେ ବାଧା ହେତୁ ଏହିସବୁ ପରିକଳ୍ପନା ଆଉ କାର୍ଯ୍ୟକାରୀ ହୋଇ ପାରି ନଥିଲା ।

ରୁଷିଆରେ କୌଣସି ଭାରତୀୟ ନାରୀ ନଥିବାରୁ ଏହିସବୁ ଭାରତୀୟମାନେ ତାତାର ନାରୀଙ୍କୁ ବିବାହ କରିଥିଲେ । ସେମାନଙ୍କ ସନ୍ତାନ ସନ୍ତତିମାନେ ଆସ୍ତ୍ରାଖାନରେ ଆଗ୍ରିଜାନ୍ (ପୁତ୍ରର ତୁର୍କୀ ଶବ୍ଦ "ଅଗଲେଭ୍ର" ଉତ୍ପନ୍ନ) ନାମରେ ପରିଚିତ । ଭାରତୀୟମାନେ କ୍ରମଶଃ ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରେ ମିଶି ଯାଇଥିଲେ । ୧୮୪୦ ଦଶକରେ ଜାର୍ ସରକାର ଭାରତୀୟ ବାଣିଜ୍ୟ ସଂସ୍ଥାର ଅବଶିଷ୍ଟ ସଂପତ୍ତିକୁ ବେଉଆରିସ ହିସାବରେ ବାଜ୍ୟାପ୍ତ କରିଥିଲେ ।

## ଭାରତ ଅଧିକାର ପାଇଁ ବ୍ରିଟିଶ୍-ଫରାସୀ ଦ୍ୱନ୍ଦ୍ୱ (୧୭୪୬-୧୭୬୩)

ଫରାସୀ ଇଷ୍ଟ ଇଣ୍ଡିଆ କଂପାନି ହିଁ ପ୍ରଥମେ ଉଦ୍ୟମ କରିଥିଲା ଭାରତରେ ଏକ ଔପନିବେଶିକ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ । ପଣ୍ଡିଚେରୀର ଗଭର୍ଣ୍ଣର ଯୋସେଫ୍ ଫ୍ରାନ୍‌ସୋୟା ଦୁପ୍ଲେ ୧୭୪୦ ଖ୍ରୀଷ୍ଟାବ୍ଦରେ ଫରାସୀ ଅଫିସରମାନଙ୍କ ଅଧୀନରେ ଭାରତୀୟମାନଙ୍କୁ ନେଇ ସୈନ୍ୟଦଳ ଗଠନ କରିବାକୁ ଆରମ୍ଭ କରିଥିଲେ । ଏହି ଭାବେ ପ୍ରଥମ ସିପାହୀ ବାହିନୀ ଗଢ଼ି ଉଠିଥିଲା ଏବଂ ସେମାନଙ୍କର ରଣନୈପୁଣ୍ୟ ଦେଖି ୧୭୪୬ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍‌ମାନେ ମଧ୍ୟ ସିପାହୀ ବାହିନୀ ଗଢ଼ିବାକୁ ଆରମ୍ଭ କରି ଦେଇଥିଲେ ।

ଅଷ୍ଟ୍ରିୟାର ଉତ୍ତରାଧିକାର ଘେନି ୧୭୪୪ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ଓ ଫରାସୀମାନଙ୍କ ମଧ୍ୟରେ ଆନୁଷ୍ଠାନିକ ଭାବେ ଯୁଦ୍ଧ ଘୋଷଣା ହୋଇଥିଲା । ଭାରତରେ ମଧ୍ୟ ଏହି ଯୁଦ୍ଧ ଲାଗିଗଲା ଏବଂ ଲାବର୍ଦୋନେଙ୍କ ନେତୃତ୍ୱରେ ଏକ ଫରାସୀ ନୌବାହିନୀ ପଣ୍ଡିଚେରୀରେ ଆସି ପହଞ୍ଚିଲା ।

ଦୁପ୍ଲେ ତାଙ୍କ ସିପାହୀମାନଙ୍କୁ ଏହିସବୁ ଜାହାଜ ସାହାଯ୍ୟରେ ପହଞ୍ଚାଇ ଦେଇ କ୍ଷଣି ଲାବର୍ଦୋନେ ମାଡ୍ରାଜ ସହରଟିକୁ ଦଖଲ କରିନେଲେ । କିନ୍ତୁ ଅଧିକୃତ ମାଡ୍ରାଜକୁ ଘେନି ଅବିଳମ୍ବେ

ବୁର୍ଦ୍ଧୋଁ ଦୁପ୍ଲେ ଏବଂ ଅଭିଜାତ ଲାବର୍ଦୋନେଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଦେଲା । ମାଡ୍ରାଜ ବନ୍ଦରରେ ବ୍ୟବହୃତ ଜାହାଜଗୁଡ଼ିକ ତାଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ ଲାବର୍ଦୋନେ ସହରଟିକୁ ତାଙ୍କ ବ୍ୟକ୍ତିଗତ ବିଜୟର ଭେଟି ରୂପେ ବିଗ୍ରହ କରିଥିଲେ ଏବଂ ଯଥେଷ୍ଟ ଅର୍ଥର ବିନିମୟରେ ଏହା ବ୍ରିଟିଶ୍‌ମାନଙ୍କୁ ଫେରେଇ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଭାରତବର୍ଷରୁ ଚିରକାଳ ପାଇଁ ବ୍ରିଟିଶ୍ ପ୍ରଭାବକୁ ମୂଳପୋଛ କରି ଦେବା ଉଦ୍ଦେଶ୍ୟରେ ଦୁପ୍ଲେ ବନ୍ଦରଟିକୁ ନିଶ୍ଚିହ୍ନ କରି ଦେବାକୁ ଚାହିଁଥିଲେ ।

ଏହି ମତପାର୍ଥକ୍ୟ ହେତୁ ଲାବର୍ଦୋନେ ତାଙ୍କ ଜାହାଜଗୁଡ଼ିକୁ ଭାରତରୁ ପ୍ରତ୍ୟାହାର କରି ନେଲେ । ଜାହାଜ ଅଭାବରୁ ଅବରୁଦ୍ଧ ଅବସ୍ଥାରେ ଦୁପ୍ଲେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଫଳପ୍ରଦ ଆକ୍ରମଣ ଚଳାଇବାକୁ ବ୍ୟର୍ଥ ହୋଇଥିଲେ ।

୧୭୪୮ ଖ୍ରୀଷ୍ଟାବ୍ଦରେ ଆୟ-ଲା-ସ୍ୟାପେଲି ଚୁକ୍ତି ଅନୁଯାୟୀ ୟୁରୋପରେ କେତେକ ସୁବିଧା ବିନିମୟରେ ଫରାସୀ ସରକାର ଅକ୍ଷତ ଅବସ୍ଥାରେ ମାଡ୍ରାଜକୁ ବ୍ରିଟିଶ୍‌ମାନଙ୍କୁ ପ୍ରତ୍ୟାର୍ପଣ କରିଥିଲେ । ୟୁରୋପରେ ଶାନ୍ତି ପ୍ରତିଷ୍ଠା ସତ୍ତ୍ୱେ ଏହାର ପରବର୍ଷ ଭାରତର ବ୍ରିଟିଶ୍ ଓ ଫରାସୀ କଂପାନିଗୁଡ଼ିକ ମଧ୍ୟରେ ଲଢ଼ାଇ ଲାଗିଗଲେ ଏହି ଚୁକ୍ତିର ଫଳାଫଳଗୁଡ଼ିକ ସେତେବେଳେ ମୂର୍ତ୍ତିମନ୍ତ ହୋଇ ପ୍ରକାଶ ପାଇଲା ।

୧୭୪୮ ଖ୍ରୀଷ୍ଟାବ୍ଦରେ ଆସଫ୍ ଜାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱୟ, ନାସିର ଜଙ୍ଗ୍ ଏବଂ ମୁଜଫ୍‌ଫର ଜଙ୍ଗ୍‌ଙ୍କ ମଧ୍ୟରେ ସିଂହାସନ ନେଇ ଲଢ଼େଇ ଲାଗିଗଲା ଏବଂ ଦୁପ୍ଲେ ଏଥିରେ ଯୋଗ ଦେଲେ । ଚନ୍ଦ ସାହେବ ନାମକ ମୁଜଫ୍‌ଫର ଜଙ୍ଗ୍‌ର ଜଣେ ଆତ୍ମୀୟ ପଣ୍ଡିଚେରୀରୁ ୫୦୦ ଫରାସୀ ଓ ୨୦୦୦ ସିପାହୀଙ୍କର ଏକ ଦଳକୁ ନେଇ ତାଙ୍କ ସାହାଯ୍ୟରେ ଆଗେଇ ଆସିଥିଲେ । ମୁଜଫ୍‌ଫର ତା'ପରେ ସିଂହାସନ ଲାଭ କରିଥିଲେ ଏବଂ ଚନ୍ଦ ସାହେବ କରଦରାଜ୍ୟ ଆର୍କଟର ନବାବ ହେଲେ । ଏହି ଭାବେ ଦାକ୍ଷିଣାତ୍ୟର ସଂପୂର୍ଣ୍ଣ ଦକ୍ଷିଣ-ପୂର୍ବାଞ୍ଚଳ ଫରାସୀମାନଙ୍କ ପ୍ରଭାବକୁ ଆସିଥିଲା ।

ବ୍ରିଟିଶ୍‌ମାନେ ଜାଣି ପାରିଲେ ଭାରତରେ ତାଙ୍କର ସ୍ୱାର୍ଥ ବିପଦାପନ୍ନ ହୋଇଛି । ତେଣୁ ସେମାନେ ଯୁଦ୍ଧରେ ଅଂଶଗ୍ରହଣ କରି ହାୟଦରାବାଦରେ ନାସିର ଜଙ୍ଗ୍‌କୁ ଏବଂ ଆର୍କଟରେ ମହମ୍ମଦ ଅଲୀଙ୍କୁ (ପୂର୍ବତନ ନବାବଙ୍କ ପୁତ୍ର) ସାହାଯ୍ୟ କଲେ । ବିଦ୍ରୋହୀ ସାମନ୍ତମାନଙ୍କ ହାତରେ ମୁଜଫ୍‌ଫର ଜଙ୍ଗ୍ ନିହତ ହେଲେ । ହାୟଦରାବାଦରେ ଫରାସୀ ବାହିନୀର ସେନାପତି ବୁସି ସେତେବେଳେ ନାସିର ଜଙ୍ଗ୍‌ର ଏକ ନାବାଳକ ପୁତ୍ରଙ୍କୁ (ହତ୍ୟାକାରୀମାନଙ୍କ ହାତରେ ଏହା ପରେ ନିହତ) ସିଂହାସନରେ ବସାଇଥିଲେ ଏବଂ ହାୟଦରାବାଦକୁ ଫରାସୀମାନଙ୍କ ସହିତ ଏକ ତଥାକଥିତ ଅଧୀନତାମୂଳକ ଚୁକ୍ତିରେ ସ୍ୱାକ୍ଷର କରିବାକୁ ବାଧ୍ୟ କରିଥିଲେ । ଏହି ଚୁକ୍ତି ଅନୁଯାୟୀ ନିଜାମ (ହାୟଦରାବାଦର ଶାସକ) ଫରାସୀ ସୈନ୍ୟମାନଙ୍କର ଭରଣପୋଷଣ ପାଇଁ (ଅଥବା ତତ୍କାଳୀନ ପରିଭାଷା ଅନୁଯାୟୀ "ଭର୍ତ୍ତୁକି ପାଇଁ") କରମଣ୍ଡଳ ଉପକୂଳର ଚାରୋଟି ସମୃଦ୍ଧ ଜିଲ୍ଲାକୁ (ଶେଷରେ ଉତ୍ତରର ସରକାର ବା ପ୍ରଦେଶ ହିସାବରେ ଖ୍ୟାତ) ସେମାନଙ୍କୁ ହସ୍ତାନ୍ତର କରିଥିଲେ । (ପରବର୍ତ୍ତୀ ସମୟରେ ବ୍ରିଟିଶ୍ ଔପନିବେଶିକମାନେ ଭାରତରେ ରାଜନୈତିକ ଅଧିକାର ପ୍ରତିଷ୍ଠା କରିବା ପାଇଁ ଏହି ଭଳି ଅଧୀନତାମୂଳକ ଚୁକ୍ତିକୁ ହତିଆର ରୂପେ ବ୍ୟବହାର କରିଥିଲେ । ବ୍ରିଟିଶ୍ ଶାସକମାନେ ସେମାନଙ୍କ ଅଞ୍ଚଳର ଭାରତୀୟ ଜନସାଧାରଣଙ୍କ ଉପରେ ଦୁର୍ବହ କରବୋଝ ଚପେଇ ଦେଇ ସେମାନଙ୍କୁ ଧ୍ୱଂସ

କରି ଦେଉଥିଲେ ଏବଂ ଭାରତୀୟ ଶାସକମାନଙ୍କ ସାହାଯ୍ୟରେ ବ୍ୟବହୃତ ସେମାନଙ୍କ ସୈନ୍ୟଦଳର ବ୍ୟୟ ନିର୍ବାହ ପାଇଁ ଅଧିକ ପରିମାଣର ଜମି ଦାବି କରୁଥିଲେ ।) ଏହି ଭାବେ ଫରାସୀମାନେ ଦାକ୍ଷିଣାତ୍ୟରେ ଆଉ ଥରେ ସେମାନଙ୍କ ଅବସ୍ଥାନକୁ ଦୃଢ଼ କରିବାକୁ ସମର୍ଥ ହୋଇଥିଲେ ।

"ଦକ୍ଷିଣ ଭାରତର ଗୃହିକାଠି" ସ୍ୱରୂପ ତ୍ରିଚିନାପଲ୍ଲୀର ଶକ୍ତିଶାଳୀ ଦୁର୍ଗଟି କେବଳ ସେତେବେଳେ ବ୍ରିଟିଶ୍‌ମାନଙ୍କର ଆଶ୍ରିତ ମହମ୍ମଦ ଅଲୀଙ୍କ ଦଖଲରେ ଥିଲା । ବାରମ୍ବାର ଚେଷ୍ଟା କରି ଡୁପ୍ଲେ ଏହାକୁ ଦଖଲ କରି ପାରି ନଥିଲେ । ତ୍ରିଚିନାପଲ୍ଲୀ ସେ ଅବରୋଧ କରିଥିଲେ ଏବଂ ଏହା ବ୍ୟର୍ଥ ହୋଇଥିଲା । ଫରାସୀମାନଙ୍କ ଆଶ୍ରିତ ଚାନ୍ଦ ସାହେବ ନିହତ ହୋଇଥିଲେ ।

ନିଜ ସୈନ୍ୟବାହିନୀକୁ ପୋଷଣ କଲା ଭଳି ଯଥେଷ୍ଟ ପାଣ୍ଠି ବୁସିଙ୍କର ନଥିଲା । ଯୁଦ୍ଧବିଗ୍ରହ ପାଇଁ ବସ୍ତୁତଃ କୌଣସି ପଣ୍ୟ ଫ୍ରାନ୍ସକୁ ଯାଉ ନଥିଲା ଏବଂ ଲାଭ ବଦଳରେ ଭାରତ ଫରାସୀମାନଙ୍କ ପକ୍ଷରେ ଲୋକସାନର କାରଣ ହୋଇ ଉଠିଥିଲା । ସେଥି ପାଇଁ କଂପାନିର ଅଂଶୀଦାରମାନେ ଯୁଦ୍ଧ ବନ୍ଦ କରିବାକୁ ଦାବି କରୁଥିଲେ । ତା'ଛଡ଼ା ଫରାସୀ ସରକାର ଆଶା କରୁଥିଲେ ଯେ, ଏହି ଯୁଦ୍ଧ ବିରତି ସହ ଭାରତରେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ପ୍ରଦତ୍ତ ସୁବିଧାରାଜି ୟୁରୋପରେ ଏହି ଦୁଇ ଶକ୍ତି ମଧ୍ୟରେ ଶାନ୍ତିକୁ ସୁନିଶ୍ଚିତ କରିବାରେ ସହାୟକ ହେବ । ଏହି ଉଦ୍ଦେଶ୍ୟରେ କଂପାନିର ଅନ୍ୟତମ ପରିଚାଳକ ଗଁଦେ ଭାରତବର୍ଷକୁ ଯାଇଥିଲେ । ବ୍ରିଟିଶ୍‌ମାନଙ୍କର ସମସ୍ତ ଦାବି ପୂରଣ କରିବା ସାଥେ ସାଥେ ସେ ସେମାନଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କରିଥିଲେ । ଏହା ଫଳରେ ମହମ୍ମଦ ଅଲୀଙ୍କୁ (୧୭୫୪-୧୭୯୫) କର୍ଣ୍ଣାଟକ ଫେରସ୍ତ ଦିଆଗଲା, ଉତ୍ତରର ସରକାରଗୁଡ଼ିକ ଠାରୁ ଫରାସୀମାନେ ଦାବି ପ୍ରତ୍ୟାହାର କରି ନେଲେ ଏବଂ ଡୁପ୍ଲେ ଫ୍ରାନ୍ସକୁ ଫେରି ଗଲେ । ଏହା ପରେ ଫରାସୀ ସରକାର ଭାରତରେ ସେମାନଙ୍କର ସମସ୍ତ ବିଡ଼ମ୍ବନା ପାଇଁ ଡୁପ୍ଲେ ଓ ଲବର୍ଦୋନେଙ୍କୁ ଦୋଷୀ କରିଥିଲେ । ଲବର୍ଦୋନେ କିଛି ବର୍ଷ ଜେଲ ମଧ୍ୟରେ ଅତିବାହିତ କଲେ ଏବଂ ଡୁପ୍ଲେ ତାଙ୍କର ସମସ୍ତ ଅର୍ଥ ହରେଇ ୧୭୬୩ରେ ଫ୍ରାନ୍ସରେ ମୃତ୍ୟୁବରଣ କଲେ ।

୧୭୫୬ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ପୁଣି ସାତବର୍ଷିଆ ଯୁଦ୍ଧ ଲାଗିଗଲା । ଦୁଇ ଦେଶ ମଧ୍ୟରେ ଏହି ସଂଘର୍ଷ ୟୁରୋପ ସମେତ ଭାରତବର୍ଷକୁ ବ୍ୟାପୀ ଯାଇଥିଲା । ପ୍ରବଳ ବ୍ରିଟିଶ୍ ବିରୋଧୀ ଆୟର୍ଲାଣ୍ଡବାସୀ ଲାଲି-ଟଲେଣ୍ଡାଲ ୧୭୫୮ ଖ୍ରୀଷ୍ଟାବ୍ଦରେ ଦଳେ ସୈନ୍ୟ ଧରି ଭାରତକୁ ଆସିଲେ । କିନ୍ତୁ, ଇତିମଧ୍ୟରେ ବ୍ରିଟିଶ୍‌ମାନେ ପୂର୍ବ ଉପକୂଳରେ କେବଳ ସେମାନଙ୍କ ଅବସ୍ଥାନକୁ ଦୃଢ଼ କରି ନଥିଲେ, ୧୭୫୭ ଖ୍ରୀଷ୍ଟାବ୍ଦରେ ବଙ୍ଗଳାକୁ ଦଖଲ କରି ନେଲେ । ଏଥର ସେଠାରୁ ମାନ୍ଦ୍ରାଜକୁ ଅର୍ଥ ଓ ସୈନ୍ୟ ଆସିବାକୁ ଲାଗିଲା । ଅର୍ଥାତ୍, ବର୍ତ୍ତମାନ ପରିସ୍ଥିତି ଆଉ ଫ୍ରାନ୍ସର ଅନୁକୂଳରେ ରହିଲା ନାହିଁ । ତା ସତ୍ତ୍ୱେ ଲାଲି ବ୍ରିଟିଶ୍‌ମାନଙ୍କର ଶକ୍ତ ଘାଟି ମାନ୍ଦ୍ରାଜ ନିକଟବର୍ତ୍ତୀ ସେଣ୍ଟ୍ ଡେଭିଡ୍ ଦୁର୍ଗ ଦଖଲ କଲା ପରେ ବ୍ରିଟିଶ୍ ବସତିର ରକ୍ଷାପ୍ରାଚୀର ମାନ୍ଦ୍ରାଜକୁ ଅବରୋଧ କଲେ । ଏଠାରେ ସର୍ବଶକ୍ତି ନିୟୋଗ କରିବା ଉଦ୍ଦେଶ୍ୟରେ ଲାଲି ହାଇଦରାବାଦରୁ ବୁସିଙ୍କୁ ଡାକେଇ ପଠାଇଲେ ଏବଂ ଫଳରେ ତତ୍‌କ୍ଷଣାତ୍ ହାଇଦରାବାଦ ବ୍ରିଟିଶ୍‌ମାନଙ୍କର ହସ୍ତଗତ ହେଲା ।

ଲାଲି ଥିଲେ ସତ୍, ଅସହିଷ୍ଣୁ ଓ ରୁକ୍ଷ ଲୋକ । ଫରାସୀ ନୌବହରର ସେନାପତିଙ୍କ ସହିତ ତାଙ୍କର ମନୋମାଳିନ୍ୟ ଫଳରେ ସେନାପତି ଭାରତରୁ ତାଙ୍କର ସମସ୍ତ ଜାହାଜକୁ ପ୍ରତ୍ୟାହାର କରି ନେଲେ । ଲାଲି ତା'ପରେ ପଣ୍ଡିଚେରୀର ପରିଚାଳକ ମଣ୍ଡଳୀଙ୍କ ସହିତ କଳହ ସୃଷ୍ଟି କରି ଦେଲେ ଏବଂ

ସେମାନେ ମାନ୍ଦ୍ରାଜ ଅବରୋଧକାରୀ ଫରାସୀ ସୈନ୍ୟମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଣ ବନ୍ଦ କରି ଦେଲେ । ଲାଲି ଭାରତୀୟମାନଙ୍କୁ ଘୃଣା କରୁଥିଲେ ଏବଂ ଭାରୀ କମାଣଗୁଡ଼ିକୁ ଟାଣି ଟାଣି ଆଣିବା ପାଇଁ ଜାତିବର୍ଣ୍ଣ ନିର୍ବିଶେଷରେ ପଣ୍ଡିଚେରୀର ସମସ୍ତ ଭାରତୀୟମାନଙ୍କ ଉପରେ ଚାବୁକ ପିଟୁଥିଲେ ।

୧୭୫୯ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜରେ ଏକ ଇଂରେଜ ସୈନ୍ୟଦଳ ପହଞ୍ଚିଲା ପରେ ଲାଲି ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ ହେଲେ । ଓ୍ୱାଣ୍ଡିଓ୍ୱାଶ୍ ଠାରେ ଅନୁଷ୍ଠିତ ଦୁଇଟି ଯୁଦ୍ଧରେ ବ୍ରିଟିଶ୍‌ମାନେ ଲାଲିଙ୍କ ସୈନ୍ୟଦଳକୁ ବିଧ୍ୱସ୍ତ କରି ଦେଲେ ଏବଂ ବୁସି ବନ୍ଦୀ ହେଲେ । ତା'ପରେ ପଣ୍ଡିଚେରୀ ଅବରୁଦ୍ଧ ହେଲା ଏବଂ ବର୍ଷକ ପରେ ଦାରୁଣ କ୍ଷୁଧା ମଧ୍ୟରେ ଆତ୍ମସମର୍ପଣ କଲା । ପଣ୍ଡିଚେରୀର ଦୁର୍ଗଗୁଡ଼ିକୁ ଧୂଳିସାତ୍ କରି ଦିଆଗଲା । ଲାଲି ଫ୍ରାନ୍‌ସକୁ ପ୍ରତ୍ୟାବର୍ତ୍ତନ କଲା କ୍ଷଣି ଫରାସୀ ସରକାର ଭାରତରେ ସେମାନଙ୍କ ପରାଜୟ ପାଇଁ ତାଙ୍କୁ ଦୋଷୀ ସାବ୍ୟସ୍ତ କଲେ ଏବଂ ତାଙ୍କୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଗଲା ।

ପ୍ୟାରିସ୍ ଚୁକ୍ତି ଅନୁଯାୟୀ ଫରାସୀମାନେ ସେମାନଙ୍କର ପୂର୍ବତନ ଅଧିକାରଭୁକ୍ତ ମାତ୍ର ପାଞ୍ଚଟି ସହର ଫେରି ପାଇଥିଲେ । ଏହା ପରେ ଫ୍ରାନ୍‌ସ ପୁଣି ଭାରତ ସହିତ ବାଣିଜ୍ୟିକ ସଂପର୍କ ଗଢ଼ି ତୋଳିଥିଲା । କିନ୍ତୁ ଦକ୍ଷିଣ ଭାରତର ବିସ୍ତୀର୍ଣ୍ଣ ଭୂଭାଗଟି ଆଉ କେବେ ସେମାନଙ୍କ ଦଖଲକୁ ଆସିଲା ନାହିଁ । ଭାରତୀୟ ରାଜନ୍ୟବର୍ଗଙ୍କ ଅଧୀନରେ ଚାକିରୀ କରୁଥିବା ବିକ୍ଷିପ୍ତ ଫରାସୀ ସୈନ୍ୟମାନେ ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବ୍ରିଟିଶ୍‌ମାନଙ୍କ ସହିତ ଯୁଦ୍ଧରତ ଥିଲେ । କେତେକ ବିକ୍ଷିପ୍ତ ସାଫଲ୍ୟ ସତ୍ତ୍ୱେ ଏହିସବୁ ସୈନ୍ୟମାନେ ଭାରତରେ ବ୍ରିଟିଶ୍ ଆଧିପତ୍ୟର କୌଣସି ପରିବର୍ତ୍ତନ ଘଟାଇ ପାରି ନଥିଲେ ।

ଅର୍ଥନୈତିକ ପ୍ରାଧାନ୍ୟ କାରଣରୁ ମୂଳତଃ ବ୍ରିଟିଶ୍‌ମାନେ ଭାରତରେ ଫରାସୀମାନଙ୍କ ଉପରେ ବିଜୟୀ ହୋଇଥିଲେ । ଭାରତସ୍ଥ ଫରାସୀ କଂପାନିର ବହୁ ପ୍ରତିନିଧିଙ୍କ ପ୍ରତିଭା ଓ କାର୍ଯ୍ୟକର ଉଦ୍ୟୋଗ ସତ୍ତ୍ୱେ ଫରାସୀମାନଙ୍କର ପରାଜୟ ଘଟିଥିଲା । ଏହାର କାରଣ ହେଲା, ବ୍ରିଟିଶ୍‌ମାନଙ୍କ ତୁଳନାରେ ସେମାନଙ୍କ ନୌବହର, ସୈନ୍ୟବାହିନୀ ବା ଆର୍ଥିକ ସାମର୍ଥ୍ୟ ଥିଲା ନଗଣ୍ୟ । ତା'ଛଡ଼ା ବ୍ରିଟିଶ୍ ଭଳି ଫରାସୀ ସରକାର ଉପନିବେଶ ସ୍ଥାପନ ଦିଗରେ ସେତେ ଉଦ୍ୟୋଗୀ ନଥିଲେ ।

## ବ୍ରିଟେନ୍ ଦ୍ୱାରା ବଙ୍ଗ ଦଖଲ

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଅର୍ଥନୈତିକ ଦିଗରୁ ବଙ୍ଗ ଦେଶ ଥିଲା ମୋଗଲ ସାମ୍ରାଜ୍ୟର ଉନ୍ନତତମ ଅଞ୍ଚଳଗୁଡ଼ିକ ମଧ୍ୟରୁ ଅନ୍ୟତମ । ମୋଗଲ ସିଂହାସନ ଲାଗି ସାମନ୍ତମାନଙ୍କ ମଧ୍ୟରେ ରାଜନୈତିକ ସଂଘର୍ଷରେ ଏ ଭୂଖଣ୍ଡର କୌଣସି ଭୂମିକା ନଥିଲା । ମୂଳତଃ, ବସ୍ତ୍ରୋତ୍ପାଦନ ହିଁ ଥିଲା ବଙ୍ଗଳାର ସଂପଦର ଭିତ୍ତି । ଏଠାରେ ପଣ୍ୟ-ବନାମ-ମୁଦ୍ରା ସଂପର୍କର ବିକାଶ ଅନେକ ଉନ୍ନତ ସ୍ତରରେ ପହଞ୍ଚିଥିଲା । ଏଠାକାର କୃଷକମାନେ ବିଭିନ୍ନ ଜାତିର ଧାନ, ଆଖୁ ଓ ତୁଳା ଚାଷ କରୁଥିଲେ ଏବଂ ଜମିଦାର ବୋଲି ପରିଚିତ ଭୂସ୍ୱାମୀମାନେ ବେତନ ବିନିମୟରେ ଖଜଣା ଆଦାୟ କରି ରାଜକୋଷରେ ଜମା ଦେଉଥିଲେ । ଏଥି ସହିତ ସେମାନେ ମଧ୍ୟ ବେଶି ପରିମାଣର ଅର୍ଥ ଜମା ଦେବାକୁ ବାଧ୍ୟ ହେଉଥିଲେ । କିନ୍ତୁ ଏହି ବ୍ୟବସ୍ଥାଟି ଦ୍ରୁତ ଏକ ଧରଣର ଖଜଣା ସଂଗ୍ରହର ଇଜାରାଦାରୀରେ ପରିଣତ

ହୋଇଗଲା । ଯେଉଁ ମୁଲକରୁ ଜମିଦାରମାନେ ଖଜଣା ସଂଗ୍ରହ କରୁଥିଲେ, ସେଠାରେ ସେମାନେ ବିବେଚନା, ନୀତି ବା ଆଇନ୍‌କୁ ଖାତିର ନକରି ନିଜର ଶକ୍ତି ପ୍ରୟୋଗ କରିବାକୁ ଲାଗିଲେ । ନିଜର ସଶସ୍ତ୍ର ବାହିନୀ ଦେଇ ସେମାନେ ଖଜଣା ସଂଗ୍ରହ କରୁଥିଲେ, ସ୍ଥାନୀୟ ଜନସାଧାରଣଙ୍କ ବିଗ୍ରହ ଏବଂ ଶାସ୍ତିର ବ୍ୟବସ୍ଥା କରୁଥିଲେ ଏବଂ ସରକାରୀ ଅମଲାମାନଙ୍କୁ ଲାଞ୍ଚ୍‌କୋଚ ଦ୍ୱାରା ବଶୀଭୂତ କରୁଥିଲେ । ଏଥି ସାଥେ ସାଥେ ଜମିଦାର ଏବଂ ଖଜଣା ଇଜାରାଦାରମାନେ ବଙ୍ଗଳାର ପ୍ରଥମ ନବାବ ମୁର୍ଶିଦ୍ କୁଲି ଖାଁଙ୍କ ଉପରେ ନିର୍ଭର କରୁଥିଲେ । ଜନୈକ ବଙ୍ଗ ଇତିବୃତ୍ତକାରଙ୍କ ଅନୁଯାୟୀ, ଖଜଣା ବାକି ପଡ଼ିଲେ, ସେ ଏପରିକି ମୁର୍ଶିଦାବାଦରେ ଥିବା "ଅଳିଆଭରା" ବିଶେଷ ଭାବେ ଖୋଦିତ କୂଅ ମଧ୍ୟରେ ସେମାନଙ୍କୁ ବନ୍ଦୀ କରି ରଖୁଥିଲେ ।

ମୁର୍ଶିଦ୍ କୁଲି ଖାଁଙ୍କ ଉତ୍ତରାଧିକାରୀମାନଙ୍କର ଶାସନ କାଳରେ ବଙ୍ଗଳାର ଜମିଦାରମାନେ ଆଉରି ସ୍ୱାଧୀନ ହୋଇ ଉଠିଥିଲେ । ସେମାନେ ମଧ୍ୟ ସରକାରଙ୍କ କରସଂଗ୍ରହକାରୀମାନଙ୍କ ଭଳି ପୂରାପୂରି ଭାବେ ଖଜଣା ପରିଶୋଧ କରୁ ନଥିଲେ । ତା'ଛଡ଼ା ନିଜର ଜମିଦାରିରୁ ସଂଗୃହୀତ ଆୟ ସହିତ ନବାବଙ୍କ କୋଷାଗାରକୁ ଦେୟ ଅର୍ଥ ମଧ୍ୟରେ କୌଣସି ସଂଗତି ନଥିଲା । ଅର୍ଥାତ୍, ଜମିଦାରମାନଙ୍କର ଜମିଦାରିର ଖଜଣା ତଥା କର କ୍ରମଶଃ ବିଶୁଦ୍ଧ ସରଳ ଖଜଣାରେ ରୂପାନ୍ତରିତ ହେଉଥିଲା ଏବଂ ଜମିଦାରିଗୁଡ଼ିକ ବଂଶାନୁକ୍ରମିକ ହୋଇଥିବାରୁ ଏସବୁ ବ୍ୟକ୍ତିଗତ ସାମନ୍ତ ସଂପତ୍ତିରେ ପରିଣତ ହୋଇଗଲା ।

ମୋଗଲ ସାମ୍ରାଜ୍ୟ ଠାରୁ ନିଜର ସ୍ୱାଧୀନତାକୁ ଦୃଢ଼ କରିବା ଏବଂ ରାଜସଭାର ବିଳାସ ବାହୁଲ୍ୟକୁ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ବେପରୁଆ ମୁର୍ଶିଦ୍ କୁଲି ଖାଁ ବିପୁଳ ପରିମାଣର ଅର୍ଥାଭାବର ସମ୍ମୁଖୀନ ହୋଇ କେତେ ଥର ତାଙ୍କ କୋଷାଧ୍ୟକ୍ଷ, ଯୋଧପୁରର ଜନୈକ ଧନୀ ମାରଓ୍ୱାଡ଼ିଙ୍କ ନିକଟରୁ ଋଣ ନେବାକୁ ବାଧ୍ୟ ହୋଇଥିଲେ । ବଙ୍ଗଳାରେ ବସବାସ କରିବା ଉଦ୍ଦେଶ୍ୟରେ ଆସିଥିବା ଏହି ବ୍ୟକ୍ତିଙ୍କୁ ମୁର୍ଶିଦ୍ କୁଲି ଖାଁ ମୁଦ୍ରା ତିଆରି କରିବାର ଅଧିକାର ସମେତ କେତେକ ବିଶେଷ ସୁବିଧା ଅର୍ପଣ କରିଥିଲେ ଏବଂ "ଜଗତ୍ ଶେଠ" ଉପାଧିରେ ଭୂଷିତ କରିଥିଲେ । ଜଗତ୍ ଶେଠ ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନି ସହିତ ସହଯୋଗ ଏବଂ ବେଳେ ବେଳେ କଂପାନିକୁ ଋଣ ଦେଲେ ମଧ୍ୟ ବଙ୍ଗଳାରେ ଏମାନଙ୍କ ପ୍ରଭାବ ବୃଦ୍ଧି ସଂପର୍କରେ ଶଙ୍କିତ ଥିଲେ ।

ବଙ୍ଗାଳୀ ବଣିକ ଏବଂ ମହାଜନମାନଙ୍କୁ ମଧ୍ୟସ୍ଥ ହିସାବରେ ବ୍ୟବହାର କରି କଂପାନି ତା'ର ପ୍ରୟୋଜନୀୟ ପଣ୍ୟ – ଶୋରା, କଞ୍ଚା ରେଶମ, ଚିନି, ଅଫିମ, ମସଲା ଏବଂ ସର୍ବୋପରି ତୁଳା ଏବଂ ରେଶମ ବସ୍ତ୍ରାଦି ସଂଗ୍ରହ କରି ନେଉଥିଲା ।

ଅଷ୍ଟାଦଶ ଶତାବ୍ଦୀର ତିରିଶ, ଚାଳିଶ ଓ ପଚାଶ ଦଶକରେ ବିପୁଳ ପରିମାଣର ରପ୍ତାନି ଫଳରେ ତନ୍ତ ଶିଳ୍ପର ବ୍ୟାପକ ପ୍ରସାର ଘଟିଥିଲା । ସମଗ୍ର କୃଷକ ସଂପ୍ରଦାୟ, କେତେକ ସହରର, ବିଶେଷ କରି ଢାକାର ଅଧିକାଂଶ ବାସିନ୍ଦା ଏହି ଭାବେ ତନ୍ତୁବାୟ ପେଶା ଗ୍ରହଣ କରିଥିଲେ । କଂପାନିର ଅମଲମାନେ ମଧ୍ୟ ଅବଶେଷରେ ଆଭ୍ୟନ୍ତରୀଣ ବାଣିଜ୍ୟର ଅଂଶୀଦାର ହୋଇ ପଡ଼ିଥିଲେ । ବେଳେ ବେଳେ ସେମାନେ ଗୋଟିଏ ବାଣିଜ୍ୟ କେନ୍ଦ୍ରରୁ ଅନ୍ୟ ବାଣିଜ୍ୟ କେନ୍ଦ୍ରକୁ ପଣ୍ୟ ସରବରାହ କରିବାର ବାହାନାରେ ବିନା ଶୁଳ୍କରେ ନିଜ ପଣ୍ୟାଦି ପଠାଇ ଦେଉଥିଲେ ।

୧୭୫୬ ଖ୍ରୀଷ୍ଟାବ୍ଦରେ ବଙ୍ଗଳାରେ ଉତ୍ତରାଧିକାର ଘେନି ସଂଘର୍ଷ ଘଟିଲା । ଶେଷକୁ ତରୁଣ

ନବାବ ସିରାଜ ଉଦ୍ଦୌଲ୍ଲ ବଙ୍ଗଳାର ସିଂହାସନ ଲାଭ କଲେ । ଏହି ଯୁଦ୍ଧରେ ପରାଜିତ ଜନୈକ ଅଭିଜାତ କଲିକତାରେ ବ୍ରିଟିଶ୍‌ମାନଙ୍କ ଆଶ୍ରୟ ପ୍ରାର୍ଥୀ ହେଲେ । ତାଙ୍କୁ ନବାବଙ୍କ ନିକଟରେ ପ୍ରତ୍ୟାର୍ପଣ କରିବାକୁ ବ୍ରିଟିଶ୍‌ମାନେ ଅସ୍ୱୀକାର କରିବାରୁ ସିରାଜ ଉଦ୍ଦୌଲ୍ଲ ପ୍ରଥମେ କାଶିମବଜାର ଓ ପରେ କଲିକତା ହଠାତ୍ ଆକ୍ରମଣ କରି ଦଖଲ କରି ନେଲେ ।

ଏହା ପରେ ଦକ୍ଷିଣ ଭାରତରେ ଫରାସୀମାନଙ୍କ ସହିତ ଲଢ଼େଇରେ ଖ୍ୟାତି ଲାଭ କରିଥିବା ଦୁଇଜଣ ବ୍ରିଟିଶ୍ ସେନାପତି କ୍ୟାପ୍‌ଟେନ୍ କ୍ଲାଇଭ୍ ଏବଂ ଏଡମିରାଲ ଓ୍ୱାଟ୍‌ସନ୍‌ଙ୍କ ନେତୃତ୍ୱରେ ଦଳେ ସୈନ୍ୟଙ୍କୁ ଜାହାଜ ଯୋଗେ ମାନ୍ଦ୍ରାଜରୁ ବଙ୍ଗଳାକୁ ପଠାଗଲା । କ୍ଲାଇଭ୍ ଭାରତୀୟ ମହାଜନ ଜଗତ୍ ଶେଠ ଓ ଅମିଚାନ୍ଦଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ ଏବଂ ଏମାନଙ୍କ ମାଧ୍ୟମରେ ନବାବଙ୍କ ପ୍ରଧାନ ସେନାପତି ମୀର୍ ଜାଫରଙ୍କ ସାହାଯ୍ୟ ଗ୍ରହିଥିଲେ ଏବଂ ବ୍ରିଟିଶ୍‌ମାନେ ଜୟୀ ହେଲେ, ତାଙ୍କୁ ବଙ୍ଗଳାର ସିଂହାସନରେ ବସେଇବାକୁ ଆଶ୍ୱାସନା ଦେଇଥିଲେ । ୧୭୫୭ ଖ୍ରୀଷ୍ଟାବ୍ଦ ଜୁନ୍ ୨୩ ତାରିଖରେ ପଲାସୀ କ୍ଷେତ୍ରରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ମୀର୍ ଜାଫରଙ୍କ ବିଶ୍ୱାସଘାତକତା ଫଳରେ କ୍ଲାଇଭ୍‌ଙ୍କ ତିନି ହଜାର ସୈନ୍ୟଙ୍କ ଦ୍ୱାରା (ଏମାନଙ୍କ ମଧ୍ୟରୁ ପ୍ରାୟ ୮୦୦ ଜଣ ୟୁରୋପୀୟ) ୧୮ ହଜାର ଅଶ୍ୱାରୋହୀ ଓ ୫୦ ହଜାର ପଦାତିକ ସୈନ୍ୟ ନେଇ ଗଠିତ ନବାବଙ୍କର ବିରାଟ ସୈନ୍ୟବାହିନୀ ପରାଜିତ ହୋଇଥିଲା । ଏହି ଦିବସଟି ବ୍ରିଟିଶ୍‌ମାନଙ୍କ ପକ୍ଷରେ ସେମାନଙ୍କ ଭାରତ ବିଜୟ ଦିବସ ରୂପେ ଖ୍ୟାତ ହୋଇ ଆସିଛି ।

ଜୟ ଲାଭ କଲା ପରେ ଅବିଳମ୍ବେ ବ୍ରିଟିଶ୍‌ମାନେ ନବାବଙ୍କ ନିକଟରୁ ବିରାଟ ପରିମାଣର (ପ୍ରାୟ ଏକ ଲକ୍ଷ ଅଶି ପାଉଣ୍ଡ) କ୍ଷତି ପୂରଣ ଦାବୀ କରିଥିଲେ । ସମ୍ଭବତଃ, ଏହି ପରିମାଣଟା କଲିକତାବାସୀଙ୍କର ଅସ୍ଥାବର ସଂପତ୍ତିର ମୋଟ ମୂଲ୍ୟ ଠାରୁ ଅଧିକ ଥିଲା । ସ୍ଥାନୀୟ ବାସିନ୍ଦାମାନଙ୍କର ପ୍ରତିରୋଧ ଏବଂ ଦିଲ୍ଲୀର ନବାବଙ୍କ କର୍ତ୍ତୃକ ଅଯୋଧ୍ୟାର ଶାସକଙ୍କ ସହଯୋଗିତାରେ ଦୁଇଥର ବିହାର ଦଖଲ କରିବାର (୧୭୫୯ ଓ ୧୭୬୦) ଉଦ୍ୟମ ବ୍ରିଟିଶ୍‌ମାନଙ୍କୁ ଏକ ଆଳ ଯୋଗାଇ ଦେଇଥିଲା ନବାବଙ୍କ ନିକଟରୁ ଅର୍ଥ ଆଦାୟ କରିବା ପାଇଁ । ହେନ୍‌ରି ଭ୍ୟାନ୍‌ସିଟାର୍ଟ ୧୭୬୦ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଗଭର୍ଣ୍ଣର ନିଯୁକ୍ତ ହେବା ଦ୍ୱାରା ମୀର୍ ଜାଫର ପଦଚ୍ୟୁତ ହେଲେ ଏବଂ ତାଙ୍କ ସ୍ଥାନରେ ତାଙ୍କ ଜାମାତା ମୀର୍ କାଶିମ୍ ନବାବ ପଦ ଲାଭ କଲେ । ଏଥି ପାଇଁ ମୀର୍ କାଶିମ୍ ବଙ୍ଗଳାର ଗଭର୍ଣ୍ଣର ଓ ତାଙ୍କ ପରିଷଦକୁ ୨ ଲକ୍ଷ ପାଉଣ୍ଡ ଦାନ କରିଥିଲେ ଏବଂ ଦେଶର ସମୃଦ୍ଧତମ ତିନୋଟି ଅଞ୍ଚଳ ବର୍ଦ୍ଧମାନ, ମେଦିନପୁର ଏବଂ ଚଟ୍ଟଗ୍ରାମ କଂପାନିକୁ ହସ୍ତାନ୍ତର କରିବାକୁ ବାଧ୍ୟ ହୋଇଥିଲେ । ଫଳତଃ ମୀର୍ କାଶିମ୍ ଅର୍ଦ୍ଧେକ ରାଜସ୍ୱରୁ ବଞ୍ଚିତ ହେଲେ ଏବଂ କଂପାନି ଓ କଂପାନିର କେତେକ ସଦସ୍ୟଙ୍କ ନିକଟରେ ତାଙ୍କ ଋଣର ପରିମାଣ ବୃଦ୍ଧି ପାଇବାକୁ ଲାଗିଲା ।

ବିଜୟୀ ଇଂରେଜମାନଙ୍କ ଦ୍ୱାରା ଭାରତୀୟ ସାମନ୍ତ ଭୂସ୍ୱାମୀମାନଙ୍କୁ ଏହି ଭାବେ ପ୍ରକାଶ୍ୟ ଲୁଣ୍ଠନ କରିବାର ପରିଣତ ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହା ପରେ ବ୍ରିଟେନ୍‌କୁ ଭାରତୀୟ ସଂପଦର ନିର୍ଲଜ୍ଜ ଭାବେ ରପ୍ତାନି ଆରମ୍ଭ ହୋଇଥିଲା । ଭାରତୀୟ ଅର୍ଥନୀତିଜ୍ଞମାନଙ୍କ ହିସାବ ଅନୁଯାୟୀ ୧୭୫୭ରୁ ୧୭୮୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଇଂରେଜମାନେ ଭାରତରୁ ପଣ୍ୟ ଓ ଅର୍ଥ ସହ ୩ କୋଟି ୮୦ ଲକ୍ଷ ପାଉଣ୍ଡର ସଂପଦ ସ୍ୱଦେଶକୁ ପଠାଇଥିଲେ । ଶାସନ କ୍ଷମତାସୀନ ଭାରତୀୟ ସାମନ୍ତ ଶ୍ରେଣୀର ବଳ ଓ ବିତ୍ତ ହାନି ଘଟିବା ଫଳରେ ସେତେବେଳେ ଦେଶର ଅର୍ଥନୈତିକ ଜୀବନରେ କେତେକ ପୁନର୍ଗଠନର

ସୂଚନା ଦେଖା ଦେଇଥିଲା । ୧୭୬୦ ଦଶକର ମଧ୍ୟ ଭାଗରେ ନବାବଙ୍କ ରାଜସଭା ଓ ସାମନ୍ତମାନଙ୍କ ବିଳାସୀ ପରିଷଦବର୍ଗଙ୍କ କ୍ରମଶଃ ବିଲୁପ୍ତି ଘଟିବା ଫଳରେ ଏବଂ ତତ୍କାଳୀନ ଜାଏଗିରଦାରମାନଙ୍କର ଅଶ୍ୱାରୋହୀ ବାହିନୀ ଅନାବଶ୍ୟକ ହୋଇ ପଡ଼ିବା ଫଳରେ ଏମାନଙ୍କ ଗ୍ରହିବାନୁଯାୟୀ ପଣ୍ୟ ଉତ୍ପାଦନରେ ମାନ୍ଦା ଦେଖାଦେଲା । ଏକଦା ଅତି ମହାର୍ଘ୍ୟ ସୂକ୍ଷ୍ମତମ ଧରଣର ବସ୍ତ୍ରୋତ୍ପାଦନ ପାଇଁ ଖ୍ୟାତି ଲାଭ କରିଥିବା ଢାକାର ସମୃଦ୍ଧିର ମଧ୍ୟ ଅବସାନ ଘଟିଥିଲା । କୁଟୀର ଶିଳ୍ପର ଏହି ମାନ୍ଦା ଫଳରେ କାରିଗରମାନଙ୍କ ମଧ୍ୟରେ ବ୍ୟାପକ ଦାରିଦ୍ର୍ୟ ଦେଖାଦେଲା । ଏହା ପରେ ଏମାନେ ଫେରି ଯାଇଥିଲେ ଗ୍ରାମକୁ ଏବଂ ନିଜର ଓ ପରିବାରର ଭରଣପୋଷଣ ପାଇଁ ଯେକୌଣସି ସର୍ତ୍ତରେ କୃଷି ଜମି ଭାଗ ନେବାକୁ ବାଧ୍ୟ ହେଲେ । ଶସ୍ତା ଦାମ୍‌ରେ ବସ୍ତ୍ରାଦି ଉତ୍ପାଦନରତ ତନ୍ତୁବାୟମାନଙ୍କ ଅବସ୍ଥାର କ୍ରମାବନତି ଘଟିଥିଲା । ବଙ୍ଗ ବିଜୟର ଅବ୍ୟବହିତ ପୂର୍ବରୁ କଂପାନି ମଧ୍ୟସ୍ଥ ହିସାବରେ ଭାରତୀୟ ବ୍ୟବସାୟୀମାନଙ୍କ ସାହାଯ୍ୟ ନନେଇ ନିଜସ୍ୱ ଦଲାଲ ବା ଗୁମାସ୍ତାମାନଙ୍କ ମାଧ୍ୟମରେ ତନ୍ତୁବାୟମାନଙ୍କ ସହିତ ସିଧାସଳଖ ସଂପର୍କ ସ୍ଥାପନର ସିଦ୍ଧାନ୍ତ ନେଲା । ବଙ୍ଗ ବିଜୟ ପରେ ଗୁମାସ୍ତାମାନେ ଭାରତୀୟ ବ୍ୟବସାୟୀମାନେ ଦେଉଥିବା ମୂଲ୍ୟର ୨୦ରୁ ୩୦ ଭାଗ କମ୍ ଦରରେ କାରିଗରମାନଙ୍କୁ ବସ୍ତ୍ର ବିକ୍ରୟ କରିବାକୁ ବାଧ୍ୟ କରିଥିଲେ । ଏଥି ସଙ୍ଗେ ସଙ୍ଗେ ଦାଦନ ନେବାକୁ ଏବଂ ସମସ୍ତ ବସ୍ତ୍ର ସେମାନଙ୍କୁ ବିକ୍ରି କରିବାକୁ ମଧ୍ୟ ବାଧ୍ୟ କଲେ । ଏହି ଭାବେ ଗୁମାସ୍ତାମାନେ କାରିଗରମାନଙ୍କ ଉପରେ ପ୍ରବଳ କ୍ଷମତାଶାଳୀ ହୋଇ ଉଠିଥିଲେ ।

ପଲାସୀ ବିଜୟ ପରେ କଂପାନିର କର୍ମଚାରୀମାନେ ବ୍ୟକ୍ତିଗତ ଧନଦୌଲତ ଉପାର୍ଜନ କରିବାରେ ମନୋଯୋଗୀ ହୋଇ ପଡ଼ିଥିଲେ ଏବଂ ସ୍ଥାନୀୟ ବ୍ୟବସାୟୀ ଓ ୟୁରୋପୀୟ ଏକକ ବଣିକମାନଙ୍କ ସମେତ ସମସ୍ତ ପ୍ରତିଦ୍ୱନ୍ଦ୍ୱିମାନଙ୍କୁ ଉତ୍‌ଖାତ କରିବା ଦିଗରେ ବିଜୟୀର ସୁବିଧାଗୁଡ଼ିକୁ ବ୍ୟବହାର କରିବାରେ ଲାଗିଲେ । କଂପାନି ତା'ର ସ୍ୱଳ୍ପ ବେତନଭୋଗୀ କର୍ମଚାରୀମାନଙ୍କୁ ସର୍ବଦା ନେଣ ଦେଣ କରିବାର ସୁବିଧା ଦେଉଥିଲା । ୧୭୧୭ ଖ୍ରୀଷ୍ଟାବ୍ଦରେ ମୋଗଲ ଶାସକଙ୍କ କର୍ତ୍ତୃକ ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନିକୁ ପ୍ରଦତ୍ତ ଶୁଳ୍କହୀନ ଅବାଧ ବାଣିଜ୍ୟର ଏକକ ଅଧିକାର ଆଢ଼ୁଆଳରେ କଂପାନିର କର୍ମଚାରୀମାନେ ଦେଶର ଅଭ୍ୟନ୍ତରରେ ମଧ୍ୟ ଶୁଳ୍କହୀନ ବାଣିଜ୍ୟ ଚଳାଉଥିଲେ । ତା'ପରେ ଯେଉଁ ଦାସ୍ତାକ ବା ସାର୍ଟିଫିକେଟ ମାଧ୍ୟମରେ ଇଷ୍ଟ ଇଣ୍ଡିଆ କଂପାନି ବିନା ଶୁଳ୍କରେ ପଣ୍ୟ ପଠାଉଥିଲା, ସେସବୁକୁ ସେମାନେ ନିଜର ଦଲାଲମାନଙ୍କୁ ବିକ୍ରି କରିବାକୁ ଆରମ୍ଭ କରିଥିଲେ । ଏହିସବୁ ଦାସ୍ତାକ ସାହାଯ୍ୟରେ ଇଂରେଜମାନଙ୍କ ସହିତ ଅସହଯୋଗୀ ବଣିକମାନଙ୍କୁ ସହଜରେ ବ୍ୟବସାୟ କ୍ଷେତ୍ରରୁ ଉତ୍‌ଖାତ କରି ଦିଆଗଲା । ସମକାଳୀନ ଜନୈକ ପର୍ଯ୍ୟବେକ୍ଷକଙ୍କ ଭାଷାରେ ଇଷ୍ଟ ଇଣ୍ଡିଆ କଂପାନି ବଙ୍ଗଳାରେ "ବଣିକର ଛଦ୍ମବେଶରେ ଶାସକ" ଭଳି ଆଚରଣ କରୁଥିଲା ।

ଯେଉଁ ଉଦ୍ୟମୀ ମୀର୍ କାଶିମ୍ ଇଂରେଜମାନଙ୍କ ନିକଟରୁ ବସ୍ତୁତଃ ନବାବି କ୍ରୟ କରିଥିଲେ, ସେଇ ବ୍ରିଟିଶ୍ ଇଣ୍ଡିଆ କଂପାନି ହାତରେ ପୁତୁଳିକା ହେବା ବଦଳରେ ପ୍ରକୃତ ବଙ୍ଗ ଶାସକ ହେବାକୁ ସେ ଆଶା ପୋଷଣ କରୁଥିଲେ । କର ଆଦାୟ କରି ଏବଂ ଏହି ଦାବିରେ ଅଟଳ ରହି ଦୁଇ ବର୍ଷ ମଧ୍ୟରେ ସିଂହାସନ ଲାଭ ପାଇଁ ଇଂରେଜମାନଙ୍କ ଦ୍ୱାରା ପ୍ରଦତ୍ତ ଅର୍ଥ ସେ ପୂରାପୂରି ପରିଶୋଧ କରି ଦେଇଥିଲେ । ଏହା ପରେ ସେ କଂପାନିର କର୍ମଚାରୀ କର୍ତ୍ତୃକ ଦାସ୍ତାକ ପ୍ରଦାନ ବନ୍ଦ କରିବାକୁ ଦାବି ଜଣାଇଲେ । କାରଣ ଏହା ଦ୍ୱାରା ଦେଶରେ ଭୟଙ୍କର ଦାରିଦ୍ର୍ୟ ଦେଖା ଦେଇଥିଲା । ତାଙ୍କର ଏହି

ଦାବୀ ପ୍ରତ୍ୟାଖ୍ୟାତ ହେବାରୁ ସେ ଯାବତୀୟ ଭାରତୀୟ ବଣିକମାନଙ୍କୁ ସମସ୍ତ ଶୁଳ୍କ ଛାଡ଼ କରି ଦେଇ ସେମାନଙ୍କୁ ଇଂରେଜମାନଙ୍କର ସମପର୍ଯ୍ୟାୟକୁ ଉନ୍ନୀତ କରିଥିଲେ । ଏହି ବ୍ୟବସ୍ଥା ବିରୁଦ୍ଧରେ କଂପାନିର କର୍ମଚାରୀମାନେ ଯୁଦ୍ଧ ଘୋଷଣା କରି ୧୭୬୩ ଖ୍ରୀଷ୍ଟାବ୍ଦରେ ପାଟଣା ଦଖଲ କରି ନେଲେ । ତା'ପରେ ମୀର୍ କାଶିମ୍ ଇଂରେଜମାନଙ୍କ ବିରୁଦ୍ଧରେ ଏକ ବିଦ୍ରୋହ ସଂଗଠନ କରିବାକୁ ଉଦ୍ୟମ କରିଥିଲେ ।

ବଙ୍ଗଳାରେ ବ୍ରିଟିଶ୍ ଅତ୍ୟାଚାରର ସମସ୍ତ ବିରୋଧୀ ଶକ୍ତି କାଶିମ୍ ଏବଂ ତାଙ୍କ ସୈନ୍ୟ ଦଳର (ଏହାର ମୂଳ ଅଂଶଟି ୟୁରୋପୀୟ ବିଭିନ୍ନ ଜାତିର ଭାଗ୍ୟାନ୍ୱେଷୀମାନଙ୍କୁ ନେଇ ଗଠିତ) ସମର୍ଥନରେ ଐକ୍ୟବଦ୍ଧ ହୋଇଥିଲେ । କୃଷକ ଏବଂ କାରିଗରମାନେ ତାଙ୍କ ପତାକା ତଳକୁ ଆସିଥିଲେ ଏବଂ ସେ ଭାରତୀୟ ବ୍ୟବସାୟୀ ଓ କଲିକତାର ଶକ୍ତିଶାଳୀ ଆର୍ମେନୀୟ ବଣିକମାନଙ୍କର ଆର୍ଥିକ ସମର୍ଥନ ଲାଭ କରିଥିଲେ । ୧୭୬୩ ଖ୍ରୀଷ୍ଟାବ୍ଦରେ ମୀର୍ କାଶିମ୍ ପାଟଣାକୁ ପୁନର୍ଦଖଲ କରିବାକୁ ସମର୍ଥ ହୋଇଥିଲେ, କିନ୍ତୁ ଅଚିରେ ତାଙ୍କର ଏହି ମିଶ୍ର ଓ ସ୍ୱଳ୍ପ ପ୍ରଶିକ୍ଷଣପ୍ରାପ୍ତ ସୈନ୍ୟବାହିନୀର ପରାଜୟ ଘଟିଥିଲା ।

ଏହା ପରେ ଅଯୋଧ୍ୟାରେ ପଶ୍ଚାଦ୍‌ପସରଣ ସହ ମୀର୍ କାଶିମ୍ ଅଯୋଧ୍ୟାର ନବାବ ଏବଂ ମୋଗଲ ସମ୍ରାଟଙ୍କ ପୁତ୍ର ଅଲୀ ଗଓହରଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କରିଥିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ, ପାଣିପଥ ଯୁଦ୍ଧର ପରବର୍ତ୍ତୀ ପଳାୟନ ପର୍ବ ଶେଷ ହେଲା ପରେ ଅଲୀ ଗଓହର ଦ୍ୱିତୀୟ ଶାହ୍ ଆଲମ୍ (୧୭୬୦-୧୮୦୬) ନାମରେ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ହୋଇଥିଲେ । ଏମାନଙ୍କର ମିଳିତ ସୈନ୍ୟବାହିନୀ ପାଟଣା ଆଡ଼କୁ ଅଗ୍ରସର ହୋଇଥିଲେ ଏବଂ ଇଂରେଜମାନେ ଗୁରୁତର ଅବସ୍ଥାର ସମ୍ମୁଖୀନ ହେଲେ । କିନ୍ତୁ ବକ୍‌ସାରର ନିଷ୍ପତ୍ତିମୂଳକ ଯୁଦ୍ଧରେ ଇଂରେଜମାନେ ପୁନର୍ବାର ସେମାନଙ୍କ ଶତ୍ରୁମାନଙ୍କୁ ୧୭୬୪ ଖ୍ରୀଷ୍ଟାବ୍ଦରେ ପରାଜିତ କରିଥିଲେ । ଶାହ୍ ଆଲମ୍‌ଙ୍କ ଆତ୍ମସମର୍ପଣ ଏବଂ ମୀର୍ କାଶିମ୍‌ଙ୍କ ଦିଲ୍ଲୀକୁ ପଳାୟନ ମଧ୍ୟ ଦେଇ ଏହି ପର୍ବର ସମାପ୍ତି ଘଟିଥିଲା ।

ବକ୍‌ସାର ଯୁଦ୍ଧରେ ପରାଜୟ ପରେ ଆଉ କେହି ନିମ୍ନ ଗାଙ୍ଗେୟ ଉପତ୍ୟକାରେ ବ୍ରିଟିଶ୍ ଆଧିପତ୍ୟକୁ ପ୍ରତିହତ କରିବାକୁ ସାହସ ପ୍ରକାଶ କରି ନଥିଲେ । ମୀର୍ ଜାଫର ପୁଣି ବଙ୍ଗଳାର ଜାଡ଼ନକ ନବାବ ହେଲେ । ତାଙ୍କ ମୃତ୍ୟୁ ପରେ କ୍ରମାନ୍ୱୟରେ ନବାବଙ୍କର କେଇଜଣ ନାବାଳକ ଆତ୍ମୀୟଙ୍କୁ ନବାବ ପଦରେ ନିଯୁକ୍ତ କରାଯାଇଥିଲା । ସେମାନେ ଅନେକ ଭତ୍ତା ପାଇଲେ ଏବଂ ଶାସନ କାର୍ଯ୍ୟରେ ହସ୍ତକ୍ଷେପ କରିବାରୁ ବିରତ ରହିଲେ ।

ମୀର୍ କାଶିମ୍‌ଙ୍କୁ ପରାଜିତ କଲା ପରେ କ୍ଲାଇଭ୍ ବଙ୍ଗଳାର ଗଭର୍ଣ୍ଣର ହେଲେ । ସେ ବନ୍ଦୀ ଅବସ୍ଥାରେ ଥିବା ଦ୍ୱିତୀୟ ଶାହ୍ ଆଲମ୍‌ଙ୍କୁ କଂପାନି ହାତରେ ବଙ୍ଗଳା ଓ ବିହାର "ଦେଓୟାନିର" (ଅର୍ଥ ସଂକ୍ରାନ୍ତ ପ୍ରଶାସନ ଦାୟିତ୍ୱ) ଅର୍ପଣ କରି ଦେଇ ଏକ ରାଜାଦେଶରେ ସ୍ୱାକ୍ଷର କରିବାକୁ ବାଧ୍ୟ କରିଥିଲେ । ଏହି ଭାବେ "ଦ୍ୱୈତ ଶାସକ" ନାମକ ଏକ ପଦ୍ଧତିର ଉଦ୍‌ଭବ ଘଟିଲା : ଏହା ଦ୍ୱାରା ସ୍ଥାନୀୟ ବଙ୍ଗୀୟ ପ୍ରଶାସନ ହାତରେ ଅଦାଲତ୍, ଆଇନ୍ ଶୃଙ୍ଖଳା ରକ୍ଷା, ଆଦି ବେସାମରିକ ଦାୟିତ୍ୱ ରହିଲା, ଏବଂ କଂପାନି ପାଇଲା ରାଜସ୍ୱ ଆଦାୟ ଓ ନିୟନ୍ତ୍ରଣ ଅଧିକାର । ପ୍ରାରମ୍ଭରେ ଏହା ଦ୍ୱାରା ରାଜସ୍ୱ ଆଦାୟକାରୀମାନଙ୍କର ପୂରା ସଂସ୍ଥାନ ଏବଂ କର ବ୍ୟବସ୍ଥା ଅପରିବର୍ତ୍ତିତ ଥିଲା ।

୧୭୬୭ ଖ୍ରୀଷ୍ଟାବ୍ଦରେ କ୍ଲାଇଭ୍ ଭାରତ ତ୍ୟାଗ କଲେ । ୧୭୭୩ ଖ୍ରୀଷ୍ଟାବ୍ଦରେ ହାଉସ୍ ଅଫ୍ କମନ୍ସର ଏକ କମିସନ ଭାରତରୁ ଲୁଣ୍ଠିତ ସଂପଦର ପ୍ରଶ୍ନ ନେଇ ତଦନ୍ତ ଆରମ୍ଭ କଲେ । କିନ୍ତୁ ସ୍ୱଦେଶ ପାଇଁ ଗୁରୁତ୍ୱପୂର୍ଣ୍ଣ ଓ ପ୍ରଶଂସନୀୟ କାର୍ଯ୍ୟ ସଂପାଦନର ପରିପ୍ରେକ୍ଷୀରେ ସେ ବିନା ଦୋଷରେ ଖଲାସ ପାଇଗଲେ ।

"ଦ୍ୱୈତ ଶାସକ" ପ୍ରବର୍ତ୍ତନ ପରେ କଂପାନି ଏବଂ ତାଙ୍କ କର୍ମଚାରୀମାନଙ୍କ ନିକଟରେ ବାଣିଜ୍ୟ ବିଷୟଟି ଗୌଣ ହୋଇ ପଡ଼ିଥିଲା । ବଙ୍ଗଳାର କୃଷକମାନଙ୍କ ନିକଟରୁ ଖଜଣା ଆଦାୟ କରିବା ଥିଲା ସେମାନଙ୍କ ଆୟର ପ୍ରଧାନ ଉତ୍ସ । ଏହି ଭାବେ ଅର୍ଜିତ ଅର୍ଥ ସେମାନେ ବ୍ୟୟ କରୁଥିଲେ ଭାରତୀୟ ପଣ୍ୟ କ୍ରୟ କରିବାରେ । ଏହି ପ୍ରଥାଟିକୁ ଥଟାରେ କୁହାଯାଉଥିଲା "ଇନ୍ଭେଷ୍ଟ" ବୋଲି । ପ୍ରକୃତରେ କୌଣସି ଅର୍ଥ ଇନ୍ଭେଷ୍ଟ ନକରି କେବଳ ଏହି "ଇନ୍ଭେଷ୍ଟ" ଦ୍ୱାରା କଂପାନି ଇଂଲଣ୍ଡକୁ ଆମଦାନି କରୁଥିଲା । ବଙ୍ଗଳାର ଲୁଣ୍ଠନରୁ ଅର୍ଜିତ ଅର୍ଥ ଦ୍ୱାରା ଅନ୍ୟାନ୍ୟ ଅଞ୍ଚଳରେ ଆକ୍ରମଣାତ୍ମକ ଯୁଦ୍ଧ ବ୍ୟୟ ମଧ୍ୟ ମେଣ୍ଟୁଥିଲା । ଏହି ଭାବେ ଭାରତୀୟ ଜନସାଧାରଣ ସ୍ୱଦେଶକୁ ଦାସତ୍ୱ ଶୃଙ୍ଖଳରେ ବାନ୍ଧିବା ପାଇଁ ନିଜେ ଅର୍ଥ ଯୋଗାଇବାକୁ ଲାଗିଲେ ।

ଇତିପୂର୍ବରୁ ପ୍ରଚଳିତ ଗ୍ରାମୀଣ ସାମାଜିକ ରୀତି ଭିତ୍ତିକ କୃଷକମାନଙ୍କ ଉପରେ ଶୋଷଣ ଏଥର ବ୍ୟାପକତର ହୋଇ ଉଠିଥିଲା । ତହସିଲଦାରମାନେ କୃଷକମାନଙ୍କର ସର୍ବସ୍ୱ କାଢ଼ି ନେବାକୁ ଲାଗିଲେ, ଏପରିକି ମୁହଁରେ ଦେବା ପାଇଁ ସଞ୍ଚିତ ଫସଲ ମଧ୍ୟ ବାଦ୍ ଗଲା ନାହିଁ । ୧୭୭୦ ଖ୍ରୀଷ୍ଟାବ୍ଦର ଫସଲ ହାନି ହେତୁ ଦେଶ ସାରା ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ଏବଂ ଖାଦ୍ୟର ମୂଲ୍ୟ ଆକାଶଚୁମ୍ବୀ ହୋଇ ଉଠିଲା । କିନ୍ତୁ ଖଜଣା କମେଇବାର ଦରଖାସ୍ତଟି ଲଣ୍ଡନର ଭଦ୍ର ମଣ୍ଡଳୀଙ୍କ କାନରେ ପହଞ୍ଚିଲା ନାହିଁ । ୧୭୭୧ ଖ୍ରୀଷ୍ଟାବ୍ଦରେ କଂପାନି ବ୍ରିଟିଶ୍ ପାର୍ଲିଆମେଣ୍ଟ ନିକଟରୁ ଋଣ ପ୍ରାର୍ଥନା କରିବାକୁ ବାଧ୍ୟ ହୋଇଥିଲା । ବଙ୍ଗଳାର ଅର୍ଥନୈତିକ ଅବସ୍ଥା ନେଇ ଏହା ପରେ ହୁଇଗ୍ ଏବଂ ଟୋରିମାନଙ୍କ ମଧ୍ୟରେ ଦଳଗତ ଦ୍ୱନ୍ଦ୍ୱ ଦେଖାଦେଲା । କିନ୍ତୁ ୧୭୭୩ ଖ୍ରୀଷ୍ଟାବ୍ଦରେ ଦୁଇ ଦଳର ଆପୋଷର ଫଳ ସ୍ୱରୂପ ନିୟନ୍ତ୍ରଣ ବିଧି ବଳବତ୍ତର ହେଲା ଏବଂ ଏହା ଦ୍ୱାରା କଂପାନି କେବଳ ବ୍ୟବସାୟୀ ପ୍ରତିଷ୍ଠାନ ନୁହେଁ, ଭାରତର ଶାସକ ହିସାବରେ ମଧ୍ୟ ସ୍ୱୀକୃତି ପାଇଥିଲା । ବ୍ରିଟିଶ୍ ସରକାର କଂପାନିର ରାଜନୈତିକ କ୍ରିୟାକଳାପର ତତ୍ତ୍ୱାବଧାନ କରିବାର ଦାୟିତ୍ୱ ଗ୍ରହଣ କଲେ । ଜଣେ ଗଭର୍ଣ୍ଣର ଜେନେରାଲଙ୍କୁ (ଏହି ସମୟରେ ଏହି ପଦଟି ସୃଷ୍ଟି ହୋଇଥିଲା) ଏବଂ ଚାରିଜଣ ଉପଦେଷ୍ଟା ନିଯୋଗର ଅନୁମତି ପାର୍ଲିଆମେଣ୍ଟ ପ୍ରଦାନ କରିଥିଲା । ପାଞ୍ଚଜଣଙ୍କୁ ନେଇ ଗଠିତ ଏହି ଦଳଟି ବଙ୍ଗଳାର ସର୍ବୋଚ୍ଚ ପରିଷଦ ବା ସୁପ୍ରିମ କାଉନ୍‌ସିଲ ବୋଲି ବିବେଚିତ ହେଲା ଏବଂ ସଂଖ୍ୟାଗରିଷ୍ଠ ଭୋଟରେ ଏମାନେ ହିଁ ବିଭିନ୍ନ ବିଷୟର ମୀମାଂସା କରୁଥିଲେ । ତା'ଛଡ଼ା କଲିକତାରେ ଏକ ସୁପ୍ରିମ୍ କୋର୍ଟ ମଧ୍ୟ ପ୍ରତିଷ୍ଠିତ ହେଲା ଏବଂ ସହରର ବାସିନ୍ଦାମାନଙ୍କର ଯାବତୀୟ ସମସ୍ୟା ସମାଧାନର ଦାୟିତ୍ୱ ତା ଉପରେ ନ୍ୟସ୍ତ କରାଗଲା ।

ତରୁଣ ବୟସରୁ କଂପାନିରେ କର୍ମରତ ଓ୍ୱାରେନ୍ ହେଷ୍ଟିଂସ୍ ବଙ୍ଗଳାର ପ୍ରଥମ ଗଭର୍ଣ୍ଣର ଜେନେରାଲ ରୂପେ ନିଯୁକ୍ତ ହେଲେ । ସ୍ଥାନୀୟ ପରିସ୍ଥିତି ସଂପର୍କରେ ଅବହିତ ଏବଂ ଫାରସୀ ତଥା ହିନ୍ଦୀ ଭାଷାରେ ଅଭିଜ୍ଞ ଏହି ବ୍ୟକ୍ତିଟି କଲିକତାରେ କ୍ଲାଇଭ୍‌ଙ୍କର ଏକ ଅପରିହାର୍ଯ୍ୟ ସହକର୍ମୀ ହୋଇ ଉଠିଲେ ।

ଇତିପୂର୍ବରୁ ହେଷ୍ଟିଂସ୍ ମାନ୍ଦ୍ରାଜରେ କର୍ମରତ ଅବସ୍ଥାରେ କେତେକ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ଏସବୁ ମଧ୍ୟରେ ଥିଲା, କଂପାନିର କର୍ମଚାରୀମାନଙ୍କର ବେତନ ବୃଦ୍ଧି ଓ ସୈନ୍ୟବାହିନୀର ସରବରାହ ପାଇଁ ଏକ ଚୁକ୍ତି ବ୍ୟବସ୍ଥାର ପ୍ରବର୍ତ୍ତନ, ଯାହାକି ଏହି କର୍ମଚାରୀମାନଙ୍କର, ବିଶେଷତଃ, ପରିଚାଳକମାନଙ୍କର ପୃଷ୍ଠପୋଷକମାନଙ୍କ ମଧ୍ୟରେ ମୁନାଫାଖୋରି ଓ ଦୁର୍ନୀତିର ବ୍ୟାପକ ପ୍ରସାର ଘଟାଇଥିଲା । ତା'ଛଡ଼ା କଂପାନି ପାଇଁ ମଧ୍ୟସ୍ଥ ଓ କ୍ରେତା ହିସାବରେ କାର୍ଯ୍ୟରତ ଭାରତୀୟ ବଣିକମାନଙ୍କର ସଂଖ୍ୟା ହ୍ରାସ କରି ହେଷ୍ଟିଂସ୍ କଂପାନିର କିଛି ଆୟ ମଧ୍ୟ ବୃଦ୍ଧି କରିଥିଲେ । ଏହି ଘଟଣାଟି ଲଣ୍ଡନସ୍ଥ କଂପାନିର ପରିଚାଳକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । କଂପାନିର ସମ୍ଭାବ୍ୟ ସର୍ବପ୍ରକାରର ଆୟ ବୃଦ୍ଧିକୁ ହେଷ୍ଟିଂସ୍ ନିଜର ପ୍ରଧାନ କାର୍ଯ୍ୟ ବୋଲି ମନେ କରୁଥିଲେ । ୧୭୭୨ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଗଭର୍ଣ୍ଣର ନିଯୁକ୍ତ ହେଲା ପରେ ସେ କ୍ଲାଇଭ୍‌ଙ୍କ ଦ୍ୱାରା ମଞ୍ଜୁର କରା ବଙ୍ଗଳାର ନବାବ ଓ ଦ୍ୱିତୀୟ ଶାହ୍ ଆଲମ୍‌ଙ୍କର ଅବସର ଭତ୍ତା କମେଇ ଦେଇଥିଲେ । ଏହା ଛଡ଼ା ୫୦ ଲକ୍ଷ ଟଙ୍କାରେ ସେ କୋଡ଼ା ଏବଂ ଏଲାହାବାଦ ଜିଲ୍ଲା ଦୁଇଟିକୁ (ଇତିପୂର୍ବରୁ କ୍ଲାଇଭ୍ ଏ ଦୁଇଟିକୁ ମୋଗଲ ଶାସକଙ୍କୁ ଦେଇଥିଲେ) ଅଯୋଧ୍ୟାକୁ ବିକ୍ରି କରି ଦେଇଥିଲେ । ସେ ଅଯୋଧ୍ୟା ହାତକୁ ବ୍ରିଟିଶ୍ ଅଫିସରଙ୍କ ନେତୃତ୍ୱରେ ସିପାହୀ ବାହିନୀଗୁଡ଼ିକୁ ହସ୍ତାନ୍ତର କଲେ ଏବଂ ରୋହିଲାମାନଙ୍କ ବିଷୟରେ କଂପାନିର କୌଣସି ସ୍ୱାର୍ଥ ସଂପର୍କ ନଥିଲେ ମଧ୍ୟ ଏହି ବାହିନୀକୁ ରୋହିଲାମାନଙ୍କ ବିରୋଧୀ ଯୁଦ୍ଧରେ ଯୁକ୍ତ କରାଇଲେ । ଏହି "କୁଖ୍ୟାତ" ଯୁଦ୍ଧରେ ରୋହିଲାମାନଙ୍କର ପରାଜୟ ଘଟିଥିଲା ଏବଂ ସେମାନଙ୍କ ଦେଶକୁ ଅଯୋଧ୍ୟାର ଅନ୍ତର୍ଭୁକ୍ତ କରାଯାଇଥିଲା । ଏସବୁ କାର୍ଯ୍ୟ ମାଧ୍ୟମରେ କଂପାନିର ବିଶ୍ୱସ୍ତ କର୍ମଚାରୀ ହିସାବରେ ହେଷ୍ଟିଂସ୍‌ଙ୍କ ଖ୍ୟାତି ବୃଦ୍ଧି ପାଇଥିଲା ।

ହେଷ୍ଟିଂସ୍ ବଙ୍ଗଳା କାଉନ୍‌ସିଲରେ କଂପାନି କର୍ମଚାରୀ ବାରଓ୍ୱେଲ୍‌ଙ୍କ ସମର୍ଥନ ଲାଭ କରିଥିଲେ । କିନ୍ତୁ ଅବଶିଷ୍ଟ ତିନିଜଣ ସଦସ୍ୟ—ଜେନେରାଲ କ୍ଲେଭାରିଂ, କର୍ଣ୍ଣେଲ ମନସନ୍ ଓ ଫିଲିପ୍ ଫ୍ରାନ୍‌ସିସ୍ (ସମ୍ଭବତଃ, ସେ ଲଣ୍ଡନରେ ପ୍ରକାଶିତ ଜୁନିୟାସ୍‌ଙ୍କ ସ୍ୱାକ୍ଷରିତ କେତେକ ଖୋଲା ଚିଠିର ଲେଖକ । ଏହିସବୁ ଚିଠିରେ ସରକାରକୁ ସମାଲୋଚନା କରାଯାଇଥିଲା ଏବଂ ସେଠାରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା) ଲଣ୍ଡନରୁ ଆସିଥିଲେ ଏବଂ ସେମାନେ ଥିଲେ କଂପାନିର ପ୍ରତିନିଧି ହେବା ପରିବର୍ତ୍ତେ ଇଂଲଣ୍ଡର ରାଜପ୍ରତିନିଧି । ସେମାନେ ହେଷ୍ଟିଂସ୍‌ଙ୍କ ଅପସାରଣ ଚାହିଁଥିଲେ, ତାଙ୍କ କାର୍ଯ୍ୟକଳାପର ତ୍ରୁଟି ବିଚ୍ୟୁତି ପ୍ରକାଶ କରିଥିଲେ ଏବଂ ତାଙ୍କ କ୍ଷମତା ହସ୍ତାନ୍ତର କରିବାକୁ କ୍ଲେଭାରିଂଙ୍କ ନିକଟରେ ଦାବି ଜଣାଇଥିଲେ । ଏହିସବୁ ଘଟଣା ମଧ୍ୟରେ କଂପାନି ଏବଂ ଭାରତରୁ ଅର୍ଜିତ ମୁନାଫାର ଏକ ବୃହତ୍ତର ଅଂଶର ଭୋଗେଚ୍ଛୁକ ବ୍ରିଟିଶ୍ ବୁର୍ଜୁଆମାନଙ୍କର ଏକ ଚକ୍ର ମଧ୍ୟସ୍ଥ ତତ୍‌କାଳୀନ ବିଦ୍ୟମାନ ଦ୍ୱନ୍ଦ୍ୱର ପ୍ରତିଫଳନ ଘଟିଥିଲା ।

ବଙ୍ଗଳାର କାଉନ୍‌ସିଲର ମତପାର୍ଥକ୍ୟର ଖବର କଲିକତାର ବାସିନ୍ଦାମାନଙ୍କ ମଧ୍ୟରେ ପ୍ରଘଟ ହୋଇ ଯାଇଥିଲା ଏବଂ ହେଷ୍ଟିଂସ୍‌ଙ୍କ ହାତରେ ଅତ୍ୟାଚାରିତମାନଙ୍କ ମଧ୍ୟରୁ ଅନେକ ତାଙ୍କ ବିରୁଦ୍ଧରେ ନାଲିଶ୍ କରିଥିଲେ । ତା ସତ୍ତ୍ୱେ ହେଷ୍ଟିଂସ୍ ନିଜ ସହପାଠୀ, ସୁପ୍ରିମ କୋର୍ଟଙ୍କ ପ୍ରଧାନ ବିଚାରପତି ଇମ୍ପେଙ୍କ ସହାୟତାରେ ତାଙ୍କ ପ୍ରଧାନ ସମାଲୋଚକ ନନ୍ଦ କୁମାର ନାମକ ଜନୈକ ସମୃଦ୍ଧ ବ୍ରାହ୍ମଣଙ୍କ ଛଅ ବର୍ଷ ପୂର୍ବେ ଅନୁଷ୍ଠିତ ଏକ ଦଲିଲ ଜାଲ୍ କରିବା ଅଭିଯୋଗରେ ପ୍ରାଣଦଣ୍ଡ ଦେଇଥିଲେ, ଯଦିଓ କଲିକତାରେ ସେତେବେଳେ କୌଣସି ବ୍ରିଟିଶ୍ କୋର୍ଟ ନଥିଲା । ଜନସାଧାରଣଙ୍କ ଆଗରେ ନନ୍ଦ

କୁମାରଙ୍କ ଫାଶିଦାନ ପରେ ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଆଉ କେହି କୌଣସି ନାଲିଶ୍ କରି ନଥିଲେ । ୧୭୭୭ ଖ୍ରୀଷ୍ଟାବ୍ଦରେ କର୍ଣ୍ଣେଲ ମନସନ୍‌ଙ୍କ ମୃତ୍ୟୁ ପରେ ଅବିଳମ୍ବେ କ୍ଲେଭାରିଂଙ୍କର ମଧ୍ୟ ମୃତ୍ୟୁ ଘଟିଥିଲା । ଏହା ପରେ ହେଷ୍ଟିଂସ୍ ଅପ୍ରତିଦ୍ୱନ୍ଦ୍ୱୀ କ୍ଷମତାର ଅଧିକାରୀ ହୋଇଗଲେ ।

## ବ୍ରିଟିଶ୍ ବିଜୟ ପରେ ବଙ୍ଗଳାର ଅର୍ଥନୈତିକ ଅବସ୍ଥା

ବ୍ରିଟିଶ୍‌ମାନଙ୍କ କର୍ତ୍ତୃକ ବଙ୍ଗ ବିଜୟ ଫଳରେ ଏହି ଅଞ୍ଚଳ ସହିତ ଭାରତର ଅନ୍ୟାନ୍ୟ ଅଂଶର ଅର୍ଥନୈତିକ ବନ୍ଧନ ଏବଂ ବଙ୍ଗଳା ସହିତ ଅନ୍ୟାନ୍ୟ ପ୍ରାଚ୍ୟ ଦେଶର ବାଣିଜ୍ୟିକ ଯୋଗାଯୋଗ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ବ୍ରିଟିଶ୍‌ମାନେ ଆସିବା ପୂର୍ବ ପର୍ଯ୍ୟନ୍ତ ବଙ୍ଗଳା ଦକ୍ଷିଣ-ପୂର୍ବ ଏସିଆର ଦେଶଗୁଡ଼ିକ ସହିତ ବ୍ୟାପକ ବାଣିଜ୍ୟ କରୁଥିଲା । ଏବେ ସମସ୍ତ ସାମୁଦ୍ରିକ ବାଣିଜ୍ୟ ବସ୍ତୁତଃ ଇଂରେଜମାନଙ୍କ ହାତରେ କେନ୍ଦ୍ରୀଭୂତ ହୋଇଗଲା । ଦେଶର ଆଭ୍ୟନ୍ତରୀଣ ବାଣିଜ୍ୟ ମଧ୍ୟ କ୍ରମଶଃ ଇଂରେଜମାନଙ୍କ ହସ୍ତଗତ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଇଂରେଜମାନଙ୍କ ଦଲାଲ ଭାବେ କେତେକ ଭାରତୀୟ ବଣିକ କେବଳ ବଡ଼ ଧରଣର ନେଣ ଦେଣର ସୁଯୋଗ ପାଉଥିଲେ । ଅର୍ଥ ସଂକ୍ରାନ୍ତ କ୍ଷେତ୍ରଗୁଡ଼ିକରୁ ଇଂରେଜମାନେ ଏହି ଭାବେ ସେମାନଙ୍କୁ ହଟେଇ ଦେଇଥିଲେ ।

ବ୍ରିଟିଶ୍‌ମାନଙ୍କ ଦ୍ୱାରା ଅଧିକାର ପୂର୍ବରୁ ଭାରତୀୟ ମହାଜନ ଓ ବ୍ୟାଙ୍କରମାନଙ୍କର ବୃହତ୍ତମ ଓ ସର୍ବାପେକ୍ଷା ସୁବିଧାଜନକ ନେଣ ଦେଣ ମୁର୍ଶିଦାବାଦର ରାଜକୋଷକୁ ରାଜସ୍ୱ ପଠାଇବା ସହିତ ସଂପୃକ୍ତ ଥିଲା । ୧୭୭୨ ଖ୍ରୀଷ୍ଟାବ୍ଦରେ ରାଜକୋଷଟିକୁ ମୁର୍ଶିଦାବାଦରୁ କଲିକତାକୁ ସ୍ଥାନାନ୍ତରିତ ହେବା ଦ୍ୱାରା ଜଗତ୍ ଶେଠ ଓ ତାଙ୍କ ଉତ୍ତରାଧିକାରୀମାନଙ୍କର ପ୍ରଭାବର ଅବସାନ ଘଟିଥିଲା । ମୁଦ୍ରା ବ୍ୟବସ୍ଥା ଉପରେ ସରକାରୀ ନିୟନ୍ତ୍ରଣକୁ କେନ୍ଦ୍ରୀଭୂତ ଓ ଘନୀଭୂତ କରିବା ଉଦ୍ଦେଶ୍ୟରେ ହେଷ୍ଟିଂସ୍ ୧୭୭୩-୧୭୭୪ ଖ୍ରୀଷ୍ଟାବ୍ଦରେ ଢାକା, ପାଟଣା ଓ ମୁର୍ଶିଦାବାଦର ତତ୍କାଳୀନ ଟଙ୍କାଶାଳଗୁଡ଼ିକୁ ବନ୍ଦ କରିଦେଲେ । ଏହି ଭାବେ ମୁଦ୍ରା ତିଆରି ଉପରେ କଲିକତାର ଏକଚାଟିଆ ଅଧିକାର ପ୍ରତିଷ୍ଠିତ ହେଲା । ତା'ପରେ ଜଗତ୍ ଶେଠ ଏବଂ ତାଙ୍କ ପରିବାରର ପତନର ସୂତ୍ରପାତ ହୋଇଥିଲା । ତିନୋଟି ବ୍ରିଟିଶ୍ ବ୍ୟାଙ୍କ ପ୍ରତିଷ୍ଠିତ ହେବା ଫଳରେ ପ୍ରକ୍ରିୟାଟି ଆଉରି ତ୍ୱରାନ୍ୱିତ ହୋଇଥିଲା । ଏହିସବୁ ବ୍ୟାଙ୍କ୍ ବ୍ୟାଙ୍କ୍‌ନୋଟ ପ୍ରଚଳନ କରିଥିଲେ ଏବଂ ମୁଦ୍ରା ସଂକ୍ରାନ୍ତ ଅନ୍ୟାନ୍ୟ କାର୍ଯ୍ୟ ଚଳାଉଥିଲେ ।

ଇଂରେଜମାନଙ୍କ କାର୍ଯ୍ୟରେ ନିଯୁକ୍ତ ଭାରତୀୟ ଦଲାଲ ବା ବନିଆମାନଙ୍କ ସ୍ଥଳରେ ୧୭୭୦ ଖ୍ରୀଷ୍ଟାବ୍ଦରେ ପ୍ରଥମ ବ୍ରିଟିଶ୍ ବ୍ୟକ୍ତିଗତ ବାଣିଜ୍ୟ ମଧ୍ୟସ୍ଥ ସଂସ୍ଥାଟି ପ୍ରତିଷ୍ଠିତ ହେଲା । ପରେ ଏହି ଭଳି ବାଣିଜ୍ୟ ସଂସ୍ଥାଗୁଡ଼ିକ କ୍ରମଶଃ ବ୍ରିଟିଶ୍ ଉପନିବେଶିକମାନଙ୍କ ଦ୍ୱାରା ଭାରତବର୍ଷକୁ ଶୋଷଣ କରିବାର ଅନ୍ୟତମ ପ୍ରଧାନ ହତିଆରରେ ପରିଣତ ହୋଇଥିଲା । ଏସବୁ ଆମଦାନି ରପ୍ତାନି, କର ଆଦାୟ, ମହାଜନି, ଭାରତରୁ ଲୁଣ୍ଠିତ ମୂଲ୍ୟବାନ ସାମଗ୍ରୀଗୁଡ଼ିକୁ ବ୍ରିଟେନ୍‌କୁ ପ୍ରେରଣ କରିବା ସମେତ ଅନୁରୂପ କାର୍ଯ୍ୟକଳାପ ପରିଚାଳନାର ଦାୟିତ୍ୱ ଗ୍ରହଣ କରିଥିଲା । ସହରରୁ ବିତାଡ଼ିତ ଶକ୍ତିଶାଳୀ ଭାରତୀୟ ବଣିକ ଓ ମହାଜନମାନେ ଏହା ପରେ ଗ୍ରାମାଞ୍ଚଳରେ ଜମିଦାରି କ୍ରୟ ଏବଂ ମହାଜନି କାରବାର ଆରମ୍ଭ କରି ଦେଇଥିଲେ ।

କାରିଗରମାନଙ୍କୁ ଶୋଷଣ କରିବାଟା ମଧ୍ୟ ସେତେବେଳେ ବୃଦ୍ଧି ପାଇଥିଲା । ୧୭୭୫ ଖ୍ରୀଷ୍ଟାବ୍ଦ ଠାରୁ କଂପାନି ବା ତା'ର ବ୍ୟକ୍ତିବିଶେଷ କର୍ମଚାରୀଙ୍କ ବରାଦ କାର୍ଯ୍ୟ ଶେଷ ନହେଲା ପର୍ଯ୍ୟନ୍ତ ଅନ୍ୟ କୌଣସି କ୍ରେତା ବା ବଜାର ପାଇଁ ବସ୍ତ୍ର ତିଆରି କରିବାକୁ ତନ୍ତୁବାୟମାନଙ୍କ ପକ୍ଷରେ ନିଷିଦ୍ଧ କରି ଦିଆଗଲା । ସେମାନେ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଜିନିଷକୁ ଅନ୍ୟତ୍ର ବିକ୍ରି ଯେପରି ନକରି ପାରନ୍ତି ସେଥି ପାଇଁ ଗୁମାସ୍ତାମାନେ ତନ୍ତୁବାୟମାନଙ୍କ ଦୁଆର ମୁହଁରେ ପହରାଦାର ବସଉଥିଲେ । ଏହି ଭାବେ ତନ୍ତୁବାୟମାନେ ସେମାନଙ୍କ ସ୍ୱାଧୀନତାର ଅବଶିଷ୍ଟ ଟିକକୁ ହରାଇ ବସିଲେ । ଅନେକ ସମୟରେ ତନ୍ତୁବାୟମାନେ ଘର ଦ୍ୱାର ଛାଡ଼ି ଗ୍ରାମକୁ ପଳେଇ ଯାଉଥିଲେ ଏବଂ ଫଳରେ ସେଠାରେ ରୟତ ଚାଷୀମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଥିଲା । ଏହି ଚାଷୀମାନଙ୍କର କୌଣସି ଅଧିକାର ନଥିଲା । ୧୭୭୩ ଓ ୧୭୮୬ ଖ୍ରୀଷ୍ଟାବ୍ଦରେ ଶାନ୍ତିପୁରରେ ତନ୍ତୁବାୟମାନେ ବିଦ୍ରୋହ କରିଥିଲେ । ୧୭୮୭ ଖ୍ରୀଷ୍ଟାବ୍ଦରେ ଢାକାରେ ଏବଂ ୧୭୮୯ ଖ୍ରୀଷ୍ଟାବ୍ଦରେ ସୋନାରଗାଁର ତନ୍ତୁବାୟମାନେ ପ୍ରତାରିତ, ଅତ୍ୟାଚାରିତ ଏବଂ ଗିରଫ୍ ହେବାର ଅଭିଯୋଗ ଜଣାଇଥିଲେ । ଲୁଣ ମାରୁଥିବା ଲୋକଙ୍କ ନିକଟରୁ ମଧ୍ୟ ଅନୁରୂପ ଅଭିଯୋଗ ଆସୁଥିଲା ।

ବଙ୍ଗଳାର ଚାଷୀମାନେ କ୍ରମଶଃ ଦୁରାବସ୍ଥା ମଧ୍ୟରେ ପଡ଼ିଥିଲେ । ଭାରତୀୟ ରାଜସ୍ୱ ବ୍ୟବସ୍ଥା ଏବଂ ଏହାର ପରିଚାଳକମାନଙ୍କ ଉପରେ କ୍ଲାଇଭ୍ କୌଣସି ହସ୍ତକ୍ଷେପ କରି ନଥିଲେ । ଅନ୍ୟ ପକ୍ଷରେ, ହେଷ୍ଟିଂସ୍ ବ୍ରିଟିଶ୍ କର ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ ଆରମ୍ଭ କରିଥିଲେ । ଜମି ଉପରେ ବଙ୍ଗଳାର ପୂର୍ବତନ ଶାସକମାନଙ୍କର ସାମନ୍ତବାଦୀ ରାଷ୍ଟ୍ରୀୟ ମାଲିକାନାର ଅଧିକାର ଏବେ ବ୍ରିଟିଶ୍‌ମାନଙ୍କର ହାତକୁ ଆସି ଯାଇଛି ଭାବି ହେଷ୍ଟିଂସ୍ ଏ ଦେଶର କୃଷକମାନଙ୍କୁ ଶୋଷଣ କରିବାର ନୂତନ ପଦ୍ଧତି ଉଦ୍‌ଭାବନ କରିବାକୁ ଉଦ୍ୟମ କରିଥିଲେ । ଫ୍ରାନ୍‌ସିସ୍ ଏହାକୁ ବିଦ୍ରୂପାତ୍ମକ ଭାଷାରେ, "ଦେଶୀୟ ପ୍ରଜାମାନଙ୍କୁ ଶୋଷଣ ଦ୍ୱାରା ରକ୍ତହୀନ କରି ଦେବାର ଅଧିକାର" ବୋଲି କହିଥିଲେ । ଫ୍ରାନ୍‌ସିସ୍‌ଙ୍କ ମତରେ, ଭାରତର ଜମିର ଏକମାତ୍ର ମାଲିକ ହେଲେ "ଦେଶୀୟ ଭୂସ୍ୱାମୀମାନେ" — ଅର୍ଥାତ୍, ଜମିଦାରମାନେ । ଫ୍ରାନ୍‌ସିସ୍‌ଙ୍କ ବିରୋଧିତା ସତ୍ତ୍ୱେ ହେଷ୍ଟିଂସ୍ ସ୍ୱଳ୍ପକାଳୀନ ଇଜାରା ଭିତ୍ତିରେ ଜମି ଚାଷର ନିୟମ ପ୍ରବର୍ତ୍ତନ କରିଥିଲେ । ଏଭଳି ଅବସ୍ଥାରେ ପ୍ରଜାମାନଙ୍କ ନିକଟରୁ ସର୍ବାଧିକ ପରିମାଣର ଅର୍ଥ ଓ ଫସଲ ଆଦାୟ ଇଜାରାଦାରମାନଙ୍କର ଏକକ ଲକ୍ଷ୍ୟ ହୋଇ ଉଠିବାରୁ କୃଷକମାନେ ଚରମ ଦାରିଦ୍ର୍ୟ ମଧ୍ୟରେ ପଡ଼ିଥିଲେ । ୧୭୬୫ ଖ୍ରୀଷ୍ଟାବ୍ଦ ତୁଳନାରେ ୧୭୯୦-୧୭୯୧ ଖ୍ରୀଷ୍ଟାବ୍ଦରେ ବଙ୍ଗଳା, ବିହାର ଓ ଓଡ଼ିଶା ଜମିର ଖଜଣା ପ୍ରାୟ ଦୁଇ ଗୁଣ ବୃଦ୍ଧି ପାଇଥିଲା । ୧୭୬୫ ମସିହାରେ କଂପାନି ତା ଆୟର ମୁଖ୍ୟ ଉତ୍ସ ରୂପେ କୃଷକମାନଙ୍କୁ ରାଜସ୍ୱ ଜରିଆରେ ଶୋଷଣ କରିବାକୁ ଆରମ୍ଭ କରିଥିଲା । ଏହି ନୀତି ଫଳରେ ଅଷ୍ଟାଦଶ ଶତାବ୍ଦୀର ଶେଷ ବେଳକୁ ବଙ୍ଗଳାର ଏକ ତୃତୀୟାଂଶ ଅଞ୍ଚଳ ଜଙ୍ଗଲ ପାଲଟି ଗଲା ଏବଂ ଏକଦା ଫସଲଭରା ଖେତସବୁ କ୍ରମଶଃ ହିଂସ୍ର ବାଘମାନଙ୍କର ବିହାର ସ୍ଥଳୀରେ ପରିଣତ ହେଲା ।

ତା'ପରେ ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହୋଇଥିଲା ଅସଂଖ୍ୟ କୃଷକ ବିଦ୍ରୋହ । ସେସବୁ ମଧ୍ୟରେ ବୃହତ୍ତମ ଥିଲା ୧୭୮୩ ଖ୍ରୀଷ୍ଟାବ୍ଦରେ ଦିନାଜପୁରର ଇଜାରାଦାର ଦେବୀ ସିଂହଙ୍କ ବିରୁଦ୍ଧରେ ଅନୁଷ୍ଠିତ ବିଦ୍ରୋହଟି । ସେ ଖଜଣା ଆଦାୟ ପାଇଁ ପ୍ରଜାମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଚଳାଇଥିଲେ । ରଙ୍ଗପୁର ସହର ନିକଟରେ ପ୍ରଜାମାନେ ମିଳିତ ହୋଇ ଜଣେ ନେତା ନିର୍ବାଚନ କରି

ଥାନା ଦଖଲ କରି ନେଲେ ଏବଂ କଲିକତାକୁ ଏକ ଦରଖାସ୍ତ ପଠାଇଥିଲେ । କିନ୍ତୁ କୌଣସି ଉତ୍ତର ନଯିବାରୁ ସେମାନେ ଅସ୍ବଧାରଣ କଲେ । ବିଦ୍ରୋହ ଦମନ ପାଇଁ ସେଠାକୁ ବ୍ରିଟିଶ୍ ସେନାବାହିନୀକୁ ପଠାଯାଇଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଚାରି ଦଶନ୍ଧିରେ ବଙ୍ଗଳାର ବିଭିନ୍ନ ଅଞ୍ଚଳରେ ବହୁ ଛୋଟ ଛୋଟ ବିଦ୍ରୋହ ଦେଖା ଦେଇଥିଲା । ଜଙ୍ଗଲର ଅନୁନ୍ନତ ଆଦିବାସୀମାନେ ମଧ୍ୟ ବେଳେ ବେଳେ କୃଷକମାନଙ୍କ ସହିତ ବିଦ୍ରୋହରେ ଯୋଗ ଦେଇଥିଲେ । ବ୍ରିଟିଶ୍ ସୈନ୍ୟମାନଙ୍କ ପକ୍ଷରେ ଦୁର୍ଗମ ଅଞ୍ଚଳରେ ବାସ କରୁଥିବା ସାନ୍ତାଳ ଓ ଚୁଆରମାନଙ୍କର ବିଦ୍ରୋହ ସେସବୁର ଦୃଷ୍ଟାନ୍ତ ସ୍ୱରୂପ । ବ୍ରିଟିଶ୍ମାନଙ୍କ ବିରୁଦ୍ଧରେ ହିନ୍ଦୁ ସନ୍ନ୍ୟାସୀମାନଙ୍କର ସଶସ୍ତ୍ର ବିଦ୍ରୋହ ଅନେକ ବର୍ଷ ଧରି ଚାଲିଥିଲା । ଥରେ କେଇ ହଜାର ସଶସ୍ତ୍ର ସନ୍ନ୍ୟାସୀ କଲିକତାର ଉପକଣ୍ଠ ପର୍ଯ୍ୟନ୍ତ ମାଡ଼ି ଆସିଥିଲେ । ହେଷ୍ଟିଂସ୍ ଏମାନଙ୍କ ବିରୁଦ୍ଧରେ ବ୍ରିଟିଶ୍ ଅଫିସରମାନଙ୍କ ନେତୃତ୍ୱରେ ଏକ ନିୟମିତ ସିପାହୀ ଦଳ ପଠାଇଥିଲେ । ସନ୍ନ୍ୟାସୀମାନଙ୍କ ପଛରେ ଥିବା ଗଣ ସମର୍ଥନକୁ ନଷ୍ଟ କରି ଦେବା ପାଇଁ ଏବଂ ସେମାନଙ୍କ ସହିତ କୃଷକମାନଙ୍କ ଯୋଗଦାନକୁ ବନ୍ଦ କରିବା ପାଇଁ ପ୍ରତ୍ୟେକଟି ଧୃତ ବିଦ୍ରୋହୀକୁ ହେଷ୍ଟିଂସ୍ ତା'ର ନିଜ ଗ୍ରାମରେ ଫାଶି ଦେଇଥିଲେ । ସେସବୁ ଗ୍ରାମରୁ ସେ ପ୍ରଚୁର ପରିମାଣର ପିଟୁଣୀ ଟିକସ ଆଦାୟ କରିଥିଲେ ଏବଂ ନିହତ ବ୍ୟକ୍ତିର ପରିବାରବର୍ଗଙ୍କୁ ଦାସ ହିସାବରେ ଧରି ଆଣିବାକୁ ଆଦେଶ ଦେଇଥିଲେ । ତାଙ୍କ କାର୍ଯ୍ୟକଳାପ ଶେଷ କଲା ବେଳକୁ ସେ ସନ୍ନ୍ୟାସୀ ବିଦ୍ରୋହ ଦମନ ଏବଂ ସେମାନଙ୍କୁ ବଙ୍ଗଳାରୁ ବିତାଡ଼ନ କରିବାକୁ ସମର୍ଥ ହୋଇଥିଲେ ।

## ବଶ୍ୟତାମୂଳକ ଚୁକ୍ତିର
## ବ୍ରିଟିଶ୍ ନୀତି

ଅଷ୍ଟାଦଶ ଶତାବ୍ଦୀର ସତୁରି ଏବଂ ଅଶି ଦଶନ୍ଧିଗୁଡ଼ିକରେ କଂପାନି ଭାରତରେ ରାଜ୍ୟ ବିସ୍ତାର କରିବା ପରିବର୍ତ୍ତେ ଇତି ମଧ୍ୟରେ ଅଧିକୃତ ଅଞ୍ଚଳଗୁଡ଼ିକରେ ସେମାନଙ୍କ ଅବସ୍ଥାନକୁ ଦୃଢ଼ କରିବା ଉପରେ ଏବଂ ଭାରତର ସ୍ୱାଧୀନ ରାଜ୍ୟଗୁଡ଼ିକରେ ପ୍ରଭାବ ବିସ୍ତାର ଦିଗରେ ଅଧିକ ଦୃଷ୍ଟି ଦେଇଥିଲେ ।

କଂପାନି ସହିତ ବଶ୍ୟତାମୂଳକ ଚୁକ୍ତି ସମ୍ପାଦନ କରିବାକୁ ସମ୍ମତ ସ୍ୱାଧୀନ ରାଜ୍ୟଗୁଡ଼ିକୁ ବ୍ରିଟିଶ୍ ସିପାହୀମାନଙ୍କର (ଯୁଦ୍ଧକ୍ଷମ ସୈନ୍ୟବାହିନୀ) ସାହାଯ୍ୟ ପ୍ରଦାନ କରି ଇଂରେଜମାନେ ଏହି ଶେଷୋକ୍ତ ଉଦ୍ଦେଶ୍ୟଟି ପୂରଣ କରିଥିଲେ ।

ଏହି ଧରଣର ଚୁକ୍ତିରେ କୌଣସି ସ୍ୱାଧୀନ ରାଜ୍ୟ ସ୍ୱାକ୍ଷର କଲା ପରେ ତାକୁ ବୈଦେଶିକ ନୀତି ସଂପର୍କତ ତା'ର ସ୍ୱାଧୀନତାକୁ ପ୍ରତ୍ୟାହାର କରି ନେବାକୁ ପଡ଼ୁଥିଲା । ଏହା ପରେ ଏହି ରାଜ୍ୟ କଂପାନି ମାଧ୍ୟମରେ ତା'ର ବୈଦେଶିକ ସଂପର୍କ ପରିଚାଳନା କରିବାକୁ ବାଧ୍ୟ ହେଉଥିଲା ଏବଂ ସେଇ ରାଜ୍ୟରେ କୌଣସି ଫରାସୀ ବାହିନୀ ଥିଲେ ତାକୁ ଭାଙ୍ଗି ଦେବାକୁ ପଡ଼ୁଥିଲା ଏବଂ କୌଣସି ଫରାସୀକୁ ଚାକିରି ଦେଇ ପାରୁ ନଥିଲା । ଏହି ଦୁଇଟି ସର୍ତ୍ତ ଫଳରେ ବଶ୍ୟତାମୂଳକ ଚୁକ୍ତିଭୁକ୍ତ ଦେଶମାନଙ୍କ ପକ୍ଷରେ ଆଉ ବ୍ରିଟିଶ୍ମାନଙ୍କ ପ୍ରଭାବର ବାହାରକୁ ଯିବା ସମ୍ଭବ ହେଉ ନଥିଲା । ପରିଶେଷରେ, ଏହି ଚୁକ୍ତି ଅନୁଯାୟୀ

ଇଷ୍ ଇଣ୍ଡିଆ କଂପାନି ସମ୍ଭାବ୍ୟ ବୈଦେଶିକ ଆକ୍ରମଣର ବାହାନାରେ ଏହିସବୁ ଦେଶକୁ ସିପାହୀ ବାହିନୀ ପଠାଉଥିଲା । ବ୍ରିଟିଶମାନଙ୍କ ଦ୍ୱାରା ଆରୋପିତ ସର୍ତ୍ତ ଅନୁଯାୟୀ ସେଇ ରାଜ୍ୟର ଶାସକ ଏହି ସେନାବାହିନୀର ଯଥାଯଥ ଭରଣପୋଷଣର ଭାର ଗ୍ରହଣ କରୁଥିଲେ । ନିଜ ଆୟତ୍ତାଧୀନ ଅଞ୍ଚଳରେ ଖଜଣା ଆଦାୟର ଅଧିକାର ବଳରେ ସିପାହୀମାନେ ବସ୍ତୁତଃ ସେଠାରେ ଲୁଣ୍ଠନ ଚଳାଉଥିଲେ ଏବଂ ସେ ରାଜ୍ୟ ସେଠାରେ କଂପାନିକୁ ନୂତନ ଏଲାକା ଦେବାକୁ ବାଧ୍ୟ ହେଉଥିଲା କିମ୍ବା ସିପାହୀମାନଙ୍କର ବ୍ୟୟ ମେଣ୍ଟାଇବା ପାଇଁ କଂପାନିର କର୍ମଗ୍ଭରୀମାନଙ୍କ ଠାରୁ ଋଣ ଗ୍ରହଣ କରୁଥିଲା । ଉଭୟ କ୍ଷେତ୍ରରେ ଆର୍ଥିକ ଦିଗରୁ ଅନିବାର୍ଯ୍ୟ ଧ୍ୱଂସ ହିଁ ରାଜ୍ୟଗୁଡ଼ିକର ନିୟତିଲିଖନ ହୋଇ ଉଠୁଥିଲା । ଶେଷକୁ କଂପାନି "କୁଶାସନର" ଆଳ ଦେଖାଇ ସେସବୁ ନିଃସ୍ୱ ରାଜ୍ୟକୁ ନିଜର ଏଲାକାଭୁକ୍ତ କରି ନେଉଥିଲା ।

ବଶ୍ୟତାମୂଳକ ଚୁକ୍ତି ମାଧ୍ୟମରେ କ୍ରମାନ୍ୱୟରେ ରାଜ୍ୟ ଦଖଲ କରିବାର ଏହି ନୀତିଟି ଗଭୀର ଗଣବିରୋଧିତାର ସମ୍ମୁଖୀନ ହେଲା । ବେଳେ ବେଳେ ଗୋଟିଏ ଗୋଟିଏ ଅଞ୍ଚଳର ସମସ୍ତ ଜନସାଧାରଣ ବ୍ରିଟିଶମାନଙ୍କର ଏହି ଅତ୍ୟାଗ୍ଭର ବିରୁଦ୍ଧରେ ପ୍ରତିବାଦ ଜଣାଇଥିଲେ ଏବଂ ସ୍ଥାନୀୟ ବିଦ୍ରୋହ ବ୍ୟାପକତା ଲାଭ କରିଥିଲା । ଏହି ଭଳି ଭାବେ ଘଟିଥିଲା ବାରାଣସୀ ଏବଂ ଅଯୋଧ୍ୟାର ଘଟଣାସମୂହ ।

ପିତାଙ୍କ ମୃତ୍ୟୁ ପରେ ସିଂହାସନର ଅଧିକାରକୁ ସମର୍ଥନ କରିବା ବିନିମୟରେ ଅଯୋଧ୍ୟାର ରାଜା ଚୈତ୍ ସିଂହଙ୍କ ନିକଟରୁ ହେଷ୍ଟିଂସ୍ ୧୭୭୫ ଖ୍ରୀଷ୍ଟାବ୍ଦରେ କରଦରାଜ୍ୟ ବାରାଣସୀ ଦଖଲ କରି ନେଲେ । ତା'ପରେ କଂପାନି ବାରାଣସୀ ରାଜାଙ୍କୁ ତାଙ୍କ ଦେୟ କଦାପି ବୃଦ୍ଧି ନକରିବାକୁ ଆଶ୍ୱାସ ଦେଇଥିଲେ । କିନ୍ତୁ ସାମରିକ ବ୍ୟୟବହନ ପାଇଁ ଅତିରିକ୍ତ ଖର୍ଚ୍ଚର ପ୍ରୟୋଜନ ଦେଖା ଦେଲେ, ହେଷ୍ଟିଂସ୍ ଶାସକଙ୍କ ନିକଟରୁ ଅତିରିକ୍ତ କର ଦାବୀ କରିଥିଲେ । ଶେଷକୁ ଏହି ଦାବି ବାରାଣସୀ ରାଜ୍ୟ ପକ୍ଷରେ ସାଧ୍ୟାତୀତ ହୋଇ ପଡ଼ିଥିଲା । ହେଷ୍ଟିଂସ୍ ସେତେବେଳେ ଅର୍ଥ ସଂଗ୍ରହ ପାଇଁ ନିଜେ ବାରାଣସୀ ଆସିଥିଲେ । ଏଭଳି ଅବସ୍ଥାରେ ଚୈତ୍ ସିଂହ କିଛି ସମୟ ଗ୍ଭହିଁଲେ, ହେଷ୍ଟିଂସ୍ ତାଙ୍କୁ ଗିରଫ୍ କରିବାକୁ ଆଦେଶ ଦେଲେ । ଏହି ସମ୍ବାଦ ଶୁଣି ଉତ୍ତେଜିତ ଏକ ଜନତା ବାରାଣସୀ ପ୍ରାସାଦ ମଧ୍ୟରେ ପ୍ରବେଶ କରି ରାଜାଙ୍କ ଅଧୀନରେ କର୍ମରତ ଇଂରେଜ ସିପାହୀମାନଙ୍କୁ ହତ୍ୟା କରିଥିଲେ ଏବଂ ଚୈତ୍ ସିଂହଙ୍କୁ ସେମାନଙ୍କ ସହିତ ଘେନି ଯାଇଥିଲେ । ଇଂରେଜମାନଙ୍କ ହାତରେ ନିରନ୍ତର ଅତ୍ୟାଗ୍ଭରିତ ହେବା ହେତୁ ସ୍ଥାନୀୟ ଜନସାଧାରଣଙ୍କ ମନରେ ଗଭୀର ଅସନ୍ତୋଷ ଦେଖା ଦେଇଥିଲା । ହେଷ୍ଟିଂସ୍ ଅତ୍ୟନ୍ତ ସଂକଟ ଅବସ୍ଥାର ସମ୍ମୁଖୀନ ହୋଇ ଖୁବ୍ କଷ୍ଟରେ ଶେଷକୁ ବାରାଣସୀରୁ ପଳାଇ ଯିବାକୁ ସକ୍ଷମ ହୋଇଥିଲେ ।

ଏହି ବିଦ୍ରୋହ ଅବିଳମ୍ବେ ସମଗ୍ର ବାରାଣସୀ, ଏପରିକି ଅଯୋଧ୍ୟା ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଭୟଭୀତ ଇଂରେଜମାନେ ସାରା ବଙ୍ଗଳାରେ ଥିବା ସୈନ୍ୟମାନଙ୍କୁ ଏକତ୍ର କରିବାକୁ ଆରମ୍ଭ କରି ଦେଇଥିଲେ । କିନ୍ତୁ ଚୈତ୍ ସିଂହଙ୍କ ନେତୃତ୍ୱାଧୀନ ସାମନ୍ତ ଭୂସ୍ୱାମୀମାନେ ହେଷ୍ଟିଂସ୍‌ଙ୍କ ନିକଟକୁ ସନ୍ଧି ପାଇଁ ସନିର୍ବନ୍ଧ ଅନୁରୋଧ ପଠାଇବା ଫଳରେ ଏବଂ ସ୍ଥାନୀୟ ମହାଜନମାନେ ଇଂରେଜମାନଙ୍କୁ ଅର୍ଥସାହାଯ୍ୟ ଦେବାରୁ ବିଦ୍ରୋହ କିଛି ପରିମାଣରେ ସହଜରେ ଦମିତ ହୋଇଥିଲା । ପୂର୍ବତନ ରାଜାଙ୍କ ଦ୍ୱାରା ପ୍ରଦତ୍ତ ପ୍ରାୟ ଦୁଇ ଗୁଣ କରର ବିନିମୟରେ ଏବଂ ଖଜଣା ଆଦାୟ ଓ ଯୁଦ୍ଧରେ କେବଳ ବ୍ରିଟିଶ୍ ସୈନ୍ୟ ବ୍ୟବହାର ସର୍ତ୍ତରେ ଅନ୍ୟ ଏକ ରାଜା ବାରାଣସୀର ସିଂହାସନ ଲାଭ କରିଲେ । ଏହା

ପରେ ବାରାଣସୀର ଶକ୍ତିଶାଳୀ ଜାଗିରଦାରମାନେ ସେମାନଙ୍କ ଜାଗିର୍ ହରେଇଥିଲେ । କଂପାନିର ଅତ୍ୟାଗ୍ରହରୁ ସଂଗୃହୀତ ବୃଦ୍ଧିପ୍ରାପ୍ତ ଖଜଣା ଆଦାୟ ଫଳରେ ବାରାଣସୀର ସମୃଦ୍ଧ ଅଞ୍ଚଳଗୁଡ଼ିକ ଦାରିଦ୍ର୍ୟ ପ୍ରପୀଡ଼ିତ, ବିଧ୍ୱସ୍ତ ଅଞ୍ଚଳରେ ପରିଣତ ହେଲା । ୧୭୮୮ ଖ୍ରୀଷ୍ଟାବ୍ଦରେ ବାରାଣସୀର ଇଂରେଜ ବାସିନ୍ଦାଙ୍କ ଘୋଷଣାରୁ ଜଣାଯାଏ ଯେ, ଏହି ଏଲାକାରେ ବିଗତ ବର୍ଷଗୁଡ଼ିକର ଶାସନ ଫଳରେ ଜମିର ପ୍ରାୟ ଏକତୃତୀୟାଂଶରେ କୌଣସି ଗୃଷବାସ କରିବା ସମ୍ଭବ ହୋଇ ନଥିଲା ।

୧୭୮୧ ଖ୍ରୀଷ୍ଟାବ୍ଦରେ ବାରାଣସୀର ବିଦ୍ରୋହ ଦମନ ପରେ ପୁଣି ପରବର୍ତ୍ତୀ ବର୍ଷ ଅଯୋଧ୍ୟାରେ ବିଦ୍ରୋହ ଦେଖା ଦେଇଥିଲା । କଂପାନି ଅଯୋଧ୍ୟାକୁ ସେଠାରେ ଅବସ୍ଥାନରତ ବ୍ରିଟିଶ୍ ସୈନ୍ୟବାହିନୀ ପାଇଁ କ୍ରମବର୍ଦ୍ଧମାନ ଖର୍ଚ୍ଚ ଯୋଗାଇବାକୁ ଏବଂ ଅଧିକତର ପରିମାଣରେ ଜମି ଇଜାରା ଦେବାକୁ ବାଧ୍ୟ କରିଥିଲା । ଜନସାଧାରଣଙ୍କର ଅନ୍ୟାନ୍ୟ ଅଂଶର ସମର୍ଥନ ଅଭାବରୁ ବିଦ୍ରୋହୀ କୃଷକମାନେ ସେଠାକାର ଶକ୍ତିଶାଳୀ ସାମନ୍ତମାନଙ୍କ ଅଧୀନସ୍ଥ ସୈନ୍ୟମାନଙ୍କ ଦ୍ୱାରା ପରାଜିତ ହୋଇଥିଲେ । ଇଂରେଜମାନଙ୍କର ଦୁର୍ବହ ଖଜଣା ଫଳରେ ୧୭୮୪ ଖ୍ରୀଷ୍ଟାବ୍ଦରେ ସେଠାରେ ଦୁର୍ଭିକ୍ଷ ଦେଖା ଦେବା ସତ୍ତ୍ୱେ ହେଷ୍ଟିଂସ୍ ଅଯୋଧ୍ୟା ଦ୍ୱାରା ପ୍ରଦତ୍ତ କର କୌଣସି ପ୍ରକାରେ କମାଇ ନଥିଲେ । ପରବର୍ତ୍ତୀ ବର୍ଷଗୁଡ଼ିକରେ ଖଜଣା ପରିଶୋଧ କରିବାକୁ ଅକ୍ଷମ, ଅଥଚ ଏଥି ପାଇଁ ଉତ୍ପୀଡ଼ିତ ବିକ୍ଷୁବ୍ଧ କୃଷକମାନଙ୍କ ହାତରୁ କେବଳ ବ୍ରିଟିଶ୍ ସେନାବାହିନୀ ଅଯୋଧ୍ୟାର ନବାବଙ୍କୁ ରକ୍ଷା କରିଥିଲା ।

ବସ୍ତୁତଃ ଶୂନ୍ୟ ରାଜକୋଷର ପୁନର୍ଗଠନ ପାଇଁ କେତେକ ସାମନ୍ତଙ୍କର ବିଷୟ ସଂପତ୍ତିକୁ ବିଭିନ୍ନ ଆଳରେ ବାଜ୍ୟାପ୍ତ କରିବା ଦ୍ୱାରା ମଧ୍ୟ ସାମନ୍ତମାନଙ୍କ ମଧ୍ୟରେ ଅସନ୍ତୋଷ ଦେଖା ଦେଇଥିଲା । ଅଯୋଧ୍ୟାର ନବାବ କାର୍ଯ୍ୟତଃ କ୍ଷମତାହୀନ ହୋଇ ପଡ଼ିଥିଲେ । ସେତେବେଳେ ବାରାଣସୀରେ ନିର୍ବାସିତ ପୂର୍ବତନ ନବାବଙ୍କ ପାଳିତ ପୁତ୍ର ଓୟାଜିର୍ ଅଲୀଙ୍କ ନେତୃତ୍ୱରେ ଅସନ୍ତୁଷ୍ଟ ସାମନ୍ତମାନେ ସଂଘବଦ୍ଧ ହେଲେ । ବ୍ରିଟିଶ୍ କର୍ତ୍ତୃକ କ୍ଷମତାଚ୍ୟୁତ ବାରାଣସୀ, ବିହାର ଓ ବଙ୍ଗଳାର ସାମନ୍ତବର୍ଗ (ମୁସଲିମ୍ ଏବଂ ହିନ୍ଦୁ ଉଭୟ), କଲିକତାରେ ଆର୍ମେନୀୟମାନଙ୍କ ସମେତ ବଙ୍ଗଳାର ସମସ୍ତ ବଣିକ ଏବଂ ଅଯୋଧ୍ୟାର ସୈନ୍ୟବାହିନୀ ଓୟାଜିର୍ ଅଲୀଙ୍କୁ ସମର୍ଥନ କଲେ । ରୋହିଲାମାନଙ୍କର ନେତୃବର୍ଗ, ଗୋଆଲିଅରର ମରାଠା ରାଜ୍ୟ ସହିତ ସେ ଆଲୋଚନା ଚଳେଇଥିଲେ ଏବଂ ଆଫଗାନିସ୍ତାନର ଜାମାନ୍ ଶାହ୍‌ଙ୍କୁ ଭାରତ ଆକ୍ରମଣ କରିବା ପାଇଁ ଅନୁରୋଧ ଜଣାଇ ସେଠାକୁ ପ୍ରତିନିଧି ପ୍ରେରଣ କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ମାସଟ ମାଧ୍ୟମରେ ଫରାସୀମାନଙ୍କ ସହିତ ମଧ୍ୟ ଏକ ଚୁକ୍ତି ସଂପାଦନ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ବ୍ରିଟିଶ୍‌ମାନେ ତାଙ୍କ କାର୍ଯ୍ୟକଳାପରେ ସନ୍ଦିହାନ ହୋଇ ଉଠିଥିଲେ ଏବଂ ତାକୁ କଲିକତାକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ଓୟାଜିର୍ ଅଲୀ ଯିବାକୁ ଅସ୍ୱୀକାର କରି ବିଦ୍ରୋହ ଘୋଷଣା କଲେ, କିନ୍ତୁ ଅପରିପକ୍ୱତା ହେତୁ ବିଦ୍ରୋହ ଆରମ୍ଭ ହେଉଁ ହେଉଁ ଏହା ଦମିତ ହୋଇଥିଲା । ଓୟାଜିର୍ ଅଲୀ କଲିକତାରେ ନିର୍ବାସିତ ହେଲେ । ୧୮୦୧ ଖ୍ରୀଷ୍ଟାବ୍ଦର ଏକ ଚୁକ୍ତି ଅନୁଯାୟୀ ଅଯୋଧ୍ୟା ଗଙ୍ଗା-ଯମୁନା ଉପତ୍ୟକାର ଏକ ବିରାଟ ଅଞ୍ଚଳ, ରୋହିଲଖଣ୍ଡ ଓ ଗୋରଖପୁର, ହରେଇଥିଲା । ତା'ପରେ ଅଯୋଧ୍ୟାର ନବାବ ତାଙ୍କ ସୈନ୍ୟବାହିନୀକୁ ଭାଙ୍ଗି ଦେବାକୁ ବାଧ୍ୟ ହୋଇଥିଲେ ଏବଂ କଂପାନି ଅଯୋଧ୍ୟାରେ ତାଙ୍କ ସୈନ୍ୟ ସଂଖ୍ୟା ବୃଦ୍ଧି କରିଥିଲେ ।

୧୮୧୪ ଖ୍ରୀଷ୍ଟାବ୍ଦରେ ନୂତନ ନବାବ କ୍ଷମତାରେ ବସିବା ଫଳରେ ଗଣ ଅସନ୍ତୋଷର ସମ୍ମୁଖୀନ

ହୋଇ ସରକାର ଖଜଣା କମାଇବାକୁ ବାଧ୍ୟ ହୋଇଥିଲ । ତା ସତ୍ତ୍ୱେ ଅଧିକ ଖଜଣା ବିରୁଦ୍ଧରେ ଦୁଇ ବର୍ଷ ପରେ ବେରିଲିରେ ବିଦ୍ରୋହ ଦେଖାଦେଲ । ମୁଫତି ଇୟାଜଙ୍କ ନେତୃତ୍ୱରେ ପରିଗ୍ଭଳିତ ଏହି ବିଦ୍ରୋହକୁ କେବଳ ବିଶେଷ ସୈନ୍ୟବାହିନୀର ସାହାଯ୍ୟରେ ଶେଷକୁ ଦମନ କରାଯାଇଥିଲ । ତା'ପରେ ସବୁକିଛି ଅପରିବର୍ତ୍ତିତ ରହିଗଲ । ନବାବଙ୍କର କୌଣସି ଆପତ୍ତି ନଥିବାରୁ କରଦରାଜ୍ୟ ଅଯୋଧ୍ୟାରେ ଦଶ ହଜାରରୁ ବେଶି ସିପାହୀ ପୋଷଣ କରିବା କଂପାନି ପକ୍ଷରେ ସୁବିଧାଜନକ ହୋଇଥିଲ । ଏମାନଙ୍କ ଅବସ୍ଥାନ ହେତୁ ନବାବଙ୍କ ପକ୍ଷରେ କ୍ଷମତାସୀନ ହୋଇ ରହିବା ସମ୍ଭବ ହୋଇଥିଲ ।

## 'ବ୍ରିଟିଶ୍‌ମାନଙ୍କ ଦକ୍ଷିଣ ଭାରତ ଅଧିକାର

### ମହୀଶୂର ରାଜ୍ୟ ପ୍ରତିଷ୍ଠା

ଦକ୍ଷିଣ ଭାରତରେ ବ୍ରିଟିଶ୍ ଅନୁପ୍ରବେଶ ଦିଗରେ ପ୍ରଧାନ ପ୍ରତିବନ୍ଧକ ଆସିଥିଲ ମହୀଶୂର ରାଜ୍ୟରୁ । ଦକ୍ଷିଣ ଭାରତର କେନ୍ଦ୍ରରେ ଅବସ୍ଥିତ ଏହି ରାଜ୍ୟଟି ଦୁଇ ଦିଗରୁ ପୂର୍ବ ଘାଟ ଓ ପଶ୍ଚିମ ଘାଟ ପର୍ବତ ଓ ଦକ୍ଷିଣରେ କାବେରୀ ନଦୀ ଦ୍ୱାରା ବେଷ୍ଟିତ ଏକ ମାଳଭୂମିରେ ଅବସ୍ଥିତ ଥିଲ । ସେଠାରେ ଶତ୍ରୁ ସୈନ୍ୟଙ୍କ ପକ୍ଷରେ ପ୍ରବେଶ କରିବା ମୋଟେ ସହଜ ନଥିଲ । ମୋଗଲ ଏବଂ ମରହଟ୍ଟାମାନଙ୍କର ଦୀର୍ଘସ୍ଥାୟୀ ଯୁଦ୍ଧର ମୂଳ ଘଟଣାସ୍ଥଳ ଠାରୁ ଦୂରରେ ରହିଥିବା ହେତୁ ମହୀଶୂର ନିଜ ଶକ୍ତିକୁ ସଂହତ କରିବାର ସୁଯୋଗ ପାଇଥିଲ । ଅସଂଖ୍ୟ ଆଞ୍ଚଳିକ ପାହାଡ଼ୀ ନଦୀ ଏବଂ ବନ୍ଧ ଓ ଜଳଭଣ୍ଡାରର ବ୍ୟାପକ ଜଳସେଚନ ବ୍ୟବସ୍ଥା ସହ କାବେରୀ ଜଳର ପ୍ରାଚୁର୍ଯ୍ୟ ସେଠାକାର କୃଷକମାନଙ୍କୁ ପ୍ରଚୁର ଫସଲ ଅମଳ କରିବାରେ ସୁନିଶ୍ଚିତି ଦେଇଥିଲ । ମହୀଶୂରରେ ଭୂମିରାଜସ୍ୱର ପରିମାଣ ମୋଟାମୋଟି ଭାବେ କମ୍ ଥିଲ ଏବଂ କୁଟୀର ଶିଳ୍ପ ଖୁବ୍ ଉନ୍ନତି ଲଭ କରିଥିଲ ।

ରାଜ୍ୟର ଅନେକଗୁଡ଼ିଏ ସହରରେ ବସ୍ତ୍ର (ପ୍ରଧାନତଃ ମୋଟା ବସ୍ତ୍ର) ଉତ୍ପନ୍ନ ହେଲେ ମଧ୍ୟ ଲୁହା ହିଁ ଥିଲ ପ୍ରଧାନ ରପ୍ତାନି ଦ୍ରବ୍ୟ ଏବଂ ସମଗ୍ର ଭାରତରେ ତାହା ବିକ୍ରୟ ହେଉଥିଲ । ପାହାଡ଼ୀ ନଦୀ ସ୍ରୋତରେ ଲୌହ ଆକରିକର ଟୁକୁରାଗୁଡ଼ିକ ମାଳଭୂମିରେ ପହଞ୍ଚୁଥିଲ ଏବଂ ପ୍ରଧାନତଃ ବାଲିରୁ ଏଠାରେ ଲୁହା ସଂଗ୍ରହ ହେଉଥିଲ । ପ୍ରଚୁର କାଠ ଥିବା ହେତୁ ଆଦିମ ଧରଣର ଚୁଲୀରେ ଏହି ଲୁହା ତରଳା ଯାଉଥିଲ ଏବଂ ଶେଷରେ ଛୋଟ ଛୋଟ ଚୁଲୀରେ ବାରମ୍ବାର ଶୋଧନ ଦ୍ୱାରା ଏଥିରୁ ଲୁହା ଏବଂ ଇସ୍‌ପାତ ତିଆରି ହେଉଥିଲ । ଗ୍ରାମୀଣ ଲେକେ ନିର୍ଦ୍ଦିଷ୍ଟ ଋତୁରେ ଏହି ବ୍ୟବସାୟ କରୁଥିଲେ ଏବଂ ବର୍ଷର ବାକି ସମୟରେ ଗ୍ଭଷ କରୁଥିଲେ, କିମ୍ବା ଅନ୍ୟ କୃଷକର ଜମିରେ ମଜୁରି ଖଟୁଥିଲେ । ଅନ୍ୟାନ୍ୟ କାରିଗରୀ ପେଶା ମଧ୍ୟରେ ଥିଲ କାଚ ଚୁଡ଼ୀ ତିଆରି କରିବା, ରଙ୍ଗାଇବା, ବହି ବାନ୍ଧିବା, କେନାଲ ଖୋଳିବା ଏବଂ ଲୁଣ ମାରିବା ।

୧୭୬୧ ଖ୍ରୀଷ୍ଟାବ୍ଦରେ ଓଡିୟାରର ହିନ୍ଦୁ ବଂଶୀୟ ରାଜାଙ୍କୁ ତାଙ୍କର ମୁସଲମାନ ସେନାପତି ହାୟଦର ଅଲୀ (୧୭୬୧-୧୭୮୨) ପଦଚ୍ୟୁତ କରି ସିଂହାସନ ଦଖଲ କରିନେଲେ । ତା'ପରେ ସେ ପ୍ରଥମେ ସେନାବାହିନୀ ପୁନର୍ଗଠନ କାର୍ଯ୍ୟରେ ହାତ ଦେଇଥିଲେ । ହାୟଦର ଅଲୀ ଭିନ୍ନ ଭିନ୍ନ

ଜାଗିର୍‌ଦାରଙ୍କ ଦ୍ୱାରା ଉଡ଼ାକରା ଦରମାଦିଆ ଏବଂ କେବଳ ସେଇମାନଙ୍କ ପ୍ରତି ଅନୁଗତ ସୈନ୍ୟବାହିନୀ ରଖିବାର ପୂର୍ବତନ ପଦ୍ଧତି ବଦଳରେ ସିଧାସଳଖ ନିଜ ଅଧୀନରେ ଯୋଦ୍ଧା ଏବଂ ଅଫିସର ରଖିବାର ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ସରକାରୀ ପାଣ୍ଠିରୁ ସେମାନଙ୍କୁ ସେ ବେତନ ଦେଲେ ଏବଂ ଏଥି ସଙ୍ଗେ ସଙ୍ଗେ ଜାଗିର ବଣ୍ଟନର ପ୍ରଥାକୁ ରଦ୍ଦ କରିଦେଲେ । ସେ ତାଙ୍କ ସେନାଦଳରେ ବ୍ୟାପକ ହାରରେ ବିଦେଶୀ ଅଫିସର (ବିଶେଷ କରି ଫରାସୀ ଅଫିସର) ନିଯୋଗ କରିଥିଲେ । ଏସବୁ ଅଫିସରମାନଙ୍କ ନିକଟରୁ ହାୟଦର ଅଲୀଙ୍କ ସୈନ୍ୟମାନେ ଶୃଙ୍ଖଳା, ନୂତନ ରଣକୌଶଳ ଶିକ୍ଷା କରିଥିଲେ । ହାୟଦର ଅଲୀ ହିଁ ପ୍ରଥମ ଭାରତୀୟ ଶାସକ, ଯିଏ ଅଶ୍ୱାରୋହୀଙ୍କ ବଦଳରେ ପଦାତିକ ସୈନ୍ୟଙ୍କ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ସୈନ୍ୟବାହିନୀରେ କର୍ମରତ ମୋଟ ୫୦-୫୫ ହଜାର ସୈନ୍ୟଙ୍କ ମଧ୍ୟରୁ ପଦାତିକଙ୍କ ସଂଖ୍ୟା ଥିଲା ୨୬-୩୧ ହଜାର ଭଳି । ଏମାନଙ୍କ ମଧ୍ୟରେ ୟୁରୋପୀୟ ଧାରାରେ ପ୍ରଶିକ୍ଷିତ, ବନ୍ଧୁକଧାରୀ ନିୟମିତ ସୈନ୍ୟ ଥିଲେ ୨୦ ହଜାର । ହାୟଦର ଅଲୀଙ୍କ ଅଶ୍ୱାରୋହୀବାହିନୀ ଜଣେ ମାତ୍ର ସେନାପତିଙ୍କ ଅଧୀନରେ ଥିଲା ଏବଂ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକର ଗୋଟିଏ କରି ଯୁଦ୍ଧ ଘୋଡ଼ା ଥିବାରୁ ଯୁଦ୍ଧରେ ସେମାନେ ଅଧିକତର ସାହସ ପ୍ରଦର୍ଶନ କରିବାକୁ ଉତ୍ସାହ ପାଉଥିଲେ । ତା'ଛଡ଼ା ତାଙ୍କର ପ୍ରଥମ ଶ୍ରେଣୀର କମାଣ ବାହିନୀଟି ଥିଲା ବ୍ରିଟିଶ୍‌ମାନଙ୍କ ସମକକ୍ଷ ଏବଂ ଗତିଶୀଳ । ଯୁଦ୍ଧ କ୍ଷେତ୍ରରେ ଚିକିତ୍ସା ସାହାଯ୍ୟ ପାଇଁ ସେ ଏକ ବିଶେଷ ସେନାଦଳ ଗଠନ କରିଥିଲେ । ସୁସଂଗଠିତ ବ୍ୟାପକ ପରିଦର୍ଶନ ବ୍ୟବସ୍ଥାଟି ତାଙ୍କ ସାମରିକ ବାହିନୀ ପରିଚାଳନାକୁ ସହଜ କରି ଦେଇଥିଲା ।

ଏହିସବୁ ଉଦ୍‌ଭାବନ ଓ ମହୀଶୂରର ପର୍ଯ୍ୟାପ୍ତ ସମ୍ପଦ ହେତୁ କେଇ ବର୍ଷ ମଧ୍ୟରେ ହାୟଦର ଅଲୀ ଭାରତୀୟ ରାଜ୍ୟଗୁଡ଼ିକ ମଧ୍ୟରେ ସର୍ବାଧିକ ଶକ୍ତିଶାଳୀ ଏକ ସେନାବାହିନୀ ଗଠନ କରିବାକୁ ସକ୍ଷମ ହୋଇଥିଲେ । ୧୭୬୧-୧୭୬୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ଅନେକ ଯୁଦ୍ଧ ପରିଚାଳନା କରି ବିଜୟୀ ହୋଇଥିଲେ । ୧୭୬୧ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀ ତିନି ଲକ୍ଷ ଟଙ୍କାରେ ହାୟଦରାବାଦ ସିଂହାସନର ଅନ୍ୟତମ ଦାବିଦାରଙ୍କ ନିକଟରୁ ସେରା ସହରଟି ସମେତ ସେରା ଜିଲ୍ଲାଟିକୁ କିଣି ନେଲେ । ଏହା ପରେ ସେ ହସ୍‌କୋଟ, ଦଦ୍-ବାଲାପୁର, ଚିକ୍-ବାଲାପୁର, ନାନ୍ଦିଦୁର୍ଗ, ଗୁଡ଼ିବାନ୍ଦା, କୋଡ଼ିକୋଣ୍ଡା ଓ ନିକଟବର୍ତ୍ତୀ ଅନ୍ୟାନ୍ୟ କେତେକ ଛୋଟ ଅଞ୍ଚଳ ନିଜର ରାଜ୍ୟଭୁକ୍ତ କରି ନେଲେ । ଏହି ସମୟର ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଲା ପ୍ରାୟ ୬୦ ହଜାର ଲୋକ ସଂଖ୍ୟା ଅଧ୍ୟୁଷିତ ବେଦ୍‌ନୋର ନାମକ ନଗର ଅଧିକାର । ଏକାଧିକ ପରସ୍ତ ପ୍ରାଚୀର ବେଷ୍ଟିତ ଓ ପଶ୍ଚିମ ଘାଟ ପର୍ବତରେ ଅବସ୍ଥିତ ଥିବା ହେତୁ ମାଲବାର ଉପକୂଳ ଏବଂ ମାଲବାର ଓ କନଡ଼ାରୁ ମହୀଶୂରକୁ ଆସିବାର ଗିରିପଥଗୁଡ଼ିକ ଏହାର ନିୟନ୍ତ୍ରଣରେ ଥିଲା । ବେଦ୍‌ନୋର ସିଂହାସନର ଅନ୍ୟତମ ଅଂଶୀଦାରଙ୍କୁ ସମର୍ଥନ ପ୍ରଦାନ ଆଳରେ ହାୟଦର ଅଲୀ ସେଠାରେ ବେଦ୍‌ନୋର ଶାସକମାନଙ୍କ ପ୍ରାସାଦରେ ସଞ୍ଚିତ ଅମାପ ଧନଦୌଲତ୍‌ପୂର୍ଣ୍ଣ ଏହି ଦୁର୍ଗଟିକୁ ଅବରୋଧ କରିଥିଲେ । ହାୟଦରନଗର ରୂପେ ଏହାର ନୂତନ ନାମକରଣ କଲା ପରେ ସେ ସହରଟିକୁ ଏକ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ରାଗାରରେ ପରିଣତ କଲେ ।

ହାୟଦର ଅଲୀଙ୍କ ସୈନ୍ୟମାନେ ତା'ପରେ ବେଦ୍‌ନୋର ଗିରିପଥ ଦେଇ ମାଲାବାର ଉପକୂଳରେ ପହଞ୍ଚିଥିଲେ ଏବଂ ସହଜରେ ବୃହତ୍ ବନ୍ଦର ସହର ହନବାର (ହନର) ଓ ମାଙ୍ଗଲୋର ସମେତ ବେଦ୍‌ନୋରର କରଦରାଜ୍ୟ ସୁନ୍ଦା (ପରବର୍ତ୍ତୀ କାଳରେ କନଡ଼ା) ଜୟ କରି ନେଲେ । ତା'ପରେ

ହାୟଦର ଅଲୀ ସାଭାନୁରର ନବାବଙ୍କ ସୈନ୍ୟଦଳଟିକୁ ଉତ୍ଖାତ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ଯୁଦ୍ଧର ବ୍ୟାପକ କ୍ଷତିପୂରଣ ଲାଭ କରିବା ପାଇଁ ଏହି ରାଜ୍ୟଟିକୁ ଅଧିକାର କରିବାରୁ ବିରତ ରହିଥିଲେ ।

ହାୟଦର ଅଲୀ ମରହଟ୍ଟାମାନଙ୍କ ଭଳି ପରଦେଶ ଆକ୍ରମଣ କରି ସେଠାରୁ ଚୌଠ ଓ ସରଦେଶମୁଖୀ ଆଦାୟ କରୁ ନଥିଲେ । ବିଜିତ ଅଞ୍ଚଳଗୁଡ଼ିକୁ ସେ ତାଙ୍କ ରାଜ୍ୟଭୁକ୍ତ କରି ନେଉଥିଲେ । ସାରା ଦକ୍ଷିଣ ଭାରତରେ ପ୍ରାଧାନ୍ୟ ବିସ୍ତାର କଲା ଭଳି ଏବଂ ଇଂରେଜମାନଙ୍କୁ ମୁକାବିଲା କଲା ଭଳି ଶକ୍ତିଶାଳୀ ସଂଯୁକ୍ତ ମହୀଶୂର ରାଜ୍ୟ ସେ ପ୍ରତିଷ୍ଠା କରିଥିଲେ ଛୋଟ ଛୋଟ ଅସଂଖ୍ୟ ଏଲାକାକୁ ନେଇ । କିନ୍ତୁ ଅନ୍ୟ ସମସ୍ତ ବିଜୟୀଙ୍କ ଭଳି ହାୟଦର ଅଲୀ ଓ ତାଙ୍କ ସୈନ୍ୟବାହିନୀ ବିଜିତ ଜାତିମାନଙ୍କୁ ଲୁଣ୍ଠନ କରୁଥିଲେ ଏବଂ ଶେଷରେ ସୈନ୍ୟବାହିନୀକୁ ପୋଷଣ କରିବା ପାଇଁ ଅଧିକତର ପାଣ୍ଠିର ଆବଶ୍ୟକତା ଦେଖାଦେଲେ ନୂଆ ଅଧିକୃତ ରାଜ୍ୟଗୁଡ଼ିକରୁ ଅଧିକ ଖଜଣା ଆଦାୟ କରୁଥିଲେ । ଏହି ବ୍ୟବସ୍ଥା ଫଳରେ ବିଜେତା ଶାସକ ଓ ଜନସାଧାରଣଙ୍କ ମଧ୍ୟରେ ଅସନ୍ତୋଷ ଦେଖା ଦେଇଥିଲା ଏବଂ ଏହି ଭାବେ ପ୍ରଥମ ମହୀଶୂର ରାଜ୍ୟର ଏକ ଓ ପରେ ଅନ୍ୟାନ୍ୟ ଅଞ୍ଚଳରେ ବିଦ୍ରୋହମୂଳକ ପରିସ୍ଥିତି ସୃଷ୍ଟି ହୋଇଥିଲା ।

ହାୟଦର ଅଲୀଙ୍କ ରାଜ୍ୟ ବିସ୍ତାରର ଅନିବାର୍ଯ୍ୟ ଫଳ ସ୍ୱରୂପ ଦକ୍ଷିଣ ଭାରତର ଦୁଇଟି ପ୍ରଧାନ ଶକ୍ତି – ସଂଯୁକ୍ତ ମରହଟ୍ଟା ରାଜ୍ୟଗୁଡ଼ିକ ଓ ହାୟଦରାବାଦ ସହିତ ସଂଘାତ ଦେଖା ଦେଇଥିଲା । ଏହିସବୁ ରାଜ୍ୟର କୌଣସି ସୁନିର୍ଦ୍ଦିଷ୍ଟ ସୀମା ନଥିଲା ଏବଂ ଏମାନେ ପ୍ରତିବେଶୀକୁ ହଟେଇ ନିଜ ରାଜ୍ୟ ବିସ୍ତାର କରିବାକୁ ସର୍ବଦା ତତ୍ପର ଥିଲେ । ଛୋଟ ଛୋଟ ଅଞ୍ଚଳଗୁଡ଼ିକ ମଧ୍ୟରୁ ଅନେକ କ୍ରମାନ୍ୱୟରେ ସେମାନଙ୍କର କୌଣସି ନା କୌଣସି ଶକ୍ତିଶାଳୀ ପ୍ରତିବେଶୀଙ୍କ କବଳରେ ପଡ଼ୁଥିଲେ ଏବଂ ଏମାନେ ଚଳନ୍ତି ବା ପୂର୍ବତନ ଅଧିପତି ହିସାବରେ କର ଦାବୀ କରୁଥିଲେ । ୧୭୬୪ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ମହୀଶୂର ଆକ୍ରମଣ କଲେ, ହାୟଦର ଅଲୀ ଦୁଇ ଥର ପରାଜିତ ହେଲା ପରେ ଶେଷକୁ ୩ ଲକ୍ଷ ୫୦ ହଜାର ଟଙ୍କା କ୍ଷତିପୂରଣ ଦେଇ ସେମାନଙ୍କୁ ଦୂରରେ ରଖିବାକୁ ସକ୍ଷମ ହୋଇଥିଲେ ।

ଏହା ପରେ ହାୟଦର ଅଲୀ ବାଲମ ଓ କୁର୍ଗକୁ (ପଶ୍ଚିମ ଘାଟ ମଧ୍ୟ ଦେଇ ଏହି ଅଞ୍ଚଳଗୁଡ଼ିକରେ ଗିରିପଥ ରହିଛି) ଯୁଦ୍ଧାଭିଯାନ ଚଳେଇଥିଲେ । ବାଲମ ସଙ୍ଗେ ସଙ୍ଗେ ଆତ୍ମସମର୍ପଣ କରିଥିଲା । କିନ୍ତୁ କୁର୍ଗ ବିରୁଦ୍ଧରେ ୧୭୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯୁଦ୍ଧ ପରିଚାଳନା କରି ଶେଷକୁ ମହୀଶୂର ଏକ ଶାନ୍ତି ଚୁକ୍ତି ମାଧ୍ୟମରେ ସାମୟିକ ଭାବେ ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ ହେଲା । ମୁସଲିମ୍ ବଣିକ ମପଲାମାନଙ୍କୁ ରକ୍ଷା କରିବା ବାହାନାରେ ହାୟଦର ଅଲୀଙ୍କ ସୈନ୍ୟବାହିନୀ ବାଲମ ଗିରିପଥ ଦେଇ ମାଲାବାର ଉପକୂଳରେ ପହଞ୍ଚିଥିଲେ । କାଲିକଟରେ ସମସ୍ତ ଗୁରୁତ୍ୱପୂର୍ଣ୍ଣ ପଦାଧିକାରୀ ନମ୍ବୁଦ୍ରି ବ୍ରାହ୍ମଣ ଏବଂ ନିଷ୍କର ଭୂମିସ୍ୱତ୍ୱ ଭୋଗ କରିବା ପରିବର୍ତ୍ତେ ବାଧ୍ୟତାମୂଳକ ସାମରିକ କାର୍ଯ୍ୟରେ ନିଯୁକ୍ତ ନାୟାର – ଯୋଦ୍ଧା ଓ ଜମିଦାରମାନେ ୧୭୬୫ ଖ୍ରୀଷ୍ଟାବ୍ଦରେ କେଇ ଦିନ ମଧ୍ୟରେ ଛଅ ହଜାର ମପଲା ବଣିକଙ୍କୁ ନିର୍ବିଘ୍ନରେ ହତ୍ୟା କରିଥିଲେ । ନାୟାରମାନେ କେବଳ ପଦାତିକ ସୈନ୍ୟ ଦେଇ ଯୁଦ୍ଧ ଚଳଉଥିଲେ ଏବଂ ଅସି ଆଉ ଧନୁଶର ବ୍ୟବହାର କରୁଥିଲେ । ସେମାନେ, ଅବଶ୍ୟ, ହାୟଦର ଅଲୀଙ୍କ ସୈନ୍ୟମାନଙ୍କୁ ପ୍ରତିରୋଧ କରି ପାରି ନଥିଲେ । ଅଞ୍ଜାରାକାଣ୍ଡି ନଦୀ ତୀରରେ ଅନୁଷ୍ଠିତ ଏକ ଯୁଦ୍ଧରେ

ନାୟାର ସେନାବାହିନୀର ପରାଜୟ ଘଟିଥିଲା ଏବଂ ହାୟଦର ଅଲୀ କାଲିକଟ ଦଖଲ କରିଥିଲେ । ମାଲାବାର ଉପକୂଳରେ ପ୍ରଥମ ଥର ପାଇଁ ଅତ୍ୟଧିକ ଭୂମିରାଜସ୍ୱ ବସାଗଲା । ତିନି ଚାରି ମାସ ପରେ ନାୟାରମାନେ ପୁଣି ସେମାନଙ୍କ ସ୍ୱାଧୀନତା ରକ୍ଷା କରିବାକୁ ଉଦ୍ୟମ କରିଥିଲେ । ଏକ ବିଦ୍ରୋହ ଘୋଷଣା କରି ସେମାନେ ସେଠାରେ ଥିବା ହାୟଦର ଅଲୀଙ୍କ ସୈନ୍ୟବାହିନୀକୁ ପରାସ୍ତ କରିଦେଲେ । ହାୟଦର ଅଲୀ ଇତିମଧ୍ୟରେ କୋଏମ୍ବାଟୋରରେ ପହଞ୍ଚି ଯାଇଥିଲେ । ଉଚ୍ଚୁଳା ନଦୀ ଓ ପ୍ରବଳ ବର୍ଷାକୁ ଏଡ଼ି ହାୟଦର ଅଲୀଙ୍କ ସୈନ୍ୟମାନେ ସେଠାରେ ପହଞ୍ଚି ପାରିବେ ନାହିଁ ବୋଲି ନାୟାରମାନେ ନିଶ୍ଚିତ ଥିଲେ । କିନ୍ତୁ ବର୍ଷାକାଳ ସତ୍ତ୍ୱେ ହାୟଦର ଅଲୀ କାଲିକଟକୁ ଫେରି ଆସିଲେ ଏବଂ ଅସ୍ତ୍ର ଆଉ ଅଗ୍ନି ଦ୍ୱାରା ସହରଟିକୁ ଧ୍ୱଂସ କରିଦେଲେ । ତା'ପରେ ପନ୍ଦର ହଜାର ନାୟାରଙ୍କୁ ବଳପୂର୍ବକ ମହୀଶୂରର କେନ୍ଦ୍ରସ୍ଥଳକୁ ସ୍ଥାନାନ୍ତରିତ କରାଗଲା ।

ତ୍ରିଭାଙ୍କୁର ବିରୁଦ୍ଧରେ ହାୟଦର ଅଲୀଙ୍କ ପରବର୍ତ୍ତୀ ଅଭିଯାନ ତାଙ୍କ ବିରୁଦ୍ଧରେ ମରହଟ୍ଟା, ହାୟଦରାବାଦ ଓ ଇଂରେଜମାନଙ୍କ ଦ୍ୱାରା ସୁରକ୍ଷିତ ଆର୍କଟର ନବାବଙ୍କୁ ଐକ୍ୟବଦ୍ଧ କରିଥିଲା । ସେ ତାଙ୍କର ଭାରତୀୟ ଶତ୍ରୁମାନଙ୍କୁ ଜୟ କରିବାକୁ ସକ୍ଷମ ହେଲେ ମଧ୍ୟ ଇଂରେଜମାନେ ଏହି ପର୍ଯ୍ୟାୟରେ ବଡ଼ମହାଲ ଆକ୍ରମଣ କରି ମହୀଶୂରର କେନ୍ଦ୍ର, ରାଜଧାନୀ ଶ୍ରୀରଙ୍ଗପଟ୍ଟମ୍ ଆଡ଼କୁ ଆଗେଇ ଯିବାର ବିପଦ ସୃଷ୍ଟି କରିଥିଲେ । ଏହି ସମ୍ବାଦ ପାଇ ହାୟଦର ଅଲୀଙ୍କ ପୁତ୍ର ଟିପୁ ଆର୍କଟ ଆକ୍ରମଣ କରିବାରୁ ୧୭୬୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ଇଂରେଜ-ମହୀଶୂର ଯୁଦ୍ଧ ଲାଗି ଯାଇଥିଲା ।

## ପ୍ରଥମ ଇଂରେଜ-ମହୀଶୂର ଯୁଦ୍ଧ

ଦକ୍ଷିଣ ଭାରତରେ ଫରାସୀମାନଙ୍କର ପରାଜୟ ଘଟେଇ ଏବଂ ବଙ୍ଗ ବିଜୟ କରି ଇଂରେଜମାନେ ହାୟଦର ଅଲୀଙ୍କ ବିରୁଦ୍ଧରେ ଦ୍ରୁତ ଜୟ ଲାଭର ଆଶା ପୋଷଣ କରୁଥିଲେ । କିନ୍ତୁ ୧୭୬୭ ଖ୍ରୀଷ୍ଟାବ୍ଦରେ ଚାଙ୍ଗାମା ଓ ତ୍ରିନୋମାଲି ଯୁଦ୍ଧ ପରେ ହାୟଦର ଅଲୀ ବଡ଼ ଧରଣର ସଂଘର୍ଷକୁ ଏଡ଼ାଇବାକୁ ଉଦ୍ୟମ କରିଥିଲେ । ଏହା ପରେ ସେ ବିଭିନ୍ନ ଧରଣର ରଣକୌଶଳର ଆଶ୍ରୟ ନେଇଥିଲେ । ଯଥା, ସେ ତାଙ୍କ ସୈନ୍ୟବାହିନୀକୁ ଅତି ଦ୍ରୁତଚାର ସହିତ ନୂତନ ସ୍ଥାନକୁ ଆଗେଇ ନେଇ ଗୋଟିଏ ଗୋଟିଏ ସୈନ୍ୟଦଳ ବା ଅସୁରକ୍ଷିତ ସ୍ଥାନରେ ଆଘାତ ହାଣୁଥିଲେ । ଇଂରେଜ ସିପାହୀ ପଦାତିକ ବାହିନୀ ତୁଳନାରେ ମହୀଶୂରର ଅଶ୍ୱାରୋହୀ ଓ କମାଣ ବାହିନୀର ଅତ୍ୟଧିକ ଦ୍ରୁତ ଗତି କେତେକ କ୍ଷେତ୍ରରେ ହାୟଦର ଅଲୀଙ୍କ ସାଫଲ୍ୟକୁ ନିଶ୍ଚିତ କରିଥିଲା ।

ମାନ୍ଦ୍ରାଜ ଏବଂ ବମ୍ବେ, ଉଭୟ ଦିଗରୁ ମହୀଶୂରକୁ ଆକ୍ରମଣ କରି ଇଂରେଜମାନେ କେତେକ ଉଲ୍ଲେଖଯୋଗ୍ୟ ପ୍ରାଥମିକ ସାଫଲ୍ୟ ଅର୍ଜନ କରିଥିଲେ । ବମ୍ବେର ସୈନ୍ୟବାହିନୀର ସହାୟତାରେ ମାଲାବାର ଉପକୂଳବାସୀମାନେ ବିଦ୍ରୋହ କରିବା ହେତୁ ହାୟଦର ଅଲୀ ତାଙ୍କ ପ୍ରଧାନ ସୈନ୍ୟବାହିନୀକୁ ମାଲାବାରକୁ ପଠାଇବାକୁ ବାଧ୍ୟ ହୋଇଥିଲେ । ଇତିମଧ୍ୟରେ ମାନ୍ଦ୍ରାଜର ସୈନ୍ୟମାନେ ମହୀଶୂରର ପୂରା ଦକ୍ଷିଣ-ପୂର୍ବ ଅଞ୍ଚଳଟିକୁ ଦଖଲ କରିନେଲେ । କିନ୍ତୁ ମୁଖ୍ୟ ସରବରାହ ଘାଟିଟିରୁ ବିଚ୍ଛିନ୍ନ ବହୁ ଦୂରରେ ଅବସ୍ଥିତ ବ୍ରିଟିଶ୍ ସୈନ୍ୟମାନଙ୍କ ମଧ୍ୟରେ ଖାଦ୍ୟାଭାବ ଦେଖା ଦେଲା ଏବଂ ସେମାନେ ଯୁଦ୍ଧ କରିବାର ସାମର୍ଥ୍ୟ ଅନେକ ପରିମାଣରେ ହରେଇଥିଲେ । ସେତେବେଳେ

ହାୟଦର ଅଲୀ ତାଙ୍କର ବଛା ବଛା ସୈନ୍ୟଦଳଗୁଡ଼ିକୁ ନେଇ କର୍ଣ୍ଣାଟକ ଆକ୍ରମଣ କଲେ ଏବଂ ପଥରେ ଗାଁଗଣ୍ଡାକୁ ଜାଳି ପୋଡ଼ି ଅବିଳମ୍ବେ ମାନ୍ଦ୍ରାଜ ସହରତଳୀରେ ଯାଇ ପହଞ୍ଚି ଗଲେ । ଏଭଳି ଅବସ୍ଥାରେ ବ୍ରିଟିଶ୍‌ମାନେ ବାଧ୍ୟ ହୋଇ ଶାନ୍ତି ଚୁକ୍ତି ସଂପାଦନ କଲେ ଏବଂ ତଦନୁସାରେ ପରସ୍ପର ଦ୍ୱାରା ଅଧିକୃତ ଅଞ୍ଚଳଗୁଡ଼ିକୁ ଫେରେଇ ଦେବା ସଙ୍ଗେ ସଙ୍ଗେ "ତୃତୀୟ ଶକ୍ତି କର୍ତ୍ତୃକ ଆକ୍ରାନ୍ତ ହେଲେ, ପରସ୍ପରକୁ ସାହାଯ୍ୟ ଦାନ କରିବାକୁ ସମ୍ମତ ହୋଇଥିଲେ" ।

୧୭୭୦ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ଉତ୍ତର ମହୀଶୂର ଆକ୍ରମଣ କଲେ ହାୟଦର ଅଲୀ ବ୍ରିଟିଶ୍‌ମାନଙ୍କର ସାହାଯ୍ୟ ଗ୍ଭହିଁଲେ । କିନ୍ତୁ ଇତିପୂର୍ବରୁ ମରହଟ୍ଟାମାନଙ୍କ ସହିତ ଚୁକ୍ତିବଦ୍ଧ ରହିଛନ୍ତି ବୋଲି କହି ବ୍ରିଟିଶ୍‌ମାନେ ପ୍ରସ୍ତାବଟିକୁ ଅଗ୍ରାହ୍ୟ କରିଦେଲେ ।

ହାୟଦର ଅଲୀଙ୍କ ପୂର୍ବରୁ ସମସ୍ତ ଭାରତୀୟ ରାଜା ବ୍ରିଟିଶ୍‌ମାନଙ୍କୁ ସେମାନଙ୍କ ସମ ପର୍ଯ୍ୟାୟର ଶାସକ ବୋଲି ମନେ କରୁଥିଲେ । ବେଳେ ବେଳେ ସେମାନେ ବ୍ରିଟିଶ୍‌ମାନଙ୍କ ସହିତ ଲଢ଼ାଇ କରୁଥିଲେ ଏବଂ ପୁଣି କେତେବେଳେ ଆଭ୍ୟନ୍ତରୀଣ ଶତ୍ରୁ ବିରୁଦ୍ଧରେ ସେମାନଙ୍କ ସହିତ ଚୁକ୍ତିବଦ୍ଧ ହେଉଥିଲେ । ୧୭୭୦ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀ ହିଁ ସର୍ବପ୍ରଥମେ ଉପଲବ୍ଧି କଲେ ଯେ, ବ୍ରିଟିଶ୍‌ମାନେ ଭାରତୀୟ ରାଜ୍ୟଗୁଡ଼ିକର ପ୍ରଧାନ ଶତ୍ରୁ ଏବଂ ଏମାନଙ୍କ ସହିତ କୌଣସି ଚୁକ୍ତିବଦ୍ଧ ହେବା ସଂପୂର୍ଣ୍ଣ ଅସମ୍ଭବ । ତେଣୁ "...ହାୟଦର ଅଲୀ ଓ ଟିପୁ ସାହେବ କୋରାନ୍ ଧରି ଶପଥ ନେଇଥିଲେ ଇଂରେଜମାନଙ୍କ ବିରୁଦ୍ଧରେ ଚିରଦିନ ଘୃଣା ପୋଷଣ କରିବା ସାଥେ ସାଥେ ଏମାନଙ୍କୁ ଧ୍ୱଂସ କରିବାକୁ ।"*

ହାୟଦର ଅଲୀ ୧୭୭୨ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କୁ ଜୟ କରିବାରେ ସଫଳ ହୋଇଥିଲେ । ଏହି ପ୍ରତିଦ୍ୱନ୍ଦ୍ୱୀଙ୍କ ସହିତ ଯୁଦ୍ଧରେ ମହୀଶୂରର ସଂପଦ ଯେ ଧ୍ୱଂସ ହେବ, ଏହା ସେ ଉପଲବ୍ଧି କରିଥିଲେ ।

ହାୟଦର ଅଲୀ କରଦରାଜ୍ୟଗୁଡ଼ିକରୁ, ବିଶେଷତଃ, ମରହଟ୍ଟା ଆକ୍ରମଣ ସମୟରେ ଶତ୍ରୁ ପକ୍ଷର ସମର୍ଥକମାନଙ୍କ ନିକଟରୁ ଅଧିକ କର ସଂଗ୍ରହ ମାଧ୍ୟମରେ ତାଙ୍କର ଶୂନ୍ୟ ପ୍ରାୟ ରାଜକୋଷକୁ ପୁନର୍ଗଠନ କରିଥିଲେ । ୧୭୭୨-୧୭୭୩ ଖ୍ରୀଷ୍ଟାବ୍ଦରେ ସେ ପୁନରାୟ ମାଲବାର ଉପକୂଳଟିକୁ ଦଖଲ କଲେ ଏବଂ ୧୭୭୪ ଖ୍ରୀଷ୍ଟାବ୍ଦରେ କୁର୍ଗ ଏଲକା ମଧ୍ୟ ତାଙ୍କ ରାଜ୍ୟଭୁକ୍ତ ହୋଇଥିଲା ।

## ପ୍ରଥମ ଇଂରେଜ-ମରହଟ୍ଟା ଯୁଦ୍ଧ

ଇତିମଧ୍ୟରେ ଇଂରେଜ ଏବଂ ମରହଟ୍ଟାମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲେ, ହାୟଦର ଅଲୀ ସେଥିରେ ଜଡ଼ିତ ହୋଇ ପଡ଼ିଲେ । ୧୭୬୧ ଖ୍ରୀଷ୍ଟାବ୍ଦରେ ପାଣିପଥର ତୃତୀୟ ଯୁଦ୍ଧରେ ମରହଟ୍ଟା ବାହିନୀ ବିଧ୍ୱସ୍ତ ହୋଇଯିବା ଦ୍ୱାରା ଅନ୍ୟାନ୍ୟ ମରହଟ୍ଟା ରାଜାମାନଙ୍କ ଉପରେ ପେଶବାଙ୍କ ପୂର୍ବ କ୍ଷମତା ଆଉ ରହିଲା ନାହିଁ । ସେତେବେଳେ ସର୍ବପ୍ରଧାନ ମରହଟ୍ଟା ରାଜ୍ୟ ଥିଲା ଗୋଆଲିଅର (ସିନ୍ଧିଆ ବଂଶର ଅଧୀନ) ଏବଂ ଇନ୍ଦୋର (ହୋଲକାର ବଂଶ ଶାସିତ) । ତା ସତ୍ତ୍ୱେ ପ୍ରଥମ ମାଧବ ରାଓଙ୍କ ଶାସନ କାଳରେ (୧୭୬୧-୧୭୭୨) ଦକ୍ଷିଣ ଭାରତରେ ମହାରାଷ୍ଟ୍ରର ଉଲ୍ଲେଖଯୋଗ୍ୟ

* K. Marx, "Notes on Indian History", Moscow, 1960, p. 95.

ଭୂମିକା ଥିଲା । ପ୍ରଥମ ମାଧବ ରାଓଙ୍କ ମୃତ୍ୟୁ ପରେ ତାଙ୍କ ଉତ୍ତରାଧିକାରୀମାନଙ୍କ ମଧ୍ୟରେ କ୍ଷମତା ଦଖଲ ନେଇ ପୁନାରେ ଲଢ଼େଇ ଲାଗିଗଲା । ସେମାନଙ୍କ ମଧ୍ୟରୁ ଅନ୍ୟତମ ରଘୁନାଥ ରାଓ ବା ରାଘବ ହାଇଦର ଅଲୀଙ୍କ ସାହାଯ୍ୟ ଭିକ୍ଷା କରିଥିଲେ । କିନ୍ତୁ କୁର୍ଗ ବିରୁଦ୍ଧରେ ଯୁଦ୍ଧରତ ଥିବାରୁ ହାଇଦର ଅଲୀଙ୍କ ପକ୍ଷରେ ତାଙ୍କୁ ସାହାଯ୍ୟ ଦେବା ସମ୍ଭବ ନଥିଲା । ତା'ପରେ ସେ ସୁରାଟରେ ବମ୍ବେ କାଉନ୍‌ସିଲରଙ୍କ ଦ୍ୱାରସ୍ଥ ହୋଇଥିଲେ ଏବଂ ବେସିନ୍, ସାଲସେଟେର ମରହଟ୍ଟା ଭୂମି ଏବଂ ବମ୍ବେକୁ ଲାଗି ଆଉ କେତୋଟି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ଇଂରେଜମାନଙ୍କୁ ପ୍ରଦାନ କରି ଏକ ଚୁକ୍ତି ସଂପାଦନ କରିଥିଲେ । ତା'ପରେ ରଘୁନାଥ ରାଓଙ୍କୁ ପ୍ରଦତ୍ତ ୨,୫୦୦ ଜଣ ଇଂରେଜ ସୈନ୍ୟଙ୍କର ଭରଣ ପୋଷଣ ବାବଦକୁ ପ୍ରତି ମାସ ୧ ଲକ୍ଷ ୫୦ ହଜାର ଟଙ୍କା ଦେବାକୁ ମଧ୍ୟ ସେ ରାଜି ହେଲେ ।

କିନ୍ତୁ ମରହଟ୍ଟା ରାଜାମାନଙ୍କର ସମ୍ମିଳିତ ବାହିନୀ ଆକ୍ରମଣକାରୀ ବ୍ରିଟିଶ୍ ସୈନ୍ୟମାନଙ୍କୁ ପ୍ରବଳ ବାଧା ଦେଇଥିଲେ । ଭାରତବର୍ଷରେ ଇଂରେଜମାନଙ୍କର ପ୍ରଧାନ ଅଧିକାରୀ ହିସାବରେ ହେଷ୍ଟିଂସ୍ ସୁରାଟ ଚୁକ୍ତି ଭଙ୍ଗ କରି ରଘୁନାଥ ରାଓଙ୍କ ପ୍ରତିଦ୍ୱନ୍ଦ୍ୱୀ ନାବାଳକ ଦ୍ୱିତୀୟ ମାଧବ ରାଓଙ୍କ ମନ୍ତ୍ରୀ ନାନା ଫଡ଼ନବିଶଙ୍କ ସହିତ ପୁରନ୍ଧର ଚୁକ୍ତିଟି ସଂପାଦନ କରିଦେଲେ । ପେଶବାଙ୍କୁ ଏହି ଚୁକ୍ତି ଅନୁଯାୟୀ କଂପାନିକୁ ତା'ର ସୈନ୍ୟ ଅପସାରଣ ପାଇଁ ନଗଦ ୧୨ ଲକ୍ଷ ଟଙ୍କା ସହ ୩ ଲକ୍ଷ ଟଙ୍କା ଆୟ ପ୍ରଦାନ କଲା ଭଳି ଅଞ୍ଚଳ ଛାଡ଼ି ଦେବାକୁ ହେଲା । ଏହା ଦ୍ୱାରା ସାଲସେଟେ ଦ୍ୱୀପଟି ମଧ୍ୟ କଂପାନି ହାତରେ ରହି ଯାଇଥିଲା । କିନ୍ତୁ ବମ୍ବେ କାଉନ୍‌ସିଲ ହେଷ୍ଟିଂସ୍‌ଙ୍କ ନିର୍ଦ୍ଦେଶକୁ ଅମାନ୍ୟ କରି ରଘୁନାଥ ରାଓଙ୍କୁ କ୍ଷମତାସୀନ କରିବା ନିମିତ୍ତ ଆଉ ଥରେ ମହାରାଷ୍ଟ୍ରକୁ ସେମାନଙ୍କର ସୈନ୍ୟ ପ୍ରେରଣ କରିଥିଲେ ।

ବମ୍ବେରୁ ପ୍ରେରିତ ସୈନ୍ୟବାହିନୀ ଅବିଳମ୍ବେ ପୁନାଠାରୁ ମାତ୍ର ୨୦ କିଲୋମିଟର ଦୂରରେ ଭଡଗାଓଁରେ ମହାଦାଜୀ ସିନ୍ଧିଆଙ୍କ ସୈନ୍ୟମାନଙ୍କ ଦ୍ୱାରା ଘେରାଉ ହୋଇ ପଡ଼ିଲେ । ଏମାନଙ୍କ ଅବସ୍ଥା ଖୁବ୍ ସଙ୍ଗିନ୍ ହୋଇ ପଡ଼ିଲା । କିନ୍ତୁ ପେଶବାଙ୍କ ଠାରୁ ସ୍ୱତନ୍ତ୍ର ଭାବେ ସ୍ୱୀକୃତି ଲାଭ ଏବଂ ରଘୁନାଥ ରାଓଙ୍କୁ ପେଶବାଙ୍କୁ ପ୍ରତ୍ୟର୍ପଣ ଓ ୧୭୭୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମରହଟ୍ଟାମାନଙ୍କ ଦ୍ୱାରା ଅଧିକୃତ ସମଗ୍ର ଅଞ୍ଚଳ ସେମାନଙ୍କୁ ଫେରସ୍ତ ଦେବା ସର୍ତ୍ତରେ ସିନ୍ଧିଆ ଭଡଗାଓଁରେ ଇଂରେଜମାନଙ୍କ ସହିତ ଏକ ଚୁକ୍ତି ସଂପାଦନ କରିବାକୁ ପ୍ରୟାସ କରିଥିଲେ । ତା'ପରେ ଇଂରେଜ ସୈନ୍ୟମାନଙ୍କୁ ବମ୍ବେକୁ ଫେରିବା ପାଇଁ ସିନ୍ଧିଆ ଅନୁମତି ଦେଇଥିଲେ । କିନ୍ତୁ ସେମାନଙ୍କ ସୈନ୍ୟବାହିନୀ ନିରାପଦ ସ୍ଥାନରେ ପହଞ୍ଚିବା ସଙ୍ଗେ ସଙ୍ଗେ ବମ୍ବେ ସରକାରର କାଉନ୍‌ସିଲ ଭଡଗାଓଁ ଚୁକ୍ତିଟିକୁ କାର୍ଯ୍ୟକାରୀ କରିବାକୁ ଅସ୍ୱୀକାର କଲା । ଏହି ନିର୍ଲଜ୍ଜ ପ୍ରବଞ୍ଚନା ଫଳରେ ମରହଟ୍ଟାମାନେ ୧୭୮୦ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀ ଏବଂ ନିଜାମଙ୍କ ସହିତ ଐକ୍ୟବଦ୍ଧ ହେବାକୁ ବାଧ୍ୟ ହୋଇଥିଲେ । ମହୀଶୂର କର୍ତ୍ତୃକ ଅଧିକୃତ ଅଞ୍ଚଳକୁ ମରହଟ୍ଟା ଏବଂ ନିଜାମ ସ୍ୱୀକାର କରିବାକୁ ସମ୍ମତ ହେଲେ ଏବଂ ହାୟଦର ଅଲୀ କର୍ଣ୍ଣାଟକରେ ଇଂରେଜମାନଙ୍କ ଉପରେ ଆକ୍ରମଣ ଚଳେଇବାର ମୁଖ୍ୟ ଦାୟିତ୍ୱ ନେଇଥିଲେ । ଏହି ସମୟରେ କାନାଡାକୁ ଦଖଲ କରି ନେବା ନେଇ ଫରାସୀମାନଙ୍କ ସହିତ ଇଂରେଜମାନଙ୍କର ଯୁଦ୍ଧ ଚାଲିବା ଫଳରେ ଫରାସୀମାନେ ହାୟଦର ଅଲୀଙ୍କୁ ସାହାଯ୍ୟ କରିବାକୁ ଆଶ୍ୱାସ ଦେଇଥିଲେ । ଏସବୁ ଥିଲା ଦ୍ୱିତୀୟ ଇଂରେଜ-ମହୀଶୂର ଯୁଦ୍ଧର ପୃଷ୍ଠଭୂମି । ତତ୍କାଳୀନ ଜନୈକ ବ୍ରିଟିଶ୍ କର୍ମଚାରୀଙ୍କ ମନ୍ତବ୍ୟରୁ ଜଣାଯାଏ ଯେ, ଭାରତରେ ବ୍ରିଟିଶ୍ ଆଧିପତ୍ୟର ଅବସାନ ଘଟାଇବା ଥିଲା ଏହାର ଲକ୍ଷ୍ୟ ।

ତତ୍କାଳୀନ ଭାରତବର୍ଷରେ ବ୍ରିଟିଶ୍ ବିଜୟକୁ ପ୍ରତିରୋଧ କଲା ଭଳି କେବଳ ଦୁଇଟି ଶକ୍ତି ଥିଲେ— ଗୋଟିଏ ହେଲା ସମ୍ମିଳିତ ମରହଟ୍ଟା ରାଜ୍ୟସମୂହ ଓ ମହୀଶୂର । ଏ ଦୁଇଟି ମଧ୍ୟରେ, ଅବଶ୍ୟ, ମହୀଶୂର ହିଁ ଥିଲା ଅଧିକତର କେନ୍ଦ୍ରୀଭୂତ ଓ ଐକ୍ୟବଦ୍ଧ ଶକ୍ତି । ତା'ର ସୈନ୍ୟବାହିନୀ ଥିଲା ଆଧୁନିକ ଏବଂ କେନ୍ଦ୍ରାଞ୍ଚଳୀୟ ବାସିନ୍ଦାମାନେ ଥିଲେ ଜାତିଗତ ଭାବେ ଅଭିନ୍ନ । ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧର ବର୍ଷମାନଙ୍କରେ ଭାରତରେ ଇଂରେଜମାନଙ୍କର ଆକ୍ରମଣ ପ୍ରତିରୋଧର ପ୍ରଥମ ପଂକ୍ତିରେ ମହୀଶୂର ରହିବାର କାରଣ ଏହିଥିରେ ନିହିତ ଥିଲା । କିନ୍ତୁ ମହୀଶୂରର ପ୍ରତିରକ୍ଷାବ୍ୟୂହର ଏକ ଦୁର୍ବଳ ଗ୍ରନ୍ଥି ରହିଯାଇଥିଲା । ସେ ଗ୍ରନ୍ଥିଟି ହେଲା ; ସାଂପ୍ରତିକ ଅଧିକୃତ ମାଲବାର, କୁର୍ଗ ଓ ଅନ୍ୟାନ୍ୟ ଏଲାକାର ଜନସାଧାରଣଙ୍କ ଅସନ୍ତୋଷ । ଇଂରେଜମାନେ ଏହିସବୁ ଅଞ୍ଚଳରେ ବିଦ୍ରୋହକୁ ପ୍ରରୋଚିତ କରୁଥିଲେ ଏବଂ ହାୟଦର ଅଲୀ ସେସବୁକୁ ଦମନ କରୁଥିଲେ । ମହୀଶୂରର ଭୂମି ରାଜସ୍ୱ ସଂଗ୍ରହ ଉପରେ ସେ ସତର୍କ ଦୃଷ୍ଟି ରଖୁଥିଲେ ଏବଂ ଖଜଣା ଆଦାୟକାରୀମାନଙ୍କ ନିକଟରୁ ଲୁଚାୟିତ ଅର୍ଥ ଆଦାୟ କରିବା ପାଇଁ ଗୁରୁକ ପ୍ରହାର ଦେଉଥିଲେ । ଏହି ପରିପ୍ରେକ୍ଷିରେ ତାଙ୍କ ଧର୍ମନୀତି ମଧ୍ୟ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ହାୟଦର ଅଲୀ ହିନ୍ଦୁମାନଙ୍କ ଧର୍ମବିଶ୍ୱାସରେ ଆଘାତ କରୁ ନଥିଲେ, ବ୍ୟବସାୟ ବାଣିଜ୍ୟ ଓ କୁଟୀର ଶିଳ୍ପର ସେ ଥିଲେ ପୃଷ୍ଠପୋଷକ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନେକ ଅସ୍ତ୍ରକାରଖାନାରେ ୟୁରୋପୀୟ ଇଂଜିନିୟରମାନେ ତତ୍ତ୍ୱାବଧାରକ ରୂପେ କାର୍ଯ୍ୟ କରୁଥିଲେ ।

## ଦ୍ୱିତୀୟ ଇଂରେଜ-ମହୀଶୂର ଯୁଦ୍ଧ

ଦକ୍ଷିଣ ଭାରତର ଇତିହାସରେ ଅଭୂତପୂର୍ବ ଏକ ବିଶାଳ ସେନାବାହିନୀ ନେଇ ୧୭୮୦ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀ କର୍ଣ୍ଣାଟକ ଆକ୍ରମଣ କରିଥିଲେ । ତାଙ୍କ ସୈନ୍ୟମାନଙ୍କ ମଧ୍ୟରୁ ଏକାଂଶ ହଠାତ୍ ପୋର୍ଟୋ-ନୋଭୋ ଆକ୍ରମଣ କରି ଏହି ସମୃଦ୍ଧ ବନ୍ଦରଟିକୁ ଦଖଲ କରିନେଲେ । ସୈନ୍ୟମାନଙ୍କର ଆଉ ଏକ ଅଂଶ ହାୟଦର ଅଲୀଙ୍କ ପୁତ୍ର ଟିପୁଙ୍କ ନେତୃତ୍ୱରେ ଆର୍କଟ ଅବରୋଧ କରିଥିଲେ । କର୍ଣ୍ଣେଲ ବେଇଲିଙ୍କ ବିରାଟ ସୈନ୍ୟଦଳଟି ଟିପୁଙ୍କ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ପେରାମ୍ବାକମ୍‌ର ଯୁଦ୍ଧରେ ନିଶ୍ଚିହ୍ନ ହୋଇ ଯାଇଥିଲେ ଏବଂ ବ୍ରିଟିଶ୍ ସେନାବାହିନୀର ମୁଖ୍ୟ ହେକ୍ଟର ମନରୋ କାଞ୍ଚିଭରମ୍‌ରୁ ମାଦ୍ରାଜକୁ ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ ହୋଇଥିଲେ । ଅବିଳମ୍ବେ ଆର୍କଟର ପତନ ଘଟିଥିଲା । ଏହି ଭାବେ ବସ୍ତୁତଃ କର୍ଣ୍ଣାଟକ ସଂପୂର୍ଣ୍ଣ ରୂପେ ହାୟଦର ଅଲୀଙ୍କ ଅଧୀନକୁ ଆସିଗଲା ।

ସେତେବେଳର ଶ୍ରେଷ୍ଠ ବ୍ରିଟିଶ୍ ସେନାପତି ଆୟାରେ କୁଟ୍‌ଙ୍କ ନେତୃତ୍ୱରେ ବଙ୍ଗଳାରୁ ନୂତନ ସୈନ୍ୟଦଳ ଆସି ପହଞ୍ଚିଲା ପରେ ଅବସ୍ଥାରେ ପରିବର୍ତ୍ତନ ଦେଖାଦେଲା । ହାୟଦରାବାଦର ନିଜାମଙ୍କ ଦ୍ୱାରା ବ୍ରିଟିଶ୍ ବିରୋଧୀ ମେଣ୍ଟ ପରିତ୍ୟାଗ ଏବଂ ବିନିମୟରେ ଗୁଣ୍ଟୁର ଜିଲା (ପୂର୍ବରୁ ବ୍ରିଟିଶ୍ ଅଧିକୃତ) ଫେରସ୍ତ ପାଇବା ସର୍ତ୍ତରେ ହାୟଦରାବାଦର ନିଜାମଙ୍କ କର୍ତ୍ତୃକ ବ୍ରିଟିଶ୍‌ମାନଙ୍କ ସହ ସଂପାଦିତ ଏକ ଚୁକ୍ତି ସହିତ ଏହି ଅବସ୍ଥା ପରିବର୍ତ୍ତନର ସମାପତନ ଘଟିଥିଲା । ସ୍ଥଳ ଭାଗରେ କୁଟ୍ ଏବଂ ସମୁଦ୍ର ପଥରେ ଆଡ୍‌ମିରାଲ ହିଉଜ୍‌ଙ୍କ ସମ୍ମିଳିତ ଚେଷ୍ଟା ଫଳରେ ଫରାସୀ ସୈନ୍ୟମାନେ

(ମରିସସ୍‌ରୁ ଆଗତ) ସେଠାରେ ପହଞ୍ଚିବାକୁ ବ୍ୟର୍ଥ ହୋଇଥିଲେ । ୧୭୮୧ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀଙ୍କ ବିରୁଦ୍ଧରେ ପୋର୍ଟୋ-ନୋଭୋ ପେରାମ୍ବାକମ୍ ଓ ସଲିଂହୁର ଯୁଦ୍ଧରେ କୁଟ୍ ଆଉରି କେତେକ ଉଲ୍ଲେଖଯୋଗ୍ୟ ସାଫଲ୍ୟ ଅର୍ଜନ କରିଥିଲେ ।

ମାଲାବାର ଉପକୂଳ, ବାଲାମ ଓ କୁର୍ଗରେ ମହୀଶୂର ବିରୁଦ୍ଧରେ ଅଭ୍ୟୁତ୍ଥାନ ଦେଖା ଦେଲା । ଓଲନ୍ଦାଜମାନେ କାଳେ ହାୟଦର ଅଲୀଙ୍କ ସହିତ ଯୋଗ ଦେବେ, ଏହି ଭୟରେ ଦକ୍ଷିଣ ଭାରତରେ ଓଲନ୍ଦାଜମାନଙ୍କର ଶକ୍ତ ଘାଟି ନାଗପଟ୍ଟମ୍‌କୁ ବ୍ରିଟିଶ୍‌ମାନେ ଦଖଲ କରିନେଲେ । ବ୍ରିଟିଶ୍‌ମାନଙ୍କର ଏକ ଆକସ୍ମିକ ନୈଶ ଆକ୍ରମଣ ଫଳରେ ଦୁର୍ଭେଦ୍ୟ ବୋଲି ବିବେଚିତ ମହାଦାଜୀ ସିନ୍ଧିଆଙ୍କ ରାଜଧାନୀ ଗୋଆଲିଅର ଦୁର୍ଗଟିର ମଧ୍ୟ ପତନ ଘଟିଥିଲା । ଏହି ଭାବେ ୧୭୮୨ ଖ୍ରୀଷ୍ଟାବ୍ଦରେ ସିନ୍ଧିଆ ସାଲବାଇଠାରେ ଏକ ଚୁକ୍ତି ସ୍ୱାକ୍ଷର କରିବାକୁ ବାଧ୍ୟ ହୋଇଥିଲେ ଏବଂ ଇଂରେଜମାନେ ତାଙ୍କୁ ସ୍ୱାଧୀନ ଶାସକ ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ଅବଶିଷ୍ଟ ମରହଟ୍ଟା ନେତାମାନେ ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାରୁ ବିରତ ହୋଇଥିଲେ ।

ଏଭଳି ଏକ ଅବସ୍ଥାରେ ହାୟଦର ଅଲୀଙ୍କ ଚରମ ବିପଦ ବେଳେ ଆଡ୍‌ମିରାଲ ସୁଫ୍ରେନ୍‌ଙ୍କ ନେତୃତ୍ୱରେ ଏକ ଫରାସୀ ସୈନ୍ୟବାହିନୀ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ । ୧୭୮୨ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜର ଅଦୂରରେ ଏକ ଜଳ ଯୁଦ୍ଧରେ ଫରାସୀମାନେ ଆଡ୍‌ମିରାଲ ହିଉଜ୍‌ଙ୍କ ରଣକ୍ଳାନ୍ତ ନୌବାହିନୀକୁ ହଟାଇ ଦେଇଥିଲେ । କର୍ଣ୍ଣେଲ ବ୍ରେଥ୍‌ୱେଟ୍‌ଙ୍କ ଅଧୀନସ୍ଥ ବିରାଟ ବ୍ରିଟିଶ୍ ସୈନ୍ୟବାହିନୀ ଏକାନ୍ତ ଅପ୍ରତ୍ୟାଶିତ ଭାବେ ଆନାଗୁଡ଼ି ନିକଟରେ ଟିପୁଙ୍କ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବିଧ୍ୱଂସ ହେଲେ । ଜଣୈକ ଭାରତୀୟ ଐତିହାସିକଙ୍କ ମତରେ, ଏହି ବିପର୍ଯ୍ୟୟ ଫଳରେ ବ୍ରିଟିଶ୍‌ମାନେ ଦକ୍ଷିଣ ଭାରତରେ ଏତେ ଦୁର୍ବଳ ହୋଇ ପଡ଼ିଥିଲେ ଯେ, ଅନେକ ଦିନ ପର୍ଯ୍ୟନ୍ତ ସେମାନେ ଆଉ କୌଣସି ନୂତନ ଆକ୍ରମଣ ଚଳେଇ ପାରି ନଥିଲେ । ଫରାସୀମାନଙ୍କର ଅବତରଣ ପାଇଁ ଅପେକ୍ଷାରତ ହାୟଦର ଅଲୀ ଇତିମଧ୍ୟରେ କାଣ୍ଡାଲୋର ବନ୍ଦରଟିକୁ ଦଖଲ କରିନେଲେ । ଫରାସୀ ସୈନ୍ୟମାନଙ୍କ ପାଇଁ ଏଠାରେ ଘାଟି ନିର୍ଦ୍ଦିଷ୍ଟ କରାଯାଇଥିଲା । ଏହା ପରେ ଫରାସୀ ଏବଂ ବ୍ରିଟିଶ୍‌ମାନଙ୍କ ମଧ୍ୟରେ କେତୋଟି ନୌଯୁଦ୍ଧ ହୋଇଥିଲା, କିନ୍ତୁ ଏଥି ମଧ୍ୟରୁ କୌଣସି ଗୋଟିଏ ହେଲେ ନିଷ୍ପତ୍ତିମୂଳକ ନଥିଲା । ଦୀର୍ଘ ଅସୁସ୍ଥତା ପରେ ୧୭୮୨ ଖ୍ରୀଷ୍ଟାବ୍ଦରେ ହାୟଦର ଅଲୀ ମୃତ୍ୟୁବରଣ କରିଥିଲେ । ତାଙ୍କ ପୁତ୍ର ଟିପୁ ସୁଲତାନ୍ ମୂଳତଃ ପିତାଙ୍କ ନୀତି ଅନୁସରଣ କରିଥିଲେ ଏବଂ ବ୍ରିଟିଶ୍‌ମାନଙ୍କୁ ଭାରତରୁ ବିତାଡ଼ିତ କରିବାକୁ ଜୀବନର ପ୍ରଧାନ ଲକ୍ଷ୍ୟ ବୋଲି ଧରି ନେଇଥିଲେ । ସେ ଥିଲେ ଜଣେ ସୁଦକ୍ଷ ସେନାପତି ଏବଂ ସୈନ୍ୟମାନେ ତାଙ୍କ ପ୍ରତି ଅନୁଗତ ଥିଲେ ।

କିନ୍ତୁ ନିଜ ଶାସନକାଳର ଏକେବାରେ ପ୍ରାରମ୍ଭରେ ଟିପୁ ତାଙ୍କ ହିସାବରେ ଏକ ମାରାତ୍ମକ ଭୁଲ କରି ପକାଇଲେ । ବେଦ୍‌ନୋରର ଅଧିନାୟକ, ହାୟଦର ଅଲୀଙ୍କର ଅତି ପ୍ରିୟ ଶେଖ୍ ଆୟାଜ୍‌ଙ୍କୁ ଟିପୁ ଘୃଣା କରୁଥିଲେ ଏବଂ ତାଙ୍କୁ ଗୋପନରେ ହତ୍ୟା କରିବା ପାଇଁ ନିର୍ଦ୍ଦେଶ ଦେଇ ଦେଲେ । କିନ୍ତୁ ଏହି ନିର୍ଦ୍ଦେଶଟି ସ୍ୱୟଂ ଆୟାଜ୍‌ଙ୍କ ହାତରେ ଯାଇ ପଡ଼ିଲା ଏବଂ ଆତ୍ମରକ୍ଷା ପାଇଁ ସେ ବ୍ରିଟିଶ୍‌ମାନଙ୍କର ସାହାଯ୍ୟ ପ୍ରାର୍ଥୀ ହେଲେ । ଫଳତଃ, ୧୭୮୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ ଜେନେରାଲ ମାଥ୍ୟୁସ୍‌ଙ୍କ ନେତୃତ୍ୱାଧୀନ ବମ୍ବେ ସୈନ୍ୟବାହିନୀ ନିକଟରେ ଗୋଟିଏ ହେଲେ ଗୁଳି ଫାୟର ନକରି ବେଦ୍‌ନୋର ଅର୍ପଣ କରିଦେଲେ । ବେଦ୍‌ନୋର ହରାଇବା ଦ୍ୱାରା ଟିପୁ ମାରାତ୍ମକ ଭାବେ

କ୍ଷତିଗ୍ରସ୍ତ ହୋଇଥିଲେ । ଏହା ଫଳରେ ମହୀଶୂରର କେନ୍ଦ୍ର ପର୍ଯ୍ୟନ୍ତ ପହଞ୍ଚିବାର ପଥଟି ବ୍ରିଟିଶ୍‌ମାନଙ୍କ ନିକଟରେ ଉନ୍ମୁକ୍ତ ହୋଇ ଯାଇଥିଲା ।

ଟିପୁଙ୍କ ସୌଭାଗ୍ୟକୁ ଭାରତବର୍ଷରେ ଥିବା ବ୍ରିଟିଶ୍ ସୈନ୍ୟବାହିନୀ ମଧ୍ୟରେ ବମ୍ବେର ସେନାଦଳଟି ଥିଲେ ସବୁଠାରୁ ଦୁର୍ବଳ ଏବଂ ମାଥ୍ୟୁସ୍ ଥିଲେ ଜଣେ ଅଯୋଗ୍ୟ ଏବଂ ଦୁର୍ବଳମନା ଅଧିନାୟକ । ବେଦ୍‌ନୋର ଦୁର୍ଗ ଦଖଲ କଲା ପରେ ମାଥ୍ୟୁସ୍ ଏବଂ ତାଙ୍କ ସୈନ୍ୟଦଳ ସେଠାରେ ସଞ୍ଚିତ ବିପୁଳ ସମ୍ପଦର ମାଲିକାନା ଲାଭ କଲେ । ଏହି ସମୃଦ୍ଧ ନଗରର ବାସିନ୍ଦାମାନଙ୍କ ନିକଟରୁ ବ୍ରିଟିଶ୍ ସୈନ୍ୟମାନେ ଅମାପ ଧନଦୌଲତ୍ ସଂଗ୍ରହ କରିଥିଲେ । ଏଥି ପାଇଁ ବମ୍ବେର ସୈନ୍ୟଦଳଙ୍କ ମନୋବଳ ଭାଙ୍ଗି ପଡ଼ିଥିଲା । ଟିପୁ ବେଦ୍‌ନୋର ଘେରାଉ କରି ଚରମ ବୁଭୁକ୍ଷା ମଧ୍ୟ ଦେଇ ସହରଟିକୁ ଦଖଲ କରିନେଲେ ଏବଂ ମାଥ୍ୟୁସ୍ ବନ୍ଦୀ ହେଲେ । ବେଦ୍‌ନୋର ପରେ ଟିପୁ ମାଲାବାର ଉପକୂଳ ଆକ୍ରମଣ କରିଥିଲେ ଏବଂ ବ୍ରିଟିଶ୍‌ମାନଙ୍କ ଠାରୁ କେତୋଟି ଦୁର୍ଗ ଛଡ଼େଇ ନେଇଥିଲେ । ୧୭୮୩ ଖ୍ରୀଷ୍ଟାବ୍ଦରେ ସେ ମାଲାବାର ଉପକୂଳରେ ବମ୍ବେସ୍ଥ ସେନାଦଳର ସର୍ବାପେକ୍ଷା ଶକ୍ତଘାଟି ମାଙ୍ଗାଲୋର ଅବରୋଧ କଲେ । ଠିକ୍ ଏହି ସମୟରେ ବୃଦ୍ଧ ବୁସିଙ୍କ ନେତୃତ୍ୱରେ ଗୋଟିଏ ଫରାସୀ ନୌବହର ଫ୍ରାନ୍‌ସରୁ ଆସି କାଣ୍ଡାଲୋରରେ ପହଞ୍ଚିଲା ।

୧୭୮୩ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ୟୁରୋପରେ ବ୍ରିଟିଶ୍ ଓ ଫରାସୀମାନଙ୍କ ମଧ୍ୟରେ ସମ୍ପାଦିତ ସନ୍ଧି ଖବରଟି ଭାରତରେ ଆସି ପହଞ୍ଚିଲା । ଏ ଦେଶରେ ଅବସ୍ଥିତ ସମସ୍ତ ଫରାସୀ ସୈନ୍ୟ, ଅର୍ଥାତ୍, କେବଳ କାଣ୍ଡାଲୋରରେ ଥିବା ବୁସିଙ୍କ ସହିତ ଆସିଥିବା ସୈନ୍ୟ ନୁହେଁ, ଟିପୁଙ୍କ ଅଧୀନସ୍ଥ ଓ ମାଙ୍ଗାଲୋର ଅବରୋଧର ଅଂଶୀଦାର ଫରାସୀ ସୈନ୍ୟମାନେ ମଧ୍ୟ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳେଇବାକୁ ଅସ୍ୱୀକାର କଲେ । ଏକକ ଭାବେ ମହୀଶୂର ସୈନ୍ୟବାହିନୀ ପକ୍ଷରେ ମାଙ୍ଗାଲୋର ଅବରୋଧ ଚଳେଇବା ସିନ୍ଧିଆଙ୍କ (ଏବେ ସେମାନେ ବ୍ରିଟିଶ୍‌ମାନଙ୍କ ସହଯୋଗୀ) ସୈନ୍ୟମାନଙ୍କର ସମ୍ଭାବ୍ୟ ଆକ୍ରମଣର ପରିପ୍ରେକ୍ଷୀରେ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ୧୭୮୪ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ୧୧ ତାରିଖରେ ଟିପୁ ମାଙ୍ଗାଲୋର ସନ୍ଧିଟି ସ୍ୱାକ୍ଷର କରିବାକୁ ବାଧ୍ୟ ହେଲେ ଏବଂ ତଦନୁଯାୟୀ କର୍ଣ୍ଣାଟକରୁ ସମସ୍ତ ସୈନ୍ୟ ପ୍ରତିହାର କରିନେଲେ । ଏହା ପରେ ବ୍ରିଟିଶ୍‌ମାନେ ମଧ୍ୟ ମାଲାବାର ଉପକୂଳ ତ୍ୟାଗ କରିଥିଲେ । ଉଭୟ ପକ୍ଷ ଯୁଦ୍ଧବନ୍ଦୀମାନଙ୍କର ମୁକ୍ତି ଦାନର ସର୍ତ୍ତକୁ ମାନିନେଲେ । ଏହି ଭାବେ ଦୁଇ ପକ୍ଷର ଭାଗ୍ୟରେ ନାଟକୀୟ ପରିବର୍ତ୍ତନସୂଚକ ଦ୍ୱିତୀୟ ଇଂରେଜ-ମହୀଶୂର ଯୁଦ୍ଧର ସମାପ୍ତି ଘଟିଥିଲା ।

ଯେଉଁମାନେ ଦିନେ ଯୁଦ୍ଧ ଆରମ୍ଭ କରିଥିଲେ ଏବଂ ବିଜୟ ସଂପର୍କରେ ସୁନିଶ୍ଚିତ ଥିଲେ, ସେଇ ବ୍ରିଟିଶ୍‌ମାନେ ମାଙ୍ଗାଲୋର ସନ୍ଧି ପରେ ମହୀଶୂର ବିରୁଦ୍ଧରେ ସର୍ବଦା ଆକ୍ରମଣାତ୍ମକ ଭୂମିକା ପାଳନ କରିଥିଲେ ଏବଂ ଏହା ଦ୍ୱାରା ଯୁଦ୍ଧ ଲାଗିଥିଲା । ବ୍ରିଟେନ୍‌ର ସାମରିକ ଶକ୍ତି ବୃଦ୍ଧି କ୍ଷେତ୍ରରେ ଶିଳ୍ପ ବିପ୍ଳବର ଫଳ କ୍ରମଶଃ ଅଧିକରୁ ଅଧିକ ପ୍ରକଟିତ ହେଉଥିଲା । ଏହି ଭଳି ପରିସ୍ଥିତିରେ ଟିପୁ ତାଙ୍କ ରଣକୌଶଳ ପରିବର୍ତ୍ତନ କଲେ । ବ୍ରିଟିଶ୍ ବିରୋଧୀ ସଂଗ୍ରାମରେ ସେ ମୁସଲିମ୍ ଶାସକମାନଙ୍କ ମଧ୍ୟରେ ନୂତନ ମିତ୍ର ସନ୍ଧାନ କରିବାକୁ ଉଦ୍ୟମ କରିଥିଲେ । ଦକ୍ଷିଣ ଭାରତର ପରିବର୍ତ୍ତିତ ପରିସ୍ଥିତି ମଧ୍ୟରେ ଟିପୁ ସୁଲତାନ୍ ଓ ହାଯଦର ଅଲୀଙ୍କ ଅନୁସୃତ ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି ମଧ୍ୟରେ ପାର୍ଥକ୍ୟର କାରଣଗୁଡ଼ିକ କିଛି ପରିମାଣରେ ନିହିତ ଥିଲା ।

ଦକ୍ଷିଣ ଭାରତର ପ୍ରତିଦ୍ୱନ୍ଦ୍ୱିତା ଯେ ଆଉ ଏକ ଯୁଦ୍ଧର ସୂତ୍ରପାତ କରିବ, ଏ ବିଷୟରେ କେବଳ ଇଂରେଜମାନେ ନୁହେଁ, ଟିପୁ ସୁଲ୍‌ତାନ ମଧ୍ୟ ନିଶ୍ଚିତ ଥିଲେ । ଏଥିପାଇଁ ଉଭୟ ପକ୍ଷ ପ୍ରସ୍ତୁତ ହେଉଥିଲେ । ୧୭୮୬-୧୭୮୭ ଖ୍ରୀଷ୍ଟାବ୍ଦରେ ଟିପୁ ମରହଟ୍ଟା ଏବଂ ହାୟଦରାବାଦ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରି ଦେଲେ ଏବଂ ଜୟ ଲାଭ କଲା ପରେ କେତୋଟି ମରହଟ୍ଟା ଅଞ୍ଚଳ ମଧ୍ୟ ନିଜ ରାଜ୍ୟର ଅନ୍ତର୍ଭୁକ୍ତ କରିନେଲେ । କିନ୍ତୁ ବିଜୟୀ ହେବା ସତ୍ତ୍ୱେ ମରହଟ୍ଟାମାନେ ଶେଷକୁ ବ୍ରିଟିଶ୍ ପକ୍ଷାବଲମ୍ବନ କରିବେ, ଏହି ଭୟରେ ସେ ସେମାନଙ୍କ ଅନୁକୂଳରେ ଏକ ସନ୍ଧିରେ ସ୍ୱାକ୍ଷର କଲେ । ୧୭୮୭ ଖ୍ରୀଷ୍ଟାବ୍ଦରେ ନିଜ ରାଜଧାନୀ ଶ୍ରୀରଙ୍ଗପଟ୍ଟନମ୍‌ରେ ଟିପୁ "ପାଦିଶାହ୍" ଉପାଧି ଗ୍ରହଣ କରିଥିଲେ ଏବଂ ଏହି ଭାବେ ମହୀଶୂରର ହିନ୍ଦୁ ରାଜାଙ୍କର କଣ୍ଟକାହାଣୀତୁଲ୍ୟ ଶକ୍ତିର ଅବସାନ ଘଟିଥିଲା ।

ବ୍ରିଟିଶ୍ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ଆଉରି ଯୁଦ୍ଧ ହେବ ବୋଲି ସମ୍ଭାବନାକୁ ଅନୁମାନ କରି ଟିପୁ ଫରାସୀମାନଙ୍କର ସହାୟତା ଲୋଡ଼ିଲେ । ଫ୍ରାନ୍‌ସକୁ ସେ ଦୁଇଟି ଦୂତ ଦଳ ପଠାଇଥିଲେ । କିନ୍ତୁ ଏମାନଙ୍କ ମଧ୍ୟରୁ ଗୋଟିଏ ଷ୍ଟାମ୍ବୁଲରୁ ଦେଶକୁ ଫେରି ଆସିବାକୁ ବାଧ୍ୟ ହୋଇଥିଲେ ଏବଂ ଅନ୍ୟଟି ୧୭୮୮ ଖ୍ରୀଷ୍ଟାବ୍ଦରେ ଜୁନ ମାସରେ ଫ୍ରାନ୍‌ସରେ ପହଞ୍ଚିଥିଲେ । ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଏକ ଆତ୍ମରକ୍ଷାମୂଳକ ଏବଂ ଆକ୍ରମଣାତ୍ମକ ଚୁକ୍ତି ସଂପାଦନ କରିବା ପାଇଁ ଟିପୁ ଫ୍ରାନ୍‌ସକୁ ପ୍ରସ୍ତାବ ଦେଇଥିଲେ । ଟିପୁଙ୍କ ଦୂତ ଦଳଟିକୁ ଭାର୍ସାଇରେ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା । କିନ୍ତୁ ଫ୍ରାନ୍‌ସରେ ବୁର୍ଜୁଆ ବିପ୍ଳବର ପ୍ରାକ୍‌କାଳୀନ ପରିସ୍ଥିତି ହେତୁ ଫରାସୀମାନଙ୍କ ପକ୍ଷରେ ଦୂର ଭାରତବର୍ଷକୁ ସୈନ୍ୟ ପଠାଇବା ସମ୍ଭବ ନଥିଲା ।

ସହଯୋଗୀ ମୁସଲିମ୍ ଶାସକ ହିସାବରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଆବେଦନ ଜଣାଇ ୧୭୮୪ ଓ ୧୭୮୫ ଖ୍ରୀଷ୍ଟାବ୍ଦରେ ଷ୍ଟାମ୍ବୁଲର ସୁଲତାନ୍‌ଙ୍କ ନିକଟକୁ ଟିପୁ ସୁଲତାନ୍ ଦୂତ ପଠାଇଥିଲେ । ତୁରସ୍କ ସେତେବେଳେ ରୁଷିଆ ସହିତ ଯୁଦ୍ଧରତ ଥାଏ ଏବଂ ବ୍ରିଟିଶ୍‌ମାନଙ୍କର ସାହାଯ୍ୟ ଲୋଡ଼ିଥାଏ । ସୁତରାଂ, ତା ପକ୍ଷରେ ଟିପୁଙ୍କୁ ସାହାଯ୍ୟ କରିବା ସମ୍ଭବ ହେଲା ନାହିଁ ।

ଇତିମଧ୍ୟରେ ମାଲବାର ଉପକୂଳ ଏବଂ କୁର୍ଗରେ ବାରମ୍ବାର ବିଦ୍ରୋହ ଦେଖା ଦେଇଥିଲା । ୧୭୮୬ ଖ୍ରୀଷ୍ଟାବ୍ଦରେ ଟିପୁଙ୍କୁ ବସ୍ତୁତଃ ମାଲାବାର ଉପକୂଳକୁ ପୁନର୍ଦଖଲ କରିବାକୁ ପଡ଼ିଥିଲା । ୧୭୮୮ ଖ୍ରୀଷ୍ଟାବ୍ଦରେ ମଧ୍ୟ ମହୀଶୂର ସୈନ୍ୟବାହିନୀ ଉପରେ ନାୟାରମାନେ ଅବ୍ୟାହତ ଆକ୍ରମଣ ଚଳେଇଥିଲେ । ୧୭୮୯ ଖ୍ରୀଷ୍ଟାବ୍ଦରେ କୁର୍ଗ ଦୁର୍ଗରେ ଏକ ଅଭ୍ୟୁତ୍‌ଥାନ ଘଟିଗଲା । ଟିପୁଙ୍କ ସୈନ୍ୟମାନେ କୁର୍ଗରେ ବ୍ୟସ୍ତ ଥିବା ବେଳେ ମାଲାବାର ଉପକୂଳର ଜନସାଧାରଣ ବିଦ୍ରୋହ ଘୋଷଣା କରିଥିଲେ । ତା'ପରେ ମହୀଶୂରର ସୈନ୍ୟମାନେ ମାଲବାର ଉଦ୍ଦେଶ୍ୟରେ ଆଗେଇଲା ବେଳେ କୁର୍ଗର ଜନସାଧାରଣ ମୁଖ୍ୟ ଦୁର୍ଗଟିକୁ ଛାଡ଼ି ଆଉ ଥରେ ମହୀଶୂର ସୈନ୍ୟବାହିନୀ ନିକଟରୁ ସ୍ୱଦେଶ ପୁନରୁଦ୍ଧାର କରିଥିଲେ ।

ଟିପୁ ତ୍ରିଭାଙ୍କୁରର ଜରୁରୀ ଅବସ୍ଥା ଦୃଷ୍ଟିରୁ କୁର୍ଗର ଘଟଣାବଳୀକୁ ଅଗ୍ରାହ୍ୟ କରିବାକୁ ବାଧ୍ୟ ହୋଇଥିଲେ ।

ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ତ୍ରିଭାଙ୍କୁର ସାମାନ୍ୟ ଏକ ଭୂଖଣ୍ଡରୁ ଏକ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ ହୋଇଥିଲା ଏବଂ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ମଧ୍ୟ ଅର୍ଜନ କରିଥିଲା । ତ୍ରିଭାଙ୍କୁରର ରାଜା ମାଲବାର ଉପକୂଳର ସମଗ୍ର ଦକ୍ଷିଣାଂଶକୁ ଜୟ କଲା ପରେ କ୍ରମଶଃ ସମଗ୍ର ଉପକୂଳଟିକୁ ହସ୍ତଗତ କରିବାକୁ ଫନ୍ଦୀ ପାତିଲେ । କିନ୍ତୁ ହାୟଦର ଅଲୀଙ୍କ ପାଖରେ ତାଙ୍କର ସେ ଅଭିସନ୍ଧି ଧରା ପଡ଼ି

ଯାଇଥିଲ । ତ୍ରିଭାଙ୍କୁରର ରାଜା ମହୀଶୂରକୁ ତାଙ୍କର ପ୍ରଧାନ ଶତ୍ରୁ ପକ୍ଷ ବୋଲି ବିବେଚନା କଲେ ଏବଂ ବ୍ରିଟିଶ୍‌ମାନଙ୍କ ମିତ୍ରତା ଗ୍ରହିଥିଲେ । ଦ୍ୱିତୀୟ ଇଂରେଜ-ମହୀଶୂର ଯୁଦ୍ଧ ବେଳେ ସେ ବ୍ରିଟିଶ୍ ସୈନ୍ୟମାନଙ୍କୁ ସାହାଯ୍ୟ କରିଥିଲେ । ଟିପୁଙ୍କ ଆକ୍ରମଣ ଭୟରେ ତ୍ରିଭାଙ୍କୁରର ରାଜା ୧୭୮୮ ଖ୍ରୀଷ୍ଟାବ୍ଦରେ ଏକ ବଶ୍ୟତାମୂଳକ ଚୁକ୍ତି ମାଧ୍ୟମରେ ନିଜ ଦେଶରେ ଦୁଇ ବାଟେଲିୟନ ସିପାହୀ ରଖିବାର ବ୍ୟବସ୍ଥା କରିଥିଲେ । ତା'ପରେ ତାଙ୍କ ଉଦ୍ୟୋଗରେ ମହୀଶୂରର କରଦରାଜ୍ୟ କୋଚିନରେ ଦୁର୍ଗ ନିର୍ମାଣ ଆରମ୍ଭ ହୋଇଥିଲ । ୧୭୮୯ ଖ୍ରୀଷ୍ଟାବ୍ଦରେ ଟିପୁଙ୍କ ସୈନ୍ୟମାନେ ଏହିସବୁ ଦୁର୍ଗକୁ ଭାଙ୍ଗି ଦେଲେ ମଧ୍ୟ ଶେଷକୁ ସେମାନଙ୍କର ପରାଜୟ ଘଟିଥିଲ । କିନ୍ତୁ ସେମାନଙ୍କର ଦ୍ୱିତୀୟ ଚେଷ୍ଟା ଫଳବତୀ ହୋଇଥିଲ ଏବଂ ରାଜାଙ୍କର ପରାଜିତ ସୈନ୍ୟବାହିନୀ ପଳାୟନ କରିଥିଲେ । ମିତ୍ର ତ୍ରିଭାଙ୍କୁରକୁ ସାହାଯ୍ୟ କରିବା ବାହାନାରେ ଠିକ୍ ଏହି ସମୟରେ ବ୍ରିଟିଶ୍‌ମାନେ ମହୀଶୂର ଆକ୍ରମଣ କଲେ ।

## ତୃତୀୟ ଓ ଚତୁର୍ଥ ଇଂରେଜ-ମହୀଶୂର ଯୁଦ୍ଧ

ଏହି ଯୁଦ୍ଧର ଅବ୍ୟବହିତ ପୂର୍ବରୁ ୧୭୯୦ ଖ୍ରୀଷ୍ଟାବ୍ଦରେ ଭାରତର ଗଭର୍ଣ୍ଣର ଜେନେରାଲ କର୍ଣ୍ଣଓ୍ୱାଲିଶ୍ (୧୭୮୬-୧୭୯୩) ମହୀଶୂର ବିରୁଦ୍ଧରେ ପେଶବା ଓ ନିଜାମଙ୍କ ସହିତ ଏକ ସାମରିକ ଚୁକ୍ତି ସଂପାଦନ କରିଥିଲେ । ଏହି ଚୁକ୍ତି ଅନୁଯାୟୀ, ଯୁଦ୍ଧ ଜୟ ପରେ ବ୍ରିଟିଶ୍‌ମାନଙ୍କର ଏହି ମିତ୍ରମାନେ ହାୟଦର ଅଲୀ ଓ ଟିପୁ ସୁଲ୍‌ତାନଙ୍କ କର୍ତ୍ତୃକ ଅଧିକୃତ ସେମାନଙ୍କ ଏଲକାଗୁଡ଼ିକୁ ଫେରି ପାଇବେ ଏବଂ ମହୀଶରର ନିଜସ୍ୱ ଏଲକାଗୁଡ଼ିକ ସମାନ ଭାବେ ହାୟଦରାବାଦ, ପୁନା ଓ କଂପାନି ମଧ୍ୟରେ ବିଭକ୍ତ ହୋଇଯିବ ଏବଂ ନିଜାମ ଓ ପେଶବା ପ୍ରତ୍ୟେକେ ୨୫ ହଜାର ସୈନ୍ୟ ଧରି ବ୍ରିଟିଶ୍‌ମାନଙ୍କ ସହିତ ଏକତ୍ର ଯୁଦ୍ଧ କରିବେ । ଏଥି ସଙ୍ଗେ ସଙ୍ଗେ କର୍ଣ୍ଣଓ୍ୱାଲିଶ୍ କୁର୍ଗ, କୋଚିନ ଓ ମାଲାବାର ଉପକୂଳ ଅଞ୍ଚଳର ଅସନ୍ତୁଷ୍ଟ ବ୍ୟକ୍ତିବର୍ଗଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ସେମାନଙ୍କୁ ସାମରିକ ସାହାଯ୍ୟ ଦିଆଯିବ ଏବଂ କଂପାନିର କରଦରାଜ୍ୟ ହେଲେ ନାମକୁ "ମାତ୍ର କର ଆଦାୟର" ଆଶ୍ୱାସ ସେମାନଙ୍କୁ ଦିଆଯାଇଥିଲ ।

କର୍ଣ୍ଣଓ୍ୱାଲିଶ୍‌ଙ୍କର ଏହି କୌଶଳପୂର୍ଣ୍ଣ ପରିକଳ୍ପନା ଅନୁଯାୟୀ ବ୍ରିଟିଶ୍ ସୈନ୍ୟବାହିନୀ ତିନି ଆଡ଼ୁ ମହୀଶୂର ଆକ୍ରମଣ କଲେ ଏବଂ ମରହଟ୍ଟା ଓ ନିଜାମଙ୍କୁ ମହୀଶୂର ସୀମାନ୍ତରେ ଲୁଣ୍ଠନ ଚଳାଇବାକୁ ଓ ମହୀଶୂରର ଅଶ୍ୱାରୋହୀ ବାହିନୀ ବିରୁଦ୍ଧରେ ବ୍ରିଟିଶ୍ ସୈନ୍ୟମାନଙ୍କୁ ରକ୍ଷା କରିବାକୁ କୁହାଗଲ । ସମ୍ମିଳିତ ବାହିନୀରେ ସୈନ୍ୟ ସଂଖ୍ୟା ୫୬ ହଜାର ଯାଏ ଥିଲେ । ବାଙ୍ଗାଲୋର ଅବରୋଧ ଓ ଧ୍ୱଂସ ପରେ ବ୍ରିଟିଶ୍ ସୈନ୍ୟମାନେ ଶ୍ରୀରଙ୍ଗପଟ୍ଟମ୍ ଅବରୋଧ କରିଥିଲେ । ତିନି ସପ୍ତାହ ଅବରୋଧ କଲ ପରେ ଟିପୁ ସୁଲ୍‌ତାନ ସନ୍ଧିରେ ସ୍ୱାକ୍ଷର କରିବାକୁ ବାଧ୍ୟ ହୋଇଥିଲେ । ସୈନ୍ୟବାହିନୀ ପାଇଁ ରସଦ ଯୋଗାଣରେ ଅସୁବିଧା ଏବଂ ମାଲବାହୀ ପଶୁମାନେ ସଂକ୍ରାମକ ରୋଗରେ ମରିବା ଯିବା ଫଳରେ କର୍ଣ୍ଣଓ୍ୱାଲିଶ୍‌ଙ୍କ ପକ୍ଷରେ ଶାନ୍ତି ସେତେବେଳେ ଖୁବ୍ ଜରୁରୀ ହୋଇ ପଡ଼ିଥିଲ ।

୧୭୯୨ ଖ୍ରୀଷ୍ଟାବ୍ଦରେ ଶ୍ରୀରଙ୍ଗପଟ୍ଟମ୍ ଶାନ୍ତି ଚୁକ୍ତିଟି ସ୍ୱାକ୍ଷରିତ ହୋଇଥିଲ । ଟିପୁ ୩.୩ କୋଟି ଟଙ୍କା କ୍ଷତିପୂରଣ ଦେବାକୁ ରାଜି ହେଲେ ଏବଂ ଏହି ଅର୍ଥ ପୂରା ନଦେଲ ପର୍ଯ୍ୟନ୍ତ ତାଙ୍କର ଦୁଇ ପୁତ୍ରଙ୍କୁ ବ୍ରିଟିଶ୍‌ମାନଙ୍କ ପାଖରେ ପଣବନ୍ଦୀ ରୂପେ ରହିବାକୁ ପଡ଼ିଥିଲ । ମରହଟ୍ଟାମାନେ କୃଷ୍ଣା ନଦୀ

ପର୍ଯ୍ୟନ୍ତ ବିସ୍ତୃତ ସେମାନଙ୍କର ପୂର୍ବତନ ଅଞ୍ଚଳଗୁଡ଼ିକୁ ଏବଂ ହାୟଦରାବାଦର ତୁଙ୍ଗଭଦ୍ରା ଓ କୃଷ୍ଣାର ମଧ୍ୟବର୍ତ୍ତୀ ତାଙ୍କର ପୂର୍ବତନ ଅଞ୍ଚଳଗୁଡ଼ିକୁ ଫେରି ପାଇଲେ । ଇତିମଧ୍ୟରେ ବ୍ରିଟିଶ୍‌ମାନେ ବଡ଼ମହାଲ ଓ ଦିଣ୍ଡିଗୁଲ ସହ ମାଲାବାର ଉପକୂଳର ଏକ ବଡ଼ ଅଂଶ ଓ କୁର୍ଗକୁ ହସ୍ତଗତ କରିନେଲେ । ଅର୍ଥାତ୍, କର୍ଣ୍ଣାଟକ ଓ ବମ୍ବେରୁ ମହୀଶୂରକୁ ଯାଇଥିବା ତାଙ୍କର ସମସ୍ତ ପଥ ସେମାନଙ୍କ ଦଖଲକୁ ଆସିଗଲା । ତେବେ ମହୀଶୂରକୁ କର୍ଣ୍ଣଓ୍ୱାଲିଶ୍ ଧ୍ୱଂସ କରି ନଥିଲେ । ମରହଟ୍ଟାମାନଙ୍କ ବିରୁଦ୍ଧରେ ଏହାକୁ ଏକ ସ୍ୱାଧୀନ ରାଜ୍ୟ ହିସାବରେ ରଖିବା ଥିଲା ତାଙ୍କ ଉଦ୍ଦେଶ୍ୟ ।

ଯୁଦ୍ଧ ଶେଷରେ ଟିପୁ ରାଷ୍ଟ୍ରୀୟ ଶାସନ ବ୍ୟବସ୍ଥାକୁ ଦୃଢ଼ କରିବା ଦିଗରେ ମନୋଯୋଗ ଦେଇଥିଲେ । ନୂତନ ଯୁଦ୍ଧ ପାଇଁ ଦେଶକୁ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ସେ ଅନେକଗୁଡ଼ିଏ ଆଭ୍ୟନ୍ତରୀଣ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ତାଙ୍କର ପ୍ରଥମ ଲକ୍ଷ୍ୟ ଥିଲା ସୈନ୍ୟବାହିନୀକୁ ପୁନର୍ଗଠନ କରିବା । ସେ ଅଶ୍ୱାରୋହୀଙ୍କ ସଂଖ୍ୟା ହ୍ରାସ କରି ପଦାତିକଙ୍କ ସଂଖ୍ୟା ବୃଦ୍ଧି କରିଥିଲେ । ଯୁଦ୍ଧର କ୍ଷତିପୂରଣ ଏବଂ ସୈନ୍ୟ ପୋଷଣ ପାଇଁ ଯଥେଷ୍ଟ ସଂପଦର ପ୍ରୟୋଜନ ଦେଖା ଦେବାରୁ ଭୂମିରାଜସ୍ୱ ଶତକଡ଼ା ୩୦ ଭାଗ ଏବଂ ବାଣିଜ୍ୟ ମାଶୁଲ ଓ ଶୁଳ୍କ ଶତକଡ଼ା ୭ ଭାଗ ବୃଦ୍ଧି କରାଯାଇଥିଲା । ଏହା ଛଡ଼ା ପାଦିଶାହ୍ ଛୋଟ ଛୋଟ ସାମନ୍ତ ବା ପାଲିୟାଗାର, ଜାଗିରଦାର ଓ ହିନ୍ଦୁ ମନ୍ଦିରଗୁଡ଼ିକର ଜମି ଦଖଲ କରି ନେବାକୁ ଲାଗିଲେ । କିନ୍ତୁ ପରିସ୍ଥିତି ଏପରି ଥିଲା ଯେ, ଏହା ଦ୍ୱାରା ଜନସାଧାରଣଙ୍କ ମଧ୍ୟରେ କୌଣସି ଅସନ୍ତୋଷ ଦେଖା ଦେଇ ନଥିଲା ।

ହିନ୍ଦୁ ରାଜାମାନଙ୍କ ଦ୍ୱାରା – ମହୀଶୂର ରାଜାଙ୍କ ସମର୍ଥକମାନଙ୍କ ଦ୍ୱାରା – ବାରମ୍ବାର ପ୍ରତାରିତ ହେଲା ଫଳରେ ଟିପୁ ସୁଲ୍‌ତାନ ମୁସଲିମ୍ ସଭାସଦମାନଙ୍କ ଉପରେ ଅଧିକତର ଆସ୍ଥା ସ୍ଥାପନ କରିବାକୁ ବାଧ୍ୟ ହୋଇଥିଲେ ଏବଂ ସେମାନଙ୍କୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପଦଗୁଡ଼ିକୁ ଉନ୍ନୀତ କରିଥିଲେ । କିନ୍ତୁ ବ୍ରାହ୍ମଣମାନଙ୍କ ହସ୍ତଗତ ରାଜସ୍ୱ ଆଦାୟ ବିଷୟଟିକୁ ନିୟନ୍ତ୍ରଣ କରିବା ପାଇଁ ବଡ଼ ବଡ଼ ପ୍ରଦେଶଗୁଡ଼ିକରେ ମୁସଲମାନ ଗଭର୍ଣ୍ଣର ନିଯୁକ୍ତ କରିବା ଦ୍ୱାରା ଇତିମଧ୍ୟରେ ଦୁର୍ନୀତିଗ୍ରସ୍ତ ଦେଶରେ, କେବଳ ଉତ୍କୋଚର ମାତ୍ରା ବୃଦ୍ଧି ପାଇଥିଲା । ଖଜଣା ଆଦାୟକାରୀମାନେ କୃଷକମାନଙ୍କୁ ଏକାଧିକବାର ଏକେଇ ଖଜଣା ଦେବାକୁ ବାଧ୍ୟ କଲେ ଏବଂ ରାଜସ୍ୱ ଗ୍ରହଣର ଭାରପ୍ରାପ୍ତ କର୍ମଚାରୀମାନଙ୍କୁ ଉତ୍କୋଚ ଦେଇ ବଶୀଭୂତ କରି ରଖିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଟିପୁଙ୍କ କର୍ତ୍ତୃକ ନିଯୁକ୍ତ ରାଜସ୍ୱ ବିଭାଗର ମୁଖ୍ୟ ମୀର୍ ସାଦିକ୍ ମଧ୍ୟ ଏ କ୍ଷେତ୍ରରେ ବ୍ୟତିକ୍ରମ ନଥିଲେ । ଫଳତଃ, ରାଜସ୍ୱ ଆଦାୟ ରାଷ୍ଟ୍ରଯନ୍ତ୍ର ନିକଟରେ କେନ୍ଦ୍ରୀକରଣ ଏବଂ ଜମିଦାରମାନଙ୍କର ସଂପତ୍ତି ଭୋଗର ସୁଦୂର ପ୍ରସାରୀ ଅଧିକାରକୁ ଉତ୍‌ଖାତ କରିବା ପାଇଁ ଟିପୁ ସୁଲ୍‌ତାନଙ୍କ ଉଦ୍ୟୋଗ ସର୍ବଦା ଦୃଢ଼ ପ୍ରତିରୋଧର ସମ୍ମୁଖୀନ ହୋଇଥିଲା ।

ୟୁରୋପୀୟମାନଙ୍କର କାରୁବିଜ୍ଞାନଗତ ଅଗ୍ରଗତି ସଂପର୍କରେ ଟିପୁ ସଚେତନ ଥିଲେ ଏବଂ ନିଜ ଦେଶରେ ନୂତନ ଧରଣର ଶିଳ୍ପ, ବିଶେଷତଃ, ସମର ସଂପୃକ୍ତ ଶିଳ୍ପଗୁଡ଼ିକୁ ଗଢ଼ି ତୋଳିବାକୁ ଉଦ୍ୟମ କରିଥିଲେ । ଫରାସୀ ଅଫିସରମାନଙ୍କ ସାହାଯ୍ୟରେ ସେ ଶ୍ରୀରଙ୍ଗପଟ୍ଟମ୍‌ରେ କମାଣ ଏବଂ ରାଇଫେଲ ନିର୍ମାଣର ବ୍ୟବସ୍ଥା କରିଥିଲେ । କିନ୍ତୁ ଉତ୍ପାଦନର ହାର (ମାସକୁ ଗୋଟିଏ କମାଣ ଓ ୫-୬ଟି ବନ୍ଧୁକ) ସୈନ୍ୟବାହିନୀର ପ୍ରୟୋଜନ ତୁଳନାରେ ଯଥେଷ୍ଟ ନଥିଲା । ଦେଶର ଦ୍ରୁତ ଅର୍ଥନୈତିକ ଉନ୍ନତି ସାଧନ ଦିଗରେ ଟିପୁଙ୍କର ସମସ୍ତ ବେପରୁଆ ଉଦ୍ୟମ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ଏହା

ଦ୍ୱାରା କେବଳ ଦେଶର ଜଟିଳ ଅର୍ଥନୈତିକ ପରିସ୍ଥିତିର ଅବନତି ଘଟିଥିଲା ଏବଂ ଲୋକଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି ପାଇଥିଲା । ବାଧ୍ୟତାମୂଳକ ଶ୍ରମର ଭିତ୍ତିରେ ରାଷ୍ଟ୍ରୀୟ କର୍ମଶାଳା ପ୍ରତିଷ୍ଠାର ଚେଷ୍ଟା ମଧ୍ୟ ଚାଲିଥିଲା । ବାଣିଜ୍ୟ ଉପରେ ରାଷ୍ଟ୍ରୀୟ ନିୟନ୍ତ୍ରଣ ଆରୋପ କରି ବ୍ୟବସାୟୀମାନଙ୍କୁ ନିଜ ପଣ୍ୟର ଯଥାର୍ଥ ଦାମ୍ ଠାରୁ ଅଧିକ ଦାମ୍ ଦେବାକୁ ବାଧ୍ୟ କରାଯାଉଥିଲା । ମାଲବାରରୁ ପଣ୍ୟ ଆମଦାନି କ୍ଷେତ୍ରରେ ରାଷ୍ଟ୍ରୀୟ ଏକଚାଟିଆ ବ୍ୟବସ୍ଥା ଚାଲୁ କରିବା ସଙ୍ଗେ ସଙ୍ଗେ ଦକ୍ଷିଣ ଭାରତର ବ୍ରିଟିଶ୍ ଏଲାକାଗୁଡ଼ିକ ସହିତ ବାଣିଜ୍ୟ ନିଷିଦ୍ଧ କରି ଦିଆଯାଇଥିଲା । ଯେଉଁସବୁ ସ୍ଥାନରେ ଟିପୁ ବଡ଼ ବଡ଼ ଯୁଦ୍ଧ ଜୟ କରିଥିଲେ, ତାଙ୍କର ସୁଖ୍ୟାତି ପ୍ରତିଷ୍ଠା ପାଇଁ ସେଠାରେ ନିର୍ମିତ ସହରଗୁଡ଼ିକରେ ବଳପୂର୍ବକ ପୁନର୍ବାସନର ବ୍ୟବସ୍ଥା କରାଯାଇଥିଲା । ଟିପୁଙ୍କର କେତେକ ସଂସ୍କାର ଥିଲା ତାଙ୍କ ନିଜସ୍ୱ ଖିଆଲର ଫଳ ସ୍ୱରୂପ ଏବଂ ଦେଶ ପାଇଁ ସଂପୂର୍ଣ୍ଣ ତାତ୍ପର୍ଯ୍ୟହୀନ । ସେସବୁର ଫଳ ଓଲଟା ହୋଇଥିଲା । (ପୋଷାକର ଧରଣ ବଦଳାଇବାକୁ ଜନସାଧାରଣଙ୍କୁ ବାଧ୍ୟ କରିବା, ସରକାରୀ ବିଭାଗ ଓ କାର୍ଯ୍ୟାଳୟ, ମାସ ଓ ଦିନର ନାମ ପରିବର୍ତ୍ତନ, ଜିଲ୍ଲାମାନଙ୍କର ସଂଖ୍ୟାବୃଦ୍ଧି ବା ସେସବୁର ପୁନର୍ଗଠନ, ସୈନ୍ୟବାହିନୀର ପୁନର୍ବିଭାଗ, ଆଦି) ।

ବହୁ ଉଦ୍ୟୋଗର ବ୍ୟର୍ଥତା ସତ୍ତ୍ୱେ ଚାଷ ଜମିର ପରିମାଣ ବୃଦ୍ଧି କରି ଟିପୁ କେଇ ବର୍ଷ ମଧ୍ୟରେ ରାଜକୋଷକୁ ଭରି ଦେଇଥିଲେ ଏବଂ ଏକ ଶକ୍ତିଶାଳୀ ସୈନ୍ୟବାହିନୀ ଗଠନ କରିଥିଲେ । ୧୭୯୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ବ୍ରିଟିଶ୍‌ମାନଙ୍କୁ ଯୁଦ୍ଧର କ୍ଷତିପୂରଣ ଦେଇ ଦେଲା ପରେ ଟିପୁଙ୍କର ପୁତ୍ରମାନେ ମଧ୍ୟ ମୁକ୍ତି ପାଇଗଲେ । ଟିପୁ ଏକ ପ୍ରବଳ ପ୍ରତିପକ୍ଷ ହୋଇ ଉଠୁଥିବାରୁ ବ୍ରିଟିଶ୍‌ମାନେ ପୁଣି ମହୀଶୂର ଆକ୍ରମଣ କରିବାକୁ ସିଦ୍ଧାନ୍ତ କଲେ ।

ଉତ୍ତେଜିତ ଟିପୁ ପୁଣି ସ୍ୱଧର୍ମୀୟ ଅନ୍ୟାନ୍ୟ ଶାସକମାନଙ୍କ ନିକଟରୁ ସାହାଯ୍ୟ ପାଇବାକୁ ଚେଷ୍ଟା କଲେ । ସେ ଆଫ୍‌ଗାନିସ୍ତାନର ଶାସକ ଜାମାନ୍ ଶାହ୍‌ଙ୍କ ସାହାଯ୍ୟ ଚାହିଁଥିଲେ ଏବଂ ଭାରତକୁ ସେତେବେଳେ ଜୟ କରିବା ଅତ୍ୟନ୍ତ ସହଜ ବୋଲି ସେ ତାଙ୍କୁ ବୁଝାଇଥିଲେ । ଏହି ପ୍ରସ୍ତାବରେ ଉତ୍ସାହିତ ହୋଇ ଏବଂ ଅଯୋଧ୍ୟାର ପୂର୍ବତନ ନବାବଙ୍କ ଆହ୍ୱାନ କ୍ରମେ ଆଫ୍‌ଗାନିସ୍ତାନର ଶାସକ ପଞ୍ଜାବ ଆକ୍ରମଣ କଲେ । କିନ୍ତୁ ଶିଖମାନଙ୍କର ପ୍ରତିରୋଧ ଫଳରେ ଏବଂ ଦେଶ ମଧ୍ୟରେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରର ସଂବାଦ ଶୁଣି ସେ ସ୍ୱଦେଶକୁ ଫେରି ଯାଇଥିଲେ । ରୋହିଲା ନେତାମାନଙ୍କ ସହିତ ମଧ୍ୟ ଟିପୁ ଯୋଗାଯୋଗ ସ୍ଥାପନ କରିଥିଲେ ।

ଫ୍ରାନ୍‌ସ ନିକଟରୁ ବି ଟିପୁ ସାହାଯ୍ୟ ପ୍ରାର୍ଥନା କରିଥିଲେ । ୧୭୯୩ ଖ୍ରୀଷ୍ଟାବ୍ଦ ବେଳକୁ ସେ ଫ୍ରାନ୍‌ସକୁ ତାଙ୍କର ଦ୍ୱିତୀୟ ଦୂତ ଦଳଟିକୁ ପ୍ରେରଣ କରିଥିଲେ । କିନ୍ତୁ ଏହି ଆଲୋଚନା କାହା ସହିତ ଚାଲିଥିଲା ଏବଂ ଏହାର ଫଳାଫଳ କ'ଣ ହୋଇଥିଲା, ତାହା ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ୧୭୯୫-୧୭୯୬ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍‌ମାନଙ୍କୁ ଭାରତରୁ ବିତାଡ଼ିତ କରିବା ପାଇଁ ଫ୍ରାନ୍‌ସ ଏବଂ ମହୀଶୂର ମଧ୍ୟରେ ଆକ୍ରମଣ ଓ ଆତ୍ମରକ୍ଷାର ଗୋପନ ଚୁକ୍ତିର ପରିକଳ୍ପନା ସେ ଫରାସୀମାନଙ୍କୁ ପଠାଇଥିଲେ । ୧୭୯୭ ଖ୍ରୀଷ୍ଟାବ୍ଦରେ ସେ ଭାରତସ୍ଥ ଫରାସୀମାନଙ୍କ ସହିତ ଘନିଷ୍ଠ ଯୋଗାଯୋଗ ସ୍ଥାପନର ସିଦ୍ଧାନ୍ତ ନେଇଥିଲେ । ଅନିର୍ଦ୍ଦିଷ୍ଟ କର୍ମସୂଚୀ ସତ୍ତ୍ୱେ ଶ୍ରୀରଙ୍ଗପଟନମ୍‌ରେ ଗୋଟିଏ ଜ୍ୟାକୋବିନ୍ କ୍ଲବ ପ୍ରତିଷ୍ଠିତ ହୋଇଥିଲା । ଟିପୁ ସୁଲ୍‌ତାନଙ୍କ ଉପସ୍ଥିତିରେ କ୍ଲବର ସଦସ୍ୟମାନେ ଆନୁଷ୍ଠାନିକ ଭାବେ ସ୍ୱାଧୀନତା ନାମରେ ଏକ ବୃକ୍ଷ ରୋପଣ ସହ ସେମାନଙ୍କ ବକ୍ତୃତାରେ ସମସ୍ତ ଅତ୍ୟାଚାରୀଙ୍କର

ମୃତ୍ୟୁ ଓ "ସ୍ୱାଧୀନ ଟିପୁଙ୍କର" ଦୀର୍ଘ ଜୀବନ କାମନା କରିଥିଲେ । ଫରାସୀ ବିପ୍ଳବୀମାନଙ୍କ କାଇଦାରେ ଏକ ସାନ୍‌କ୍ୟୁଲେଟ୍ ଟୋପି ମଧ୍ୟ ତାଙ୍କୁ ପିନ୍ଧାଇ ଦିଆଯାଇଥିଲା । ମନେ ହୁଏ, ସମକାଳୀନ ବିଶ୍ୱ ଘଟଣାବଳୀ ସଂପର୍କରେ ଟିପୁଙ୍କର ଧାରଣା ନଥିଲା । ତେବେ ଅନୁଷ୍ଠାନଟି ଯେ, ଫରାସୀ ସୈନ୍ୟବାହିନୀର ନିର୍ଭରଯୋଗ୍ୟ ସମର୍ଥକ ଲାଭ ପକ୍ଷରେ ତାଙ୍କୁ ସହାୟକ ହେବ, ସେ କଥା ସେ ବୁଝିଥିଲେ, ଏବଂ ଏହାକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ଭାବିଥିଲେ ।

ଫରାସୀ ସାହାଯ୍ୟ ପାଇଁ ଟିପୁ ଆଉ ଥରେ ମଧ୍ୟ ଚେଷ୍ଟା କରିଥିଲେ । ଏକ ଜାହାଜ ଯୋଗେ ଗୋପନରେ ପ୍ରେରିତ ତାଙ୍କର ଦୁଇଜଣ ଦୂତଙ୍କୁ ସେ ମରିସାସ୍ ଦ୍ୱୀପରୁ ଫରାସୀ ସୈନ୍ୟ ଆଣିବା ପାଇଁ ଏବଂ ଖୋଦ୍ ଫ୍ରାନ୍‌ସରୁ ସାହାଯ୍ୟ ଲାଭ ପାଇଁ ପଠାଇଥିଲେ । କିନ୍ତୁ ସେମାନେ ମରିସାସ୍‌ରେ ପହଞ୍ଚିଲା ବେଳକୁ ଫ୍ରାନ୍‌ସରେ ଅଗ୍ରନକ କ୍ଷମତା ଦଖଲ ଓ ଦ୍ୱିତୀୟ ବିପ୍ଳବ ପରିଷଦ ପ୍ରତିଷ୍ଠାର ସଂବାଦ ଆସି ପହଞ୍ଚିଥିଲା । ତା'ପରେ ଫ୍ରାନ୍‌ସକୁ ଦୂତ ପ୍ରେରଣ କରିବା ନିରର୍ଥକ ହୋଇ ପଡ଼ିଥିଲା । ମରିସାସ୍ ଦ୍ୱୀପର ଗଭର୍ଣ୍ଣର ଏହି ଗୋପନୀୟତା ଭଙ୍ଗ କରି ପ୍ରକାଶ୍ୟରେ ଟିପୁଙ୍କ ପତାକା ତଳେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ସଂଗ୍ରାମ ପାଇଁ ସ୍ୱେଚ୍ଛାସେବକ ବାହିନୀ ଗଠନ କରିବାକୁ ଡାକରା ଦେଇଥିଲେ । କିନ୍ତୁ ଏହି ଡାକରା ବିଶେଷ ଫଳପ୍ରଦ ହୋଇ ନଥିଲା – ମାତ୍ର ୯୯ଜଣ ଫରାସୀ ନାଗରିକ ଦୂତମାନଙ୍କ ସହିତ ମହୀଶୂରକୁ ଆସିଥିଲେ । ଟିପୁଙ୍କର ଏତାଦୃଶ କାର୍ଯ୍ୟକଳାପର ସଂବାଦ ଏବଂ ଟିପୁଙ୍କ ସହିତ ଯୋଗଦାନେଚ୍ଛୁକ ବୋନାପାର୍ଟଙ୍କ ମିଶର ଅଭିଯାନର ଫଳାଫଳ ଦ୍ୱାରା ଆତଙ୍କିତ ବ୍ରିଟିଶ୍‌ମାନେ ସେମାନଙ୍କର ଭୟଙ୍କର ଶତ୍ରୁ ମହୀଶୂରକୁ ଅବିଳମ୍ବେ ଧ୍ୱଂସ କରିବା ପାଇଁ ସିଦ୍ଧାନ୍ତ ନେଇଥିଲେ ।

ଭାରତର ତତ୍କାଳୀନ ନୂତନ ଗଭର୍ଣ୍ଣର ଜେନେରାଲ୍ ଲର୍ଡ ଓୟେଲେସ୍‌ଲିଙ୍କ (୧୭୯୮-୧୮୦୫) ଏ ସଂକ୍ରାନ୍ତ ପ୍ରସ୍ତାବଟି ଲଣ୍ଡନର ସଂପୂର୍ଣ୍ଣ ଅନୁମୋଦନ ଲାଭ କରିଥିଲା । ପ୍ରଥମେ ସେ ଭାରତରେ ବ୍ରିଟିଶ୍‌ଙ୍କ ଉଲ୍ଲେଖଯୋଗ୍ୟ ୟୁରୋପୀୟ ପ୍ରତିଦ୍ୱନ୍ଦ୍ୱୀ, ଯଥା ହାୟଦରାବାଦର ଶାସକଙ୍କ ଅଧୀନସ୍ଥ ଫରାସୀ ସୈନ୍ୟବାହିନୀକୁ ନିଷ୍କ୍ରିୟ କରି ଦେବାକୁ ସିଦ୍ଧାନ୍ତ ନେଇଥିଲେ । ଏମାନଙ୍କ ପରିବର୍ତ୍ତେ ନିଜାମଙ୍କୁ ଏକ ବ୍ରିଟିଶ୍ ସେନାବାହିନୀ ଦେବାକୁ ପ୍ରତିଶ୍ରୁତି ଦିଆଯାଇଥିଲା । ବ୍ରିଟିଶ୍‌ମାନେ ସେତେବେଳେ ଫରାସୀ ସେନାବାହିନୀକୁ ଘେରି ଯାଇଥିଲେ ଏବଂ ଗୋଟିଏ ହେଲେ ଗୁଳି ଫାଏର ନକରି ସେମାନଙ୍କୁ ନିରସ୍ତ୍ର କରିଦେଲେ । ତା'ପରେ ନିଜାମଙ୍କ ଦ୍ୱାରା ଦେୟ ବେତନ ମେଣ୍ଟେଇ ଦେଇ ସୈନ୍ୟଦଳଟିକୁ ଭାଙ୍ଗିଦେଲେ ଏବଂ ଓୟେଲେସ୍‌ଲିଙ୍କ ସୈନ୍ୟଦଳ ମହୀଶୂର ଆକ୍ରମଣ କରିଥିଲେ । କର୍ଣ୍ଣଓ୍ୱାଲିଶ୍‌ଙ୍କ ସମସ୍ତ ଭୁଲତ୍ରୁଟିରୁ ଇତିମଧ୍ୟରେ ବ୍ରିଟିଶ୍‌ମାନେ ଶିକ୍ଷା ଗ୍ରହଣ କରିଥିଲେ । ଏଥର ସେମାନେ ସୁସଜ୍ଜିତ ଥିଲେ । ଟିପୁଙ୍କ ସ୍ୱେଚ୍ଛାଚାରୀ ବ୍ୟବହାର ଦ୍ୱାରା ଅତିଷ୍ଠ ସେନାପତିମାନେ ତାଙ୍କ ସହିତ ବିଶ୍ୱାସଘାତକତା କଲେ । ଫଳରେ ଶ୍ରୀରଙ୍ଗପଟ୍ଟମ୍ ପୁଣି ବ୍ରିଟିଶ୍‌ମାନଙ୍କ ଦ୍ୱାରା ଅବରୁଦ୍ଧ ହେଲା ଏବଂ ୧୭୯୯ ଖ୍ରୀଷ୍ଟାବ୍ଦରେ ଏପ୍ରିଲ ୨୮ ତାରିଖରେ ଏକ ଅତର୍କିତ ଆକ୍ରମଣ ଫଳରେ ବ୍ରିଟିଶ୍‌ମାନଙ୍କ ହାତରେ ତା'ର ପତନ ଘଟିଲା । ବୀରତ୍ୱର ସହିତ ଯୁଦ୍ଧ କରି ଟିପୁ ମୃତ୍ୟୁବରଣ କଲେ । ତା'ପରେ ବ୍ରିଟିଶ୍ ସୈନ୍ୟମାନେ ଅବାଧରେ କେଇ ଦିନ ଶ୍ରୀରଙ୍ଗପଟ୍ଟମ୍ ଲୁଣ୍ଠନ କରିଥିଲେ ।

ମହୀଶୂର ଅଧିକାର ଫଳରେ ବ୍ରିଟିଶ୍‌ମାନଙ୍କ ପକ୍ଷରେ ସମଗ୍ର ଭାରତ ଦଖଲ କରିବା ସମ୍ଭବ ହୋଇଥିଲା । ତିରିଶ ବର୍ଷ ପର୍ଯ୍ୟନ୍ତ ମହୀଶୂରର ଲୋକେ ସେମାନଙ୍କ ସ୍ୱାଧୀନତାକୁ ଅତୁଟ ରଖିଥିଲେ ।

ବ୍ରିଟିଶ୍ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ସେମାନଙ୍କ ସଂଗ୍ରାମ ଥିଲା ପ୍ରକୃତରେ ବୀରତ୍ୱପୂର୍ଣ୍ଣ । ୧୭୯୯ ଖ୍ରୀଷ୍ଟାବ୍ଦରେ ମହୀଶୂରର ପତନର ପୂର୍ବ ପର୍ଯ୍ୟନ୍ତ ଏହା ପ୍ରତିରୋଧର କେନ୍ଦ୍ରସ୍ଥଳ ଥିଲା । ତେବେ ସାମନ୍ତବାଦୀ ମହୀଶୂର ଉପରେ ପୁଞ୍ଜିବାଦୀ ବ୍ରିଟେନ୍‌ର ବିଜୟ ଅନିବାର୍ଯ୍ୟ ଥିଲା । ତା ସତ୍ତ୍ୱେ ମହୀଶୂରର ଜନସାଧାରଣଙ୍କର ଦୀର୍ଘ ପ୍ରତିରୋଧ ସାମନାରେ ବ୍ରିଟିଶ୍ ଔପନିବେଶିକମାନେ ଭାରତରେ ସର୍ବଦା ଏକ ବିରାଟ ସୈନ୍ୟବାହିନୀ ରଖିବାକୁ ବାଧ୍ୟ ହୋଇଥିଲେ ।

ମହୀଶୂର ଦଖଲ ପରେ ଔପନିବେଶିକମାନେ ତାକୁ ତତ୍‌କ୍ଷଣାତ୍ ନିଜର ଏଲାକା ଭୁକ୍ତ କରିବାକୁ ସାହସ କରି ନଥିଲେ । ଓଡ଼ିୟାର ରାଜବଂଶର ଏକ ଉତ୍ତରାଧିକାରୀଙ୍କୁ ସିଂହାସନରେ ବସେଇ "ପରାଜିତ" କରଦରାଜ୍ୟର ଆଳୁଆଳରେ ସେମାନେ ନିଜର ଆଧିପତ୍ୟକୁ ଘୋଡ଼େଇ ରଖିଥିଲେ ।

## କର୍ଣ୍ଣାଟକ ଅଧିକାର

କର୍ଣ୍ଣାଟକର ଘଟଣାବଳୀ ହେଉଛି ପ୍ରକୃତରେ ବଶ୍ୟତାମୂଳକ ଚୁକ୍ତି ମାଧ୍ୟମରେ କରଦରାଜ୍ୟ ଦଖଲ କରିବାର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ । ୧୭୬୩ ଖ୍ରୀଷ୍ଟାବ୍ଦର ପ୍ୟାରିସ୍ ଚୁକ୍ତି ଅନୁଯାୟୀ ବ୍ରିଟିଶ୍‌ମାନଙ୍କ ଆଶ୍ରିତ ମହମ୍ମଦ୍ ଅଲୀଙ୍କୁ କର୍ଣ୍ଣାଟକର (ଆର୍କଟ) ଶାସକ ହିସାବରେ ସ୍ୱୀକୃତି ଦିଆଯାଇଥିଲା । ତାଙ୍କର, ଅବଶ୍ୟ, ପ୍ରକୃତରେ କୌଣସି କ୍ଷମତା ନଥିଲା । ସେ ଥିଲେ ବ୍ରିଟିଶ୍‌ମାନଙ୍କ ହାତର ପୁତ୍ତୁଳିକା । ୧୭୫୬-୧୭୬୩ ଖ୍ରୀଷ୍ଟାବ୍ଦର ଯୁଦ୍ଧ ପରେ କଂପାନି ମହମ୍ମଦ୍ ଅଲୀଙ୍କ ନିକଟରୁ ସାମରିକ ଖର୍ଚ୍ଚ ବାବଦକୁ ୫୦ ଲକ୍ଷ ଟଙ୍କା ଦାବୀ କରିଥିଲେ । ନୂତନ ନବାବଙ୍କ ପାଖରେ ଏତେ ଅର୍ଥ ନଥିବାରୁ କଂପାନିର କେତେକ କର୍ମଚାରୀ କେତେକ ଜିଲ୍ଲାରୁ ରାଜସ୍ୱ ଆଦାୟର ଅଧିକାର ଲାଭ କରିବା ସର୍ତ୍ତରେ ତାଙ୍କୁ ପ୍ରୟୋଜନୀୟ ଅର୍ଥ ସାହାଯ୍ୟ ପ୍ରଦାନ କରିଥିଲେ । କୁଟିଳ ଆର୍ଥିକ କାର୍ଯ୍ୟକଳାପ ମାଧ୍ୟମରେ କଂପାନିର କର୍ମଚାରୀମାନେ ସେମାନଙ୍କ ଅଧୀନସ୍ଥ ଜିଲ୍ଲାଗୁଡ଼ିକରୁ ଉଚ୍ଚ ହାରରେ ଅଧିକା ରାଜସ୍ୱ ଆଦାୟ କରିବାକୁ ସମର୍ଥ ହୋଇଥିଲେ ଏବଂ ସେସବୁ ଅର୍ଥକୁ ଅଧିକ ସୁଧ ହାରରେ ନବାବଙ୍କୁ ଋଣ ହିସାବରେ ଲଗାଣ କରୁଥିଲେ । କଂପାନିର ଜଣେ ସାଧାରଣ କିରାଣି ପଲ୍ ବେନ୍‌ଫିଲ୍ଡ, ବିଶେଷ କରି ଅନେକ ପରିମାଣର ଟଙ୍କା ନେଣଦେଣ କରୁଥିଲେ । ବର୍ଷକୁ ୨ ଶହ ପାଉଣ୍ଡର ବେତନ ପାଇଲେ ମଧ୍ୟ ସେ ନବାବଙ୍କୁ ହଜାର ହଜାର ପାଉଣ୍ଡ ଋଣ ଦେଉଥିଲେ । ବହୁ ଚେଷ୍ଟା ସତ୍ତ୍ୱେ ନବାବ ଏହି ଋଣରୁ ନିଜକୁ ମୁକ୍ତ କରିବାକୁ ବ୍ୟର୍ଥ ହୋଇଥିଲେ । ଋଣର ସୁଧ ମେଣ୍ଟେଇବାକୁ ଯାଇ ମହମ୍ମଦ୍ ଅଲୀଙ୍କୁ ନୂଆ ଋଣ କରିବାକୁ ପଡ଼ୁଥିଲା । "ଉତ୍ତମର୍ଣ୍ଣମାନଙ୍କ (ଅର୍ଥାତ୍, ବ୍ରିଟିଶ୍ ମହାଜନମାନଙ୍କ) ପାଇଁ ଏହା 'ଖୁବ୍ ସୁବିଧାଜନକ' ଥିଲା । ଏହା ଦ୍ୱାରା ଏହିସବୁ 'ପରାଙ୍ଗପୁଷ୍ଟମାନେ' ହଠାତ୍ ବଡ଼ ବଡ଼ ଜମିଦାର ପାଲଟି ଯାଉଥିଲେ ଏବଂ ରଇତ୍‌ମାନଙ୍କୁ ଶୋଷଣ କରି ବିପୁଳ ପରିମାଣର ସଂପତ୍ତିର ମାଲିକ ହେବାର ସୁଯୋଗ ପାଉଥିଲେ । ଫଳରେ, ସ୍ଥାନୀୟ ପ୍ରଜାମାନଙ୍କ ଉପରେ ୟୁରୋପୀୟ (ବ୍ରିଟିଶ୍) ହଠାତ୍ ଜମିଦାରମାନଙ୍କର ଅତ୍ୟାଚାର, ନିର୍ମମତମ ଅତ୍ୟାଚାର ଚାଲୁଥିଲା । ଏମାନେ ଏବଂ ନବାବ ସମଗ୍ର କର୍ଣ୍ଣାଟକକୁ ଧ୍ୱଂସ କରି ଦେଇଥିଲେ ।"*

* K. Marx, "Notes on Indian History", Moscow, 1960, p. 110.

ଆର୍କଟର ନବାବଙ୍କ ସୈନ୍ୟ ଏବଂ କଂପାନିଙ୍କ ସୈନ୍ୟମାନଙ୍କ ଦ୍ୱାରା ସମୃଦ୍ଧ ତାଞ୍ଜୋର ଦଖଲ ଏବଂ ଲୁଣ୍ଠନ ସତ୍ତ୍ୱେ ରାଜକୋଷ ପୁନର୍ଗଠିତ ହେଲା ନାହିଁ । ୧୭୭୧ ଖ୍ରୀଷ୍ଟାବ୍ଦରେ ରାଜ ପ୍ରତିନିଧି ଲର୍ଡ ଲିଣ୍ଡସେ ଏବଂ ୧୭୭୬ ଖ୍ରୀଷ୍ଟାବ୍ଦରେ ଲର୍ଡ ପିଗଟ କଂପାନିର କର୍ମଚାରୀମାନଙ୍କ ହାତରେ କର୍ଣ୍ଣାଟକର ଏହି ଲୁଣ୍ଠନ ବନ୍ଦ କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ ତାହା ମୋଟେ ଫଳପ୍ରସୂ ହେଲା ନାହିଁ । ବ୍ୟର୍ଥ ଲର୍ଡ ଲିଣ୍ଡସେ ଦେଶକୁ ଫେରିଯିବା ପାଇଁ ବାଧ୍ୟ ହୋଇଥିଲେ । ମାଦ୍ରାଜ କାଉନ୍‌ସିଲର ସଦସ୍ୟମାନଙ୍କ ବ୍ୟକ୍ତିଗତ ସ୍ୱାର୍ଥ କର୍ଣ୍ଣାଟକ ଓ ତାଞ୍ଜୋର ଲୁଣ୍ଠନ ସହିତ ଯୁକ୍ତ ଥିବାରୁ ସେମାନେ ଲର୍ଡ ପିଗଟଙ୍କୁ ଜେଲଖାନାରେ ଅଟକ କଲେ ଏବଂ ପରେ ସେଠାରେ ତାଙ୍କର ମୃତ୍ୟୁ ଘଟିଥିଲା । ଅନ୍ୟ ଦିଗରେ, ପଲ୍ ବେନ୍‌ଫିଲ୍ଡ ଧନୀ ବ୍ୟକ୍ତି ହିସାବରେ ଇଂଲଣ୍ଡରେ ପଦାର୍ପଣ କରିଥିଲେ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଆଶ୍ରିତ କରଦରାଜ୍ୟ କର୍ଣ୍ଣାଟକ, କଂପାନିର ନିଜସ୍ୱ ଅଞ୍ଚଳରେ ପରିଣତ ହେଲା । ଏଭଳି ଅବସ୍ଥାରେ ନବାବଙ୍କ ବଦଳରେ ଋଣ ପରିଶୋଧର ଦାୟିତ୍ୱ କଂପାନି ଉପରେ ପଡ଼ିଥିଲା ଏବଂ କେବଳ ସେତିକିବେଳେ ବ୍ରିଟିଶ୍ ପାର୍ଲିଆମେଣ୍ଟ ଏହିସବୁ ଋଣର ସତ୍ୟତା ଯାଞ୍ଚ କରିବା ପାଇଁ ଗୋଟିଏ ବିଶଦ ତଦନ୍ତର ଆୟୋଜନ କରିଥିଲା । ଏହା ଫଳରେ ୧୩ ଲକ୍ଷ ପାଉଣ୍ଡ ଋଣ ଦାବି ଯଥାର୍ଥ ବୋଲି ପ୍ରମାଣିତ ହେଲା ଏବଂ ଅତିରିକ୍ତ ୧ କୋଟି ୯୦ ଲକ୍ଷ ପାଉଣ୍ଡ ପ୍ରତାରଣାମୂଳକ ବା ପ୍ରମାଣହୀନ ଦାବି ହିସାବରେ ନାକଚ କରି ଦିଆଗଲା । "ଏବଂ ୨୦ ବର୍ଷ ପରେ (୧୮୦୪ ଖ୍ରୀଷ୍ଟାବ୍ଦରେ) ଋଣର ଶେଷ ଅଙ୍କଟି ପର୍ଯ୍ୟନ୍ତ ପରିଶୋଧ ପରେ ଯାହା ହେବ ବୋଲି ଆଶା କରାଯାଇଥିଲା, ସେଇଆ ହେଲା—ମହମ୍ମଦ୍ ଅଲୀ ଇତିମଧ୍ୟରେ ୩ କୋଟି ଟଙ୍କାର ନୂଆ ଋଣ ଚୁକ୍ତି କରିଥିଲେ ! ତା'ପରେ ପୁଣି ଆରମ୍ଭ ହେଲା ନୂଆ ଏକ ତଦନ୍ତ । ନବାବଙ୍କ ସମଗ୍ର ବ୍ୟାପାରଟି ମୀମାଂସା ହେବାକୁ ଲାଗି ଯାଇଥିଲା ପ୍ରାୟ ୫୦ ବର୍ଷ, ଏଥିରେ ଖର୍ଚ୍ଚ ହୋଇଥିଲା ୧୦ ଲକ୍ଷ ପାଉଣ୍ଡ । ଏହି ଭାବେ ବ୍ରିଟିଶ୍ ସରକାର—ଯିଏକି କଂପାନି ପରିବର୍ତ୍ତେ ନିଜେ ପିଟ୍‌ଙ୍କ ଖସଡ଼ା ଆଇନ୍‌ର ପରବର୍ତ୍ତୀ କାଳରେ ଭାରତବର୍ଷରେ ଶାସନ ଚଳେଇଥିଲେ । ହତଭାଗ୍ୟ ଭାରତବାସୀଙ୍କୁ ଶୋଷଣ କରିଥିଲେ ।"*

## ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ କୁର୍ଗ ଓ ତ୍ରିଭାଙ୍କୁରର ବିଦ୍ରୋହ

ମହୀଶୂରର ପତନ ପରେ ଭାରତୀୟ ଜନସାଧାରଣଙ୍କର ସଂଗ୍ରାମ କେତେକ ବିକ୍ଷିପ୍ତ ଘଟଣା ମଧ୍ୟରେ ପର୍ଯ୍ୟବସିତ ହୋଇଥିଲା ଏବଂ ସେସବୁକୁ ଦମନ କରିବା ମୋଟେ କଠିନ ନଥିଲା । ବ୍ରିଟିଶ୍‌ମାନଙ୍କର ସହଯୋଗୀ ଅଞ୍ଚଳର ଯେଉଁସବୁ ବାସିନ୍ଦା ଏକଦା ଇଂରେଜମାନଙ୍କୁ ସେମାନଙ୍କର ମୁକ୍ତିଦାତା ବୋଲି ଭାବୁଥିଲେ, ସେମାନେ ଦେଖିଲେ ସେଇ ଇଂରେଜମାନେ ଏବେ ସେମାନଙ୍କ ଶାସନକର୍ତ୍ତା । ସେଇସବୁ ଲୋକେ ବ୍ରିଟିଶ୍‌ମାନଙ୍କ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରି ଦେଲେ । ଏହାର ଦୃଷ୍ଟାନ୍ତ ହେଲା କୁର୍ଗ ଏବଂ ତ୍ରିଭାଙ୍କୁର ।

ଶ୍ରୀରଙ୍ଗପଟ୍ଟମ୍ ଚୁକ୍ତି (୧୭୯୨) ଅନୁଯାୟୀ କୁର୍ଗ ବ୍ରିଟିଶ୍ ଶାସକମାନଙ୍କ ନିକଟରେ ହସ୍ତାନ୍ତରିତ

* K. Marx, "Notes on Indian History", Moscow, 1960, p. 111.

ହେବା ଫଳରେ ପୂର୍ବତନ ଉଦ୍‌ବାସ୍ତୁ ଜମିଦାରମାନେ (ନାୟର ଏବଂ ନମ୍ବୁଦ୍ରି) ଦେଶକୁ ଫେରିଲେ ଏବଂ ସେମାନଙ୍କ ଜମିରେ ଇଜାରାଦାର ହିସାବରେ ଅଥବା ଟିପୁ ସୁଲ୍‌ତାନଙ୍କ ଆଦେଶରେ ଯେଉଁମାନେ ପୁନର୍ବାସିତ ହୋଇଥିଲେ, ସେଇ ମପଲମାନଙ୍କୁ ଉତ୍‌ଖାତ କରିବାକୁ ଆରମ୍ଭ କରିଦେଲେ । ଏହା ଦ୍ୱାରା ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ ସଂଘାତର ସମ୍ଭାବନା ଦେଖି ବ୍ରିଟିଶ୍ କର୍ତ୍ତୃପକ୍ଷ ବିଷୟଟିକୁ ଅନୁମୋଦନ ଜଣାଇଥିଲେ । ଏଥି ସଙ୍ଗେ ସଙ୍ଗେ କଂପାନି ଭୂମିରାଜସ୍ୱ ଆଉରି ଉଚ୍ଚ ହାରରେ ଆଦାୟ କରିଥିଲା ଏବଂ ପ୍ରଭାବଶାଳୀ ଜମିଦାରମାନଙ୍କୁ ବାର୍ଷିକ ଖଜଣା ଆଦାୟ କରିବାର ଇଜାରା ଦେବାକୁ ଆରମ୍ଭ କରିଥିଲା ।

୧୭୯୩ ଖ୍ରୀଷ୍ଟାବ୍ଦରେ ଖଜଣା ଆଦାୟର ଏକ ଚୁକ୍ତି ଏହାର ଦାବିଦାର କୁର୍ଗର ନାୟାର ନେତା ବର୍ମ ରାଜଙ୍କ ପରିବର୍ତ୍ତେ ତାଙ୍କ ପିତୃବ୍ୟଙ୍କ ସହିତ ସଂପାଦିତ ହୋଇଥିଲା । ଫଳରେ, ବର୍ମ ରାଜ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଏକ ପ୍ରତିରୋଧ ଆନ୍ଦୋଳନ ଗଢ଼ି ତୋଳିଥିଲେ । ବିଦ୍ରୋହୀମାନେ ବ୍ରିଟିଶ୍ ଖଜଣା ଆଦାୟକାରୀମାନଙ୍କୁ ବିତାଡ଼ିତ କଲେ । କଂପାନି କେଇ ଥର ଏମାନଙ୍କ ବିରୁଦ୍ଧରେ ତାଙ୍କ ସୈନ୍ୟଦଳ ପ୍ରେରଣ କରିଥିଲା । କିନ୍ତୁ ନିବିଡ଼ ଜଙ୍ଗଲର ଆଢ଼ୁଆଳରେ ଲୁକ୍କାୟିତ ଏହିସବୁ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ଏହିସବୁ ଅଭିଯାନ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ୧୭୯୭ ଖ୍ରୀଷ୍ଟାବ୍ଦରେ ୧୧୦୦ ବ୍ରିଟିଶ୍ ସିପାହୀମାନଙ୍କର ଏକ ସୈନ୍ୟଦଳ କୁର୍ଗ ସୈନ୍ୟମାନଙ୍କର ଅଗ୍ନକ ଆକ୍ରମଣ ଦ୍ୱାରା ନିଶ୍ଚିହ୍ନ ହୋଇ ଯାଇଥିଲେ । କଂପାନି ଶେଷକୁ ବର୍ମ ରାଜାଙ୍କୁ ବାର୍ଷିକ ୮ ହଜାର ଟଙ୍କାର ପେନ୍‌ସନ୍ ଉଚ୍ଛୋଟ ଦେଇ ବଶୀଭୂତ କରିନେଲା ଏବଂ ସେ ସଂଗ୍ରାମ ପରିହାର କରିଥିଲେ । ବିଦ୍ରୋହର ଅନ୍ୟ ନେତାମାନେ କିନ୍ତୁ ସଂଗ୍ରାମ ଚଳେଇ ଯାଇଥିଲେ । ତେବେ, ଏଭଳି ଅବସ୍ଥାରେ ଜଙ୍ଗଲରେ ଆତ୍ମଗୋପନ କରି ବ୍ରିଟିଶ୍ ସୈନ୍ୟମାନଙ୍କ ଉପରେ ଏବଂ ସେମାନଙ୍କ ଯୋଗାଯୋଗ ବ୍ୟବସ୍ଥା ଉପରେ ବିକ୍ଷିପ୍ତ ଆକ୍ରମଣ ମଧ୍ୟରେ ସେମାନଙ୍କ କାର୍ଯ୍ୟକଳାପ ସୀମିତ ହୋଇ ପଡ଼ିଥିଲା ।

ଆଉ ଏକ ବିଦ୍ରୋହ ଘଟିଥିଲା ୧୮୦୦ ଖ୍ରୀଷ୍ଟାବ୍ଦରେ ଏବଂ ଏଥର ମଧ୍ୟ ବର୍ମ ରାଜା ଏହାର ନେତୃତ୍ୱ ନେଇଥିଲେ । ବ୍ରିଟିଶ୍ ସୈନ୍ୟବାହିନୀର ଅଧିନାୟକ ଥିଲେ ଓୟେଲିଂଟନ୍‌ର ଭାବୀ ଡିଉକ୍, ଆର୍ଥର ଓୟେଲେସ୍‌ଲି । ୧୮୦୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ବିଦ୍ରୋହୀମାନଙ୍କର ସମସ୍ତ ନେତା ବନ୍ଦୀ ହୋଇ ଫାଶି କାଠରେ ପ୍ରାଣ ଦେଲେ । ଚିରକାଳ ପାଇଁ ପ୍ରତିରୋଧ ବିଲୋପ ପାଇଛି ଭାବି ବ୍ରିଟିଶ୍‌ମାନେ ଭୂମିରାଜସ୍ୱର ହାର ଅତ୍ୟଧିକ ମାତ୍ରାରେ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଟଙ୍କା ବଦଳରେ ଜିନିଷପତ୍ର ଆକାରରେ ଖଜଣା ପରିଶୋଧର ନୂତନ ବିନିମୟ ହାର ପ୍ରବର୍ତ୍ତନ କରିଦେଲେ । ଏହି ବ୍ୟବସ୍ଥା ଥିଲା କୃଷକମାନଙ୍କ ପକ୍ଷରେ ଅସୁବିଧାଜନକ ଏବଂ ଏହାର ପ୍ରତିବାଦରେ କୃଷକମାନଙ୍କ ମଧ୍ୟରେ ନୂତନ ବିଦ୍ରୋହ ଦେଖାଦେଲା । ଏଥର ବିଦ୍ରୋହର ଅଂଶ ଗ୍ରହଣକାରୀ ଥିଲେ କୁର୍ଗର ଏକ ବିଶେଷ ଅଞ୍ଚଳର ଅଧିବାସୀମାନେ । ସେମାନେ ଅତର୍କିତ ଆକ୍ରମଣ କରି ବ୍ରିଟିଶ୍ ସୈନ୍ୟବାହିନୀକୁ ହଟେଇ ପାନାମାରାମର ବ୍ରିଟିଶ୍ ଦୁର୍ଗଟିକୁ ଦଖଲ କରି ନେଇଥିଲେ । ତା'ପରେ ସେମାନେ ଅଧିକାର କରିନେଲେ ଗିରିପଥଗୁଡ଼ିକୁ । ବ୍ରିଟିଶ୍‌ମାନଙ୍କ ଯୋଗାଯୋଗ ବ୍ୟବସ୍ଥାକୁ ଭାଙ୍ଗିଦେଲେ ଏବଂ ଉପକୂଳ ପର୍ଯ୍ୟନ୍ତ ସମଗ୍ର ଜିଲ୍ଲାର ଲୋକଙ୍କୁ ସେମାନଙ୍କ ସହିତ ମିଳେଇନେଲେ । ବ୍ରିଟିଶ୍ କର୍ତ୍ତୃପକ୍ଷ ସେତେବେଳେ କୃଷକମାନଙ୍କୁ ସୁବିଧା ଦେବାକୁ ବାଧ୍ୟ ହୋଇଥିଲା, ପୂର୍ବତନ ହାରକୁ ଖଜଣା କମେଇ ଆଣିଥିଲା ଏବଂ ସେମାନଙ୍କର ଅନ୍ୟାନ୍ୟ ଦାବିକୁ ମାନିନେଇଥିଲା । ୧୮୦୫ ଖ୍ରୀଷ୍ଟାବ୍ଦରେ କେବଳ ଉପନିବେଶବାଦୀଙ୍କ ପକ୍ଷରେ ଏହି ବିଦ୍ରୋହକୁ ସମାପନ କରିବା ସମ୍ଭବ

ହୋଇଥିଲା । ବିଦ୍ରୋହୀମାନଙ୍କ ମଧ୍ୟରୁ ଅଧିକାଂଶ ଇତିପୂର୍ବରୁ ଯୁଦ୍ଧରେ ମୃତ୍ୟୁବରଣ କରିଥିଲେ ।

ତା'ପରେ ୧୮୧୨ ଖ୍ରୀଷ୍ଟାବ୍ଦରେ ଭୂମିରାଜସ୍ୱ ଶେଷକୁ ଟଙ୍କାକୁ ପରିବର୍ତ୍ତିତ ହେଲେ ଏହି ଅଞ୍ଚଳରେ ଆଉ ଗୋଟିଏ ବିଦ୍ରୋହ ଦେଖା ଦେଇଥିଲା । କିନ୍ତୁ ମାଲବାର ଉପକୂଳରୁ ପ୍ରେରିତ ସୈନ୍ୟଦଳ ଦ୍ରୁତ ଏହି ବିଦ୍ରୋହକୁ ଦମନ କରି ଦେଇଥିଲେ ।

ତ୍ରିଭାଙ୍କୁରରେ ମଧ୍ୟ ଏତାଦୃଶ ପରିସ୍ଥିତିର ପୁନରାବୃତ୍ତି ଘଟିଥିଲା । ୧୮୦୮ ଖ୍ରୀଷ୍ଟାବ୍ଦରେ ସେଠାରେ ବ୍ରିଟିଶ୍ ଶୋଷକମାନଙ୍କ ବିରୁଦ୍ଧରେ ଦାଲଭାଇ (ପ୍ରଧାନମନ୍ତ୍ରୀ) ଭେଲୁ ତାମ୍ପି ଏକ ବିଦ୍ରୋହର ନେତୃତ୍ୱ ଦେଇଥିଲେ । ତାଙ୍କ ବିଦ୍ରୋହୀ ସୈନ୍ୟଙ୍କ ସଂଖ୍ୟା ଥିଲା ୩୦ ହଜାର ଏବଂ କମାଣ ଥିଲା ୧୮ଟି । ତ୍ରିଭାଙ୍କୁରର ଏହି ବିଦ୍ରୋହରେ କୋଚିନର ଲୋକେ ମଧ୍ୟ ଯୋଗ ଦେଇଥିଲେ । ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ହାତରେ, ଅବଶ୍ୟ, ସେତେବେଳେ ବିରାଟ ସୈନ୍ୟବାହିନୀ ଥିଲେ । ଦୁଇଟି ପରାଜୟ ପରେ ବିଦ୍ରୋହର ଅବସାନ ସୁସ୍ପଷ୍ଟ ହୋଇ ଉଠିଥିଲା ଏବଂ ଭେଲୁ ତାମ୍ପି ତାଙ୍କ ଉଦ୍ଦେଶ୍ୟର ନିଶ୍ଚିତ ବ୍ୟର୍ଥତା ଉପଲବ୍ଧି ପରେ ଆତ୍ମହତ୍ୟା କରିଥିଲେ । ଏହା ପରେ ବ୍ରିଟିଶ୍ ସେନାବାହିନୀ ଯେଉଁ ନୃଶଂସତାର ସହିତ ବିଦ୍ରୋହ ଦମନ କରିଥିଲା, ତାହା ଏପରିକି କଂପାନିର ପରିଚାଳକ ମଣ୍ଡଳୀ ଦ୍ୱାରା ମଧ୍ୟ ନିନ୍ଦିତ ହୋଇଥିଲା ।

## ଦ୍ୱିତୀୟ ଓ ତୃତୀୟ ଇଂରେଜ-ମରହଟ୍ଟା ଯୁଦ୍ଧ

ଭାରତର ସୁଦୂର ପଞ୍ଜାବର ଶିଖ ରାଜ୍ୟ ଏବଂ ମରହଟ୍ଟା ରାଜ୍ୟଗୁଡ଼ିକ କେବଳ ସେତେବେଳେ ବ୍ରିଟିଶ୍‌ମାନଙ୍କ ଅଧୀନକୁ ଆସି ନଥାଏ । ମହୀଶୂର ଜୟ ପରେ (ଏଥିରେ ମରହଟ୍ଟାମାନଙ୍କର କିଛି ଅବଦାନ ଥିଲା) ବ୍ରିଟିଶ୍‌ମାନେ ମରହଟ୍ଟାମାନଙ୍କ ବିରୁଦ୍ଧରେ ସେମାନଙ୍କର ସମଗ୍ର ଶକ୍ତି ପ୍ରୟୋଗ କରିବାକୁ ସୁବିଧା ପାଇଥିଲେ । ଶକ୍ତିଶାଳୀ ମିତ୍ରହୀନ ମରହଟ୍ଟାମାନଙ୍କ ପକ୍ଷରେ ଏହି ଅଜେୟ ଶତ୍ରୁକୁ ପ୍ରତିରୋଧ କରିବା ଆଉ ସମ୍ଭବ ନଥିଲା । ତେଣୁ ଟିପୁଙ୍କ ପତନ ଫଳରେ ମରହଟ୍ଟାମାନଙ୍କର ପତନ ଅନିବାର୍ଯ୍ୟ ଥିଲା ବୋଲି କୁହାଯାଇ ପାରେ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ମରହଟ୍ଟା ରାଜାମାନଙ୍କ ମଧ୍ୟରେ କଳହ ବିଶେଷ ଭାବେ ପରିପକ୍ୱ ହୋଇ ପଡ଼ିଥିଲା । ସେମାନେ ସର୍ବଦା ପରସ୍ପର ବିରୁଦ୍ଧରେ ଛୋଟ ଛୋଟ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ ଏବଂ ଫଳତଃ, ବ୍ରିଟିଶ୍‌ଙ୍କ ପକ୍ଷରେ ସେମାନଙ୍କୁ ବିଚ୍ଛିନ୍ନ କରି ଜଣଜଣ କରି ଅଧୀନସ୍ଥ କରିବା ସମ୍ଭବ ହୋଇଥିଲା । ୧୮୦୧ ଖ୍ରୀଷ୍ଟାବ୍ଦରେ ଗୋଆଲିଅରର ରାଜା ଦୌଲତ ରାଓ ସିନ୍ଧିଆ (୧୭୯୪-୧୮୨୭) ଏବଂ ଇନ୍ଦୋରର ରାଜା ଯଶୋବନ୍ତ ରାଓ ହୋଲକାର (୧୭୯୭-୧୮୧୧) ମଧ୍ୟରେ ରାଜ୍ୟ ସୀମା ଘେନି ଯୁଦ୍ଧ ଲାଗିଗଲେ ପରସ୍ପରର ରାଜ୍ୟ ଆକ୍ରମଣ କରି ଯଥେଚ୍ଛା ହତ୍ୟା ଓ ଲୁଣ୍ଠନ କରିଥିଲେ । ସେ ପର୍ଯ୍ୟନ୍ତ ଉଭୟ ପକ୍ଷର ସୈନ୍ୟବାହିନୀ ପୁନର୍ଗଠିତ ହୋଇଥିଲେ—ପ୍ରଧାନ ଶକ୍ତି ହିସାବରେ ଅଶ୍ୱାରୋହୀ ବାହିନୀ ସ୍ଥାନରେ ୟୁରୋପୀୟ ଅଫିସରମାନଙ୍କର ଅଧୀନସ୍ଥ ପଦାତିକବାହିନୀକୁ ପ୍ରତିଷ୍ଠା କରିଥିଲେ । କିନ୍ତୁ ୟୁରୋପୀୟ ଅଫିସରମାନଙ୍କର ପରିଚାଳନାଧୀନ ସିପାହୀମାନେ ରାଜା ଓ ସାମନ୍ତବାଦୀ ସେନାପତିମାନଙ୍କ ଅଧୀନରେ ଥିଲେ ଏବଂ ଶେଷୋକ୍ତ ଲୋକମାନଙ୍କର କୌଣସି ୟୁରୋପୀୟ ଶିକ୍ଷା ନଥିଲା । ସେମାନେ ବ୍ରିଟିଶ୍ ସିପାହୀମାନଙ୍କୁ ପ୍ରତିରୋଧ କରିବାକୁ ସଂପୂର୍ଣ୍ଣ ଅକ୍ଷମ

ଥିଲେ । ତା'ଛଡ଼ା ବ୍ରିଟିଶ୍‌ମାନେ ସେତେବେଳେ ବିଭିନ୍ନ ମରହଟ୍ଟା ରାଜାମାନଙ୍କ ମଧ୍ୟରେ ଶତ୍ରୁତା ପ୍ରତି ଇନ୍ଧନ ଯୋଗାଉଥିଲେ ।

୧୮୦୨ ଖ୍ରୀଷ୍ଟାବ୍ଦରେ ପୁନାର ଯୁଦ୍ଧରେ ହୋଲକାରଙ୍କ ସୈନ୍ୟମାନେ ସିନ୍ଧିଆ ଏବଂ ଦ୍ୱିତୀୟ ପେଶବା ବାଜୀ ରାଓଙ୍କର (୧୭୯୬-୧୮୧୮) ମିଳିତ ସୈନ୍ୟଦଳକୁ ସଂପୂର୍ଣ୍ଣ ରୂପେ ପରାଜିତ କରିଥିଲେ । ପଳାୟିତ ଦ୍ୱିତୀୟ ବାଜୀ ରାଓ ବେସିନ୍‌ର ବ୍ରିଟିଶ୍‌ମାନଙ୍କର ଆଶ୍ରୟ ପ୍ରାର୍ଥୀ ହୋଇଥିଲେ ଏବଂ ୧୮୦୨ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରରେ କମ୍ ପକ୍ଷେ ୬ ହଜାର ବ୍ରିଟିଶ୍ ସୈନିକଙ୍କୁ ରଖିବା ଏବଂ ଏମାନଙ୍କ ଭରଣପୋଷଣ ପାଇଁ ବାର୍ଷିକ ୨୬ ଲକ୍ଷ ଟଙ୍କା ବ୍ୟୟ କରିବାର ସର୍ତ୍ତରେ ଅଧୀନତାମୂଳକ ମୈତ୍ରୀ ଚୁକ୍ତି ସ୍ୱାକ୍ଷର କରିଥିଲେ । ତା'ଛଡ଼ା ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କର କଠୋର ତତ୍ତ୍ୱାବଧାନ ମଧ୍ୟରେ ନିଜ ବୈଦେଶିକ ନୀତି ପରିଚାଳନା କରିବାକୁ ସେ ରାଜି ହୋଇଥିଲେ ।

ତେଣୁ ମହାରାଷ୍ଟ୍ର ସେତେବେଳକୁ ନିଜର ସ୍ୱାଧୀନତା ହରେଇ ବ୍ରିଟିଶ୍‌ମାନଙ୍କର ଆଶ୍ରିତ ରାଜ୍ୟରେ ପରିଣତ ହୋଇ ପଡ଼ିଥିଲା । ବ୍ରିଟିଶ୍ ସୈନ୍ୟମାନେ ଏହା ପରେ ତୁରନ୍ତ ପୁନା ଅଧିକାର କରି ନେଇ ସେଠାରେ ପେଶବାଙ୍କୁ କ୍ଷମତାସୀନ କରିଥିଲେ । ମରହଟ୍ଟା ରାଷ୍ଟ୍ରଗୁଡ଼ିକ ଉପରେ ପୁନାର ସାର୍ବଭୌମ କର୍ତ୍ତୃତ୍ୱ ପ୍ରସଙ୍ଗରେ ଗଭର୍ଣ୍ଣର ଜେନେରାଲ ଲର୍ଡ ଓୟେଲେସ୍‌ଲି ଘୋଷଣା କଲେ ଯେ, ପେଶବାଙ୍କ ସହିତ ସଂପାଦିତ ଚୁକ୍ତିଟି ସମସ୍ତ ମରହଟ୍ଟା ରାଜାମାନଙ୍କ ପ୍ରତି ପ୍ରଯୋଜ୍ୟ । ସିନ୍ଧିଆ ଓ ହୋଲକାର ଯଦିଓ ବେସିନ୍ ଚୁକ୍ତି ଅସ୍ୱୀକାର କରି ଜାତୀୟ ସଂକଟର ସମ୍ମୁଖୀନ ହୋଇ ପାରସ୍ପରିକ ସଂଘାତ ବନ୍ଦ କରିଥିଲେ । ତେବେ ସେତେବେଳକୁ ସେମାନେ ଜଣେ ଅନ୍ୟ ଜଣକ ପ୍ରତି ଅବିଶ୍ୱାସୀ ହୋଇ ପଡ଼ିଥିଲେ ଓ ସେମାନଙ୍କ କାର୍ଯ୍ୟକଳାପକୁ ସମନ୍ୱିତ କରିବାକୁ ବ୍ୟର୍ଥ ହୋଇଥିଲେ । ଦ୍ୱିତୀୟ ଇଂରେଜ-ମରହଟ୍ଟା ଯୁଦ୍ଧରେ ସେମାନଙ୍କ ପକ୍ଷରେ ଏହା ହିଁ ଥିଲା ଏକ ବିରାଟ ପ୍ରତିବନ୍ଧକ ।

ଓୟେଲେସ୍‌ଲି ପ୍ରଥମେ ହୋଲକାରଙ୍କୁ ଗୁରୁତ୍ୱ ନଦେବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ ଏବଂ ସିନ୍ଧିଆଙ୍କ ବିରୁଦ୍ଧରେ ସମସ୍ତ ଶକ୍ତି କେନ୍ଦ୍ରୀଭୂତ କରିଥିଲେ । ଦୁର୍ଭେଦ୍ୟ ବୋଲି କଥିତ ଆହମ୍ମଦନଗର ଦୁର୍ଗଟିର ପତନ ଘଟିଥିଲା ଏବଂ ଖାନ୍ଦେଶରେ ସିନ୍ଧିଆ ଏବଂ ନିଜାମ ରାଜ୍ୟର ସଂଯୋଗ ସ୍ଥଳଟି ତାଙ୍କ ହସ୍ତଗତ ହେଲା । ହାୟଦରାବାଦ ସୀମାନ୍ତର ଅଦୂରରେ ଥିବା ଆସାଇ ନାମକ ସ୍ଥାନରେ ଜେନେରାଲ ଓୟେଲେସ୍‌ଲି ୫ ହଜାର ସୈନ୍ୟ ନେଇ ସିନ୍ଧିଆ ଓ ନାଗପୁରର ରାଜା ରଘୁଜୀ ଭୋଁସଲଙ୍କର – ଏହି ଦୁଇ ମରହଟ୍ଟା ରାଜ୍ୟର ମିଳିତ ୩୫ ହଜାର ସୈନ୍ୟଙ୍କୁ ଆକ୍ରମଣ କଲେ । ଏହି ଯୁଦ୍ଧରେ ସିନ୍ଧିଆଙ୍କୁ ଆକ୍ରମଣ ମୁହଁକୁ ଠେଲି ଦେଇ ଭୋଁସଲ ପଶ୍ଚାଦ୍‌ପସରଣ କଲେ ଏବଂ ଫଳରେ ବ୍ରିଟିଶ୍‌ମାନଙ୍କର ଜୟ ଆସନ୍ନ ହୋଇଉଠିଲା । ଓୟେଲେସ୍‌ଲି ଭୋଁସଲାଙ୍କର ପଶ୍ଚାଦ୍‌ଧାବନ କରିଲେ, ସିନ୍ଧିଆ ତାଙ୍କ ଅଯୋଗ୍ୟ ମିତ୍ରଙ୍କୁ ସାହାଯ୍ୟ କଲେ ନାହିଁ । ଆରଗାଓଁର ଚୂଡ଼ାନ୍ତ ଯୁଦ୍ଧରେ ଭୋଁସଲଙ୍କ ସୈନ୍ୟମାନେ ନିଶ୍ଚିହ୍ନ ହୋଇଗଲେ ଏବଂ ନାଗପୁରର ଗାଓୟିଲଗଡ଼ ମୂଳ ଦୁର୍ଗର ପତନ ଘଟିଥିଲା । ୧୮୦୩ ମସିହା ଡିସେମ୍ବର ମାସରେ ଭୋଁସଲ ଦେଓଗାଓଁ ଚୁକ୍ତିରେ ସ୍ୱାକ୍ଷର କରିଥିଲେ ଏବଂ ତଦନୁଯାୟୀ ନାଗପୁର ଅଞ୍ଚଳ ସ୍ୱାଧୀନତା ହରାଇଥିଲା ଏବଂ ମାନ୍ଦ୍ରାଜ ଓ ବଙ୍ଗଳା ପ୍ରେସିଡେନ୍‌ସିର ସୀମାନ୍ତବର୍ତ୍ତୀ କଟକ ପ୍ରଦେଶଟି ବ୍ରିଟିଶ୍‌ମାନଙ୍କ ହସ୍ତଗତ ହୋଇଥିଲା ।

ଇତିମଧ୍ୟରେ ଉତ୍ତର ଭାରତର ବ୍ରିଟିଶ୍ ସେନାପତି ଲେକ ଆଲିଗଡ଼ ଦୁର୍ଗ ଦଖଲ କରି ନେଇ ଦିଲ୍ଲୀ ନିକଟସ୍ଥ ଏକ ଦୁର୍ଗ ଜୟ ପରେ ଦିଲ୍ଲୀ ଦଖଲ କଲେ । ଏହା ପରେ ଆଗ୍ରା ମଧ୍ୟ ତାଙ୍କ

ଅଧିକାର ଲୁପ୍ତ ହେଲା । ଏସବୁ ଯୁଦ୍ଧରେ ସିନ୍ଧିଆଙ୍କ ସୈନ୍ୟବାହିନୀ ଫରାସୀ ଅଫିସର ପେରନ୍ ଓ ବୁର୍କୁଇନ୍‌ଙ୍କ ପରିଚାଳନାଧୀନରେ ଥିଲା । ଯୁଦ୍ଧ ଶେଷରେ ସେମାନେ (ପେରନ୍ ଆଲିଗଡ଼ରେ ଏବଂ ବୁର୍କୁଇନ୍ ଦିଲ୍ଲୀ ବାହାରେ) ଆତ୍ମସମର୍ପଣ କରିଥିଲେ । ଏହି ସମୟରେ ମରହଟ୍ଟା ସୈନ୍ୟବାହିନୀର ନେତୃତ୍ୱ ନେଲେ ମରହଟ୍ଟା ସେନାପତି ଅମ୍ବାଜୀ ଇଂଲିଆ । ଲାସଓୟାରୀ (ସଠିକ ଭାବେ ନାସଓୟାରୀ) ଯୁଦ୍ଧରେ ମରହଟ୍ଟା ସୈନ୍ୟମାନେ ମରଣପଣ ଯୁଦ୍ଧ କଲା ପରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଯୁଦ୍ଧ କ୍ଷେତ୍ରରେ ପ୍ରାଣ ଦେଲେ । ଉତ୍ତରରେ ଯୁଦ୍ଧରତ ସିନ୍ଧିଆଙ୍କ ସୈନ୍ୟମାନେ ମଧ୍ୟ ବିଧ୍ୱସ୍ତ ହୋଇ ଯାଇଥିଲେ । ଚମ୍ବଲ ନଦୀର ଉତ୍ତରସ୍ଥ ସମଗ୍ର ଭୂଖଣ୍ଡଟି ବ୍ରିଟିଶ୍‌ମାନଙ୍କ ଅଧିକାରକୁ ଆସିଗଲା । ଏହି ସମୟରେ ଅମ୍ବାଜୀ ଇଂଲିଆ ସିନ୍ଧିଆଙ୍କ ସହିତ ବିଶ୍ୱାସଘାତକତା କରି ନାଗପୁର ରାଜ୍ୟର ରାଜଧାନୀ ଓ ଦୁର୍ଗ ଗୋଆଲିଅର ବ୍ରିଟିଶ୍‌ମାନଙ୍କୁ ଅର୍ପଣ କରି ଦେଲେ । ଅତଏବ, ୧୮୦୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ୩୦ ତାରିଖରେ ସିନ୍ଧିଆ ସୁର୍ଜି-ଆନଜନ୍‌ଗାଓଁ ସନ୍ଧି ଚୁକ୍ତିରେ ସ୍ୱାକ୍ଷର କରିବାକୁ ବାଧ୍ୟ ହେଲେ ଏବଂ ତଦନୁଯାୟୀ ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ସମସ୍ତ ଅଞ୍ଚଳ ସମେତ ତାଙ୍କୁ ଆହମଦ୍‌ନଗର ଓ ଭାରୁଚର ସ୍ୱତ୍ୱ ମଧ୍ୟ ତ୍ୟାଗ କରିବାକୁ ପଡ଼ିଲା । ଯୁଦ୍ଧ ସମୟରେ ବ୍ରିଟିଶ୍‌ମାନଙ୍କ ସମର୍ଥକ ରାଜପୁତ ଅଞ୍ଚଳଗୁଡ଼ିକ ଉପରେ ଥିବା ତାଙ୍କର ଦାବି ସେ ପ୍ରତ୍ୟାହାର କରି ନେଲେ । ତା'ଛଡ଼ା ବଶ୍ୟତାମୂଳକ ଚୁକ୍ତିର ସର୍ତ୍ତ ଅନୁଯାୟୀ ତାଙ୍କ ଦେଶର ସୀମାନ୍ତରେ ବ୍ରିଟିଶ୍ ଅଞ୍ଚଳରେ ଅବସ୍ଥିତ ଦଳେ ବ୍ରିଟିଶ୍ ସୈନ୍ୟଙ୍କ ଭରଣପୋଷଣର ବ୍ୟୟ ବହନ କରିବାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହେଲା । ବ୍ରିଟିଶ୍‌ମାନେ ମୋଗଲ ସମ୍ରାଟ ଦ୍ୱିତୀୟ ଶାହ୍ ଆଲମ୍‌ଙ୍କୁ ଦିଲ୍ଲୀ ସିଂହାସନରେ ବସାଇଲେ । ରୋହିଲମାନଙ୍କ ଦ୍ୱାରା ଅନ୍ଧ ହୋଇଥିବା ଏହି ବୃଦ୍ଧ ସମ୍ରାଟଙ୍କ ହାତରେ ପ୍ରକୃତରେ କୌଣସି କ୍ଷମତା ନଥିଲା । ସାମରିକ ଦିଗରୁ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ରାଜଧାନୀ ଗୋଆଲିଅର ଓ ସେଠାକାର ଦୁର୍ଗକୁ କ୍ଷୁଦ୍ର ରାଜପୁତ ରାଜ୍ୟ ଗୋହାଦର ରାଜାଙ୍କୁ ଦିଆଗଲା ।

ସିନ୍ଧିଆଙ୍କ ସୈନ୍ୟଦଳକୁ ଉତ୍‌ଖାତ କଲା ପରେ ୧୮୦୪ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ବ୍ରିଟିଶ୍‌ମାନେ ହୋଲକାରଙ୍କୁ ହିନ୍ଦୁସ୍ତାନରୁ ତାଙ୍କ ସୈନ୍ୟବାହିନୀ ଅପସାରଣ କରି ନେବା ସଙ୍ଗେ ସଙ୍ଗେ ଏହି ଅଞ୍ଚଳରୁ ଚୌଠ ଆଦାୟର ଅଧିକାର ପ୍ରତ୍ୟାହାର କରିବାକୁ କହିଥିଲେ । ହୋଲକାର ଏହି ଦାବି ଅସ୍ୱୀକାର କରି ସିନ୍ଧିଆଙ୍କ ସହିତ ଏକ ମୈତ୍ରୀ ଚୁକ୍ତି ସଂପାଦନ କରିବାକୁ ପ୍ରୟାସ କରିଥିଲେ । କିନ୍ତୁ ସିନ୍ଧିଆ ଇତିମଧ୍ୟରେ ବ୍ରିଟିଶ୍ ଅଧୀନସ୍ଥ ହୋଇ ପଡ଼ିଥିଲେ ।

୧୮୦୪ ଖ୍ରୀଷ୍ଟାବ୍ଦରେ ହୋଲକାରଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ ହୋଇଗଲା । ପ୍ରାରମ୍ଭରେ ହୋଲକାର ସଂକୀର୍ଣ୍ଣ ମୁକୁନ୍ଦ-ଦାରା ଗିରିପଥରୁ ବ୍ରିଟିଶ୍ ସୈନ୍ୟମାନଙ୍କୁ ହଟେଇ ଦେଇଥିଲେ, ଏପରିକି ଭରତପୁର ରାଜାଙ୍କ ସହିତ ଏକାଠି ଦିଲ୍ଲୀ ଅବରୋଧ କରିଥିଲେ । କିନ୍ତୁ ସୁରକ୍ଷିତ ଏହି ସହର ଦଖଲ କରିବାକୁ ବ୍ୟର୍ଥ ହୋଇ ସେ ପ୍ରତ୍ୟାବର୍ତ୍ତନ କରିବାକୁ ବାଧ୍ୟ ହେଲେ । ଏହି ସମୟରେ ବ୍ରିଟିଶ୍ ସୈନ୍ୟ ଆକ୍ରମଣାତ୍ମକ ଯୁଦ୍ଧ ଆରମ୍ଭ କରି ଦେଲେ ଏବଂ କ୍ରମାନ୍ୱୟରେ ହୋଲକାରଙ୍କ ଦୁର୍ଗଗୁଡ଼ିକର ପତନ ଘଟିଥିଲା । ଇତିମଧ୍ୟରେ ଭରତପୁରର ରାଜା ବ୍ରିଟିଶ୍‌ମାନଙ୍କ ସହିତ ସନ୍ଧି କଲେ ଏବଂ ପଳାୟିତ ହୋଲକାର ପଞ୍ଜାବରେ ଆଶ୍ରୟ ନେଲେ ।

ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ଯଥେଷ୍ଟ ଅର୍ଥ ବ୍ୟୟ ଫଳରେ କଂପାନିର ଶେୟାର ମାଲିକମାନଙ୍କ ମଧ୍ୟରେ ସେମାନଙ୍କ ଲଭାଂଶ ଘେନି ଉଦ୍‌ବେଗ ଦେଖାଦେଲା । ନୂତନ ଅସ୍ଥାୟୀ

ଗଭର୍ଣ୍ଣର ଜେନେରାଲ ଜର୍ଜ ବାର୍ଲୋ (୧୮୦୫-୧୮୦୭) ସିନ୍ଧିଆଙ୍କୁ ଗୋଆଲିଅର ଏବଂ ହୋଲକାରଙ୍କୁ ଚମ୍ବଲ ନଦୀର ଦକ୍ଷିଣ ପର୍ଯ୍ୟନ୍ତ ଅଞ୍ଚଳଗୁଡ଼ିକୁ ଫେରସ୍ତ ଦେଇଦେଲେ । ସେ ଆଶା କରିଥିଲେ ଯେ, ଏହି ଦୁଇ ରାଜ୍ୟ ସେମାନଙ୍କ କରଦରାଜ୍ୟଗୁଡ଼ିକର ରାଜପୁତ ରାଜାମାନଙ୍କ (ଯେଉଁମାନେ ପୂର୍ବବର୍ତ୍ତୀ ଯୁଦ୍ଧଗୁଡ଼ିକରେ ବ୍ରିଟିଶ୍‌ମାନଙ୍କ ପକ୍ଷରେ ଥିଲେ) ସହିତ ଯୁଦ୍ଧ କରି ନିଜକୁ ନିଜେ ଖର୍ବ କରିଦେବେ । ମରହଟ୍ଟା ରାଜ୍ୟରେ, ଅବଶ୍ୟ, ପୁଣି ଆତ୍ମଘାତୀ ଯୁଦ୍ଧ ଦେଖାଦେଲା । ସିନ୍ଧିଆ ଏବଂ ହୋଲକାରଙ୍କ ପକ୍ଷରେ ବିରାଟ ସେନାବାହିନୀ ରଖିବା ସମ୍ଭବ ନଥିଲା । କାରଣ ସେମାନଙ୍କ ରାଜ୍ୟର ଆକାର ଥିଲା ଛୋଟ, ଫଳରେ ସେସବୁ ଭଡ଼ାଟିଆ ସୈନ୍ୟ ପୂରାପୂରି ଲୁଣ୍ଠନଜୀବୀ ହୋଇ ପଡ଼ିଥିଲେ । ସେମାନେ ଗ୍ରାମ, ଏପରିକି ସହର ଆକ୍ରମଣ କରୁଥିଲେ, ଚଳପଥରେ ସାଧାରଣ ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲେ, ସେମାନଙ୍କୁ ହତ୍ୟା କରୁଥିଲେ ଏବଂ ଯାହା କିଛି ବହି ନେଇ ପାରୁ ନଥିଲେ, ସେସବୁକୁ ଧ୍ୱଂସ କରି ଦେଉଥିଲେ ।

ପିଣ୍ଡାରୀ ନାମରେ ଖ୍ୟାତ ଏହିସବୁ ଲୁଣ୍ଠନକାରୀମାନଙ୍କ ସହିତ ଯୋଗଦେବା ଛଡ଼ା ନିଃସ୍ୱ କୃଷକମାନଙ୍କର ଅନ୍ୟ କୌଣସି ଉପାୟ ନଥିଲା । ପିଣ୍ଡାରୀମାନଙ୍କର ନେତା ଥିଲେ ବ୍ରିଟିଶ୍‌ମାନଙ୍କ ସହିତ ଯୁଦ୍ଧରେ (୧୮୦୪) ଖ୍ୟାତି ଅର୍ଜନକାରୀ, ହୋଲକାରଙ୍କ ଅନ୍ୟତମ ପ୍ରାକ୍ତନ ସେନାପତି ଅମିର୍ ଖାଁ ରୋହିଲା, ହୋଲକାରଙ୍କ ସାଥୀ କରିମ୍ ଖାଁ, ସିନ୍ଧିଆଙ୍କ ପୂର୍ବତନ ସେନାପତି ଚିତୁ ଏବଂ ଭୂପାଳ ଶାସକଙ୍କ କର୍ମଚାରୀ ଓୟାସିଲ୍ ମହମ୍ମଦ । ପିଣ୍ଡାରୀମାନଙ୍କ ସୈନ୍ୟ ସଂଖ୍ୟା ଦ୍ରୁତ ବୃଦ୍ଧି ପାଇଥିଲା ଏବଂ ଫଳରେ ଲୁଣ୍ଠିତ ରାଜପୁତ ଓ ମରହଟ୍ଟା ଅଞ୍ଚଳରେ ଖାଦ୍ୟ ତଥା ପଶୁଖାଦ୍ୟର ଅଭାବ ଦେଖାଦେଲା ।

ବ୍ରିଟିଶ୍ ଉପନିବେଶିକମାନେ ପିଣ୍ଡାରୀମାନଙ୍କ ବିରୁଦ୍ଧରେ ହସ୍ତକ୍ଷେପ କରୁ ନଥିଲେ । କିନ୍ତୁ ୧୮୧୬ ଖ୍ରୀଷ୍ଟାବ୍ଦରେ ଏମାନଙ୍କ ଦ୍ୱାରା କଂପାନିର ଅଧୀନସ୍ଥ ଉତ୍ତରାଞ୍ଚଳର ସରକାରମାନେ ଆକ୍ରାନ୍ତ ହେବାରୁ ସେଠାକାର ରାଜସ୍ୱ ହଠାତ୍ ଖୁବ୍ ହ୍ରାସ ପାଇଲା । ବ୍ରିଟିଶ୍‌ମାନେ ପିଣ୍ଡାରୀମାନଙ୍କୁ ଧ୍ୱଂସ କରିବାକୁ ସିଦ୍ଧାନ୍ତ ନେଲେ । ପ୍ରଥମତଃ, ୧୮୧୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍‌ମାନେ ପୁନର୍ବାର ପେଶବାଙ୍କୁ ପୁନାରେ ଆଉରି ଏକ ଚୁକ୍ତି ସ୍ୱାକ୍ଷର କରିବାକୁ ବାଧ୍ୟ କଲେ । ଏହା ଫଳରେ ସେ ମରହଟ୍ଟା ରାଜାମାନଙ୍କ ଉପରେ ତାଙ୍କର ଅଧିକାରକୁ ପ୍ରତ୍ୟାହାର କରିନେଇ କୋଙ୍କଣ ପ୍ରଦେଶଟିକୁ ବ୍ରିଟିଶ୍‌ମାନଙ୍କୁ ହସ୍ତାନ୍ତର କଲେ । ବ୍ରିଟିଶ୍ ରେସିଡେଣ୍ଟଙ୍କ ମାଧ୍ୟମରେ ପରରାଷ୍ଟ୍ର ନୀତି ପରିଚାଳନା କରିବାକୁ ମଧ୍ୟ ମାନି ନେଲେ । ନାଗପୁର ମଧ୍ୟ ବ୍ରିଟିଶ୍‌ମାନଙ୍କ ସହିତ ଅଧୀନତାମୂଳକ ମୈତ୍ରୀ ଚୁକ୍ତିରେ ସ୍ୱାକ୍ଷର କଲା । ବ୍ରିଟିଶ୍‌ମାନଙ୍କ ସହିତ ତା'ପରେ ଚୁକ୍ତି ସ୍ୱାକ୍ଷର ବ୍ୟତୀତ ସିନ୍ଧିଆଙ୍କର ଅନ୍ୟ ଗତି ନଥିଲା । ତେଣୁ ପିଣ୍ଡାରୀମାନଙ୍କ ବିରୁଦ୍ଧରେ ବ୍ରିଟିଶ୍‌ମାନଙ୍କ ତାଙ୍କ ସେନାବାହିନୀ ହସ୍ତାନ୍ତର କରିବାକୁ ବାଧ୍ୟ ହେଲେ । ତା'ଛଡ଼ା ରାଜପୁତ ରାଜ୍ୟଗୁଡ଼ିକରୁ ତିନି ବର୍ଷ ପର୍ଯ୍ୟନ୍ତ କର ଗ୍ରହଣ ନକରିବା ସର୍ତ୍ତ ସମେତ ତାଙ୍କୁ ବିଶ୍ୱସ୍ତତାର ନିଦର୍ଶନ ସ୍ୱରୂପ ବ୍ରିଟିଶ୍‌ମାନଙ୍କୁ ଆସିର୍‌ଗଡ଼ ଏବଂ ହିନ୍ଦିୟା ଦୁର୍ଗ ମଧ୍ୟ ହସ୍ତାନ୍ତର କରିବାକୁ ପଡ଼ିଥିଲା । ଅର୍ଥାତ୍, ସମସ୍ତ ମରହଟ୍ଟା ରାଜ୍ୟ ସେତେବେଳେ ବ୍ରିଟିଶ୍‌ମାନଙ୍କ ଅଧୀନକୁ ଆସି ଯାଇଥିଲେ । ଏହି ଭାବେ ବ୍ରିଟିଶ୍‌ମାନେ ପିଣ୍ଡାରୀମାନଙ୍କ ବିରୁଦ୍ଧରେ ସେମାନଙ୍କ ଆକ୍ରମଣର ପ୍ରସ୍ତୁତି ସଂପୂର୍ଣ୍ଣ କରିଥିଲେ ।

କିନ୍ତୁ ବ୍ରିଟିଶ୍ ସୈନ୍ୟମାନଙ୍କର ଏକ ବଡ଼ ଅଂଶ ମହାରାଷ୍ଟ୍ର ତ୍ୟାଗ କରିବା ସଙ୍ଗେ ସଙ୍ଗେ ପୁନାରେ ଆରମ୍ଭ ହୋଇଗଲା ମରହଟ୍ଟାମାନଙ୍କର ବିଦ୍ରୋହ । ଏମାନଙ୍କ ସହିତ ନାଗପୁର ମଧ୍ୟ ଯୋଗ

ହେଲ । ଏଭଳି ଅବସ୍ଥାରେ ବ୍ରିଟିଶ୍‌ମାନେ ଭାରତରେ ସେମାନଙ୍କ ଅବସ୍ଥାନ କାଳ ମଧ୍ୟରେ ବୃହତ୍ତମ ସୈନ୍ୟବାହିନୀ ମରହଟ୍ଟାମାନଙ୍କ ବିରୁଦ୍ଧରେ ପ୍ରେରଣ କରିଥିଲେ । ଏଥିରେ ଥିଲେ ୧ ଲକ୍ଷ ୨୦ ହଜାର ସୈନ୍ୟ (୧୩ ହଜାର ଇଂରେଜଙ୍କ ସମେତ) ଓ ୩୦୦ କମାଣ । ଖାଦ୍‌ଖା, ସିତାବାଲ୍‌ଦା, ନାଗପୁର, ସାଲିୟା ଘାଟ, ଆଶତା ଓ ସିଓନିର ଯୁଦ୍ଧରେ ମରହଟ୍ଟାମାନଙ୍କର ପରାଜୟ ଘଟିଲା । ୧୮୧୮ ଖ୍ରୀଷ୍ଟାବ୍ଦରେ ପେଶବା ଆତ୍ମସମର୍ପଣ କଲେ । ମରହଟ୍ଟାମାନଙ୍କ ବିରୁଦ୍ଧରେ ଜୟ ଲାଭର ପୁରସ୍କାର ସ୍ୱରୂପ ନବପ୍ରବର୍ତ୍ତିତ ଉପାଧି "ମାର୍କୁଇସ୍ ଅଫ୍ ହେଷ୍ଟିଂସ୍‌ରେ" ଭୂଷିତ ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ ମୟରା ସେତେବେଳେ ମରହଟ୍ଟାମାନଙ୍କ ଐକ୍ୟର ପ୍ରତୀକ ସେଇ ପେଶବା ଉପାଧିଟିକୁ ଚିରଦିନ ପାଇଁ ଲୋପ କରିଦେବା ଉଦ୍ଦେଶ୍ୟରେ ଏହାକୁ ଉଠାଇ ଦେଲେ । ସାତାରା ଏବଂ କୋଲ୍ହାପୁର ଅଞ୍ଚଳଭୁକ୍ତ ଦୁଇଟି କ୍ଷୁଦ୍ର ରାଜ୍ୟ ଛଡ଼ା ସମଗ୍ର ମହାରାଷ୍ଟ୍ର ସେତେବେଳେ ବମ୍ବେ ପ୍ରେସିଡେନ୍‌ସିର ଅନ୍ତର୍ଭୁକ୍ତ ହେଲା । ପୂର୍ବୋକ୍ତ ରାଜ୍ୟ ଦୁଇଟିକୁ ଶିବାଜୀଙ୍କ ବଂଶଧରମାନେ ପାଇଥିଲେ, ସେମାନଙ୍କର କୌଣସି ରାଜନୈତିକ ପ୍ରଭାବ ନଥିଲା । ପିଣ୍ଡାରୀମାନଙ୍କର ଅନ୍ୟତମ ନେତା ଅମିର୍ ଖାଁ ତାଙ୍କ ସୈନ୍ୟଦଳଟିକୁ ଭାଙ୍ଗି ଦେବାକୁ ରାଜି ହେବାରୁ ବ୍ରିଟିଶ୍‌ମାନେ ତାଙ୍କୁ ଟଙ୍କ ନାମକ କ୍ଷୁଦ୍ର ରାଜ୍ୟଟିକୁ "ଉପହାର ଦେଇଥିଲେ" । କିନ୍ତୁ ଅନ୍ୟ ପିଣ୍ଡାରୀ ନେତାମାନେ ସେମାନଙ୍କ ପ୍ରତିରୋଧକୁ ଅବ୍ୟାହତ ରଖିଥିଲେ ।

ବ୍ରିଟିଶ୍ ସୈନ୍ୟମାନଙ୍କ ମଧ୍ୟରେ ହଇଜା ମହାମାରୀ ଦେଖା ଦେଇ ୯ ହଜାର ସୈନ୍ୟ ପ୍ରାଣ ହରାଇବା ସତ୍ତ୍ୱେ ସେମାନେ ପିଣ୍ଡାରୀମାନଙ୍କୁ ଅନୁସରଣ କରି ଚାଲିଥିଲେ । ହୋଲକାରଙ୍କ ସେନାପତିମାନେ (ସେମାନଙ୍କ ନେତା ସେତେବେଳେ ଅପ୍ରକୃତିସ୍ଥ) ପିଣ୍ଡାରୀମାନଙ୍କୁ ସମର୍ଥନ ଦେବାକୁ ଚେଷ୍ଟା କରିଥିଲେ, କିନ୍ତୁ ମାହିଦପୁର ଯୁଦ୍ଧରେ ହୋଲକାରଙ୍କ ସୈନ୍ୟମାନଙ୍କର ପରାଜୟ ଘଟିଥିଲା । ତା'ପରେ ପିଣ୍ଡାରୀମାନେ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ପଡ଼ିଥିଲେ ଏବଂ କ୍ରମଶଃ ନିଶ୍ଚିହ୍ନ ହୋଇଗଲେ । କରିମ୍ ଖାଁ ଆତ୍ମସମର୍ପଣ କଲେ ଏବଂ ଗୋରଖପୁରର ଅଦୂରରେ ଏକ ଜାଗିର ପାଇଲେ । ଓୟାସିଲ୍ ମହମ୍ମଦ ବ୍ରିଟିଶ୍ ଜେଲଖାନାରେ ଆତ୍ମହତ୍ୟା କଲେ ଏବଂ ଚିତୁ ଜଙ୍ଗଲରେ ପ୍ରାଣ ହରାଇଲେ ।

ମରହଟ୍ଟାମାନଙ୍କ ପତନ ଫଳରେ ଭାରତରେ ବ୍ରିଟିଶ୍ ବିଜୟର ପ୍ରଧାନ ଅଧ୍ୟାୟଟିର ପରିସମାପ୍ତି ଘଟିଥିଲା । ଭାରତରେ ବ୍ରିଟିଶ୍ ଶେଷ ଅଭିଯାନ – ପଞ୍ଜାବ ଅଧିକାର ଘଟଣାଟି ଘଟିଥିଲା ଆଉରି ୩୦ ବର୍ଷ ପରେ ।

## ଭାରତବର୍ଷରେ ଔପନିବେଶିକ ସରକାରର ନୀତି (ଅଷ୍ଟାଦଶ ଶତାବ୍ଦୀର ଶେଷ ଏବଂ ଊନବିଂଶ ଶତାବ୍ଦୀର ପ୍ରାରମ୍ଭ)

ବ୍ରିଟିଶ୍‌ମାନଙ୍କର ଭାରତ ବିଜୟ ଫଳରେ କେବଳ ରାଜନୈତିକ ପରିବର୍ତ୍ତନ ନୁହେଁ, ଦେଶର ଅର୍ଥନୈତିକ ଅବସ୍ଥା ମଧ୍ୟ ବ୍ୟାପକ ଭାବେ ବଦଳି ଯାଇଥିଲା । ପୂର୍ବତନ ଅଭିଯାନକାରୀମାନଙ୍କ ଭଳି ଏ ଦେଶରେ ସ୍ଥାୟୀ ବସବାସ ଓ ସ୍ଥାନୀୟ ଜନସାଧାରଣଙ୍କ ମଧ୍ୟରେ ମିଶିଯିବା ପରିବର୍ତ୍ତେ ପୁଞ୍ଜିବାଦୀ

ବିକାଶର ପଥଯାତ୍ରୀ ବ୍ରିଟେନ୍ ଭାରତବର୍ଷକୁ ସଂପଦ ଆହରଣ ଓ ବ୍ରିଟେନ୍‌କୁ ସେସବୁକୁ ପ୍ରେରଣ କରିବାର ଉତ୍ସ ରୂପେ ଦେଖିଥିଲା । ବ୍ରିଟିଶ୍‌ମାନେ ଭାରତକୁ ଶୋଷଣ କରିବାର ପଦ୍ଧତିରେ ବହୁବିଧ ପରିବର୍ତ୍ତନ ଆଣିଥିଲେ ମଧ୍ୟ ଭାରତବର୍ଷ ସର୍ବଦା ସେମାନଙ୍କ ସାମ୍ରାଜ୍ୟର ମଧ୍ୟ ମଣି ଥିଲା ।

ଭାରତ ବିଜୟ କାଳରେ ଭାରତବର୍ଷର ସଂପଦକୁ ବିଦେଶକୁ ରପ୍ତାନି କରିବା କାର୍ଯ୍ୟଟି ଆରମ୍ଭ ହୋଇ ଯାଇଥିଲା । ଏହି ଅବାଧ "ଅର୍ଥନୈତିକ ଶୋଷଣ" (economic drain) ଏ ଦେଶକୁ ରକ୍ତହୀନ ଏବଂ ନିଃସ୍ୱ କରି ପକାଇଥିଲା । ପଞ୍ଚଦଶ ଶତାବ୍ଦୀର ରୁଷ୍ ପର୍ଯ୍ୟଟକ ଆଫାନାସି ନିକିଟିନ୍ ଭାରତୀୟ ଜନସାଧାରଣଙ୍କ ଦାରିଦ୍ର୍ୟ କଥା ଉଲ୍ଲେଖ କରିଥିଲେ । କିନ୍ତୁ ଔପନିବେଶିକ ପର୍ଯ୍ୟାୟରେ ଏହି ଦାରିଦ୍ର୍ୟ ଉତ୍‌କଟତର ହୋଇ ଉଠିଥିଲା । ବ୍ରିଟିଶ୍‌ମାନେ ଆସିବା ପରେ ୧୭୭୦ ଖ୍ରୀଷ୍ଟାବ୍ଦରେ ବଙ୍ଗଳାରେ ଦେଖା ଦେଇଥିଲା ଦୁର୍ଭିକ୍ଷ ଏବଂ ଏଥିରେ ପ୍ରାୟ ୧ କୋଟି ଲୋକ ପ୍ରାଣ ହରାଇଥିଲେ । ତା'ପରେ ଦୁର୍ଭିକ୍ଷ ଏବଂ ଆନୁଷଙ୍ଗିକ ହଇଜା, ପ୍ଲେଗ୍ ଓ ଅନ୍ୟାନ୍ୟ ମହାମାରୀ ଭାରତୀୟମାନଙ୍କ ଜୀବନରେ ନିତ୍ୟନୈମିତ୍ତିକ ଘଟଣା ହୋଇ ପଡ଼ିଥିଲା ।

ଔପନିବେଶିକ ଭାରତର ଜନସାଧାରଣଙ୍କ ପକ୍ଷରେ ସେମାନଙ୍କ ଅର୍ଥନୈତିକ ପରିସ୍ଥିତିର କୌଣସି ମୌଳିକ ପରିବର୍ତ୍ତନ ଘଟାଇବା ସମ୍ଭବ ନଥିଲା । ଏହା ପରେ ଦେଶର ରାଜନୈତିକ ଇତିହାସର ବାକି ଅଂଶଟିକ ଔପନିବେଶିକ ଜୁଆଳିରୁ ସ୍ୱାଧୀନତା ଲାଭ କରିବା ପାଇଁ ସଂଗ୍ରାମ ଦ୍ୱାରା ଚିହ୍ନିତ ହୋଇଥିଲା ।

ବିଜୟକାଳୀନ ବର୍ଷଗୁଡ଼ିକରେ ବ୍ରିଟିଶ୍‌ମାନେ ଭାରତୀୟ ରାଜନ୍ୟବର୍ଗ ଓ ଜମିଦାରମାନଙ୍କର ସଂପଦ ଲୁଣ୍ଠନରୁ ସଂଗୃହୀତ ଅଗଣିତ ପରିମାଣର "ଯୁଦ୍ଧ ଭେଟି" ସ୍ୱଦେଶକୁ ରପ୍ତାନି କରିଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ଶ୍ରୀରଙ୍ଗପଟ୍ଟମ୍ ପତନର ଘଟଣାଟି ଉଲ୍ଲେଖଯୋଗ୍ୟ । ସେତେବେଳେ ସାଧାରଣ ସିପାହୀ ପର୍ଯ୍ୟନ୍ତ ମୂଲ୍ୟବାନ ମଣିମାଣିକରେ ସେମାନଙ୍କ ଥଳି ଭର୍ତ୍ତି କରିଥିଲେ । ବ୍ରିଟିଶ୍ ଶକ୍ତି ଦୃଢ଼ ଭାବେ ପ୍ରତିଷ୍ଠିତ ହେଲା ପରେ ଶୋଷଣର ଦ୍ୱିତୀୟ ପର୍ଯ୍ୟାୟଟି ଆରମ୍ଭ ହୋଇଥିଲା । କୃଷକମାନଙ୍କ ନିକଟରୁ ସଂଗୃହୀତ ଭୂମିରାଜସ୍ୱ ଥିଲା ଔପନିବେଶିକ ଆୟର ପ୍ରଧାନ ଉତ୍ସ । କିନ୍ତୁ ବ୍ରିଟିଶ୍ କର୍ତ୍ତୃକ କୃଷି ଉନ୍ନୟନର ସହାୟକ ହେଲା ଭଳି ଏକ ଭୂମିରାଜସ୍ୱ ବ୍ୟବସ୍ଥା ପ୍ରବର୍ତ୍ତନ କରିବାର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ସେମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ବଙ୍ଗଳାର ଚିରସ୍ଥାୟୀ ବନ୍ଦୋବସ୍ତ, ଦକ୍ଷିଣ ଭାରତର ରଇତୱାରି, ଉତ୍ତର ଭାରତର ମୌଜାୱାରି ଏବଂ ପଞ୍ଜାବର ଗ୍ରାମ ପଞ୍ଚାୟତ ସମେତ ସମସ୍ତ ଭୂମିରାଜସ୍ୱ ବ୍ୟବସ୍ଥାର ଏକା ପରିଣତି ଘଟିଥିଲା । ବ୍ୟବସ୍ଥା ନିର୍ବିଶେଷରେ ଔପନିବେଶିକ ଶକ୍ତି ସମ୍ଭାବ୍ୟ ସର୍ବାଧିକ ପରିମାଣର ଭୂମିରାଜସ୍ୱ ସଂଗ୍ରହ କରୁଥିଲା ଏବଂ କୌଣସି ପ୍ରକାରେ ଜୀବିକା ନିର୍ବାହ ପରେ ଚାଷୀମାନଙ୍କ ହାତରେ କୃଷିକାର୍ଯ୍ୟରେ ବ୍ୟବହୃତ ସାଜସରଞ୍ଜାମ ଓ କାରୁକୌଶଳ ଉନ୍ନୟନ ପାଇଁ କିଛି ଅବଶିଷ୍ଟ ରହୁ ନଥିଲା । ସାମନ୍ତବାଦୀ ଭାରତରେ ସମସ୍ତ ରାଜସ୍ୱ ବ୍ୟବସ୍ଥାରେ ଉଠିବା ପଡ଼ିବା ଦେଖାଯାଉଥିଲା । ଜମିର କ୍ଷୟକ୍ଷତି ସଙ୍ଗେ ଜମିଦାରମାନଙ୍କର ସ୍ୱାର୍ଥ ଜଡ଼ିତ ଥିବା ହେତୁ ସେତେବେଳେ ପ୍ରାକୃତିକ ଦୁର୍ଯୋଗ ଘଟିଲେ, ଅଥବା ହଠାତ୍ ମୂଲ୍ୟ ପଡ଼ିଗଲେ, ଭୂମିରାଜସ୍ୱ କମି ଯାଉଥିଲା । କିନ୍ତୁ ଔପନିବେଶିକ ସରକାର ଅଧୀନରେ ସ୍ଥାୟୀ ଖଜଣା ପ୍ରବର୍ତ୍ତିତ ହେଲେ, ସେମାନେ ପ୍ରତିକୂଳ ପରିସ୍ଥିତି ଆଦି ନିର୍ବିଶେଷରେ ପୂରା ଖଜଣା ଆଦାୟ କରୁଥିଲେ । କୌଣସି ବିକଳ୍ପ ନଥିବାରୁ ସାମନ୍ତ ଭୂସ୍ୱାମୀମାନେ ସେମାନଙ୍କ କୃଷକମାନଙ୍କୁ ସାହାଯ୍ୟ ଦେଉଥିଲେ (ମୋଗଲ ଶାସନ କାଳର ତକାବି ଋଣ) । କୃଷି ଚକ୍ର ଅବ୍ୟାହତ ରଖିବା ପକ୍ଷରେ ଏହା ଥିଲା

ଅପରିହାର୍ଯ୍ୟ । କିନ୍ତୁ ଔପନିବେଶିକ କର୍ମଚାରୀମାନେ ଏସବୁକୁ ବିଚାରକୁ ନେଉ ନଥିଲେ । ଖଜଣା ଆଦାୟ କରିବା ଥିଲା ସେମାନଙ୍କର ଏକମାତ୍ର ଦାୟିତ୍ୱ । ଅର୍ଥାତ୍, ସାମନ୍ତବାଦୀ ଭାରତ ତୁଳନାରେ ଔପନିବେଶିକ ଭାରତରେ କୃଷକମାନଙ୍କ ଅବସ୍ଥାର ଆଉରି ଅବନତି ଘଟିଥିଲା ।

ସର୍ବୋଚ୍ଚ କର ସଂଗ୍ରହ କରିବା ପାଇଁ ଏକ ପ୍ରଣାଳୀ ଉଦ୍‌ଭାବନ କରିବା ଉଦ୍ଦେଶ୍ୟରେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ତିନୋଟି ପରୀକ୍ଷାମୂଳକ ଭୂମିରାଜସ୍ୱ ବ୍ୟବସ୍ଥା ପାଇଁ ଭାରତୀୟ କୃଷକମାନଙ୍କୁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିଥିଲା । କର୍ଣ୍ଣଓ୍ୱାଲିଶ୍ ଥିଲେ ଏସବୁ ଉଦ୍ୟମର ପ୍ରଥମ ପଥପ୍ରଦର୍ଶକ ।

## ଚିରସ୍ଥାୟୀ ବନ୍ଦୋବସ୍ତ

୧୭୯୩ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଗଭର୍ଣ୍ଣର ଜେନେରାଲ୍ କର୍ଣ୍ଣଓ୍ୱାଲିଶ୍ ତାଙ୍କ ଉର୍ଦ୍ଧ୍ୱତନ କର୍ମଚାରୀମାନଙ୍କ ଉପଦେଶକୁ ଅଗ୍ରାହ୍ୟ କରି ହଠାତ୍ ଚିରସ୍ଥାୟୀ ବନ୍ଦୋବସ୍ତ (Permanent Settlement) ପ୍ରବର୍ତ୍ତନର ଅନୁକୂଳରେ ଏକ ଆଇନ୍ ଜାରି କରିଥିଲେ । ସାଧାରଣ ଭାବେ ଆଇନ୍‌ଟି ଜମିଦାରମାନଙ୍କ ସଂପର୍କରେ ଫିଲିପ୍ ଫ୍ରାନ୍‌ସିସ୍‌ଙ୍କ ଧାରଣାଗୁଡ଼ିକୁ ବାସ୍ତବାୟିତ କରିଥିଲା । କର୍ଣ୍ଣଓ୍ୱାଲିଶ୍‌ଙ୍କ ମତରେ, ତାଙ୍କ ଆଇନ୍ ଭାରତୀୟ ଜମିଦାରମାନଙ୍କୁ ଚିରକାଳ ପାଇଁ ବଂଶାନୁକ୍ରମିକ ମାଲିକାନା ଅଧିକାର ପ୍ରଦାନ କରିଥିଲା । ଏଥି ସଙ୍ଗେ ସଙ୍ଗେ ଜମିଦାରମାନେ ୧୭୯୦ ଖ୍ରୀଷ୍ଟାବ୍ଦରେ ସଂଗୃହୀତ ଭୂମିରାଜସ୍ୱର ନବଦଶମାଂଶ ସରକାରୀ ପାଣ୍ଠିରେ ଜମା ଦେବାକୁ ବାଧ୍ୟ ଥିଲେ ଏବଂ ଅଙ୍କଟି "ଚିରକାଳ ପାଇଁ" ନିର୍ଦ୍ଧାରିତ ହୋଇ ଯାଇଥିଲା, ପ୍ରକୃତରେ ଯେତେ ଆଦାୟ ହୋଇ ଥାଉ ନା କାହିଁକି । ରାଜସ୍ୱ ଆଦାୟ ନହେଉଥିବା ଜମିଦାରି ନିଲାମ ହୋଇ ଯିବାର ବ୍ୟବସ୍ଥା ମଧ୍ୟ ଥିଲା । ଭବିଷ୍ୟତରେ ସରକାରୀ ପାଣ୍ଠିରେ ଯଥେଷ୍ଟ ଭୂମିରାଜସ୍ୱ ସଞ୍ଚୟକୁ ନିଶ୍ଚିତ କରିବା ଉଦ୍ଦେଶ୍ୟରେ କର୍ଣ୍ଣଓ୍ୱାଲିଶ୍ ଏହି ଉଦ୍ୟୋଗ ନେଇଥିଲେ । ସେ ସ୍ଥାନୀୟ ଜନସାଧାରଣଙ୍କ ମଧ୍ୟରେ ଔପନିବେଶିକ ଶାସନ ସପକ୍ଷରେ ଏକ ଶ୍ରେଣୀ ସମର୍ଥନ ସୃଷ୍ଟି ପାଇଁ ବିଶେଷ ଉଦ୍‌ବିଗ୍ନ ଥିଲେ । ସେଥି ପାଇଁ କୃଷିର ପ୍ରତ୍ୟାଶିତ ବିକାଶ ହେତୁ ଭୂମିରାଜସ୍ୱର ତଥାକଥିତ ବୃଦ୍ଧିରୁ ସଂଗୃହୀତ ଖଜଣା ଆଦାୟର ଦାୟିତ୍ୱ ଜମିଦାରମାନଙ୍କ ଅନୁକୂଳରେ ହସ୍ତାନ୍ତରିତ କରିଥିଲେ ।

କିନ୍ତୁ କାର୍ଯ୍ୟତଃ ଏହି ଆଇନ୍‌ଟି ଜମିକୁ ଜମିଦାରମାନଙ୍କର ବ୍ୟକ୍ତିଗତ ସଂପତ୍ତିରେ ପରିଣତ କରି ଦେଇ ଏହା ଉପରେ କୃଷକର ସାମନ୍ତତାନ୍ତ୍ରିକ ଅଧିକାରକୁ ଲୋପ କରିଦେଲା । କୌଣସି ଜମିଦାରି (ଇତିପୂର୍ବରୁ ଜମିଦାର ଯେଉଁ ଏଲାକାରୁ ଖଜଣା ଆଦାୟ କରୁଥିଲେ, ବର୍ତ୍ତମାନ ତାହା ତା'ର ଜମିଦାରିରେ ପରିଣତ ହେଲା) ବିକ୍ରି ହେଲେ, ପୂର୍ବତନ ଜମିଦାର ସହିତ କୃଷକମାନଙ୍କ ଜମିର ଆୟତନ, ଖଜଣା ଆଦି ସଂକ୍ରାନ୍ତ ଚୁକ୍ତିଗୁଡ଼ିକ ମଧ୍ୟ ବାତିଲ ହୋଇ ଯାଉଥିଲା ଏବଂ ନୂଆ ଜମିଦାର ତା'ର ଇଚ୍ଛା ମୁତାବକ ଖଜଣା ବଢ଼ାଇ ପାରୁଥିଲା । ବ୍ରିଟିଶ୍ କିରାଣୀମାନେ ଏକ ସ୍ୱାଭାବିକ ଭାରତୀୟ ଅଧିକାରକୁ "ଜମିଦାରମାନଙ୍କ ସହିତ କୃଷକମାନଙ୍କ ଚୁକ୍ତି" ବୋଲି କହୁଥିଲେ । ଏହା ଦ୍ୱାରା ଭୂମିରାଜସ୍ୱର ପରିମାଣକୁ ନିୟନ୍ତ୍ରଣ କରାଯାଉଥିଲା । ଏହି ଭୂମିରାଜସ୍ୱ ଥିଲା ଜମିଦାର ପାଇଁ ଉଦ୍ଧୃତ୍ତ । ମାର୍କସ୍‌ଙ୍କ ଭାଷାରେ, "କର୍ଣ୍ଣଓ୍ୱାଲିଶ୍ ଓ ପିଟ୍ ଗ୍ରାମ୍ୟ ବଙ୍ଗଳାର ଲୋକଙ୍କୁ କୃତ୍ରିମ ଭାବେ ଭୂମିହୀନ

କରି ଦେଇଛନ୍ତି ।"* କର୍ଣ୍ଣଓ୍ୱାଲିଶ୍‌ଙ୍କ ଆଇନ୍ କେବଳ କୃଷକମାନଙ୍କର ପ୍ରାକ୍ତନ ଭୂମିସ୍ୱତ୍ୱକୁ ଲୋପ କରି ନଥିଲା, କୃଷକମାନଙ୍କ ଜମି ଚାଷରେ ଉନ୍ନତତର ପଦ୍ଧତିର ପ୍ରବର୍ତ୍ତନକୁ ମଧ୍ୟ ପ୍ରତିହତ କରିଥିଲା। କାରଣ, ଜମିର ଉନ୍ନତି ଘଟିଲେ, ଭୂମିରାଜସ୍ୱ ବଢ଼ି ଯାଉଥିଲା । ଏହି ଭାବେ ବଙ୍ଗଳାରେ କୃଷିର ମାରାତ୍ମକ ଅବନତି ଘଟିଥିଲା ଏବଂ ଏଠାକାର କୃଷକମାନେ ସାରା ଭାରତବର୍ଷରେ ଦରିଦ୍ରତମ ଅବସ୍ଥାରେ ପଡ଼ିଥିଲେ ।

ଖଜଣା ଆଦାୟର ଅଧିକାରୀ ଦ୍ୱିତୀୟ ବ୍ୟକ୍ତିକୁ ବିକ୍ରି କରିଦେବା ସେତେବେଳେ ଜମିଦାରମାନଙ୍କ ମଧ୍ୟରେ ଏକ ନିୟମରେ ପରିଣତ ହୋଇଥିଲା । ଏହି ଦ୍ୱିତୀୟ ଇଜାରାଦାର ଆଉରି ଚଢ଼ା ଦାମ୍‌ରେ ଆଉ ଜଣକୁ ବିକ୍ରି କରୁଥିଲା । ବଙ୍ଗଳାର ପ୍ରବଳ ପ୍ରତାପଶାଳୀ ଜମିଦାର ବର୍ଦ୍ଧମାନ ରାଜାଙ୍କ କାର୍ଯ୍ୟକଳାପ ହେଉଛି ଏହାର ଏକ କୁଖ୍ୟାତ ଦୃଷ୍ଟାନ୍ତ । ତାଙ୍କ ଜମିଦାରିରେ ନିୟମିତ ୫-୬ଟି ଇଜାରାଦାରଙ୍କର ଏକ ଜମୋଟ ଶ୍ରେଣୀ ଗଢ଼ି ଉଠିଥିଲା । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ କ୍ରମାନୁସାରେ ଅଧସ୍ତନ ଇଜାରାଦାରଙ୍କୁ ଅଧିକ ଦରରେ ଜମି ଭଡ଼ା ଦେଉଥିଲେ । ଏହି ଭାବେ ଉପଇଜାରାଦାରମାନଙ୍କର ଏକ ଦୀର୍ଘ ଶୃଙ୍ଖଳ ତିଆରି ହୋଇଥିଲା ଏବଂ ଏହି ଅଧିକାରଟି ବଂଶ ପରମ୍ପରା କ୍ରମେ ରହି ଯାଉଥିଲା ।

କୃଷକମାନଙ୍କଠାରୁ ସାମନ୍ତବାଦୀ ଶୋଷଣ ମାଧ୍ୟମରେ ସଂଗୃହୀତ ରାଜସ୍ୱକୁ ଜମିଦାରମାନେ ଯଥାରୀତି ସାମନ୍ତବାଦୀ ଢଙ୍ଗରେ, ଅର୍ଥାତ୍, ଅନୁତ୍ପାଦୀ କାମରେ (ଅପବ୍ୟୟ, ଗୁଜରବାକର ପୋଷଣ, ଆଦି) ଅପବ୍ୟୟ କରୁଥିଲେ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟିଶ୍ କର୍ମଚାରୀମାନଙ୍କ ବିବରଣୀରୁ ଜଣାଯାଏ ଯେ, ଜମିଦାରମାନଙ୍କର ଆୟ ପରାଶ୍ରୟୀ ଓ କାଙ୍ଗାଳୀ ଭୋଜନ, ଗୁଜରବାକର ଓ ଦେହରକ୍ଷୀ ପୋଷଣ, ବାଇଜୀ ଓ ନର୍ତ୍ତକୀମାନଙ୍କ ପାଇଁ, ସ୍ଥାନୀୟ ଅନ୍ୟାନ୍ୟ ଜମିଦାରମାନଙ୍କ ଉଦ୍ଦେଶ୍ୟରେ ଆୟୋଜିତ ଉତ୍ସବ ଏବଂ ବ୍ରାହ୍ମଣ ସେବାରେ ବ୍ୟୟ ହେଉଥିଲା । ଆୟର ସବୁକିଛି ଏଇ ଭାବେ ବ୍ୟୟ ହୋଇ ଯାଉଥିଲା, ଉତ୍ପାଦନ ପାଇଁ କିଛି ବଞ୍ଚୁ ନଥିଲା ଏବଂ ଏଭଳି କୌଣସି ଗୋଟିଏ ହେଲେ ଗ୍ରାମ ନଥିଲା, ଯେଉଁଠି ଜମିଦାର ବା ଇଜାରାଦାର ଉନ୍ନୟନ ବାବଦକୁ ଅର୍ଥ ବ୍ୟୟ କରୁଥିଲେ ।

କୃଷକମାନଙ୍କର ଚରମ ଦାରିଦ୍ର୍ୟ ହେତୁ ବେଳେ ବେଳେ ଜମିଦାରମାନେ ଭୂମିରାଜସ୍ୱରୁ ନିର୍ଦ୍ଧାରିତ ଅର୍ଥ ସଂଗ୍ରହ କରିବାକୁ ବ୍ୟର୍ଥ ହେଉଥିଲେ । ସେତେବେଳେ ଅନାଦାୟ ହେତୁ ଜମିଦାରି ସବୁ ବ୍ୟାପକ ଭାବେ ନିଲାମ ହୋଇ ଯାଉଥିଲା । ଏହି ଭାବେ ବିକ୍ରି ହୋଇ ଯାଉଥିବା ଜମିକୁ ଇଷ୍ଟ ଇଣ୍ଡିଆ କଂପାନିର ଭାରତୀୟ ଦଲାଲ, ଅଦାଲତର କର୍ମଚାରୀ ବା ପ୍ରଭାବଶାଳୀ ମହାଜନମାନେ କିଣି ନେଉଥିଲେ । ଫଳରେ ସହରରେ ଏକ ଶ୍ରେଣୀର ନୂତନ ଜମିଦାର ଗଢ଼ି ଉଠିଥିଲେ । ଏମାନେ ପୁରୁଣା, ସାମନ୍ତବାଦୀ ପଦ୍ଧତିରେ କୃଷକମାନଙ୍କ ଉପରେ ଶୋଷଣ ଚଳାଉଥିଲେ ଏବଂ ଜମିଦାରିଗୁଡ଼ିକୁ ସୁଧରେ ଟଙ୍କା ଖଟାଇଲା ଭଳି ସୁବିଧାଜନକ ପୁଞ୍ଜି ଲଗାଣ ହିସାବରେ ଭାବୁଥିଲେ ।

ପ୍ରସଙ୍ଗତଃ, କାର୍ଲ ମାର୍କସ୍‌ଙ୍କ ମନ୍ତବ୍ୟ ସ୍ମରଣୀୟ । ସେ ଲେଖିଥିଲେ, "ଏହି 'ବନ୍ଦୋବସ୍ତର' ଫଳ ହେଲା—ପ୍ରଥମତଃ ରଇତମାନଙ୍କର 'ଗୋଷ୍ଠୀଗତ ତଥା ବ୍ୟକ୍ତିଗତ ସଂପତ୍ତିର' ଲୁଣ୍ଠନର ଫଳ:

---

* K. Marx, "Notes on Indian History", Moscow, 1960, p. 118.

(ଏମାନଙ୍କ ଉପରେ ଚପେଇ ଦେବା) ଜମିଦାରମାନଙ୍କ (landlords) ବିରୁଦ୍ଧରେ ରଇତମାନଙ୍କର ଧାରାବାହିକ ଅଭ୍ୟୁତ୍ଥାନ, କେତେକ କ୍ଷେତ୍ରରେ ଜମିଦାରମାନଙ୍କ ବହିଷ୍କାର ଏବଂ ଏମାନଙ୍କ ସ୍ଥଳରେ ଇଷ୍ଟ ଇଣ୍ଡିଆ କଂପାନିର ଅନୁପ୍ରବେଶ, ଅନ୍ୟତ୍ର, ଜମିଦାରମାନଙ୍କର ଦାରିଦ୍ର୍ୟ ଏବଂ ବାକିଆ ଖଜଣା ଓ ବ୍ୟକ୍ତିଗତ ଋଣ ପରିଶୋଧ ପାଇଁ ବାଧ୍ୟ ହୋଇ କିମ୍ବା ସ୍ୱେଚ୍ଛାରେ ଜମି ବିକ୍ରି । ଫଳତଃ, ଦେଶର ଜମିର ବୃହତ୍ତର ଅଂଶଟି ଦ୍ରୁତ ସହରର ପୁଞ୍ଜିପତିମାନଙ୍କର ହସ୍ତଗତ ହେଉଥିଲା, ଯେଉଁମାନଙ୍କର ଅତିରିକ୍ତ ପୁଞ୍ଜି ଥିଲା ତାକୁ ସେମାନେ ସିଧାସଳଖ ଜମିରେ ଖଟାଉଥିଲେ ।" *

ବଙ୍ଗଳାର କୃଷକମାନଙ୍କର ଚରମ ଦାରିଦ୍ର୍ୟ ଫଳରେ ସଶସ୍ତ୍ର ଅଭ୍ୟୁତ୍ଥାନମାନ ଦେଖାଯାଉଥିଲା । ବେଳେ ବେଳେ ଏସବୁ ଅଭ୍ୟୁତ୍ଥାନରେ ନେତୃତ୍ୱ ଦେଉଥିଲେ ଭୂମିସ୍ୱତ୍ୱହରା ପୂର୍ବତନ ଜମିଦାରମାନେ । ଏସବୁ କ୍ଷେତ୍ରରେ ସାରା ଜିଲ୍ଲାର କୃଷକମାନଙ୍କ ସମର୍ଥନ ରହୁଥିଲା ଏବଂ ସେମାନଙ୍କ ସଂଗ୍ରାମ ଜାତୀୟ ସ୍ୱାଧୀନତାର ରୂପ ପରିଗ୍ରହ କରୁଥିଲା । ଏ ପ୍ରସଙ୍ଗରେ ପାନ୍‌ଚେଟର ଦୃଷ୍ଟାନ୍ତଟି ଉଲ୍ଲେଖଯୋଗ୍ୟ । ୧୭୯୫ ଖ୍ରୀଷ୍ଟାବ୍ଦରେ ସେଠାକାର ପୂର୍ବତନ ଜମିଦାର ନିଜ ନ୍ୟାଯ୍ୟ ଅଧିକାର ପୁନର୍ସ୍ଥାପିତ ନହେବା ପର୍ଯ୍ୟନ୍ତ କୃଷକମାନଙ୍କ ସାହାଯ୍ୟରେ ନୂତନ ଜମିଦାରକୁ ତିନି ବର୍ଷ ପର୍ଯ୍ୟନ୍ତ ଦଖଲ ଦେଇ ନଥିଲେ । ୧୭୯୮ ଖ୍ରୀଷ୍ଟାବ୍ଦରେ ରାଯପୁରରେ ଏବଂ ୧୭୯୯ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଏହାର ପୁନରାବୃତ୍ତି ଘଟିଥିଲା । ୧୭୯୯-୧୮୦୦ ଖ୍ରୀଷ୍ଟାବ୍ଦରେ ନୂତନ ଭୂମିରାଜସ୍ୱ ପ୍ରବର୍ତ୍ତନର ପ୍ରତିବାଦରେ ଅଭ୍ୟୁତ୍ଥାନ ଘଟିଥିଲା ଏବଂ କୃଷକମାନେ କେତେକ ଗ୍ରାମ ଓ ସହର ଦଖଲ କରି ମେଦିନପୁର ଆକ୍ରମଣ କରିବାକୁ ଧମକ ଦେଇଥିଲେ । ତା'ପରେ ଖଜଣା ପ୍ରତ୍ୟାହାର କରାଗଲା ଏବଂ ଜମିଦାରି ପୁନଃବିକ୍ରୟ ଆଇନତଃ ବନ୍ଦ ହେଲା । ସ୍ଥାନୀୟ ଭାବେ ସଂଗଠିତ ଏସବୁ ସ୍ୱତଃସ୍ଫୂର୍ତ୍ତ ଅଭ୍ୟୁତ୍ଥାନକୁ ଦ୍ରୁତ ଦମନ କରି ଦିଆଯାଉଥିଲା । କର୍ଣ୍ଣଓ୍ୱାଲିସ୍‌ଙ୍କ ଭୂମିରାଜସ୍ୱ ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ କୃଷକମାନେ (ଏବଂ ପୁରୁଣା ସାମନ୍ତ ପରିବାରଗୁଡ଼ିକ) ଯେ କି କଠିନ ଅବସ୍ଥାରେ ପଡ଼ିଥିଲେ, ଏଥିରୁ ତା'ର ପ୍ରମାଣ ମିଳେ ।

ବ୍ରିଟିଶ୍ ଔପନିବେଶିକମାନେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ ମାଧ୍ୟମରେ ବଙ୍ଗଳା ଜୟ ଫଳରେ ଅର୍ଥନୈତିକ ପରିବର୍ତ୍ତନର ପ୍ରକ୍ରିୟାକୁ ଏକ ଆଇନସମ୍ମତ ଛାଞ୍ଚ ପ୍ରଦାନ କରିଥିଲେ । ବ୍ରିଟିଶ୍ ବିଜୟୀମାନେ ଏହି ଭାବେ ସାମନ୍ତ ଶାସକ ଶ୍ରେଣୀର ରାଜନୈତିକ କ୍ଷମତାକୁ ହରଣ କରିଥିଲେ ଏବଂ ପୁଞ୍ଜିବାଦୀ ମାତୃଭୂମିର ଚାହିଦା ଅନୁଯାୟୀ ସାମନ୍ତବାଦୀ ଭାରତବର୍ଷର ସାମାଜିକ-ଅର୍ଥନୈତିକ ଧାରାରେ ପରିବର୍ତ୍ତନ ଆଣିବାକୁ ପ୍ରୟାସୀ ହୋଇଥିଲେ ।

## ରଯତଓ୍ୱାରି ବ୍ୟବସ୍ଥା

ଅଷ୍ଟାଦଶ ଶତାବ୍ଦୀର ଶେଷରେ ମାଡ୍ରାଜ ପ୍ରେସିଡେନ୍‌ସିରେ ମଧ୍ୟ ବ୍ରିଟିଶ୍‌ମାନେ ଗୋଟିଏ ଧରଣର ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ କରିଥିଲେ । କିନ୍ତୁ ମହୀଶୂରର ଅଧିକୃତ ଅଞ୍ଚଳଗୁଡ଼ିକର ଯେଉଁସବୁ ସାମନ୍ତ କିଛି କାଳ ପୂର୍ବେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ, ସେମାନଙ୍କ ଜମି ଉପରେ ଦଖଲ ମଜବୁତ୍ କରିବା ପାଇଁ ବ୍ରିଟିଶ୍‌ମାନେ କୌଣସି ଉଦ୍ୟୋଗ ନେଇ ନଥିଲେ । ସେଥି ପାଇଁ ୧୭୯୩ ଖ୍ରୀଷ୍ଟାବ୍ଦରେ ସେମାନେ ସେଠାରେ ଭିନ୍ନ ଧରଣର ଏକ ଭୂମିରାଜସ୍ୱ ବ୍ୟବସ୍ଥା ପ୍ରବର୍ତ୍ତନ

---

K. Marx, "Notes on Indian History", Moscow, 1960, p. 120.

କରିଥିଲେ, ଯାହାକି ପରବର୍ତ୍ତୀ କାଳରେ "ରୟତଓ୍ୱାରି" ବ୍ୟବସ୍ଥା ନାମରେ ପରିଚିତ ହୋଇଥିଲା । ମାଦ୍ରାଜ ପ୍ରେସିଡେନ୍‌ସିର ଚିରସ୍ଥାୟୀ ବନ୍ଦୋବସ୍ତ ବହିର୍ଭୂତ ଅଞ୍ଚଳଗୁଡ଼ିକରେ ୧୮୧୮-୧୮୨୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହି ବ୍ୟବସ୍ଥା ଚାଲୁ କରାଯାଇଥିଲା ।

ରୟତଓ୍ୱାରି ବ୍ୟବସ୍ଥା ମଧ୍ୟରେ ବ୍ରିଟିଶ୍‌ମାନେ ଜମିଦାରମାନଙ୍କ ବଦଳରେ ମିରାଜଦାରମାନଙ୍କୁ (ବଂଶ ପରମ୍ପରା କ୍ରମେ ଭୂମିର ଭୋଗ ଦଖଲକାରୀ ଗ୍ରାମ୍ୟ ସମାଜର ସଦସ୍ୟ) ଏବଂ ମିରାଜଦାରମାନଙ୍କ ଭଳି ସମାନ ଅଧିକାରୀ ନହେଲେ ମଧ୍ୟ ସିଧାସଳଖ ସରକାରୀ ପାଣ୍ଠିରେ ଖଜଣା ଜମା ଦେଉଥିବା କୃଷକମାନଙ୍କୁ ଜମିର ଆଇନସମ୍ମତ ମାଲିକ ବୋଲି ସ୍ୱୀକୃତି ଦେଇଥିଲେ । ଏପରିକି, ବ୍ରିଟିଶ୍‌ମାନେ ଏ ଦେଶକୁ ଆସିବା ପୂର୍ବରୁ କେତେକ ଅଞ୍ଚଳରେ କେତେକ ମିରାଜଦାର ଛୋଟ ଛୋଟ ଜମିଦାର ହୋଇ ଉଠିଥିଲେ ଏବଂ ବେଳେ ବେଳେ ସଂପୂର୍ଣ୍ଣ ଗ୍ରାମ ସେମାନଙ୍କ କ୍ଷମତାଧୀନ ହୋଇ ପଡୁଥିଲା । ପ୍ରଥମେ ସେମାନେ ରାଷ୍ଟ୍ର ସ୍ୱାର୍ଥରେ ଏବଂ ପରେ ନିଜ ପାଇଁ ଗ୍ରାମରୁ ଖଜଣା ଆଦାୟ କରୁଥିଲେ ଏବଂ ଏହି ଭାବେ କ୍ରମଶଃ ଛୋଟ ଜମିଦାର ପାଲଟି ଯାଉଥିଲେ । ଏବେ ବ୍ରିଟିଶ୍‌ମାନଙ୍କ ଅଧୀନରେ ସେହି ଜମିରେ ସେମାନଙ୍କର ବ୍ୟକ୍ତିଗତ ମାଲିକାନା କାଏମ ହେଲା । ଗ୍ରାମୀଣ ଜନସାଧାରଣଙ୍କର ଅଧସ୍ତନ ସ୍ତରଗୁଡ଼ିକ (ଅନ୍ୟ ଜିଲ୍ଲାରୁ ଆସୁଥିବା କୃଷକ, କ୍ରୀତଦାସ ଓ ଅସ୍ପୃଶ୍ୟ ଶ୍ରେଣୀର କାରିଗରମାନଙ୍କ ମଧ୍ୟରୁ ଅଧିକାଂଶ) ଅଳ୍ପ ପରିମାଣର ଅଧିକାର ଭୋଗ କରୁଥିଲେ । ଇତିପୂର୍ବରୁ ସ୍ଥାନୀୟ ପ୍ରଥାନୁଯାୟୀ ସେମାନେ ଯଥାରୀତି ନିଜ ନିଜର ଦାୟିତ୍ୱ ପାଳନ କଲେ ଏବଂ ଗ୍ରାମ ସମାଜର ନେତାମାନଙ୍କ ନିକଟରେ ନିଜ ଜମିର ଖଜଣା ପରିଶୋଧ କଲେ, ସେମାନଙ୍କୁ ଜମିରୁ ଉଚ୍ଛେଦ କରାଯାଉ ନଥିଲା । କିନ୍ତୁ ବର୍ତ୍ତମାନ ଅବସ୍ଥାରେ ଅଧିକାଂଶ କ୍ଷେତ୍ରରେ ସେମାନେ ଜମି ଉପରୁ ଅଧିକାର ହରେଇଲେ ଏବଂ ସ୍ୱତ୍ୱାଧିକାରହୀନ ରଇତ ବା ଭାଗଚାଷୀ ହୋଇଗଲେ । ଏବେ ଯେକୌଣସି ସମୟରେ ସେମାନଙ୍କ ଜମିର ଖଜଣା ବୃଦ୍ଧି ଓ ଯେକୌଣସି ସମୟରେ ସେମାନଙ୍କୁ ଜମିରୁ ଉଚ୍ଛେଦ କରାଗଲା ।

ରୟତଓ୍ୱାରି ବ୍ୟବସ୍ଥା ଅନୁଯାୟୀ ଇତିପୂର୍ବରୁ ଗ୍ରାମ ସମାଜର ମାଲିକାନାଧୀନ ଗୋଚର ଭୂମି ଓ ଅନାବାଦୀ ଜମିସବୁ ଏଥର ରାଷ୍ଟ୍ରାୟର ହେଲା । ଫଳରେ, କୃଷକମାନେ ବିନା ଖର୍ଚ୍ଚରେ ପଶୁଚାରଣ ଓ ଜାଳେଣି କାଠ ସଂଗ୍ରହର ଅଧିକାର ହରେଇଲେ । ଜମିସବୁ ଔପନିବେଶିକ ରାଜ୍ୟର ଅଧୀନ — ଏହି ଦୃଷ୍ଟିଭଙ୍ଗିର ଭିତ୍ତିରେ ବ୍ରିଟିଶ୍ କର୍ତ୍ତୃପକ୍ଷ ରଇତମାନଙ୍କୁ ସେମାନଙ୍କର "ସ୍ଥାୟୀ ପ୍ରଜା" ବୋଲି ମନେ କରିବାକୁ ଆରମ୍ଭ କରିଦେଲେ । ସେମାନଙ୍କ ଠାରୁ ଯେତେ ଇଚ୍ଛା ସେତେ ଖଜଣା ସେମାନେ ଆଦାୟ କଲେ, ଅର୍ଥାତ୍, ଇଚ୍ଛା ମୁତାବକ ସେମାନଙ୍କ ଉପରେ ଯେକୌଣସି ରାଜସ୍ୱ ଚପେଇ ପାରୁଥିଲେ । କାର୍ଯ୍ୟତଃ ସବୁଠାରୁ ଅନୁକୂଳ ପରିସ୍ଥିତିରେ ଭାରତୀୟ କୃଷକମାନଙ୍କ ପକ୍ଷରେ ଦେୟ ସର୍ବାଧିକ ପରିମାଣର ଖଜଣା ଧାର୍ଯ୍ୟ କରାଯାଇଥିଲା । ମାଦ୍ରାଜ ରାଜସ୍ୱ ବିଭାଗରେ ସଂରକ୍ଷିତ ତଥ୍ୟାନୁଯାୟୀ ରୟତଓ୍ୱାରି ବ୍ୟବସ୍ଥା ପ୍ରବର୍ତ୍ତନ ଚେଷ୍ଟା ଫଳରେ "ପ୍ରାୟ ପ୍ରତିଟି କ୍ଷେତ୍ରରେ ଦେଶ ଉପରେ ସରକାରର ଦାବି ପ୍ରଭୂତ ବୃଦ୍ଧି ପାଇଥିଲା" । କୃଷକମାନେ ବସ୍ତୁତଃ ଏତେ ବେଶି ଖଜଣା ଦେବାକୁ ଅପାରଗ ଥିଲେ ଏବଂ ସେମାନଙ୍କର ବାକିଆ ଖଜଣା ବଢ଼ି ବଢ଼ି ଚାଲିଥିଲା । ସମଗ୍ର ଊନବିଂଶ ଶତାବ୍ଦୀରେ ପ୍ରତ୍ୟେକ ଥର ରାଜସ୍ୱ ଦାବି ପୁନର୍ବିବେଚନା ସମୟରେ ବ୍ରିଟିଶ୍ ସରକାର ବାକିଆ ଖଜଣା ଛାଡ଼ କରିବାକୁ ଏବଂ ଖଜଣାର ହାର କମାଇବାକୁ ବାଧ୍ୟ ହେଉଥିଲା ।

ଭାରତସ୍ଥ ବ୍ରିଟିଶ୍ ସରକାର ୧୮୧୮-୧୮୫୫ ଖ୍ରୀଷ୍ଟାବ୍ଦ ଓ ପରବର୍ତ୍ତୀ କାଳର ଭୂମିରାଜସ୍ୱର ପୂରା ଇତିହାସଟିକୁ ଖଜଣାର ହାର କମେଇବା ପାଇଁ ନିରନ୍ତର ଓ ନ୍ୟାଯ୍ୟ ଦାବି ଓ ବାକିଆ ଛାଡ଼ର ଇତିହାସ ବୋଲି ସ୍ୱୀକାର କରିଛି । ଏହା ହେଲା ରଇତମାନଙ୍କ ଠାରୁ ଅତ୍ୟଧିକ ଭୂମିରାଜସ୍ୱ ଦାବି କରିବାର ଫଳଶ୍ରୁତି । ବଙ୍ଗଳାର ଭୂମିରାଜସ୍ୱ ପ୍ରଣାଳୀ ଓ ରୟତଓ୍ୱାରି ବ୍ୟବସ୍ଥାର ମୂଳ ପାର୍ଥକ୍ୟଟି ହେଲା, ବଙ୍ଗଳାରେ ଜମିଦାରମାନେ ଜମିମାଲିକ ହିସାବରେ ସ୍ୱୀକୃତି ପାଇଥିଲେ, କିନ୍ତୁ ରୟତଓ୍ୱାରି ବ୍ୟବସ୍ଥାରେ ପ୍ରଧାନତଃ କୃଷକମାନଙ୍କ ଉପରେ ଏହି ସ୍ୱତ୍ୱ ନ୍ୟସ୍ତ ଥିଲା । କିନ୍ତୁ ଦକ୍ଷିଣ ଭାରତରେ କୃଷକମାନେ ଜମିମାଲିକ ହିସାବରେ ସ୍ୱୀକୃତି ପାଇଲେ ମଧ୍ୟ ସେପର୍ଯ୍ୟନ୍ତ ଖୋଦ୍ ଜମି ହିଁ ସେମାନଙ୍କ ପାଇଁ ମୂଲ୍ୟହୀନ ହୋଇ ପଡ଼ିଥିଲା । ବ୍ରିଟିଶ୍ ପୁଞ୍ଜିପତିମାନଙ୍କ ଦ୍ୱାରା ଭାରତୀୟ ଜନସାଧାରଣଙ୍କ ନିକଟରୁ ସାମନ୍ତବାଦୀ ଏବଂ ତା'ପରେ ଅର୍ଦ୍ଧ-ସାମନ୍ତବାଦୀ ପ୍ରଣାଳୀରେ ଔପନିବେଶିକ ମୁନାଫା ଶୋଷଣ ଫଳରେ ଏହା ଘଟିଥିଲା ।

## ମୌଜାଓୟାର ବ୍ୟବସ୍ଥା

ମରହଟ୍ଟାମାନଙ୍କ ବିରୁଦ୍ଧରେ ଇଷ୍ଟ ଇଣ୍ଡିଆ କଂପାନିର ଯୁଦ୍ଧରେ ଅଧୀକୃତ ମଧ୍ୟ ଭାରତର ଯେଉଁସବୁ ଅଞ୍ଚଳ ବଙ୍ଗଳା ପ୍ରେସିଡେନ୍‌ସିରୁ ତଥାକଥିତ ଉତ୍ତର ପ୍ରଦେଶ (ବର୍ତ୍ତମାନର ଉତ୍ତର ପ୍ରଦେଶ ଓ ମଧ୍ୟ ପ୍ରଦେଶ) ନାମରେ ପୃଥକ୍ ହୋଇଥିଲା, ସେଠାରେ ପ୍ରବର୍ତ୍ତିତ ରାଜସ୍ୱ ବ୍ୟବସ୍ଥାକୁ "ମୌଜାଓୟାର" ବା "ମାଲଗୁଜରି" କୁହାଯାଉଥିଲା । ଅନ୍ୟାନ୍ୟ ଧରଣର ଭୂମି ପ୍ରଶାସନ ଠାରୁ ଏହାର ପାର୍ଥକ୍ୟଟି ହେଲା — ଏଠାରେ ସାରା ଗ୍ରାମ୍ୟ ସମାଜକୁ ଏକ ରାଜସ୍ୱର ଏକକ ଓ ଜମିର ମାଲିକ ବୋଲି ଧରାଯାଉଥିଲା । କିନ୍ତୁ ଏଥିରେ ପ୍ରତ୍ୟେକ କୃଷକର ଖେତକୁ ମୂଲ୍ୟାୟନ କରାଯାଉଥିଲା ଏବଂ ଜଣେ କୃଷକର ଖଜଣା ବାକି ପଡ଼ିଗଲେ ସରକାରୀ ନିଲାମ ଡାକରେ ସାରା ଗ୍ରାମର ଜମି ବିକ୍ରି ହୋଇ ଯାଉଥିଲା । ସାଧାରଣ ବିଚାର ବା ରାଜସ୍ୱ ବିଭାଗର କର୍ମଚାରୀମାନେ ଏହିସବୁ ଜମିକୁ କିଣୁଥିଲେ ଏବଂ ସେଇମାନେ ପୁଣି ଜମିଦାର ହୋଇ ଉଠୁଥିଲେ । ବଙ୍ଗଳାର ଜମିଦାରମାନଙ୍କ ସହିତ ସେମାନଙ୍କର ପାର୍ଥକ୍ୟଟି ହେଲା, ଏହି ଶେଷୋକ୍ତ କ୍ଷେତ୍ରରେ ସରକାରୀ ପାଣ୍ଠିକୁ ଦେୟ ରାଜସ୍ୱ ପରିମାଣ ପର୍ଯ୍ୟାୟ କ୍ରମେ ପୁନର୍ବିବେଚିତ ଓ ବର୍ଦ୍ଧିତ ହେଉଥିଲା ।

## ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟିଶ୍‌ମାନଙ୍କ କର୍ତ୍ତୃକ ଭାରତ ବିଜୟର ଅର୍ଥନୈତିକ ଫଳାଫଳ

ବ୍ରିଟିଶ୍ ଶାସନର ପ୍ରଥମ ଫଳଟି ହେଲା, ପୁରୁଣା ସାମନ୍ତ ପରିବାରଗୁଡ଼ିକର ପତନ, ସାମନ୍ତମାନଙ୍କ ସୈନ୍ୟବାହିନୀ, ବିପୁଳ ସଂଖ୍ୟକ ପରିଷଦବର୍ଗ, ଚାକରବାକରମାନଙ୍କର ବିଲୋପ ସାଧନ । ଭାରତର ସାମନ୍ତ ସମାଜର ଶହ ଶହ ବର୍ଷବ୍ୟାପୀ ଜୀବନଯାପନର ଅଭ୍ୟାସ ଏହା ଫଳରେ ସଂପୂର୍ଣ୍ଣ ବଦଳି ଯାଇଥିଲା । ଯେଉଁ ଅସଂଖ୍ୟ କାରିଗର ଏହିସବୁ ସାମନ୍ତ ପରିବାରଗୁଡ଼ିକର ଚାହିଦା ମେଣ୍ଟାଉଥିଲେ, ଏହା ଫଳରେ ସେମାନଙ୍କ ଜୀବନାବସ୍ଥା ମଧ୍ୟ ପ୍ରଭାବିତ ହୋଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଏକଦା ସୂକ୍ଷ୍ମ ଓ ମହାର୍ଘ ବସ୍ତ୍ର ପାଇଁ ବିଖ୍ୟାତ ବଙ୍ଗଳାର ଡାକା ସହରର ଗୁରୁତ୍ୱ

ହ୍ରାସ ପାଇଥିଲା । ଯେଉଁସବୁ କାରିଗର ସେତେବେଳେ ଗ୍ରାମରେ ଆଶ୍ରୟ ନେଇ ନଥିଲେ, ସେମାନେ କଂପାନିର ମାରାତ୍ମକ ଶୋଷଣର ଶିକାରରେ ପରିଣତ ହୋଇଥିଲେ । ତା'ର କାରଣ ହେଲା, ବଙ୍ଗଳା ଓ ଦକ୍ଷିଣ ଭାରତର ଏହିସବୁ କାରିଗରମାନେ ସେତେବେଳେ ଆଉ ସ୍ୱାଧୀନ ବଣିକମାନଙ୍କୁ ସେମାନଙ୍କ ପଣ୍ୟ ବିକ୍ରୟ କରି ପାରୁ ନଥିଲେ । ୧୭୯୦ ଦଶକରେ କଂପାନିର ଦଲାଲମାନଙ୍କ ହାତରେ ଏମାନେ କିପରି ଅତ୍ୟାଚାରିତ ହେଉଥିଲେ, ତା'ର ବହୁ ମାରାତ୍ମକ ଦୃଷ୍ଟାନ୍ତ ମିଳେ । ନିର୍ଦ୍ଧାରିତ ସାପ୍ତାହିକ ଉତ୍ପାଦନ ପୂରଣ ନକଲେ, କଂପାନି କର୍ମଚାରୀମାନେ ତନ୍ତୁବାୟମାନଙ୍କୁ ଖାଇବା ପିଇବାକୁ ନଦେଇ ଜେଲରେ ପୂରେଇ ଦେଉଥିଲେ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭର ପୂର୍ବ ପର୍ଯ୍ୟନ୍ତ ଭାରତରୁ ବ୍ରିଟେନ୍‌କୁ ବସ୍ତ୍ର ରପ୍ତାନି ହେଉଥିଲା । କିନ୍ତୁ କୌଣସି ସଂସ୍ଥା ହିସାବରେ କଂପାନି ଏହି କାର୍ଯ୍ୟ କରୁ ନଥିଲା । କଂପାନିର କେତେକ କର୍ମଚାରୀ ନିଜ କ୍ଷମତା ବଳରେ ଏହିସବୁ ବ୍ୟବସ୍ଥା ପରିଚାଳନା କରୁଥିଲେ । ଊନବିଂଶ ଶତାବ୍ଦୀ ଆରମ୍ଭ ହେବା ସଙ୍ଗେ ସଙ୍ଗେ ବ୍ରିଟେନ୍‌କୁ ବସ୍ତ୍ର ରପ୍ତାନି ବନ୍ଦ ହୋଇଗଲା ଏବଂ ଏହାର ପରିବର୍ତ୍ତେ ବ୍ରିଟିଶ୍ ବସ୍ତ୍ରକାରଖାନା ପାଇଁ ସୂତା ରପ୍ତାନି କରାଗଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଆଉ ଏକ ଉଦ୍ୟୋଗ ମାଧ୍ୟମରେ ବଙ୍ଗଳାର ଗୋଟିପୋକ ଚାଷ ଓ ଶୋରା ତଥା ଲୁଣ ଉତ୍ପାଦନ କମେଇ ଦିଆଗଲା । କୁଟୀର ଶିଳ୍ପର ସାଧାରଣ କ୍ରମାବନତି, କାରିଗରମାନଙ୍କର ଦ୍ରୁତ ସଂଖ୍ୟା ହ୍ରାସ ପାଇଲା ବେଳେ ସ୍ଥାନୀୟ ଶ୍ରମିକମାନଙ୍କ ପକ୍ଷରେ କାମ ପାଇଲା ଭଳି ଗୋଟିଏ ମାତ୍ର ଉତ୍ପାଦନ କ୍ଷେତ୍ର ବ୍ରିଟିଶ୍‌ମାନେ ଏ ଦେଶରେ ପ୍ରତିଷ୍ଠା କରିଥିଲେ, ତାହା ହେଲା କଲିକତା ବନ୍ଦରରେ ଜାହାଜ ନିର୍ମାଣ । ଏହା ସଂପୂର୍ଣ୍ଣ ରୂପେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ନିୟନ୍ତ୍ରିତ ଥିଲା । ଏଠାରେ ନିର୍ମିତ ଅଧିକାଂଶ ଜାହାଜ ଚୀନ୍ ଦେଶର ବାଣିଜ୍ୟରେ ବ୍ୟବହୃତ ହେଉଥିଲା । ଅର୍ଥନୈତିକ କାର୍ଯ୍ୟକଳାପରେ କଂପାନିର ଏକାଧିପତ୍ୟ ଫଳରେ ଭାରତୀୟମାନେ ବଡ଼ ଧରଣର ବାଣିଜ୍ୟ ଓ ଆର୍ଥିକ କାର୍ଯ୍ୟକଳାପରୁ ବହିଷ୍କୃତ ହୋଇଥିଲେ ।

କୃଷି, କୁଟୀର ଶିଳ୍ପ ଓ ବ୍ୟବସାୟ ବାଣିଜ୍ୟର ପରିସ୍ଥିତି ବଙ୍ଗଳା ତୁଳନାରେ ଦକ୍ଷିଣ ଭାରତରେ କିଛି ପରିମାଣରେ ଭିନ୍ନ ଥିଲା । ଦେଶର ଦକ୍ଷିଣରେ ବିଶେଷ ଭାବେ କୃଷି ଜମିର ଶିଳ୍ପକାରୀ ଫସଲ ଚାଷରେ ପୂର୍ବତନ ଖେତଗୁଡ଼ିକର ମୋଟ ପରିମାଣ ଯୁଦ୍ଧ ଏବଂ ଧ୍ୱଂସ ଫଳରେ ଯଥେଷ୍ଟ ହ୍ରାସ ପାଇଥିଲା । ବ୍ରିଟିଶ୍‌ମାନେ ଆସିବା ପୂର୍ବରୁ ନିର୍ମିତ ଜଳସେଚନ ବ୍ୟବସ୍ଥା ମରାମତ ଅଭାବରୁ ଅକାମି ହୋଇ ପଡ଼ିଥିଲା । କାରିଗରମାନଙ୍କର ଅବସ୍ଥା ବୋଇଲେ, ସେଠାରେ ତନ୍ତୁବାୟମାନଙ୍କ ଉପରେ ନିର୍ଯ୍ୟାତନ ବଙ୍ଗଳା ଭଳି ଏତେ ନିର୍ମମ ହୋଇ ଉଠି ନଥିଲା । ତା'ର କାରଣ ହେଲା, ୧୮୧୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ମାଡ୍ରାଜ ପ୍ରେସିଡେନ୍‌ସିର ଆଖପାଖରେ କେତେକ ସ୍ୱାଧୀନ ଭାରତୀୟ ରାଜ୍ୟ ଥିବାରୁ କାରିଗରମାନେ ପଳେଇ ଯାଇ ସେଠାରେ ଆଶ୍ରୟ ନେଉଥିଲେ । ବହୁ ସାମନ୍ତ ସୈନ୍ୟବାହିନୀ ଭାଙ୍ଗି ପଡ଼ିବା ଫଳରେ ବ୍ୟବସାୟ କ୍ଷେତ୍ରରେ ସୈନ୍ୟମାନଙ୍କୁ ଖାଦ୍ୟ ସରବରାହକାରୀ ଓ ଯୁଦ୍ଧ ଭେଟି କ୍ରୟକାରୀ ବାନ୍‌ଜାରମାନଙ୍କର ଗୁରୁତ୍ୱ ହ୍ରାସ ପାଇଥିଲା । ଚେଟି ଜାତିର ମାଡ୍ରାଜୀ ବଣିକ ଓ ଜୈନମାନେ କ୍ରମଶଃ କଂପାନିର ବଣିକମାନଙ୍କର ସହଯୋଗୀ ଓ ଦଲାଲ ପାଲଟି ଯାଉଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ବମ୍ବେର ପାରସୀମାନେ ବଣିକ ତଥା ମହାଜନମାନଙ୍କ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲେ । ବଙ୍ଗଳା ଭଳି ମାଡ୍ରାଜରେ ବ୍ରିଟିଶ୍‌ମାନେ ଭାରତୀୟମାନଙ୍କୁ ବଡ଼ ବଡ଼ ବ୍ୟବସାୟ, ମହାଜନୀ ଓ ବାଣିଜ୍ୟିକ ଅର୍ଥଲଗ୍ନିରୁ ଏତେ ଉତ୍‌ଖାତ କରି ପାରି ନଥିଲେ ।

ମରହଟ୍ଟା ଯୁଦ୍ଧଗୁଡ଼ିକର ସଂପୂର୍ଣ୍ଣ ଶେଷ ପର୍ଯ୍ୟାୟକୁ ବମ୍ବେ ଥିଲା ବ୍ରିଟିଶ୍‌ମାନଙ୍କର ଏକ ଛୋଟ ବସତି । ମରହଟ୍ଟା ଅଞ୍ଚଳରେ ବାସ କରୁଥିବା ଗୁଜରାଟୀ ବଣିକମାନଙ୍କ ସାହାଯ୍ୟରେ ହିଁ କେବଳ ବ୍ରିଟିଶ୍‌ମାନେ ପଣ୍ୟ ରପ୍ତାନି କରି ପାରୁଥିଲେ । ବିଟିଶ୍‌ମାନେ ଗୁଜରାଟୀ ବଣିକମାନଙ୍କର (ପରବର୍ତ୍ତୀ କାଳରେ ମାରଓ୍ୱାଡ଼ି ବଣିକମାନଙ୍କର) ସାହାଯ୍ୟ ଗ୍ରହୁଁଥିଲେ ଏବଂ ସେମାନେ ଯଥେଷ୍ଟ ଅନୁକୂଳ ସର୍ତ୍ତରେ ଏହି ମଧ୍ୟସ୍ଥମାନଙ୍କ ସାହାଯ୍ୟ ପାଉଥିଲେ । ମରହଟ୍ଟା ରାଜ୍ୟଗୁଡ଼ିକ ବ୍ରିଟିଶ୍‌ମାନଙ୍କ ଅଧିକାରକୁ ଆସିଯିବା ଫଳରେ ଗୁଜରାଟୀ ବଣିକମାନେ ମହାରାଷ୍ଟ୍ରରେ ରାଜସ୍ୱ ଆଦାୟ ଓ ହସ୍ତାନ୍ତରର ସୁବିଧାଜନକ କାର୍ଯ୍ୟରୁ ବଞ୍ଚିତ ହେଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ସେମାନଙ୍କ କାର୍ଯ୍ୟକଳାପ ବୃଦ୍ଧି କରିବାକୁ ସୁଯୋଗ ପାଇଥିଲେ । ସେମାନେ କୃଷକମାନଙ୍କୁ ଶୋଷଣ ଏବଂ ଦାସତ୍ୱରେ ସଢ଼େଇବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ବ୍ୟବସାୟର ଅଂଶୀଦାର ହେଉଥିଲେ । ଚୁକ୍ତି ଅନୁଯାୟୀ ସେମାନେ ରପ୍ତାନି ନିମିତ୍ତ କୃଷିଜାତ ଦ୍ରବ୍ୟ ଓ କୁଟୀର ଶିଳ୍ପଜାତ ଜିନିଷ ଯୋଗାଉଥିଲେ, ବମ୍ବେର ଜନସାଧାରଣ ଓ ସୈନ୍ୟମାନଙ୍କୁ ପ୍ରୟୋଜନୀୟ ସାମଗ୍ରୀ ସରବରାହ କରିଥିଲେ । ପରବର୍ତ୍ତୀ କାଳରେ ଊନବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକରେ ଗୁଜରାଟୀ ବଣିକମାନେ ସ୍ଥାନୀୟ ବଜାରରେ ବ୍ରିଟିଶ୍ ପଣ୍ୟ ବିକ୍ରୟ କାର୍ଯ୍ୟରେ ମଧ୍ୟସ୍ଥ ରୂପେ କାର୍ଯ୍ୟ କରିଥିଲେ । ମାଳବରୁ ଚୀନ୍‌କୁ ଅଫିମ ଏବଂ ବ୍ରିଟେନ୍‌କୁ ତୁଳା ରପ୍ତାନି ସମେତ ସେମାନେ ନିଜର ଜାହାଜ ଘାଟିରେ ଜାହାଜ ନିର୍ମାଣ କରୁଥିଲେ । ବମ୍ବେର ଦଲାଲମାନେ ଯଥେଷ୍ଟ ପୁଞ୍ଜି ସଞ୍ଚୟ କରି ପାରିଥିଲେ ଏବଂ ଏହା ଦ୍ୱାରା ନୂତନ ଏକ ବଣିକ ଗୋଷ୍ଠୀ ଗଢ଼ି ଉଠିବାର ପଥ ପ୍ରଶସ୍ତ ହୋଇଥିଲା । ଊନବିଂଶ ଶତାବ୍ଦୀର ଚାଳିଶ ଦଶକ ପର୍ଯ୍ୟନ୍ତ ମହାଜନୀ ବ୍ୟବସ୍ଥାକୁ ଭାରତୀୟମାନେ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରିତ କରୁଥିଲେ ।

## ଔପନିବେଶିକ ପ୍ରଶାସନର ଗଢ଼ଣ

ଭାରତବର୍ଷ କ୍ରମଶଃ ଉପନିବେଶ ହୋଇ ଉଠିବା ସଙ୍ଗେ ସଙ୍ଗେ ଔପନିବେଶିକ ମୁନାଫାର ଏକାଂଶ ପାଇବା ପାଇଁ ବ୍ରିଟିଶ୍ ଶିଳ୍ପ ବୁର୍ଜୁଆମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗି ଯାଇଥିଲା । ଏହି ଦ୍ୱନ୍ଦ୍ୱର ଫଳାଫଳ ଅନୁଯାୟୀ କ୍ରମବର୍ଦ୍ଧମାନ ମାତ୍ରାରେ କଂପାନିର ନୀତି ନିର୍ଦ୍ଧାରିତ ହେଲା । ଭାରତକୁ ଶାସନ କରିବାରେ ବ୍ରିଟିଶ୍ ପାର୍ଲିଆମେଣ୍ଟର କ୍ରମବର୍ଦ୍ଧମାନ ଭୂମିକା ମଧ୍ୟରେ ଏହା ପ୍ରକଟିତ ହେବାକୁ ଲାଗିଲା । ଆନୁମାନିକ ପ୍ରତି ଦଶ ବର୍ଷରେ ଥରେ ଲେଖାଏଁ କଂପାନିର ସନନ୍ଦକୁ ନବୀକରଣ କରିବାକୁ ପଡ଼ୁଥିଲା । ଏହି ନବୀକରଣ ହେଲା ବେଳେ ବ୍ରିଟେନ୍‌ରେ ଦେଖା ଦେଉଥିଲା ତୁମୁଳ ରାଜନୈତିକ ସଂଗ୍ରାମ ।

୧୭୭୩ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟ ଏକ ରେଗୁଲେଟିଂ ଆକ୍ଟ ବା ନିୟନ୍ତ୍ରଣାତ୍ମକ ଆଇନ୍ ପ୍ରଣୟନ କରି କଂପାନି ବ୍ୟାପାରରେ ପ୍ରଥମ ହସ୍ତକ୍ଷେପ କଲା । ଏହି ସର୍ତ୍ତ ଅନୁଯାୟୀ କଂପାନି ବଦଳରେ ବ୍ରିଟେନ୍‌ର ରାଜା ଗଭର୍ଣ୍ଣର ଜେନେରାଲ୍, ବେଙ୍ଗଲ କାଉନ୍‌ସିଲ ଓ କଲିକତା ସୁପ୍ରିମ କୋର୍ଟର ସଦସ୍ୟବର୍ଗଙ୍କୁ ନିଯୁକ୍ତ କଲେ । ୧୭୮୪ ଖ୍ରୀଷ୍ଟାବ୍ଦରେ କଂପାନିର ସନନ୍ଦ ପୁନର୍ବିବେଚିତ ହେଲା ବେଳେ କଂପାନିର ଏକଚାଟିଆ ବ୍ୟବସାୟ ହେତୁ ଭାରତରେ ବାଣିଜ୍ୟ ବିସ୍ତାର କ୍ଷେତ୍ରରେ ବ୍ୟର୍ଥ ବଣିକମାନଙ୍କ ସହିତ "ନବାବମାନଙ୍କର" (ଲୁଣ୍ଠିତ ସାମଗ୍ରୀ ସମେତ ଭାରତରୁ ପ୍ରତ୍ୟାଗତ ଓ ପରେ

ପାର୍ଲିଆମେଣ୍ଟର ସଦସ୍ୟ ପ୍ରାର୍ଥୀ ହେବା ପାଇଁ ଯୋଗ୍ୟତା ଲାଭ କରିବା ନିମିତ୍ତ ପରିତ୍ୟକ୍ତ ମାହାଲ ଯେଉଁମାନେ ସେତେବେଳେ କ୍ରୟ କରୁଥିଲେ) ରାଜନୈତିକ ପ୍ରଭାବ ଦ୍ୱାରା ବିରକ୍ତ ଅଭିଜାତ ଭୂସ୍ୱାମୀମାନେ କଂପାନି ବିରୁଦ୍ଧରେ ମତ ପ୍ରକାଶ କରୁଥିଲେ । ହୁଇଗ୍‌ମାନେ କଂପାନିର ବିରୁଦ୍ଧତା କରୁଥିଲେ । ସେମାନେ କହୁଥିଲେ ଯେ, ରାଜା ଏବଂ କଂପାନି ମଧ୍ୟରେ ଘନିଷ୍ଠ ସଂଯୋଗ ବ୍ରିଟେନ୍ ସ୍ୱାଧୀନତାର ଭିତ୍ତି ପକ୍ଷରେ ବିପଦ ହୋଇ ଦେଖା ଦେଇଛି । ବ୍ରିଟେନ୍‌ର ପ୍ରଗତିଶୀଳମାନେ ମଧ୍ୟ ଲକ୍ଷ୍ୟ କରିଥିଲେ ଯେ, କଂପାନି ଉତ୍କୋଚ ଦାନ ଉପରେ ତିଷ୍ଠି ରହିଛି ଏବଂ ଦୁର୍ନୀତିରେ ଭରପୂର ହୋଇ ପଡ଼ିଛି । ହୁଇଗ୍‌ମାନଙ୍କ ଦ୍ୱାରା ଆଗତ ଫକ୍‌ସ ବିଲ ପାର୍ଲିଆମେଣ୍ଟରେ ଅନୁମୋଦନ ଲାଭ କଲା ନାହିଁ ଏବଂ ଫକ୍‌ସ ନିଜେ ମଧ୍ୟ ପ୍ରଧାନ ମନ୍ତ୍ରୀତ୍ୱ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ପ୍ରତିଦ୍ୱନ୍ଦ୍ୱିତାରେ ପିଟ୍‌ଙ୍କ ନିକଟରେ ପରାଜିତ ହେଲେ ।

୧୭୮୪ ଖ୍ରୀଷ୍ଟାବ୍ଦରେ ଅନୁମୋଦିତ ପିଟ୍‌ଙ୍କ ଭାରତ ବିଧି ବା ଇଣ୍ଡିଆ ଆକ୍ଟ କଂପାନିକୁ ସ୍ଥାୟୀ କ୍ଷମତାର ଏକ ବାହ୍ୟିକ ଅଧିକାର ପ୍ରଦାନ କରିଥିଲା । କିନ୍ତୁ ପ୍ରକୃତରେ ଭାରତ ଶାସନର ସମସ୍ତ ଯଥାର୍ଥ ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକର ଦାୟିତ୍ୱ ନ୍ୟସ୍ତ ଥିଲା ବ୍ରିଟିଶ୍ ମନ୍ତ୍ରୀସଭା କର୍ତ୍ତୃକ ନିଯୁକ୍ତ ନିୟନ୍ତ୍ରକ କାଉନ୍‌ସିଲ୍ ହାତରେ । ଏହା କ୍ରମଶଃ ଭାରତ ସଂକ୍ରାନ୍ତ ଏକ ପ୍ରକାରର ବିଷୟ ପାଇଁ ରୂପ ଲାଭ କରିଥିଲା । କିନ୍ତୁ ସେତେବେଳେ ସର୍ବାଧିକ ଲାଭଜନକ ନିୟୋଗାଧିକାର (ଭାରତକୁ ପ୍ରେରିତ ବ୍ରିଟିଶ୍ ସେନାବାହିନୀ ବ୍ୟତୀତ ସମସ୍ତ ବେସାମରିକ ଓ ସାମରିକ କର୍ମଚାରୀ ନିଯୁକ୍ତି) କଂପାନିର ପରିଚାଳକ ମଣ୍ଡଳୀ ହାତରେ ଥିଲା ।

୧୭୮୪ ଖ୍ରୀଷ୍ଟାବ୍ଦରେ ଫକ୍‌ସଙ୍କ ବିଲ୍‌ଟି ପ୍ରତ୍ୟାଖ୍ୟାତ ହେଲା ବେଳେ ପରାଜିତ ହୁଇଗ୍‌ମାନେ ପ୍ରତିହିଂସା ବଶତଃ ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଆଇନାନୁଗ ବ୍ୟବସ୍ଥା ଗ୍ରହଣ କରିବାକୁ ସିଦ୍ଧାନ୍ତ ନେଇଥିଲେ । ୧୭୮୮ ଖ୍ରୀଷ୍ଟାବ୍ଦରେ ହାଉସ୍ ଅଫ୍ ଲର୍ଡସ୍‌ର ଗୁରୁଗମ୍ଭୀର ପରିବେଶରେ ଶୁଣାଣି ଆରମ୍ଭ ହେଲା ପରେ ଏହା ଆଠ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ବ୍ରିଟେନ୍‌ର ବିଖ୍ୟାତ ବକ୍ତା ଏଡ୍‌ମଣ୍ଡ ବାର୍କ ଓ ରିଚାର୍ଡ ଶେରିଡନ୍ ବାଦୀପକ୍ଷ ସମର୍ଥନ କଲା ବେଳେ ଭାରତରେ କଂପାନିର କୁକର୍ମ ସଂପର୍କରେ ଅବହିତ ଫିଲିପ୍ ଫ୍ରାନ୍‌ସିସ୍ ସେମାନଙ୍କୁ ପ୍ରୟୋଜନୀୟ ତଥ୍ୟାଦି ଯୋଗାଇଥିଲେ । ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ନିଷ୍ଠୁରତା, ଅନ୍ୟାୟ ଓ ଦୁର୍ନୀତିର ଅଭିଯୋଗ ଅଣାଯାଇଥିଲା । ଏହା ଦ୍ୱାରା କଂପାନି ପ୍ରକୃତରେ କାଠ ଗଡ଼ାରେ ଛିଡ଼ା ହୋଇଥିଲା । ବାଦୀପକ୍ଷଙ୍କର ଇଚ୍ଛା ବିରୁଦ୍ଧରେ କେଶ୍‌ର ଶୁଣାଣି ସମୟରେ ବହୁ ତଥ୍ୟାଦି ଉପସ୍ଥାପନ କରାଯାଇଥିଲା । ସେସବୁ ତଥ୍ୟ ପ୍ରାଥମିକ ପୁଞ୍ଜି ସଞ୍ଚୟ କାଳରେ ବ୍ରିଟିଶ୍ କର୍ତ୍ତୃକ ଭାରତୀୟମାନଙ୍କ ଉପରେ ପ୍ରଭୁତ୍ୱ କାଏମ ଓ ଶୋଷଣ ପାଇଁ ଯେଉଁସବୁ ବ୍ୟବସ୍ଥା ଅବଲମ୍ବନ କରିଥିଲେ ତା' ଉପରେ ଯଥେଷ୍ଟ ଆଲୋକପାତ କରିଥିଲା ।

କେବଳ ଏହି କାରଣରୁ ଭାରତରେ ଔପନିବେଶିକ ଶୋଷଣର ଫଳଭୋଗୀ ବ୍ରିଟିଶ୍ ବୁର୍ଜୁଆମାନେ ହେଷ୍ଟିଂସ୍ ଏବଂ କଂପାନି ବିରୁଦ୍ଧରେ କୌଣସି ଶାସ୍ତିମୂଳକ ବ୍ୟବସ୍ଥା ଗ୍ରହଣ କରୁ ନଥିଲେ । ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଯେକୌଣସି ନିନ୍ଦା ହେଲା ଭାରତକୁ ଜୟ କରିବା ଏବଂ ଶୋଷଣ କରିବା ପାଇଁ ବ୍ରିଟିଶ୍‌ମାନଙ୍କ ଦ୍ୱାରା ଅନୁସୃତ ନୀତି ପ୍ରତି ନିନ୍ଦା ସ୍ୱରୂପ । ହେଷ୍ଟିଂସ୍ ସମସ୍ତ ଅଭିଯୋଗରୁ ମୁକ୍ତ ହୋଇ ଯାଇଥିଲେ ।

ପରେ ୧୮୧୩ ମସିହାରେ କଂପାନି ସନନ୍ଦର ନବୀକରଣ ବେଳ ଆସିଗଲା କ୍ଷଣି ପୁଣି

ପାର୍ଲିଆମେଣ୍ଟରେ ଭାରତର ଶାସନ ନେଇ କଳହ ଆରମ୍ଭ ହୋଇ ଯାଇଥିଲା । ମହୀଶୂର ବିଜୟ, ପ୍ରଧାନ ପ୍ରଧାନ ମରହଟ୍ଟା ରାଜ୍ୟଗୁଡ଼ିକୁ ଅଧିକାର ଓ ଦ୍ୱିତୀୟ ଇଂରେଜ-ମରହଟ୍ଟା ଯୁଦ୍ଧ ସେତେବେଳକୁ ଶେଷ ହୋଇଥିଲା ଏବଂ ସର୍ବାଧିକ ଲାଭଜନକ ବଜାର ହିସାବରେ ଭାରତକୁ ଶୋଷଣ କରିବାର ପୂର୍ବସର୍ତ୍ତ ପରିପକ୍ୱ ହୋଇ ଉଠୁଥିଲା । ବ୍ରିଟିଶ୍ ବୁର୍ଜୁଆ ଶ୍ରେଣୀ ସାର୍ବିକ ଭାବେ କାହିଁକି କଂପାନିର ଏକଚାଟିଆ ବାଣିଜ୍ୟର ବିରୋଧିତା କରୁଥିଲେ ତା'ର ବ୍ୟାଖ୍ୟା ଏଇଥିରୁ ମିଳିଥାଏ । ୧୮୧୩ ଖ୍ରୀଷ୍ଟାବ୍ଦରେ ଭାରତ ଆଇନ୍ ଭାରତ ଶାସନ ସଂପର୍କିତ କଂପାନିର ସୁବିଧାରାଜିକୁ ଅତୁଟ ରଖି, ଚୀନ୍ ସହିତ ଚା ବ୍ୟବସାୟ ବ୍ୟତୀତ ଆଉ ସମସ୍ତ କ୍ଷେତ୍ରରେ କଂପାନିର ଏକଚାଟିଆ ବାଣିଜ୍ୟ ସୁଯୋଗକୁ ପ୍ରତ୍ୟାହାର କରି ନେଇଥିଲା । ଏଥି ସଙ୍ଗେ ସଙ୍ଗେ କଂପାନିର ରାଜନୈତିକ କାର୍ଯ୍ୟକଳାପର ସାଂବିଧାନିକ ତତ୍ତ୍ୱାବଧାରକ ସଂସ୍ଥା ହିସାବରେ ନିୟନ୍ତ୍ରକ କାଉନ୍‌ସିଲର ଭୂମିକାକୁ ମଧ୍ୟ ସଂପ୍ରସାରିତ କରାଯାଇଥିଲା । ଅର୍ଥାତ୍, ଭାରତ କ୍ରମବର୍ଦ୍ଧମାନ ମାତ୍ରାରେ କଂପାନିର ଉପନିବେଶରୁ ବ୍ରିଟିଶ୍ ବୁର୍ଜୁଆମାନଙ୍କର ଉପନିବେଶରେ ପରିଣତ ହେଉଥିଲା ।

୧୮୩୩ ଖ୍ରୀଷ୍ଟାବ୍ଦରେ କଂପାନିର ଅବସ୍ଥାନରେ ଆଉରି ପରିବର୍ତ୍ତନ ଅଣାଯାଇଥିଲା । ହୁଇଗ୍ ଦଳର ଉଦ୍ୟୋଗରେ ପ୍ରବର୍ତ୍ତିତ ୧୮୩୩ ଖ୍ରୀଷ୍ଟାବ୍ଦର ଆଇନ୍ ଅନୁଯାୟୀ ଭାରତ ଶାସନ କରିବାରେ କଂପାନିର ଅଧିକାର ଅତୁଟ ରହିଥିଲେ ମଧ୍ୟ ବଙ୍ଗଳା କାଉନ୍‌ସିଲରେ ରାଜାଙ୍କ ଦ୍ୱାରା ନିଯୁକ୍ତ ଜଣେ କର୍ମଚାରୀର ପଦ ସୃଷ୍ଟି କରାଯାଇଥିଲା । ଫଳରେ ଏହା ଅଧିକତର ସରକାରୀ ନିୟନ୍ତ୍ରଣକୁ ଆସିଥିଲା । ସମଗ୍ର ଭାରତ ପାଇଁ ଆଇନ୍ ପ୍ରଣୟନ କରିବା ଥିଲା ଏହି କର୍ମଚାରୀଙ୍କର ବିଶେଷ ଦାୟିତ୍ୱ । ଏ ଦିଗରେ ପ୍ରଥମ ଆଇନ୍‌ଟିର ଉପଦେଷ୍ଟା ଥିଲେ ଉଦାରନୈତିକ ଐତିହାସିକ ଟି.ବି. ମେକଲ (୧୮୦୦-୧୮୫୯) । କିନ୍ତୁ ତାଙ୍କ ଦ୍ୱାରା ପ୍ରଣୀତ ଫୌଜଦାରୀ ଆଇନ୍‌ଟିକୁ କାର୍ଯ୍ୟକାରୀ କରାଯାଇ ନଥିଲା ।

ଭାରତର ଔପନିବେଶିକ ଶୋଷଣ ଯନ୍ତ୍ରଟି କ୍ରମାନ୍ୱୟରେ ସଂଗଠିତ ହୋଇଥିଲା ଏବଂ ଏହି ପ୍ରକ୍ରିୟାଟିରେ କୌଣସି ମୌଳିକ ପରିବର୍ତ୍ତନ ଘଟି ନଥିଲା । ବଣିକର ମାନଦଣ୍ଡ ରାଜଦଣ୍ଡ ହୋଇ ଉଠିଲା ଏବଂ ସେମାନେ ଯେଉଁସବୁ ସଂପୂର୍ଣ୍ଣ ନୂତନ କାର୍ଯ୍ୟକଳାପର ସମ୍ମୁଖୀନ ହେଲେ ଏସବୁର ସଂପାଦନ ପାଇଁ କୌଣସି ନୂତନ ଶାସନ ଯନ୍ତ୍ର ପ୍ରତିଷ୍ଠା କରିବା ପରିବର୍ତ୍ତେ କେବଳ ବିଦ୍ୟମାନ ବ୍ୟବସ୍ଥା ସହିତ ନିଜକୁ ଖାପ ଖୁଆଇ ନେଇଥିଲେ । ଜାଲ ଭଳି ବ୍ୟାପିଥିବା ବାଣିଜ୍ୟ ସଂସ୍ଥାଗୁଡ଼ିକ କ୍ରମଶଃ ବିଶାଳ ଏକ ଦେଶକୁ ଶାସନ କଲା ଭଳି ଅମଲାତାନ୍ତ୍ରିକ ଯନ୍ତ୍ରରେ ପରିଣତ ହୋଇଥିଲା । ଏହି ଯନ୍ତ୍ରଟି ଥିଲା ଦୁର୍ବହ, ଅପାରଦର୍ଶୀ ଏବଂ କ୍ଷେତ୍ରବିଶେଷରେ ଶାସନ କାର୍ଯ୍ୟରେ ବାଧା ସ୍ୱରୂପ । ଏହାର ସମସ୍ତ କାର୍ଯ୍ୟକଳାପ ଉପରେ କଠୋର ନିୟନ୍ତ୍ରଣ ସତ୍ତ୍ୱେ ଏଥିରେ ଔପନିବେଶିକ ଅମଲମାନଙ୍କର ଯଥେଚ୍ଛାଚାର ପାଇଁ ବହୁ ସୁଯୋଗ ଥିଲା ଏବଂ ତା'ଛଡ଼ା ବିପୁଳ ପରିମାଣର ସଂପଦ ମଧ୍ୟ ଅପବ୍ୟୟିତ ହେଉଥିଲା । ଭାରତ ଏବଂ ବ୍ରିଟେନ୍, ଉଭୟ ସ୍ଥାନରେ କଂପାନିର ପ୍ରଶାସନିକ ସଂସ୍ଥା ଥିଲା । ବ୍ରିଟେନ୍‌ରେ କଂପାନି ଗୋଟିଏ ପରିଚାଳକ ମଣ୍ଡଳୀର ନେତୃତ୍ୱରେ ପରିଚାଳିତ ହେଉଥିଲା । ଶେୟାର ମାଲିକମାନଙ୍କର ଏକ ସଭା ଏମାନଙ୍କୁ ନିର୍ବାଚିତ କରୁଥିଲା ଏବଂ ଶେୟାରର ମୂଲ୍ୟ ଅନୁଯାୟୀ ଜଣେ ଏକରୁ ଚାରି ପର୍ଯ୍ୟନ୍ତ ଭୋଟ ଦେଇ ପାରୁଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୮୩୨ ଖ୍ରୀଷ୍ଟାବ୍ଦରେ କଂପାନିର ଅର୍ଦ୍ଧେକରୁ ବେଶି ଶେୟାର ମାଲିକାନାର ଭିତ୍ତିରେ ୪୭୪ଜଣ ପ୍ରଭାବଶାଳୀ ଶେୟାର ମାଲିକ କଂପାନିର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିଲେ । ମାର୍କସ୍‌ଙ୍କ ଭାଷାରେ ଏହି "ପରିଚାଳକ ମଣ୍ଡଳୀ ଥିଲା ବୃହତ୍ ବ୍ରିଟିଶ୍ ପୁଞ୍ଜି

ମାଲିକମାନଙ୍କର ଅଧସ୍ତନ ସଂସ୍ଥା" । * କଂପାନିର ଏହି ପରିଚାଳକମାନଙ୍କର ଆୟ ଓ କ୍ଷମତାର ଏକ ପ୍ରଧାନ ଉତ୍ସ ଥିଲା ନିଯୁକ୍ତି କରିବାର ଅଧିକାର । ଏହି ପରିଚାଳକମାନେ ଅର୍ଥ, ରାଜନୈତିକ ପ୍ରଭାବ ବା ପାର୍ଲିଆମେଣ୍ଟ ଆସନର ବିନିମୟରେ ଚାକିରି ବ୍ୟବସ୍ଥା କରୁଥିଲେ । ପରିଚାଳକ ମଣ୍ଡଳୀ କେତେକ କମିଟିରେ ବିଭକ୍ତ ଥିଲା ଏବଂ ଏସବୁ ଭାରତର ଔପନିବେଶିକ ନୀତି ସଂକ୍ରାନ୍ତ ଯାବତୀୟ ସମସ୍ୟା ସଂପର୍କରେ ପୁଙ୍ଖାନୁପୁଙ୍ଖ ନିର୍ଦ୍ଦେଶ ପଠାଉଥିଲା ଏବଂ ପ୍ରେସିଡେନ୍‌ସି କାଉନ୍‌ସିଲରୁ ଯାଉଥିବା ପ୍ରଶ୍ନାଦିର ଉତ୍ତର ଦେଉଥିଲା ।

ଭାରତକୁ ଶାସନ କରିବାର ଏହି ଜଟିଳ ଯନ୍ତ୍ରଟି ଥିଲା ଅତ୍ୟନ୍ତ ଅଚଳମାନ ଏବଂ ମନ୍ଥର । ଭାରତରେ କୌଣସି ଚିଠି ଇଂଲଣ୍ଡରେ ପହଞ୍ଚିବାକୁ ଛଅ ମାସରୁ ଆଠ ମାସ ପର୍ଯ୍ୟନ୍ତ ଲାଗୁଥିଲା । ତା'ପରେ ପରିଚାଳକ ମଣ୍ଡଳୀ ଓ ନିୟନ୍ତ୍ରକ କାଉନ୍‌ସିଲରେ କୌଣସି ପ୍ରଶ୍ନ ଆଲୋଚନା ହୋଇ ଏହି ଦୁଇ ସଂସ୍ଥା ମଧ୍ୟରେ ମତ ପାର୍ଥକ୍ୟର ଆପୋଷ ଆଲୋଚନା ପରେ ଏହି ଚିଠିର ଉତ୍ତର ପାଇବାକୁ କେଇ ମାସ, ଏପରିକି, ଏକାଧିକ ବର୍ଷ ଲାଗି ଯାଉଥିଲା । ଇତିମଧ୍ୟରେ ଭାରତର ପରିସ୍ଥିତିରେ, ହୁଏତ, ବ୍ୟାପକ ପରିବର୍ତ୍ତନ ଘଟି ଯାଉଥିଲା । ଅର୍ଥାତ୍, କାର୍ଯ୍ୟତଃ ବଙ୍ଗଳା, ମାଦ୍ରାଜ ଓ ବମ୍ବେ ପ୍ରେସିଡେନ୍‌ସିର ଗଭର୍ଣ୍ଣର ଓ ସେମାନଙ୍କ କାଉନ୍‌ସିଲଗୁଡ଼ିକ ଦୈନନ୍ଦିନ ସମସ୍ୟାର ସମାଧାନ କରି ନେଉଥିଲେ ।

ପରିଚାଳକ ମଣ୍ଡଳୀ ସହିତ ପ୍ରତ୍ୟେକ ପ୍ରେସିଡେନ୍‌ସିର ଯୋଗାଯୋଗ ରକ୍ଷା କରିବାର ଅଧିକାର ରହିଥିଲା ଏବଂ ପ୍ରେସିଡେନ୍‌ସିର ସିଦ୍ଧାନ୍ତଗୁଡ଼ିକୁ ଜନସାଧାରଣଙ୍କ ସମକ୍ଷରେ ପ୍ରଚାର କରାଯାଉଥିଲା । ସେସବୁ ସିଦ୍ଧାନ୍ତ ଭାରତର ସୁପ୍ରିମ କୋର୍ଟ କର୍ତ୍ତୃକ ଅନୁମୋଦିତ ହେଲା ପରେ ଉଲ୍ଲିଖିତ ପ୍ରେସିଡେନ୍‌ସିରେ ସର୍ବତ୍ର କାର୍ଯ୍ୟକାରୀ ହେଉଥିଲା । ଅର୍ଥାତ୍, ବଙ୍ଗଳା, ମାଦ୍ରାଜ ଓ ବମ୍ବେରେ ବିଭିନ୍ନ ନିୟମ ଚାଲୁଥିଲା ଏବଂ ଫଳତଃ ବାଣିଜ୍ୟ, ଶିଳ୍ପ ଓ ବେସାମରିକ କାର୍ଯ୍ୟକର୍ମରେ ବିଭିନ୍ନ ଅସୁବିଧା ଦେଖା ଦେଉଥିଲା । ବ୍ରିଟିଶ୍ ବୁର୍ଜୁଆ ଭାରତରେ ସମସ୍ତ ବ୍ରିଟିଶ୍ ଅଞ୍ଚଳ ପାଇଁ ଏକ ରକମର ଆଇନ୍ ପ୍ରବର୍ତ୍ତନ କରିବାକୁ ଦାବି ଜଣାଇଥିଲା । କହିବା ବାହୁଲ୍ୟ ଯେ, ଶାସନ ଯନ୍ତ୍ରର ବଡ଼ ବଡ଼ ଚାକିରିଗୁଡ଼ିକ ବ୍ରିଟିଶ୍‌ମାନଙ୍କର କରାୟତ୍ତ ଥିଲା । ଭାରତୀୟମାନେ ଅତି ସାମାନ୍ୟ ପଦର ଅଧିକାରୀ ଥିଲେ ।

ଔପନିବେଶିକ ପ୍ରଶାସନ ଯନ୍ତ୍ରରେ ସିପାହୀ ସେନାଦଳ ଥିଲେ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ଏମାନଙ୍କ ଦ୍ୱାରା ବ୍ରିଟିଶ୍‌ମାନେ ଭାରତ ଅଧିକାର କରିଥିଲେ ଏବଂ ଏହି ନୂତନ ପରିସ୍ଥିତିରେ ଏହିମାନଙ୍କ ସାହାଯ୍ୟ ବଳରେ ଏ ଦେଶକୁ ନିଜ ନିୟନ୍ତ୍ରଣରେ ରଖିଥିଲେ । ୧୮୩୦ ଖ୍ରୀଷ୍ଟାବ୍ଦରେ ଏହି ସୈନ୍ୟ ସଂଖ୍ୟା ଥିଲା ୨ ଲକ୍ଷ ୨୩ ହଜାର ୫ଶହ । ତୃତୀୟ ଇଂରେଜ-ମରହଟ୍ଟା ଯୁଦ୍ଧ (୧୮୧୭-୧୮୧୯) ପରେ ତିରିଶ ବର୍ଷ ପର୍ଯ୍ୟନ୍ତ ଭାରତ ଆଉ କୌଣସି ଯୁଦ୍ଧରେ ବିଜଡ଼ିତ ହୋଇ ନଥିଲା ଏବଂ ଦେଶର ସୀମାନ୍ତ ବାହାରେ ସୈନ୍ୟବାହିନୀର କ୍ଷୁଦ୍ର ଏକ ଅଂଶ କେବଳ ଯୁଦ୍ଧରେ ଲିପ୍ତ ହୋଇଥିଲା । ତା ସତ୍ତ୍ୱେ ବ୍ରିଟିଶ୍‌ମାନେ ସିପାହୀ ବାହିନୀକୁ ଭାଙ୍ଗି ଦେଇ ନଥିଲେ ଏବଂ ଏମାନେ ମୂଳତଃ ଦେଶର ପ୍ରୟୋଜନୀୟ ପୁଲିସ୍‌ର କାର୍ଯ୍ୟ ଚଳାଉଥିଲେ । ବେଳେ ବେଳେ ରାଜସ୍ୱ ଆଦାୟରେ ସହାୟତାର

---

* K. Marx, F. Engels, "Werke", Band 9, S. 185.

ପ୍ରୟୋଜନ ପଡ଼ିଲେ, ଏହିମାନଙ୍କୁ ପଠାଯାଉଥିଲା । ଅବଶ୍ୟ, ଏହା ତୁଳନାରେ "ଅସନ୍ତୋଷ" ବିରୁଦ୍ଧରେ, ଅର୍ଥାତ୍, ଭାରତରେ ବ୍ରିଟିଶ୍ ଶାସନର ବିରୋଧିତାକୁ ଦମନ କରିବା କାର୍ଯ୍ୟରେ କର୍ତ୍ତୃପକ୍ଷ ଏମାନଙ୍କୁ ପ୍ରାୟ ଲଗାଉଥିଲେ ।

ଭାରତର ଶୋଷଣ ଯନ୍ତ୍ରରେ ବିଗ୍ରର ବ୍ୟବସ୍ଥାର ଭୂମିକାଟି ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ବିଭାଗରେ ଉତ୍କୋଚ ଓ ଦୁର୍ନୀତିର ବ୍ୟାପକ ଅନୁପ୍ରବେଶ ଘଟିଥିଲା । ବିଗ୍ରର ବ୍ୟବସ୍ଥା ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସାକ୍ଷୀର ଜବାନ୍‌ବନ୍ଦୀକୁ ସହଜରେ କିଣାଯାଇ ପାରୁଥିଲା ବା ବଳ ପ୍ରୟୋଗ ଦ୍ୱାରା ଆଦାୟ କରାଯାଇ ପାରୁଥିଲା । ବେସାମରିକ କ୍ଷେତ୍ରରେ ଅଦାଲତୀ ଅମଲାତନ୍ତ୍ର ଥିଲା ଅନାଗ୍ରରର ଘଟା, ଏଥିରେ ବର୍ଷ ପରେ ବର୍ଷ କେଶ୍ ନିଷ୍ପତ୍ତି ହେଉ ନଥିଲା ଏବଂ ଇତ୍ୟବସରରେ ଅସ୍ପଷ୍ଟ ଭାବେ ଚିହ୍ନିତ ବା ଅସ୍ୱୀକୃତ କୃଷକର ମାଲିକାନାରେ ବହୁ ଜଟିଳତା ଦେଖା ଦେଉଥିଲା । ଆଇନ୍ ବ୍ୟବସ୍ଥାର ଏହି ଅଯୋଗ୍ୟତା ଇନ୍ଧନ ଯୋଗାଉଥିଲା ଗ୍ରାମ୍ୟ ସମାଜର ବିଲୁପ୍ତି ଦିଗରେ । ଏହାର କାରଣ, ବହିରାଗତ କୃଷକ, ଯେଉଁମାନେ ଗ୍ରାମରେ ଖଣ୍ଡେ ଖଣ୍ଡେ ଜମି କିଣୁଥିଲେ, କିନ୍ତୁ ସମାଜର ସାଧାରଣ ଦାବି ପୂରଣ କରୁ ନଥିଲେ, ଏହା ସେମାନଙ୍କୁ ଆନୁକୂଲ୍ୟ ପ୍ରଦାନ କରୁଥିଲା । ପ୍ରସଙ୍ଗତଃ ଗ୍ରାମାଞ୍ଚଳରେ ସରକାର ଦ୍ୱାରା ନିଯୁକ୍ତ ପୁଲିସ୍ କର୍ମଗ୍ରରୀମାନଙ୍କର ପକ୍ଷପାତମୂଳକ ପ୍ରଶାସନ ବିଷୟଟି ଉଲ୍ଲେଖଯୋଗ୍ୟ । କୃଷକମାନେ ଏମାନଙ୍କୁ ଡକାଏତ ଠାରୁ ଅଧିକ ଭୟ କରୁଥିଲେ । ଗ୍ରାମ ସମାଜର ଉତ୍‌ଖାତ ସାଧନ ଓ ଜମିର ବ୍ୟକ୍ତିଗତ ମାଲିକାନାରେ ଉତ୍ସାହ ଦାନର ଅନୁକୂଳରେ ପରିଗ୍ରଳିତ ବ୍ରିଟିଶ୍‌ମାନଙ୍କ ନୀତି କୃଷକମାନଙ୍କ ଶୋଷଣକୁ ତୀବ୍ରତର କରି ତୋଳିଥିଲା ।

## ଭାରତର ଅର୍ଥନୈତିକ ଉନ୍ନୟନ – ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ

ବ୍ରିଟେନ୍‌ରେ ଶିଳ୍ପ ବୁର୍ଜୁଆମାନେ ସେମାନଙ୍କ ଅବସ୍ଥାନକୁ ସୁଦୃଢ଼ କରି ନେଲା ପରେ ଏହି ବୁର୍ଜୁଆମାନଙ୍କର ସ୍ୱାର୍ଥାନୁକୂଳରେ ଭାରତର ଅର୍ଥନୈତିକ ଉନ୍ନୟନରେ ଆଉରି ପରିବର୍ତ୍ତନ ଘଟିଥିଲା । ଭାରତବର୍ଷ କ୍ରମଶଃ ବ୍ରିଟିଶ୍ ପଣ୍ୟର ବଜାର ଓ ବ୍ରିଟିଶ୍ ଶିଳ୍ପର କଞ୍ଚାମାଲର ଉତ୍ସରେ ପରିଣତ ହେବା ଅନିବାର୍ଯ୍ୟ ଥିଲା ।

ବ୍ରିଟେନ୍‌ର ଶୁଳ୍କ ନୀତି ଥିଲା ଅଳ୍ପ ଶୁଳ୍କରେ ଭାରତକୁ ବ୍ରିଟିଶ୍ ପଣ୍ୟ ରପ୍ତାନିର ସହାୟକ । କିନ୍ତୁ ଭାରତରୁ ବ୍ରିଟେନ୍‌କୁ କୁଟୀରଶିଳ୍ପଜାତ ଜିନିଷ ଆମଦାନି କରିବାରେ ଅତ୍ୟଧିକ ଶୁଳ୍କ ହାର ପ୍ରତିବନ୍ଧକ ସୃଷ୍ଟି କରୁଥିଲା । ଭାରତକୁ ବ୍ରିଟେନ୍‌ର ବସ୍ତ୍ର ଆମଦାନି କରିବାରେ ଶତକଡ଼ା ଦୁଇରୁ ସାଢ଼େ ତିନି ଭାଗ ଶୁଳ୍କ ଦେବାକୁ ପଡ଼ୁଥିଲା ବେଳେ ବ୍ରିଟେନ୍‌କୁ ଆସୁଥିବା ଭାରତୀୟ ବସ୍ତ୍ରର ଶୁଳ୍କ ଥିଲା ଶତକଡ଼ା କୋଡ଼ିଏରୁ ତିରିଶ ଭାଗ । ତେଣୁ ଆଗ ଭଳି ବସ୍ତ୍ର ରପ୍ତାନି ବଦଳରେ ଭାରତ ବସ୍ତ୍ର ଆମଦାନି କରିବାକୁ ବାଧ୍ୟ ହୋଇଥିଲା । ଅନ୍ୟାନ୍ୟ ପଣ୍ୟ କ୍ଷେତ୍ରରେ ମଧ୍ୟ ଅନୁରୂପ ପରିସ୍ଥିତି ଦେଖା ଦେଇଥିଲା । ବ୍ରିଟିଶ୍ ଶୁଳ୍କ ନୀତି ଅନୁଯାୟୀ ସୁଇଡେନ୍ ଓ ରୁଷିଆରୁ ଭାରତକୁ ଇସ୍‌ପାତ ଆମଦାନି କରିବା ଲାଭଜନକ ବିବେଚିତ ହୋଇଥିଲା ଏବଂ ପୋର୍ଟୋ-ନୋଭୋରେ ଜନୈକ ବ୍ରିଟିଶ୍ ଇଂଜିନିୟରଙ୍କ ଦ୍ୱାରା ନିର୍ମିତ ଛୋଟ ଢଳେଇ କାରଖାନାର ଅବସ୍ଥା ପ୍ରାରମ୍ଭରେ ଖୁବ୍ ଅନୁକୂଳ (ଉନ୍ମୁକ୍ତ ଖଣିରୁ

ଖଣିଜ ଉତ୍ତୋଳନ, ଅପର୍ଯ୍ୟାପ୍ତ କାଠ ସରବରାହ, ବନ୍ଦରର ସୁବିଧା, ଆଦି) ବିବେଚିତ ହେବା ସତ୍ତ୍ୱେ ବର୍ତ୍ତମାନ ଏସବୁ ଅଲାଭଜନକ ହୋଇ ଉଠିଥିଲା ଏବଂ କେଇ ବର୍ଷ ପରେ ତାକୁ ବନ୍ଦ କରି ଦିଆଯାଇଥିଲା । କଲିକତାର ଜାହାଜ ନିର୍ମାଣ କ୍ଷେତ୍ରରେ ମଧ୍ୟ ଏକାରକମର ପରିଣତି ଘଟିଥିଲା । କାରଣ ଏଠାରେ ନିର୍ମିତ ଜାହାଜଗୁଡ଼ିକ ବ୍ରିଟେନ୍‌ରେ ତିଆରି ଜାହାଜର ସମକକ୍ଷ ହେଉ ନଥିଲା । ବମ୍ବେରେ ଜାହାଜ ନିର୍ମାଣ ଇଷ୍ଟ ଇଣ୍ଡିଆ କଂପାନିର ସହଯୋଗୀ ପାର୍‌ସୀମାନଙ୍କ ହସ୍ତରେ ଥିବା ହେତୁ ଓ ଚୀନ୍ ସହିତ ବାଣିଜ୍ୟ ଅନୁକୂଳ ଥିବାରୁ ହିଁ କେବଳ ଏହି ଶିଳ୍ପର ଉନ୍ନତି ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

ଭାରତବର୍ଷରେ ବ୍ରିଟିଶ୍ ସୂତାବସ୍ତ୍ର ସ୍ଥାନୀୟ ବସ୍ତ୍ର ତୁଳନାରେ ଅଳ୍ପ ଦାମ୍‌ରେ ବିକ୍ରି ହେଉଥିଲେ ମଧ୍ୟ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ସହର ଏବଂ ବନ୍ଦର ସଂଲଗ୍ନ କେତେକ ଗ୍ରାମରେ କେବଳ ଏହାର ବ୍ୟାପକ ଚାହିଦା ରହିଥିଲା । ପୂର୍ବତନ ବଜାରରୁ ବଞ୍ଚିତ ଭାରତୀୟ କାରିଗରମାନେ ସେମାନଙ୍କ ହାତବୁଣା ଲୁଗାପଟା ବ୍ରିଟେନ୍‌ର କାରଖାନାରେ ଉତ୍ପନ୍ନ ଲୁଗାର ସମାନ ମୂଲ୍ୟରେ ବିକ୍ରି କରିବାକୁ ବାଧ୍ୟ ହେଉଥିଲେ । ଏହା ଫଳରେ କାରିଗରମାନଙ୍କର ଜୀବିକାର ମାନରେ ଖୁବ୍ ଅବନତି ଘଟିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ମାଡ୍ରାଜ ପ୍ରେସିଡେନ୍‌ସିରେ ୧୮୧୫-୧୮୪୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ତନ୍ତୁବାୟମାନଙ୍କର ମୁଣ୍ଡପିଛା ଆୟ ହ୍ରାସ ପାଇଥିଲା ଶତକଡ଼ା ୭୫ ଭାଗ । ୧୮୨୦ ଦଶକରେ ଭାରତକୁ ବ୍ରିଟେନ୍‌ର ଶିଳ୍ପଜାତ ସୂତା ଆମଦାନୀ ଆରମ୍ଭ କରାଗଲା ଏବଂ ଏହି ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଭାରତକୁ ଆମଦାନୀ ହେଉଥିବା ମୋଟ ସୂତାତିଆରି ପଣ୍ୟର ଏକଷଷ୍ଠାଂଶରେ ପହଞ୍ଚିଥିଲା । ତନ୍ତୁବାୟମାନଙ୍କ ପାଇଁ ସୂତା ସଂଗ୍ରହକାରୀ ବ୍ୟବସାୟୀ ଓ ମହାଜନମାନେ ତନ୍ତୁବାୟମାନଙ୍କୁ ଅଧିକ ଶୋଷଣ କରିବାକୁ ଲାଗିଲେ । ୧୮୪୪ ଖ୍ରୀଷ୍ଟାବ୍ଦରେ ତନ୍ତୁବାୟମାନଙ୍କ ମଧ୍ୟରୁ ଶତକଡ଼ା ୬୦ ଭାଗ ଏହି ମଧ୍ୟସ୍ଥ ବ୍ୟବସାୟୀମାନଙ୍କ ନିକଟରେ ଋଣବଦ୍ଧ ହୋଇ ପଡ଼ିଥିଲେ ।

କୃଷକମାନଙ୍କୁ ଶୋଷଣ କରିବାର ସାମନ୍ତବାଦୀ ପଦ୍ଧତି କାର୍ଯ୍ୟରେ ଲଗାଇ ଏବଂ ତାକୁ ଆଉରି ତୀବ୍ରତର କରି, କୌଣସି ପୂର୍ବ ପୁଞ୍ଜି ଲଗାଣର ଝଞ୍ଜଟ ବିନା ବ୍ରିଟିଶ୍‌ମାନେ କ୍ଷୁଦ୍ର କୃଷକମାନଙ୍କ ନିକଟରୁ କଞ୍ଚାମାଲ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ । ସମ୍ଭବତଃ, ଏହି କାରଣରୁ ଭାରତରେ କୌଣସି ବଡ଼ ଧରଣର କୃଷି ଗଢ଼ି ଉଠି ନଥିଲା (ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଆସାମର ଜନବିରଳ ଅଞ୍ଚଳରେ ଚା ଚାଷ ବ୍ୟତୀତ) । ଅଫିମ ଓ ନୀଳ କ୍ରୟ କରିବା ପାଇଁ ଜୋରଜବରଦସ୍ତମୂଳକ ଚୁକ୍ତିର ବ୍ୟାପକ ପ୍ରଚଳନ କରାଯାଉଥିଲା । ନିଜ ଖେତରେ ଏହିସବୁ ଫସଲ ଫଳାଉଥିବା ଚାଷୀମାନେ ବସ୍ତୁତଃ ଭୂମିଦାସରେ ପରିଣତ ହୋଇଥିଲେ । ନୀଳ ଆବାଦକାରୀ ବଣିକ ବା "ନୀଳକରମାନେ" କୃଷକମାନଙ୍କୁ ଦାଦନ ଦେଇ ଅସହାୟ କରି ପକାଉଥିଲେ । ପରେ ପକ୍ଷପାତୀ ଚୁକ୍ତିର ସର୍ତ୍ତବଳରେ ଅତି ଅଳ୍ପ ଦାମ୍‌ରେ ଏମାନଙ୍କର ପୂରା ଫସଲକୁ ସେମାନେ କିଣି ନେଉଥିଲେ । ଅର୍ଥାତ୍, କୃଷକମାନେ କେବେହେଲେ ଋଣ ପରିଶୋଧ କରିବାକୁ ସମର୍ଥ ହେଉ ନଥିଲେ । ପୈତୃକ ଋଣ ଭାର ସନ୍ତାନସନ୍ତତିମାନଙ୍କ ଉପରେ ଚାପି ବସୁଥିଲା । ପ୍ରତିଟି ନୀଳକର ନିଜର ଗୁଣ୍ଡାବାହିନୀ ରଖୁଥିଲେ ଏବଂ ସେମାନେ କୃଷକମାନଙ୍କୁ ପହରା ଦେଉଥିଲେ, ପଳାତକମାନଙ୍କୁ ନିଜ କ୍ଷେତକୁ ଫେରେଇ ଆଣୁଥିଲେ ବା ପାଖ ଖମାରର କ୍ଷେତ ମଜୁରିଆମାନଙ୍କୁ ଜବରଦସ୍ତ ନିଜ କ୍ଷେତରେ ଖଟାଉଥିଲେ । ଏହିସବୁ ବେଆଇନ୍ ପଦ୍ଧତି, ଲୁଣ୍ଠନ ଓ ଅତ୍ୟାଚାର ବିରୁଦ୍ଧରେ

କୃଷକମାନଙ୍କର ବିକ୍ଷୋଭ ୧୭୮୦ ଦଶକଗୁଡ଼ିକରୁ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବାରମ୍ବାର "ନୀଳ ବିଦ୍ରୋହ" ମଧ୍ୟରେ ଆତ୍ମପ୍ରକାଶ କରିଥିଲା । ଏହିସବୁ ବିଦ୍ରୋହ ପରେ ବେଳେ ବେଳେ କୃଷକମାନେ ସେମାନଙ୍କ ଦାବି ହାସଲ କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ରାସାୟନିକ ନୀଳ ଉଦ୍‌ଭାବନ ଓ ଫଳତଃ, ନୀଳ ଚାଷ ଅଲାଭଜନକ ନହେଲା ପର୍ଯ୍ୟନ୍ତ ପରିସ୍ଥିତିରେ କୌଣସି ପରିବର୍ତ୍ତନ ଘଟି ନଥିଲା ।

୧୮୨୦ ଦଶକରେ ବ୍ରିଟିଶ୍ ଖମାର ମାଲିକମାନେ ବିହାରର କୃଷକମାନଙ୍କୁ ଅଧିକତର ଆଖୁ ଚାଷ କରିବାକୁ ପ୍ରୋତ୍ସାହିତ କରିଥିଲେ । ଏଥି ସଙ୍ଗେ ସଙ୍ଗେ ବେରାରରେ କଂପାନିର ଉଦ୍ୟୋଗରେ ଲମ୍ବା ତନ୍ତୁ ବିଶିଷ୍ଟ ତୂଳା ଚାଷ କରିବାକୁ ପ୍ରଚେଷ୍ଟା ହୋଇଥିଲା । ତା'ଛଡ଼ା ଇଟାଲୀରୁ ବଙ୍ଗଳାକୁ ଗୋଟିପୋକ ଆମଦାନୀ କରିବା ସମେତ ମହୀଶୂରରେ କଫି ଏବଂ ତମାଖୁ ଚାଷ ମଧ୍ୟ ସେମାନେ ଆରମ୍ଭ କରିଥିଲେ । କିନ୍ତୁ ଉଚ୍ଚ କୋଟୀର କଞ୍ଚାମାଲ ସରବରାହକାରୀର ଭୂମିକା ପାଳନ ସହିତ ଭାରତୀୟ ଅର୍ଥନୀତିକୁ ଖାପ ଖୁଆଇବା ଦିଗରେ ଏହିସବୁ ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ ସାଫଲ୍ୟ ଅର୍ଜନ କରି ପାରି ନଥିଲା । ତା'ର କାରଣ ହେଲା, ନିମ୍ନମାନର ଜୀବନଧାରଣ ହେତୁ କୃଷକମାନଙ୍କ ପକ୍ଷରେ ପ୍ରଚଳିତ ଚାଷବାସର ଧରଣକୁ ତ୍ୟାଗ କରିବା ସମ୍ଭବ ହୋଇ ନଥିଲା । ଭାରତୀୟ କୃଷକମାନେ ସେମାନଙ୍କ କର ଓ ଭୂମିରାଜସ୍ୱ ଦେବା ପାଇଁ ପ୍ରାୟ ଉତ୍ପାଦନ ମୂଲ୍ୟ ସହିତ ସଂପୂର୍ଣ୍ଣ ସଂଗତିହୀନ ଦାମ୍‌ରେ କୃଷିଜାତ ଦ୍ରବ୍ୟ ବିକ୍ରି କରିବାକୁ ବାଧ୍ୟ ହେଉଥିଲେ । ୧୮୨୦ ଏବଂ ୧୮୩୦ ଦଶକଗୁଡ଼ିକରେ ବିଚ୍ଛିନ୍ନ ନିସ୍ତର ଭୂମି ସଂପର୍କରେ ବ୍ୟାପକ ପୁନର୍ବିବେଚନାର ପୃଷ୍ଠଭୂମିରେ ବମ୍ବେ ଓ ମାଡ୍ରାଜ ପ୍ରେସିଡେନ୍‌ସିରେ ସାମଗ୍ରିକ ଭାବେ ଖଜଣା ବୃଦ୍ଧି କରାଯାଇଥିଲା ଏବଂ ତଦନୁଯାୟୀ ବଙ୍ଗଳାରେ ମଧ୍ୟ ଭୂମିରାଜସ୍ୱ ବୃଦ୍ଧି ପାଇଥିଲା । ଇତିମଧ୍ୟରେ ସେଠାରେ ଜମିଦାରମାନେ ଗ୍ରାମାଞ୍ଚଳରେ ମହାଜନମାନଙ୍କ ଭୂମିକାରେ ଅଧିଷ୍ଠିତ ହୋଇଥିଲେ ଏବଂ ଋଣର ସୁଧ ହିସାବରେ ଶସ୍ୟ ଗ୍ରହଣ ପଦ୍ଧତି ଚାଲୁ ହୋଇଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦେଶର ନାନା ଅଂଶରେ ସାତ ଥର ଦୁର୍ଭିକ୍ଷର ପ୍ରାଦୁର୍ଭାବ ଓ ୧୫ ଲକ୍ଷ ଉର୍ଦ୍ଧ୍ୱ ମଣିଷ ମୃତ୍ୟୁ ମୁଖରେ ପଡ଼ିବାର କାରଣ ଏଇଥିରେ ନିହିତ ରହିଥିଲା ।

ବିଶ୍ୱ ବଜାର ସହିତ ଭାରତର ଅର୍ଥନୈତିକ ସଂପର୍କ ପ୍ରସାରିତ ହେବା ଫଳରେ ବନ୍ଦର ନଗରଗୁଡ଼ିକର ବିକାଶ ଘଟିଥିଲା ଏବଂ ସେସବୁ ସହିତ ଦେଶର ଅଭ୍ୟନ୍ତର ଭାଗଗୁଡ଼ିକରେ ବ୍ୟବସାୟ ବାଣିଜ୍ୟ ବ୍ୟାପକତା ଲାଭ କରିଥିଲା । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଭାରତର ପ୍ରଥମ ରେଳପଥଟି ନିର୍ମିତ ହୋଇଥିଲା । ଏହା ପରେ ରେଳ ମରାମତି କର୍ମଶାଳା ଓ ବନ୍ଦରର ନୂତନ ସାଜସରଞ୍ଜାମ ନିର୍ମାଣ, ଟେଲିଗ୍ରାଫ୍ ବ୍ୟବସ୍ଥା ସ୍ଥାପନ ଓ ଡାକ ବ୍ୟବସ୍ଥାର ଉନ୍ନତି ସାଧନ, ପୁରୁଣା ଜଳସେଚନ ପ୍ରଣାଳୀର ମରାମତି ଓ ନୂତନ କେନାଲ ନିର୍ମିତ ହୋଇଥିଲା । ଏହି ଭାବେ ଗଢ଼ି ଉଠିଥିଲା ଶିଳ୍ପ ପୁଞ୍ଜି କର୍ତ୍ତୃକ ଭାରତବର୍ଷରେ ତୀବ୍ରତର ଶୋଷଣର ପୂର୍ବସର୍ତ୍ତଗୁଡ଼ିକ ବିଶେଷ ଭାବେ ଗଭର୍ଣ୍ଣର ଜେନେରାଲ ଲର୍ଡ ଡେଲ୍‌ହାଉସୀଙ୍କ ଶାସନ କାଳରେ (୧୮୪୮-୧୮୫୬) । ଏହି ସମୟରେ ପ୍ରଥମତଃ ଓ ପ୍ରଧାନତଃ ବମ୍ବେ ଓ କଲିକତାରେ ଭାରତୀୟ ସହଯୋଗୀ-ବୁର୍ଜୁଆ ଶ୍ରେଣୀଗୁଡ଼ିକ ମଧ୍ୟରୁ ଖୋଦ ଭାରତୀୟ ବ୍ୟବସାୟୀ ପରିବାରଗୁଡ଼ିକର ଉନ୍ମେଷ ଘଟିଥିଲା । ଏମାନେ କୋଟି କୋଟି ଟଙ୍କା ପୁଞ୍ଜିର ମାଲିକ ଥିଲେ ଏବଂ ୟୁରୋପୀୟ ଧାରାରେ ବାଣିଜ୍ୟିକ ଓ ଅର୍ଥ ସଂକ୍ରାନ୍ତ କାର୍ଯ୍ୟକଳାପ ଚଳାଉଥିଲେ ।

ତିରିଶ, ଚାଳିଶ ଏବଂ ପଚାଶ ଦଶକଗୁଡ଼ିକରେ ଭାରତୀୟ ଶିଳ୍ପ ବୁର୍ଜୁଆମାନଙ୍କର ଅଭ୍ୟୁଦୟ ଘଟିଥିଲା ଏବଂ ପ୍ରଥମ କାରଖାନା ସମେତ ପ୍ରଥମ ମ୍ୟାନୁଫାକ୍‌ଚରିଂ ସଂସ୍ଥାଗୁଡ଼ିକ ପ୍ରତିଷ୍ଠିତ ହୋଇଥିଲା । ଏସବୁ ହେଲା କଲିକତାର ନିକଟସ୍ଥ ଏକ ବ୍ରିଟିଶ୍ ଝୋଟକଳ ଏବଂ ବମ୍ବେରେ କେତେକ ଭାରତୀୟ ବସ୍ତ୍ରକାରଖାନା । କିନ୍ତୁ ଭାରତୀୟ ଶିଳ୍ପ ବୁର୍ଜୁଆମାନଙ୍କର ଉନ୍ମେଷ ଥିଲା ଏକାଧାରରେ ମନ୍ଥର ଓ ବାଧାସଙ୍କୁଳ । ବିଶ୍ୱ ବାଣିଜ୍ୟରେ ଭାରତର ଅନ୍ତର୍ଭୁକ୍ତି ଏବଂ ନୂତନ ଅର୍ଥନୈତିକ ଯୋଗାଯୋଗ ଦେଖା ଦେବା ସତ୍ତ୍ୱେ ପଣ୍ୟ-ବନାମ-ମୁଦ୍ରା ସଂପର୍କର ସ୍ତର ଏବଂ ମୋଟାମୋଟି ଭାବେ କୃଷିରେ ପଣ୍ୟ ଉତ୍ପାଦନ ଥିଲା ଖୁବ୍ ନିମ୍ନ ମାନର । ତା'ଛଡ଼ା ଏହି ଉନ୍ନୟନ ମଧ୍ୟ ସୁଷମ ନଥିଲା । ପ୍ରାୟ ଶହେ ବର୍ଷ ପର୍ଯ୍ୟନ୍ତ ବ୍ରିଟିଶ୍ ଶାସନାଧୀନରେ ଥିବା ବଙ୍ଗଳା ପ୍ରେସିଡେନ୍‌ସିରେ ଏବଂ ତିରିଶ ଦଶକରେ ଉତ୍ତର-ପଶ୍ଚିମ ପ୍ରଦେଶ ହିସାବରେ ନବଗଠିତ ଉତ୍ତର ଭାରତର ଅବଶିଷ୍ଟାଂଶରେ ପଣ୍ୟ-ବନାମ-ମୁଦ୍ରା ସଂପର୍କ, ବମ୍ବେର ଆଭ୍ୟନ୍ତରୀଣ ଅଞ୍ଚଳ ଓ, ବିଶେଷତଃ, ମାଡ୍ରାଜ ପ୍ରେସିଡେନ୍‌ସି ତୁଳନାରେ ଖୁବ୍ ଦ୍ରୁତ ବିକଶିତ ହୋଇଥିଲା ।

ସାଧାରଣତଃ ଭାରତର ଔପନିବେଶିକ ସରକାରର ଅର୍ଥନୈତିକ କର୍ମନୀତି ଥିଲା ଦ୍ୱିବିଧ – ଏକ ଦିଗରେ, ନୂତନ ଅର୍ଥନୈତିକ ଅଞ୍ଚଳ ଓ ଯୋଗାଯୋଗ ବ୍ୟବସ୍ଥା ଉନ୍ନୟନରେ ଉତ୍ସାହଦାନ, ଅଥଚ ଗ୍ରାମ୍ୟ ସମାଜ ସେତେବେଳେ ଅବକ୍ଷୟମାଣ; ଅନ୍ୟ ଦିଗରେ, ଖଜଣା ମାଧ୍ୟମରେ କୃଷକମାନଙ୍କ ଉପରେ ସାମନ୍ତବାଦୀ ଶୋଷଣର ମାତ୍ରା ବୃଦ୍ଧି ଓ ଜମିରେ ବ୍ୟକ୍ତିଗତ ମାଲିକାନାର ଦୃଢ଼ୀକରଣ । ଏହା ଫଳରେ ଜମିମାଲିକମାନେ ଭାଗ ଚାଷୀମାନଙ୍କୁ ଜମି ଭଡ଼ା ଦେଉଥିଲେ ଏବଂ କୃଷକମାନଙ୍କ ଅବସ୍ଥା ପ୍ରାୟ ଭୂମିଦାସଙ୍କ ପର୍ଯ୍ୟାୟରେ ପହଞ୍ଚି ଯାଇଥିଲା । ଏକ ଦିଗରେ, ଭାରତ ବ୍ରିଟେନ୍ ପାଇଁ କଞ୍ଚାମାଲ ଓ କୃଷି ଦ୍ରବ୍ୟ ସରବରାହକାରୀ ଦେଶରେ ପରିଣତ ହେଉଥିଲା, ଯେଉଁ ଉନ୍ନୟନ ଦେଶରେ ପୁଞ୍ଜିବାଦୀ ଉତ୍ପାଦନ ଉନ୍ମେଷର ଭିତ୍ତି ତିଆରି କରୁଥିଲା, ଅନ୍ୟ ଦିଗରେ, ବିଭିନ୍ନ ଧରଣର ସାମନ୍ତବାଦୀ କାର୍ଯ୍ୟକଳାପ ଓ ଜାତୀୟ ଉତ୍ପାଦନ ପଥରେ ବହୁ ପ୍ରତିବନ୍ଧକ ଭାରତୀୟ ଅର୍ଥନୀତିର ବିକାଶକୁ ପ୍ରତିହତ କରୁଥିଲା ।

## ଭାରତ ଅଧିକାରର ସର୍ବଶେଷ ପର୍ଯ୍ୟାୟ

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାରତର ଭାଗ୍ୟ ନିୟନ୍ତ୍ରକ ଘଟଣାପ୍ରବାହଠାରୁ ପଞ୍ଜାବ ଦୂରେଇ ରହିଥିଲା । ସେତେବେଳେ ପଞ୍ଜାବ ରାଜ୍ୟରେ ଶିଖମାନଙ୍କର ସାମରିକ ନେତା ସର୍ଦ୍ଦାର ଶାସିତ ବାରଟି ଶିଖ ମିସଲ ବା ଯୋଦ୍ଧା ସଂଘ ରହିଥିଲେ । ମୋଗଲ ଏବଂ ଆଫ୍‌ଗାନ ବିଜୟୀମାନଙ୍କ ବିରୁଦ୍ଧରେ ସର୍ଦ୍ଦାରମାନେ ଥିଲେ ଶିଖମାନଙ୍କର ଯୁଦ୍ଧକାଳୀନ ନେତା ।

ପ୍ରତ୍ୟେକଟି ଯୋଦ୍ଧା ସଂଘ ଥିଲା ନିଜ ଅଧିକାର ବଳରେ ଗୋଟିଏ ଗୋଟିଏ ଛୋଟ ଅଞ୍ଚଳ ବିଶେଷ, ଯଦିଓ ଏହିସବୁ ସଂଘ ଏକତ୍ର ଥିଲା ସଂପୂର୍ଣ୍ଣ ଏକ ଏକକ – ଖାଲ୍‌ସା, ଅର୍ଥାତ୍, ସଂପ୍ରଦାୟର (ଖାଲ୍‌ସା ଶବ୍ଦଟି ଆରବୀ ଶବ୍ଦ "ଖାଲିସା" – ପରିଚ୍ଛନ୍ନତାରୁ ଆସିଛି) ନିଜସ୍ୱ ଭୂମି ହିସାବରେ ବିବେଚିତ ହେଉଥିଲା । କ୍ରମଶଃ ଏହି ଶବ୍ଦଟି ଅନ୍ୟ ଅର୍ଥ ବହନ କରିଥିଲା । ଏହା ସୈନ୍ୟଦଳର ନେତୃତ୍ୱକୁ ମଧ୍ୟ ବୁଝାଉଥିଲା । ପରବର୍ତ୍ତୀ କାଳରେ ସେନାବାହିନୀର ଖାଲ୍‌ସାମାନେ

ଶିଖ ରାଜାମାନଙ୍କୁ ବିରୋଧ କରିବାକୁ ଆରମ୍ଭ କରିଥିଲେ । ସର୍ଦ୍ଦାରମାନେ ସ୍ୱାଧୀନ ଭାବେ ଶାସନ କାର୍ଯ୍ୟ ଚଳାଉଥିଲେ ଏବଂ ପୂର୍ବାହ୍ନରେ ସେମାନଙ୍କ ନେତୃପରିଷଦରେ ଆଲୋଚନା ପରେ କେବଳ କୌଣସି ମିଳିତ ଉଦ୍ୟୋଗରେ ଅଂଶଗ୍ରହଣ କରୁଥିଲେ ।

ଯୋଦ୍ଧା ସଂଘଗୁଡ଼ିକର ନେତୃତ୍ୱରେ ଥିବା ଶିଖ ସାମନ୍ତମାନଙ୍କର ଅବସ୍ଥାନ ଦୃଷ୍ଟିରୁ ଏସବୁ କ୍ରମବର୍ଦ୍ଧମାନ ଭାବେ ସାଧାରଣ ଭାରତୀୟ ସାମନ୍ତ ରାଜ୍ୟ ଭଳି ଗଢ଼ି ଉଠୁଥିଲେ । ୧୭୬୫ ଓ ୧୭୯୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ପଞ୍ଜାବ ଠାରେ ସମସ୍ତେ ପ୍ରତିବେଶୀମାନଙ୍କ ଭୂଖଣ୍ଡର ବିନିମୟରେ ନିଜ ଅଞ୍ଚଳ ବିସ୍ତାର କରିବାକୁ ଆରମ୍ଭ କରିଲେ, ସର୍ଦ୍ଦାରମାନଙ୍କ ମଧ୍ୟରେ ପ୍ରବଳ ସଂଘାତ ଦେଖା ଦେଇଥିଲା । ଏହି ପ୍ରତିଦ୍ୱନ୍ଦ୍ୱିତା ସମୟରେ ଏବଂ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ କେଇ ଥର ଭାରତ ଆକ୍ରମଣ କରିଥିବା ଆଫ୍‌ଗାନ ଶାସକ ଜାମାନ୍ ଶାହ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ ମଧ୍ୟ ଦେଇ ୧୭୯୭ ଖ୍ରୀଷ୍ଟାବ୍ଦରୁ ରଣଜିତ୍ ସିଂହଙ୍କ ନେତୃତ୍ୱାଧୀନ ସୁକାରଗ୍ରକିଆ ଯୋଦ୍ଧା ସଂଘଟି ବିଶେଷ ପ୍ରାଧାନ୍ୟ ଲାଭ କରିଥିଲା । ୧୭୯୯ ଖ୍ରୀଷ୍ଟାବ୍ଦରେ ଲାହୋର ଦଖଲ ପରେ ରଣଜିତ୍ ସିଂହ (୧୭୯୯-୧୮୩୯) ମହାରାଜା ଉପାଧି ଗ୍ରହଣ କରିଥିଲେ ଏବଂ କେଇ ବର୍ଷ ଧରି ନିଜ ନେତୃତ୍ୱରେ ପଞ୍ଜାବକୁ ଐକ୍ୟବଦ୍ଧ କରିବାର ପ୍ରୟାସ ଚଳେଇ ଯାଇଥିଲେ । ସର୍ଦ୍ଦାରମାନଙ୍କ ଦ୍ୱାରା ନିରନ୍ତର ସଂଗ୍ରାମରେ ଉଚ୍ଛନ୍ନ ଏବଂ କଂପାନିର ଉତ୍ପୀଡ଼ନ ଦ୍ୱାରା ଭୀତ କୃଷକମାନେ ରଣଜିତ୍ ସିଂହଙ୍କ ସୈନ୍ୟବାହିନୀରେ ଦଳେ ଦଳେ ଯୋଗ ଦେଇଥିଲେ ।

୧୮୨୦ ଦଶକରେ ରଣଜିତ୍ ସିଂହଙ୍କ ନେତୃତ୍ୱରେ ପଞ୍ଜାବରେ ଏକ ଶକ୍ତିଶାଳୀ ଶିଖ୍ ରାଜ୍ୟ ଗଢ଼ି ଉଠିଥିଲା । ସର୍ଦ୍ଦାରମାନଙ୍କର ଅଞ୍ଚଳଗୁଡ଼ିକ ରାଷ୍ଟ୍ରୀୟ ସଂପତ୍ତି ରୂପେ ଘୋଷିତ ହେଲା ଏବଂ ପଞ୍ଜାବର ମଧ୍ୟାଞ୍ଚଳର ଏହି ଧରଣର ଅଞ୍ଚଳସମୂହକୁ ରଣଜିତ୍ ସିଂହ ଦଖଲ କରିନେଲେ । କାଶ୍ମୀର ଏବଂ ଆଫ୍‌ଗାନ ଅଞ୍ଚଳର କେତେକାଂଶ ନିଜ ରାଜ୍ୟ ଭୁକ୍ତ କରିନେଲା ପରେ ରଣଜିତ୍ ସିଂହ ସାମରିକ କାର୍ଯ୍ୟରେ ଅଂଶଗ୍ରହଣ କରିବା ସର୍ତ୍ତରେ ଜାଗିର ବଣ୍ଟନ ଏବଂ ଯଥେଷ୍ଟ ଅର୍ଥ ଜମା ରଖିବା ପରେ ତହସିଲଦାରମାନଙ୍କୁ କିଛି ଜମି ଦେବାକୁ ସମର୍ଥ ହୋଇଥିଲେ । ପର୍ଯ୍ୟାପ୍ତ ସଂପଦ ସଞ୍ଚିତ ହେବା ଫଳରେ ସେ ଜନସାଧାରଣଙ୍କ ପାଇଁ ସାଧ୍ୟାନୁଯାୟୀ ମାତ୍ରାରେ ଖଜଣା ହାର କମାଇ ଦେଇଥିଲେ ଏବଂ ଫରାସୀ ଓ ଇଟାଲୀୟ ଅଫିସରମାନଙ୍କର, ବିଶେଷତଃ, ନେପୋଲିଅନଙ୍କର ପୂର୍ବତନ ସେନାପତିମାନଙ୍କ ତତ୍ତ୍ୱାବଧାନରେ ୟୁରୋପୀୟ କାଇଦାରେ ନିଜ ସେନାବାହିନୀକୁ ଗଢ଼ି ତୋଳିଥିଲେ । ଏହି ସୈନ୍ୟଦଳ ପ୍ରଧାନତଃ କୃଷକ ପଦାତିକମାନଙ୍କ ଦ୍ୱାରା ଗଠିତ ହୋଇଥିଲା । ଗ୍ରାମ ସମାଜର ଏହି ପୂର୍ବତନ ସଦସ୍ୟମାନେ ଥିଲେ ଖୁବ୍ ସହିଷ୍ଣୁ ଏବଂ କ୍ଷୁଦ୍ରକ୍ଷମ ।

ପଞ୍ଜାବର ଐକ୍ୟକରଣ ଫଳରେ କୁଟୀରଶିଳ୍ପ ଏବଂ ବାଣିଜ୍ୟର ବିକାଶ ଘଟିଥିଲା । ଏହା ବିଶେଷ ଭାବେ ଘଟିଥିଲା ବାଣିଜ୍ୟ ପଥ ସଂଲଗ୍ନ ଅଞ୍ଚଳଗୁଡ଼ିକରେ, ଯଦିଓ ଆଭ୍ୟନ୍ତରୀଣ ଅଞ୍ଚଳରେ ସେତେବେଳେ ଦ୍ରବ୍ୟ ବିନିମୟରେ ବାଣିଜ୍ୟିକ କାରବାର ପ୍ରଧାନ ଧରଣ ଥିଲା ।

ରଣଜିତ୍ ସିଂହଙ୍କ ମୃତ୍ୟୁ ପରେ କିଛି କାଳ ପର୍ଯ୍ୟନ୍ତ ରାଜ୍ୟର ଅବସ୍ଥାରେ ଅବନତି ଦେଖା ଦେଇଥିଲା । ଶକ୍ତିଶାଳୀ ଜାଗିରଦାର ଓ ପ୍ରାଦେଶିକ ଶାସନ କର୍ତ୍ତାମାନେ (ବିଶେଷ କରି ମୁଲତାନ୍ ଓ କାଶ୍ମୀରର) ସ୍ୱାଧୀନତା ଲାଭ କରିବାକୁ ଚେଷ୍ଟା କରିଥିଲେ, ଫଳରେ କେନ୍ଦ୍ରରେ ବିଭିନ୍ନ ସାମନ୍ତ ଚକ୍ର ମଧ୍ୟରେ ତୀବ୍ର କ୍ଷମତା ଦ୍ୱନ୍ଦ୍ୱ ଦେଖା ଦେଇଥିଲା । ତା'ପରେ କ୍ରମାନ୍ୱୟରେ ଜଣକ ପରେ ଜଣେ

ମହାରାଜା ଦ୍ରୁତ ସିଂହାସନ ଦଖଲ କଲେ ଏବଂ ୧୮୪୪ ଖ୍ରୀଷ୍ଟାବ୍ଦରେ ରଣଜିତ୍ ସିଂହଙ୍କ ନାବାଳକ ପୁତ୍ର ଦଲିପ୍ ସିଂହଙ୍କ ସିଂହାସନ ଆରୋହଣ ପର୍ଯ୍ୟନ୍ତ ଏହି ଅବସ୍ଥା ଅବ୍ୟାହତ ରହିଥିଲା । ଏହି କ୍ଷମତା ଦ୍ୱନ୍ଦ୍ୱରେ ପ୍ରଧାନ ପ୍ରଧାନ ଶିଖ ସେନାପତିମାନଙ୍କର ମୃତ୍ୟୁ ଘଟିଥିଲା ।

ଏହି ପର୍ଯ୍ୟାୟରେ ଶିଖ ରାଜ୍ୟର ସେନାବାହିନୀ ରାଜନୈତିକ ମଞ୍ଚରେ ଅବତୀର୍ଣ୍ଣ ହୋଇଥିଲା । ଆଞ୍ଚଳିକ ସଂସ୍ଥା ବା ପଞ୍ଚାୟତ ମାଧ୍ୟମରେ ଏହା ଦେଶର ପ୍ରଶାସନ ଉପରେ ନିଷେଧମୂଳକ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କରିଥିଲା । ବସ୍ତୁତଃ, ପଞ୍ଚାୟତ କ୍ଷମତା ଦଖଲ କରିନେଲା, କିନ୍ତୁ ସେନାବାହିନୀ ସେତେବେଳେ ଶିଖ ସାମନ୍ତ ସେନାପତିମାନଙ୍କର ଅଧୀନସ୍ଥ ହେଲା । ସେମାନେ, ଅବଶ୍ୟ, ସେତେବେଳେ ପଞ୍ଚାୟତର ତତ୍ତ୍ୱାବଧାନ କରୁଥିଲେ । ପଞ୍ଚାୟତର ପ୍ରଭାବରୁ ମୁକ୍ତ ହେବା ପାଇଁ ଉଦ୍‌ଗ୍ରୀବ ପଞ୍ଜାବର ସାମନ୍ତମାନେ ଏହା ପରେ କଂପାନି ସହିତ ଯୁଦ୍ଧ ଲଗାଇ ଦେବାକୁ ଉଦ୍ୟମ କରିଥିଲେ ।

୧୮୩୯-୧୮୪୨ ଖ୍ରୀଷ୍ଟାବ୍ଦରେ ଆଫ୍‌ଗାନିସ୍ତାନ ଅଧିକାର ପାଇଁ ପରିଚାଳିତ ଯୁଦ୍ଧରେ ପରାଜିତ ଇଷ୍ଟ ଇଣ୍ଡିଆ କଂପାନି ଭାରତ ବିଜୟ ସଂପୂର୍ଣ୍ଣ କରି ନିଜ ମର୍ଯ୍ୟାଦାକୁ ପୁନରୁଦ୍ଧାର କରିବାକୁ ପ୍ରୟାସୀ ହୋଇଥିଲା । ୧୮୪୩ ଖ୍ରୀଷ୍ଟାବ୍ଦରେ ହାୟଦରାବାଦର (ସିନ୍ଧୁ ନଦୀର ତୀରବର୍ତ୍ତୀ) ଯୁଦ୍ଧରେ ସିନ୍ଧୁର ଅମିରମାନଙ୍କୁ ହରେଇ ସେମାନେ ସିନ୍ଧୁକୁ ନିଜର ଏଲକା ଭୁକ୍ତ କରିନେଲେ । ସିନ୍ଧୁର ଉତ୍ତରାଞ୍ଚଳର ରୟତଓ୍ୱାରି ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା ଏବଂ ଦକ୍ଷିଣାଞ୍ଚଳରେ ଜମିଦାରମାନେ ଜମିମାଲିକ ରୂପେ ସ୍ୱୀକୃତି ପାଇଲେ । ସିନ୍ଧୁ ଦଖଲ ପରେ ପଞ୍ଜାବ ଆକ୍ରମଣ ପାଇଁ ଆଉରି ଗୋଟିଏ ଅଗ୍ରଘାଟି ବ୍ରିଟିଶ୍‌ମାନଙ୍କ ହାତକୁ ଆସିଗଲା ।

୧୮୪୫ ଖ୍ରୀଷ୍ଟାବ୍ଦରେ ଇଂରେଜ-ଭାରତୀୟ ସରକାର ଶିଖମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ୧୮୪୫ ଖ୍ରୀଷ୍ଟାବ୍ଦରେ ମୁଦକି ଓ ଫିରୁଜଶୁହରରେ ଏବଂ ୧୮୪୬ ଖ୍ରୀଷ୍ଟାବ୍ଦରେ ସୋବ୍‌ରାଓଁରେ ଶିଖ୍ ସେନାବାହିନୀ ବୀରତ୍ୱପୂର୍ଣ୍ଣ ଲଢ଼େଇ କରିଥିଲେ । କିନ୍ତୁ ପ୍ରତିଥର ସାମନ୍ତ ସେନାପତିମାନଙ୍କର ବିଶ୍ୱାସଘାତକତା ହେତୁ, ଚରମ ମୁହୂର୍ତ୍ତରେ ସେମାନଙ୍କ ସୈନ୍ୟ ପ୍ରତ୍ୟାହାର ବା ନିରାପଦ ସ୍ଥାନକୁ ପଳାୟନ ଯୋଗୁଁ ଶିଖ୍‌ମାନଙ୍କର ପରାଜୟ ଘଟିଥିଲା । ଫଳରେ, ପଞ୍ଜାବ ବ୍ରିଟିଶ୍‌ମାନଙ୍କର ହସ୍ତଗତ ହେଲା ଏବଂ ଶିଖ୍ ରାଜ୍ୟ ତା'ର ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳକୁ ହରେଇଲା ।

ସମ୍ଭାବ୍ୟ ଅଭ୍ୟୁତ୍‌ଥାନର ଆଶଙ୍କାରେ ବ୍ରିଟିଶ୍‌ମାନେ ଦଲିପ୍ ସିଂହଙ୍କୁ ଶାସକ ରୂପେ ସ୍ୱୀକୃତି ଦେଇ ଦେଲେ, ଯଦିଓ ତାଙ୍କର କ୍ଷମତା ଲାହୋର ଅଞ୍ଚଳ ଓ ପେଶଓ୍ୱାର ମଧ୍ୟରେ ସୀମିତ ଥିଲା । ବୀର ଶିଖ କୃଷକମାନେ ମଧ୍ୟ କେତେକ ସୁବିଧା ପାଇଥିଲେ—ସେମାନଙ୍କ ଭୂମିରାଜସ୍ୱ କିଛି ପରିମାଣରେ କମିଯିବା ସାଥେ ସାଥେ ଶିଖ୍ ସର୍ଦ୍ଦାରମାନଙ୍କ ଦ୍ୱାରା ସଂଗୃହୀତ ଆବଓ୍ୱାବ ପ୍ରତ୍ୟାହୃତ ହୋଇଥିଲା । କିନ୍ତୁ ମୁଲତାନ୍‌ର ଶାସନକର୍ତ୍ତାଙ୍କୁ ପଦଚ୍ୟୁତ କରି ସେଠାକୁ ଦଳେ ବ୍ରିଟିଶ୍ ସୈନ୍ୟ ପଠାଇବାକୁ ଚେଷ୍ଟା କରିବା ଫଳରେ ୧୮୪୮ ଖ୍ରୀଷ୍ଟାବ୍ଦରେ ପଞ୍ଜାବର ଉତ୍ତର-ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ବିଦ୍ରୋହ ବ୍ୟାପୀ ଯାଇଥିଲା । ଚିଲିୟାଁବାଲା ଓ ଗୁଜରାଟ ଯୁଦ୍ଧରେ ପ୍ରଭୂତ କ୍ଷୟକ୍ଷତି ସତ୍ତ୍ୱେ ବ୍ରିଟିଶ୍ ସୈନ୍ୟମାନେ ଜୟ ଲାଭ କରିଥିଲେ ଏବଂ ପଞ୍ଜାବ ବ୍ରିଟିଶ୍‌ମାନଙ୍କର ଅଧିକାର ଭୁକ୍ତ ହୋଇଥିଲା । ରଣଜିତ୍ ସିଂହଙ୍କ ପୂର୍ବତନ ସେନାପତି ଓ ଶକ୍ତିଶାଳୀ ଜାଗିର୍‌ଦାର ଗୋଲାବ ସିଂହଙ୍କୁ କଂପାନିର କରଦରାଜ୍ୟ ରୂପେ ବ୍ରିଟିଶ୍‌ମାନେ କାଶ୍ମୀର ବିକ୍ରୟ କରିଥିଲେ ।

ପଞ୍ଜାବ ବିଜୟ ପରେ ପ୍ରାରମ୍ଭିକ ବର୍ଷଗୁଡ଼ିକରେ ବ୍ରିଟିଶ୍‌ମାନେ ଗ୍ରାମ୍ୟ ସମାଜର ଛାଞ୍ଚକୁ ବଦଳାଇ ନଥିଲେ । ସେମାନେ, ଅବଶ୍ୟ, ରାଜସ୍ୱ ବିନିମୟରେ ଗ୍ରାମଗୋଷ୍ଠୀର ଜମିର ସମ୍ମୁଖ ରଇତମାନଙ୍କୁ ତଥାକଥିତ ଜୋତସତ୍ତ୍ୱର ଅଧିକାର (ଏକା ପରିମାଣର ଖଜଣା ଦେଇ ଚିରକାଳ ନିଜ ଜମିଗ୍ରହଣର ଅଧିକାର) ସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ସାରା ପଞ୍ଜାବରେ ଜିନିଷପତ୍ର ଆକାରରେ ଖଜଣା ଦେବା ପରିବର୍ତ୍ତେ ଅର୍ଥ ଆକାରରେ ଖଜଣା ଦେବାର ବ୍ୟବସ୍ଥା ଶୁରୁ ହେଲା । ଫଳତଃ, ଜମିର ମାଲିକମାନେ ବଜାରରେ କୃଷିଜାତ ଜିନିଷ ବିକ୍ରି କରିବାକୁ ବାଧ୍ୟ ହେଲେ । ଏହା ଫଳରେ ଖାଦ୍ୟଶସ୍ୟର ମୂଲ୍ୟ କମିଗଲେ କୃଷକମାନଙ୍କ ଅବସ୍ଥାରେ ଅବନତି ଘଟୁଥିଲା ଏବଂ ମହାଜନମାନଙ୍କ ପ୍ରଭାବ ବଢ଼ୁଥିଲା । ଜମିରେ ନିଜ ଜମିମାଲିକାନା ସଂହତ ହେବାରୁ ଶିଖ ସାମନ୍ତମାନେ ବ୍ରିଟିଶ୍ ଔପନିବେଶିକମାନଙ୍କର ଦୃଢ଼ ସମର୍ଥକ ପାଲଟି ଯାଇଥିଲେ ।

## ଉପନିବେଶବିରୋଧୀ ପ୍ରତିବାଦ

ଭାରତରେ ବ୍ରିଟିଶ୍‌ମାନଙ୍କ ପ୍ରାଧାନ୍ୟ ଦୃଢ଼ବଦ୍ଧ ହୋଇ ଉଠିଛି—ଏହି ବିଶ୍ୱାସରେ ଔପନିବେଶିକ ଶାସକବର୍ଗ ସାରା ଭାରତରେ ପ୍ରତ୍ୟକ୍ଷ ବ୍ରିଟିଶ୍ ଶାସନ ପ୍ରତିଷ୍ଠା କରିଥାରେ ଧୀରେ ଧୀରେ ଦେଶୀୟ ରାଜ୍ୟଗୁଡ଼ିକୁ ଲୋପ କରି ଦେବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଏହି ଲକ୍ଷ୍ୟ ହାସଲର ଅନ୍ୟତମ ଉପାୟ ଥିଲା—"ରାଜ୍ୟସ୍ୱତ୍ୱ ଲୋପ ନୀତି" ପ୍ରବର୍ତ୍ତନ । ଏହା ଦ୍ୱାରା ନିଃସନ୍ତାନ ରାଜାଙ୍କ ପୋଷ୍ୟପୁତ୍ର ରାଜ୍ୟର ଅଧିକାର ଲାଭ କରି ପାରୁ ନଥିଲେ । ଏହି ଭାବେ ୧୮୪୮-୧୮୫୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ସାତାରା, ନାଗପୁର, ଝାନ୍‌ସି, ସମ୍ବଲପୁର ଓ ଅନ୍ୟାନ୍ୟ ବହୁ ରାଜ୍ୟର ବିଲୁପ୍ତି ଘଟିଥିଲା । ତାଞ୍ଜୋରର ରାଜା ଓ କର୍ଣ୍ଣାଟକର (ଆର୍କଟ) ନବାବଙ୍କ ମୃତ୍ୟୁ ପରେ ଏହି ଉପାଧିଗୁଡ଼ିକ ଚିରକାଳ ପାଇଁ ଲୋପ ପାଇଥିଲା । ଅପରିଶୋଧ ଋଣ ପାଇଁ ହାୟଦରାବାଦର ନିଜାମଙ୍କ ନିକଟରୁ ବେରାରର ସମୃଦ୍ଧତମ କପା ଚାଷ ଅଞ୍ଚଳଟିକୁ ଛଡ଼େଇ ନିଆଯାଇଥିଲା । ୧୮୩୧ ଖ୍ରୀଷ୍ଟାବ୍ଦରୁ ଆଗାମୀ ବର୍ଷମାନଙ୍କରେ ମହୀଶୂର ପ୍ରତ୍ୟକ୍ଷ ବ୍ରିଟିଶ୍ ଶାସନାଧୀନକୁ ଆସିଗଲା । ଏ କ୍ଷେତ୍ରରେ ରାଜା ଅବସରଭତା ପାଇଲେ ମଧ୍ୟ ପେଶବା ଦ୍ୱିତୀୟ ବାଜୀ ରାଓଙ୍କ ସନ୍ତାନସନ୍ତତିମାନେ ଏହି ଅଧିକାରରୁ ବଞ୍ଚିତ ହୋଇଥିଲେ । କୁଶାସନର ଅଭିଯୋଗରେ ୧୮୫୬ ଖ୍ରୀଷ୍ଟାବ୍ଦରେ ଭାରତର ମାନଚିତ୍ରରୁ ଅଯୋଧ୍ୟାର ବିଲୋପ ଘଟିଥିଲା ।

କ୍ଷମତା ଏବଂ ସ୍ୱତ୍ୱ ଲୁପ୍ତି ପରେ ପୂର୍ବତନ ରାଜାମାନେ ସେମାନଙ୍କ ଦରବାର ଭାଙ୍ଗି ଦେଲେ । ଫଳରେ ପୂର୍ବତନ ସଭାସଦମାନେ ସେମାନଙ୍କ ଜୀବିକାର ସୁଯୋଗରୁ ବଞ୍ଚିତ ହେଲେ । ଅଭିଜାତ ଓ ରାଜନ୍ୟବର୍ଗଙ୍କ ସୈନ୍ୟବାହିନୀର କୌଣସି ପ୍ରୟୋଜନ ନଥିବାରୁ କାରିଗରମାନେ ନିଃସ୍ୱ ହୋଇ ପଡ଼ିଲେ । ଏଣେ ଖଜଣା ବୃଦ୍ଧି ପାଇଲା ଏବଂ ଫସଲ ହାନି ସମୟରେ ବ୍ରିଟିଶ୍ ସରକାରର କୌଣସି ସୁବିଧା ବା ତକାବିର ସୁଯୋଗ ନଥିବାରୁ ପୂର୍ବ ତୁଳନାରେ କୃଷକମାନଙ୍କ ଅବସ୍ଥାରେ ଆଉରି ଅବନତି ଘଟିଥିଲା । ପରିଶେଷରେ, ରାଜନ୍ୟବର୍ଗଙ୍କ ପଦମର୍ଯ୍ୟାଦାକୁ ସାଧାରଣ ବ୍ରିଟିଶ୍ ନାଗରିକଙ୍କ ପର୍ଯ୍ୟାୟକୁ ନୁଆଁଇ ଦେବା ଫଳରେ

ଭାରତୀୟମାନଙ୍କର ଜାତୀୟ ପଦମର୍ଯ୍ୟାଦାରେ ଆଘାତ ଲାଗିଥିଲା । ଅର୍ଥାତ୍, ଏହା ଦ୍ୱାରା ଭାରତୀୟ ଜନସାଧାରଣଙ୍କର ବ୍ୟାପକ ଅଂଶ ମଧ୍ୟରେ ଅସନ୍ତୋଷ ତେଜି ଉଠୁଥିଲା ଏବଂ ସାମନ୍ତମାନଙ୍କ ନେତୃତ୍ୱରେ କୃଷକ ବିଦ୍ରୋହ ଦେଖା ଦେବାକୁ ଲାଗିଲା । ଭାରତୀୟ ଉପଜାତିମାନଙ୍କ ପ୍ରତି ଔପନିବେଶିକ ପ୍ରଶାସନର ନୀତି ମଧ୍ୟ ଏହି ଅସନ୍ତୋଷକୁ ଇନ୍ଧନ ଯୋଗାଇ ଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ଇତିପୂର୍ବରୁ ସାମରିକ ଦାୟିତ୍ୱ ବା ପଥରେ ପହରା ଦେବା ସର୍ତ୍ତରେ ଖଜଣା ଛାଡ଼ର ସୁଯୋଗ ଭୋଗ କରୁଥିଲେ । ଉପଜାତିମାନଙ୍କର ଏହିସବୁ ଦାୟିତ୍ୱକୁ ଅନାବଶ୍ୟକ ବିବେଚନା କରି ବ୍ରିଟିଶ୍‌ମାନେ ସେମାନଙ୍କ ଜାଗାଜମି ଉପରେ ଖଜଣା ବସାଇ ଦେଲେ । ଫଳରେ, ସାରା ଭାରତରେ ଦେଖା ଦେଲା ଉପଜାତି ବିଦ୍ରୋହ ।

ଊନବିଂଶ ଶତାବ୍ଦୀର ସମଗ୍ର ପ୍ରଥମାର୍ଦ୍ଧରେ ଭାରତର ବିଭିନ୍ନ ଅଂଶରେ କୃଷକ, ଉପଜାତି ଓ ପଦଚ୍ୟୁତ ସାମନ୍ତମାନଙ୍କର କାର୍ଯ୍ୟକଳାପ ମଧ୍ୟରେ ଅବ୍ୟାହତ ଔପନିବେଶିକତା ବିରୋଧୀ ଘଟଣାବଳୀ ପ୍ରକାଶ ପାଇଥିଲା । ଉତ୍ତରସ୍ଥ ସରକାରଗୁଡ଼ିକରେ ସାମନ୍ତ "ପାଲୟାକାରମାନେ" ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଦୃଢ଼ ଭାବେ ବ୍ରିଟିଶ୍ ଆଧିପତ୍ୟର ବିରୋଧିତା କରିଥିଲେ ଏବଂ ୧୮୦୧-୧୮୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ଅଞ୍ଚଳରେ କ୍ରମାଗତ ବହୁବାର ବ୍ରିଟିଶ୍‌ମାନଙ୍କୁ ପିଟୁଣୀ ଅଭିଯାନ ଚଳେଇବାକୁ ପଡ଼ିଥିଲା । ପୁନର୍ବାର ୧୮୧୩-୧୮୧୪ ଏବଂ ୧୮୩୧ ଖ୍ରୀଷ୍ଟାବ୍ଦରେ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ଶେଷୋକ୍ତ ଅଭ୍ୟୁତ୍‌ଥାନଟିକୁ ଦମନ କରିବା ପାଇଁ କେଇ ବର୍ଷ ଲାଗିଯାଇଥିଲା ।

୧୮୦୭ ଖ୍ରୀଷ୍ଟାବ୍ଦରେ ସମଗ୍ର ଦିଲ୍ଲୀ ଅଞ୍ଚଳରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ୧୮୧୪ ଖ୍ରୀଷ୍ଟାବ୍ଦରେ ବାରାଣସୀର ଅଦୂରରେ ସଶସ୍ତ୍ର ରାଜପୁତ କୃଷକମାନଙ୍କର ପ୍ରତିରୋଧ ଦ୍ୱାରା ଜନୈକ ବହିରାଗତଙ୍କୁ ଗୋଟିଏ ବଡ଼ ଗ୍ରାମଗୋଷ୍ଠୀକୁ ନିଲାମରେ ବିକ୍ରି କରିଦେବା କାର୍ଯ୍ୟଟିକୁ ବନ୍ଦ କରି ଦିଆଯାଇଥିଲା । ନିଷ୍କର ଜମି ଉପରେ ଖଜଣା ଧାର୍ଯ୍ୟର ପ୍ରତିବାଦରେ ୧୮୧୭-୧୮୧୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର କୃଷକମାନେ ଜନୈକ ସ୍ଥାନୀୟ ସାମନ୍ତଙ୍କ ନେତୃତ୍ୱରେ ବିଦ୍ରୋହ କରିଥିଲେ । ପ୍ରାକ୍ତନ ମରହଟ୍ଟୀ ସୈନ୍ୟମାନଙ୍କର ସମର୍ଥନପୁଷ୍ଟ ରାମୁସି ବିଦ୍ରୋହ ୧୮୨୬-୧୮୨୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମଗ୍ର ପୁନା ଜିଲ୍ଲାକୁ ଆଲୋଡ଼ିତ କରିଥିଲା । ଶେଷକୁ ସରକାର ପ୍ରଜାସ୍ୱତ୍ୱ ଭୋଗୀମାନଙ୍କର କମ୍ ଖଜଣା ଦାବି ମାନିବାକୁ ବାଧ୍ୟ ହୋଇଥିଲେ । ୧୮୩୦-୧୮୩୧ ଖ୍ରୀଷ୍ଟାବ୍ଦରେ ଖଜଣା ବୃଦ୍ଧି ହେତୁ ବେଦ୍‌ନୋରର କୃଷକମାନଙ୍କର ବିଦ୍ରୋହ ଘଟିଲେ, ତାକୁ ଦମନ କରିବା ପାଇଁ ବ୍ରିଟିଶ୍‌ମାନେ ମହୀଶୂରକୁ ସୈନ୍ୟ ପଠାଇଥିଲେ । ଜନୈକ ସ୍ଥାନୀୟ ସାମନ୍ତଙ୍କର ଜମିଦାରି ବାଜ୍ୟାପ୍ତ (ବାକିଆ ଖଜଣା ପାଇଁ) ଏବଂ ପ୍ରତ୍ୟକ୍ଷ ବ୍ରିଟିଶ୍ ଶାସନ ପ୍ରବର୍ତ୍ତନର ପ୍ରତିବାଦରେ ୧୮୩୫-୧୮୩୭ ଖ୍ରୀଷ୍ଟାବ୍ଦରେ ଘୁମସୁରରେ (ସେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଏବଂ ବର୍ତ୍ତମାନ ଓଡ଼ିଶାରେ) ଏକ ବିଦ୍ରୋହ ଘଟିଥିଲା । ଏହି ଏକା କାରଣରୁ ସଗରରେ ଏକ ବିଦ୍ରୋହର ନିଆଁ ଜଳି ଉଠିଥିଲା ୧୮୪୨ରେ । ୧୮୪୬-୧୮୪୭ ଖ୍ରୀଷ୍ଟାବ୍ଦରେ କର୍ଣ୍ଣଲର କୃଷକମାନେ ଜନୈକ ସ୍ଥାନୀୟ ପାଲୟାକାରଙ୍କ ନେତୃତ୍ୱରେ ବିଦ୍ରୋହ କରିଥିଲେ । ୧୮୪୮ ଖ୍ରୀଷ୍ଟାବ୍ଦରେ ନାଗପୁରର ରୋହିଲାମାନଙ୍କ ମଧ୍ୟରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ଘଟିଥିଲା । ୧୮୪୪ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରେସିଡେନ୍‌ସିରେ ସାମାନ୍ତବର୍ତ୍ତୀ କୋଲ୍ହାପୁର ଓ ସାୱନ୍ତୱାଦୀ ରାଜ୍ୟର ଦୁଇଟିରେ ସେଠାକାର ରାଜାଙ୍କୁ ଭତ୍ତା ଦେବା ପାଇଁ ପ୍ରଜାମାନଙ୍କ ଭୂମିରାଜସ୍ୱ ବୃଦ୍ଧି କରିବା ଫଳରେ ପ୍ରବଳ ବ୍ରିଟିଶ୍ ବିରୋଧୀ ବିଦ୍ରୋହ ଦେଖା ଦେଇଥିଲା । ଭୂମି ଜରିବ ଓ ଫଳତଃ

ଖଜଣା ବୃଦ୍ଧି ପ୍ରତିବାଦରେ ଖୋଦ୍ ବମ୍ବେ ପ୍ରେସିଡେନ୍‌ସିର ଖାନ୍ଦେଶ ଅଞ୍ଚଳରେ କୃଷକମାନେ ବିଦ୍ରୋହ କରିଥିଲେ ।

ଉପଜାତିମାନଙ୍କ ମଧ୍ୟରେ ବିଦ୍ରୋହ ଦେଖା ଦେଉଥିଲା ଏବଂ ଫଳରେ ଔପନିବେଶିକ ଶାସକମାନେ କଠିନ ଏବଂ କ୍ଲାନ୍ତିକର "କ୍ଷୁଦ୍ର ଯୁଦ୍ଧମାନ" ଚଳେଇବାକୁ ବାଧ୍ୟ ହେଉଥିଲେ । ୧୮୩୧-୧୮୩୨ ଖ୍ରୀଷ୍ଟାବ୍ଦରେ ଛୋଟ ନାଗପୁରରେ (ବଙ୍ଗଳା ପ୍ରେସିଡେନ୍‌ସି) ହୋ ଉପଜାତିର ବିଦ୍ରୋହ ଏକ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ । ବମ୍ବେ ପ୍ରେସିଡେନ୍‌ସିରେ ମଧ୍ୟ ବହୁ ବିଦ୍ରୋହ ଘଟିଥିଲା । ଏସବୁ ହେଲା, ୧୮୧୮-୧୮୩୧ ଖ୍ରୀଷ୍ଟାବ୍ଦର ଭିଲ୍ ବିଦ୍ରୋହ, ୧୮୨୪ର କୋଲି ବିଦ୍ରୋହ । ୧୮୨୪ ଏବଂ ୧୮୨୯ରେ କିଟୁରରେ କୃଷକ ବିଦ୍ରୋହ ଏବଂ ୧୮୧୫-୧୮୩୨ରେ କଛରେ ଅସଂଖ୍ୟ ବିକ୍ଷୋଭ ଦେଖା ଦେଇଥିଲା । ୧୮୩୯ ଖ୍ରୀଷ୍ଟାବ୍ଦରେ ଶହ୍ୟାଦ୍ରିରେ ପୁଣି କୋଲି ବିଦ୍ରୋହ ଦେଖା ଦେଲା ଏବଂ ୧୮୪୪-୧୮୪୬ ଖ୍ରୀଷ୍ଟାବ୍ଦରେ ତାହାର ପୁନରାବୃତ୍ତି ଘଟିଥିଲା । ଦେଶର ଅନ୍ୟାନ୍ୟ ଅଂଶରେ ମଧ୍ୟ ଅଭିନ୍ନ ଧରଣର ଅସନ୍ତୋଷ ଦେଖା ଦେଇଥିଲା : ୧୮୨୦ ଖ୍ରୀଷ୍ଟାବ୍ଦରେ ରାଜପୁତାନାରେ ମେର୍ ବିଦ୍ରୋହ, ୧୮୪୬ରେ ଓଡ଼ିଶାରେ କନ୍ଧ ବିଦ୍ରୋହ ଏବଂ ୧୮୫୫ରେ ବିହାରରେ ସାନ୍ତାଳ ବିଦ୍ରୋହ ।

ସହରମାନଙ୍କରେ ନୂତନ ଟିକସ ପ୍ରବର୍ତ୍ତନ ଫଳରେ ସେସବୁ ସ୍ଥାନରେ ମଧ୍ୟ ବିକ୍ଷୋଭ ଦେଖା ଦେଉଥିଲା । ଏସବୁ ନିୟମତଃ ହରତାଳର ରୂପ ଧାରଣ କରୁଥିଲା । ନୂତନ ଆବାସିକ କର ପ୍ରବର୍ତ୍ତନ ପାଇଁ ବାରାଣସୀରେ ଏବଂ ନୂତନ ପୁଲିସ୍ କର ଘୋଷଣା ପରେ ୧୮୧୬ ଖ୍ରୀଷ୍ଟାବ୍ଦରେ ବେରିଲୀରେ ଏଭଳି ହରତାଳମାନ ସଂଘଟିତ ହୋଇଥିଲା । ଯଥେଷ୍ଟ ପୂର୍ବ ପ୍ରସ୍ତୁତି ସହ କୃଷକ ସଂଗଠନ ଦ୍ୱାରା ପରିଗ୍ରହିତ ଅଭ୍ୟୁତ୍‌ଥାନଗୁଡ଼ିକ ଅଦମନୀୟ ହୋଇ ପଡ଼ୁଥିଲା । ସାଧାରଣତଃ ଏହିସବୁ ସଂଗଠନ କୌଣସି ନା କୌଣସି ଧରଣର ସାଂପ୍ରଦାୟିକ ଆଦର୍ଶ ପ୍ରଚାର କରୁଥିଲେ ଏବଂ ସହଧର୍ମୀମାନଙ୍କୁ "ବିଧର୍ମୀମାନଙ୍କ" (ଅର୍ଥାତ୍, ବ୍ରିଟିଶ୍) ବିରୁଦ୍ଧରେ ସଂଘବଦ୍ଧ ହେବାକୁ ଆହ୍ୱାନ ଦେଉଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ୧୮୧୦ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରେସିଡେନ୍‌ସିର ବୋହରା ମାହ୍‌ଦି ବିଦ୍ରୋହୀମାନଙ୍କ କଥା ଉଲ୍ଲେଖଯୋଗ୍ୟ । ଜନୈକ ପୂର୍ବତନ ସେନାପତି ଆବ୍‌ଦୁର-ରହମନ୍ ଏମାନଙ୍କୁ ନେତୃତ୍ୱ ଦେଇଥିଲେ ଏବଂ ସୁରାଟ ନିକଟରେ ଗୋଟିଏ ଦୁର୍ଗ ଦଖଲ ପରେ ନିଜକୁ ମାହ୍‌ଦି (ତ୍ରାଣକର୍ତ୍ତା) ବୋଲି ଘୋଷଣା କରିଥିଲେ ।

ଏ କ୍ଷେତ୍ରରେ ଓୟାହାବୀ ଆନ୍ଦୋଳନ ସୁଦୂର ପ୍ରସାରୀ ଏବଂ ଦୀର୍ଘସ୍ଥାୟୀ ହୋଇଥିଲା । ଏହି ସଂପ୍ରଦାୟର ପ୍ରତିଷ୍ଠାତା ଥିଲେ ହୋଲକାରର ଅନ୍ୟତମ ପୂର୍ବତନ ସେନାପତି ସୈୟଦ ଆହମଦ ବାରେଲ୍‌ବୀ (୧୭୮୬-୧୮୩୧) । ସେ ଭାରତ ଅଧିକାରକାରୀ "ବିଧର୍ମୀମାନଙ୍କ" ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କରିଥିଲେ । ତାଙ୍କ ଆହ୍ୱାନରେ ବଙ୍ଗଳା ଓ ବିହାରର ଇସ୍‌ଲାମ୍ ଧର୍ମାବଲମ୍ବୀ କୃଷକ ଏବଂ ସହରର କାରିଗର ଓ ଛୋଟ ଦୋକାନୀମାନେ ଉଦ୍‌ବୀପ୍ତ ହୋଇଥିଲେ । ଓୟାହାବୀମାନେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ସଂଗ୍ରାମ ପାଇଁ ପ୍ରସ୍ତୁତି କରିବା ସଙ୍ଗେ ସଙ୍ଗେ ସ୍ୱଘୋଷିତ ସାମାଜିକ ନ୍ୟାୟର ନୀତି ଭିତ୍ତିକ ସମାଜ ପୁନର୍ଗଠନର ଆହ୍ୱାନ ଦେଇଥିଲେ । ଅବଶ୍ୟ, ଏହି ନ୍ୟାୟ ନୀତିର ଛାଞ୍ଚଟି ଥିଲା ଖୁବ୍ ଅସ୍ପଷ୍ଟ । ୧୮୨୦ ଖ୍ରୀଷ୍ଟାବ୍ଦରେ ଔପନିବେଶିକ ଶାସକମାନେ ଓୟାହାବୀମାନଙ୍କୁ ବିହାରରୁ ବିତାଡ଼ିତ କଲେ ସେମାନେ ପୂର୍ବରୁ ଉପଜାତିମାନଙ୍କର ଏଲାକା ସିତାନାରେ ଅନୁପ୍ରବେଶ କରିଥିଲେ । ସେଠାରେ ଶିଖମାନଙ୍କ ସହିତ ଓୟାହାବୀମାନଙ୍କର ସଂଘର୍ଷ

ଘଟିଥିଲା ଏବଂ ୧୮୩୧ ଖ୍ରୀଷ୍ଟାବ୍ଦରେ ସେମାନଙ୍କ ହାତରେ ସୈୟଦ ଆହମଦ ନିହତ ହୋଇଥିଲେ । ତା ସତ୍ତ୍ୱେ ବଙ୍ଗଳା ଓ ବିହାରରେ ଓୟାହାବୀମାନଙ୍କର ଆନ୍ଦୋଳନ ଅବ୍ୟାହତ ରହିଥିଲା । ୧୮୩୧ ଖ୍ରୀଷ୍ଟାବ୍ଦରେ ତିନି ଚାରି ହଜାର ସଶସ୍ତ୍ର ଓୟାହାବୀ ବାରାସତ ଜିଲ୍ଲାରେ ଏକ ଛୋଟ ସହର ଦଖଲ କରି କଲିକତା ଆଡ଼କୁ ଅଗ୍ରସର ହୋଇଥିଲେ । ଏକ ଭୟଙ୍କର ଯୁଦ୍ଧ ପରେ କମାଣର ଗୁଳି ଆଗରେ ସେମାନେ ଛତ୍ରଭଙ୍ଗ ଦେଇଥିଲେ ।

ହାଜୀ ଶରିୟତ ଉଲ୍ଲାଙ୍କ ନେତୃତ୍ୱାଧୀନ ଫରାଜୀ ଆନ୍ଦୋଳନ ଥିଲା ଓୟାହାବୀମାନଙ୍କର ଗୋଟିଏ ଉପଶାଖା । ହିନ୍ଦୁ, ମୁସଲିମ୍ ଜମିଦାର ଓ ବ୍ରିଟିଶ୍ ନୀଳକର ନିର୍ବିଶେଷରେ ସମସ୍ତ ଅତ୍ୟାଚାରୀଙ୍କ ବିରୁଦ୍ଧରେ ଏମାନେ ସହିଂସ ପ୍ରତିଶୋଧ ନେଉଥିଲେ । ବଙ୍ଗଳାରେ ଏହା ତା'ର ଚରିତ୍ର ଆଉ ମତବାଦ ଦୃଷ୍ଟିରୁ ଥିଲା ମଧ୍ୟଯୁଗୀୟ ଧରଣର ଏକ କୃଷକ ଆନ୍ଦୋଳନ । ସେମାନଙ୍କ ପୂର୍ବବର୍ତ୍ତୀ ଓୟାହାବୀମାନଙ୍କ ଭଳି ଏମାନେ ବିଶୁଦ୍ଧ ଇସ୍ଲାମ୍ ଆଦର୍ଶକୁ ଊର୍ଦ୍ଧ୍ୱରେ ଟେକି ଧରିଥିଲେ ଏବଂ ଖୋଦାଙ୍କ ଦୁନିଆରେ ସମସ୍ତ ମଣିଷର ସମାନ ଅଧିକାର କଥା କହୁଥିଲେ । ସେମାନେ ଘୋଷଣା କରୁଥିଲେ, ସେମାନଙ୍କ ସଂପ୍ରଦାୟର ସମସ୍ତ ସଦସ୍ୟ ସମାନ, ଖୋଦା ହେଉଛନ୍ତି ଜମିର ମାଲିକ ଏବଂ ନିଜ ସ୍ୱାର୍ଥରେ କୃଷକମାନଙ୍କ ଠାରୁ ଖଜଣା ଆଦାୟ କରିବାର କୌଣସି ଅଧିକାର କାହାରି ନାହିଁ । ଇତିମଧ୍ୟରେ ୧୮୫୨ ଖ୍ରୀଷ୍ଟାବ୍ଦରେ ପାଟନାରେ ଓୟାହାବୀମାନେ ବ୍ରିଟେନ୍ ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କରିଥିଲେ । ସେମାନେ କୃଷକ ଏବଂ ସହର ବାସିନ୍ଦାମାନଙ୍କର, ବିଶେଷ ଭାବେ ବଙ୍ଗଳାର ସିପାହୀମାନଙ୍କର ସାଦର ସମର୍ଥନ ଲାଭ କରିଥିଲେ ।

କେବଳ ଉପନିବେଶବିରୋଧୀ ଏହିସବୁ ଆନ୍ଦୋଳନର ତାଲିକାରୁ ତତ୍କାଳୀନ ଲୋକଙ୍କର ବ୍ରିଟିଶ୍‌ବିରୋଧୀ ମନୋଭାବର ଗଭୀରତା କେତେ ଥିଲା, ତା'ର ଯଥେଷ୍ଟ ପ୍ରମାଣ ମିଳିଥାଏ । କିନ୍ତୁ ବ୍ରିଟିଶ୍ ପ୍ରଭୁତ୍ୱର ବିକଳ୍ପ ହିସାବରେ ସାମନ୍ତବାଦୀ ସ୍ୱାଧୀନ ଭାରତବର୍ଷ ଛଡ଼ା ଏହିସବୁ ଆନ୍ଦୋଳନରୁ ଅନ୍ୟ କୌଣସି ଫଳ ମିଳିବାର ସମ୍ଭାବନା ନଥିଲା । ଔପନିବେଶିକ ନିର୍ଯ୍ୟାତନର ବିରୁଦ୍ଧାଚାରୀ ଏହିସବୁ ନେତାମାନେ କାହିଁକି ଅତୀତର ସାମନ୍ତବାଦୀ ଢାଞ୍ଚାର ପ୍ରତ୍ୟାବର୍ତ୍ତନ ଚାହୁଁଥିଲେ, ତା ମଧ୍ୟରେ ଏହାର ବ୍ୟାଖ୍ୟା ମିଳିଥାଏ ।

## ବୁର୍ଜୁଆ ଆନ୍ଦୋଳନର ଉନ୍ମେଷ

ଇତିମଧ୍ୟରେ ଭାରତରେ ଅନ୍ୟତମ ଏକ ଆନ୍ଦୋଳନର ଉନ୍ମେଷ ଘଟିଥିଲା । ଏହାର ନେତାମାନେ ଏଭଳି ସବୁ ଲୋକ ଥିଲେ, ଯେଉଁମାନେ ତତ୍କାଳୀନ ଭାରତବର୍ଷକୁ ଏକ ଅନଗ୍ରସର ଦେଶ ବୋଲି ମନେ କରୁଥିଲେ ଏବଂ କେତେକ ପ୍ରଚଳିତ ପରମ୍ପରା ଓ ରୀତିନୀତିର ବିରୋଧୀ ଥିଲେ । ୟୁରୋପରେ ଶିକ୍ଷାପ୍ରାପ୍ତ ଏହିସବୁ ବ୍ୟକ୍ତିବୃନ୍ଦ ଦେଶର ସାମନ୍ତବାଦୀ ରୀତିନୀତିଗୁଡ଼ିକୁ ଯୁକ୍ତିବାଦୀ ଓ ମାନବବାଦୀ ଦୃଷ୍ଟିଭଙ୍ଗିରୁ ସମାଲୋଚନା କରୁଥିଲେ । କିନ୍ତୁ ହିନ୍ଦୁ ଧର୍ମ ସଂସ୍କାରର ପ୍ରୟୋଜନୀୟତା ସଂପର୍କରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ଏମାନେ ବ୍ରିଟିଶ୍‌ମାନଙ୍କୁ ମଧ୍ୟ ସହଯୋଗିତା କରିଥିଲେ । ସେମାନେ ଆଶା କରିଥିଲେ ଯେ, ସଂସ୍କୃତିସଂପନ୍ନ ବ୍ରିଟିଶ୍‌ମାନେ ଜନସାଧାରଣଙ୍କ ମଧ୍ୟରେ ଶିକ୍ଷା ବିସ୍ତାର କରିବାରେ, ଯୁଗ ଯୁଗ ଧରି ସଞ୍ଚିତ କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରିବାରେ ସେମାନଙ୍କୁ

ସହାୟତା ଦେବେ । ବଙ୍ଗଳାରେ ଏହି ନୂତନ ଆନ୍ଦୋଳନର ନେତୃବୃନ୍ଦ ଥିଲେ ଜମିଦାର, କଂପାନିର କର୍ମଚାରୀ, ବମ୍ବେରେ – ଧନୀ ପାର୍ସୀ ଓ ମାନ୍ଦ୍ରାଜରେ – ବ୍ୟବସାୟୀ । ଔପନିବେଶିକ ସରକାରର କେତେକ କାର୍ଯ୍ୟକୁ ସମାଲୋଚନା କଲେ ମଧ୍ୟ ଭାରତରେ ଔପନିବେଶିକ ଶାସନ ବିସ୍ତାର କରିବା ଦିଗରେ ସେମାନେ କଂପାନିର ବିରୋଧିତା କରି ନଥିଲେ ।

ଏହି ନୂତନ ଆନ୍ଦୋଳନର ପ୍ରତିନିଧି ଥିଲେ ବିଖ୍ୟାତ ବଙ୍ଗାଳୀ ଜମିଦାର ରାମମୋହନ ରାୟ (୧୭୭୨-୧୮୩୩) । ସେ ୧୮୧୫ ଓ ୧୮୨୮ ଖ୍ରୀଷ୍ଟାବ୍ଦରେ ଯଥା କ୍ରମେ "ଆର୍ଯ୍ୟ ସଭା" ଓ "ବ୍ରାହ୍ମ ସମାଜ" ପ୍ରତିଷ୍ଠା କରିଥିଲେ । ଧର୍ମୀୟ ସଂସ୍କାର ବୈଶିଷ୍ଟ୍ୟଚିହ୍ନିତ ହେଲେ ମଧ୍ୟ ନିର୍ବାଚିତ ନେତୃବୃନ୍ଦ ଆଦି ସମେତ ୟୁରୋପୀୟ ଢାଞ୍ଚାରେ ଗଠିତ ଏସବୁ ସଂଗଠନ ଥିଲା ଭାରତର ପ୍ରଥମ ଆଧୁନିକ ଧରଣର ସମାଜ ସଂସ୍ଥା । ରାମମୋହନ ରାୟ ହିନ୍ଦୁ ଧର୍ମରୁ, ତାଙ୍କ ମତରେ, "ପରବର୍ତ୍ତୀ କାଳରେ ପୁଞ୍ଜିଭୂତ" ନିକୃଷ୍ଟତମ ସାମନ୍ତବାଦୀ କାର୍ଯ୍ୟକଳାପ ଓ ବିଧିବିଧାନଗୁଡ଼ିକୁ ହଟେଇ ଦେବା ପାଇଁ ଚେଷ୍ଟା କରିଥିଲେ । ତାଙ୍କ ଉଦ୍ୟୋଗରେ ୧୮୨୧ ଖ୍ରୀଷ୍ଟାବ୍ଦରେ ପ୍ରଥମ ଭାରତୀୟ ସଂବାଦପତ୍ର "ସଂବାଦ କୌମୁଦୀ" ବଙ୍ଗଳାରେ ଏବଂ ୧୮୨୨ ମସିହାରେ ଆଉ ଏକ ସଂବାଦପତ୍ର "ମିରାତ-ଉଲ୍-ଆକବର" ଫାରସୀରେ ପ୍ରକାଶ ପାଇଥିଲା । ପତ୍ରିକା ଦୁଇଟିରେ ଭାରତ ଓ ବଙ୍ଗଳାର ସମାଜଜୀବନ ସଂକ୍ରାନ୍ତ ପ୍ରଶ୍ନାଦି ଆଲୋଚିତ ହେଉଥିଲା ।

"ବ୍ରାହ୍ମ ସମାଜର" ପ୍ରଭାବକୁ ଖର୍ବ କରିବା ପାଇଁ ୧୮୩୦ ଖ୍ରୀଷ୍ଟାବ୍ଦରେ ରାମମୋହନଙ୍କ ବିରୋଧୀ ଭାରତୀୟ ବଣିକମାନଙ୍କ ଉଦ୍ୟୋଗରେ "ଧର୍ମ ସମାଜ" ନାମରେ ଏକ ସଂସ୍ଥା ପ୍ରତିଷ୍ଠିତ ହୋଇଥିଲା । ଏହି ସମୟରେ ହେନ୍‌ରି ଡିରୋଜିଓ (ପର୍ତ୍ତୁଗୀଜ୍ ପିତା ଏବଂ ହିନ୍ଦୁ ମାତାର ସନ୍ତାନ) ହିନ୍ଦୁ କଲେଜରେ (ଆଧୁନିକ ଧରଣର ଶିକ୍ଷା ପ୍ରତିଷ୍ଠାନ) ଆକାଡେମିକ୍ ଆସୋସିଏସନ୍ ଗଠନ କରିଥିଲେ । ପ୍ରଚଳିତ ବିଶ୍ୱାସ ଓ କୁସଂସ୍କାରର ବିରୋଧିତା କରିବା ଦୃଷ୍ଟିରୁ ଏହା ଥିଲା ସ୍ୱଶ୍ରେଣୀର ଅନ୍ୟାନ୍ୟ ସଂସ୍ଥା ତୁଳନାରେ ଖୁବ୍ ଅଟଳ । ଏହି ସଂସ୍ଥା ମଧ୍ୟରୁ ଜନ୍ମ ନେଇଥିଲା "ୟଙ୍ଗ୍ ବେଙ୍ଗଲ" ପ୍ରତିଷ୍ଠାନଟି । ହିନ୍ଦୁ କଲେଜର ଶିକ୍ଷକମାନଙ୍କର ବିରୋଧିତା ଫଳରେ ଆସୋସିଏସନ୍‌ଟି ଭାଙ୍ଗିଗଲା ପରେ ଏହାର ସଦସ୍ୟମାନେ "ବ୍ରାହ୍ମ ସମାଜରେ" ଯୋଗ ଦେଇଥିଲେ । ରାମମୋହନ ରାୟଙ୍କ ମୃତ୍ୟୁ ପରେ ଦ୍ୱାରକାନାଥ ଠାକୁର (୧୭୯୪-୧୮୪୬) "ବ୍ରାହ୍ମ ସମାଜ" ପରିଚାଳନାର ଦାୟିତ୍ୱ ନେଇଥିଲେ । ଏହି ନେତୃସ୍ଥାନୀୟ ବଙ୍ଗାଳୀ ବଣିକ ଥିଲେ ୟୁରୋପୀୟ ଧାରାରେ ପ୍ରଥମ ଭାରତୀୟ ବାଣିଜ୍ୟ କଂପାନିର ପ୍ରତିଷ୍ଠାତା । ୧୮୩୦ରୁ ୧୮୪୦ ଦଶକରେ ଜ୍ଞାନ ପ୍ରଗ୍ରହ ଓ ଅନୁରୂପ ଆଦର୍ଶବର୍ତ୍ତୀ ଅସଂଖ୍ୟ ସଭାସମିତି ବଙ୍ଗଳାରେ ଗଢ଼ି ଉଠିଥିଲା । ପରିଶେଷରେ, ପରିପକ୍ୱ ଜାତୀୟ ସାମାଜିକ-ରାଜନୈତିକ ସଂସ୍ଥା ହିସାବରେ ୧୮୫୧ ଖ୍ରୀଷ୍ଟାବ୍ଦରେ କଲିକତାରେ ପ୍ରତିଷ୍ଠିତ ହେଲା "ବ୍ରିଟିଶ୍ ଇଣ୍ଡିଆନ ଆସୋସିଏସନ୍" ।

ବମ୍ବେରେ ମଧ୍ୟ ଅନୁରୂପ ଘଟଣାବଳୀ ଘଟିଥିଲା । ଦେଶର ଏହି ଅଂଶର ଏତାଦୃଶ ଆନ୍ଦୋଳନରେ ଅଗ୍ରଗଣ୍ୟ ଥିଲେ ଔପନିବେଶିକ ଶାସକମାନଙ୍କର ସହଯୋଗୀ ଧନୀ ଓ ସମ୍ଭ୍ରାନ୍ତ ପାର୍ସୀ ଏବଂ ୟୁରୋପୀୟ ଧାରାରେ ପ୍ରତିଷ୍ଠିତ ସ୍ଥାନୀୟ ଶିକ୍ଷା ପ୍ରତିଷ୍ଠାନ, ବିଶେଷତଃ, ଏଲଫିନ୍‌ଷ୍ଟୋନ୍ କଲେଜର ପ୍ରଭାବରେ ଗଢ଼ି ଉଠିଥିବା ତରୁଣ, ଉଦ୍ୟମୀ ମରହଟ୍ଟୀ ବୁଦ୍ଧିଜୀବୀ ସଂପ୍ରଦାୟ । ଏହି ଶେଷୋକ୍ତ ଦଳ ମଧ୍ୟରେ ବିଶେଷ ଭାବେ ଉଲ୍ଲେଖଯୋଗ୍ୟ ହେଲେ, ବାଲ୍ ଶାସ୍ତୀ ଜାମ୍‌ଭେଲକାର (୧୮୧୨-୧୮୪୬),

ପ୍ରଥମ ଇଂରେଜୀ-ମରହଟ୍ଟୀ ସାପ୍ତାହିକ "ବମ୍ବେ ଦର୍ପଣ" ପତ୍ରିକାର ପ୍ରତିଷ୍ଠାତା (ଏହା ଭାରତ ଶାସନରେ ଭାରତୀୟମାନଙ୍କର ଅଂଶଗ୍ରହଣ ପାଇଁ ଦାବି କରୁଥିଲା ଏବଂ ଔପନିବେଶିକ ରାଜସ୍ୱ ଓ ଶୁଳ୍କ ନୀତିର କଠୋର ସମାଲୋଚନା କରୁଥିଲା); ମରହଟ୍ଟୀ ଭାଷାରେ ଭାରତବର୍ଷର ଇତିହାସ ରଚୟିତା ରାମକୃଷ୍ଣ ବିଶ୍ୱନାଥ (ଏହି ଇତିହାସ ଗ୍ରନ୍ଥରେ ଭାରତରେ ବ୍ରିଟିଶ୍ ନୀତିକୁ ସମାଲୋଚନା କରାଗଲେ ମଧ୍ୟ ଲେଖକ ଶିକ୍ଷିତ ଇଂରେଜ ଓ ଭାରତୀୟମାନଙ୍କର ଘନିଷ୍ଠ ସହଯୋଗିତା ମଧ୍ୟରେ ସବୁ ସମସ୍ୟାର ସମାଧାନ ଦେଖିଥିଲେ); ପୁନାର "ପ୍ରଭାକର" ନାମକ ସମ୍ବାଦପତ୍ରରେ ଲୋକହିତବାଦୀ ଏହି ଛଦ୍ମନାମର ଲେଖକ ଗୋପାଳ ହରି ଦେଶମୁଖ (ସେ ଭାରତ ସ୍ୱାଧୀନତା ହରେଇବାର କାରଣ ହିସାବରେ ପୁରୁଣା ସାମନ୍ତବାଦୀ ଆଶ୍ରୟ ଏବଂ ଅଭିଜାତବର୍ଗ ଓ ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ଦାୟୀ କରିଥିଲେ । ଶିକ୍ଷା ବିସ୍ତାର ପାଇଁ ଆହ୍ୱାନ ଜଣାଇ ଦେଶମୁଖ ଭବିଷ୍ୟତ୍‌ବାଣୀ କରିଥିଲେ: ବ୍ରିଟିଶ୍‌ମାନଙ୍କ କବଳରୁ ଭାରତୀୟମାନଙ୍କୁ ମୁକ୍ତି ପାଇଁ ଅନ୍ତତଃ ଦୁଇ ଶହ ବର୍ଷ ସମୟ ଲାଗିବ) ।

୧୮୫୨ ଖ୍ରୀଷ୍ଟାବ୍ଦରେ ବମ୍ବେ ଆସୋସିଏସନ୍ ପ୍ରତିଷ୍ଠିତ ହୋଇଥିଲା । ବଙ୍ଗଳାର ଆସୋସିଏସନ୍ ଭଳି ଏହା ବି ଭାଗ ଭାଗ ହୋଇଗଲା — "ବ୍ରିଟିଶ୍‌ମାନଙ୍କ ଭଳି ସମସ୍ତ ଭାରତୀୟମାନଙ୍କ ସମମର୍ଯ୍ୟାଦା ଦାନ" ଦାବି କରି ଛାତ୍ର ଏବଂ ଯୁବକମାନେ ଆଗେଇ ଆସିବା ଫଳରେ ମଧ୍ୟପନ୍ଥୀ ବଣିକମାନେ ଏହି ସଂସ୍ଥାଟିକୁ ତ୍ୟାଗ କରିଥିଲେ । କେବଳ ମାଡ୍ରାଜ ଆସୋସିଏସନ୍‌ଟି ଭାରତୀୟ ଜମିଦାରମାନଙ୍କ ଦ୍ୱାରା କୃଷକମାନଙ୍କ ଉପରେ ହେଉଥିବା ଶୋଷଣର ସୀମିତକରଣର ପ୍ରଶ୍ନଟି ଉପସ୍ଥାପିତ କରିଥିଲେ । ଇଷ୍ଟ ଇଣ୍ଡିଆ କଂପାନିର ସନନ୍ଦକୁ ପୁନର୍ବିବେଚନା କଲା ବେଳେ ଏହି ତିନୋଟି ଆସୋସିଏସନ ଭାରତରେ ଔପନିବେଶିକ ଶାସନର "ଅବିଗ୍ଭର" ସଂକ୍ରାନ୍ତ ଅଭିଯୋଗପତ୍ର ଲଣ୍ଡନ ପାର୍ଲିଆମେଣ୍ଟକୁ ପଠାଇଥିଲେ ।

ବିଦ୍ରୋହରେ ଅଂଶୀଦାର ଓ ଭାରତରୁ ବ୍ରିଟିଶ୍ ଶାସନକୁ ଉତ୍‌ଖାତ କରିବା ଦିଗରେ ସଚେଷ୍ଟ କୃଷକ ଏବଂ ସହରରେ ଗରିବମାନଙ୍କର ସେହିସବୁ ସ୍ତରଗୁଡ଼ିକ ସହିତ ଜାତୀୟ ବୁର୍ଜୁଆମାନଙ୍କର ଉଦୀୟମାନ ଆନ୍ଦୋଳନର କୌଣସି ସଂଯୋଗ ନଥିଲା । ତେଣୁ ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଗଣ ଅଭ୍ୟୁତ୍‌ଥାନରୁ ପ୍ରଭାବଶାଳୀ ଭାରତୀୟ ବୁର୍ଜୁଆ ଚକ୍ର ସଂପୂର୍ଣ୍ଣ ବିଚ୍ଛିନ୍ନ ଥିଲା ଏବଂ ସେମାନେ ଏଥିରେ ଯୋଗ ଦେଇ ନଥିଲେ ।

## ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ମହା ଗଣ ଅଭ୍ୟୁତ୍‌ଥାନ

ସିପାହୀମାନେ ଜାତୀୟ ନେତୃତ୍ୱ ଗ୍ରହଣ କଲାବେଳେ ବ୍ରିଟିଶ୍ ଔପନିବେଶିକ ଦାସତ୍ୱ ବିରୁଦ୍ଧରେ ସମଗ୍ର ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନସାଧାରଣଙ୍କର ନିର୍ଦ୍ଦିଷ୍ଟ ସ୍ତରଗୁଡ଼ିକର ବିକ୍ଷିପ୍ତ ଓ ସଂପୂର୍ଣ୍ଣ ସ୍ଥାନୀୟ କାର୍ଯ୍ୟକଳାପ ମଧ୍ୟରେ ପ୍ରକଟିତ ଘୃଣା କିଛି ପରିମାଣରେ ସଂହତ ହୋଇଥିଲା । ଏହିସବୁ ବ୍ରିଟିଶ୍ ସିପାହୀ ଥିଲେ ଦୀର୍ଘ କାଳ ଧରି ସଂଗଠିତ କ୍ରିୟାକଳାପରେ ଅଭ୍ୟସ୍ତ । ସେମାନଙ୍କୁ ବଙ୍ଗଳା, ବମ୍ବେ ଓ ମାଡ୍ରାଜ ପ୍ରେସିଡେନ୍‌ସିର ତିନୋଟି ଦଳରେ ବିଭକ୍ତ କରାଯାଇଥିଲା । ଏସବୁ ମଧ୍ୟରେ ୧ ଲକ୍ଷ ୭୦ ହଜାର (ଏମାନଙ୍କ ମଧ୍ୟରେ ଭାରତୀୟ ୧ ଲକ୍ଷ ୪୦ ହଜାର) ସୈନ୍ୟଙ୍କୁ

ନେଇ ଗଠିତ, ସାମାଜିକ ଭାବେ ସର୍ବାଧିକ ସମତ୍ୱ ବିଶିଷ୍ଟ ବଙ୍ଗଳାର ସୈନ୍ୟଦଳଟି ଥିଲା ବୃହତ୍ତମ । ପ୍ରାୟ ଏକାନ୍ତ ଭାବେ ଅଯୋଧ୍ୟା, ବିହାର ଓ ଉତ୍ତର-ପଶ୍ଚିମ ପ୍ରଦେଶଗୁଡ଼ିକରୁ ସଂଗୃହୀତ ବଙ୍ଗଳାର ଏହି ସୈନ୍ୟଦଳଟି ବ୍ରାହ୍ମଣ, ରାଜପୁତ, ଜାଠ ଓ ମୁସଲମାନ (ସୈୟଦ ଓ ପଠାଣ) ସିପାହୀମାନଙ୍କୁ ନେଇ ଗଠିତ ଥିଲା । ଏହିସବୁ ସଂପ୍ରଦାୟର ପ୍ରତିନିଧିମାନେ ଥିଲେ ଗ୍ରାମ ସମାଜର ଉଚ୍ଚ ସ୍ତରର (ପଟ୍ଟିଦାର) ଲୋକ ବା ଛୋଟିଆ ସାମନ୍ତ ଭୂସ୍ୱାମୀ ଗ୍ରାମ୍ୟ ଜମିଦାରମାନଙ୍କର ସନ୍ତାନ । ଏମାନେ ସମସ୍ତେ ହିନ୍ଦୁସ୍ତାନୀ ଭାଷା ବ୍ୟବହାର କରୁଥିଲେ ଏବଂ ଗ୍ରାମ ସହିତ ଘନିଷ୍ଠ ସଂପର୍କ ରଖିଥିଲେ ।

ଦୀର୍ଘ କାଳ ଧରି କୌଣସି ଯୁଦ୍ଧବିଗ୍ରହ ନଘଟିଥିବାରୁ ପୁଲିସ୍ କର୍ତ୍ତବ୍ୟ କରୁଥିବା ଏହିସବୁ ସିପାହୀମାନଙ୍କୁ ସମଗ୍ର ଉତ୍ତର ଭାରତରେ ଥିବା କ୍ୟାଣ୍ଟେନ୍‌ମେଣ୍ଟ, ବିଶେଷତଃ ଦୋୟାବ୍‌ରେ ରଖାଯାଇଥିଲା । ଭାରତୀୟ ମାନ ଅନୁଯାୟୀ ଏମାନେ ଭଲ ବେତନ ପାଉଥିଲେ ମଧ୍ୟ ସାଧାରଣ ସିପାହୀମାନଙ୍କ ମଧ୍ୟରେ ଇତିମଧ୍ୟରେ ଅସନ୍ତୋଷ ଦାନାବାନ୍ଧି ଉଠିଥିଲା, ସର୍ଜେଣ୍ଟଠାରୁ ଉପରକୁ କେବେବେଳେ ହେଲେ ସେମାନଙ୍କ ପଦୋନ୍ନତି ହେଉ ନଥିଲା ଏବଂ ବ୍ରିଟେନ୍‌ରୁ ଆସୁଥିବା ଯେକୌଣସି ନବାଗତ ସେମାନଙ୍କ ଉପରେ ସିଧାସଳଖ ପଦାଧିଷ୍ଠ ହେଉଥିଲା । ସାମରିକ କ୍ୟାଣ୍ଟନ୍‌ମେଣ୍ଟରେ ବ୍ରିଟିଶ୍‌ମାନଙ୍କର ନିଜସ୍ୱ ବାସସ୍ଥାନ ଥିଲା, ସେମାନେ ଆରାମପ୍ରଦ ବଙ୍ଗଳାରେ ରହୁଥିଲେ ଏବଂ ସିପାହୀମାନେ ସପରିବାରେ ବାସ କରିବା ପାଇଁ ପାଉଥିଲେ ଆଦିମ ଧରଣର କୁଡ଼ିଆସବୁ ।

ପଲାସୀ ଯୁଦ୍ଧର ଶତବାର୍ଷିକୀ ପାଖେଇ ଆସିଲେ ଓୟାହାବୀମାନଙ୍କ ପ୍ରଚାର ସିପାହୀମାନଙ୍କ ମଧ୍ୟରେ ଖୁବ୍ ସୁପ୍ରତିକ୍ରିୟା ସୃଷ୍ଟି କରିଥିଲା ଏବଂ ଠିକ୍ ସେଇ ଦିନ ବ୍ରିଟିଶ୍ ଶାସନ ଉତ୍‌ଖାତ ପାଇଁ ସିପାହୀମାନେ ପ୍ରସ୍ତୁତ ହେଉଥିଲେ । ବହୁ କାଳରୁ ଅଭ୍ୟୁତ୍‌ଥାନର ଧାରଣାଟି ଦାନାବାନ୍ଧି ଆସିଥିଲେ ମଧ୍ୟ ଏହା ସୁଶୃଙ୍ଖଳ ଭାବେ ସଂଗଠିତ ରୂପ ନେଇ ପାରି ନଥିଲା । ବସ୍ତୁତଃ, ଏହା ଘଟିଥିଲା ସ୍ୱତଃସ୍ଫୂର୍ତ୍ତ ଭାବେ । ବିଦ୍ରୋହର ପୂର୍ବକ୍ଷଣରେ ଗ୍ରାମରୁ ଗ୍ରାମକୁ ନୀରବରେ ଚପାଟି ଚାଳନ କରିବା ବିଷୟଟି, ଯାହାକି ସାମନ୍ତ ଯୁଗରୁ ଏକ ଆଶଙ୍କା ରୂପେ ବିବେଚିତ ହୋଇ ଆସିଥିଲା, ଅଭ୍ୟୁତ୍‌ଥାନର ସ୍ୱତଃସ୍ଫୂର୍ତ୍ତତାର ଯୁକ୍ତିଟିକୁ ଖଣ୍ଡନ କରେ ନାହିଁ ।

ଏନ୍‌ଫିଲଡ୍ ରାଇଫେଲ ପାଇଁ ଏକ ପ୍ରକାରର ନୂତନ ଟୋଟା ପ୍ରବର୍ତ୍ତନକୁ ବିଦ୍ରୋହର ଆଶୁ କାରଣ ବୋଲି ଧରାଯାଇଥାଏ । ଏହି ଟୋଟା ମୁସଲମାନ ଓ ହିନ୍ଦୁଙ୍କ ପକ୍ଷରେ ଅସ୍ପୃଶ୍ୟ ଶୂକର ଓ ଗୋରୁର ଚର୍ବିମିଶ୍ରିତ ବୋଲି ଏକ ଧାରଣା ସିପାହୀମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଥିଲା । ନୂତନ ଟୋଟା ବ୍ୟବହାର କରିବାକୁ ଅମଙ୍ଗ ସିପାହୀମାନଙ୍କ ବିରୁଦ୍ଧରେ ବ୍ରିଟିଶ୍ ସାମରିକ ଦପ୍ତର କଠୋର ବ୍ୟବସ୍ଥା ଗ୍ରହଣ କରିଥିଲା । ୧୮୫୭ ଖ୍ରୀଷ୍ଟାବ୍ଦର ମେ ୧୦ ତାରିଖରେ ମୀରଟ ସହରରେ ଏଥି ପାଇଁ ଦଳେ ସୈନ୍ୟ ଓ ସର୍ଜେଣ୍ଟଙ୍କୁ ପ୍ରକାଶ୍ୟରେ ହୀନପଦସ୍ଥ କଲା ପରେ ଦୀର୍ଘ ନିର୍ବାସନ ଦଣ୍ଡ ଦିଆଯାଇଥିଲା । ଘଟଣାଟି ପ୍ରଥମେ ସହରର ଗରିବ ଏବଂ ନିକଟବର୍ତ୍ତୀ ଗ୍ରାମର କୃଷକମାନଙ୍କ ସମର୍ଥନ ପ୍ରାପ୍ତ ସିପାହୀମାନଙ୍କ ମଧ୍ୟରେ ବିଦ୍ରୋହର ସ୍ଫୁଲିଙ୍ଗ ଭଳି କାର୍ଯ୍ୟ କରିଥିଲା । ବ୍ରିଟିଶ୍ ଅଫିସରମାନଙ୍କୁ ହତ୍ୟା କରିବା ପରେ ସେମାନେ ମେ ୧୧ ତାରିଖରେ ଦିଲ୍ଲୀରେ ପହଞ୍ଚିଥିଲେ ଏବଂ ସେଠାରେ ସେମାନଙ୍କ ସହିତ ଦିଲ୍ଲୀ ଗ୍ୟାରିସନ୍ ଯୋଗ ଦେଇଥିଲା । ଦିଲ୍ଲୀ ଦଖଲ କରି ବ୍ରିଟିଶ୍ ଅଫିସରମାନଙ୍କ ଉପରେ ପ୍ରତିହିଂସା ଗ୍ରହଣ କଲା ପରେ ସିପାହୀମାନେ ଲାଲକିଲାକୁ ଯାଇଥିଲେ । ସେଠାରେ ସେମାନେ

ବ୍ରିଟିଶ୍‌ମାନଙ୍କର ପେନ୍‌ସନଭୋଗୀ ଓ କ୍ଷମତାଚ୍ୟୁତ ବୃଦ୍ଧ ଦ୍ୱିତୀୟ ବାହାଦୁର ଶାହ୍‌ଙ୍କୁ (୧୮୩୭-୧୮୫୭) ବାଧ୍ୟ କରିଥିଲେ ଭାରତର ଶାସକ ହିସାବରେ ନିଜକୁ ଘୋଷଣା କରିବା ପାଇଁ ଏବଂ ବିଦ୍ରୋହୀମାନଙ୍କ ନିର୍ଦ୍ଦେଶ ମୁତାବକ ଏକ ଆବେଦନପତ୍ରରେ ସ୍ୱାକ୍ଷର କରିବା ପାଇଁ । ମୁସଲିମ୍ ଉଲେମାମାନେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ପବିତ୍ର ଧର୍ମଯୁଦ୍ଧର ଫତୋୟା ଦେଇଥିଲେ । ଦିଲ୍ଲୀରେ ଅଭିଜାତମାନଙ୍କୁ ନେଇ ଏକ ସରକାର ଗଠିତ ହୋଇଥିଲା । ବିଦ୍ରୋହୀମାନଙ୍କ ନିକଟରେ ବାହାଦୂର ଶାହ୍ ଭାରତର ପୁନର୍ଲାଭ ସ୍ୱାଧୀନତାର ପ୍ରତୀକ ହୋଇ ଉଠିଥିଲେ ।

ସମଗ୍ର ଦେଶରୁ ଦଳ ଦଳ ସିପାହୀ ଦିଲ୍ଲୀରେ ଏକତ୍ରିତ ହେବା ଫଳରେ ସେଠାରେ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ସିପାହୀମାନେ କେବଳ ନିଜ ନିଜର ସେନାପତିଙ୍କ ନିର୍ଦ୍ଦେଶ ମାନୁଥିଲେ ଏବଂ ଦିଲ୍ଲୀର ଦରବାରୀ ସରକାରକୁ ବିଶ୍ୱାସ କରୁ ନଥିଲେ । ଜମିଦାରମାନଙ୍କର ଦେୟ ଭୂମିରାଜସ୍ୱ ଦିଲ୍ଲୀରେ ନପହଞ୍ଚିବା ଫଳରେ ସହରରେ ଖାଦ୍ୟ ଓ ସହାୟ ସଂବଳର ଅଭାବ ଦେଖାଦେଲା । ଅବିଳମ୍ବେ ସାଧାରଣ ସିପାହୀମାନଙ୍କ ମଧ୍ୟରେ ନିୟମ ଶୃଙ୍ଖଳାର ଚରମ ଅବନତି ଘଟିଥିଲା ।

ଏହି ଜଟିଳ ପରିସ୍ଥିତିରେ ସିପାହୀମାନଙ୍କର ୬ଜଣ ଏବଂ ନାଗରିକମାନଙ୍କର ୪ଜଣ ପ୍ରତିନିଧିଙ୍କୁ ନେଇ ସିପାହୀମାନେ ଜଲସା ନାମକ ଏକ ନିଜସ୍ୱ ପ୍ରଶାସନ ସଂସ୍ଥା ଗଠନ କଲେ । କିନ୍ତୁ ଦିଲ୍ଲୀରେ ଦେଖା ଦେଇଥିବା ଜଟିଳ ପରିସ୍ଥିତିର ସମ୍ମୁଖୀନ ହେଲା ଭଳି କ୍ଷମତା ଜଲସାର ନଥିଲା । ଏହି ସମୟରେ କାର୍ଲ ମାର୍କସ୍ ଲେଖିଥିଲେ, "...ନିଜ ସେନାପତିମାନଙ୍କର ହତ୍ୟାକାରୀ, ଶୃଙ୍ଖଳାବର୍ଜିତ ଏବଂ ସର୍ବାଧିନାୟକର ଦାୟିତ୍ୱ ବହନ କଲା ଭଳି ବ୍ୟକ୍ତିଙ୍କୁ ଖୋଜି ପାଇବାରେ ବ୍ୟର୍ଥ ଏହିସବୁ ବହୁଧା ବିଭକ୍ତ ବିଦ୍ରୋହୀ ସିପାହୀମାନଙ୍କ ପକ୍ଷରେ କୌଣସି ସଂଗଠିତ ଦୀର୍ଘସ୍ଥାୟୀ ପ୍ରତିରୋଧ ଗଢ଼ି ତୋଳିବାର ସମ୍ଭାବନା ଖୁବ୍ ସାମାନ୍ୟ" ।*

କଠୋର ଶୃଙ୍ଖଳାବଦ୍ଧ, ଅଥଚ ଯୁଦ୍ଧ କୌଶଳରେ ବା କ୍ଷୁଦ୍ର ସୈନ୍ୟଦଳ ଠାରୁ ଅଧିକ କିଛି ପରିଚାଳନା କରିବାରେ ଅନଭ୍ୟସ୍ତ ସିପାହୀମାନେ ରଣକୌଶଳର ସମସ୍ୟାକୁ ମୁକାବିଲା କରିବାକୁ ସମର୍ଥ ହେଲେ ମଧ୍ୟ ରଣନୀତି ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଥିଲେ । ଦିଲ୍ଲୀର ଭଳକିଲା ଭଳି ଗୁରୁତ୍ୱପୂର୍ଣ୍ଣ ଘାଟିକୁ ଅଧିକାର କରିନେଲା ପରେ ଶାନ୍ତ ଅଞ୍ଚଳଗୁଡ଼ିକରେ ବିପ୍ଳବକୁ ଖେଳେଇ ଦେବା ପରିବର୍ତ୍ତେ ସେମାନେ ଆତ୍ମରକ୍ଷାମୂଳକ ସଂଗ୍ରାମର ପଥ ଗ୍ରହଣ କରିଥିଲେ । ଫଳରେ ବ୍ରିଟିଶ୍‌ମାନଙ୍କ ପକ୍ଷରେ ନିଜର ସାମର୍ଥ୍ୟ ଫେରି ପାଇବା, ଅବଶିଷ୍ଟ ଅନୁଗତ ସୈନ୍ୟମାନଙ୍କୁ ପୁନର୍ଗଠନ ଏବଂ ଦିଲ୍ଲୀ ଅବରୋଧ କରିବା ସମ୍ଭବ ହୋଇଥିଲା ।

ସର୍ବାତ୍ମକ ଚେଷ୍ଟା ସତ୍ତ୍ୱେ ଏହି ବିଦ୍ରୋହ ଦୋୟାବ୍ ଓ ମଧ୍ୟ ଭାରତର ବାହାରକୁ ବିସ୍ତାର ଲାଭ କରି ପାରିଲା ନାହିଁ । ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର ଜେନେରାଲ କ୍ୟାନିଂ (୧୮୫୬-୧୮୬୨) ବ୍ରିଟିଶ୍ ବେସାମରିକ ଲୋକମାନଙ୍କ ସମେତ ସମସ୍ତ ୟୁରୋପୀୟମାନଙ୍କୁ ଯୁଦ୍ଧ ପାଇଁ ପ୍ରସ୍ତୁତ କରିଥିଲେ ଏବଂ ପୂର୍ବ ଅନୁମାନ ଭିତ୍ତିରେ ସିପାହୀମାନଙ୍କର ପରବର୍ତ୍ତୀ ଉଦ୍ୟୋଗକୁ ବ୍ୟର୍ଥ କରିବାରେ ସଫଳ ହୋଇଥିଲେ । ଏମାନଙ୍କୁ ନିରସ୍ତ୍ର କରିବା ସଙ୍ଗେ ସଙ୍ଗେ କେତେକ ସୈନ୍ୟଦଳରେ ସଂଗଠିତ

---

* K. Marx, F. Engels, "The First Indian War of Independence 1857-1859", p. 44.

ଆନୁଷଙ୍ଗିକ ବିକ୍ଷିପ୍ତ ବିଦ୍ରୋହକୁ ଦମନ କରାଯାଇଥିଲା । ପଞ୍ଜାବରେ ବ୍ରିଟିଶ୍ ସୈନ୍ୟମାନେ ଏକ ସାଧାରଣ ସିପାହୀ ବିଦ୍ରୋହକୁ ଦମନ କରିଥିଲେ । ବିଦ୍ରୋହୀମାନଙ୍କର ଆକ୍ରମଣଗୁଡ଼ିକ ଥିଲା ବିକ୍ଷିପ୍ତ ଧରଣର । ତା'ଛଡ଼ା କେତେକ ସୈନ୍ୟଦଳ କେବଳ ଦିଲ୍ଲୀର ସିପାହୀମାନଙ୍କ ସହିତ ଯୋଗ ଦେବାକୁ ସମର୍ଥ ହୋଇଥିଲେ । ଶିଖମାନେ ହିନ୍ଦୁସ୍ତାନର ଏହି ସିପାହୀମାନଙ୍କୁ ଦଖଲଦାର ବାହିନୀ ବୋଲି ମନେ କରି କୌଣସି ସମର୍ଥନ ଦେଲେ ନାହିଁ ।

ଅନ୍ୟ ଦିଗରେ, ଅଯୋଧ୍ୟା ଓ ବୁନ୍ଦେଲଖଣ୍ଡର କୃଷକମାନେ ତତ୍‌କ୍ଷଣାତ୍ ବିଦ୍ରୋହରେ ଯୋଗ ଦେଇଥିଲେ । ସେମାନେ "ବହିରାଗତ" ନୂତନ ଜମିଦାରମାନଙ୍କୁ ଅବିଳମ୍ବେ ବିତାଡ଼ିତ କରି ସ୍ଥାନୀୟ ସରକାରୀ ଭବନଗୁଡ଼ିକ ଉପରେ ଆକ୍ରମଣ ଚଳେଇଥିଲେ । ଏପରିକି, ସେମାନଙ୍କ ପୁରୁଣା ଜମିଦାର ଓ ତାଲୁକଦାରମାନଙ୍କୁ ଖଜଣା ଦେବା ବନ୍ଦ କରି ଦେଇଥିଲେ । ଔପନିବେଶିକ ସରକାରର ସ୍ଥାନୀୟ ପ୍ରତିନିଧିମାନଙ୍କୁ ବିତାଡ଼ିତ କଲା ପରେ କୃଷକମାନେ ଆତ୍ମରକ୍ଷା ପାଇଁ ନିଜ ସଂପ୍ରଦାୟ ମଧ୍ୟରୁ ସଶସ୍ତ୍ର ଦଳ ଗଠନ କରି ବିଜୟୀ ବ୍ରିଟିଶ୍‌ମାନଙ୍କ ଦ୍ୱାରା ବାଜ୍ୟାପ୍ତକରା ସେମାନଙ୍କ ଗ୍ରାମ ଗୋଷ୍ଠୀର ଜମିସବୁକୁ ରକ୍ଷା କରିବାକୁ ଉଦ୍ୟମ କରିଥିଲେ ।

ଦୋୟାବ୍ ଅଞ୍ଚଳର ସହରଗୁଡ଼ିକର ଭାରତୀୟ ଜନସାଧାରଣ ବିଦ୍ରୋହର ସକ୍ରିୟ ଅଂଶୀଦାର ଥିଲେ । ଅଲିଗଡ଼ (ମେ ୨୧), ବେରିଲୀ ଓ ଲକ୍ଷ୍ନୌ (ମେ ୩୧), କାନ୍‌ପୁର (ଜୁନ୍ ୪) ଏବଂ ଏଲାହାବାଦ (ଜୁନ୍ ୬), ଆଦି ଅନେକ ବଡ଼ ବଡ଼ ସହରକୁ ଦଖଲ କଲା ପରେ ଏସବୁରେ ପ୍ରତ୍ୟେକଟିରେ ସେମାନେ ଗୋଟିଏ ଗୋଟିଏ ସରକାର ଗଠନ କରିଥିଲେ । ବେରିଲୀର ନୂତନ ପ୍ରଶାସନର ମୁଖ୍ୟ ଥିଲେ ୧୭୭୨ ଖ୍ରୀଷ୍ଟାବ୍ଦରେ ଅଯୋଧ୍ୟା ସହିତ କଂପାନିର ଯୁଦ୍ଧରେ ନିହତ ହାଫିଜ୍ ରହମତ ଖାଁ ରୋହିଲଙ୍କ ବଂଶଧର ବୃଦ୍ଧ ସେନାପତି ଖାଁ ବାହାଦୂର ଖାଁ । କାନ୍‌ପୁରର ଶାସନଭାର ଥିଲା ଡାଲହୌସୀଙ୍କ କର୍ତ୍ତୃକ ରାଜ୍ୟାଧିକାରରୁ ବଞ୍ଚିତ ପେଶବା ଦ୍ୱିତୀୟ ବାଜୀ ରାଓଙ୍କ ପୋଷ୍ୟପୁତ୍ର ନାନା ସାହେବଙ୍କ ଉପରେ । ଏଲାହାବାଦର ଦାୟିତ୍ୱରେ ଥିଲେ ଜନୈକ ସ୍କୁଲ ଶିକ୍ଷକ ଓ ଓୟାହାବୀ ସଂପ୍ରଦାୟର ଅନୁଗାମୀ ମୌଲବୀ ଲିୟାକତ ଅଲୀ । ପାଟଣାର ବିଦ୍ରୋହ ପରିଚାଳନା କରୁଥିଲେ ଜନୈକ ଓୟାହାବୀ ପୁସ୍ତକ ବିକ୍ରେତା ପୀର୍ ଅଲୀ ।

ଇତିମଧ୍ୟରେ ଦିଲ୍ଲୀର ସିପାହୀମାନେ କେତେକ ଅଭିଯାନ ସତ୍ତ୍ୱେ କୌଣସି ବଡ଼ ରକମର ଆକ୍ରମଣ ଚଳେଇ ନଥିଲେ । ଏପରିକି ବେରିଲୀର ସେନାପତି, ଅନ୍ୟତମ ପ୍ରତିଭାବାନ ସିପାହୀ ନେତା ବଖ୍‌ତ ଖାଁଙ୍କ ଭଳି ଉଦ୍ୟମୀ ବ୍ୟକ୍ତି କଠୋର ପଦକ୍ଷେପ ଅବଲମ୍ବନ ସତ୍ତ୍ୱେ କୌଣସି ନିୟମ ଶୃଙ୍ଖଳା ପ୍ରତିଷ୍ଠା କରି ପାରି ନଥିଲେ । ସିପାହୀମାନଙ୍କ ଆଡ଼ୁ ଏହି ନିଷ୍କ୍ରିୟତାର ପରିପ୍ରେକ୍ଷିତରେ ବ୍ରିଟିଶ୍‌ମାନେ ଆକ୍ରମଣ କରିବାକୁ ସଜ ହୋଇଥିଲେ । ସେମାନେ ମାନ୍ଦ୍ରାଜ ଏବଂ ଇରାନ୍‌ର ସୈନ୍ୟମାନଙ୍କୁ ନେଇ ଏବଂ ଚୀନ୍‌କୁ ଯାଉଥିବା ସୈନ୍ୟଦଳଗୁଡ଼ିକୁ ଫେରେଇ ଆଣି ଏକ ବିରାଟ ସେନାବାହିନୀ ଗଠନ କଲେ । ପ୍ରାୟ ୬୫ ହଜାର ସିପାହୀ ଦିଲ୍ଲୀ ଆକ୍ରମଣକାରୀ ୬ ହଜାର ବ୍ରିଟିଶ୍ ସୈନ୍ୟଙ୍କୁ ହଟେଇବାକୁ ବ୍ୟର୍ଥ ହୋଇଥିଲେ । ସାମରିକ ପରିସ୍ଥିତିର ଅବନତି ଓ ଅର୍ଥାଭାବ ହେତୁ କେତେକ ସିପାହୀ ସ୍ୱେଚ୍ଛାରେ ଦିଲ୍ଲୀ ତ୍ୟାଗ କରିଥିଲେ । ନାଜାଫ୍‌ଗଡ଼ରେ ବ୍ରିଟିଶ୍‌ମାନଙ୍କ ହାତରେ ବଖ୍‌ତ ଖାଁଙ୍କ ପରାଜୟ ସିପାହୀମାନଙ୍କ ମନୋବଳ ଉପରେ ଗୁରୁତର ଆଘାତ ହାଣିଥିଲା । ତା'ଛଡ଼ା ୧୮୫୭ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ବିଦ୍ରୋହୀମାନଙ୍କ ଘୋଷଣାପତ୍ରରେ ବିଜୟ ପରେ ବଣିକ

ଏବଂ ମୁସଲମାନ ଧର୍ମ ନେତାମାନଙ୍କ ପାଇଁ ବହୁବିଧ ସୁଯୋଗ ସୁବିଧାର ପ୍ରତିଶ୍ରୁତି ଥିଲେ ମଧ୍ୟ ଭୂମି ରାଜସ୍ୱ କମାଇବାର କୌଣସି ଉଲ୍ଲେଖ ନଥିଲା । ଏଥିରେ ସିପାହୀମାନଙ୍କର , ବିଶେଷତଃ, ଗ୍ରାମୀଣ ସିପାହୀମାନଙ୍କ ମଧ୍ୟରେ ହତାଶା ଦେଖା ଦେଲା । ଇତିମଧ୍ୟରେ ସେପ୍‌ଟେମ୍ବର ୧୪ ତାରିଖ ଦିନ ବ୍ରିଟିଶ୍‌ମାନେ ବିରାଟ ସୈନ୍ୟବାହିନୀ ସହ ଦିଲ୍ଲୀ ଉପରେ ଆକ୍ରମଣ ଚଳେଇଥିଲେ ଏବଂ ପାଞ୍ଚ ଦିନ ପରେ ସହର ଓ ଦୁର୍ଗଗୁଡ଼ିକୁ ଦଖଲ କରି ନେଇଥିଲେ । ତା'ପରେ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ପାଶବିକ ପ୍ରତିହିଂସା ଆରମ୍ଭ ହୋଇ ଯାଇଥିଲା । ଏପରିକି ବମ୍ବେର ଗଭର୍ଣ୍ଣର ଲର୍ଡ ଏଲଫିନ୍‌ଷ୍ଟୋନ୍ ମଧ୍ୟ ଦିଲ୍ଲୀ ଦଖଲ ପରେ ବ୍ରିଟିଶ୍ ସୈନ୍ୟମାନଙ୍କର ଅପରାଧକୁ ଅବର୍ଣ୍ଣନୀୟ ବୋଲି ଉଲ୍ଲେଖ କରିଥିଲେ । ଏମାନଙ୍କ ପ୍ରତିହିଂସା କବଳରୁ ଶତ୍ରୁ-ମିତ୍ର କେହି ନିରାପଦ ନଥିଲେ । ଏହି ଅତ୍ୟାଚାରର ଏପରିକି ନାଦୀର ଶାହ୍‌ଙ୍କୁ ହାର ମନେଇ ଦେଇଥିଲା ।

ଦିଲ୍ଲୀ ଅଧିକାର ପରେ ବ୍ରିଟିଶ୍‌ମାନେ କେବଳ ୧୭ ହଜାର ସୈନ୍ୟଙ୍କୁ ମୁକ୍ତ କରି ନଥିଲେ, ବିଦ୍ରୋହୀମାନଙ୍କର ମନୋବଳକୁ ଭାଙ୍ଗି ଦେଇଥିଲେ । କାରଣ ସିପାହୀମାନଙ୍କ ନିକଟରେ ଦିଲ୍ଲୀ ସ୍ୱାଧୀନ ମୋଗଲ ସାମ୍ରାଜ୍ୟର ପ୍ରତୀକ ହୋଇ ଉଠିଥିଲା । ଦିଲ୍ଲୀର ସହରତଳୀରେ ହୁମାୟୁନ୍‌ଙ୍କ ସମାଧି ସୌଧରେ ଆତ୍ମଗୋପନ କରିଥିବା ବାହାଦୂର ଶାହ୍‌ଙ୍କୁ ବନ୍ଦୀ କରାଯାଇଥିଲା । ବିଚାର ପରେ ସେ ରେଙ୍ଗୁନ୍‌କୁ ନିର୍ବାସିତ ହୋଇଥିଲେ ଏବଂ ୧୮୬୨ ଖ୍ରୀଷ୍ଟାବ୍ଦରେ ସେଠାରେ ପ୍ରାଣତ୍ୟାଗ କରିଥିଲେ । ଯୁଦ୍ଧବନ୍ଦୀ ହିସାବରେ ବାହାଦୂର ଶାହ୍‌ଙ୍କ ପୁତ୍ରମାନଙ୍କୁ ଜଣେକ ବ୍ରିଟିଶ୍ ଅଫିସର ହଡ୍‌ସନ୍ ହତ୍ୟା କରିଥିଲେ । ଏହି ବ୍ୟାପକ ହତ୍ୟାକାଣ୍ଡ ପରେ ଦିଲ୍ଲୀ ବହୁ ବର୍ଷ ପର୍ଯ୍ୟନ୍ତ ବିଧ୍ୱସ୍ତ ଅବସ୍ଥାରେ ପଡ଼ି ରହିଥିଲା ।

ଇତିମଧ୍ୟରେ ବ୍ରିଟିଶ୍‌ମାନଙ୍କୁ ସାହାଯ୍ୟ କରିବା ପାଇଁ କଲିକତାରୁ ଦିଲ୍ଲୀ ଅଭିମୁଖରେ ଆସୁଥିବା ଜେନେରାଲ ନେଇଲ ବାରାଣସୀ ଓ ଏଲାହାବାଦର ବିଦ୍ରୋହୀ ସହରଗୁଡ଼ିକର ସିପାହୀ ଓ ଅଧିବାସୀମାନଙ୍କୁ ନିର୍ବିଚାରରେ ହତ୍ୟା କରିଥିଲେ । ତାଙ୍କ ନିଷ୍ଠୁରତା ଦ୍ୱାରା ଲର୍ଡ କ୍ୟାନିଂ ପର୍ଯ୍ୟନ୍ତ ବି ବିରକ୍ତ ହୋଇଥିଲେ ଏବଂ ଜେନେରାଲ ହ୍ୟାଭଲକ୍‌ଙ୍କୁ ତାଙ୍କ ସ୍ଥାନରେ ପ୍ରତିଷ୍ଠିତ କରିଥିଲେ । ସେ ମଧ୍ୟ ଯାତ୍ରା ପଥରେ ଗ୍ରାମ ସହର ଜାଳି ପୋଡ଼ି, ଶହ ଶହ ଲୋକଙ୍କୁ ଫାଶିଖୁଣ୍ଟରେ ଝୁଲେଇ ନିର୍ବିଚାରରେ ହତ୍ୟାଲୀଳା ଚଳେଇଥିଲେ । ଦିଲ୍ଲୀରୁ ଲକ୍ଷ୍ନୌ ଗଲା ପଥରେ ବିଦ୍ରୋହର ଅନ୍ୟତମ କେନ୍ଦ୍ର କାନ୍‌ପୁର ସହରଟିକୁ ମଧ୍ୟ ସେ ଅତିକ୍ରମ କରିଥିଲେ । ଏହି ସହରର ବିଦ୍ରୋହୀମାନଙ୍କର ନେତା ଥିଲେ ନାନା ସାହେବ ଓ ତାଙ୍କ ଦେହରକ୍ଷୀ ତାଁତିଆ ଟୋପୀ ଏବଂ ସଚିବ, ସୁପଣ୍ଡିତ, ଦୁଇ ଥର ୟୁରୋପ ଭ୍ରମଣକାରୀ, ଆଜିମୁଲ୍ଲାହ୍ ଖାଁ । ବ୍ରିଟିଶ୍ ଗ୍ୟାରିସନ୍‌ର ସୈନ୍ୟ ଓ ସେମାନଙ୍କ ପରିବାରବର୍ଗ ସାମରିକ କ୍ୟାଣ୍ଟନ୍‌ମେଣ୍ଟର ସୁରକ୍ଷିତ ଏଲାକାରେ ଆଶ୍ରୟ ନେଇଥିଲେ ଏବଂ କମାଣ ସାହାଯ୍ୟରେ ସିପାହୀମାନଙ୍କ ଠାରୁ ଆତ୍ମରକ୍ଷା କରିବାକୁ ସକ୍ଷମ ହୋଇଥିଲେ । ତିନି ସପ୍ତାହ ମଧ୍ୟରେ ଗ୍ୟାରିସନ୍‌ଟି ଆତ୍ମସମର୍ପଣ କରିଥିଲା । ଇତିମଧ୍ୟରେ ସହରରେ ବିଦ୍ରୋହୀ ସୈନ୍ୟ ଓ ସିପାହୀମାନଙ୍କ ସଂଖ୍ୟା ପ୍ରାୟ ୧୦ ହଜାରକୁ ଆସି ଯାଇଥିଲା । ଫଳରେ ଏଠାରେ ମଧ୍ୟ ଖାଦ୍ୟାଭାବ ଏବଂ ଦିଲ୍ଲୀର ଅନୁରୂପ ସମସ୍ୟାଦିର ପୁନରାବୃତ୍ତି ଘଟିଥିଲା । ଏଠି ସିପାହୀମାନେ ଦୁଇଥର ହ୍ୟାଭଲକ୍‌ଙ୍କ ସୈନ୍ୟମାନଙ୍କ ସହିତ ଯୁଦ୍ଧ କରିଥିଲେ, କିନ୍ତୁ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ସତ୍ତ୍ୱେ ପ୍ରତିଥର ସେମାନେ ପରାଜିତ ହୋଇଥିଲେ । ଜୁନ୍ ମାସର ମଧ୍ୟ ଭାଗ ବେଳକୁ କାନ୍‌ପୁରରେ ପ୍ରବେଶ କଲା ପରେ ହ୍ୟାଭଲକ୍‌ଙ୍କ ସୈନ୍ୟମାନେ ସହରରେ ବ୍ୟାପକ ହତ୍ୟା ଓ ଧ୍ୱଂସଲୀଳା ଚଳେଇଥିଲେ । ତା'ପରେ ବିଦ୍ରୋହର ଅନ୍ୟତମ କେନ୍ଦ୍ର

ଲକ୍ଷ୍ନୌକୁ ଯିବା ପାଇଁ ହ୍ୟାଭଲକ୍ ଦୁଇ ଥର ଚେଷ୍ଟା କରିଥିଲେ, କିନ୍ତୁ ଦୁଇ ଥର ଯାକ ବ୍ୟର୍ଥ ହୋଇଥିଲେ ।

ଲକ୍ଷ୍ନୌରେ ଘଟଣାବଳୀର ବିକାଶ ନିମ୍ନ ରୂପେ ଘଟିଥିଲା । ବିଦ୍ରୋହ ପରେ ପୂର୍ବତନ ନବାବ ବଂଶକୁ (ଅଯୋଧ୍ୟାର ନବାବ) କ୍ଷମତାରେ ପୁନର୍ସ୍ଥାପିତ କରାଯାଇଥିଲା ଏବଂ ଅଯୋଧ୍ୟାର ରାଜସଭାର ପୂର୍ବତନ ସଭା ସଦସ୍ୟବୃନ୍ଦ ସହରର ଶାସନଭାର ଗ୍ରହଣ କରିଥିଲେ । ସେଠାକାର ବିଦ୍ରୋହର ମୂଳ ନେତା ଥିଲେ ମାନ୍ଦ୍ରାଜର ଏକ ଅଭିଜାତ ସନ୍ତାନ ଆହ୍ମଦଉଲ୍ଲାହ୍ ଶାହ୍ । ସେ ଏକଦା ବ୍ରିଟେନ୍ ଭ୍ରମଣରେ ଯାଇଥିଲେ ଏବଂ ଦେଶକୁ ଫେରି ଆସି ଓୟାହାବୀ ଆନ୍ଦୋଳନରେ ଯୋଗ ଦେଇଥିଲେ ଓ ଭ୍ରାମ୍ୟମାଣ ଓୟାହାବୀ ପ୍ରଚାରକ କାର୍ଯ୍ୟ କରିଥିଲେ ।

ବ୍ରିଟିଶ୍ ଦୁର୍ଗର ସୈନ୍ୟମାନେ ସପରିବାରେ ଆଶ୍ରୟ ନେଇଥିଲେ ସହରର ଶାସନ କର୍ତ୍ତାଙ୍କ ବାସ ଭବନରେ । ସିପାହୀମାନେ ଅବିରାମ ଗୁଳି ବର୍ଷଣ କରି ଦୀର୍ଘ ସମୟ ପର୍ଯ୍ୟନ୍ତ ବାସ ଭବନଟିକୁ ଅବରୋଧ କରି ରଖିଥିଲେ । କିନ୍ତୁ ସିପାହୀମାନଙ୍କ ଗୁଳି ଠିକ୍ ଭାବେ ଲକ୍ଷ୍ୟ ଭେଦ କରି ପାରୁ ନଥିବାରୁ ବ୍ରିଟିଶ୍ ସୈନ୍ୟମାନଙ୍କର ବିଶେଷ କିଛି କ୍ଷୟକ୍ଷତି ଘଟିଲା ନାହିଁ । ତା'ପରେ ବିଦ୍ରୋହୀମାନେ ଭୂଗର୍ଭରେ ଗୋଟିଏ ସୁଡ଼ଙ୍ଗ ଖୋଳିଥିଲେ । ସେପ୍ଟେମ୍ବର ୨୧ ପର୍ଯ୍ୟନ୍ତ ହ୍ୟାଭଲକ୍ ଲକ୍ଷ୍ନୌରେ ପ୍ରବେଶ କରି ପାରି ନଥିଲେ । କିନ୍ତୁ ସିପାହୀମାନେ ତାଙ୍କ ସୈନ୍ୟମାନଙ୍କୁ ଘେରି ଯାଇଥିଲେ ଏବଂ ସେ ଅବରୁଦ୍ଧ ହୋଇଥିଲେ ।

ଇତିମଧ୍ୟରେ ଲକ୍ଷ୍ନୌରେ ସିପାହୀ ଓ ଦୋୟାବ୍‌ର ବିଭିନ୍ନ ଅଞ୍ଚଳରେ କେବଳ ଅସ୍ତ୍ରଧାରୀ କୃଷକମାନେ ନୁହେଁ, ଯାତ୍ରା ପଥରେ ବ୍ରିଟିଶ୍ ସୈନ୍ୟମାନେ ଲୁଣ୍ଠନ ଏବଂ ଧ୍ୱଂସ କରିଥିବା ଗାଁଗଣ୍ଡାରୁ ବହୁ ନରନାରୀ ମଧ୍ୟ ସେଠାରେ ସମବେତ ହୋଇଥିଲେ । ସହରର ୫୦ ହଜାର ପର୍ଯ୍ୟନ୍ତ ଲୋକ ଥିଲେ ମଧ୍ୟ ୧୮୫୭, ନଭେମ୍ବର ୧୭ ତାରିଖରେ ବ୍ରିଟିଶ୍ ସେନାପତି କଲିନ୍ କ୍ୟାମ୍ବେଲ ମାତ୍ର ସାଢ଼େ ଚାରି ହଜାର ସୈନ୍ୟ ଏବଂ ଗୋଲନ୍ଦାଜ ନେଇ କାନ୍‌ପୁରରୁ ଲକ୍ଷ୍ନୌକୁ ଆସି ସେଠାକାର ଅବରୋଧକୁ ଭାଙ୍ଗି ଦେଇଥିଲେ । ଲକ୍ଷ୍ନୌ ଦଖଲ କରିବାରେ ବ୍ୟର୍ଥ ହେଲେ ମଧ୍ୟ ସେ ଶାସକଙ୍କ ବାସ ଭବନରେ ବନ୍ଦୀ ବ୍ରିଟିଶ୍‌ମାନଙ୍କୁ ଉଦ୍ଧାର କରିବାରେ ସମର୍ଥ ହୋଇଥିଲେ । ଇତିମଧ୍ୟରେ ତାଁତିୟା ଟୋପୀ ଗୋଆଲିଅର୍‌ରୁ ଦଳେ ସୈନ୍ୟ (ବ୍ରିଟିଶ୍‌ମାନଙ୍କ ପ୍ରତି ଅନୁଗତ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହୀ) ଘେନି ଦ୍ରୁତ କାନ୍‌ପୁରରେ ପହଞ୍ଚିଥିଲେ ଏବଂ ଉଇଣ୍ଡ୍‌ହ୍ୟାମ୍‌ଙ୍କ କର୍ତ୍ତୃକ ସେଠାରେ ରକ୍ଷିତ ବ୍ରିଟିଶ୍ ସୈନ୍ୟଦଳଟିକୁ ଉତ୍‌ଖାତ କରି ଦେଇଥିଲେ । ଏହାର ପରବର୍ତ୍ତୀ ଯୁଦ୍ଧରେ କ୍ୟାମ୍ବେଲ ଶେଷରେ ତାଁତିୟା ଟୋପୀଙ୍କୁ ପରାଜିତ କରି କାନ୍‌ପୁର ପୁନର୍ଦଖଲ କରିଥିଲେ । ଏହାର ତିନି ମାସ ପରେ ସଂଗୃହୀତ ୪୫ ହଜାର ସୈନ୍ୟ ଘେନି କ୍ୟାମ୍ବେଲ ଲକ୍ଷ୍ନୌ ଉପରେ ଶେଷ ଆକ୍ରମଣ ଆରମ୍ଭ କଲେ । ଇତିମଧ୍ୟରେ ସହରରେ ଏକତ୍ରିତ ପ୍ରାୟ ୨ ଲକ୍ଷ ଲୋକ ଏହି ସଂଗ୍ରାମରେ ଯୋଗ ଦେଇଥିଲେ । ସେମାନେ ବୀରତ୍ୱର ସହିତ ଲଢ଼େଇ କରିଥିଲେ । କିନ୍ତୁ ସେମାନଙ୍କର ପ୍ରୟୋଜନୀୟ ଅସ୍ତ୍ରଶସ୍ତ୍ର ଓ ଦକ୍ଷ ସେନାପତି ନଥିଲେ । ମାସେ କାଳ ଲକ୍ଷ୍ନୌରେ ଯୁଦ୍ଧ ଚାଲିଥିଲା ଏବଂ ୧୮୫୮, ମାର୍ଚ୍ଚ ୧୯ ତାରିଖରେ ସହରଟିର ପତନ ଘଟିଥିଲା । ତା'ପରେ ପ୍ରାୟ ଦୁଇ ସପ୍ତାହ ଧରି ବ୍ରିଟିଶ୍ ସୈନ୍ୟମାନେ ସହରରେ ହତ୍ୟା ଓ ଲୁଣ୍ଠନ ଚଳେଇଥିଲେ ଏବଂ ବିପୁଳ ପରିମାଣର ଯୁଦ୍ଧ ଭେଟି ଗ୍ରହଣ କରିଥିଲେ ।

ସିପାହୀମାନଙ୍କର ଅନ୍ୟତମ ମୁଖ୍ୟ ପ୍ରତିରୋଧ କେନ୍ଦ୍ର ଲକ୍ଷ୍ନୌର ପତନ ପରେ ସିପାହୀମାନେ

କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ପଡ଼ିଥିଲେ ଏବଂ ପ୍ରକୃତ ଅର୍ଥରେ ଗରିଲା ଯୁଦ୍ଧ କରି ବ୍ରିଟିଶ୍ ସୈନ୍ୟମାନଙ୍କ ଉପରେ ଅତର୍କିତ ଆକ୍ରମଣ ଚଳେଇ ଯାଇଥିଲେ । ଅଯୋଧ୍ୟାର ତାଲୁକଦାରମାନେ ନିରପେକ୍ଷ ରହିବା ସତ୍ତ୍ୱେ ୧୮୫୮, ମାର୍ଚ୍ଚ ମାସରେ ଗଭର୍ଣ୍ଣର ଜେନେରାଲ କ୍ୟାନିଂ ସେମାନଙ୍କ ତାଲୁକଦାରି ଲୋପ କରି ଦେଇଥିଲେ । ନିଜର ଅଧିକାର ରକ୍ଷା କରିବା ପାଇଁ ତାଲୁକଦାରମାନେ ବିଦ୍ରୋହ ଘୋଷଣା କରିଥିଲେ ଏବଂ ବେରିଲିରେ ଖାଁ ବାହାଦୂର ଖାଁଙ୍କ ସହିତ ଯୋଗ ଦେଇଥିଲେ । ପ୍ରବଳ ପ୍ରତିରୋଧ ପାଇଁ କ୍ୟାମ୍ବେଲଙ୍କ ପକ୍ଷରେ ୧୮୫୮, ମାର୍ଚ୍ଚ ପୂର୍ବରୁ ବେରିଲୀ ଦଖଲ କରିବା ସମ୍ଭବ ହୋଇ ନଥିଲା । ତା'ପରେ ନାନା ସାହେବ ଏବଂ ଅଯୋଧ୍ୟାର ସଭାସଦ୍‌ମାନେ କେତେକ ସିପାହୀଙ୍କ ସହ ନେପାଳର ସୀମାନ୍ତ ଅଞ୍ଚଳରେ ଆଶ୍ରୟ ନେଇଥିଲେ । ଆହ୍ମଦଉଲ୍ଲାହ୍ ଶାହ୍ ଏବଂ ଆଉ କେତେଜଣ ନେତାଙ୍କ ସହିତ ଏମାନଙ୍କର ଅନ୍ୟ ଏକ ଦଳ ଅଯୋଧ୍ୟାକୁ ଫେରି ଆସିଲେ । ସାମନ୍ତମାନଙ୍କର ବିଶ୍ୱାସଘାତକତା ଫଳରେ ଆହ୍ମଦଉଲ୍ଲାହ୍ ଶାହ୍ ନିହତ ହୋଇଥିଲେ ।

ତାଁତିଆ ଟୋପୀ ସେତେବେଳେ ବୁନ୍ଦେଲଖଣ୍ଡରେ ଯୁଦ୍ଧରତ ଥିଲେ ଏବଂ ଜଣେ ସୁଦକ୍ଷ ସିପାହୀ ସେନାପତି ହିସାବରେ ନିଜ ଯୋଗ୍ୟତାର ପରିଚୟ ଦେଇଥିଲେ । ଜେନେରାଲ ରୋଜ ସେତେବେଳେ ବମ୍ବେରୁ ସୈନ୍ୟଦଳ ସମେତ ବୁନ୍ଦେଲଖଣ୍ଡରେ ଆସି ପହଞ୍ଚିଗଲେ । ସେଠାରେ ଝାନ୍‌ସି ନାମକ ଏକ ଦୁର୍ଗ ସହ ଏହି ନାମରେ ଏକ କ୍ଷୁଦ୍ର ରାଜ୍ୟ ଥିଲା । ଲକ୍ଷ୍ମୀବାଇ ନାମକ ଜଣେ ଯୁବତୀ ରାଣୀ ତାଙ୍କର ପୁତ୍ର ପକ୍ଷରୁ ରାଜ୍ୟଟିକୁ ଶାସନ କରୁଥିଲେ । ଝାନ୍‌ସିର ଲୋକେ ମଧ୍ୟ ଗୋଟିଏ ଅଭ୍ୟୁତ୍‌ଥାନ ଘଟେଇବାକୁ ଚେଷ୍ଟା କରିଥିଲେ ଏବଂ ସେମାନଙ୍କ ହାତରେ କେତେ ଜଣ ବ୍ରିଟିଶ୍ ମଧ୍ୟ ନିହତ ହୋଇଥିଲେ । କିନ୍ତୁ ଲକ୍ଷ୍ମୀବାଇ ପ୍ରଜାମାନଙ୍କୁ ଚରମ ପଥ ଗ୍ରହଣ କରିବାରୁ ବିରତ ରଖିଥିଲେ । ବ୍ରିଟିଶ୍‌ମାନଙ୍କୁ ହତ୍ୟା କରାଯାଇଥିବା ଆଳରେ ରୋଜ ଝାନ୍‌ସି ଆକ୍ରମଣ କଲେ । ଲକ୍ଷ୍ମୀବାଇ ରୋଜଙ୍କୁ ଏହି ହତ୍ୟା ସହିତ ତାଙ୍କର କୌଣସି ସଂପର୍କ ନାହିଁ ବୋଲି ବୁଝାଇବାକୁ ବ୍ୟର୍ଥ ହେଲେ । ବ୍ରିଟିଶ୍‌ମାନେ ଝାନ୍‌ସି ଅବରୋଧ କରିଥିଲେ ଏବଂ ରାଣୀ ନିଜେ ଦୁର୍ଗ ରକ୍ଷା କରିବାରେ ନେତୃତ୍ୱ ଗ୍ରହଣ କରିଥିଲେ ।

ବ୍ରିଟିଶ୍‌ମାନଙ୍କ ହାତରେ ଝାନ୍‌ସିର ପତନ ଘଟିଲା ପରେ ଲକ୍ଷ୍ମୀବାଇ ପଳାୟନ କରିଥିଲେ ଏବଂ ତାଁତିଆ ଟୋପୀଙ୍କ ସହିତ ଯୋଗ ଦେଇଥିଲେ । ସେମାନେ ଗୋଆଲିଅର ଦଖଲ କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ଶେଷରେ ରୋଜଙ୍କ ଦ୍ୱାରା ପ୍ରେରିତ ସୈନ୍ୟମାନଙ୍କ ସହିତ ଯୁଦ୍ଧରେ ସେମାନଙ୍କ ପରାଜୟ ଘଟିଥିଲା । ଏହି ଯୁଦ୍ଧରେ ଅଶ୍ୱାରୋହୀ ବାହିନୀକୁ ପରିଚାଳନା କରିଥିଲେ ସ୍ୱୟଂ ଲକ୍ଷ୍ମୀବାଇ । ସେ ଯୁଦ୍ଧରେ ନିହତ ହୋଇଥିଲେ ଏବଂ ତାଁତିଆ ଟୋପୀ ବିଧ୍ୱସ୍ତ ସୈନ୍ୟବାହିନୀର ଅବଶିଷ୍ଟାଂଶକୁ ନେଇ ପଶ୍ଚାଦ୍‌ପସରଣ କଲେ । ଅନୁସରଣକାରୀମାନଙ୍କୁ ଏଡ଼ାଇବା ପାଇଁ ତାଙ୍କୁ ବାରମ୍ବାର ପଥ ପରିବର୍ତ୍ତନ କରିବାକୁ ପଡ଼ିଥିଲା । ପ୍ରଥମେ ସେ ଯାଇଥିଲେ ଖାନ୍ଦେଶକୁ ଏବଂ ପରେ ଗୋଆଲିଅରକୁ ଫେରି ଆସିଥିଲେ । ଇତିମଧ୍ୟରେ ବିଶ୍ୱାସଘାତକତା ଫଳରେ ସେ ବ୍ରିଟିଶ୍‌ମାନଙ୍କ ହାତରେ ବନ୍ଦୀ ହେଲେ । ୧୮୫୯, ଏପ୍ରିଲ ୧୮ ତାରିଖରେ ତାଁତିଆ ଟୋପୀ ଫାଶିଖୁଣ୍ଟରେ ପ୍ରାଣ ଦେଲେ ।

୧୮୫୮, ନଭେମ୍ବର ୧ ତାରିଖରେ ମହାରାଣୀ ଭିକ୍ଟୋରିଆଙ୍କର ଏକ ପ୍ରକାଶ୍ୟ ଘୋଷଣା ଅନୁଯାୟୀ ଭାରତ ଶାସନର ଦାୟିତ୍ୱ ବ୍ରିଟିଶ୍ ସରକାର ଗ୍ରହଣ କରିଥିଲେ ଏବଂ ଇଷ୍ଟ ଇଣ୍ଡିଆ କଂପାନିକୁ ଭାଙ୍ଗି ଦିଆଗଲା । ବ୍ରିଟିଶ୍‌ମାନଙ୍କୁ ହତ୍ୟା କରିବାରେ ଯେଉଁସବୁ ବିଦ୍ରୋହୀ ସାମନ୍ତ

ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ନଥିଲେ, ସେମାନଙ୍କୁ ସାଧାରଣ ଭାବେ କ୍ଷମା ପ୍ରଦର୍ଶନର ଆଶ୍ୱାସନା ଦିଆଗଲା । ଭାରତୀୟ ସାମନ୍ତମାନଙ୍କ ସଂପତ୍ତିର ଅଧିକାର ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରାଯିବ ବୋଲି ମଧ୍ୟ ନିଶ୍ଚୟତା ପ୍ରଦର୍ଶନ କରାଯାଇଥିଲା ।

ଏହି ଘୋଷଣା ଫଳରେ ମୁଖ୍ୟ ସାମନ୍ତମାନେ ନିଜକୁ ବିଦ୍ରୋହ ଠାରୁ ବିଛିନ୍ନ କରିନେଲେ । କ୍ୟାନିଂଙ୍କର ମାର୍ଚ୍ଚ ମାସର ଘୋଷଣା ପରେ ବିଦ୍ରୋହୀ ଅଯୋଧ୍ୟାର ତାଲୁକଦାର, ରାଜା ଓ ଜମିଦାରମାନେ ଅସ୍ତ୍ର ତ୍ୟାଗ କରିଥିଲେ । ଯେଉଁସବୁ ସାମନ୍ତମାନଙ୍କର କ୍ଷମା ଲାଭ କରିବାର ସମ୍ଭାବନା ନଥିଲା, ସେହିମାନେ ହିଁ କେବଳ ଯୁଦ୍ଧ ଚଳେଇ ଯାଇଥିଲେ । ଇତିମଧ୍ୟରେ ସେମାନଙ୍କ ପ୍ରତିରୋଧ ଭାଙ୍ଗି ପଡ଼ିଥିଲା । ନାନା ସାହେବ ଓ ଆଜିମୁଲ୍ଲାହ୍ ଜଙ୍ଗଲରେ ପ୍ରାଣ ହରେଇଲେ ଏବଂ ବାହାଦୂର ଖାଁଙ୍କୁ ବ୍ରିଟିଶମାନେ ହତ୍ୟା କରିଥିଲେ । ଏହି ଭାବେ ଅଭ୍ୟୁତ୍‌ଥାନର ପରିସମାପ୍ତି ଘଟିଥିଲା ।

୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦରେ ସଂଘଟିତ ଗଣ ଅଭ୍ୟୁତ୍‌ଥାନର ବ୍ୟର୍ଥତା ପଛରେ ଅନେକ କାରଣ ଥିଲା । ଏହାର ମୂଳ ସୈନ୍ୟବାହିନୀ ସମାଜର କୃଷକ ଏବଂ କାରିଗରମାନଙ୍କୁ ନେଇ ଗଠିତ ହୋଇଥିଲେ ମଧ୍ୟ ଏହାର ନେତୃତ୍ୱ ଥିଲା ଅଭିଜାତ ସାମନ୍ତମାନଙ୍କ ହାତରେ । ଏହିସବୁ ନେତାମାନେ ଜାତୀୟ ମୁକ୍ତି ଆନ୍ଦୋଳନର ପରିଚାଳନାରେ ନିଜର ଅଯୋଗ୍ୟତା ପ୍ରମାଣ କରିଥିଲେ । କୌଣସି ସାଧାରଣ ରଣକୌଶଳ ବା ସଂଘବଦ୍ଧ ନେତୃତ୍ୱ ପ୍ରତିଷ୍ଠା କରିବାକୁ ସେମାନେ ସକ୍ଷମ ହୋଇ ନଥିଲେ । ନିଜର ବ୍ୟକ୍ତିଗତ ଉଦ୍ଦେଶ୍ୟ ସିଦ୍ଧି ପାଇଁ ସେମାନେ ପ୍ରାୟ ଉଦ୍ୟମ କରୁଥିଲେ । ସ୍ୱତଃସ୍ଫୂର୍ତ୍ତ ଭାବେ ଉଦ୍‌ଭୂତ ବିଦ୍ରୋହର ତିନୋଟି କେନ୍ଦ୍ର ମଧ୍ୟରୁ ପ୍ରତ୍ୟେକଟି ସ୍ୱାଧୀନ ଭାବେ ନିଜର କାର୍ଯ୍ୟକଳାପ ପରିଚାଳନା କରୁଥିଲେ । ତା'ଛଡ଼ା ସାମନ୍ତମାନେ କୃଷକମାନଙ୍କର ଭାଗ୍ୟୋନ୍ନତି ପାଇଁ କୌଣସି ଉଦ୍ୟୋଗ ଗ୍ରହଣ ନକରିବାରୁ ସେମାନଙ୍କ ମଧ୍ୟରୁ କେତେକାଂଶ ଅଭ୍ୟୁତ୍‌ଥାନ ସହିତ ଏକାତ୍ମତା ହରେଇ ବସିଥିଲେ । ବ୍ରିଟିଶମାନେ ସାମନ୍ତମାନଙ୍କୁ ସୁବିଧାଦାନ କରିବା କ୍ଷଣି ସେମାନେ ଏହି ଅଭ୍ୟୁତ୍‌ଥାନ ସହିତ ସଂପର୍କ ଛିନ୍ନ କରିଦେଲେ । ଏଭଳି ଏକ ଜଟିଳ ଯୁଦ୍ଧ ପରିଚାଳନା କରିବା ଦିଗରେ ଏହିସବୁ ସିପାହୀ ନେତାମାନଙ୍କର ଯୋଗ୍ୟତା ଖୁବ୍ ସାମାନ୍ୟ ଥିଲା । ସେମାନେ କୌଶଳଗତ ସମସ୍ୟାର ମୁକାବିଲା କରିଲେ ମଧ୍ୟ ରଣନୀତି ଚିନ୍ତା କଲା ଭଳି, ସମଗ୍ର ସଂଗ୍ରାମର ଘଟଣା ପ୍ରବାହକୁ ବିଚାରକୁ ନେଇ ଭଳି ଶିକ୍ଷା ସେମାନଙ୍କର ନଥିଲା । ପରିଶେଷରେ, ବିଦ୍ରୋହୀମାନଙ୍କ ସମ୍ମୁଖରେ କୌଣସି ସୁସ୍ପଷ୍ଟ ଲକ୍ଷ୍ୟ ତୋଳି ଧରାଯାଇ ନଥିଲା । ସେମାନେ ଆହ୍ୱାନ ଜଣାଉଥିଲେ ଅତୀତକୁ ଫେରାଇ ଆଣିବା ପାଇଁ, ମୋଗଲ ସାମ୍ରାଜ୍ୟ ଅଧୀନରେ ସ୍ୱାଧୀନ ଭାରତବର୍ଷ ପ୍ରତିଷ୍ଠା ପାଇଁ । କିନ୍ତୁ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ସାମନ୍ତବାଦୀ ସମାଜକୁ ଫେରିଯିବା ଥିଲା ସଂପୂର୍ଣ୍ଣ ଅବାନ୍ତର ।

ଗଣ ବିଦ୍ରୋହ ଦମନ କରିବାକୁ ସମର୍ଥ ହେଲେ ମଧ୍ୟ ବ୍ରିଟିଶମାନେ ଭାରତବର୍ଷରେ ସେମାନଙ୍କ ନୀତି ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇଥିଲେ – ଇଷ୍ଟ ଇଣ୍ଡିଆ କଂପାନିକୁ ଉଠେଇ ଦିଆଯାଇଥିଲା ଏବଂ ଭାରତବର୍ଷ ବ୍ରିଟିଶ୍ ଉପନିବେଶରେ ପରିଣତ ହେଲା । ଏଠାରେ କର୍ମଚାରୀ ନିଯୋଗର ସମସ୍ତ ଦାୟିତ୍ୱ ବ୍ରିଟିଶ୍ ସରକାର ଉପରେ ନ୍ୟସ୍ତ କରାଗଲା । ବ୍ରିଟିଶମାନେ ସାମନ୍ତମାନଙ୍କୁ ଆଉ ଅସନ୍ତୁଷ୍ଟ କରିବାକୁ ଇଚ୍ଛୁକ ନଥିଲେ ଏବଂ ସେମାନେ ସର୍ବାଧିକ ପ୍ରଭାବଶାଳୀ ସାମନ୍ତମାନଙ୍କୁ ସୁବିଧାଦାନ

ମାଧ୍ୟମରେ ସତର୍କତାମୂଳକ ନୀତି ଅନୁସରଣ କରିଥିଲେ । ଏହି ବିଦ୍ରୋହ ପରେ ସାଧାରଣ ଭାବେ ଭାରତରେ ବ୍ରିଟିଶ୍ ଔପନିବେଶିକ ନୀତିର ଏକ ନବପର୍ଯ୍ୟାୟ ଆରମ୍ଭ ହୋଇଥିଲା ।

## ଅଷ୍ଟାଦଶ ଶତାବ୍ଦୀ ଓ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତୀୟ ସଂସ୍କୃତି

ମୋଗଲ ସାମ୍ରାଜ୍ୟର ପତନ, ବ୍ୟାପକ ଅର୍ଥନୈତିକ ବିଶୃଙ୍ଖଳା ଓ କ୍ରମାଗତ ଭାବେ ଭାରତ ସ୍ୱାଧୀନତା ହରେଇବା ହେତୁ ଆଲୋଚ୍ୟ କାଳଟିରେ ସଂସ୍କୃତିର ସାଧାରଣ କ୍ରମାବନତି ଘଟିଥିଲା । ତଥାପି ଏହି ସମୟରେ ସଂସ୍କୃତିର କେତେକ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସାଫଲ୍ୟ ମଧ୍ୟ ଅର୍ଜିତ ହୋଇଥିଲା ଏବଂ ଉଲ୍ଲେଖନୀୟ ଭାସ୍କର୍ଯ୍ୟ ସୃଷ୍ଟି ହୋଇଥିଲା । ଏହି ସମୟରେ ଆମେ, ଅବଶ୍ୟ, ମଧ୍ୟ ଯୁଗରେ ଉଦ୍ଭୂତ ଶିଳ୍ପରୂପଗୁଡ଼ିକର ବିସ୍ତାରକୁ ଲକ୍ଷ୍ୟ କରିଥାଉଁ । ଦୃଷ୍ଟାନ୍ତ ସ୍ୱରୂପ, ସାହିତ୍ୟ କ୍ଷେତ୍ରରେ ପୂର୍ବ ଭଳି କାବ୍ୟପ୍ରୀତି, ସ୍ଥାପତ୍ୟରେ ଅତୀତର ନିର୍ମାଣ ରୀତିର ବହୁଳ ଅନୁକୃତି, ଚିତ୍ର ଶିଳ୍ପରେ କ୍ଷୁଦ୍ରାବୟବ ଶୈଳୀର ଗଣ୍ଡିବଦ୍ଧତା ଅବ୍ୟାହତ ରହିଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏକ ନୂତନ ଆନ୍ଦୋଳନ ଦେଖା ଦେଇଥିଲା ଏବଂ ତାହା ବହୁ ପରିମାଣରେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ପ୍ରଭାବିତ ଥିଲା । ସାହିତ୍ୟରେ ସେହି ଆନ୍ଦୋଳନଟି ସର୍ବାଧିକ ପ୍ରକଟିତ ଥିଲା – କେତେକ ଭାରତୀୟ ଭାଷାରେ ଗଦ୍ୟ ସାହିତ୍ୟ, ସମକାଳୀନ ବିଷୟ ଭିତ୍ତିକ ପତ୍ରସଂଗ୍ରହ ଏବଂ ଭାରତରେ ସେପର୍ଯ୍ୟନ୍ତ ଅଜ୍ଞାତ ଥିବା ସାମ୍ବାଦିକତାର ଉନ୍ମେଷ ମଧ୍ୟରେ । ଏହିସବୁ ରଚନାବଳୀ, ଅବଶ୍ୟ, ବ୍ରିଟିଶ୍ ମଡେଲ ବା ପ୍ରତିମାର ପ୍ରତ୍ୟକ୍ଷ ନକଲ ନଥିଲା । ଏସବୁର ବିଷୟବସ୍ତୁ ସମକାଳୀନ ଜୀବନାଶ୍ରିତ ହୋଇଥିବାରୁ ନୂତନ ରୀତିକୁ ଭିତ୍ତି କରି ଏକ ନୂତନ ଭାଷାର ଉନ୍ମେଷ ଘଟିଥିଲା ।

ସ୍ଥାପତ୍ୟ କ୍ଷେତ୍ରରେ ସେତେବେଳେ ମୋଗଲ ରୀତିରେ ଗୃହ ନିର୍ମାଣ ହେଉଥିଲେ ମଧ୍ୟ କ୍ଷେତ୍ରବିଶେଷରେ କୃତ୍‌କୌଶଳଗତ କେତେକ ସମସ୍ୟାର ସମାଧାନ ହୋଇଥିଲା । ବ୍ରିଟିଶ୍‌ମାନଙ୍କ ଦ୍ୱାରା ପ୍ରସ୍ତୁତ ଅଟ୍ଟାଳିକାଗୁଡ଼ିକ, ଅବଶ୍ୟ, ଥିଲା ସଂପୂର୍ଣ୍ଣ ନୂଆ ଧରଣର । ଏହିସବୁ ଅଟ୍ଟାଳିକା ମଧ୍ୟରୁ କେତେକ ପରବର୍ତ୍ତୀ କାଳରେ, ବିଶେଷତଃ, ଊନବିଂଶ ଶତାବ୍ଦୀରେ ଉଦ୍ଭୂତ ତଥାକଥିତ ଇଂରେଜ-ଭାରତୀୟ ସ୍ଥାପତ୍ୟ ରୀତିକୁ ପ୍ରଭାବିତ କରିଥିଲା ।

### ଇତିହାସ

ପୁରୁଣା ରୀତିରେ ଘଟଣା ବିବରଣୀ ରଚନା କରିବା ଅଷ୍ଟାଦଶ ଶତାବ୍ଦୀରେ ମଧ୍ୟ ଅବ୍ୟାହତ ଥିଲା । ଏହିସବୁ ଘଟଣା ବିବରଣୀ ମଧ୍ୟରେ ୧୭୮୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଘଟଣାବଳୀକୁ ନେଇ ଲିଖିତ "ସିୟାର-ଉଲ-ମତାଖେରିନ" ("ଶେଷ ଶାସକବର୍ଗଙ୍କ ଜୀବନୀ") ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ଏହି ଗ୍ରନ୍ଥର ଲେଖକ ପ୍ରଖ୍ୟାତ ଅମିର୍ ଗୋଲାମ ହୋସେନ ଖାଁ ତାବାତାବାଇ ଦିଲ୍ଲୀର ମୋଗଲମାନଙ୍କର ଏବଂ ବଙ୍ଗଳାର ନବାବମାନଙ୍କର ସଭାସଦ୍ ଥିଲେ ଏବଂ ମୀର୍ କାଶିମ୍‌ଙ୍କ ପତନ ପରେ କଂପାନିର ଚାକିରି ଗ୍ରହଣ କରିଥିଲେ । ହାୟଦର ଅଲୀ ଓ ଟିପୁ ସୁଲତାନ୍‌ଙ୍କ ସଭାସଦ୍ ମୀର୍ ହୋସେନ ଅଲୀ ଖାଁ କେରମାନୀ ମଧ୍ୟ ଅନୁରୂପ ଧାରା ବିବରଣୀ ଲେଖିଥିଲେ ।

ଅଷ୍ଟାଦଶ ଶତାବ୍ଦୀର ଚତ୍ୱାରିଂଶ ଏବଂ ପଞ୍ଚାଶ ଦଶକଗୁଡ଼ିକରେ ଦେଓ୍ୱାନ (ରାଜସ୍ୱ ବିଭାଗର ପ୍ରଧାନ) ହିସାବରେ ଗୁଜରାଟରେ କର୍ମରତ ଅଲୀ ମହମ୍ମଦ୍ ଖାଁଙ୍କ ଦ୍ୱାରା ଲିଖିତ ଗୁଜରାଟର ଇତିହାସ – "ମିରାଟ-ଇ-ଆହ୍ମଦୀ" ("ଆହ୍ମଦ ଦର୍ପଣ") ଗ୍ରନ୍ଥଟି ଏକ ଅତି ମୂଲ୍ୟବାନ ଇତିହାସ । ଲେଖକ କେବଳ ବହୁ ସଂଖ୍ୟକ ରାଜାଦେଶ ଏବଂ ଦଲିଲ ଏଥିରେ ଉଲ୍ଲେଖ କରି ନାହାନ୍ତି, ଗ୍ରନ୍ଥର ପରିଶିଷ୍ଟରେ ଅଟ୍ଟାଳିକା, ବ୍ୟବସାୟ ବାଣିଜ୍ୟ, ଐତିହାସିକ ସ୍ଥାନ, ପ୍ରଖ୍ୟାତ ବ୍ୟକ୍ତିବର୍ଗଙ୍କର ସଂକ୍ଷିପ୍ତ ଜୀବନୀ ସମେତ ଅଷ୍ଟାଦଶ ଶତାବ୍ଦୀର ଗୁଜରାଟର ବିଶ୍ୱକୋଷୋପମ ଏକ ବିବରଣୀ ମଧ୍ୟ ଯୁକ୍ତ କରିଥିଲେ । ଗୁରୁତ୍ୱପୂର୍ଣ୍ଣ ତଥ୍ୟାଦିର ଉତ୍ସ ହିସାବରେ "ମାସିର୍-ଉଲ୍-ଉମାରା" ("ଅମିର୍‌ମାନଙ୍କ କାର୍ଯ୍ୟାବଳୀ") ନାମକ ବହୁସଂଖ୍ୟକ ଜୀବନୀ ସମୃଦ୍ଧ ଗ୍ରନ୍ଥଟି ଉଲ୍ଲେଖଯୋଗ୍ୟ । ଏହି ବିଶାଳ ଗ୍ରନ୍ଥର ଲେଖକ ଶାହ୍ ନଓ୍ୱାଜ ଖାଁ ଥିଲେ ଆସଫ୍ ଜା ଓ ପରବର୍ତ୍ତୀ କାଳରେ ନାସିର ଜଙ୍ଗ୍‌ଙ୍କ କର୍ମଚାରୀ । ୧୭୫୮ ଖ୍ରୀଷ୍ଟାବ୍ଦରେ ଫରାସୀମାନଙ୍କୁ ବିରୋଧିତା କରିବା ଫଳରେ ସେ ସେମାନଙ୍କ ହାତରେ ନିହତ ହୋଇଥିଲେ । ଷୋଡ଼ଶ, ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀର ମୋଗଲ ଭାରତର ୭ ଶହ ଅଭିଜାତ ବ୍ୟକ୍ତିଙ୍କ ଜୀବନୀ ଦ୍ୱାରା ଗ୍ରନ୍ଥଟି ସମୃଦ୍ଧ ହୋଇଛି । ମୁଖ୍ୟ ଐତିହାସିକ ଘଟଣାବଳୀ ଓ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟାଦିର ଉତ୍ସ ହେଉଛି ଏହି ଗ୍ରନ୍ଥଟି । ପରିଶେଷରେ, ଅଷ୍ଟାଦଶ ଶତାବ୍ଦୀର ମୋଗଲ ଶାସନର ଛାୟା ତଳେ ଐତିହାସିକ ପାଣ୍ଡିତ୍ୟକୁ ଲାଳନ କରିବାର ପରମ୍ପରାଟି ଏଠାରେ ସ୍ମରଣ କରିବାର କଥା । ଆର୍ଥିକ ବ୍ୟୟ ବହନ କଲା ଭଳି ପୃଷ୍ଠପୋଷକତାର ଅଭାବରୁ ଊନବିଂଶ ଶତାବ୍ଦୀରେ ଏହି ଧରଣର ଧାରାବିବରଣୀ ଲେଖିବାର ଐତିହ୍ୟ ବସ୍ତୁତଃ ଲୋପ ପାଇଥିଲା ।

## ଜ୍ୟୋତିର୍ବିଦ୍ୟା

ପ୍ରଯୁକ୍ତିଗତ ବିଜ୍ଞାନ ମଧ୍ୟରେ ଏକମାତ୍ର ଜ୍ୟୋତିର୍ବିଦ୍ୟା କ୍ଷେତ୍ରରେ କେତେକ ଅଗ୍ରଗତି ଘଟିଥିଲା । ଏ କ୍ଷେତ୍ରରେ ଜୟପୁରର ଜୟ ସିଂହଙ୍କ (?-୧୭୪୩) କାର୍ଯ୍ୟାବଳୀ ବିଶେଷ ଉଲ୍ଲେଖଯୋଗ୍ୟ । ସେ ପ୍ରାଚୀନ ଗ୍ରୀକ୍, ଆରବ ଓ ପର୍ତ୍ତୁଗୀଜ୍‌ମାନଙ୍କର ଆବିଷ୍କାରସମୂହ ସଂପର୍କରେ ଅବହିତ ଥିଲେ ଏବଂ ଜୟପୁର (ଶଙ୍ଖମଇମଲ ପଥରରେ), ଦିଲ୍ଲୀ (ଲାଲ ମାଙ୍କଡ଼ା ପଥର ସାହାଯ୍ୟରେ), ମଥୁରା, ଉଜ୍ଜୟିନୀ ଓ ବାରଣସୀରେ ବହୁସଂଖ୍ୟକ ମାନମନ୍ଦିର ନିର୍ମାଣ କରିଥିଲେ ।

## ସାହିତ୍ୟ । ସାଧାରଣ ପରିକ୍ରମା

ଅଷ୍ଟାଦଶ ଶତାବ୍ଦୀରେ ଏବଂ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତର ବିବିଧ ସାହିତ୍ୟିକ ଭାଷାର ଯଥେଷ୍ଟ ବିକାଶ ଘଟିଥିଲେ ମଧ୍ୟ ଆଲୋଚ୍ୟ ପ୍ରସଙ୍ଗ ଏବଂ ବିଷୟବସ୍ତୁର ପୁରୁଣା ଶୈଳୀ ଅପରିବର୍ତ୍ତନୀୟ ରହିଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏ ଦେଶରେ ସାଂବାଦିକତାର ପ୍ରଥମ ଉନ୍ମେଷ ଘଟିଥିଲା । ଭାରତର ସାହିତ୍ୟ ବହୁ ଭାଷାଭିତ୍ତିକ ହୋଇଥିବାରୁ ଏଠାରେ କେବଳ ପ୍ରଧାନ ଭାଷାଗୁଡ଼ିକର ସାହିତ୍ୟ ସଂପର୍କରେ ଆଲୋଚନା କରାଯିବ ।

ମୁଖ୍ୟତଃ ସଭାକବିମାନଙ୍କ ଦ୍ୱାରା ଲିଖିତ ଉର୍ଦ୍ଦୁ କବିତାବଳୀ କଠୋର ଭାବେ ପ୍ରଥାନୁସାରୀ ଥିଲା । ସାଉଦା (ମୀର୍ଜା ମହମ୍ମଦ ରଫୀ, ୧୭୧୩-୧୭୮୧) ପ୍ରଥମେ ଥିଲେ ଦିଲ୍ଲୀର ମୋଗଲମାନଙ୍କ ସଭାକବି । କିନ୍ତୁ ନାଦୀର ଶାହ୍ ଦିଲ୍ଲୀ ଧ୍ୱଂସ କଲା ପରେ ସେ ଲକ୍ଷ୍ନୌରେ ଅଯୋଧ୍ୟାର ନବାବଙ୍କ ସଭାରେ ଆଶ୍ରୟ ନେଇଥିଲେ । ସାଉଦା ଥିଲେ ବ୍ୟଙ୍ଗ ସାହିତ୍ୟିକ । ବିରୋଧୀମାନଙ୍କୁ କଠୋର ସମାଲୋଚନା କରିବା ସାଥେ ସାଥେ ପ୍ରଚଳିତ ନୈତିକତା ଲଘନ, ଦରବାରରେ ସୁବିଧାଜନକ ପଦ ଲାଭ ପାଇଁ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ସହିତ ଦୁର୍ନୀତିର ବ୍ୟାପକ ପ୍ରସାର ଆଦିକୁ ପ୍ରଦର୍ଶନ କରି ସେ ଭାରତର ସାମନ୍ତବାଦୀ ସମାଜର ପତନର ଛବି ଆଙ୍କିଥିଲେ । ତାଙ୍କ ସମସାମୟିକ ମୀର୍ ତାକି ମୀର୍ (୧୭୨୫-୧୮୧୦) ଥିଲେ ଗୀତି କବି । ଅକପଟ ଆବେଗସିକ୍ତ ତାଙ୍କ ଗଜଲଗୁଡ଼ିକ ଥିଲା ବିଭ ଏବଂ ଆଭିଜାତ୍ୟର ମୋହରେ ବିବାହଦର ଏକ ନାରୀ ପାଇଁ ଦୁର୍ଭାଗ୍ୟଜନକ ପ୍ରେମର ଆକୁଳ ଆରତିରେ ମୁଖରିତ । ସେ ଥିଲେ ତାଙ୍କ ସମକାଳୀନ ଦିଲ୍ଲୀରେ ନିତ୍ୟ ସଂଘଟିତ ସମସ୍ତ ପ୍ରକାରର ସ୍ୱୈରାଗ୍ରର ଏବଂ ହିଂସ୍ରତାର ପ୍ରତିବାଦୀ ।

ସମକାଳୀନ ଅନ୍ୟାନ୍ୟ ଉର୍ଦ୍ଦୁ କବିମାନଙ୍କର ବ୍ୟତିକ୍ରମ ହିସାବରେ ନାଜିର୍ ଆକବରାବାଦୀ (୧୭୪୦-୧୮୩୦) ସଭା କବିଙ୍କ ପଦ ଗ୍ରହଣ କରିବାକୁ ଅସ୍ୱୀକାର କରି ଆଗ୍ରାରେ ଶିକ୍ଷକତା କରିଥିଲେ । ସେ ବିଭିନ୍ନ ସ୍ତରର ଲୋକଙ୍କ ସହିତ ଘନିଷ୍ଠ ଥିଲେ ଏବଂ ମୁସଲମାନ, ହିନ୍ଦୁ ଓ ଶିଖମାନଙ୍କ ଧର୍ମୋତ୍ସବରେ ଯୋଗ ଦେଉଥିଲେ । ତାଙ୍କର ବିଷୟବସ୍ତୁ ଥିଲା ସାଧାରଣ ଲୋକଙ୍କ ଜୀବନ ଏବଂ ଭାଷ୍ୟ ଥିଲା ପ୍ରାଣବନ୍ତ ସାଧାରଣ ମଣିଷର ନିକଟବର୍ତ୍ତୀ ତଥା ଜନବୋଧ୍ୟ ।

ତତ୍କାଳୀନ ଶ୍ରେଷ୍ଠତମ ଲେଖକ ମୀର୍ଜା ଗାଲିବ୍ (୧୭୯୬-୧୮୬୯) ଉର୍ଦ୍ଦୁ ସାହିତ୍ୟର ଏକ ଅବିସ୍ମରଣୀୟ ପ୍ରତିଭା । ସେ ତାଙ୍କ ଗଜଲଗୁଡ଼ିକରେ ନିଜର ଉପଲବ୍ଧି ଓ ଜଟିଳ ଅନୁଧ୍ୟାନସମୂହକୁ ବର୍ଣ୍ଣନା କରିଥିଲେ ଏବଂ ନୂତନ ଶବ୍ଦାବଳୀ ଓ ବ୍ୟଞ୍ଜନାର ଉପଯୋଗ କରି ଭାଷାର ସୀମାବଦ୍ଧତାକୁ ଅତିକ୍ରମ କରିବାକୁ ଚେଷ୍ଟା କରିଥିଲେ । ଉର୍ଦ୍ଦୁ ଭାଷାର ଅଂଶ ସ୍ୱରୂପ ତାଙ୍କର ଏହି ସବୁ ଉଦ୍‌ଭାବନ ଏହି ଭାଷାକୁ ସମୃଦ୍ଧତର କରିଛି । ନିଜର ପତ୍ରାବଳୀ ପ୍ରକାଶ ଦ୍ୱାରା ଗାଲିବ୍ ଉର୍ଦ୍ଦୁ ଗଦ୍ୟର ପିତା ଭଳି ସମ୍ମାନ ଲାଭ କରିଛନ୍ତି ଏବଂ ସାହିତ୍ୟରେ ପ୍ରଚଳିତ ଭାଷା ପ୍ରୟୋଗର ପ୍ରଥମ ଉଦ୍ୟୋକ୍ତା ରୂପେ ସ୍ୱୀକୃତି ଲାଭ କରିଛନ୍ତି । ମୋଗଲ ସମ୍ରାଟଙ୍କ ସଭା କବି ହେବା ସତ୍ତ୍ୱେ ମୋଗଲ ସମାଜର ପତନ ବେଳେ ନିରୁଦ୍ୟମ ଗାଲିବ୍ ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଗଣ ଅଭ୍ୟୁତ୍ଥାନରେ ଅଂଶଗ୍ରହଣ କରି ନଥିଲେ ।

ଉର୍ଦ୍ଦୁ ଗଦ୍ୟର ବିକାଶ ଦିଗରେ ତତ୍କାଳୀନ କଲିକତାର ଫୋର୍ଟ ଉଇଲିୟମ କଲେଜର ବିଶିଷ୍ଟ ଅବଦାନ ଅବିସ୍ମରଣୀୟ । ଔପନିବେଶିକ କର୍ମଚାରୀମାନଙ୍କୁ ସ୍ଥାନୀୟ ଭାଷାରେ ଶିକ୍ଷାଦାନ କରିବା ନିମିତ୍ତ ପ୍ରତିଷ୍ଠିତ ଏହି କଲେଜରେ ଉର୍ଦ୍ଦୁରେ ଏକ ବିଶେଷ ଧରଣର ପାଠ୍ୟ ପୁସ୍ତକ ରଚନା କରିବାକୁ ଭାରତୀୟ ପଣ୍ଡିତମାନେ ଆମନ୍ତ୍ରିତ ହୋଇଥିଲେ । ବିଷୟବସ୍ତୁର ଅଭାବରୁ ସେମାନେ ନିଜେ ବିଷୟବସ୍ତୁ ସୃଷ୍ଟି କରିଥିଲେ । ମଧ୍ୟଯୁଗୀୟ "ଦାସ୍ତାନଗୁଡ଼ିକର" (କ୍ଷୁଦ୍ର ଗଳ୍ପ) ଆଧୁନିକ ଭାଷ୍ୟ ସେମାନେ ଲେଖିଥିଲେ ଏବଂ ଫଳରେ ସାହିତ୍ୟାନୁଗ ଉର୍ଦ୍ଦୁ ଗଦ୍ୟର ଆବଶ୍ୟକୀୟ ଭିତ୍ତି ନିର୍ମିତ ହୋଇଥିଲା । ଏହି

କଲେଜରୁ ପ୍ରକାଶିତ ପ୍ରାୟ ୫୦ଟି ଉର୍ଦ୍ଦୁ ପୁସ୍ତକ ମଧ୍ୟରୁ "ବାଗ୍‌-ଓ-ବାହର" ("ଉପବନ ଓ ବସନ୍ତ") ଶୀର୍ଷକ ଗଳ୍ପ ସଂକଳନଟି ଥିଲା ସର୍ବାଧିକ ଜନପ୍ରିୟ । ଏହି ଗ୍ରନ୍ଥର ଲେଖକ ଥିଲେ ଦିଲ୍ଲୀର ପୂର୍ବତନ ଜାଗିରଦାର ମୀର୍‌ ଆମାନ୍‌ । ଆହ୍‌ମଦ ଶାହ୍‌ ଦୁର୍‌ରାନୀଙ୍କ ଅଭିଯାନ ପରେ କଲିକତାରେ ସେ ବାସ କରୁଥିଲେ ।

## ମରହଟ୍ଟୀ ସାହିତ୍ୟ

ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟୀ ଭାଷାରେ ଅନେକ ବୀର ଗାଥା ବା "ପାଭାଦାସ୍" ରଚିତ ହୋଇଥିଲା । ଶିବାଜୀଙ୍କ ସମୟରୁ ମରହଟ୍ଟୀ ଇତିହାସର ବହୁ କାହାଣୀ ଏସବୁଥିରେ ବର୍ଣ୍ଣିତ ହୋଇଛି । ଏହି ଯୁଗର ବିଖ୍ୟାତ କବି ହେଲେ ରାମଯୋଶୀ (୧୭୫୮-୧୮୧୨) ଓ ଆନନ୍ଦ ଫାନ୍ଦେ (୧୭୪୪-୧୮୧୯) । ଏହି ସମୟର ବିଶେଷ ଘଟଣା ହେଲା ମରହଟ୍ଟୀ ଗଦ୍ୟ, ବିଶେଷତଃ, ରାଜନୈତିକ ଓ ସାମାଜିକ ଭାଷ୍ୟକାରମାନଙ୍କର ରଚନାବଳୀର ଉନ୍ମେଷ । ମରହଟ୍ଟୀ ସାହିତ୍ୟାନୁଗ ଭାଷାର ଉଲ୍ଲେଖଯୋଗ୍ୟ ବିକାଶ ସାଧନ ପାଇଁ ବିଶେଷ ଭାବେ ସ୍ମରଣୀୟ – ୧୮୩୨ ଖ୍ରୀଷ୍ଟାବ୍ଦରେ ନିଜର ପ୍ରତିଷ୍ଠିତ ଇଂରେଜ-ମରହଟ୍ଟୀ "ବମ୍ବେ ଦର୍ପଣ" ପତ୍ରିକାରେ ମରହଟ୍ଟୀ ଭାଷାରେ ସାମାଜିକ ସମସ୍ୟା ସଂପର୍କିତ ପ୍ରବନ୍ଧକାର ବାଳ ଶାସ୍ତ୍ରୀ ଜାମ୍‌ଭେଲକାର, ୧୮୪୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ "ଭାରତର ଘଟଣାବଳୀ ଅତୀତ ଓ ବର୍ତ୍ତମାନ" ଗ୍ରନ୍ଥର ଲେଖକ ରାମକୃଷ୍ଣ ବିଶ୍ୱନାଥ, ୧୮୪୦ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ "ପ୍ରଭାକର" ସଂବାଦପତ୍ରର ପ୍ରବନ୍ଧଲହରୀର (ପରେ "ଶତପତ୍ର" ନାମକ ଗ୍ରନ୍ଥ ହିସାବରେ ପ୍ରକାଶିତ) ଲେଖକ ଲୋକହିତବାଦୀ । ଏହିସବୁ ଲେଖକମାନେ ଇତିପୂର୍ବରୁ ମରହଟ୍ଟୀ ସାହିତ୍ୟରେ ଅନାଲୋଚିତ ବିଷୟ ଘେନି ଲେଖିଥିଲେ ଏବଂ ସେମାନେ ନୂତନ ଧାରଣା, ନୂତନ ପ୍ରକାଶ ଭଙ୍ଗି ପ୍ରବର୍ତ୍ତନ କରିଥିଲେ । ଫଳରେ, ମରହଟ୍ଟୀ ତତ୍କାଳୀନ ଭାରତବର୍ଷର ସମୃଦ୍ଧତମ ଭାଷା ହୋଇ ଉଠିଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭିକ ଦଶକଗୁଡ଼ିକରେ ମରହଟ୍ଟୀ ସାହିତ୍ୟାନୁସାରୀ ଭାଷାର ବ୍ୟାକରଣ ଓ ଅଭିଧାନିକ ଢାଞ୍ଚା ଘେନି ବ୍ୟାପକ ଗବେଷଣା ପରିଚାଳିତ ହୋଇଥିଲା । ତତ୍କାଳୀନ ବିଖ୍ୟାତ ମରହଟ୍ଟୀ ଭାଷାବିଦ୍‌ ଥିଲେ ଦାଦବା ପାଣ୍ଡୁରାଙ୍ଗା (୧୮୧୪-୧୮୮୨) ।

## ବଙ୍ଗଳା ସାହିତ୍ୟ

ଅଷ୍ଟାଦଶ ଶତାବ୍ଦୀରେ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟର ଆଉରି ପ୍ରସାର ଘଟିଥିଲା । ବିଷୟବସ୍ତୁ ଓ ଆଙ୍ଗିକତାର ପୁରାତନ ଶୈଳୀ କିଛି ପରିମାଣରେ ଅବ୍ୟାହତ ରହିଥିଲେ ମଧ୍ୟ ଏହି ଭାଷାର ବିକାଶ ଘଟିଥିଲା । କବିମାନଙ୍କ ବର୍ଣ୍ଣନାର ବିଷୟବସ୍ତୁ ଆଉରି ମାର୍ଜିତ ହୋଇଥିଲା, ଅର୍ଥାତ୍‌, ଉପମାଗୁଡ଼ିକରେ ଗତାନୁଗତିକତା ପରିବର୍ତ୍ତେ ନୂତନ ପ୍ରାଣ ସଞ୍ଚାରିତ ହୋଇଥିଲା, ଚରିତ୍ରଗୁଡ଼ିକ ବାସ୍ତବ ହୋଇ ଉଠିଥିଲେ ଏବଂ କାବ୍ୟରେ ସ୍ୱତନ୍ତ୍ର କବିସତ୍ତାର ଆବିର୍ଭାବ ଘଟିଥିଲା । ଏହି ସମୟର ପ୍ରଧାନ କବିମାନଙ୍କ ମଧ୍ୟରେ ବଙ୍ଗଳାର ଅନ୍ୟତମ ସାମନ୍ତ, ନଦିଆ ରାଜାଙ୍କ ସଭାକବି "ରାୟଗୁଣାକର" ଭାରତଚନ୍ଦ୍ର ରାୟ (୧୭୧୨-୧୭୬୦) ଓ ରାଜାଙ୍କ ସାହାଯ୍ୟପୁଷ୍ଟ "କବିରଞ୍ଜନ" ରାମପ୍ରସାଦ ସେନ (୧୭୧୮-୧୭୭୫) ବିଶେଷ ଭାବେ ସ୍ମରଣୀୟ । ଭାରତଚନ୍ଦ୍ରଙ୍କ "ବିଦ୍ୟାସୁନ୍ଦର"

କାବ୍ୟ କାହାଣୀର ସୌନ୍ଦର୍ଯ୍ୟ ଓ ନାଗରିକ ବିଦଗ୍ଧତାରେ ଆକୃଷ୍ଟ ହୋଇ ପ୍ରଥମ ରୁଷ୍ ଭାରତତତ୍ତ୍ୱବିତ୍ ଗେରାସିମ୍ ଲେବେଦେଭ୍ (୧୭୪୯-୧୮୧୭) ରୁଷ୍ ଭାଷାରେ ଏହାକୁ ଅନୁବାଦ କରିଥିଲେ । ସେ ଭାରତଚନ୍ଦ୍ରଙ୍କ କେତେକ କବିତାରେ ସ୍ୱର ସଂଯୋଗ କରି ସେସବୁକୁ ୧୭୯୫ ଖ୍ରୀଷ୍ଟାବ୍ଦରେ କଲିକତାର ଏକ ନାଟ୍ୟାନୁଷ୍ଠାନରେ ପରିବେଷଣ କରିଥିଲେ ।

ବଙ୍ଗଳା ଗଦ୍ୟର ପ୍ରକୃତ ଅଗ୍ରଦୂତ ଥିଲେ ରାମମୋହନ ରାୟ । ବଙ୍ଗଳା ଗଦ୍ୟର ଆଧୁନିକୀକରଣରେ ତାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ "ସଂବାଦ କୌମୁଦୀ" ପତ୍ରିକାରେ ସେ ବିବିଧ ସାମାଜିକ ସମସ୍ୟା ନେଇ ବହୁ ପ୍ରବନ୍ଧ ଲେଖିଥିଲେ । ସେ ହିନ୍ଦୁ ଧର୍ମର କୁସଂସ୍କାର ଓ ପ୍ରାଚୀନ ରୀତିନୀତି ବିରୁଦ୍ଧରେ ସଂଗ୍ରାମ ପରିଚାଳନା କରିଥିଲେ । ରାମମୋହନ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ବିକାଶମାନ ବଙ୍ଗଳା ଗଦ୍ୟ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପର୍ଯ୍ୟନ୍ତ ଅନୁସୃତ ହୋଇଥିଲା ।

## ତାମିଲ ସାହିତ୍ୟ

ତାମିଲ ସାହିତ୍ୟ ଥିଲା ଦକ୍ଷିଣ ଭାରତର ସର୍ବୋନ୍ନତ ସାହିତ୍ୟ । ଏଥିରେ ସଂସ୍କୃତ ସାହିତ୍ୟର ଟୀକା ରଚନା କରିବାରେ ମଧ୍ୟଯୁଗୀୟ ଐତିହ୍ୟ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଲେଖକମାନେ ଗତାନୁଗତିକତା ସହ ନିଜର ଚିନ୍ତା ଅନୁଯାୟୀ ଆଲୋଚ୍ୟ ଗ୍ରନ୍ଥର ଟୀକା ରଚନା କରିବା ପରିବର୍ତ୍ତେ ଏହିସବୁ ଗ୍ରନ୍ଥ ସାହାଯ୍ୟରେ ଅତ୍ୟନ୍ତ ଅବାସ୍ତବ ରୂପେ ଭାରତର ଅତୀତ ଇତିହାସ ପୁନଃରଚନା କରିବାକୁ ଉଦ୍ୟୋଗୀ ହୋଇଥିଲେ । ତାମିଲମାନଙ୍କ ପାଇଁ ପ୍ରାଚୀନ ଭାରତର ଗୌରବୋଜ୍ଜ୍ୱଳ ଦିନସବୁକୁ ପୁନର୍ବାର ସ୍ମରଣ କରିବା ଥିଲା ଜାତୀୟ ପରିଚୟ ପ୍ରତିଷ୍ଠାର ଏକ ଉପାୟବିଶେଷ ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ମଧ୍ୟରେ ଇଟାଲୀୟ ମିସନାରୀ କନଷ୍ଟାନ୍‌ଜିଓ ବେସଚି (୧୬୮୦-୧୭୪୬) ତାମିଲ ଗଦ୍ୟ ପ୍ରତି ଏକ ଉଲ୍ଲେଖଯୋଗ୍ୟ ଅବଦାନ ରଖିଛନ୍ତି । ବିରାମ ମୁନି ନାମକ ତାଙ୍କ ଦ୍ୱାରା ଲିଖିତ ଖ୍ରୀଷ୍ଟଙ୍କ ସଂପର୍କରେ କେତେକ ରଚନା ବ୍ୟତୀତ ତାମିଲ ଭାଷାରେ ତାଙ୍କ ସଂକଳିତ "ସରଳ ଗୁରୁ କାହାଣୀ" ଶୀର୍ଷକ ରୂପକଥାଟି ଖୁବ୍ ଜନପ୍ରିୟତା ଅର୍ଜନ କରିଥିଲା ।

ଭକ୍ତିବାଦର ଅନୁଗାମୀ ହେଲେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧର ତାମିଲ କବି ତାୟୁମାନଭାର ତାଙ୍କ ରଚନାରେ ଶିବଙ୍କୁ ସମସ୍ତ ଜାତି ଓ ଧର୍ମର ଲୋକଙ୍କର ଗ୍ରହଣଯୋଗ୍ୟ ବିମୂର୍ତ୍ତ ଦେବତା ହିସାବରେ ଚିତ୍ରଣ କରିଥିଲେ । ଅନ୍ୟାନ୍ୟ ଭକ୍ତମାନଙ୍କ ଭଳି ତାୟୁମାନଭାର ମଧ୍ୟ ମାନବିକ ସାମ୍ୟର ଧାରଣା ପ୍ରଚାର କରିବାକୁ ଉଦ୍ୟମ କରିଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଧାରଣାସମୂହ ସୁନ୍ଦରମ୍ ପିଲ୍ଲାଇ ଓ ପରବର୍ତ୍ତୀ କାଳରେ ରାମଲିଙ୍ଗ ସ୍ୱାମୀଙ୍କ (୧୮୨୩-୧୮୭୪) ଲୋକ ଭାଷାରେ ଲିଖିତ ରଚନାସମୂହରେ ଆଉରି ବିକଶିତ ହୋଇଥିଲା । ତାମିଲ ଗଦ୍ୟ ସାହିତ୍ୟର ବିକାଶ କ୍ଷେତ୍ରରେ ରାମଲିଙ୍ଗ ସ୍ୱାମୀଙ୍କ ଲିଖିତ ଗଳ୍ପଗୁଡ଼ିକର ଅବଦାନ ଖୁବ୍ ଉଲ୍ଲେଖଯୋଗ୍ୟ । ଆରୁମୁଗା ନାଭେଲାର (୧୮୨୨-୧୮୭୪) ଥିଲେ ଏ ଯୁଗର ପ୍ରଧାନ ଗଦ୍ୟ ଲେଖକ । କିନ୍ତୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ତାମିଲ ଉପନ୍ୟାସର ଉନ୍ମେଷ ଘଟିଥିଲା ।

## ଥିଏଟର

ଅଷ୍ଟାଦଶ ଶତାବ୍ଦୀରେ ନାଟ୍ୟକଳାର ଅବକ୍ଷୟ ଯୁଗରେ ମୂଳତଃ ମଞ୍ଚ ବଦଳରେ ଆବୃତ୍ତି ପାଇଁ ନାଟକ ଲେଖା ଯାଉଥିଲା । ପ୍ରାଚୀନ ଭାରତୀୟ ମହାକାବ୍ୟକୁ ଭିତ୍ତି କରି ରଚିତ ଜନପ୍ରିୟ ନାଟକଗୁଡ଼ିକ ବହୁ କ୍ଷେତ୍ରରେ ମଞ୍ଚସ୍ଥ ହେଉଥିଲା । କିନ୍ତୁ ଏସବୁ ଥିଲା ପୁରାତନ କାହାଣୀର ପୁନରାବୃତ୍ତି । ୧୭୫୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ନାଗରିକମାନଙ୍କ ପାଇଁ କଲିକତାରେ କଂପାନିର ଉଦ୍ୟୋଗରେ ଗୋଟିଏ ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇଥିଲା । ଏଠାରେ ଅଭିନୀତ ନାଟକଗୁଡ଼ିକର ବିଷୟବସ୍ତୁ ଭାରତୀୟମାନଙ୍କର ଅପରିଚିତ ଥିବାରୁ ଏବଂ ଅଧିକାଂଶ ଭାରତୀୟ ଇଂରେଜୀ ଭାଷା ଜାଣି ନଥିବାରୁ ସେମାନେ ଏସବୁ ବୁଝି ପାରୁ ନଥିଲେ ଏବଂ ତେଣୁ ଦେଖୁ ନଥିଲେ ।

୧୭୯୫ ଖ୍ରୀଷ୍ଟାବ୍ଦରେ କଲିକତାରେ ଭାରତୀୟମାନଙ୍କ ପାଇଁ ପ୍ରତିଷ୍ଠିତ ଏକ ଆଧୁନିକ ରଙ୍ଗମଞ୍ଚରୁ ଏ କ୍ଷେତ୍ରରେ ନୂତନ ଯୁଗର ସୂଚନା ମିଳିଥିଲା । ଏହାର ପ୍ରତିଷ୍ଠାତା ଥିଲେ ସଙ୍ଗୀତବିଦ୍ (ପରେ ଭାରତତତ୍ତ୍ୱବିଦ୍) ଗେରାସିମ୍ ଲେବେଦେଭ୍ । ସେ ବାର ବର୍ଷ କାଳ ଭାରତରେ ସଂସ୍କୃତ, ବଙ୍ଗଳା, ହିନ୍ଦୁସ୍ତାନୀ ଭାଷା ଶିକ୍ଷା କରିଥିଲେ । ଇଂରେଜୀ ନାଟକର ଦୃଶ୍ୟାବଳୀକୁ ଭାରତର ପଟ୍ଟଭୂମିରେ ସେ ରୂପାନ୍ତରିତ କରିଥିଲେ ଏବଂ ନାୟକନାୟିକାଙ୍କୁ ବଙ୍ଗାଳୀ କରି ଦେଇ ସେ ସାଂପ୍ରତିକ ବଙ୍ଗଳାରେ ଦୁଇଟି ଇଂରେଜୀ ନାଟକର ରୂପାନ୍ତର କରିଥିଲେ । କଂପାନିର ରଙ୍ଗମଞ୍ଚ ମାଲିକମାନେ ସେମାନଙ୍କର ଏହି ପ୍ରତିଦ୍ୱନ୍ଦ୍ୱୀଙ୍କୁ ଦେବାଳିଆ କରି ଦେବା ପାଇଁ ଷଡ଼ଯନ୍ତ୍ର କରିଥିଲେ ଏବଂ ଏହା ଫଳରେ ତାଙ୍କର ଥିଏଟର ବନ୍ଦ ହୋଇ ଯାଇଥିଲା । ଲେବେଦେଭ୍ ତା'ପରେ ଭାରତ ଛାଡ଼ିବାକୁ ବାଧ୍ୟ ହେଲେ ଏବଂ ଶେଷକୁ ୧୮୩୧ ଖ୍ରୀଷ୍ଟାବ୍ଦରେ ପ୍ରସନ୍ନ କୁମାର ଠାକୁର ଇଂରେଜୀ ନାଟକ ଓ ସେସବୁର କେତେକ ବଙ୍ଗଳା ଅନୁବାଦ ଅଭିନୟ ପାଇଁ "ହିନ୍ଦୁ ଥିଏଟର" ପ୍ରତିଷ୍ଠା କରିଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ କଲିକତାରେ ଅନେକଗୁଡ଼ିଏ ରଙ୍ଗମଞ୍ଚ ଗଢ଼ି ଉଠିଥିଲା ଏବଂ ସେସବୁଥିରେ ବଙ୍ଗଳା ନାଟକ ଅଭିନୀତ ହେଉଥିଲା ।

## ସ୍ଥାପତ୍ୟ

ସବୁ ଦିଗରୁ ବିଚାର କଲେ, ଅଷ୍ଟାଦଶ ଶତାବ୍ଦୀରେ ସ୍ଥାପତ୍ୟ କ୍ଷେତ୍ରରେ ଅବନତି ଦେଖା ଦେଇଥିଲା । ଅନୁପାତ ଦୃଷ୍ଟିରୁ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟପୂର୍ଣ୍ଣ ମୋଗଲମାନଙ୍କ ଗୌରବୋଜ୍ଜ୍ୱଳ ସମୟର ପ୍ରାସାଦଗୁଡ଼ିକ ସେତେବେଳକୁ ଅତୀତରେ ପର୍ଯ୍ୟବସିତ ହୋଇ ଯାଇଥିଲା । ଅତ୍ୟଧିକ ଅଳଙ୍କରଣ, ଗଢ଼ଣ ପକ୍ଷରେ ଅପ୍ରୟୋଜନୀୟ, ସାଧାରଣତଃ, ସାର୍ବିକ ଗଠନ ଶୈଳୀରୁ ଦୃଷ୍ଟିକୁ ଦୂରେଇ ନେଉଥିବା ସୂକ୍ଷ୍ମାତିସୂକ୍ଷ୍ମ କାରୁକାର୍ଯ୍ୟ ଏହାକୁ ଖଣ୍ଡିତ କରୁଥିଲା । ଏହା ହିଁ ଥିଲା ଅଷ୍ଟାଦଶ ଶତାବ୍ଦୀର ନିର୍ମାଣ ରୀତି । ଏଥି ସଙ୍ଗେ ସଙ୍ଗେ ସ୍ଥାପତ୍ୟ ଶିଳ୍ପର ନୂତନ ପଦ୍ଧତି ଓ କୃତ୍‌କୌଶଳର ଉଦ୍‌ଭବ ଘଟିଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ପ୍ରାସାଦ, ସରଣୀ, ସେତୁ, ଆଦି ଘେନି ଗଠିତ କେତେକ ସଂପୂର୍ଣ୍ଣ ନୂତନ ସହର ଗଢ଼ି ଉଠିଥିଲା । ଏସବୁ ମଧ୍ୟରେ ରାଜା ଜୟ ସିଂହଙ୍କ କର୍ତ୍ତୃକ ନିର୍ମିତ ଜୟପୁର ସହରଟି ଉଲ୍ଲେଖଯୋଗ୍ୟ । ସହରର ପ୍ରାସାଦଟି ଥିଲା ବହୁ ଅଟ୍ଟାଳିକାର ଏକ ସମାହାର ଏବଂ

ଚନ୍‌ମଧ୍ୟରେ ହାଓ୍ୱା ମହଲଟି ଥିଲା ବିଖ୍ୟାତ । ଏହି ବିଶାଳ ପ୍ରାସାଦଟିରେ ଥିବା ଅସଂଖ୍ୟ ଠଣା ଓ ଅଳିନ୍ଦ ଏହାକୁ ଶୀତଳ ରଖୁଥିଲା ଏବଂ ଏସବୁ ମଧ୍ୟରେ ପ୍ରବାହିତ ପବନ ଅଭ୍ୟନ୍ତରରେ ମୃଦୁସ୍ପନ୍ଦନ ସୃଷ୍ଟି କରୁଥିଲା । ପ୍ରାସାଦଟିର ଅଭ୍ୟନ୍ତର ବହୁବର୍ଣ୍ଣ, ସ୍ତରବିଶିଷ୍ଟ ମର୍ମର ପ୍ରସ୍ତରର ଜାଫରିରେ ଶୋଭିତ ଥିଲା । ପ୍ରାସାଦ ଏବଂ ଦୁର୍ଗଗୁଡ଼ିକ ମଧ୍ୟରେ ଅବସ୍ଥିତ ୟୁରୋପୀୟ ଢଙ୍ଗର ଉଦ୍ୟାନଗୁଡ଼ିକ ଥିଲା ସହର ପ୍ରାଚୀରର ଆରପାରିରେ ଥିବା ପାର୍ବତ୍ୟ ନୈସର୍ଗିକ ଦୃଶ୍ୟ ସହିତ ସୁବିନ୍ୟସ୍ତ । ଏହି ଧରଣର ଆଉ ଏକ ସହର ହେଲା ୧୮୧୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ଗୋଆଲିଅରର ନୂତନ ରାଜଧାନୀ ଲସକର । ଏଠାକାର ଅଟ୍ଟାଳିକାସମୂହରେ ସମ୍ମୁଖକୁ ପ୍ରସାରିତ ବାରନ୍ଦା, କ୍ଷୁଦ୍ର ସରୁ ସ୍ତମ୍ଭ ଉପରେ ଥିବା ସୂକ୍ଷ୍ମ ଖିଲଣ ସହ ଝୁଲନ୍ତ ଅଳିନ୍ଦ, ପଥର ଜାଫରିର କାରୁକାର୍ଯ୍ୟ ସଜ୍ଜିତ ଉନ୍ମୁକ୍ତ ଝାରୁଆ ଅଳିନ୍ଦ ପ୍ରଭୃତି ପରମ୍ପରାଗତ ଉପକରଣ, ଆଦି ଅନ୍ତର୍ଭୁକ୍ତ ହୋଇଥିଲା । ଲସକରର ଅନ୍ୟତମ ଆକର୍ଷଣୀୟ ଦୃଶ୍ୟ ହିସାବରେ ଏକ ସୁନ୍ଦର ସେତୁ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଅଷ୍ଟାଦଶ ଶତାବ୍ଦୀରେ ଅଯୋଧ୍ୟାର ନବାବମାନଙ୍କ ଦ୍ୱାରା ନିର୍ମିତ ସେମାନଙ୍କ ରାଜଧାନୀ ଲକ୍ଷ୍ନୌ ଥିଲା ପ୍ରାସାଦ, ମସଜିଦ୍, ଅଯୋଧ୍ୟାର ଶାସକ ଓ ଅଭିଜାତବର୍ଗଙ୍କ ସମାଧିମିନାର, ବଡ଼ ଓ ଛୋଟ ଇମାମ୍‌ବଡ଼ାର ନମାଜ ପାଠକକ୍ଷ, ଆଦି ସମାହାର ବିଶେଷ । ଧୂସର ମାକଡ଼ା ପଥର ବା ଚୂଦାମ ଲେପନଯୁକ୍ତ ଘରିକଣିଆ ପଥର ଦେଇ ଏହିସବୁ ଅଟ୍ଟାଳିକା ଅଳଙ୍କୃତ ହୋଇଥିଲା । ଏସବୁ ଥିଲା ସମୃଦ୍ଧ କାରୁକାର୍ଯ୍ୟ ଏବଂ ପ୍ରାନ୍ତିକ ଗୋଲକ ବା ଶିରାଳ ସ୍ତମ୍ଭରାଜି ଉପରେ ସ୍ଥାପିତ ବିଭିନ୍ନ ଆକାରର ଗୋଲକ ସମେତ ଚୂଡ଼ା ଦ୍ୱାରା ସୁସଜ୍ଜିତ । ଏହିସବୁ ଅଟ୍ଟାଳିକା ମୌଳିକ ଓ ବଳିଷ୍ଠ ନକ୍‌ସା ପାଇଁ ଦୃଷ୍ଟିଆକର୍ଷକ । ଦୃଷ୍ଟାନ୍ତ ସ୍ୱରୂପ, ବଡ଼ ଇମାମ୍‌ବଡ଼ାର ଆୟତାକାର ବିଶାଳ କକ୍ଷଟି (ପ୍ରାୟ ୮୦୦ ବର୍ଗ ମିଟର) ଉଲ୍ଲେଖଯୋଗ୍ୟ । ଗୋଟିଏ ହେଲେ ସ୍ତମ୍ଭ ବା ଆଶ୍ରୟହୀନ ପ୍ରଶସ୍ତ ଛାତ ଓ ଆଶ୍ଚର୍ଯ୍ୟଜନକ ଶ୍ରୁତି ବ୍ୟବସ୍ଥା ଯୁକ୍ତ ଏହି କକ୍ଷର ଗୋଟିଏ ପ୍ରାନ୍ତରେ ଫୁସ୍‌ଫୁସ୍ ଶବ୍ଦ ମଧ୍ୟ ଅନ୍ୟ ପ୍ରାନ୍ତରେ ସ୍ପଷ୍ଟ ଶୁଣା ଯାଉଥିଲା ।

ଗଙ୍ଗା ନଦୀର ଡାହାଣ ତୀରଦେଶରେ ବାରାଣସୀର ବହୁ ମନ୍ଦିର, ପ୍ରାସାଦ ଓ ଆଶ୍ରମ ଏବଂ ଘାଟଗୁଡ଼ିକ ଅଷ୍ଟାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ନିର୍ମିତ କେତେକ ଅଟ୍ଟାଳିକା ମଧ୍ୟ ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ । ଏସବୁ ମଧ୍ୟରେ ରହିଛି ଅହମଦାବାଦର ଶ୍ୱେତ ପଥରରେ ନିର୍ମିତ ଧର୍ମନାଥ ଜୈନ ମନ୍ଦିର (୧୮୪୪-୧୮୪୮), ବିକାନୀରର ଜନୈକ ଧନୀ ବ୍ୟବସାୟୀଙ୍କ ଦ୍ୱାରା ନିର୍ମିତ ସମୃଦ୍ଧ ଖୋଦନ ଓ ରାସାୟନ ସଜ୍ଜିତ ଏବଂ ପ୍ରାନ୍ତିକ ଛାତଯୁକ୍ତ ଘରିତଳବିଶିଷ୍ଟ ପ୍ରାସାଦଟି । ଅଷ୍ଟାଦଶ ଶତାବ୍ଦୀ ସ୍ଥାପତ୍ୟର ଅନ୍ୟତମ ଶ୍ରେଷ୍ଠ ନିଦର୍ଶନ ହେଲା ସୁନ୍ଦର ଚତ୍ୱର ଓ ସୁନା ପାତଦିଆ ତମ୍ବାର ଗୋଲ୍ ଗମ୍ବୁଜ ଶୋଭିତ ଅମୃତସହରସ୍ଥ ଶିଖମାନଙ୍କ ସ୍ୱର୍ଣ୍ଣ ମନ୍ଦିର (୧୭୬୪-୧୭୬୬) । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହା ପୁଣି ଥରେ ନିର୍ମିତ ହୋଇଥିଲା । ମୋଗଲମାନଙ୍କ ସ୍ୱର୍ଣ୍ଣ ଯୁଗର ପ୍ରତୀକ ଦିଲ୍ଲୀର ସାଫଦର ଜଙ୍ଗ ମସଜିଦ୍‌ଟି (୧୭୫୩) ପ୍ରସଙ୍ଗତ ଉଲ୍ଲେଖଯୋଗ୍ୟ । କିନ୍ତୁ ଏହା ଏତେ ମୂଲ୍ୟବାନ ଉପକରଣ ଦ୍ୱାରା ନିର୍ମିତ ନୁହେଁ ।

ଅଷ୍ଟାଦଶ ଶତାବ୍ଦୀରେ ଭାରତରେ, ବିଶେଷତଃ ବଙ୍ଗଳାରେ, ୟୁରୋପୀୟ ଧରଣର ଅଟ୍ଟାଳିକା ନିର୍ମାଣ ଆରମ୍ଭ ହୋଇଥିଲା (ଯଦିଓ ଦକ୍ଷିଣ ଭାରତରେ ସେତେବେଳେ ଷୋଡ଼ଶ ଶତାବ୍ଦୀର କେତୋଟି

ପର୍ତ୍ତୁଗୀଜ୍ ଚର୍ଚ୍ଚ, ଓଲନ୍ଦାଜ ମାଇଗୋଦାମ ଓ ସପ୍ତଦଶ ଶତାବ୍ଦୀର ବାସଗୃହ ଥିଲା । ଅଷ୍ଟାଦଶ ଶତାବ୍ଦୀରେ ନିର୍ମିତ ଏଠାକାର ବ୍ରିଟିଶ୍ ବାସଭବନର ଶୈଳୀ ଥିଲା ବିଶେଷତଃ ମଧ୍ୟଯୁଗୀୟ । ପାରିପାର୍ଶ୍ୱିକ ନୈସର୍ଗିକ ଦୃଶ୍ୟ ସହିତ ସାଧାରଣତଃ ସ୍ତମ୍ଭ ଶୋଭିତ ଏହି ଗୃହଗୁଡ଼ିକର କୌଣସି ସାମଞ୍ଜସ୍ୟ ନଥିଲା । ଲକ୍ଷ୍ନୌର "ଲା ମର୍ଟିନିୟର" କଲେଜ (ସାମରିକ ସ୍କୁଲ) ହେଲା ଏଯୁଗର ଶ୍ରୀହୀନ ୟୁରୋପୀୟ ଅଟ୍ଟାଳିକାଗୁଡ଼ିକର ଦୃଷ୍ଟାନ୍ତ ସ୍ୱରୂପ । ଏକ କୃତ୍ରିମ ହ୍ରଦ ତୀରରେ ଏହି ଅଟ୍ଟାଳିକାଟିକୁ ନିର୍ମାଣ କରିଥିଲେ ଅଯୋଧ୍ୟାର ଆଦି ନବାବମାନଙ୍କର କମାଣବାହିନୀର ଅଧିନାୟକ ଓ ଅମାପ ସଂପଦର ମାଲିକ ଜନୈକ ଫରାସୀ ଭାଗ୍ୟାନ୍ୱେଷୀ କ୍ଲଦ ମାର୍ଟିନ୍ । ନିରାଭରଣ ଦେବାଲ, ଚତୁଷ୍କୋଣବିଶିଷ୍ଟ ଓ ଗୋଲାକାର କୋଠା, ତିନି ତାଲରେ ଅବସ୍ଥିତ ଉଚ୍ଚ ମିନାରର ମୁକୁଟ ଭଳି ଚୂଡ଼ାଦେଶ – ସବୁକିଛି ମିଶି ଅଟ୍ଟାଳିକାଟି ହେଲା ୟୁରୋପୀୟମାନଙ୍କ ଦ୍ୱାରା ସୁରକ୍ଷିତ ପ୍ରାସାଦର ରୁଚିବିହୀନ ସାମଞ୍ଜସ୍ୟହୀନ ରୀତିସମୂହର ଏକ ଜଟିଳ ମିଶ୍ରଣ । ଉଚ୍ଚ କୋଠାଗୁଡ଼ିକର ଉପରେ ବିଭିନ୍ନ ଉଚ୍ଚତା ବିଶିଷ୍ଟ ୟୁରୋପୀୟ ଶାସ୍ତ୍ରୀୟ ଶୈଳୀର ମୂର୍ତ୍ତି ଏବଂ ସମ୍ମୁଖସ୍ଥ ବାରଣ୍ଡା ଉପରେ ବିଶାଳ ପଥରର ଦୁଇଟି ଦ୍ୱିମାତ୍ରିକ ସିଂହ ବସିଛନ୍ତି – ସିଂହ ଦୁଇଟିର ଉନ୍ମୁକ୍ତ ମୁଖ ମଧ୍ୟ ଦେଇ ଆରପାରିର ଆକାଶକୁ ଦେଖି ହୁଏ । ସୌଭାଗ୍ୟ ବଶତଃରୁ ଏହି କୋଠାଘର ଶୈଳୀ ଭାରତୀୟ ସ୍ଥାପତ୍ୟକୁ ପ୍ରଭାବିତ କରି ନାହିଁ ।

## ଚିତ୍ରକଳା

ଅଷ୍ଟାଦଶ ଶତାବ୍ଦୀରେ ମୋଗଲ କ୍ଷୁଦ୍ରାବୟବ ଚିତ୍ରର ପ୍ରସାର ସର୍ବାଧିକ ମାତ୍ରାରେ ପହଞ୍ଚିଥିଲା । ପୁରାତନର ଅନୁକୃତି ହେଲେ ମଧ୍ୟ ଏସବୁର ରଙ୍ଗ ଥିଲା ଉଜ୍ଜ୍ୱଳତର, ବେଳେ ବେଳେ ଆଖିଝଲସିଆ । ମଞ୍ଜୁସା, ରେକାବ, ହାତୀ ଦାନ୍ତର ପଦକ ଆଦି ଶିଳ୍ପଦ୍ରବ୍ୟ ସଜ୍ଜିତ ବହୁ କ୍ଷୁଦ୍ରାବୟବ ଚିତ୍ରକଳା ବ୍ୟବହୃତ ହେଉଥିଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗ ପରେ ମୋଗଲ କ୍ଷୁଦ୍ରାବୟବ ଚିତ୍ରକର ଗୋଷ୍ଠୀର ବସ୍ତୁତଃ ବିଲୋପ ଘଟିଥିଲା । କିନ୍ତୁ ଏହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କ୍ଷୁଦ୍ରାବୟବ ଚିତ୍ରର ସ୍ୱର୍ଣ୍ଣ ଯୁଗ ଆରମ୍ଭ ହୋଇଥିଲା ଜମ୍ମୁ, ଚମ୍ବା, ମଣ୍ଡି, ଗୁଲେର, କାଂରା ଓ ତେହିରି-ଗଢ଼ୋଆଲ ଭଳି କ୍ଷୁଦ୍ର ପାର୍ବତ୍ୟ ରାଜ୍ୟରେ (ଯେଉଁଥି ପାଇଁ "ପାହାଡ଼ୀ" କ୍ଷୁଦ୍ରାବୟବ ଚିତ୍ରକଳା ନାମରେ ଏସବୁ ଖ୍ୟାତ) ।

ଏସବୁ ମଧ୍ୟରେ କାଂରା ଗୋଷ୍ଠୀଟି ସର୍ବାଧିକ ଖ୍ୟାତିସଂପନ୍ନ । ମୋଗଲ ଅମାତ୍ୟଙ୍କ ଜୀବନ ଚିତ୍ରଣ ବା ଫାର୍‌ସୀ କବିମାନଙ୍କ ରଚନା ଅଳଙ୍କରଣରେ ବ୍ୟବହୃତ ମୋଗଲ କ୍ଷୁଦ୍ରାବୟବ ଚିତ୍ରକର ଗୋଷ୍ଠୀର ବ୍ୟତିକ୍ରମ ହିସାବରେ କାଂରା ଗୋଷ୍ଠୀର ବିଷୟବସ୍ତୁ ଥିଲା ହିନ୍ଦୁ ମହାକାବ୍ୟର ଉପକରଣ, ବିଶେଷତଃ, କୃଷ୍ଣଙ୍କ କାହାଣୀ – ତାଙ୍କ ଶୈଶବ, ଗୋପାଙ୍ଗନାମାନଙ୍କ ସହିତ କେଳିରତ କୃଷ୍ଣ, ବଂଶୀବାଦନକାରୀ କୃଷ୍ଣ, ସଖୀବେଷ୍ଟିତା ରାଧା, ରାଧାକୃଷ୍ଣଙ୍କ ମିଳନ ଆଦି । ଏସବୁ କ୍ଷୁଦ୍ରାବୟବ ଚିତ୍ରରେ କୃଷ୍ଣଙ୍କୁ ସର୍ବଦା ଅସ୍ୱାଭାବିକ ଈଷତ୍ ନୀଳ ଆଭାରେ ଅଙ୍କାଯାଉଥିଲା । ସାଧାରଣତଃ ପାର୍ଶ୍ୱଦେଶରୁ ପ୍ରତୀୟମାନ ଓ କିଛି ପରିମାଣରେ ପ୍ରସାରିତ ଚକ୍ଷୁବିଶିଷ୍ଟ ଦ୍ୱିମାତ୍ରିକ ଚିତ୍ରଗୁଡ଼ିକରେ ରାଜପୁତ ଚିତ୍ର ଶୈଳୀର ପ୍ରତିଫଳନ ପରିଷ୍କାର ଜଣାଯାଉଥିଲା । ଚିତ୍ରଗୁଡ଼ିକର ସାଧାରଣତଃ କୌଣସି ପରିପ୍ରେକ୍ଷିତ ନଥିଲା । ଏଥିରେ ଜନସମଷ୍ଟି ଏପରି ଭାବେ ଚିତ୍ରିତ ହେଉଥିଲେ ଯେ,

ସେଗୁଡ଼ିକ ଅନେକ ପଂକ୍ତିରେ ଶ୍ରେଣୀବଦ୍ଧ ଓ ପଛରେ ଥିବା ପଂକ୍ତିଟି ସମ୍ମୁଖସ୍ଥ ପଂକ୍ତିଠାରୁ କିଛି ପରିମାଣରେ ଉଚ୍ଚ ହେଉଥିଲା । ବୃକ୍ଷରାଜି ଅଳଙ୍କୃତ ରହୁଥିଲେ, ସାଧାରଣତଃ ଏଥି ପାଇଁ ନୈଶ ବର୍ଣ୍ଣ୍ୟାବଳୀ ନିର୍ବାଚିତ ହେଉଥିଲା । ଆକାଶ ସେତେବେଳେ ରହୁଥିଲା ନକ୍ଷତ୍ରଭରା । ସୀମିତ ପରିସର ହେଲେ ମଧ୍ୟ ଗାଢ଼ ରଙ୍ଗ—ବିଭିନ୍ନ ଗାଢ଼ ନୀଳ ସୁନେଲୀ-ବାଦାମୀ ରଙ୍ଗ ବ୍ୟବହୃତ ହେଉଥିଲା । ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କଥାଟି ହେଉଛି, କାଂରା କ୍ଷୁଦ୍ରାବୟବ ଚିତ୍ରରେ ସଭାସଦ, ଅମିର୍-ଓମରାହ୍‌ମାନଙ୍କ ପରିବର୍ତ୍ତେ କୃଷକ, ଗୋପାଳ, କାରିଗରମାନଙ୍କୁ ଚିତ୍ରଣ କରାଯାଉଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ହାଲୁକା ରଙ୍ଗ ବ୍ୟବହାର ପଦ୍ଧତି ଆରମ୍ଭ ହୋଇଥିଲା । ତତ୍କାଳୀନ ରଚନାରେ ଦୈନ୍ୟ ପ୍ରକଟିତ ହୋଇଛି, ଏପରିକି ଦେବଦେବୀମାନଙ୍କୁ ଦୈନନ୍ଦିନ ବାସ୍ତବ ପରିବେଶ ମଧ୍ୟରେ, ପ୍ରାୟ ପରିବାର ମଧ୍ୟରେ ସାଧାରଣ ମଣିଷର ଅବୟବରେ ଅଙ୍କା ହୋଇଛି । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଚିତ୍ରକଳା ଗ୍ରନ୍ଥକଳା ହେବା ପରିବର୍ତ୍ତେ ଅନେକ ପରିମାଣର କାରୁଶିଳ୍ପ ହୋଇ ଉଠିଥିଲା । ଏଥିରେ ବ୍ରିଟିଶ୍ କର୍ମଚାରୀମାନଙ୍କର ପ୍ରତିକୃତି ଓ ସବୁଧରଣର ଧର୍ମୀୟ ଶୋଭାଯାତ୍ରାର ପ୍ରାଧାନ୍ୟ ଦେଖା ଦେଇଥିଲା । କ୍ଷୁଦ୍ରାବୟବ ଚିତ୍ରକଳା ସେତେବେଳକୁ ଗ୍ରନ୍ଥଚିତ୍ରଣର ସୀମା ପାରି ହୋଇ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀଗୁଡ଼ିକର ଅଳଙ୍କରଣରେ ପରିଣତ ହୋଇଥିଲା ।

# ସାମ୍ରାଜ୍ୟବାଦର ଜନ୍ମଲଗ୍ନରେ ଭାରତବର୍ଷ (୧୮୬୦-୧୮୯୭)

## ଔପନିବେଶିକ ଶାସନ ପ୍ରଣାଳୀରେ ପରିବର୍ତ୍ତନ

୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଗଣ ଅଭ୍ୟୁତ୍ଥାନଟି ହେଲା ଭାରତର ଇତିହାସରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା । ଏଥିରେ ବ୍ରିଟିଶ୍ ଶାସନର ସାମାଜିକ ଭିତ୍ତିର ଆପେକ୍ଷିକ ଦୁର୍ବଳତା ପ୍ରକଟିତ ହୋଇଥିଲା ଏବଂ ଶୋଷକମାନଙ୍କ ବିରୁଦ୍ଧରେ ଜନସାଧାରଣଙ୍କର ଗଭୀର ଘୃଣା ମଧ୍ୟ ଆତ୍ମପ୍ରକାଶ କରିଥିଲା । ପ୍ରସଙ୍ଗତଃ, ଜବାହାରଲାଲ ନେହରୁଙ୍କ "ଭାରତ ଆବିଷ୍କାର" ପୁସ୍ତକର ଏକ ଉଦ୍ଧୃତି ଉଲ୍ଲେଖଯୋଗ୍ୟ: ବିପ୍ଳବ କେବଳ ପ୍ରତ୍ୟକ୍ଷ ଭାବେ ଦେଶର କେତେକ ଅଂଶରେ ଦେଖା ଦେଇଥିଲେ ମଧ୍ୟ ଏହା ସମଗ୍ର ଭାରତକୁ, ବିଶେଷତଃ, ବ୍ରିଟିଶ୍ ଶାସନକୁ ଥରେଇ ଦେଇଥିଲା ।

### ଷାଠିଏ ଦଶକର ଶାସନ-ସଂସ୍କାର

ପ୍ରଶାସନିକ ଯନ୍ତ୍ରର ଦୃଢ଼ତା ଏବଂ ନୂତନ ଐତିହାସିକ ପରିସ୍ଥିତିର ଚାହିଦା ପୂରଣ ପାଇଁ ବ୍ରିଟିଶ୍ ବୁର୍ଜୁଆମାନେ ଔପନିବେଶିକ ଶାସନ ପ୍ରଣାଳୀରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣିବାକୁ ବାଧ୍ୟ ହୋଇଥିଲେ । ଏହିସବୁ ଶାସନ ସଂସ୍କାର ପଥରେ ରାଷ୍ଟ୍ରଯନ୍ତ୍ରର ଶେଷ ରୂପଟି, ଅର୍ଥାତ୍, ବ୍ରିଟିଶ୍ କର୍ତ୍ତୃକ ଭାରତର ଔପନିବେଶିକ ଦାସତ୍ୱକୁ କାଏମ କରିବାର ମୂଳ ଉପାୟଗୁଡ଼ିକ ମୁଖ୍ୟତଃ ସ୍ପଷ୍ଟ ହୋଇ ଉଠିଥିଲା ।

ମାର୍କସ୍ ଦର୍ଶାଇଥିଲେ, ଇଷ୍ଟ ଇଣ୍ଡିଆ କଂପାନି "ଯୁଦ୍ଧ ଶେଷ ହେବା ପୂର୍ବରୁ ଭାଙ୍ଗି ପଡ଼ିଥିଲା" *, କାରଣ, ଏହା କେବଳ ଭାରତରେ ନୁହେଁ, ବ୍ରିଟେନ୍‌ରେ ମଧ୍ୟ ସୁନାମ ହରେଇଥିଲା, ଅନେକପୂର୍ବରୁ ଏହାର ଐତିହାସିକ କାଳସଙ୍ଗତି ଲୋପ ପାଇଥିଲା ।

୧୮୫୮ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୨ ତାରିଖରେ ବ୍ରିଟିଶ୍ ପାର୍ଲିଆମେଣ୍ଟ କର୍ତ୍ତୃକ "ଭାରତରେ ଉତ୍‌କୃଷ୍ଟଶାସନ ପ୍ରବର୍ତ୍ତନ ଆଇନ୍" ପ୍ରଣୟନ ଦ୍ୱାରା ଭାରତର ରାଷ୍ଟ୍ର କ୍ଷମତା ବ୍ରିଟିଶ୍ ରାଜମୁକୁଟ ଅଧୀନରେ ନ୍ୟସ୍ତ ହେଲା ଏବଂ ଔପନିବେଶିକ ଶାସନ ତା'ପରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ଏବଂ ସରକାରର ପ୍ରତ୍ୟକ୍ଷ ନିୟନ୍ତ୍ରଣକୁ ଆସିଥିଲା । ଏହି ଭାବେ ଦ୍ୱୈତଶାସନ ବ୍ୟବସ୍ଥା, ଅର୍ଥାତ୍, ନିୟନ୍ତ୍ରକ ବୋର୍ଡ ଓ ଇଷ୍ଟ ଇଣ୍ଡିଆ କଂପାନିର ପରିଚାଳକ ମଣ୍ଡଳୀ ମାଧ୍ୟମରେ ଶାସନ ପରିଚାଳନାର ଅବସାନ ଘଟିଲା । ବ୍ରିଟିଶ ସରକାର ଏହିସବୁ ସଂସ୍ଥାକୁ ଭାଙ୍ଗି ଦେଇ ନବଗଠିତ ଭାରତ ବିଷୟକ ମନ୍ତ୍ରୀମଣ୍ଡଳ ହାତକୁ

* K. Marx, "Notes on Indian History", Moscow, 1960, p. 186.

ଏସବୁର କାର୍ଯ୍ୟାବଳି ହସ୍ତାନ୍ତର କଲେ । ଏହାର ତତ୍ତ୍ୱାବଧାରକଙ୍କ (ରାଷ୍ଟ୍ରସଚିବ) ଅଧୀନରେ ବ୍ରିଟିଶ୍ ତଥା ଭାରତୀୟ ସିଭିଲ୍ ସର୍ଭିସ୍‌ର ପ୍ରଧାନ କର୍ମଚାରୀମାନଙ୍କୁ ନେଇ ଭାରତୀୟ ପରିଷଦ ନାମକ ଏକ ଉପଦେଷ୍ଟା ସଂସ୍ଥା ଗଠିତ ହେଲା । ବ୍ରିଟିଶ୍ ଗଭର୍ଣ୍ଣର ଜେନେରାଲ ଭାଇସ୍‌ରୟ ଉପାଧି ଗ୍ରହଣ କରି ଭାରତରେ ବ୍ରିଟିଶ୍ ଶାସନର ପ୍ରତ୍ୟକ୍ଷ ପ୍ରତିନିଧି ହୋଇ ଉଠିଲେ । ପ୍ରଶାସନକୁ କେନ୍ଦ୍ରୀଭୂତ କରି ବ୍ରିଟିଶ୍ ବୁର୍ଜୁଆମାନେ ଔପନିବେଶିକ ପ୍ରଶାସନର କାର୍ଯ୍ୟକଳାପ ଉପରେ ସେମାନଙ୍କ ନିୟନ୍ତ୍ରଣକୁ ଦୃଢ଼ କରିଥିଲେ । ଇଷ୍ଟ ଇଣ୍ଡିଆ କଂପାନିର ସଂପତ୍ତି ବ୍ରିଟିଶ୍ ରାଷ୍ଟ୍ରକୁ ହସ୍ତାନ୍ତରିତ କରାଗଲା । କିନ୍ତୁ କଂପାନିର ଶେୟାର ହୋଲଡରମାନେ ଏଥି ପାଇଁ ଭାରତୀୟ ବଜେଟର ଅଂଶରୁ (ଅର୍ଥାତ୍, ଭାରତୀୟ କରଦାତାମାନଙ୍କ ଖର୍ଚ୍ଚରୁ) ମୋଟ ୩୦ ଲକ୍ଷ ପାଉଣ୍ଡ କ୍ଷତିପୂରଣ ପାଇଥିଲେ ।

୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ବିଦ୍ରୋହରେ ସିପାହୀ ବାହିନୀଗୁଡ଼ିକର ସକ୍ରିୟ ଅଂଶଗ୍ରହଣର ପରିପ୍ରେକ୍ଷୀତରେ ୧୮୬୧-୧୮୬୪ ଖ୍ରୀଷ୍ଟାବ୍ଦରେ ସାମରିକ ସଂସ୍କାର ପ୍ରବର୍ତ୍ତିତ ହୋଇଥିଲା । ବ୍ରିଟିଶ୍ ୟୁନିଟ ଓ ଉପୟୁନିଟଗୁଡ଼ିକର ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ ବ୍ୟବସ୍ଥାକୁ ଅକ୍ଷୁଣ୍ଣ ରଖି ଏହି ପୁନର୍ଗଠନ ସଂପୂର୍ଣ୍ଣ କରାଯାଇଥିଲା (ସଂସ୍କାର ପୂର୍ବ ବ୍ରିଟିଶ୍ ଓ ସିପାହୀମାନଙ୍କର ୧ : ୬ ଅନୁପାତଟି ପରେ ୧ : ୨, ଏବଂ ତା'ପରେ ୧ : ୩ ଅନୁପାତରେ ପରିଣତ ହୋଇଥିଲା) । ବିଭିନ୍ନ ଜାତି, ଧର୍ମ ଓ ବର୍ଣ୍ଣର ସିପାହୀମାନଙ୍କର ମିଶ୍ରଣ ଘଟେଇ ସେମାନେ ୟୁନିଟଗୁଡ଼ିକୁ ପୁନର୍ଗଠିତ ଏବଂ ସଂପ୍ରସାରିତ କରିଥିଲେ । ଏଥର ପଞ୍ଜାବୀ ଶିଖ ଏବଂ ହିମାଳୟ ପାଦଦେଶର ଓ ନେପାଳର ପାହାଡ଼ୀ ଜାତିଗୁଡ଼ିକରୁ ଅଧିକାଂଶ ସିପାହୀ ସଂଗୃହୀତ ହୋଇଥିଲେ । ଏସବୁ ଜାତିମାନଙ୍କ ସହିତ ଦେଶର ମୂଳ ଭୂଖଣ୍ଡର ଜନସାଧାରଣଙ୍କର ବିଶେଷ କୌଣସି ସଂଯୋଗ ନଥିଲା । ସିପାହୀମାନେ ମସୃଣ ନଳିର ରାଇଫେଲ ପାଇଲା ବେଳେ ବ୍ରିଟିଶ୍ ସୈନ୍ୟମାନେ ପାଉଥିଲେ ପେଞ୍ଚକଟା ନଳିର ରାଇଫେଲ । ସିପାହୀମାନଙ୍କ ତୁଳନାରେ ସାମରିକ କୃତ୍‌କୌଶଳ କ୍ଷେତ୍ରରେ ବ୍ରିଟିଶ୍ ସୈନ୍ୟମାନଙ୍କର ଉତ୍କର୍ଷତାକୁ ବଜାଏ ରଖିବା ପାଇଁ ଗୋଲନ୍ଦାଜ ବାହିନୀରେ ସେମାନଙ୍କର ଏକକ ଆଧିପତ୍ୟ ରଖାଯାଇଥିଲା ।

ସାମରିକ ସଂସ୍କାର କ୍ଷେତ୍ରରେ ଅଧସ୍ତନ ଅଫିସର ନିଯୋଗ ବ୍ୟାପାରରେ ଏକ ନୂତନ ପଦ୍ଧତି ପ୍ରବର୍ତ୍ତନ ମାଧ୍ୟମରେ ବ୍ରିଟିଶ୍‌ମାନେ ଭାରତୀୟ ସାମନ୍ତ ଅଭିଜାତମାନଙ୍କ ପାଇଁ ସାମରିକ ଉଚ୍ଚ ପଦକୁ ଉଠିବାର ବ୍ୟବସ୍ଥାଟିକୁ ସୁନିଶ୍ଚିତ କରିଥିଲେ ।

ଦେଶର ଔପନିବେଶିକ ଶାସନର ଅନ୍ୟାନ୍ୟ ଅଦଳବଦଳ ପରି ଏହି ସାମରିକ ସଂସ୍କାରର ମଧ୍ୟ ଦୁଇଟି ଉଦ୍ଦେଶ୍ୟ ଥିଲା – ଏକ ଦିଗରେ, ଭାରତରେ ବ୍ରିଟିଶ୍ ରାଷ୍ଟ୍ରଯନ୍ତ୍ରର କେନ୍ଦ୍ରୀକରଣ ଓ ଦୃଢ଼ୀକରଣ, ଅନ୍ୟ ଦିଗରେ, ଔପନିବେଶିକ ଶାସନର ସପକ୍ଷରେ ଭାରତୀୟ ସମାଜରେ ସମର୍ଥନ ଲାଭ ପାଇଁ ଏକ ସୁଦୃଢ଼ ଭିତ୍ତି ପ୍ରତିଷ୍ଠା, ଅର୍ଥାତ୍, ସମସ୍ତ ଭୂସ୍ୱାମୀ ଶ୍ରେଣୀର ସମର୍ଥନକୁ ସୁନିଶ୍ଚିତ କରିବା ।

ଏହା ହିଁ ଥିଲା ଏହି କାଳ ପର୍ଯ୍ୟାୟରେ ପ୍ରବର୍ତ୍ତିତ ଶାସନ ସଂସ୍କାରର ନିର୍ଯ୍ୟାସ । "ଭାରତୀୟ ପରିଷଦର" ଆଇନ୍ ଅନୁସାରେ (୧୮୬୧) ଭାଇସ୍‌ରୟ, ତିନୋଟି ପ୍ରେସିଡେନ୍‌ସିର ଗଭର୍ଣ୍ଣର ତ୍ରୟ, ଉତ୍ତର-ପଶ୍ଚିମ ପ୍ରଦେଶସମୂହ ଓ ପଞ୍ଜାବର ଲେଫଟେନାଣ୍ଟ ଗଭର୍ଣ୍ଣରମାନଙ୍କର ନେତୃତ୍ୱରେ ଏକ ଉପଦେଷ୍ଟାମୂଳକ ବ୍ୟବସ୍ଥାପକ ସଭା ଗଠିତ ହୋଇଥିଲା । ଏହି ପରିଷଦର ସଦସ୍ୟମାନଙ୍କ ମଧ୍ୟରୁ ଅନ୍ତତଃ ଅର୍ଦ୍ଧେକ, ଅବଶ୍ୟ, ସିଭିଲ୍ ସର୍ଭିସ୍ ବାହାରୁ ମନୋନୀତ ହେବେ ବୋଲି ନିର୍ଦ୍ଧାରିତ ହୋଇଥିଲା । ୧୮୬୧ ଖ୍ରୀଷ୍ଟାବ୍ଦରେ କମନ୍‌ସ ସଭାରେ ପ୍ରଦତ୍ତ ତତ୍‌କାଳୀନ ଭାରତସଚିବ ସାର ଗ୍ରଭିସ୍

ଉତ୍‌କ ବକ୍ତୃତାରେ ଏହି ସଂସ୍କାରର ଉଦ୍ଦେଶ୍ୟ ପରିଷ୍କାର ଭାବେ ପ୍ରକାଶ ପାଇଥିଲା । ଏଥିରେ ଦେଶୀୟ ଉଚ୍ଚ ଶ୍ରେଣୀକୁ ବ୍ରିଟିଶ୍‌ମାନଙ୍କ ପ୍ରତି ବନ୍ଧୁ ଭାବାପନ୍ନ କରି ତୋଳିବାର ଉତ୍କୃଷ୍ଟ ଉପାୟ ହିସାବରେ ତାଙ୍କ ନିଶ୍ଚିତ ବିଶ୍ୱାସର ଭିତ୍ତିରେ ସେ ଭାରତୀୟ ସାମନ୍ତମାନଙ୍କୁ ବ୍ୟବସ୍ଥାପକ ସଭାର କାର୍ଯ୍ୟରେ ଅଂଶୀଦାର କରିବାର ପ୍ରୟୋଜନୀୟତାକୁ ବ୍ୟାଖ୍ୟା କରିଥିଲେ ।

ଏହି ବ୍ୟବସ୍ଥାପକ ସଭା କିନ୍ତୁ ଭାଇସ୍‌ରୟ ଓ ପ୍ରାଦେଶିକ ଗଭର୍ଣ୍ଣରମାନଙ୍କର ବିଶିଷ୍ଟ ଅଧିକାରଗୁଡ଼ିକୁ ବିନ୍ଦୁ ମାତ୍ର କ୍ଷୁର୍ଣ୍ଣ କରି ନଥିଲା । ଲକ୍ଷ୍ୟ କରିବାର କଥା ଯେ, ୧୮୬୧ ଖ୍ରୀଷ୍ଟାବ୍ଦର ଭାରତ ପରିଷଦ ଆଇନ୍‌ରେ ଅର୍ଥ, କର, ସାମରିକ ବାହିନୀ, ଧର୍ମ, ଭାରତୀୟ ରାଜ୍ୟଗୁଡ଼ିକର ପାରସ୍ପରିକ ସଂପର୍କ ତଥା ବୈଦେଶିକ ସଂପର୍କ ଭଳି ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ବିଷୟଗୁଡ଼ିକୁ ବିଶେଷ ଭାବେ ଉଲ୍ଲେଖ କରି ପରିଷଦର ଆଲୋଚନାର ଅକ୍ତିଆରରେ ରଖାଯାଇଥିଲା । ଔପନିବେଶିକ ପ୍ରଶାସନର ବିଭିନ୍ନ ବିଭାଗର ମୁଖ୍ୟମାନଙ୍କୁ ନେଇ ସେତେବେଳେ ଗଠିତ ଏକ କାର୍ଯ୍ୟନିର୍ବାହୀ ପରିଷଦ ଭାଇସ୍‌ରୟଙ୍କ ଉପଦେଷ୍ଟା ହିସାବରେ କାର୍ଯ୍ୟ କରୁଥିଲେ । କେନ୍ଦ୍ରୀୟ ଏବଂ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ଯେକୌଣସି ସିଦ୍ଧାନ୍ତକୁ ରଦ୍ କରି ଦେବାର ଅଧିକାର ଭାଇସ୍‌ରୟଙ୍କର ଥିଲା ।

ତତ୍କାଳୀନ ଆଇନ୍ ସଂସ୍କାର ରାଷ୍ଟ୍ରଯନ୍ତ୍ରକୁ ଅଧିକ କେନ୍ଦ୍ରୀଭୂତ କରିବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ଔପନିବେଶିକ କର୍ମଚାରୀମାନଙ୍କର ପ୍ରଭାବକୁ ଆଉରି ବୃଦ୍ଧି କରିବା ଲକ୍ଷ୍ୟରେ ସଂପନ୍ନ ହୋଇଥିଲା । ଫଳତଃ, ସୁପ୍ରିମକୋର୍ଟ ଓ କଂପାନିର କୋର୍ଟଗୁଡ଼ିକୁ ("ସଦରଦେଓୟାନି" ଓ "ନିଜାମ ଅଦାଲତ") ଉଠାଇ ଦିଆଗଲା ଏବଂ ୧୮୬୧ ଖ୍ରୀଷ୍ଟାବ୍ଦରେ ତିନୋଟି ପ୍ରେସିଡେନ୍‌ସି ମଧ୍ୟରୁ ପ୍ରତ୍ୟେକଟିରେ ଓ ୧୮୬୬ ଖ୍ରୀଷ୍ଟାବ୍ଦରେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶସମୂହରେ ହାଇ କୋର୍ଟ ପ୍ରତିଷ୍ଠିତ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଔପନିବେଶିକ ଭାରତର ରାଷ୍ଟ୍ରଯନ୍ତ୍ର ମୋଟାମୋଟି ଭାବେ ନିର୍ଦ୍ଦିଷ୍ଟ ରୂପ ପରିଗ୍ରହ କରିଥିଲା । ବ୍ରିଟିଶ୍ ଶୋଷକ ଶ୍ରେଣୀର ସ୍ୱାର୍ଥ ରକ୍ଷା ହିଁ ଥିଲା ଏହାର ପ୍ରଥମ ଓ ପ୍ରଧାନ କାର୍ଯ୍ୟ । ଏଥିପାଇଁ ଏହାର ଉଚ୍ଚତର ସ୍ତରଗୁଡ଼ିକ (ଭାରତ ପାଇଁ ଆଇନ୍ ପ୍ରଣୟନକାରୀ ପାର୍ଲିଆମେଣ୍ଟ ଏବଂ ବିଶେଷ ମନ୍ତ୍ରଣାଳୟ ସାହାଯ୍ୟରେ ଔପନିବେଶିକ ପ୍ରଶାସନର କାର୍ଯ୍ୟାଦି ନିୟନ୍ତ୍ରଣକାରୀ ସରକାର) ବ୍ରିଟେନ୍‌ରେ ଅବସ୍ଥିତ ଥିଲା ।

## ରାଜନ୍ୟବର୍ଗ ଓ ସାମନ୍ତ ଭୂସ୍ୱାମୀମାନଙ୍କ ସହିତ ମୈତ୍ରୀ

ମହାରାଣୀ ଭିକ୍ଟୋରିୟାଙ୍କ ୧୮୫୮ ଖ୍ରୀଷ୍ଟାବ୍ଦ ନଭେମ୍ବର ପହିଲାର ଘୋଷଣା ପରେ ଔପନିବେଶିକ ସରକାର ଭାରତୀୟ ସାମନ୍ତ ଅଭିଜାତମାନଙ୍କ ସଂପର୍କରେ ଅନୁସୃତ ନୂତନ ନୀତିକୁ ସଂପୂର୍ଣ୍ଣ ରୂପେ ଏବଂ ଅବିଚଳ ଭାବେ ରୂପାୟିତ କରିବାକୁ ଆରମ୍ଭ କରିଥିଲା ।

ବିଦ୍ରୋହ ସମୟରେ ସକ୍ରିୟ ସମର୍ଥନର ପୁରସ୍କାର ସ୍ୱରୂପ ବ୍ରିଟିଶ୍‌ମାନେ ସାମନ୍ତ ଅଭିଜାତମାନଙ୍କୁ ଉଦାରତାର ସହିତ ଉପହାର ପ୍ରଦାନ କରିଥିଲେ । ଫଳରେ, ୧୮୬୨-୧୮୭୦ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶଗୁଡ଼ିକର ବହୁ ସାମନ୍ତ ରାଜା ଓ ନବାବଙ୍କୁ ସମ୍ମାନସୂଚକ ଉପାଧିରେ ଭୂଷିତ କରାଯାଇଥିଲା ଏବଂ ସେମାନେ ବିରାଟ ପରିମାଣର ଅର୍ଥ ସହ ଯଥେଷ୍ଟ ପରିମାଣର ଭୂସଂପଦ ଓ ଅବସର ଭତ୍ତା ପାଇଥିଲେ । ପାତିଆଲା, ଝିନ୍ଦ୍, ରାମପୁର ଓ ଗୋଆଲିଅରର

ଶାସକମାନଙ୍କ ଭଳି ବହୁ ରାଜା ବିଦ୍ରୋହରେ ଅଂଶଗ୍ରହଣକାରୀମାନଙ୍କ ବାଜ୍ୟାପ୍ତ କରାଯାଇଥିବା ଭୂସଂପତ୍ତିରୁ ବିରାଟ ଅଞ୍ଚଳମାନ ଉପହାର ପାଇଥିଲେ ।

ସାମନ୍ତ ଭୂସ୍ୱାମୀ ଓ ରାଜନ୍ୟବର୍ଗଙ୍କୁ ଭୂମିଦାନ କରି ବ୍ରିଟିଶ୍‌ମାନେ ଆର୍ଥିକ ଦିଗରୁ ଭାରତୀୟ ସମାଜର ଅଭିଜାତମାନଙ୍କ ସହିତ ସେମାନଙ୍କ ମୈତ୍ରୀକୁ ଦୃଢ଼ କରିବାକୁ ଉଦ୍ୟମ କରିଥିଲେ । ଏହି ମୈତ୍ରୀର ମୂଳ ଭାରତୀୟ ଜନସାଧାରଣଙ୍କର ଜାତୀୟ ସ୍ୱାର୍ଥ ପ୍ରତି ସାମନ୍ତମାନଙ୍କର ବିଶ୍ୱାସଘାତକତା ମଧ୍ୟରେ ନିହିତ ଥିଲା । ଏହି କର୍ମନୀତି ମଧ୍ୟରେ ଭାରତରେ ବ୍ରିଟିଶ୍ ନୀତିର ଏକ ମୂଳ ଧାରା ପ୍ରକଟିତ ହୋଇଥିଲା ଏବଂ ତାହା ହେଲା : "ବିଭେଦ ସୃଷ୍ଟି ମାଧ୍ୟମରେ ଶାସନ କରିବା" । ଜନସାଧାରଣଙ୍କ ମଧ୍ୟରେ ସହଜରେ ଧର୍ମୀୟ ସଂଘର୍ଷ ସୃଷ୍ଟି କରିବା ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ନିମିତ୍ତ ଔପନିବେଶିକ ଶାସକମାନେ ବିଭିନ୍ନ ରାଜ୍ୟର ସୀମାକୁ ବଦଳେଇ ଦେଇଥିଲେ ।

୧୮୫୯ ଖ୍ରୀଷ୍ଟାବ୍ଦରେ ଆଗ୍ରାରେ ଅନୁଷ୍ଠିତ ସମାରୋହପୂର୍ଣ୍ଣ ଅଭ୍ୟର୍ଥନାରେ (ଦରବାରରେ) ଗଭର୍ଣ୍ଣର ଜେନେରାଲ ଓ ଭାରତର ପ୍ରଥମ ଭାଇସ୍‌ରୟ ଲର୍ଡ କ୍ୟାନିଂଙ୍କ (୧୮୫୬-୧୮୬୨) ସହିତ ସାକ୍ଷାତ ଏବଂ "ସ୍ୱତ୍ୱଲୁପ୍ତ" ରାଜ୍ୟଗୁଡ଼ିକ (ଅର୍ଥାତ୍, ଉତ୍ତରାଧିକାରୀ ପାଇଁ ପୁତ୍ରସନ୍ତାନ ନଥିବାରୁ ଦଖଲ କରାଯାଇଥିବା ରାଜ୍ୟସମୂହ) ସଂପର୍କରେ ବ୍ରିଟିଶ୍ ନୀତି ପରିବର୍ତ୍ତନର ପ୍ରଥମ ଘୋଷଣା ଶୁଣିବାକୁ ରାଜପୁତାନା ସମେତ ଭାରତର ଅନ୍ୟାନ୍ୟ ଅଞ୍ଚଳର କେତେକ ଶାସକ ଆମନ୍ତ୍ରିତ ହୋଇଥିଲେ । ଗୋଆଲିଅରର ରାଜା ସିନ୍ଧିଆଙ୍କୁ ତାଙ୍କ ଉତ୍ତରାଧିକାରୀ ହିସାବରେ ପୋଷ୍ୟପୁତ୍ର ଗ୍ରହଣ କରିବା ନିମିତ୍ତ ଅନୁମତି ଦିଆଯାଇଥିଲା । ଏହାର ପରବର୍ତ୍ତୀ ଜାଗିରଦାରମାନଙ୍କ ଠାରୁ ଉର୍ଦ୍ଧ୍ୱତନ ସମସ୍ତ ସାମନ୍ତଗଣ ବ୍ରିଟିଶ୍‌ମାନଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ ସର୍ତ୍ତରେ ପୋଷ୍ୟପୁତ୍ର ଗ୍ରହଣ କରିବାର ଅଧିକାର ଲାଭ କରିଥିଲେ । ଇତିପୂର୍ବରୁ ବ୍ରିଟିଶ୍ କର୍ତ୍ତୃକ ବାଜ୍ୟାପ୍ତ କରାଯାଇଥିବା କେତେକ ରାଜ୍ୟକୁ ସେସବୁର ପୂର୍ବତନ ରାଜାମାନଙ୍କ ଦ୍ୱାରା ମନୋନୀତ ପୋଷ୍ୟପୁତ୍ରଙ୍କ ନିକଟରେ ପ୍ରତ୍ୟାର୍ପଣ କରାଯାଇଥିଲା । ଯଥା, ୧୮୫୯ରେ ଟେହରି-ଗଢ଼ୱାଲକୁ, ୧୮୬୧ରେ କୋଲପୁରକୁ ଏବଂ ୧୮୬୪ରେ ଧର୍‌କୁ । ଡେଲ୍‌ହାଉସୀଙ୍କ ଦ୍ୱାରା "ରାଜସ୍ୱତ୍ୱ ଲୋପର" ନୀତିକୁ ତ୍ୟାଗ କରି ବର୍ତ୍ତମାନର ଔପନିବେଶିକ ଶାସକମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହିସବୁ ବ୍ୟବସ୍ଥାବଳୀ ରାଜନ୍ୟବର୍ଗଙ୍କ ବିଷୟ ସଂପତ୍ତିକୁ ନିର୍ବିଘ୍ନ ଏବଂ ଅତୁଟ ରଖିବା ସଂପର୍କରେ ମହାରାଣୀ ଭିକ୍ଟୋରିୟା ଦେଇଥିବା ଆଶ୍ୱାସକୁ କାର୍ଯ୍ୟତଃ ବାସ୍ତବାୟିତ କରିଥିଲା ।

ତା ସତ୍ତ୍ୱେ ଡେଲ୍‌ହାଉସୀଙ୍କ କର୍ତ୍ତୃକ ଅଧିକୃତ ରାଜ୍ୟଗୁଡ଼ିକ ମଧ୍ୟରୁ ଅଧିକାଂଶ ଅଞ୍ଚଳ ବ୍ରିଟିଶ୍ ଭାରତର ଅନ୍ତର୍ଭୁକ୍ତ ଥିଲା । ଦୃଷ୍ଟାନ୍ତ ସ୍ୱରୂପ, ହାୟଦରାବାଦର ବେରାର । ଏହା "ଚିରନ୍ତନ ଇଜାରା" ସର୍ତ୍ତରେ ବ୍ରିଟିଶ୍‌ମାନଙ୍କ ଅଞ୍ଚଳଭୁକ୍ତ ହୋଇଥିଲା ।

ରାଜନ୍ୟବର୍ଗ ଓ ଅଭିଜାତମାନଙ୍କ ରାଜସଭାର ଅପର୍ଯ୍ୟାପ୍ତ ବ୍ୟୟ ଏବଂ ଔପନିବେଶିକ ଶାସକମାନଙ୍କୁ ପ୍ରଦତ୍ତ ନଜରାନା ଫଳରେ ରାଜ୍ୟମାନଙ୍କରେ ପ୍ରାୟ ଅର୍ଥାଭାବ ଦେଖା ଦେଉଥିଲା । ତେଣୁ ଶାସକମାନେ ପ୍ରଭାବଶାଳୀ ବ୍ୟବସାୟୀ ପରିବାର ଓ ବଡ଼ ବଡ଼ ମହାଜନମାନଙ୍କ ଠାରୁ ବହୁ ଅର୍ଥ ଋଣ କରିବାକୁ ବାଧ୍ୟ ହେଉଥିଲେ । ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦ ବିଦ୍ରୋହର ପୂର୍ବବର୍ତ୍ତୀ କେତେକ ବର୍ଷ ମଧ୍ୟରେ ଅନେକ ରାଜ୍ୟକୁ ବ୍ରିଟିଶ୍ ଭୂଖଣ୍ଡର ଅନ୍ତର୍ଭୁକ୍ତ କରିବା ଦିଗରେ ଏହି ଋଣର ସୁଯୋଗ ନିଆଯାଇଥିଲା । ବର୍ତ୍ତମାନ ଅନୁସୃତ ନୂତନ ଆଭ୍ୟନ୍ତରୀଣ ନୀତିର ପୃଷ୍ଠପଟରେ ଆର୍ଥିକ ଦିଗରୁ

ଦୁର୍ଦ୍ଦଶାଗ୍ରସ୍ତ ରାଜ୍ୟଗୁଡ଼ିକରେ ବ୍ରିଟିଶ୍ କର୍ମଚାରୀମାନଙ୍କୁ ଅସ୍ଥାୟୀ ତତ୍ତ୍ୱାବଧାରକ ହିସାବରେ ନିଯୋଗ କରିବାଟା ଏକ ନିୟମରେ ପରିଣତ ହୋଇଥିଲା ।

ଅଧୀନସ୍ଥ ରାଜନ୍ୟବର୍ଗଙ୍କ ସହିତ "କ୍ୟାରଟ୍" ବା ଗାଜର ନୀତି ଅନୁସରଣ କରିବା ସାଥେ ସାଥେ ବ୍ରିଟିଶ୍‌ମାନେ ସାମରିକ ଓ ରାଜନୈତିକ ବିଷୟରେ ସେମାନଙ୍କୁ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରୁଥିଲେ । ଋଷ୍ ପଣ୍ଡିତ ଓ ଭାରତତତ୍ତ୍ୱ ବିଶାରଦ ଇ.ପି. ମିନାୟେଭ୍ ୧୮୮୦ ଖ୍ରୀଷ୍ଟାବ୍ଦରେ ମଧ୍ୟଭାରତ ଭ୍ରମଣ କଲାବେଳେ ତାଙ୍କ "ଡାଏରିରେ" ରାଜ୍ୟମାନଙ୍କରେ ବ୍ରିଟିଶ୍ "ରେସିଡେଣ୍ଟମାନେ ସର୍ବେସର୍ବା ଥିବା" କଥା ଉଲ୍ଲେଖ କରିଛନ୍ତି ।

ରାଜନ୍ୟବର୍ଗଙ୍କ ପକ୍ଷରେ ସୈନ୍ୟବାହିନୀ ରଖିବା ଅଧିକାର ଅବ୍ୟାହତ ରହିଥିଲା । ଏସବୁ ପ୍ରଥମତଃ ଓ ପ୍ରଧାନତଃ ରାଜ୍ୟରେ ସାମନ୍ତବିରୋଧୀ, ଔପନିବେଶିକତାବିରୋଧୀ ଆନ୍ଦୋଳନକୁ ଦମନ ପାଇଁ ବ୍ୟବହୃତ ହେଉଥିଲା । ଉପଯୁକ୍ତ ସାମରିକ ଶିକ୍ଷା ଓ ଅସ୍ତ୍ରଶସ୍ତ୍ରରେ ଅଭାବଗ୍ରସ୍ତ ଏହିସବୁ ସୈନ୍ୟବାହିନୀ ପାଇଁ ଔପନିବେଶିକ ଶାସକମାନଙ୍କର ଆଶଙ୍କାର କୌଣସି କାରଣ ନଥିଲା । ତା'ଛଡ଼ା ଏହି ରାଜାମାନେ ଥିଲେ ବ୍ରିଟିଶ୍‌ମାନଙ୍କର ଅନୁଗତ ସେବାଦାସ । କିନ୍ତୁ ଏହିସବୁ ରାଜ୍ୟରେ ବିଭିନ୍ନ ଧରଣର ବ୍ରିଟିଶ୍ "ରେସିଡେଣ୍ଟ" ଓ "ରାଜନୈତିକ ଏଜେଣ୍ଟମାନଙ୍କର" ଗୁରୁତ୍ୱକୁ ବୃଦ୍ଧି କରିବା ନିମିତ୍ତ ସେଠାକାର ସୈନ୍ୟବାହିନୀରେ ଇଂରେଜ-ଭାରତୀୟ ୟୁନିଟ, ଏପରିକି ସୈନ୍ୟଦଳ ମଧ୍ୟ ଥିଲେ । ବ୍ରିଟିଶ୍ ଦୁର୍ଗଗୁଡ଼ିକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ରଖାଯାଇଥିଲା ଏବଂ ସେମାନେ ଯୋଗାଯୋଗ ବ୍ୟବସ୍ଥାଗୁଡ଼ିକୁ ପହରା ଦେଉଥିଲେ ।

୧୮୭୭ ଖ୍ରୀଷ୍ଟାବ୍ଦ, ଜାନୁଆରୀ ପହିଲାରେ ଭାଇସ୍‌ରୟଙ୍କ କର୍ତ୍ତୃକ ଆୟୋଜିତ ରାଜନ୍ୟବର୍ଗଙ୍କର ଏକ ବିଶେଷ ସମ୍ବର୍ଦ୍ଧନା ସଭାରେ ଭିକ୍ଟୋରିଆଙ୍କୁ ଭାରତର ମହାରାଣୀ ଘୋଷଣା କଲା ବେଳର ଦଲିଲରେ ରାଜ୍ୟଗୁଡ଼ିକ ଉପରେ ବ୍ରିଟିଶ୍ ଔପନିବେଶିକ ସରକାରର ଏହି ଦୃଢ଼ତର ନିୟନ୍ତ୍ରଣ ବିଷୟଟି ପ୍ରକୃତରେ ସୂତ୍ରବଦ୍ଧ ହୋଇଥିଲା । ଅର୍ଥାତ୍, ରାଜ୍ୟଗୁଡ଼ିକ ଏବେ ବ୍ରିଟିଶ୍ ସାମ୍ରାଜ୍ୟର ଅଂଶରେ ପରିଣତ ହେଲା । ସେସବୁର ଶାସକମାନେ କେବଳ କାର୍ଯ୍ୟତଃ ନୁହେଁ, ଆଇନତଃ ବ୍ରିଟିଶ୍ ରାଜ୍ୟ ନିକଟରେ ବ୍ୟକ୍ତିଗତ ଆନୁଗତ୍ୟ ପ୍ରଦର୍ଶନ କରିବାକୁ ବାଧ୍ୟ ହେଲେ ।

ଭାରତରେ ଔପନିବେଶିକ ସାମ୍ରାଜ୍ୟ ପ୍ରତିଷ୍ଠା କାଳରେ ବ୍ରିଟିଶ୍‌ମାନେ ଦେଶଟିକୁ କେବଳ "ବ୍ରିଟିଶ୍ ଭାରତ" ଓ କେଇ ଶହ "ଦେଶୀୟ ରାଜ୍ୟରେ" ଭାଗ କରି ନଥିଲେ, ଏସବୁ ମଧ୍ୟରୁ ପ୍ରତ୍ୟେକଟି ପାଇଁ ପ୍ରଥମତଃ ଇଷ୍ଟ ଇଣ୍ଡିଆ କଂପାନି ସହିତ ଓ ଶେଷରେ ବ୍ରିଟିଶ୍ ରାଜ ସହିତ ଏକ ବିଶେଷ ଚୁକ୍ତିମୂଳକ ଅବସ୍ଥାନକୁ ମଧ୍ୟ ସୁନିର୍ଦ୍ଦିଷ୍ଟ କରି ଦେଇଥିଲେ । ପ୍ରଦତ୍ତ ନଜରାନାର ପାର୍ଥକ୍ୟ ଏବଂ ଇଂରେଜ-ଭାରତୀୟ ସରକାର କର୍ତ୍ତୃକ ପ୍ରଯୁକ୍ତ ସାମରିକ ଓ ରାଜନୈତିକ ନିୟନ୍ତ୍ରଣର ମାତ୍ରାରେ ବୈଷମ୍ୟ ଫଳରେ ରାଜନ୍ୟବର୍ଗଙ୍କ ମଧ୍ୟରେ ପାରସ୍ପରିକ ତିକ୍ତତା ସୃଷ୍ଟି ହୋଇଥିଲା । ଛୋଟ ଛୋଟ ରାଜ୍ୟଗୁଡ଼ିକ ସେମାନଙ୍କଠାରୁ ଶକ୍ତିଶାଳୀ ଶାସକମାନଙ୍କର କରଦରାଜ୍ୟ ହିସାବରେ ରହିବାର ନୀତି ଫଳରେ ବିଭିନ୍ନ ରାଜ୍ୟ ମଧ୍ୟରେ ଅଶେଷ ଭୁଲ ବୁଝାମଣା ଓ ବିବାଦ ସୃଷ୍ଟି ହୋଇଥିଲା । ଏହିସବୁ ବିବାଦରେ ସାଧାରଣତଃ ମଧ୍ୟସ୍ଥ ହିସାବରେ ଔପନିବେଶିକ ଶାସକବର୍ଗ ରାଜ୍ୟଗୁଡ଼ିକରେ ବ୍ରିଟିଶ୍ ପ୍ରଭାବ ବୃଦ୍ଧି ପାଇଁ ସେମାନଙ୍କ କ୍ଷମତାକୁ ବ୍ୟବହାର କରୁଥିଲେ ।

ଭିନ୍ନ ଭିନ୍ନ ରାଜାମାନେ ବିଭିନ୍ନ ଘଟଣାର ପୃଷ୍ଠପଟରେ ନିୟମ ମୁତାବକ ନିଜର ବିରୋଧିତା

ପ୍ରକାଶ କରୁଥିଲେ ଏବଂ ଔପନିବେଶିକ ସରକାର ଉପରେ ଗପ ସୃଷ୍ଟି କରୁଥିଲେ । ମଧ୍ୟ ଏସିଆ ରୁଷିଆର ଅନ୍ତର୍ଭୁକ୍ତ ହେଇ ବେଳେ ଏବଂ ଇଂରେଜ-ରୁଷ୍ ସଂପର୍କର ମାରାତ୍ମକ ଅବନତି ଘଟିବା ଫଳରେ କେତେକ ଦେଶୀୟ ରାଜା ରୁଷିଆର ଶାସକମାନଙ୍କ ସହିତ ତାସ୍ଖନ୍ଦରେ ଯୋଗାଯୋଗ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ (ଯଥା, ୧୮୬୫ ଓ ୧୮୭୦ ଖ୍ରୀଷ୍ଟାବ୍ଦରେ କାଶ୍ମୀର, ୧୮୬୭ ଖ୍ରୀଷ୍ଟାବ୍ଦରେ ଇନ୍ଦୋର, ୧୮୭୯ ଖ୍ରୀଷ୍ଟାବ୍ଦରେ ଗୋଆଲିଅର ଓ ୧୮୮୦ ଖ୍ରୀଷ୍ଟାବ୍ଦରେ ଜୟପୁର) । କିନ୍ତୁ ଏସବୁ ପ୍ରଚେଷ୍ଟା ଜାର୍ ସରକାରର ସତର୍କତାମୂଳକ ଅବସ୍ଥାନ ପାଇଁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ତା'ର କାରଣ, ଜାର୍ ସରକାର ବ୍ରିଟିଶ୍ ଉପନିବେଶଗୁଡ଼ିକର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନକରିବାର ନୀତି ଗ୍ରହଣ କରିଥିଲା ।

ଯେଉଁସବୁ ରାଜା ବ୍ରିଟିଶ୍ ଶାସନର ବିରୋଧୀ ଥିଲେ, ସେମାନଙ୍କୁ ଔପନିବେଶିକ ସରକାର ବିଭିନ୍ନ ଆଳରେ ଅପସାରିତ କରୁଥିଲା (୧୮୭୫ ଖ୍ରୀଷ୍ଟାବ୍ଦରେ ବରୋଦା ଓ ୧୮୮୯ ଖ୍ରୀଷ୍ଟାବ୍ଦରେ କାଶ୍ମୀର ରାଜାଙ୍କୁ), କିମ୍ବା ବିଶେଷ ସୁବିଧାଦାନ ମାଧ୍ୟମରେ ସେମାନଙ୍କୁ "ଶାନ୍ତ" ରଖୁଥିଲା । ୧୮୮୬ ଖ୍ରୀଷ୍ଟାବ୍ଦର ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଗୋଆଲିଅର ଦୁର୍ଗଟିକୁ, ଯେଉଁଠି ଏକ ବ୍ରିଟିଶ୍ ଗ୍ୟାରିସନ୍ ଥିଲା, ପୁନର୍ବାର ଗୋଆଲିଅର ରାଜାଙ୍କୁ ହସ୍ତାନ୍ତର କରାଗଲା ଏବଂ ମହୀଶୂରର ସ୍ଥାନୀୟ ମହାରାଜା (ବ୍ରିଟିଶ୍ କର୍ମଚାରୀମାନଙ୍କ ଦ୍ୱାରା ଅର୍ଦ୍ଧଶତାବ୍ଦୀ ଧରି ଶାସିତ ହେଲା ପରେ) ପୁନର୍ବାର ରାଜ୍ୟ ଲାଭ କରିଥିଲେ ।

କିନ୍ତୁ ରାଜନ୍ୟବର୍ଗ ଓ ଔପନିବେଶିକ ପ୍ରଶାସନର ଅନ୍ତର୍ଗତ ସଂପର୍କକୁ ପ୍ରଭାବିତ କରିବା ଦିଗରେ ଏସବୁ ବିଚ୍ଛିନ୍ନ ମତାନୈକ୍ୟ ଓ ସଂଘାତର ସେପରି କୌଣସି ତାତ୍ପର୍ଯ୍ୟ ନଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କରଦରାଜ୍ୟର ରାଜା ଓ ଶକ୍ତିଶାଳୀ ସାମନ୍ତମାନଙ୍କ ପ୍ରତି ସଂପର୍କ କ୍ଷେତ୍ରରେ ଶେଷୋକ୍ତଙ୍କ ସହିତ ମୈତ୍ରୀ ବୃଦ୍ଧି ଏବଂ ଦୃଢ଼ କରିବା ଥିଲା ବ୍ରିଟିଶ୍ ଔପନିବେଶିକ ଶାସକବର୍ଗଙ୍କ ନୀତି । କୃଷି ସଂପର୍କ ଏବଂ କର ଆଦାୟର ଔପନିବେଶିକ ନୀତି ମଧ୍ୟ ଅଭିନ୍ନ ରହିଥିଲା ।

## ଭାରତବର୍ଷର ଅର୍ଥନୈତିକ ବିକାଶ (ଊନବିଂଶ ଶତାବ୍ଦୀର ଷାଠିଏ ଦଶକରୁ ନବେ ଦଶକ ମଧ୍ୟରେ)

ଊନବିଂଶ ଶତାବ୍ଦୀର ଷାଠିଏ ଦଶକ ଠାରୁ ବ୍ରିଟେନ୍‌ର ପୁଞ୍ଜିବାଦର ଶେଷ ପର୍ଯ୍ୟାୟକୁ, ଅର୍ଥାତ୍, ସାମ୍ରାଜ୍ୟବାଦକୁ ଯେଉଁ ଉତ୍ତରଣ ଘଟୁଥିଲା ତା'ର କେତେକ ଅବସ୍ଥା ଦେଶର ଅର୍ଥନୈତିକ ଓ ରାଜନୈତିକ ଜୀବନରେ କ୍ରମଶଃ ସ୍ପଷ୍ଟ ହୋଇ ଉଠିଥିଲା । ସାମ୍ରାଜ୍ୟର କେନ୍ଦ୍ରସ୍ଥଳରେ ଅର୍ଥନୀତିର ଏହି ପରିବର୍ତ୍ତନରାଜି ଫଳରେ ଭାରତରେ ଔପନିବେଶିକ ଦମନ ଓ ଲୁଣ୍ଠନର ନୂତନ ପ୍ରକାର ଓ ପଦ୍ଧତି ଦେଖା ଦେଇଥିଲା । ଊନବିଂଶ ଶତାବ୍ଦୀର ପଚାଶ ଦଶକ ଓ ସତୁରୀ ଦଶକରେ ବ୍ୟାପକ ଭୂମି ଜରୀପ ଓ ବନ୍ଦୋବସ୍ତ କାର୍ଯ୍ୟଟି ପରିଗ୍ରହିତ ହୋଇଥିଲା ନୂତନ ଐତିହାସିକ ପରିସ୍ଥିତିରେ ଭାରତରେ ବ୍ରିଟିଶ୍ ଔପନିବେଶିକମାନଙ୍କର ଶକ୍ତି ବୃଦ୍ଧି ଓ ଶୋଷଣକୁ ତୀବ୍ରତର କରିବା ଉଦ୍ଦେଶ୍ୟରେ ।

## ବ୍ରିଟିଶ୍ କୃଷିନୀତି – ଭୂମିର ଔପନିବେଶିକ ଓ ସାମନ୍ତବାଦୀ ଏକଗୁଚ୍ଛିଆ ବ୍ୟବସ୍ଥା

ଯେଉଁସବୁ ଅଞ୍ଚଳରେ ରୟତୱାରି ଓ ଅସ୍ଥାୟୀ ଜମିଦାରି ପ୍ରଥା ପ୍ରବର୍ତ୍ତିତ ହୋଇଥିଲା ସେସବୁ ଅଞ୍ଚଳରେ ନୂତନ ଭୂମି ଜରୀବ ଓ ଖଜଣା ନିର୍ଦ୍ଧାରଣ ଦ୍ୱାରା ଊନବିଂଶ ଶତାବ୍ଦୀର ସତୁରି ଦଶକ ଶେଷରେ ବିଭିନ୍ନ ସାମନ୍ତ ଗୋଷ୍ଠୀର ସଂପତ୍ତି ଅଧିକାର ବ୍ୟକ୍ତିଗତ ଭୂମିମାଲିକାନା ଭିତ୍ତିରେ ସ୍ଥିର ହୋଇଥିଲା । ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭୂମିରାଜସ୍ୱ ବ୍ୟବସ୍ଥାର ସଂସ୍କାର ଆରମ୍ଭ ହେଲେ ମଧ୍ୟ ଏହି ସମୟରେ ସଂପୂର୍ଣ୍ଣ ହୋଇଥିଲା ।

ବିଦ୍ରୋହ ଘଟିଥିବା ଅଞ୍ଚଳଗୁଡ଼ିକରେ ଔପନିବେଶିକ ସରକାର ଭୂମିମାଲିକାନା ଅଧିକାର ଉପରେ ବିଶେଷ ନଜର ଦେଇଥିଲେ : ଅଯୋଧ୍ୟାର ୨୩,୫୨୨ଟି ଗ୍ରାମ ମଧ୍ୟରୁ ବିଦ୍ରୋହ ସମୟରେ ସରକାର କର୍ତ୍ତୃକ ବାଜ୍ୟାପ୍ତ ୨୩,୧୫୭ଟି ଗ୍ରାମକୁ ସେଠାକାର ତାଲୁକଦାରମାନେ ଫେରସ୍ତ ପାଇଥିଲେ । ୧୮୬୯ ଓ ୧୮୭୦ ଖ୍ରୀଷ୍ଟାବ୍ଦରେ ବିଶେଷ ଆଇନ୍ ମାଧ୍ୟମରେ ଜମିମାଲିକ ହିସାବରେ ସେମାନଙ୍କ ଅଧିକାରକୁ ସ୍ୱୀକାର କରାଯାଇଥିଲା ।

ଜମିରେ ସାମନ୍ତ ଭୂସ୍ୱାମୀମାନଙ୍କର ମାଲିକାନାକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ ଔପନିବେଶିକ ସରକାର ବିପ୍ଳବର ଅଂଶୀଦାର, ଗ୍ରାମୀଣ ସମାଜର ଉର୍ଦ୍ଧ୍ୱତନ ସ୍ତରଗୁଡ଼ିକର ସ୍ୱାର୍ଥ ରକ୍ଷା କରିବାକୁ ବାଧ୍ୟ ହୋଇଥିଲା । ଭୂମିରାଜସ୍ୱ ବ୍ୟବସ୍ଥାର ସଂସ୍କାର ସମୟରେ ଗ୍ରାମଗୋଷ୍ଠୀଗୁଡ଼ିକର ମୁଖିଆଗଣ ଏବଂ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶସମୂହର ତଥା ଅଯୋଧ୍ୟାର ଇନାମଦାରମାନେ କୃଷକ ଓ ଜମିଦାରମାନଙ୍କର (ଜମିଦାର ଓ ତାଲୁକଦାର) ମଧ୍ୟବର୍ତ୍ତୀ ସାମନ୍ତ ଉପମାଲିକ – ମଧ୍ୟସ୍ଥ ହିସାବରେ ସ୍ୱୀକୃତି ପାଇଥିଲେ ।

ବିଭିନ୍ନ ସାମନ୍ତ ଦଳ ମଧ୍ୟରେ ସଂପତ୍ତିକୁ ଖଣ୍ଡ ବିଖଣ୍ଡ କରିବାର ବ୍ୟବସ୍ଥାକୁ ଆଂଶିକ ଭାବେ ଅତୁଟ ରଖି ବ୍ରିଟିଶ୍‌ମାନେ ଔପନିବେଶିକ ସରକାରର ସାମାଜିକ ଭିତ୍ତିକୁ ପ୍ରସାରିତ ଏବଂ ଦୃଢ଼ କରିବାକୁ ଚେଷ୍ଟା କରିଥିଲେ ।

ଔପନିବେଶିକ ସରକାରର କୃଷିନୀତି ଥିଲା ଅସଂଗତିପୂର୍ଣ୍ଣ । ଏକ ଦିଗରେ ଏହା ଅଷ୍ଟାଦଶ ଶତାବ୍ଦୀର ଶେଷ ପୂର୍ବରୁ ଭୂମିରାଜସ୍ୱ ସଂସ୍କାର ମାଧ୍ୟମରେ ଭୂମିମାଲିକାନାରେ ଥିବା ଗୋଷ୍ଠୀଗତ ବିନ୍ୟାସ ଓ ବ୍ୟବହାରକୁ ଭାଙ୍ଗି ଦେଇ ସାମନ୍ତ ଓ କ୍ଷୁଦ୍ର କୃଷକମାନଙ୍କର ବ୍ୟକ୍ତିଗତ ମାଲିକାନାଧୀନ କରି ଦେଇଥିଲା (ପରବର୍ତ୍ତୀ କାଳରେ ରୟତୱାରି ଏଲାକାଗୁଡ଼ିକରେ) । ଅଥଚ, ଅନ୍ୟ ଦିଗରେ, ଭୂମିରାଜସ୍ୱ ସଂଗ୍ରହ ବ୍ୟବସ୍ଥା ମଧ୍ୟରେ ଜମିର ରାଷ୍ଟ୍ରୀୟ ମାଲିକାନାର ପ୍ରଭାବକୁ ବଜାଏ ରଖି ଏବଂ ଜମିର କାର୍ଯ୍ୟକର ବ୍ୟବହାର ଉପରେ ଆଇନଗତ ବିଧିନିଷେଧ ଆରୋପ (ସ୍ପଷ୍ଟତଃ ଏହାହିଁ ଥିଲା ଊନବିଂଶ ଶତାବ୍ଦୀର ପଞ୍ଚାଶ ଦଶକରୁ ଅଶି ଦଶକ ପର୍ଯ୍ୟନ୍ତ ପ୍ରଜାସ୍ୱତ୍ୱ ଆଇନ୍‌ଗୁଡ଼ିକର ଉଦ୍ଦେଶ୍ୟ) କରି ସାମନ୍ତ ମାଲିକାନା ଭାଙ୍ଗି ପଡ଼ିବାର ଆସନ୍ନ ଶେଷ ପର୍ଯ୍ୟାୟରେ ଭାରତର କୃଷି ଢାଞ୍ଚାକୁ ଅଟକେଇ ରଖାଯାଇଥିଲା ।

ଔପନିବେଶିକ ସରକାର ଜମିଦାରି ଧରଣର ସାମନ୍ତ ଭୂମିମାଲିକାନାକୁ ମଜବୁତ୍ କଲାବେଳେ ପଞ୍ଜାବରେ ପୂର୍ବତନ ଗ୍ରାମୀଣ ସମାଜର ଉର୍ଦ୍ଧ୍ୱତନ ସ୍ତରଗୁଡ଼ିକର ସ୍ୱାର୍ଥରାଜିକୁ ମଧ୍ୟ ବିଚାରକୁ ନେଇଥିଲେ । ତେଣୁ ସେମାନେ (ଯଥା, ଆଲା-ମାଲିକ) କାର୍ଯ୍ୟତଃ ସରକାରର ପେନ୍‌ସନ ଭୋଗୀ

ହୋଇ ଉଠିଥିଲେ । ଖଜଣା ସଂକ୍ରାନ୍ତ ସୁବିଧାଭୋଗ କରୁଥିବା ସାମନ୍ତ ଭୂସ୍ୱାମୀମାନଙ୍କ ମାଲିକାନାର ଅଧିକାର ନିଷତ୍ତି ହେଇ ପରେ, ଏପରିକି ସେମାନଙ୍କ ଜମିଦାରିର ଆୟତନ ମଧ୍ୟ କମେଇ ଦିଆଯାଇଥିଲା (ଜାଗିରଦାର ଓ ଇନାମ୍‌ଦାରମାନଙ୍କ କ୍ଷେତ୍ରରେ ପ୍ରଯୋଜ୍ୟ) ।

ଜାଗିରଦାରମାନେ କେତେକ ପ୍ରଦେଶରେ ଇନାମ୍‌ଦାରମାନଙ୍କ ଭଳି ଆଇନସମ୍ମତ ଜମିମାଲିକ ହୋଇ ଉଠିଥିଲେ । ସେମାନେ କମ୍ ହାରରେ ଖଜଣା ଦେଉଥିଲେ (ଯଥା, ବମ୍ବେ ଓ ବେରାର ପ୍ରଦେଶ) । ବ୍ରିଟିଶ୍‌ମାନେ ସିନ୍ଧୁରେ ସର୍ତ୍ତାଧୀନ ଭତ୍ତା ପାଉଥିବା ପୂର୍ବତନ ଜାଗିରଦାରମାନଙ୍କର ମାଲିକାନା ସ୍ୱତ୍ୱକୁ ସେମାନଙ୍କ ଅଧୀନସ୍ଥ ଜମି ଉପରେ ଏଥର ସ୍ଥାୟୀ କରିଦେଲେ । କିନ୍ତୁ ଅଧିକାଂଶ ଜାଗିରଦାର ଏବଂ ଅନ୍ୟ କେତେକ ଧରଣର ସାମନ୍ତବର୍ଗ ମଧ୍ୟ ଭୂମିରାଜସ୍ୱ ସଂଗ୍ରହରେ ଅଂଶଗ୍ରହଣରୁ କ୍ରମେ କ୍ରମେ ବହିଷ୍କୃତ ହୋଇଥିଲେ । ତା'ଛଡ଼ା ଇନାମ୍ ଓ ଜାଗିର ସଂପର୍କରେ ତଦନ୍ତକାରୀ କମିଟିଗୁଡ଼ିକର କାର୍ଯ୍ୟ ଶେଷରେ କିଛି ସଂଖ୍ୟକ ଇନାମ୍‌ଦାର ଓ ଜାଗିରଦାର ସେମାନଙ୍କ ଭୂମି ଓ ଅର୍ଥ ଆକାରରେ ମିଳୁଥିବା ଭତ୍ତା ହରେଇଥିଲେ । ଯେଉଁସବୁ ଅଞ୍ଚଳରେ ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଅଭ୍ୟୁତ୍‌ଥାନରେ ଔପନିବେଶିକ ସରକାର ସବୁଠାରୁ କମ୍ କ୍ଷତିଗ୍ରସ୍ତ ହୋଇଥିଲେ ଏବଂ ଫଳତଃ ଔପନିବେଶିକମାନେ ନିଜର ଅବସ୍ଥାନକୁ ଅଧିକତର ନିରାପଦ ଭାବିଥିଲେ (ପଞ୍ଜାବ, ସିନ୍ଧୁ, ପଶ୍ଚିମ ଓ ଦକ୍ଷିଣ ଭାରତ) ସେଠାରେ ଏହା ପ୍ରଯୋଜ୍ୟ ହୋଇଥିଲା । ବମ୍ବେ ପ୍ରେସିଡେନ୍‌ସିରେ ଇନାମ୍ ଓ ଜାଗିର ସଂଖ୍ୟା ବିଶେଷ ଭାବେ କମେଇ ଦିଆଯାଇଥିଲା । ଇନାମ୍‌ଦାର ଓ ଜାଗିରଦାରମାନଙ୍କର ଆୟତ୍ତାଧୀନ ଜମିର ପରିମାଣ କମେଇ ଦେବା ଫଳରେ, ପ୍ରଧାନତଃ ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷରେ, ମରହଟ୍ଟୀ କ୍ଷୁଦ୍ର ଓ ମଧ୍ୟମ ଶ୍ରେଣୀର ଜମି-ମାଲିକ ଓ ସେମାନଙ୍କ ଶ୍ରେଣୀଭୁକ୍ତ ବୁଦ୍ଧିଜୀବୀମାନଙ୍କର ଏକାଂଶଙ୍କ ମଧ୍ୟରେ ଅସନ୍ତୋଷ ଓ ବିରୋଧିତା ପ୍ରକାଶ ପାଇଥିଲା ।

ବ୍ରିଟିଶ୍ ଔପନିବେଶିକମାନେ କେବଳ ଭୂସ୍ୱାମୀମାନଙ୍କର ବଡ଼ ବଡ଼ ଜମିଦାରିଗୁଡ଼ିକୁ ଅତୁଟ ରଖିବା କାର୍ଯ୍ୟରେ ନିଜକୁ ସୀମିତ ରଖି ନଥିଲେ । ୧୮୬୦ ଖ୍ରୀଷ୍ଟାବ୍ଦରେ ମଧ୍ୟ ପ୍ରଦେଶର ଅଧିକାଂଶ ଅଞ୍ଚଳରେ ଭୂମିମାଲିକାନାର ଅଧିକାର କେବଳ ଜମିଦାର ଓ ତାଲୁକଦାରମାନଙ୍କ ଭଳି ପୁରୁଣା ସାମନ୍ତ ଅଭିଜାତମାନଙ୍କର ପ୍ରତିନିଧିମାନଙ୍କୁ ନୁହେଁ, ତଥାକଥିତ ମାଲଗୁଜାରମାନଙ୍କ ଭଳି ତହସିଲଦାରିର ଦାୟିତ୍ୱପ୍ରାପ୍ତ ବ୍ୟକ୍ତିମାନଙ୍କୁ ଦିଆଯାଇଥିଲା । ବ୍ରିଟିଶ୍ ବିଜୟ ପୂର୍ବରୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଗ୍ରାମ ସମାଜର ମୁଖିଆ ଓ ତହସିଲଦାର । ଅର୍ଥାତ୍, ବ୍ରିଟିଶ୍ ଔପନିବେଶିକମାନେ ଭାରତର ଏହି ଅଂଶରେ ସାମନ୍ତ ଯୁଗରେ ଜମିରେ ନାମକୁ ମାତ୍ର ମାଲିକ ନଥିବା ଭୂସ୍ୱାମୀମାନଙ୍କ ମଧ୍ୟରୁ ଏକ ନୂତନ ସ୍ତର ସୃଷ୍ଟି କରିବାରେ ଉତ୍ସାହ ଯୋଗାଇଥିଲା । ତେଣୁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଜମିରେ ଔପନିବେଶିକ-ସାମନ୍ତବାଦୀ ଏକଗୁଚ୍ଛିଆ ମାଲିକାନା ଏକ ନିର୍ଦ୍ଦିଷ୍ଟ ଆକାର ଧାରଣ କରିଥିଲା ।

## କଞ୍ଚାମାଲର ଉତ୍ସ ଏବଂ ପଣ୍ୟ ବିକ୍ରୟର ବଜାର ହିସାବରେ ଭାରତକୁ ଶୋଷଣ କରିବାର ତୀବ୍ରତା ବୃଦ୍ଧି । ପଣ୍ୟ-ବନାମ-ମୁଦ୍ରା ସଂପର୍କର ବିକାଶ

ବ୍ରିଟିଶ୍ କୃଷି ନୀତି କେବଳ ଔପନିବେଶିକମାନଙ୍କର ଶକ୍ତ ଘାଟି ହିସାବରେ ଭାରତର ସାମନ୍ତ ଶ୍ରେଣୀର ଅର୍ଥନୈତିକ ଅବସ୍ଥାନକୁ ଦୃଢ଼ୀଭୂତ କରିବାର ପ୍ରଯୋଜନ ଦୃଷ୍ଟିରୁ ନିର୍ଦ୍ଧାରିତ ହୋଇ ନଥିଲା ।

ଭାରତର ଔପନିବେଶିକ ଶୋଷଣ ବ୍ୟବସ୍ଥାର ଅଭ୍ୟନ୍ତରରେ ଘଟୁଥିବା ପରିବର୍ତ୍ତନଗୁଡ଼ିକୁ ଦୃଢ଼ୀଭୂତ କରିବା ଦିଗରୁ ମଧ୍ୟ ନିର୍ଦ୍ଧାରିତ ହୋଇଥିଲା । ଊନବିଂଶ ଶତାବ୍ଦୀର ସେଇ ପଚାଶ ଓ ଷାଠିଏ ଦଶକଗୁଡ଼ିକରେ କଞ୍ଚାମାଲର ଉତ୍ସ ଓ ପଣ୍ୟବଜାର ହିସାବରେ ଭାରତକୁ ଶୋଷଣ କରିବାଟା ଔପନିବେଶିକ ଲୁଣ୍ଠନର ପ୍ରଧାନ ରୂପ ହୋଇ ଉଠିଥିଲା । କୃଷିଜାତ ଓ କଞ୍ଚାମାଲ ସଂପର୍କିତ ଜିନିଷପତ୍ର କ୍ଷେତ୍ରରେ ପୁଞ୍ଜିବାଦୀ ବ୍ରିଟେନ୍‌ର ଉପାଙ୍ଗ ସ୍ୱରୂପ ଏହି ଦେଶକୁ ତୀବ୍ର ଭାବେ ଶୋଷଣ କରିବା ପାଇଁ କୃଷି ଉତ୍ପାଦନ ବୃଦ୍ଧିର ଅନୁକୂଳ ପରିସ୍ଥିତି ସୃଷ୍ଟି କରିବା, ବିଶେଷତଃ, ଏହାର ବିକ୍ରୟ କ୍ଷମତାକୁ ବୃଦ୍ଧି କରିବା ଅପରିହାର୍ଯ୍ୟ ଥିଲା । ତେଣୁ ଜମିରେ ବ୍ୟକ୍ତିଗତ ମାଲିକାନା ଅଧିକାରକୁ ଦୃଢ଼ୀଭୂତ କରିବା ଥିଲା ଏହାର ଅତ୍ୟାବଶ୍ୟକ ପୂର୍ବ ସର୍ତ୍ତ ।

ଭାରତକୁ ବ୍ରିଟେନ୍‌ର କୃଷି ଓ କଞ୍ଚାମାଲ ଉତ୍ପାଦନର ଉପାଙ୍ଗ ହିସାବରେ ଗଢ଼ି ତୋଳିବା କାର୍ଯ୍ୟଟି ମୁଖ୍ୟତଃ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଶେଷ ହୋଇଥିଲା । "ବିଶ୍ୱର କର୍ମଶାଳା" ହିସାବରେ ବ୍ରିଟେନ୍‌ର ଯେଉଁ ଭୂମିକା ଥିଲା ତା'ର କ୍ରମାବନତି ଘଟିବା ଫଳରେ ଏବଂ ଆଫ୍ରିକା, ଦକ୍ଷିଣ-ପୂର୍ବ ଏସିଆ ଓ ଓସେନିୟାରେ (ଯେଉଁ ପରିସର ମଧ୍ୟରେ ଔପନିବେଶିକ ଶକ୍ତି ହିସାବରେ ବ୍ରିଟେନ୍‌ର କ୍ଷମତା ସୀମିତ ଥିଲା) ଜର୍ମାନ୍, ଫରାସୀମାନଙ୍କର ପ୍ରାଧାନ୍ୟ ଘନିଭୂତ ହେଉଥିବାରୁ ବ୍ରିଟେନ୍‌ର ଅର୍ଥନୈତିକ ଉନ୍ନୟନ କ୍ଷେତ୍ରରେ ଭାରତର ଗୁରୁତ୍ୱ ଯଥେଷ୍ଟ ବୃଦ୍ଧି ପାଇଥିଲା । ଊନବିଂଶ ଶତାବ୍ଦୀର ଷାଠିଏ ଦଶକରେ ତୂଳା ବଜାରରେ ଚଢ଼ାଦର ଦେଖା ଦେଇଥିଲା । ଏବଂ ଏହି ପ୍ରକ୍ରିୟାଟି ତ୍ୱରାନ୍ୱିତ ହୋଇ ଉଠିବା ଫଳରେ ବ୍ରିଟିଶ୍ ପୁଞ୍ଜିପତିମାନେ ଭାରତରୁ କଞ୍ଚାମାଲ, ବିଶେଷତଃ, ତୂଳା ରପ୍ତାନି ଅନେକ ବଢ଼େଇ ଦେଇଥିଲେ । ଆମେରିକା ଯୁକ୍ତ ରାଷ୍ଟ୍ରର ଗୃହଯୁଦ୍ଧ (୧୮୬୧-୧୮୬୫) ଫଳରେ ୟୁରୋପୀୟ ବଜାରରେ ଆମେରିକା ଯୁକ୍ତ ରାଷ୍ଟ୍ରର ତୂଳା ରପ୍ତାନି କମିଯିବା ହେତୁ, ସେଠାରେ ଭାରତୀୟ ତୂଳାର ଚାହିଦା ଯଥେଷ୍ଟ ବଢ଼ିଗଲା । ୧୮୬୦-୧୮୬୮ ଖ୍ରୀଷ୍ଟାବ୍ଦରେ ଭାରତରୁ ବ୍ରିଟେନ୍‌କୁ ତୂଳା ଆମଦାନିର ପରିମାଣ ତିନି ଗୁଣ ବୃଦ୍ଧି ପାଇଥିଲା ଏବଂ ସେବେଠୁଁ ଭାରତ ବ୍ରିଟେନ୍‌ର ପ୍ରଧାନ ତୂଳା ରପ୍ତାନିକାରୀ ଦେଶରେ ପରିଣତ ହେଲା ।

ରପ୍ତାନିର ଚାହିଦା ବୃଦ୍ଧି ଫଳରେ ଭାରତରେ ତୂଳା ଉତ୍ପାଦନର ସମାରୋହ ମଧ୍ୟ ଦେଖା ଦେଲା । ଗତ ଶତାବ୍ଦୀର ଷାଠିଏ ଦଶକରେ ମଧ୍ୟ ଓ ପଶ୍ଚିମ ଭାରତ (ବମ୍ବେ, ସିନ୍ଧୁ, ରାଜପୁତାନା, ମଧ୍ୟ ଭାରତର ବହୁ ଅଞ୍ଚଳ, ବେରାର, ମଧ୍ୟ ପ୍ରଦେଶ ଓ ହାୟଦରାବାଦ) ରପ୍ତାନିଯୋଗ୍ୟ ତୂଳା ଉତ୍ପାଦନ କରିବାର ବିଶେଷ ଅଞ୍ଚଳରେ ପରିଣତ ହେଲା ।

ଆମେରିକା ଯୁକ୍ତ ରାଷ୍ଟ୍ରରେ ଗୃହଯୁଦ୍ଧର ଅବସାନ ଘଟିବାରୁ ତୂଳାର ଚଢ଼ାବଜାର କ୍ଷେତ୍ରରେ ପୁଣି ସ୍ୱାଭାବିକ ଅବସ୍ଥା ଆସିଗଲା । ଫଳରେ ଭାରତରୁ ଯାଉଥିବା ତୂଳାର ଦାମ୍ ମଧ୍ୟ କମିଗଲା, କିନ୍ତୁ ଦେଶ ମଧ୍ୟରେ ତୂଳାର ଉତ୍ପାଦନ ସେତେବେଳେ କମିଗଲା ନାହିଁ । ଊନବିଂଶ ଶତାବ୍ଦୀର ଶେଷ ତିନି ଦଶକରେ ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ, ବିଶେଷତଃ, ଜଳସେଚିତ ଅଞ୍ଚଳଗୁଡ଼ିକରେ ତୂଳା ଚାଷ ବଢ଼ିବାରେ ଲାଗିଥିଲା । ଭାରତ ଓ ବ୍ରିଟେନ୍ ମଧ୍ୟରେ ବାଣିଜ୍ୟ ବୃଦ୍ଧି ପ୍ରକୃତରେ ବ୍ରିଟିଶ୍ ପ୍ରସେସିଂ ଶିଳ୍ପ ଓ ଭାରତର କୃଷି ମଧ୍ୟରେ, ବ୍ରିଟିଶ୍ ସହର ଓ ଭାରତୀୟ ଗ୍ରାମଗୁଡ଼ିକ ମଧ୍ୟରେ ବର୍ଦ୍ଧମାନ ଶ୍ରମବିଭାଗକୁ ପ୍ରକଟିତ କରୁଥିଲା ।

ଊନବିଂଶ ଶତାବ୍ଦୀର ଷାଠିଏ ଦଶକରେ ବ୍ରିଟିଶ୍ ବୁର୍ଜୁଆମାନେ ଭାରତରୁ ଅଧିକ ପରିମାଣରେ

କୃଷିଜାତ ଜିନିଷ ଆମଦାନି କରିବାକୁ ଆରମ୍ଭ କରି ଦେଇଥିଲେ । ସେସବୁ ମଧ୍ୟରେ ଥିଲ, ପ୍ରଧାନତଃ ତୁଳା, ପଶମ, ଝୋଟ, ନଡ଼ିଆ କତା, ଗଉଁଳ, ଗହମ, ତୈଳ ବୀଜ, ମସଲ, ନୀଳ ଓ ଅଫିମ । ଭାରତୀୟ ରପ୍ତାନିର ପ୍ରଧାନ ଅଂଶଟି (ଯଥା, ତୂଳାର ୮୦ ଶତାଂଶ) ଯାଉଥିଲ ବ୍ରିଟେନ୍‌କୁ । ଭାରତ ସେତେବେଳକୁ ବ୍ରିଟେନ୍‌ର ପ୍ରଧାନ ଖାଦ୍ୟ ସରବରାହକାରୀ ଦେଶ ହୋଇ ଉଠିଥିଲ । ୧୮୬୦ ଖ୍ରୀଷ୍ଟାବ୍ଦ ଠାରୁ ଏହି ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବ୍ରିଟିଶ୍‌ମାନେ ଭାରତରୁ ବାର୍ଷିକ ତିନି ଗୁଣ ମୂଲ୍ୟର ପଣ୍ୟ ଆମଦାନି କରୁଥିଲେ ।

ପଣ୍ୟ ବଜାର ହିସାବରେ ବି ଭାରତକୁ ଶୋଷଣ କରିବାର ମାତ୍ରା ବୃଦ୍ଧି ପାଇଥିଲ । ଆଲୋଚ୍ୟ ସମୟ କାଳରେ ବ୍ରିଟେନ୍‌କୁ ଭାରତର ଆମଦାନି ପାଞ୍ଚ ଗୁଣ ବୃଦ୍ଧି ପାଇଥିଲ । ଏସବୁ ମଧ୍ୟରେ ପ୍ରଧାନତଃ ଥିଲ ବସ୍ତ୍ର, ଧାତବ ବାସନକୁସନ ଏବଂ ଅନ୍ୟାନ୍ୟ ଧରଣର ଭୋଗ୍ୟ ପଣ୍ୟ ।

ନିମ୍ନୋକ୍ତ ହିସାବଗୁଡ଼ିକ ମଧ୍ୟରେ ଭାରତର ବୈଦେଶିକ ବାଣିଜ୍ୟ ଆବର୍ତ୍ତନର ଔପନିବେଶିକ ବୈଶିଷ୍ଟ୍ୟରାଜି ସହଜରେ ଲକ୍ଷ୍ୟ କରାଯାଏ : ୧୮୭୯ ଖ୍ରୀଷ୍ଟାବ୍ଦରେ ଭାରତର ମୋଟ ରପ୍ତାନି ଓ ଆମଦାନିରେ ଶିଳ୍ପଜାତ ଦ୍ରବ୍ୟର ଅଂଶ ଥିଲ ଯଥାକ୍ରମେ ୮ ଏବଂ ୬୫ ଶତାଂଶ । ଇତିମଧ୍ୟରେ ଭାରତର ଔପନିବେଶିକ ଶୋଷଣ ବ୍ୟବସ୍ଥାର ଅନ୍ତର୍ଗତ ଦେଶର ଶ୍ରମଜୀବୀମାନଙ୍କର, ବିଶେଷତଃ, କୃଷକମାନଙ୍କ ଉପରେ ରକ୍ତଶୋଷୀ, ପଙ୍ଗୁକାରୀ ଟିକସସମୂହର ଭୂମିକା ବୃଦ୍ଧି ପାଇଥିଲ ।

ଷାଠିଏ ଦଶକର ମଧ୍ୟ ଭାଗ ବେଳକୁ ଗ୍ରାମମାନଙ୍କରେ ନୂଆ କର ଟିକସ ଚାଲୁ କରାଗଲ ଏବଂ ଭୂମିରାଜସ୍ୱର ହାର ବୃଦ୍ଧି ପାଇବାକୁ ଲଗିଲ । ଇତିମଧ୍ୟରେ ଖୋଦ୍ ଔପନିବେଶିକ କର୍ମଚାରୀମାନେ ମଧ୍ୟ ସ୍ୱୀକାର କରିଛନ୍ତି ଯେ, ଜମିମାଲିକମାନଙ୍କ ଠାରୁ ଭଲ ଫସଲ ଫଳୁ ଥିବା ବର୍ଷ ଭଳି ଫସଲହାନି ଘଟିଥିବା ବର୍ଷରେ ମଧ୍ୟ ସମାନ ଖଜଣା ଆଦାୟ କରାଯାଉଥିଲ ।

ବ୍ରିଟିଶ୍ ଔପନିବେଶିକ ରାଷ୍ଟ୍ରର ରାଜସ୍ୱର ମୂଳ ଉତ୍ସ, ପ୍ରତ୍ୟକ୍ଷ ଓ ପରୋକ୍ଷ ଟିକସ ୧୮୫୯ ଖ୍ରୀଷ୍ଟାବ୍ଦରେ ୩୬.୧ କୋଟି ଟଙ୍କାରୁ ୧୮୯୦ ଖ୍ରୀଷ୍ଟାବ୍ଦରେ ୮୫.୧ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲ । ଟିକସ ବୋଝ ବୃଦ୍ଧି ପାଇବା ମଧ୍ୟ ଦେଇ ଭାରତବର୍ଷ କିପରି କୃଷି ଓ କଞ୍ଚାମାଲ ଉତ୍ପାଦନର ଉପାଙ୍ଗ ହୋଇ ଉଠିଥିଲ ତାହା ସହଜରେ ଲକ୍ଷ୍ୟ କରାଯାଏ । କର ଭାର ବୃଦ୍ଧି ଭାରତୀୟ କୃଷକମାନଙ୍କୁ ନିଜ ଉପାର୍ଜନର ଏକ ବଡ଼ ଅଂଶକୁ ବିକ୍ରି କରିବା ପାଇଁ ବାଧ୍ୟ କରୁଥିଲ । ଫଳରେ ଏ ଦେଶରୁ କୃଷିଜାତ କଞ୍ଚାମାଲ ରପ୍ତାନି କରିବା ନିମିତ୍ତ ବ୍ରିଟିଶ୍‌ମାନଙ୍କ ପକ୍ଷରେ ସୁବିଧାଜନକ ପରିସ୍ଥିତି ସୃଷ୍ଟି କରିଥିଲ ।

ତତ୍‌କାଳୀନ ବିଶ୍ୱ ଶସ୍ୟ ବାଣିଜ୍ୟ ସଂପର୍କରେ ବର୍ଣ୍ଣନା କରିବାକୁ ଯାଇ ମାର୍କସ୍ ଦର୍ଶାଇଥିଲେ ଯେ, ରୁଷିଆ ଓ ଭାରତରେ କୃଷକମାନେ "ନିର୍ମମ ଓ ଅତ୍ୟାଚାରୀ ରାଷ୍ଟ୍ର କର୍ତ୍ତୃକ ନିର୍ଦ୍ଧାରିତ ଜବରିଆରେ ନିଗାଡ଼ି ନେଉଥିବା କର ଦେବା ପାଇଁ ଅର୍ଥ ସଂଗ୍ରହ ନିମିତ୍ତ ସେମାନଙ୍କ ଉପାର୍ଜନର ଏକାଂଶକୁ ବିକ୍ରୟ କରିବାକୁ ବାଧ୍ୟ ହେଉଥିଲେ ଏବଂ ତାହା କ୍ରମଶଃ ବଢ଼ି ବଢ଼ି ଚାଲିଥିଲ" ।*

ଅର୍ଥାତ୍, ନବ ଯୁଗର ଆବିର୍ଭାବ ସଙ୍ଗେ ସଙ୍ଗେ ଔପନିବେଶିକ ଶୋଷଣର ପୁରୁଣା ପଦ୍ଧତି

---

* K. Marx, "Capital", Vol. III, Moscow, 1974, p. 726.

ନୂତନ ଲକ୍ଷ୍ୟ ସହିତ ବ୍ରିଟେନ୍‌ର ନିଜସ୍ୱ ଚାହିଦା ପୂରଣ ପାଇଁ କଞ୍ଚାମାଲ ନିଷ୍କାଶନ ସହିତ ନିଜକୁ ଖାପ ଖୁଆଇ ନେଇଥିଲା ।

କଞ୍ଚାମାଲର ଉତ୍ସ ଓ ଶିଳ୍ପ ପଣ୍ୟର ବଜାର ହିସାବରେ ଭାରତକୁ ତୀବ୍ରତର ଶୋଷଣ—ଏ ଦେଶର ଉଭୟ ସହର ଓ ଗ୍ରାମରେ ପଣ୍ୟ-ବନାମ-ମୁଦ୍ରା ସଂପର୍କ ବିକାଶ ଦିଗରେ ସହାୟକ ହୋଇଥିଲା । ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀ ସେତେବେଳେ ରୂପ ପରିଗ୍ରହ କରିବା ପର୍ଯ୍ୟାୟରେ ଥିବା ହେତୁ, ସରଳ ପଣ୍ୟ ଉତ୍ପାଦନର ବିକାଶ, କୃଷି ଉତ୍ପାଦନ ଓ କୁଟିରଶିଳ୍ପ କ୍ଷେତ୍ରରେ ବାଣିଜ୍ୟିକ ଓ ମହାଜନୀ ପୁଞ୍ଜିକୁ ଗଭୀର ଭାବେ ପ୍ରବେଶ କରାଇଥିଲା ।

ସାମନ୍ତ ଯୁଗର ବାଣିଜ୍ୟ ଓ ମହାଜନୀ କ୍ଷେତ୍ରରେ ଏକଚାଟିଆ (ବନିଆ, ମାଢ୍ବାଡ଼ି, ଆଦି) ବ୍ୟବସାୟୀ ଓ ମହାଜନ ସଂପ୍ରଦାୟର ପ୍ରତିନିଧିମାନେ ଏବେ ଗୋଟିଏ ମାତ୍ର ଫସଲ (ମନୋକଲଚର) ଉତ୍ପାଦନକାରୀ ଅଞ୍ଚଳଗୁଡ଼ିକର, ବିଶେଷତଃ, ପଶ୍ଚିମ ଓ ମଧ୍ୟ ଭାରତରେ ବସବାସ କରିବାକୁ ଉଦ୍ୟମ କରିଥିଲେ । ଭାରତରେ ସଞ୍ଚିତ ଭାରତୀୟ ବଣିକ ଓ ମହାଜନମାନଙ୍କ ପୁଞ୍ଜି ଆମଦାନି ଓ ରପ୍ତାନିକାରୀ ଏବଂ ସେସବୁ ପଣ୍ୟର ଶକ୍ତିଶାଳୀ ବ୍ରିଟିଶ୍ ଓ ଭାରତୀୟ ପାଇକାରୀ ବ୍ୟବସାୟୀ ଖାଉଟି ଓ ଉତ୍ପାଦକ—ଭାରତୀୟ କୃଷକ ଓ କୁଟୀରଶିଳ୍ପୀମାନଙ୍କ ମଧ୍ୟରେ ଭାରତର ପଣ୍ୟ ବିତରଣ କ୍ଷେତ୍ରରେ ଅଧସ୍ତନ ଓ ମଧ୍ୟମ ପର୍ଯ୍ୟାୟର ସଂଯୋଗର ବିକାଶ ସାଧନ କରିଥିଲା ।

ଭାରତୀୟ ବଣିକ ଓ ମହାଜନମାନଙ୍କ ଦ୍ୱାରା ସଂଚିତ ଅର୍ଥ ପୁଞ୍ଜିର ଦୁଇଟି ଗୁରୁତ୍ୱପୂର୍ଣ୍ଣ ସାମାଜିକ-ଅର୍ଥନୈତିକ ପରିଣତି ହେଲା: ଗୋଟିଏ ଦିଗରେ, ଜନସାଧାରଣଙ୍କ ଭୂମିମାଲିକ ଅଂଶ ମଧ୍ୟକୁ ବଣିକ ଓ ମହାଜନ ସଂପ୍ରଦାୟର ଲୋକମାନଙ୍କର ପ୍ରବେଶ, ଅନ୍ୟ ଦିଗରେ, ଜାତୀୟ ଶିଳ୍ପ ସୃଷ୍ଟି ପାଇଁ ପୂର୍ବସର୍ତ୍ତସମୂହର ଉନ୍ମେଷ ।

## କୃଷକମାନଙ୍କର ଋଣ ବୃଦ୍ଧି ଓ ଭୂମିହୀନତା

ସିପାହୀ ବିଦ୍ରୋହ (୧୮୫୭-୧୮୫୯) ପୂର୍ବରୁ ରୟତୱାରି ଅଞ୍ଚଳଗୁଡ଼ିକରେ ଆରମ୍ଭ ହୋଇଥିବା ଜମି ଜରୀପ ଓ କର ନିର୍ଦ୍ଧାରଣ କାର୍ଯ୍ୟ ଷାଠିଏ ଏବଂ ସତୁରି ଦଶକରେ ଶେଷ ହୋଇ ଯାଇଥିଲା । କର ନିର୍ଦ୍ଧାରଣ ପାଇଁ ଏହି ନୂତନ ଜରୀପ ଚାଲିଥିଲା ବେଳେ ରଇତମାନଙ୍କର ବ୍ୟକ୍ତିଗତ ଭୂମିମାଲିକାନା ଅଧିକାରକୁ ଆଇନଗତ ଭାବେ ଚୂଡ଼ାନ୍ତ ରୂପେ ସ୍ଥିର କରାଯାଇଥିଲା ।

ପଣ୍ୟ-ବନାମ-ମୁଦ୍ରା ସଂପର୍କ ଦ୍ରୁତ ଭାବେ ବିକାଶ ଲାଭ କରୁଥିବା ପରିସ୍ଥିତିରେ ଭୂମିମାଲିକାନା କ୍ଷେତ୍ରରେ ବ୍ୟକ୍ତିଗତ ଅଧିକାର ଦୃଢ଼ ହେବା ଅର୍ଥ ହେଉଛି ଭୂମି ମୂଲ୍ୟ ଲାଭ କରେ ଏବଂ କ୍ରମାଗତ ଅଧିକରୁ ଅଧିକ ବଜାରର ପଣ୍ୟ ସଂଚଳନ ମଧ୍ୟକୁ ପ୍ରବେଶ କରେ । ଏହା ଫଳରେ ଜମିର ମୂଲ୍ୟ ଦ୍ରୁତ ବୃଦ୍ଧି ପାଇଲା ଏବଂ କୃଷି ଉତ୍ପାଦନର ସାଧାରଣ ମୂଲ୍ୟ ବୃଦ୍ଧିକୁ ଏହା ଅତିକ୍ରମ କରିଗଲା । ଅନୁନ୍ନତ ପୁଞ୍ଜିବାଦୀ ଉଦ୍ୟୋଗର ପରିପ୍ରେକ୍ଷିତରେ ବଣିକ, ମହାଜନ ଓ ସାମନ୍ତମାନଙ୍କ ପକ୍ଷରେ ଭୂମିକ୍ରୟ କରିବାରେ ସେମାନଙ୍କ ଦ୍ୱାରା ସଞ୍ଚିତ ଅର୍ଥକୁ ନିୟୋଗ କରିବାଟା ସର୍ବାଧିକ ଅନୁକୂଳ ଉପାୟ ରୂପେ ବିବେଚିତ ହେଲା ।

ଏହି ଭାବେ ମହାଜନମାନଙ୍କ ଠାରୁ ଋଣ ପାଇଁ ଜମି କ୍ରମଶଃ ଶ୍ରେଷ୍ଠ ଜାମିନ୍ ହୋଇ ପଡ଼ିବାରୁ

ଜମିବନ୍ଧକ ଗ୍ରହଣ ମାଧ୍ୟମରେ ବଣିକ, ମହାଜନ ଓ ସାମନ୍ତ ଭୂସ୍ୱାମୀମାନେ କୃଷକମାନଙ୍କ ଜମିକୁ ଅଧିକାର କରିବାକୁ ସମର୍ଥ ହୋଇଥିଲେ ।

ଦୃଷ୍ଟାନ୍ତ ସ୍ୱରୂପ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶଗୁଡ଼ିକରେ ଊନବିଂଶ ଶତାବ୍ଦୀର ଷାଠିଏ ଦଶକରୁ ସତୁରି ଦଶକର ପ୍ରାରମ୍ଭିକ ବର୍ଷଗୁଡ଼ିକରେ ପ୍ରାୟ ୧୦ ଲକ୍ଷ ଏକର ଜମି "ଅକୃଷିଜୀବୀମାନଙ୍କ" ହାତକୁ ଚାଲି ଯାଇଥିଲା ଏବଂ ଜମିରେ ଏମାନଙ୍କ ଅଂଶ ଶତକଡ଼ା ୧୦ରୁ ୨୭ ଭାଗ ପର୍ଯ୍ୟନ୍ତ ବୃଦ୍ଧି ପାଇଥିଲା । ପଞ୍ଜାବରେ ଷାଠିଏ ଓ ସତୁରି ଦଶକର ପ୍ରାରମ୍ଭରେ ମୋଟ ବିକ୍ରି ହୋଇଥିବା ଜମିର ଶତକଡ଼ା ୪୫ ଭାଗ ବଣିକ ଓ ମହାଜନମାନଙ୍କ ହସ୍ତଗତ ହୋଇଥିଲା । ମହାରାଷ୍ଟ୍ରରେ ବିଶେଷ ଭାବେ କୃଷକମାନଙ୍କର ଏହି ଭୂମିଚ୍ୟୁତି ମାରାତ୍ମକ ଭାବେ ବୃଦ୍ଧି ପାଇଥିଲା ଏବଂ ସେଠାକାର ସାତାରା ଜିଲ୍ଲାରେ ସତୁରି ଦଶକର ଶେଷ ଆଡ଼କୁ ମୋଟ କ୍ଷେତ ଜମିର ପ୍ରାୟ ଏକ ତୃତୀୟାଂଶକୁ ମହାଜନମାନେ ଅଧିକାର କରି ନେଇଥିଲେ ।

ତେଣୁ କରି ରୟତଓ୍ୱାରି ଅଞ୍ଚଳଗୁଡ଼ିକରେ ଏବଂ ପଞ୍ଜାବରେ ସାମନ୍ତ ଧରଣର ଜମିଦାରମାନଙ୍କ ସହିତ ନୂଆ ଜମିମାଲିକମାନେ ପ୍ରଧାନତଃ ବଣିକ ଓ ମହାଜନ ସଂପ୍ରଦାୟ ମଧ୍ୟରୁ ଉଦ୍‌ଭୂତ ହୋଇଥିଲେ ।

ମହାଜନ, ବଣିକ ଓ ଜମିଦାରମାନଙ୍କ ହାତକୁ ଜମି ହସ୍ତାନ୍ତର ହେବା ଫଳରେ ଭାରତୀୟ କୃଷିର ଅର୍ଥନୈତିକ ଭିତ୍ତି କିନ୍ତୁ ମୋଟେ ବଦଳିଲା ନାହିଁ । କୃଷକମାନେ ଏବେ ନିଜ କ୍ଷେତରୁ ମାଲିକାନା ହରେଇ ସେଇ ଜମିକୁ ଚାଷ କରିବାକୁ ଲାଗିଲେ ବା ପ୍ରଜା ହିସାବରେ ଦୁର୍ବହ କରଭାରଗ୍ରସ୍ତ ହୋଇ କାଳାତି ପାତ କଲେ । କୃଷକମାନଙ୍କୁ ପଟ୍ଟା ଦିଆଯାଇଥିବା ଜୋତର ପରିମାଣ ଏବଂ ରଇତ ଚାଷୀମାନଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ଭୂମିରାଜସ୍ୱ ଉପରେ ସଂପୂର୍ଣ୍ଣ ରୂପେ ନିର୍ଭରଶୀଳ ଲୋକମାନଙ୍କ ସଂଖ୍ୟା ମଧ୍ୟ ବଢ଼ିଗଲା : ୧୮୮୧-୧୮୯୧ ଖ୍ରୀଷ୍ଟାବ୍ଦର ଜନଗଣନା ଅନୁଯାୟୀ ତତ୍‌କାଳୀନ ସାମନ୍ତ ଭୂସ୍ୱାମୀମାନଙ୍କ ସଂଖ୍ୟା ୨୫ ଲକ୍ଷରୁ ୪୦ ଲକ୍ଷକୁ ବୃଦ୍ଧି ପାଇଥିଲା ।

ଊନବିଂଶ ଶତାବ୍ଦୀର ଚାଳିଶ, ପଚାଶ ଓ ଷାଠିଏ ଦଶକଗୁଡ଼ିକରେ, ବିଶେଷତଃ, ସିପାହୀ ବିଦ୍ରୋହ ସମୟରେ (୧୮୫୭-୧୮୫୯) କୃଷକମାନଙ୍କର ବର୍ଦ୍ଧମାନ ଅସନ୍ତୋଷର ପରିପ୍ରେକ୍ଷିତରେ ଔପନିବେଶିକମାନେ ବିଦ୍ରୋହର ପରବର୍ତ୍ତୀ ତିନି ଦଶକରେ ବଙ୍ଗଳା, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶସମୂହ, ପଞ୍ଜାବ ଏବଂ ମଧ୍ୟ ପ୍ରଦେଶସମୂହରେ ଜମିଦାର ରଇତ ସଂପର୍କକୁ ନିୟନ୍ତ୍ରଣ କରିବା ପାଇଁ ଆଇନ୍ ପ୍ରଣୟନ କରିଥିଲେ । ଏହିସବୁ ଆଇନ୍ ଫଳରେ କେବଳ ଅଧିକ ସୁବିଧାଭୋଗୀ ଦଳେ ରଇତ ଚାଷୀଙ୍କ ଉପରୁ ନାମକୁ ମାତ୍ର ସାମନ୍ତବାଦୀ ଶୋଷଣ ହ୍ରାସ ପାଇଥିଲା । କାର୍ଯ୍ୟତଃ ଜମିମାଲିକମାନେ କୃଷକମାନଙ୍କ ନିକଟରୁ ସେମାନଙ୍କ ଦ୍ୱାରା ଉତ୍ପନ୍ନ ଫସଲର ଅର୍ଦ୍ଧେକ ବା ତତୋଧିକ ପରିମାଣର ସମମୂଲ୍ୟ ଖଜଣା ଦାବି କରୁଥିଲେ । ତଦ୍ରୂପରି ସାମନ୍ତ ଭୂସ୍ୱାମୀମାନଙ୍କର ବହୁବିଧ ସେବାମୂଳକ କାର୍ଯ୍ୟରେ ରଇତମାନେ ବାଧ୍ୟ ହୋଇ ବେଗାରି ଖଟୁଥିଲେ ।

ଭାରତୀୟ କୃଷକମାନଙ୍କର ଅସନ୍ତୋଷକୁ କମେଇବା ପାଇଁ ଗୃହୀତ ହୋଇଥିବା ଔପନିବେଶିକ ପ୍ରଜାସ୍ୱତ୍ୱ ଆଇନ୍‌ଟି, କାର୍ଯ୍ୟତଃ, ସାମନ୍ତବାଦୀ ଶୋଷଣ ପ୍ରଣାଳୀକୁ ଆଉରି ଅଧିକ ଦୃଢ଼ କରି ଦେଇଥିଲା । ଏଥି ସାଥେ ସାଥେ ରଇତ ଚାଷୀମାନଙ୍କର ଊର୍ଦ୍ଧ୍ୱତନ ସ୍ତରର ଦଖଲୀସ୍ୱତ୍ୱର ମଜ୍‌ବୁତ୍‌କରଣ ଏବଂ କ୍ରୟ ବିକ୍ରୟ ଲକ୍ଷ୍ୟରେ ଏହି ଅଧିକାରଗୁଡ଼ିକର ପରିବର୍ତ୍ତନ ସାଧନ, ଖଜଣା ବୃଦ୍ଧି ଉପରେ

କେତେକ ବିଧିନିଷେଧ ଆରୋପ ଏବଂ ଜିନିଷପତ୍ର ବଦଳରେ ଅର୍ଥ ଦ୍ୱାରା ଖଜଣା ପରିଶୋଧ କରିବା ଦିଗରେ ଉତ୍ସାହଦାନ ଆଦି ବ୍ୟବସ୍ଥା ଫଳରେ ଏକ ଧନୀ କୃଷକ ସଂପ୍ରଦାୟର ଉଦ୍‌ଭବ ଘଟିଥିଲା । କୃଷକମାନଙ୍କର ମୂଳ ଅଂଶଟି କ୍ରମାଧିକ ଭାବେ ନିଃସ୍ୱ ହୋଇ ପଡ଼ୁଥିଲେ ଏବଂ ଏପରି ଏକ ପରିସ୍ଥିତିରେ ଉପରୋକ୍ତ ଘଟଣାରାଜି ଦ୍ୱାରା କୃଷକମାନଙ୍କ ମଧ୍ୟରେ ଶ୍ରେଣୀଗତ ସ୍ତରାୟନ ସୃଷ୍ଟିର ଅନୁକୂଳ ପରିସ୍ଥିତି ଦେଖା ଦେଇଥିଲା ।

ଧନୀ କୃଷକ ଏବଂ ଅର୍ଥପୁଞ୍ଜିର ମାଲିକମାନଙ୍କ କର୍ତ୍ତୃକ ଭୂମିକ୍ରୟ ହେତୁ ଭାରତୀୟ କୃଷିରେ ପୁଞ୍ଜିବାଦୀ ସଂପର୍କ ବିକାଶର ଏକ ବ୍ୟାପକ ସମ୍ଭାବନା ଗଢ଼ି ଉଠୁଥିଲା । ପୂର୍ବରୁ ସାମନ୍ତବାଦୀ ଗ୍ରାମୀଣ ସମାଜରେ କୃଷକମାନଙ୍କ ମଧ୍ୟରେ ଯେଉଁ ସଂପତ୍ତିଗତ ବୈଷମ୍ୟ ରହି ଆସିଥିଲା, ତାହା ଏବେ ଏକ ନୂତନ ସାମାଜିକ-ଅର୍ଥନୈତିକ ଭିତ୍ତି ଉପରେ ମୁଣ୍ଡଟେକି ଉଠିବାକୁ ଲାଗିଲା । ସାମନ୍ତବାଦୀ ସମାଜର ଅନ୍ତର୍ନିହିତ ବିରୋଧସମୂହର ପରବର୍ତ୍ତୀ ତୀବ୍ରତା ବୃଦ୍ଧି ଦିଗରେ ଏହାର ଅବଦାନ ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ବ୍ରିଟିଶ୍ ବୁର୍ଜୁଆମାନଙ୍କ ଦ୍ୱାରା ଅନୁସୃତ ଔପନିବେଶିକ ଶୋଷଣର ନୂତନ ପଦ୍ଧତି, ଅର୍ଥାତ୍, ପୁଞ୍ଜି ରପ୍ତାନି, ଭାରତରେ ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀର ବିକାଶକୁ ତ୍ୱରାନ୍ୱିତ କରିଥିଲା ।

## ଭାରତବର୍ଷ ବ୍ରିଟିଶ୍ ପୁଞ୍ଜି ନିୟୋଗର କ୍ଷେତ୍ରରେ ପରିଣତ ହେଲା

ଭାରତରେ ବ୍ରିଟିଶ୍ ପୁଞ୍ଜି ନିୟୋଗ ଆରମ୍ଭ ହୋଇଥିଲା ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ । ରେଳପଥ ହିଁ ହେଲା ଏ ଦେଶରେ ବ୍ରିଟିଶ୍ ପୁଞ୍ଜି ଲଗ୍ନିର ପ୍ରଥମ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ । କଞ୍ଚାମାଲର ଉତ୍ସ ଏବଂ ପଣ୍ୟ ବଜାର ରୂପେ ଭାରତକୁ ଶୋଷଣ କରିବା ପାଇଁ ଯୋଗାଯୋଗ ଓ ପରିବହନର ଆଧୁନିକ ଉପାୟଗୁଡ଼ିକ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ଊନବିଂଶ ଶତାବ୍ଦୀର ଷାଠିଏ ଦଶକରୁ ନବେ ଦଶକ ପର୍ଯ୍ୟନ୍ତ ରେଳପଥର ଦୈର୍ଘ୍ୟ ୧୩୦୦ କିଲୋମିଟରରୁ ୨୫,୬୦୦ କିଲୋମିଟରକୁ ବୃଦ୍ଧି ପାଇଥିନ । ପ୍ରଧାନ ବନ୍ଦରଗୁଡ଼ିକରୁ ଦେଶର ଅଭ୍ୟନ୍ତରକୁ ପରିବ୍ୟାପ୍ତ ଏବଂ ଦେଶରେ ଥିବା ବ୍ରିଟିଶ୍‌ମାନଙ୍କର ପ୍ରଧାନ ଘାଟିଗୁଡ଼ିକ ସହିତ ସଂଯୁକ୍ତ ରେଳପଥର ବିନ୍ୟାସ ପଛରେ ପ୍ରକୃତରେ ଥିଲା ସାମରିକ ଓ ରଣନୀତିଗତ ବିବେଚନା ।

ବ୍ରିଟିଶ୍ ପୁଞ୍ଜିବାଦ ଦ୍ୱାରା ଭାରତବର୍ଷକୁ ଦାସତ୍ୱ ଓ ଶୋଷଣର ଶୃଙ୍ଖଳରେ ବାନ୍ଧି ରଖିବାର ଲକ୍ଷ୍ୟ ନେଇ ଏହି ରେଳପଥର ନକ୍ସା ତିଆରି ହୋଇଥିଲା । ମାଲପତ୍ର ବହନର ଭଡ଼ା ପାଇଁ ନିର୍ଦ୍ଧାରିତ ମାସୁଲ ବ୍ୟବସ୍ଥା ମଧ୍ୟରେ ଏହି ଲକ୍ଷ୍ୟଟି ସହଜରେ ପ୍ରକାଶ ପାଇଥିଲା । ଆଭ୍ୟନ୍ତରୀଣ ଅଞ୍ଚଳକୁ ସଂଯୋଗ କରୁଥିବା ଲାଇନଗୁଡ଼ିକରେ ମାଲଭଡ଼ା ଥିଲା ଅଭ୍ୟନ୍ତର ସହିତ ବନ୍ଦରଗୁଡ଼ିକୁ ସଂଯୋଗ କରୁଥିବା ଲାଇନଗୁଡ଼ିକର ଭଡ଼ା ଅପେକ୍ଷା ଅଧିକ । ରପ୍ତାନି ଲକ୍ଷ୍ୟରେ ବିକାଶମାନ ଏହି ପରିବହନ ବ୍ୟବସ୍ଥା ଦେଶର ଅଭ୍ୟନ୍ତରରେ ପଣ୍ୟ ବହନର ବିକାଶରେ ବାଧା ଦେଇଥିଲା । ଦେଶରେ ତିନି ଧରଣର ରେଳପଥ ନିର୍ମିତ ହୋଇଥିଲା : ପ୍ରଶସ୍ତ, ମଧ୍ୟମ ଓ ସଂକୀର୍ଣ୍ଣ । ଏହା ଫଳରେ ପଥ ସନ୍ଧିରେ ମାଲପତ୍ରକୁ ଗୋଟିଏ ଗାଡ଼ିରୁ ଅନ୍ୟ ଗାଡ଼ିକୁ ବଦଳାଇବାକୁ ପଡ଼ୁଥିଲା ଏବଂ ତେଣୁ ଦେଶର ଆଭ୍ୟନ୍ତରୀଣ ପରିବହନ ବ୍ୟୟ ବହୁଳ ହୋଇ ଉଠିଥିଲା ।

ଔପନିବେଶିକ ସରକାର ଏ ଦିଗରେ ବ୍ୟୟକୁ ବିଗ୍ରହକୁ ନନେଇ କଂପାନିଗୁଡ଼ିକୁ ସର୍ବୋଚ୍ଚ ମୁନାଫାର ନିଶ୍ଚୟତା ପ୍ରଦାନ କରିଥିଲା । ଫଳରେ ବ୍ରିଟିଶ୍ ବ୍ୟବସାୟୀମାନଙ୍କ ପକ୍ଷରେ ରେଳପଥ ନିର୍ମାଣ କରିବା ରୀତିମତ "ସ୍ୱର୍ଣ ଖଣି" ଭଳି ଲାଭଜନକ ହୋଇଥିଲା । ଭାରତୀୟ ଜନସାଧାରଣ ସେମାନଙ୍କ ରକ୍ତ ଆଉ ଘର୍ମର ବିନିମୟରେ ବ୍ରିଟିଶ୍ ଠିକାଦାରମାନଙ୍କୁ ଏହି ଅନାବଶ୍ୟକୀୟ ବ୍ୟୟବାହୁଲ୍ୟର ମାସୁଲ ଦେଇଥିଲେ ।

ବ୍ରିଟିଶ୍ ପୁଞ୍ଜି ନିୟୋଗର ଦ୍ୱିତୀୟ ଗୁରୁତ୍ୱପୂର୍ଣ କ୍ଷେତ୍ରଟି ଥିଲା ଜଳସେଚନ ପ୍ରକଳ୍ପଗୁଡ଼ିକ । ରପ୍ତାନିଯୋଗ୍ୟ ଫସଲ ଯେଉଁସବୁ ଅଞ୍ଚଳରେ ଚାଷ ହେଉଥିଲା ସେସବୁ ଅଞ୍ଚଳରେ ଏହି ପ୍ରକଳ୍ପଗୁଡ଼ିକ ନିର୍ମିତ ହୋଇଥିଲା (ଯଥା, ରପ୍ତାନିଯୋଗ୍ୟ ତୂଳା ସିନ୍ଧୁରେ ଆଉ ଗହମ ଚାଷର ପଞ୍ଜାବର ପ୍ରଧାନ ଅଞ୍ଚଳଗୁଡ଼ିକରେ) । ଜଳ କର ବସେଇ ବ୍ରିଟିଶ୍‌ମାନେ କେବଳ କୃଷକମାନଙ୍କ ଖର୍ଚ୍ଚରେ ସେମାନଙ୍କ ଲଗ୍ନିକୁ ଆଦାୟ କରି ନେଉ ନଥିଲେ, ପ୍ରଭୂତ ଲାଭ ମଧ୍ୟ ଉଠାଉଥିଲେ ।

ଜଳସେଚନ ପ୍ରକଳ୍ପ ଓ ରେଳପଥଗୁଡ଼ିକ ଯଥାରୀତି ଭାବେ ବ୍ରିଟିଶ୍ ମାଲିକାନାଧୀନ ଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରାରମ୍ଭରେ ଏ ଦେଶ ଚା, କଫି ଓ ରବର ଚାଷ ପାଇଁ ବ୍ୟକ୍ତିଗତ ପୁଞ୍ଜି ଖଟେଇବା ଦିଗରେ ଗୁରୁତ୍ୱପୂର୍ଣ କ୍ଷେତ୍ର ହୋଇ ଉଠିଥିଲା । ବ୍ରିଟିଶ୍‌ମାନେ ଔପନିବେଶିକ ରାଷ୍ଟ୍ର ଭାରତରେ ଏହିସବୁ ଜିନିଷ ଚାଷ କରିବା ପାଇଁ ଅନୁକୂଳ ସର୍ତ୍ତରେ ଉପଯୋଗୀ ଜାଗା ବିକ୍ରି ବା ବନ୍ଧକର ସୁଯୋଗ ପ୍ରଦାନ କରି ବଗିଚାମାଲିକମାନଙ୍କୁ ଉତ୍ସାହିତ କରୁଥିଲେ ।

କାରଖାନା ନିର୍ମାଣ ଏବଂ ଖଣିରେ ବ୍ରିଟିଶ୍‌ମାନେ ପୁଞ୍ଜି ନିୟୋଗ କରିଥିଲେ । (ଯଥାକ୍ରମେ କଲିକତା ଓ କାନ୍‌ପୁରରେ ବ୍ରିଟିଶ୍ ପୁଞ୍ଜିପତିମାନଙ୍କର ଝୋଟକଳ ଓ ଲୁଗାକଳ) । ରେଳପଥର ବିସ୍ତାର ଏହି ଧରଣର ପ୍ରକଳ୍ପ ନିର୍ମାଣରେ ନୂତନ ଉଦ୍ଦୀପନା ଯୋଗେଇଥିଲା : କୋଇଲା ଓ ଧାତୁ ଯଥାକ୍ରମେ ଅପରିହାର୍ଯ୍ୟ ଥିଲା ଇଂଜିନ୍ ଏବଂ ରେଲପଥ ପାଇଁ । ଊନବିଂଶ ଶତାବ୍ଦୀର ଶେଷ ବେଳକୁ ବ୍ରିଟିଶ୍ ମାଲିକାନାଧୀନ ଏକ ଛୋଟ ଧାତୁ ଶିଳ୍ପ କର୍ମଶାଳା କଲିକତା ନିକଟବର୍ତ୍ତୀ ବର୍ଣପୁରରେ ନିର୍ମିତ ହୋଇଥିଲା ଏବଂ ଜାଳେଣି ପାଇଁ ସେଠାକାର ଖଣିରୁ କୋଇଲା ଉତ୍ତୋଳିତ ହୋଇଥିଲା । ଇତିମଧ୍ୟରେ ପ୍ରତିଷ୍ଠିତ ରେଳପଥଗୁଡ଼ିକୁ ମରାମତ କରିବା ପାଇଁ ଏକ ମରାମତି କାରଖାନା, ଛୋଟ ଲୁହା ଢଳେଇ କାରଖାନା ଏବଂ ଖୁଚୁରା ଯନ୍ତ୍ରାଂଶ ନିର୍ମାଣ କାରଖାନା ସ୍ଥାପନ କରିବା ଅପରିହାର୍ଯ୍ୟ ହୋଇ ପଡ଼ିଥିଲା ।

ସାମ୍ରାଜ୍ୟବାଦୀ ଉପାୟରେ (ପୁଞ୍ଜି ଆମଦାନି ଓ ଅଧିକ କଞ୍ଚାମାଲ ରପ୍ତାନି) ଶୋଷଣର ଉପକରଣ ରୂପେ ଭାରତବର୍ଷକୁ ବ୍ୟବହାର କରିବାର ଏହି ନୂତନ ଦୃଷ୍ଟିକୋଣ ହେଲା ଐତିହାସିକ ଅନିବାର୍ଯ୍ୟ ପରିଣତି । ତେଣୁ ଲେନିନ୍‌ଙ୍କ ଭାଷାରେ—"ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଗ୍ରେଟ୍ ବ୍ରିଟେନ୍‌ରେ ସାମ୍ରାଜ୍ୟବାଦର ଦୁଇଟି ଗୁରୁତ୍ୱପୂର୍ଣ ଲକ୍ଷଣ ସ୍ପଷ୍ଟ ହୋଇ ଉଠିଥିଲା—ବିଶାଳ ଔପନିବେଶିକ ସାମ୍ରାଜ୍ୟ ଓ ବିଶ୍ୱ ବଜାରରେ ଏକଚାଟିଆ ଅବସ୍ଥାନ" ।*

କର ଟିକସ ଆଦାୟ, ଶିଳ୍ପଜାତ ଦ୍ରବ୍ୟ ଆମଦାନି, କଞ୍ଚାମାଲ ଓ ପୁଞ୍ଜି ରପ୍ତାନି, ଆଦି ଔପନିବେଶିକ ଶୋଷଣର ସମସ୍ତ ପଦ୍ଧତିକୁ ବ୍ୟବହାର କରି ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଦାସତ୍ୱର ଶୃଙ୍ଖଳରେ ଆବଦ୍ଧ ଏହି

---

* V. I. Lenin, "Collected Works", Vol. 22, p. 283.

ଦେଶରୁ ବିପୁଳ ପରିମାଣର ଔପନିବେଶିକ "ଭେଟି" କାଢ଼ି ନେଉଥିଲେ । ସେସବୁର ବାର୍ଷିକ ପରିମାଣ ଥିଲା ପ୍ରାୟ ୧୦ କୋଟି ପାଉଣ୍ଡ । ଏ ସଂକ୍ରାନ୍ତରେ ୧୮୮୧ ଖ୍ରୀଷ୍ଟାବ୍ଦରେ ଭାରତ ପ୍ରସଙ୍ଗରେ ମାର୍କସ୍‌ଙ୍କର ଏକ ଉକ୍ତି ସ୍ମରଣଯୋଗ୍ୟ : "ଇଂରେଜମାନେ ପ୍ରତିବର୍ଷ ଭାରତୀୟମାନଙ୍କ ନିକଟରୁ ଯେଉଁ ଖଜଣା, ଖୋଦ୍ ଭାରତୀୟମାନଙ୍କ ପକ୍ଷରେ ଏକାନ୍ତ ନିଷ୍ପ୍ରୟୋଜନୀୟ ରେଳପଥର ଡିଭିଡେଣ୍ଡ, ସାମରିକ ଓ ପ୍ରଶାସନିକ ରାଜକର୍ମୀମାନଙ୍କର ପେନ୍‌ସନ୍, ଆଫ୍‌ଗାନ ଓ ଅନ୍ୟାନ୍ୟ ଯୁଦ୍ଧ ଖର୍ଚ୍ଚ ଆଦି ବାବଦରୁ ଯାହା କାଢ଼ି ନେଉଛନ୍ତି, ପ୍ରତିବର୍ଷ ଖୋଦ୍ ଭାରତ ଭିତରେ ସେମାନେ ଯାହା ଆତ୍ମସାତ୍ କରୁଛନ୍ତି, ସେ କଥା ନଉଠେଇ, ସଂପୂର୍ଣ୍ଣ ରୂପେ ବିନା ସମମୂଲ୍ୟରେ, ଏକ ତରଫା ଭାବେ, ସେମାନେ ଏମାନଙ୍କ ପାଖରୁ ଯାହା ନେଉଛନ୍ତି, ଅର୍ଥାତ୍, ଯେଉଁସବୁ ପଣ୍ୟଦ୍ରବ୍ୟ ଭାରତୀୟମାନେ ପ୍ରତିବର୍ଷ ଇଂଲଣ୍ଡକୁ ବିନା ମୂଲ୍ୟରେ ପଠାଇବାକୁ ବାଧ୍ୟ ହେଉଛନ୍ତି, କେବଳ ସେଇସବୁର ମୂଲ୍ୟ ଭାରତର ୬ କୋଟି କୃଷି ଆଉ କାରଖାନା ମଜୁରିଆମାନଙ୍କର ମୋଟ ଆୟଠାରୁ ବେଶି ! ଏହା ହେଉଛି ଏକ ହିଂସ୍ର ରକ୍ତଶୋଷା ପ୍ରକ୍ରିୟା ! ଗୋଟିକ ପରେ ଗୋଟିଏ ଦୁର୍ଭିକ୍ଷର ବର୍ଷ ସେଠାକୁ ଆସୁଛି ଏବଂ ସେସବୁର ପରିସର କ୍ରମଶଃ ବ୍ୟାପକତର ହୋଇ ଉଠୁଛି । ଅଥଚ ସେ ସଂପର୍କରେ ୟୁରୋପୀୟମାନଙ୍କର ଏବେ କୌଣସି ଧାରଣା ନାହିଁ !"*

## ଭାରତୀୟ ଜାତୀୟ ପୁଞ୍ଜିବାଦୀ ଉଦ୍ୟୋଗର ବିକାଶ

ଭାରତରେ ଗଢ଼ି ଉଠୁଥିବା ବୃହତ୍ ପୁଞ୍ଜିବାଦୀ ଉଦ୍ୟୋଗଗୁଡ଼ିକ (କାରଖାନା, ରେଳପଥ, ବଗିଚ୍ଛା) ଭାରତର ଜାତୀୟ ପୁଞ୍ଜିବାଦର ବିକାଶକୁ ପ୍ରୋତ୍ସାହନ ଯୋଗାଇଥିଲା । ବଣିକ ଏବଂ ମହାଜନମାନଙ୍କ ଆଗରେ ସଂପ୍ରତି ଉନ୍ମୁକ୍ତ ହୋଇଥିବା ବିସ୍ତୃତତର ସମ୍ଭାବନାର ପରିପ୍ରେକ୍ଷିତରେ ଦେଶରେ ଅର୍ଥ ପୁଞ୍ଜି ସଞ୍ଚୟର ପରିସ୍ଥିତି ସୃଷ୍ଟି ହୋଇଥିଲା । ଭାରତୀୟ ବଣିକମାନେ ମଧ୍ୟସ୍ଥ ବା ସହଯୋଗୀ କାର୍ଯ୍ୟ ମାଧ୍ୟମରେ ଇତିମଧ୍ୟରେ ବିପୁଳ ଅର୍ଥ ସଞ୍ଚୟ କରିଥିଲେ ।

ଶ୍ରମ ବଜାର ମଧ୍ୟ ଠିକ୍ ସମୟରେ ଗଢ଼ି ଉଠିବାକୁ ଆରମ୍ଭ କରିଥିଲା । ବିଧ୍ୱସ୍ତ କୁଟୀରଶିଳ୍ପୀ ଏବଂ ନିଃସ୍ୱ କୃଷକମାନଙ୍କୁ ନେଇ ବଗିଚ୍ଛା, ନିର୍ମାଣ କାର୍ଯ୍ୟ, ପ୍ରଥମ କଳକାରଖାନା ଏବଂ ସୂତାକଳ ପାଇଁ ଶ୍ରମିକ ଶ୍ରେଣୀର ପ୍ରଥମ ବାହିନୀଟି ଗଢ଼ି ଉଠିଥିଲା ।

ଅର୍ଥାତ୍, ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଭାରତରେ ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀର ଦୁଇଟି ମୂଳ ସର୍ତ୍ତ ପୂର୍ଣ୍ଣ ହୋଇଥିଲା : ଉତ୍ପାଦନର ଉପାୟ ଉପକରଣହୀନ "ମୁକ୍ତ" ଶ୍ରମର ଆବିର୍ଭାବ ଏବଂ ପୁଞ୍ଜିର ପ୍ରାଥମିକ ସଞ୍ଚୟ (ଭାରତୀୟ ବଣିକ ଏବଂ ସହଯୋଗୀ ବ୍ୟବସାୟୀମାନଙ୍କର) ଘଟିଥିଲା ।

ଭାରତବର୍ଷରେ ପୁଞ୍ଜିବାଦର ବିକାଶ ଆଗେଇଥିଲା ଦୁଇଟି ସମାନ୍ତରାଳ ଧାରାରେ । ପୂର୍ବତନ କାରିଗରମାନଙ୍କର କର୍ମଶାଳାକୁ ଭିତ୍ତି କରି ପୁଞ୍ଜିବାଦୀ ଉତ୍ପାଦନକାରୀ ଉଦ୍ୟୋଗ ଦେଖା ଦେଇଥିଲା ଏବଂ ଏହା ଅତ୍ୟଧିକ ଶୋଷଣ ସମେତ (ମହାଜନର ବଜ୍ରମୁଷ୍ଟି ସମେତ ପୁଞ୍ଜିବାଦୀ ପ୍ରଣାଳୀ ଏବଂ

* K. Marx, F. Engels, "Selected Correspondence", Moscow, 1975, p. 317.

ଉଚ୍ଚ ଜାତି ବା ବର୍ଣ୍ଣମାନଙ୍କ ଦ୍ୱାରା ନିମ୍ନ ଜାତିମାନଙ୍କ ଉପରେ ସ୍ୱୈରାଗ୍ରହିତା) ଆମଦାନିକୃତ ବା ସ୍ଥାନୀୟ ଭାବେ ଉତ୍ପାଦିତ ଶସ୍ତା ଅର୍ଦ୍ଧନିର୍ମିତ ପଣ୍ୟର ଉପଯୋଗ କରି ବଡ଼ ବଡ଼ କାରଖାନା ସହିତ ପ୍ରତିଦ୍ୱନ୍ଦ୍ୱିତା କରି ପାରୁଥିଲେ । କାରଖାନାରେ ନିର୍ମିତ ସୂତାକୁ ଉପଯୋଗ କରି ମ୍ୟାନୁଫାକ୍ଚରିଂ ଢାଞ୍ଚାରେ ହସ୍ତଚାଳିତ ତନ୍ତର ପୁନର୍ଜନ୍ମ ଘଟିଥିଲା । ଭାରତର ବିଭିନ୍ନ ଅଞ୍ଚଳରେ (ବିଶେଷତଃ, ମହାରାଷ୍ଟ୍ର, ମାଡ୍ରାଜ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶଗୁଡ଼ିକରେ) ବିଶେଷ ଧରଣର କୁଟୀରଶିଳ୍ପର ବଡ଼ ବଡ଼ କେନ୍ଦ୍ର ଗଢ଼ି ଉଠିଥିଲା । ୧୮୯୧ ଖ୍ରୀଷ୍ଟାବ୍ଦର ଜନଗଣନା ଅନୁଯାୟୀ କୁଟୀରଶିଳ୍ପରେ ୪.୫ କୋଟି ପରିବାର (ସପରିବାରେ) କର୍ମରତ ଥିଲେ ନବେ ଦଶକର ଶେଷ ଆଡ଼କୁ ଏହିସବୁ କ୍ଷୁଦ୍ରାୟତନ ଶିଳ୍ପରେ ନିଯୁକ୍ତ ଶ୍ରମିକମାନେ ସୂତାକଳ ତୁଳନାରେ ଅଢ଼େଇ ଗୁଣ ସୂତା ବ୍ୟବହାର କରୁଥିଲେ ।

କାରିଗରମାନଙ୍କ ସହିତ ହସ୍ତଚାଳିତ କର୍ମଶାଳାର ମାଲିକ ଓ ଶ୍ରମିକମାନେ ମଧ୍ୟ ଔପନିବେଶିକ ଢାଞ୍ଚାର ଚାପ ତୀବ୍ର ଭାବେ ଅନୁଭବ କରୁଥିଲେ । ଏକାରକମର ପଣ୍ୟୋତ୍ପାଦୀ ବ୍ରିଟିଶ୍ ଉଦ୍ୟୋଗଗୁଡ଼ିକ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବା ସଙ୍ଗେ ସଙ୍ଗେ ଏମାନଙ୍କ ଉପରେ ଦୁର୍ବହ କର ଓ ଔପନିବେଶିକ ପ୍ରଶାସକମାନଙ୍କର ନିର୍ମମ ବ୍ୟବହାରକୁ ସେମାନେ ସହ୍ୟ କରୁଥିଲେ ।

କୃଷକମାନଙ୍କ ପରେ ସହର ଓ ଗ୍ରାମର କାରିଗର ସଂପ୍ରଦାୟ, କର୍ମଶାଳା ଏବଂ ହସ୍ତଚାଳିତ କାରଖାନାର ଶ୍ରମିକ, କ୍ଷୁଦ୍ର ମୁନିବ ଓ ବଣିକମାନଙ୍କୁ ନେଇ ଭାରତର ଜାତୀୟ ମୁକ୍ତି ଆନ୍ଦୋଳନର ଦ୍ୱିତୀୟ ବୃହତ୍ତମ ଶକ୍ତି ଗଠିତ ହୋଇଥିଲା ।

ହସ୍ତଶିଳ୍ପ ଭିତ୍ତିକ ଏହିସବୁ ସଂସ୍ଥା ବ୍ୟତୀତ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଭାରତରେ ବୃହଦାକାର ଶିଳ୍ପର ଉଦ୍ଭବ ଘଟିଥିଲା ଏବଂ ବମ୍ବେ ସେତେବେଳେ ଦେଶର ବୃହଦାୟତନ ଶିଳ୍ପ କେନ୍ଦ୍ର ରୂପେ ଗଢ଼ି ଉଠିଲା । ବମ୍ବେର ବଣିକ ଏବଂ ସହଯୋଗୀ ବ୍ୟବସାୟୀମାନେ ବ୍ୟବସାୟ ମାଧ୍ୟମରେ ଯଥେଷ୍ଟ ପୁଞ୍ଜି ସଞ୍ଚୟ କରିଥିଲେ (ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ପାରସୀ ବଣିକ ଏବଂ ମାରୱାଡ଼ି ବ୍ୟବସାୟୀ ଓ ମହାଜନ ସଂପ୍ରଦାୟ) । ଏମାନେ ବ୍ୟାପକ ନେଣଦେଣ କରୁଥିଲେ ଏବଂ ଅଫିମ ବ୍ୟବସାୟର ମଧ୍ୟସ୍ଥ ହିସାବରେ କେବଳ ଚୀନ୍‌ର ନୁହେଁ, ସମଗ୍ର ଦୂର ପ୍ରାଚ୍ୟର ବଜାରଗୁଡ଼ିକ ସଂପର୍କରେ ଯଥେଷ୍ଟ ଅବହିତ ଥିଲେ । ଊନବିଂଶ ଶତାବ୍ଦୀର ଚାଳିଶ, ପଞ୍ଚାଶ ଓ ଷାଠିଏ ଦଶକଗୁଡ଼ିକରେ ବମ୍ବେର ବଡ଼ ବଡ଼ ବ୍ୟବସାୟୀ ପରିବାରଗୁଡ଼ିକ ବ୍ରିଟେନ୍‌ରେ ସେମାନଙ୍କ ପ୍ରତିନିଧି ରଖିଥିଲେ ଏବଂ ସିଧାସଳଖ ବୃହଦାୟତନ ଶିଳ୍ପର ବିକାଶକୁ ଲକ୍ଷ୍ୟ କରିବାର ସୁଯୋଗ ପାଇଥିଲେ ।

ବମ୍ବେର ବଣିକମାନେ ଏଭଳି ଅବସ୍ଥାରେ ସୂତାକଳ ନିର୍ମାଣ କରିବାକୁ ଉଦ୍ୟୋଗ ଗ୍ରହଣ କରିଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭ କାଳ ପର୍ଯ୍ୟନ୍ତ ଏସବୁ ମୁଖ୍ୟତଃ ଚୀନ୍ ଓ ଦୂର ପ୍ରାଚ୍ୟର ଅନ୍ୟାନ୍ୟ ବଜାର ପାଇଁ ସୂତା ଉତ୍ପାଦନ କରୁଥିଲେ ।

୧୮୫୪ ଖ୍ରୀଷ୍ଟାବ୍ଦରେ ବମ୍ବେର ପ୍ରଥମ ସୂତାକଳ ଉଦ୍‌ଘାଟିତ ହୋଇଥିଲା । ୧୮୬୧ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ସୂତାକଳଟି ସ୍ଥାପିତ ହୋଇଥିଲା ଦେଶର ଭାବୀ ଦ୍ୱିତୀୟ ବୃହତ୍ତମ ବସ୍ତ୍ର ଶିଳ୍ପ କେନ୍ଦ୍ର ଆହ୍ମଦାବାଦରେ ।

ଊନବିଂଶ ଶତାବ୍ଦୀର ଶେଷ ତିନି ଦଶକରେ ବ୍ରିଟିଶ୍ ପୁଞ୍ଜିପତିମାନେ ମଧ୍ୟ ଏ ଦେଶରେ

ବସ୍ତ୍ରକଳ (ବମ୍ବେ ଏବଂ କାନ୍‌ପୁର) ନିର୍ମାଣ କରିଥିଲେ । କଲିକତା ଓ ଏହାର ସହରତଳିରେ, ଅବଶ୍ୟ, ଠୁଳୀଭୂତ ଯୌଥକଳଗୁଡ଼ିକ ଥିଲା ବ୍ରିଟିଶ୍ ବ୍ୟକ୍ତିଗତ ପୁଞ୍ଜିର ରକ୍ଷା ପ୍ରାଚୀର ଭଳି । ତା'ଛଡ଼ା ବ୍ରିଟିଶ୍ ପୁଞ୍ଜିର ଭିତ୍ତିରେ କୃଷିଜାତ କଞ୍ଚାମାଲର ପ୍ରସେସିଂ ସହିତ ସଂଯୁକ୍ତ ଅନେକ ସଂସ୍ଥା ଗଢ଼ି ଉଠିଥିଲା ।

ଊନବିଂଶ ଶତାବ୍ଦୀର ଶେଷ ବେଳକୁ ବୃହଦାୟତନ ଉତ୍ପାଦନରେ (ଅର୍ଥାତ୍, କାରଖାନା ଓ ବଗିଚାରେ) ଶେୟାରର ଦୁଇ ତୃତୀୟାଂଶ ବ୍ରିଟିଶ୍‌ମାନଙ୍କର ଏବଂ ଏକ ତୃତୀୟାଂଶ ଭାରତୀୟମାନଙ୍କ ହାତରେ ଥିଲା । ଏହା ଦ୍ୱାରା ଭାରତରେ ବୃହଦାୟତନ ବ୍ରିଟିଶ୍ ପୁଞ୍ଜିବାଦୀ ସଂସ୍ଥାର ପ୍ରାଧାନ୍ୟକୁ ସହଜରେ ଲକ୍ଷ୍ୟ କରାଯାଏ ।

## ନୂତନ ଶ୍ରେଣୀସମୂହର ଉଦ୍‌ଭବ ଏବଂ ଦେଶରେ ଜାତୀୟ ଦ୍ୱନ୍ଦ୍ୱର ତୀବ୍ରତା ବୃଦ୍ଧି

ପୁଞ୍ଜିବାଦୀ ବିକାଶ ତା'ର ଅନୁସଙ୍ଗୀ ଶ୍ରମିକ ଶ୍ରେଣୀର ମଧ୍ୟ ଉନ୍ମେଷ ଘଟାଇଥିଲା । ବୃହଦାକାର ଶିଳ୍ପର ଅସମ ବିକାଶ ଫଳରେ ଦେଶରେ ସର୍ବାଧିକ ଉନ୍ନତ ପ୍ରଦେଶଗୁଡ଼ିକରେ – ବମ୍ବେ ଏବଂ ବଙ୍ଗଳାରେ ଏମାନେ କେନ୍ଦ୍ରୀଭୂତ ହୋଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ବେଳକୁ ବୃହଦାକାର ଶିଳ୍ପ, ରେଳପଥ ଓ ଖଣିରେ କର୍ମରତ ମଜୁରିଆମାନଙ୍କର ମୋଟ ସଂଖ୍ୟା ପ୍ରାୟ ଆଠ ଲକ୍ଷରେ ପହଞ୍ଚିଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବସ୍ତ୍ରକଳର ଶ୍ରମିକ ।

ଭାରତୀୟ ଶ୍ରମିକମାନଙ୍କ ବାସସ୍ଥାନ ଏବଂ କାର୍ଯ୍ୟର ପରିସ୍ଥିତି ଅତ୍ୟନ୍ତ ଭୟଙ୍କର ଥିଲା । କାରଖାନା ଶ୍ରମିକମାନଙ୍କର ମଜୁରି ଏତେ କମ୍ ଥିଲା ଯେ, ଜଣେ ମଜୁରିଆ ପକ୍ଷରେ ତା'ର ପରିବାର ଭରଣପୋଷଣ କରିବା ଅସମ୍ଭବ ହୋଇ ଉଠୁଥିଲା । ବୃହଦାକାର ଶିଳ୍ପର ପ୍ରଥମ ଦଶକଗୁଡ଼ିକରେ ଏହିସବୁ ଶ୍ରମିକମାନଙ୍କ ମଧ୍ୟରୁ ଅଧିକାଂଶ କାହିଁକି ଗ୍ରାମର ଛୋଟ ଛୋଟ ଜମିମାଲିକ ବା ଇଜାରାଦାର ଥିଲେ ଏଥିରୁ ତା'ର ବ୍ୟାଖ୍ୟା ମିଳିଥାଏ । ଏହି ଅଭିନ୍ନ କାରଣରୁ କାରଖାନା ଏବଂ ଖଣିରେ ନାରୀ ଓ ପିଲାମାନଙ୍କର ଶ୍ରମ ଏତେ ବ୍ୟାପକ ଭାବେ ବ୍ୟବହୃତ ହେଉଥିଲା ।

ପୁଞ୍ଜିବାଦୀ ଶୋଷଣ ସହିତ ଶ୍ରମିକମାନେ ବିଭିନ୍ନ ଧରଣର ଅର୍ଥନୈତିକ ନିର୍ଯ୍ୟାତନ ଛଡ଼ା ମହାଜନୀ ଋଣର ଦାଉ ମଧ୍ୟ ଭୋଗୁଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ତିନି ଦଶକରେ ଭାରତୀୟ କାରଖାନାଗୁଡ଼ିକରେ ସାପ୍ତାହିକ କାର୍ଯ୍ୟ ଦିନର ପରିସର ଥିଲା ୮୦ ଘଣ୍ଟା (ବ୍ରିଟେନ୍‌ରେ ସେତେବେଳେ ୫୬ ଘଣ୍ଟା) । କାର୍ଯ୍ୟ ଦିନ ମଧ୍ୟ ଯଥେଷ୍ଟ ଦୀର୍ଘ ଥିଲା, ୧୬ ଘଣ୍ଟା । କାରଖାନାରେ କୌଣସି ବିଜୁଳି ବତି ନଥିବାରୁ କାର୍ଯ୍ୟ ଦିନ ଆରମ୍ଭ ହେଉଥିଲା ଗ୍ରୀଷ୍ମ କାଳରେ ସୂର୍ଯ୍ୟୋଦୟର ପନ୍ଦର ମିନିଟ ପୂର୍ବରୁ ଏବଂ ଶେଷ ହେଉଥିଲା ସୂର୍ଯ୍ୟାସ୍ତର ପନ୍ଦର ମିନିଟ ପରେ ।

ଭାରତୀୟ ଶ୍ରମିକମାନଙ୍କୁ ଏହି ଭଳି ଚରମ ଶୋଷଣ କରିବା ଦ୍ୱାରା, ଦେଶୀୟ କାରଖାନା ମାଲିକମାନେ ମୁଖ୍ୟତଃ ବଜାରରେ ବ୍ରିଟିଶ୍ ଶିଳ୍ପପତିମାନଙ୍କୁ ମୁକାବିଲା କରିବାକୁ ସକ୍ଷମ ହୋଇଥିଲେ ।

ଉତ୍ପାଦନର ଖର୍ଚ୍ଚ ବୃଦ୍ଧି କରି ଭାରତୀୟମାନଙ୍କ ଠାରୁ ଅଧିକତର ସୁବିଧା ଲାଭ ଦିଗରେ ପ୍ରୟାସୀ ବ୍ରିଟିଶ୍ ବସ୍ତ୍ରକଳ ମାଲିକମାନେ ବ୍ରିଟେନ୍‌ର ପାର୍ଲିଆମେଣ୍ଟରେ ସେମାନଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ଭାରତରେ କାରଖାନା ଆଇନ୍ ପ୍ରବର୍ତ୍ତନ କରିବାକୁ ଦାବି ଜଣାଇଥିଲେ । କେବଳ ଭାରତୀୟ କାରଖାନା ମାଲିକମାନେ ନୁହନ୍ତି, ବୃହଦାକାର ଭାରତୀୟ କାରଖାନାର କେତେକ ବ୍ରିଟିଶ୍ ମାଲିକ ମଧ୍ୟ ଏହାର ବିରୋଧିତା କରିଥିଲେ । ଆଇନ୍‌ଟି ଗୃହୀତ ହେଲେ ମଧ୍ୟ ଭାରତୀୟ ଶ୍ରମିକ ଶ୍ରେଣୀର ଶୋଷଣ ମାତ୍ରାରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟି ନଥିଲା । ୧୮୮୧ ଓ ୧୮୯୧ ଖ୍ରୀଷ୍ଟାବ୍ଦର ଆଇନ୍ ଅନୁଯାୟୀ ଶିଶୁ ଶ୍ରମିକମାନଙ୍କର ସର୍ବନିମ୍ନ ବୟସ ଯଥାକ୍ରମେ ୭ ଏବଂ ୯ ବର୍ଷ ନିର୍ଦ୍ଧାରିତ ହୋଇଥିଲା । ଏହିସବୁ ଆଇନ୍ ଶିଶୁ ଏବଂ ତରୁଣମାନଙ୍କ ପାଇଁ କାର୍ଯ୍ୟ ଦିନ ମଧ୍ୟ ସୀମିତ କରିଥିଲା । ଯଥାଯଥ ଭାବେ କାର୍ଯ୍ୟକାରୀ ହୋଇ ପାରି ନଥିବା ଉକ୍ତ ଆଇନ୍‌ସମୂହ ଭାରତୀୟ ଶ୍ରମିକ ଶ୍ରେଣୀର ଭୟାନକ ଦୁରାବସ୍ଥାର ଛବିକୁ ପ୍ରକଟିତ କରିଥାଏ ।

ଭାରତରେ ବିକାଶମାନ ଜାତୀୟ ଶିଳ୍ପ ପାଇଁ, ନିଜସ୍ୱ ଏକଚାଟିଆ ବ୍ୟବସ୍ଥାର କଲ୍ୟାଣରୁ, ଉଚ୍ଚ ମୂଲ୍ୟରେ ସାଜସରଞ୍ଜାମ ଓ ପ୍ରୟୋଜନୀୟ ସାମଗ୍ରୀ ସରବରାହ କରି ବ୍ରିଟିଶ୍ ବୁର୍ଜୁଆମାନେ ପ୍ରଭୂତ "ରେଣ୍ଟି" ଆଦାୟ କରୁଥିଲେ । ଇଂଜିନିୟର ଏବଂ କୃତ୍‌କୌଶଳୀମାନଙ୍କ ପାଇଁ ସେମାନେ ଏଠାରେ ବ୍ରିଟେନ୍‌ଠାରୁ ଅନେକ ବେଶି ବେତନ ଦାବୀ କରୁଥିଲେ । ଭାରତୀୟ ଶ୍ରମିକ ଶ୍ରେଣୀକୁ ଅଧିକ ଶୋଷଣ କରି ଏହି ଅତିରିକ୍ତ ଖର୍ଚ୍ଚକୁ ପୂରଣ କରାଯାଉଥିଲା ଏବଂ ଏହି ଶ୍ରମିକମାନେ ଦୁଇଟି ଶୋଷଣର, ଅର୍ଥାତ୍, ଭାରତୀୟ ଓ ବିଦେଶୀ ବୁର୍ଜୁଆମାନଙ୍କର ଶୋଷଣର ଶିକାରରେ ପରିଣତ ହୋଇଥିଲେ ।

ଭାରତରେ ରାଜନୈତିକ ପ୍ରାଧାନ୍ୟର ସୁଯୋଗ ନେଇ ବ୍ରିଟିଶ୍ ବୁର୍ଜୁଆମାନେ ସମ୍ଭାବ୍ୟ ସର୍ବତ୍ର ଏ ଦେଶର ସ୍ୱାଧୀନ ଅର୍ଥନୈତିକ ଉନ୍ନୟନ ପଥରେ ବାଧା ସୃଷ୍ଟି କରୁଥିଲେ । ୧୮୭୯ ଖ୍ରୀଷ୍ଟାବ୍ଦରେ ଲ୍ୟାଙ୍କାଶାୟାର ବସ୍ତ୍ରକଳ ମାଲିକମାନଙ୍କର ଉଦ୍ୟୋଗରେ ଭାରତକୁ ଆମଦାନି ହେଉଥିବା କପଡ଼ା ଉପରୁ ଶୁଳ୍କ ଉଠେଇ ଦିଆଗଲା । ଏହା ଦ୍ୱାରା ପୃଥିବୀର ସର୍ବାପେକ୍ଷା ଶକ୍ତିଶାଳୀ ବ୍ରିଟେନ୍‌ର ବସ୍ତ୍ରଶିଳ୍ପ ସହିତ ପ୍ରତିଯୋଗିତାରେ ଭାରତର ନବଗଠିତ ଏହି ଶିଳ୍ପର ପରାଜୟ ନିଶ୍ଚିତ ହୋଇ ଯାଇଥିଲା । ୧୮୮୨ ଖ୍ରୀଷ୍ଟାବ୍ଦରେ ଭାରତକୁ ଆମଦାନି ହେଉଥିବା ସମସ୍ତ ବ୍ରିଟିଶ୍ ପଣ୍ୟକୁ ଶୁଳ୍କ ମୁକ୍ତ କରାଗଲା । ୧୮୯୪ ଖ୍ରୀଷ୍ଟାବ୍ଦରେ ଆର୍ଥିକ କାରଣରୁ କପଡ଼ା ଉପରେ ପୁଣି ଶୁଳ୍କ ପ୍ରବର୍ତ୍ତିତ ହେଲେ ମଧ୍ୟ ଏଥି ସଙ୍ଗେ ସଙ୍ଗେ ଭାରତରେ ବ୍ୟାପକ ଭାବେ ଉତ୍ପନ୍ନ କପଡ଼ା ଉପରେ ଆଭ୍ୟନ୍ତରୀଣ ଶୁଳ୍କ ମଧ୍ୟ ବସାଗଲା ।

ସୁସଂଗଠିତ ଋଣ ବ୍ୟବସ୍ଥାର ଅଭାବ ହେତୁ ଭାରତୀୟମାନେ ବଡ଼ ବାଧାର ସମ୍ମୁଖୀନ ହୋଇଥିଲେ । ଭାରତରେ ଥିବା ବ୍ରିଟିଶ୍ ବ୍ୟାଙ୍କ୍‌ଗୁଡ଼ିକ ଔପନିବେଶିକ ପ୍ରତିଷ୍ଠାନ, ବ୍ରିଟିଶ୍ ବାଣିଜ୍ୟ କଂପାନି ଓ ଶିଳ୍ପ ସଂସ୍ଥାଗୁଡ଼ିକୁ କେବଳ ଋଣ ନେବାର ସୁଯୋଗ ଦେଉଥିଲେ ଏବଂ ବୈଦେଶିକ ବାଣିଜ୍ୟ ଆଡ଼କୁ ଲକ୍ଷ୍ୟ ରଖୁଥିଲେ । ଏଭଳି ଅବସ୍ଥାରେ ଭାରତୀୟ କାରଖାନାର ମାଲିକମାନେ ତଥାକଥିତ ମ୍ୟାନେଜିଂ ଏଜେନ୍‌ସି, ବଡ଼ ବଡ଼ ବ୍ରିଟିଶ୍ ଏକଚାଟିଆ ସଂସ୍ଥାର ଶାଖାଗୁଡ଼ିକ ଉପରେ ନିର୍ଭରଶୀଳ ଥିଲେ । ଏହିସବୁ ଏଜେନ୍‌ସି ଅପରିହାର୍ଯ୍ୟ ଋଣ ଓ ସାଜସରଞ୍ଜାମ ଯୋଗାଉଥିଲେ ଏବଂ କାରଖାନା ଖୋଲିଲେ, କଞ୍ଚାମାଲ ସରବରାହ ଓ ଉତ୍ପନ୍ନ ପଣ୍ୟ ପାଇଁ ବଜାର ବ୍ୟବସ୍ଥା କରିବା ସଙ୍ଗେ

ସଙ୍ଗେ ଏହାର ପରିଗ୍ଳନା ଭାର ଗ୍ରହଣ କରୁଥିଲେ । ମ୍ୟାନେଜିଂ ଏଜେନ୍‌ସିଗୁଡ଼ିକ ସୁଧ ହିସାବରେ ଭାରତୀୟ ମାଲିକମାନଙ୍କ ମୁନାଫାରୁ ଏକ ବଡ଼ ଅଂଶ ମାରି ନେଉଥିଲେ ।

କୃଷିରେ ଥିବା ସାମନ୍ତବାଦୀ ବ୍ୟବସ୍ଥାର ପ୍ରଭାବ ଏବଂ ଗ୍ରାମୀଣ ଓ କ୍ଷୁଦ୍ର ଶିଳ୍ପରେ ବାଣିଜ୍ୟିକ ଏବଂ ମହାଜନୀ ପୁଞ୍ଜିର ସ୍ଥାୟୀ ପ୍ରାଧାନ୍ୟ ପାଇଁ ଏ ଦେଶରେ ପୁଞ୍ଜିବାଦର ବିକାଶ ମାରାତ୍ମକ ଭାବେ ବ୍ୟାହତ ହୋଇଥିଲା ।

ଶ୍ରେଣୀ ହିସାବରେ ତରୁଣ ଭାରତୀୟ ବୁର୍ଜୁଆମାନେ ସଂପୂର୍ଣ୍ଣ ଜନ୍ମଲଗ୍ନରୁ ସାମ୍ରାଜ୍ୟବାଦୀ ଶାସନର ଅର୍ଥନୈତିକ ଓ ରାଜନୈତିକ ଚାପର ସମ୍ମୁଖୀନ ହୋଇଥିଲେ । ସାମନ୍ତବାଦୀ ଶୋଷଣ ସମେତ ଏହି ନିର୍ଯ୍ୟାତନ ଏବଂ ବଣିକ ଓ ମହାଜନମାନଙ୍କର ଅନୁରୂପ ଶୋଷଣ କ୍ଷୁଦ୍ରାୟତନ ଶିଳ୍ପରେ ଏବଂ କୃଷି ଆଉ କୁଟୀରଶିଳ୍ପରେ ସର୍ବାପେକ୍ଷା ଅଧିକ ଅନୁଭୂତ ହେଉଥିଲା ।

ଔପନିବେଶିକ, ସାମନ୍ତ, ବଣିକ ଓ ମହାଜନମାନଙ୍କ ଶୋଷଣ ଫଳରେ କୃଷକ, କାରିଗର ଓ ଶ୍ରମଜୀବୀମାନେ ବ୍ୟାପକ ଭାବେ ଦରିଦ୍ର ହୋଇ ପଡ଼ିଥିଲେ ଏବଂ ଫସଲ ଭଲ ନହେଲେ, ଦୁର୍ଭିକ୍ଷ ପଡ଼ୁଥିଲା ଓ ଦାରିଦ୍ର୍ୟ ବଢ଼ି ଗ୍ଲୁଥିଲା । ୧୮୨୫ ଓ ୧୮୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଦୁଇ ଥର ଭାରତରେ ଦୁର୍ଭିକ୍ଷ ଦେଖା ଦେଇଥିଲା ଏବଂ ୪ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ତା'ପରେ ୧୮୫୦-୧୮୭୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ୬ ଥର, କିନ୍ତୁ ୧୮୭୫-୧୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ୧୮ ଥର ଦୁର୍ଭିକ୍ଷର ପୁନରାବିର୍ଭାବ ଘଟିଥିଲା ଏବଂ ମୃତ୍ୟୁ ସଂଖ୍ୟା ପ୍ରଥମେ ୫୦ ଲକ୍ଷ ଏବଂ ଶେଷରେ ୨୦ କୋଟି ୬୦ ଲକ୍ଷରେ ପହଞ୍ଚିଥିଲା ।

ସାମନ୍ତ ଏବଂ ଜମିଦାରମାନଙ୍କର କ୍ରମାଧିକ ଶୋଷଣ ସହିତ ଔପନିବେଶିକ ଶୋଷଣର ତୀବ୍ରତା ଏବଂ ବିଭିନ୍ନ ଶ୍ରେଣୀ ଘେନି ଗଠିତ ବୁର୍ଜୁଆ ସମାଜର ଉନ୍ମେଷକ ହିସାବରେ ପୁଞ୍ଜିବାଦର ବିକାଶ ଦେଶ ମଧ୍ୟରେ ଶ୍ରେଣୀଗତ ଦ୍ୱନ୍ଦ୍ୱ ସମେତ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ସହିତ ଭାରତୀୟ ସମାଜର ବିଭିନ୍ନ ଶ୍ରେଣୀମାନଙ୍କର ଦ୍ୱନ୍ଦ୍ୱକୁ ଗଭୀର କରୁଥିଲା ।

କୃଷକମାନଙ୍କର ଅର୍ଦ୍ଧ ପ୍ରାକୃତିକ ଅର୍ଥନୀତି ଚରିତ୍ରର ଜୋତରାଜି ଏବଂ ପ୍ରାକ୍-ପୁଞ୍ଜିବାଦୀ ଢାଞ୍ଚାର ଅଂଶ ହିସାବରେ ବିନିମୟ ଭିତ୍ତିକ କୁଟୀରଶିଳ୍ପ ସଂସ୍ଥାଗୁଡ଼ିକ ମଧ୍ୟରେ ପୁଞ୍ଜିବାଦୀ ପ୍ରତିଷ୍ଠାନଗୁଡ଼ିକ ସମୁଦ୍ର ମଧ୍ୟରେ ଦ୍ୱୀପ ଭଳି ଥିଲା । ଏହି କାରଣଟି ଏ ଦେଶର ଔପନିବେଶିକ ସାମନ୍ତ ସମାଜର ସାମାଜିକ ଓ ଶ୍ରେଣୀଗତ ବ୍ୟବସ୍ଥାର ସ୍ୱକୀୟ ବୈଶିଷ୍ଟ୍ୟସମୂହକୁ ରୂପଦାନ କରିଥିଲା । ଏହା ହିଁ ପ୍ରତିଫଳିତ ହୋଇଥିଲା ଶ୍ରେଣୀଗୁଡ଼ିକର ସଂଗ୍ରାମର ଆଧାର ଓ ଆଧେୟରେ ।

## ଭାରତୀୟ ଜନସାଧାରଣଙ୍କ ଜାତୀୟ-ମୁକ୍ତି ସଂଗ୍ରାମ : ଊନବିଂଶ ଶତାବ୍ଦୀର

## ଷାଠିଏ ଦଶକରୁ ନବେ ଦଶକ ପର୍ଯ୍ୟନ୍ତ

ଜନସାଧାରଣଙ୍କ ମଧ୍ୟରେ (କୃଷକ ଓ କାରିଗର) ଊନବିଂଶ ଶତାବ୍ଦୀର ଷାଠିଏରୁ ନବେ ଦଶକଗୁଡ଼ିକ ମଧ୍ୟରେ ଦେଖା ଦେଇଥିବା ଶାନ୍ତି ମଧ୍ୟରେ ଭାରତୀୟ ସମାଜର ଆଭ୍ୟନ୍ତରୀଣ ଓ ବହିସ୍ଥ ବିରୋଧସମୂହର ଉଲ୍ଲେଖଯୋଗ୍ୟ ଅଭିବ୍ୟକ୍ତି ଘଟିଥିଲା ।

## ବଙ୍ଗଳାରେ କୃଷକ ଅଭ୍ୟୁତ୍‌ଥାନ

୧୮୫୯-୧୮୬୨ ଖ୍ରୀଷ୍ଟାବ୍ଦରେ ବିହାର ଓ ପୂର୍ବ ବଙ୍ଗରେ ସଂଘଟିତ ନୀଳ ବିଦ୍ରୋହ ହେଉଛି ଗ୍ରାମୀଣ ଜନସାଧାରଣଙ୍କର ବଡ଼ ଧରଣର ଅଭ୍ୟୁତ୍‌ଥାନ ।

ନୀଳ ରଙ୍ଗ ଉତ୍ପାଦନକାରୀ କ୍ଷୁଦ୍ର କ୍ଷୁଦ୍ର କାରଖାନାର ବ୍ରିଟିଶ୍ ମାଲିକମାନେ ଜମିଦାରମାନଙ୍କ ନିକଟରୁ କେଇ ବର୍ଷ ପାଇଁ କେତେକ ଅଞ୍ଚଳରେ ଖଜଣା ଆଦାୟ କରିବା ପାଇଁ ପଟ୍ଟା ନେଉଥିଲେ ଏବଂ ରଇତମାନଙ୍କୁ ନୀଳ ଚାଷ କରିବାକୁ ବାଧ୍ୟ କରୁଥିଲେ । କୃଷକମାନେ ନୀଳ ଉତ୍ପାଦକମାନଙ୍କୁ ନିର୍ଦ୍ଧାରିତ ମୂଲ୍ୟରେ ନିଜର ସମସ୍ତ ଫସଲ ବାଧ୍ୟ ହୋଇ ବିକ୍ରି କରୁଥିଲେ । କ୍ରମଶଃ ବୃଦ୍ଧି ପାଉଥିବା ଋଣ ଚାପରେ ରଇତମାନେ ବ୍ରିଟିଶ୍ ନୀଳ ଉତ୍ପାଦକମାନଙ୍କ ଦୟା ଉପରେ ନିର୍ଭରଶୀଳ ହୋଇ ପଡ଼ୁଥିଲେ ଏବଂ ନୀଳ ଉତ୍ପାଦକମାନେ ଅଞ୍ଚଳ ସାରା ଜୋର ଜୁଲୁମ ଚଳାଉଥିଲେ ।

ନିର୍ଯ୍ୟାତନମୂଳକ ଚୁକ୍ତି ବିରୁଦ୍ଧରେ ପରିଗ୍ଳାଳିତ ଏହି କୃଷକ ଅଭ୍ୟୁତ୍‌ଥାନ ଶେଷରେ ନୀଳ ଚାଷ କରିବାକୁ ଅସ୍ୱୀକାର ଓ ନୀଳ ଉତ୍ପାଦକମାନଙ୍କର ପୁରୁଣା ଦାଦନ ଫେରସ୍ତ ଦେବାରେ ପରିଣତ ହେଲା । କେତେକ ଗ୍ରାମରେ ସ୍ୱତଃସ୍ଫୂର୍ତ୍ତ ଭାବେ ଆରମ୍ଭ ହୋଇଥିବା ଏହି ଅଭ୍ୟୁତ୍‌ଥାନ ବଙ୍ଗଳାର ପାଞ୍ଚଟି ଜିଲ୍ଲାକୁ ଦ୍ରୁତ ଭାବେ ବ୍ୟାପି ଯାଇଥିଲା । ରଇତମାନଙ୍କର ଏହି ଆନ୍ଦୋଳନକୁ ବଳପୂର୍ବକ ଦମନ କରିବା ପାଇଁ ନୀଳ ଉତ୍ପାଦକମାନଙ୍କର ଚେଷ୍ଟା ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲା ଏବଂ ତାହା ନୀଳ ଉତ୍ପାଦକମାନଙ୍କର ନିଜସ୍ୱ ଖମାରଗୁଡ଼ିକ ବିରୁଦ୍ଧରେ ଆକ୍ରମଣର ଆକାର ଧାରଣ କରିଥିଲା ।

ଆନ୍ଦୋଳନର ବ୍ୟାପକତା ଦେଖି ଔପନିବେଶିକ ସରକାର ଏତେ ଶଙ୍କିତ ହୋଇ ପଡ଼ିଥିଲା ଯେ, ଏସବୁ ଘଟଣାବଳୀ ତଦନ୍ତ ପାଇଁ ଗଠିତ ହୋଇଥିବା କମିଟି ଜବରଦସ୍ତ ଆଦାୟ କରିବାର ବ୍ୟବସ୍ଥାକୁ ଉଠେଇ ଦେବାକୁ ସୁପାରିସ୍ କରିଥିଲେ ।

ଅଭ୍ୟୁତ୍‌ଥାନରେ ଯୋଗ ଦେଇଥିବା ଗ୍ରାମଗୁଡ଼ିକୁ ସାମରିକ ପିଟୁଣି ପୁଲିସ୍ ପଠାଇବା ସତ୍ତ୍ୱେ ସଂଗ୍ରାମ ତିନି ବର୍ଷ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ଫଳତଃ, ବଂଶ ପରମ୍ପରା କ୍ରମେ ଭୂମି ସ୍ୱତ୍ୱ ଭୋଗକାରୀ ରଇତମାନେ ଏକ ବଡ଼ ଧରଣର ସାଫଲ୍ୟ ଅର୍ଜନ କରିଥିଲେ—ନିର୍ଯ୍ୟାତନମୂଳକ ଚୁକ୍ତିର ଅବସାନ ଘଟିଥିଲା । ଅଭ୍ୟୁତ୍‌ଥାନ ଦେଖା ଦେଇଥିବା ଅଞ୍ଚଳଗୁଡ଼ିକରେ ବହୁ ନୀଳ ଉତ୍ପାଦକ ସେମାନଙ୍କ କାର୍ଯ୍ୟକଳାପ ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ ।

ଏହି ଅଭ୍ୟୁତ୍‌ଥାନ ବେଳେ କୃଷକ ସଂଗଠନର ବୀଜ ବପନ ହୋଇଥିଲା । ପରବର୍ତ୍ତୀ କାଳରେ (୧୮୭୨-୧୮୭୩) ବଙ୍ଗଳାର କୃଷକମାନଙ୍କର ବ୍ୟାପକ ଅଭ୍ୟୁତ୍‌ଥାନରେ ଏହି କୃଷକ ସଂଗଠନ (ରଇତ ସଭା) ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା ।

ନୀଳ ବିଦ୍ରୋହ ବ୍ରିଟିଶ୍ ଶିଳ୍ପୋଦ୍ୟୋଗୀମାନଙ୍କ ବିରୁଦ୍ଧରେ ପରିଗ୍ଳାଳିତ ହୋଇଥିଲା ଏବଂ ବଙ୍ଗଳାର ପାବନା ଓ ବଗୁଡ଼ା ଜିଲ୍ଲାରେ କୃଷକ ଅଭ୍ୟୁତ୍‌ଥାନ ଥିଲା ସାମନ୍ତବିରୋଧୀ । ୧୮୭୧ ଖ୍ରୀଷ୍ଟାବ୍ଦରେ କଲିକତା ହାଇ କୋର୍ଟ ବଙ୍ଗଳା ପ୍ରଜାସ୍ୱତ୍ୱ ଆଇନ୍‌ର (୧୮୫୯ ଖ୍ରୀଷ୍ଟାବ୍ଦ) କେତେକ ଧାରାକୁ ଜମିଦାରମାନଙ୍କ ଅନୁକୂଳରେ ବ୍ୟାଖ୍ୟା କରିବା ଫଳରେ ଜମିଦାରମାନେ ପାଇକାରୀ ଭାବେ ଭୂମିରାଜସ୍ୱ ବୃଦ୍ଧି କରିଥିଲେ, ଏବଂ ମୂଳତଃ ଏଇଥିପାଇଁ ଅଭ୍ୟୁତ୍‌ଥାନଟି ଘଟିଥିଲା ।

କୃଷକମାନେ ଜମିଦାରମାନଙ୍କ ଘର ଲୁଟ ପାଟ କଲେ ଏବଂ ଚୁକ୍ତି ନାମା ଏବଂ ଖଜଣାର ରସିଦ୍‌ଗୁଡ଼ିକୁ ଧ୍ୱଂସ କରିଦେଲେ । "ବିଦ୍ରୋହୀ" ନାମକ ଏକ ସଂଗଠନ ଏହି ଅଭ୍ୟୁତ୍‌ଥାନକୁ ନେତୃତ୍ୱ ଦେଇଥିଲା । ପାବନା ଏବଂ ବଗୁଡ଼ାର ଏହି କୃଷକ ଅଭ୍ୟୁତ୍‌ଥାନକୁ ଔପନିବେଶିକମାନେ ନିଷ୍ଠୁର ଭାବେ ଦମନ କରିଥିଲେ ଏବଂ ପରେ ବଙ୍ଗଳାର ପ୍ରଜାସ୍ୱତ୍ୱ ଆଇନ୍‌କୁ ନିୟନ୍ତ୍ରଣ କରିବା ପାଇଁ ପ୍ରଣୀତ ଏକ ନୂତନ ବିଧି ମାଧ୍ୟମରେ ପ୍ରଜାବର୍ଗଙ୍କ ଅଧିକାର କିଛି ପରିମାଣରେ ସୁରକ୍ଷିତ ହୋଇଥିଲା ।

## ଉତ୍ତର ଏବଂ ଉତ୍ତର-ପଶ୍ଚିମ ଭାରତରେ ଗଣ ଅଶାନ୍ତି

ସାମନ୍ତବିରୋଧୀ ଓ ଔପନିବେଶିକତା ବିରୋଧୀ ସାଧାରଣ ବୈଶିଷ୍ଟ୍ୟଯୁକ୍ତ କୃଷକ ବିଦ୍ରୋହ ବ୍ୟତୀତ ଧର୍ମୀୟ ଏବଂ ସାଂପ୍ରଦାୟିକ ଆନ୍ଦୋଳନର ପ୍ରଚଳିତ ଧରଣଗୁଡ଼ିକ ମାଧ୍ୟମରେ ମଧ୍ୟ ଗଣ ବିକ୍ଷୋଭ ଦେଖା ଦେଇଥିଲା । କେବଳ ଅର୍ଥନୈତିକ କ୍ଷେତ୍ରରେ ସାମନ୍ତବାଦୀ ପ୍ରଭାବର ପ୍ରାଧାନ୍ୟ ନଥିଲା, ଅଧିକାଂଶ ଲୋକଙ୍କର ମନ ସେତେବେଳେ ସାମନ୍ତବାଦୀ ନୀତିରୀତି ତଥା ଦୃଷ୍ଟିଭଙ୍ଗି ଦ୍ୱାରା ଆଚ୍ଛନ୍ନ ଥିଲା । ତେଣୁ ସାମନ୍ତବାଦୀ ଏବଂ ବିଦେଶୀ ଶୋଷଣ ବିରୁଦ୍ଧରେ ସଂଗ୍ରାମ "ପ୍ରକୃତ ଧର୍ମ ପାଇଁ" ସଂଗ୍ରାମର ରୂପ ପରିଗ୍ରହ କରୁଥିଲା । ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଅଭ୍ୟୁତ୍‌ଥାନର ପରାଜୟ ସତ୍ତ୍ୱେ ବ୍ରିଟିଶ୍‌ମାନେ ଏହାର ଅନ୍ୟତମ ଅଂଶଗ୍ରହଣକାରୀ ଓୟାହାବୀମାନଙ୍କ ଆନ୍ଦୋଳନକୁ ସଂପୂର୍ଣ୍ଣ ରୂପେ ନିଶ୍ଚିହ୍ନ କରି ପାରି ନଥିଲେ । ଷାଠିଏ ଦଶକର ପ୍ରାରମ୍ଭରେ ଓୟାହାବୀମାନେ ପାଟଣାରେ (ବିହାର) ଏକ କେନ୍ଦ୍ର ସ୍ଥାପନ କରି ସେମାନଙ୍କ ଗୋପନ ସଂଗଠନକୁ ପୁଣି ଗଢ଼ି ତୋଳିଥିଲେ ଏବଂ ଔପନିବେଶିକମାନଙ୍କ ବିରୁଦ୍ଧରେ ଜୋରସୋରରେ ନୂତନ ସଶସ୍ତ୍ର ଅଭ୍ୟୁତ୍‌ଥାନର ପ୍ରସ୍ତୁତି କରିଥିଲେ । ଏହି ସଂଗଠନ ମଧ୍ୟରେ କୃଷକ ଏବଂ କାରିଗରମାନଙ୍କ ବ୍ୟତୀତ ଏହାର ନେତୃତ୍ୱରେ ଥିଲେ ବହୁ ଅଧସ୍ତନ କର୍ମଚାରୀ, ବ୍ୟବସାୟୀ ଓ ବୁଦ୍ଧିଜୀବୀ ।

ସ୍ୱାଧୀନ ପଠାଣ ଉପଜାତି ଅଧ୍ୟୁଷିତ ଅଞ୍ଚଳ ସିତାନାରେ ଇତିପୂର୍ବରୁ ଓୟାହାବୀମାନଙ୍କ ଦ୍ୱାରା ସଂଗଠିତ ଏକ ବଡ଼ ସାମରିକ କ୍ୟାମ୍ପରେ ଏବେ ସ୍ୱେଚ୍ଛାସେବୀମାନେ ଏକତ୍ର ହେବାକୁ ଆରମ୍ଭ କରିଥିଲେ ଏବଂ ଗୋପନରେ ଅସ୍ତ୍ରଶସ୍ତ୍ର ଏବଂ ଗୋଳା ବାରୁଦ ସଂଗ୍ରହ କରିଥିଲେ । ସିତାନାକୁ ଏହି ସଂପ୍ରଦାୟର ନେତାମାନେ ବିଧର୍ମୀମାନଙ୍କ (ଅର୍ଥାତ୍, ବ୍ରିଟିଶ୍) ବିରୁଦ୍ଧରେ ସେମାନଙ୍କ ଧର୍ମ ଯୁଦ୍ଧର (ଜେହାଦ) କେନ୍ଦ୍ର ରୂପେ ମନୋନୀତ କରିଥିଲେ ।

୧୮୬୩ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ସରକାର ବିଦ୍ରୋହୀମାନଙ୍କ ବିରୁଦ୍ଧରେ ସିତାନାକୁ ଦଳେ ସୈନ୍ୟ ପଠାଇଥିଲେ । ଓୟାହାବୀ ସମର୍ଥକ ଆଫ୍‌ଗାନ ଉପଜାତିମାନଙ୍କ ସହିତ ଯୁଦ୍ଧରେ ବହୁ ହତାହତ ହେଲା ପରେ ଯାଇ ବ୍ରିଟିଶ୍‌ମାନଙ୍କ ପକ୍ଷରେ ବିଦ୍ରୋହର ଏହି କେନ୍ଦ୍ରଟିକୁ ଧ୍ୱଂସ କରିବା ସମ୍ଭବ ହୋଇଥିଲା । ୧୮୬୪ ଖ୍ରୀଷ୍ଟାବ୍ଦରେ ପାଟଣା ଏବଂ ଦିଲ୍ଲୀର ଓୟାହାବୀ ଶକ୍ତ ଘାଟିଗୁଡ଼ିକର ମଧ୍ୟ ପତନ ଘଟିଥିଲା ଏବଂ ତା'ପରେ ଆନ୍ଦୋଳନଟି ଧୀରେ ଧୀରେ ଦୁର୍ବଳ ହୋଇ ପଡ଼ିଲା ।

ଊନବିଂଶ ଶତାବ୍ଦୀର ଷାଠିଏରୁ ଅଣି ଦଶକ ମଧ୍ୟରେ ଏକ ସାମନ୍ତବିରୋଧୀ, ଔପନିବେଶିକତା ବିରୋଧୀ ସଂଗ୍ରାମ ପଞ୍ଜାବରେ କ୍ରମାଗତ ଜୋରଦାର ହୋଇ ଉଠିଥିଲା । ଏହି ଶତାବ୍ଦୀର ପ୍ରାରମ୍ଭରେ ପ୍ରତିଷ୍ଠିତ "ନାମଧାରୀ" ଶିଖ ସଂପ୍ରଦାୟର କାର୍ଯ୍ୟକଳାପ ମଧ୍ୟରେ ଏହା ରୂପ ଲାଭ କରିଥିଲା ।

୧୮୪୬ ଖ୍ରୀଷ୍ଟାବ୍ଦରେ ଜନୈକ ବଢ଼େଇର ପୁତ୍ର ରାମ ସିଂହ ଏହି ସଂପ୍ରଦାୟର ନେତା ହେବା ପରେ ଏହି ସଂଗ୍ରାମର ତୀବ୍ରତା ବୃଦ୍ଧି ପାଇଥିଲା । ୧୮୬୩ ଖ୍ରୀଷ୍ଟାବ୍ଦରେ ରାମ ସିଂହ ନାମଧାରୀ ଆଦର୍ଶ ସଂପର୍କରେ ନିଜର ବ୍ୟାଖ୍ୟା ଉପସ୍ଥାପିତ କରିଥିଲେ ଏବଂ ତଦନୁଯାୟୀ ତାଙ୍କ ଶିଖମାନଙ୍କୁ ବ୍ରିଟିଶ୍ ପଣ୍ୟ ଓ ଔପନିବେଶିକ ସରକାରର ସଂସ୍ଥାଗୁଡ଼ିକୁ ବର୍ଜନ କରିବାକୁ ପରାମର୍ଶ ଦେଇଥିଲେ । ପୂର୍ବତନ ସୈନିକ ଏହି ରାମ ସିଂହ ଜିଲ୍ଲା, ତହସିଲ ଓ ଗ୍ରାମରେ ସୁଚିହ୍ନିତ ସାମରିକ ଧରଣର ପ୍ରତିଷ୍ଠାନ ଗଢ଼ି, ତାଙ୍କ ସଂଗଠନକୁ ପୁନର୍ଗଠନ କରିଥିଲେ । ଏହି ସଂପ୍ରଦାୟର ସଦସ୍ୟମାନେ ଔପନିବେଶିକ ସିପାହୀ ବାହିନୀରେ କାର୍ଯ୍ୟରତ ଶିଖ୍‌ମାନଙ୍କ ସହିତ ମଧ୍ୟ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ନାମଧାରୀମାନଙ୍କ ସଂଖ୍ୟା ୫୦ ହଜାରରେ ପହଞ୍ଚିବା ଫଳରେ ଏବଂ ରାମ ସିଂହଙ୍କ ପ୍ରତି ଆନୁଗତ୍ୟ ସହ ବିଶେଷ କରି ସାମରିକ ଶିକ୍ଷାପ୍ରାପ୍ତ ଓ ସୁସଂଗଠିତ ହେବାରୁ ଏମାନେ ଏକ ବଡ଼ ଶକ୍ତି ହୋଇ ଉଠିଥିଲେ । ଏଥି ପାଇଁ ସଂପ୍ରଦାୟଟିକୁ କଡ଼ା ପୁଲିସ୍ ପହରା ମଧ୍ୟରେ ରଖାଯାଇଥିଲା ।

ଶିଖ ସଂପ୍ରଦାୟର ମନ୍ଦିରର ଭୂମି ବେଦଖଲକାରୀ ଶିଖ୍ ସାମନ୍ତମାନଙ୍କ ବିରୁଦ୍ଧରେ ଏହି ସଂପ୍ରଦାୟ ଷାଠିଏ ଦଶକର ଶେଷାର୍ଦ୍ଧକୁ ସକ୍ରିୟ ହୋଇ ଉଠିଥିଲା । କିନ୍ତୁ ଶିଖ ସାମନ୍ତମାନଙ୍କ ସାହାଯ୍ୟରେ ବ୍ରିଟିଶ୍‌ମାନେ ନାମଧାରୀମାନଙ୍କର କେତେକ ପ୍ରତ୍ୟକ୍ଷ ଆକ୍ରମଣକୁ ବ୍ୟର୍ଥ କରି ଦେଇଥିଲେ ।

କିନ୍ତୁ ଏହି ସଂପ୍ରଦାୟ ମଧ୍ୟରେ ଏକ ଶକ୍ତିଶାଳୀ ବିରୋଧୀ ଗୋଷ୍ଠୀ ଗଢ଼ି ଉଠିଥିଲା ଏବଂ ରାମ ସିଂହଙ୍କ ପ୍ରତିବାଦ ସତ୍ତ୍ୱେ ୧୮୭୨ ଖ୍ରୀଷ୍ଟାବ୍ଦ, ଜାନୁଆରୀ ମଧ୍ୟ ଭାଗରେ ପଞ୍ଜାବର ଏକ କ୍ଷୁଦ୍ର ରାଜ୍ୟ ମାଲେରକୋଟଲାର ଶାସକଙ୍କୁ ଆକ୍ରମଣ କରିବାକୁ ସିଦ୍ଧାନ୍ତ ନେଇଥିଲା ।

ମାଲେରକୋଟଲା ପଥରେ ଶତାଧିକ ନାମଧାରୀ ମାଲୋଧ ଦୁର୍ଗ ଆକ୍ରମଣ କରିଥିଲେ । ଏହା ଥିଲା ଶିଖ୍ ସଂପ୍ରଦାୟକୁ ଦମନ କରିବାରେ ବ୍ରିଟିଶ୍‌ମାନଙ୍କର ସହଯୋଗୀ ଜଣେ ସକ୍ରିୟ ଶିଖ୍ ସାମନ୍ତଙ୍କର ବାସସ୍ଥଳୀ । ଆକ୍ରମଣକାରୀମାନେ ସେଠାକାର ଦୁର୍ଗରୁ ମିଳିଥିବା ଅସ୍ତ୍ରଶସ୍ତ୍ର ଦେଇ ନିଜକୁ ସଜ୍ଜିତ କରିବାକୁ ପରିକଳ୍ପନା କରିଥିଲେ । କିନ୍ତୁ ମାଲୋଧ ଓ ମାଲେରକୋଟଲା ଆକ୍ରମଣର ଏହି ଚେଷ୍ଟା ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ପ୍ରତିବେଶୀ ଶିଖ୍ ଏଲାକାଗୁଡ଼ିକରୁ ଆଗତ ସୈନ୍ୟମାନଙ୍କ ସହିତ ଯୁଦ୍ଧରେ ନାମଧାରୀମାନେ ଛତ୍ରଭଙ୍ଗ ଦେଇଥିଲେ । ବିଶ୍ୱାସଘାତକ ଶିଖ ରାଜନ୍ୟବର୍ଗ ଗଣ ଆନ୍ଦୋଳନକୁ ଦମନ କରିବା ଦିଗରେ ପୁଣି ବ୍ରିଟିଶ୍‌ଙ୍କ ଅନୁଗତ ସହାୟକ ହୋଇ ଉଠିଥିଲେ ।

ବ୍ରିଟିଶ୍‌ମାନଙ୍କ ହାତରେ ବନ୍ଦୀ ନାମଧାରୀମାନଙ୍କୁ ବିନା ବିଚାରରେ କମାଣ ଗୋଳାମାରି ଉଡ଼େଇ ଦିଆଗଲା । ୧୮୭୫ ଖ୍ରୀଷ୍ଟାବ୍ଦରେ ଭାରତରେ ଭ୍ରମଣରତ ସୁବିଖ୍ୟାତ ରୁଷ୍ ଚିତ୍ରଶିଳ୍ପୀ ଭେରେଷ୍ଟାଗିନ୍ ଏହି ବର୍ବର ଅତ୍ୟାଚାରକୁ ଭିତ୍ତି କରି ଏକ ଚିତ୍ର ଆଙ୍କିଥିଲେ ।

୧୮୭୨ ଖ୍ରୀଷ୍ଟାବ୍ଦର ଏହି ବ୍ୟର୍ଥତା ପରେ ସରକାର ନାମଧାରୀ ସଂପ୍ରଦାୟ ଉପରେ ବର୍ବର ଅତ୍ୟାଚାର ଚଳେଇଥିଲା ଏବଂ ରାମ ସିଂହ ଏବଂ ଏହାର ନେତୃବୃନ୍ଦଙ୍କୁ ବର୍ମାକୁ ଆଜୀବନ ନିର୍ବାସନରେ ପଠାଇ ଦେଇଥିଲା । ତା'ପରେ ଏହି ସଂପ୍ରଦାୟର କ୍ରିୟାକଳାପରେ ଭଟ୍ଟା ପଡ଼ିଗଲା ।

ଏହି ଘଟଣାର କିଛି କାଳ ପରେ ପଶ୍ଚିମ ଓ ଦକ୍ଷିଣ ଭାରତରେ ପୁଣି ଗଣ ଅଶାନ୍ତି ମୁଣ୍ଡ ଟେକି ଉଠିଲା ।

## ମହାରାଷ୍ଟ୍ରର କୃଷକ ଆନ୍ଦୋଳନ ।
## ବାସୁଦେବ ବଳବନ୍ତ ଫାଡ୍‌କେଙ୍କ ନେତୃତ୍ୱରେ ପରିଚାଳିତ ବିଦ୍ରୋହ

ମହାରାଷ୍ଟ୍ରରେ କୃଷକମାନେ ମୁଖ୍ୟତଃ ଜମିରୁ ଉଚ୍ଛେଦ ହେଉଥିଲେ ଏବଂ ସେହି ଜମି ଦ୍ରୁତ ଗତିରେ ମହାଜନମାନଙ୍କ ହାତକୁ ଚାଲିଯାଉଥିଲା । ଏହା ଘଟିଥିଲା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏବଂ ବିଶେଷତଃ ଷାଠିଏ ଦଶକରେ ତୂଳାର ଚଢ଼ା ବଜାର ସମୟରେ । ବାଣିଜ୍ୟିକ ରପ୍ତାନିଯୋଗ୍ୟ ଫସଲ ଉତ୍ପାଦନ ପାଇଁ ସେତେବେଳେ ପଶ୍ଚିମ ଓ ମଧ୍ୟ ଭାରତର ଅଞ୍ଚଳଗୁଡ଼ିକୁ ପୁନର୍ଗଠିତ କରାଗଲା ଏବଂ ଏହା ଫଳରେ ଗ୍ରାମାଞ୍ଚଳରେ ପଣ୍ୟ-ବନାମ-ମୁଦ୍ରା ସଂପର୍କର ବିକାଶ ସମେତ ବଣିକ ଓ ମହାଜନମାନଙ୍କ ପୁଞ୍ଜିର ସକ୍ରିୟତର ଭୂମିକା ବୃଦ୍ଧି ପାଇଥିଲା ।

ମହାରାଷ୍ଟ୍ରରେ ଏହି କୃଷକ ଆନ୍ଦୋଳନ ମହାଜନ ବିରୋଧିତାର ରୂପ ପରିଗ୍ରହ କରିଥିଲା । କୃଷକମାନେ ସେମାନଙ୍କ ଋଣର ନଥିପତ୍ରଗୁଡ଼ିକୁ କାଢ଼ିନେଇ ନଷ୍ଟ କରି ଦେଉଥିଲେ ଏବଂ ସେମାନଙ୍କୁ ବାଧା ଦେଲେ, ମହାଜନମାନଙ୍କୁ ଗାଁରୁ ବାହାର କରି ଦେଇ ସେମାନଙ୍କ ଘରେ ନିଆଁ ଲଗାଇ ଦେଉଥିଲେ । ଦେଶର ଏହି ଏଗକାର କୃଷକ ଆନ୍ଦୋଳନ ସଶସ୍ତ୍ର ଲଢ଼େଇର ରୂପ ପରିଗ୍ରହ କରିଥିଲା । ୧୮୭୩-୧୮୭୫ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରର ସମସ୍ତ ଜିଲ୍ଲାରେ ସଶସ୍ତ୍ର କୃଷକମାନେ ସକ୍ରିୟ ହୋଇ ଉଠିଥିଲେ ଏବଂ ଏମାନଙ୍କ ମଧ୍ୟରୁ ବୃହତ୍ତମ ଅଂଶଟି କୃଷକ ନେତା କେଙ୍ଗଲିୟାଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲେ । କୃଷକମାନେ ତାଙ୍କୁ "ଋଣକାରୀମାନଙ୍କ" ବନ୍ଧୁ ବୋଲି କହୁଥିଲେ । ୧୮୭୬ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍‌ମାନଙ୍କ ପିଟୁଣି ବାହିନୀ ଦ୍ୱାରା କେଙ୍ଗଲିୟା ବନ୍ଦୀ ଏବଂ କୃଷକମାନଙ୍କର ପ୍ରଧାନ ସଶସ୍ତ୍ର ଦଳଟି ବିଧ୍ୱସ୍ତ ହୋଇଥିଲେ ଏବଂ ଏହାର କିଛି କାଳ ପରେ ଆନ୍ଦୋଳନଟି ଦୁର୍ବଳ ହୋଇ ପଡ଼ିଥିଲା । କିନ୍ତୁ ୧୮୭୮-୧୮୭୯ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରଦେଶରେ ଗଢ଼ି ଉଠିଥିଲା ନୂତନ ସଶସ୍ତ୍ର କୃଷକ ବାହିନୀ । ପ୍ରଧାନତଃ, ରାମୁସି ଉପଜାତିର ଲୋକମାନଙ୍କୁ ନେଇ ଗଠିତ ଏହି ବାହିନୀର ଲୋକମାନେ ଜମିଦାର ଓ ମହାଜନମାନଙ୍କ ନିକଟରେ ଋଣ-ବନ୍ଦୀ ଥିଲେ । ପ୍ରଭାବଶାଳୀ କୃଷିଜୀବୀ ଜାତିମାନଙ୍କ ଅନ୍ତର୍ଭୁକ୍ତ ସମୃଦ୍ଧ ଚାଷୀମାନେ ମଧ୍ୟ ଏଥିରେ ଯୋଗ ଦେଇଥିଲେ ।

୧୮୭୬-୧୮୭୮ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରଦେଶରେ ଭୟାବହ ଦୁର୍ଭିକ୍ଷ ଦେଖା ଦେଲା । ସେତିକିବେଳେ ବ୍ରିଟିଶ୍‌ମାନେ ଲୁଣ କର ବସେଇଥିଲେ ଏବଂ ୧୮୭୮ ଖ୍ରୀଷ୍ଟାବ୍ଦରେ ଭାରତୀୟ ଶିଳ୍ପପତି ଓ ବ୍ୟବସାୟୀମାନଙ୍କ ଉପରେ ପେଟେଣ୍ଟ-ଶୁଳ୍କ ମଧ୍ୟ ଚପେଇ ଦିଆଗଲା । ଫଳରେ ଜନସାଧାରଣଙ୍କର ବ୍ୟାପକ ଅଂଶ ମଧ୍ୟରେ ବ୍ରିଟିଶ୍ ବିରୋଧୀ ମନୋଭାବ ତୀବ୍ର ହୋଇ ଉଠିଥିଲା ଏବଂ ବିଭିନ୍ନ ସ୍ଥାନରେ ପ୍ରତିବାଦସଭା ତଥା ବିକ୍ଷୋଭମାନ ଦେଖା ଦେଲା । ୧୮୭୮ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରଦେଶର ସୁରାଟ ସହରର ବ୍ୟବସାୟୀ ଓ କାରିଗରମାନେ ବ୍ରିଟିଶ୍‌ବିରୋଧୀ ବିକ୍ଷୋଭରେ ଯୋଗ ଦେବା ଫଳରେ ଆନ୍ଦୋଳନଟି ଶୀର୍ଷଦେଶରେ ପହଞ୍ଚିଥିଲା ।

ପରବର୍ତ୍ତୀ କାଳରେ ସଶସ୍ତ୍ର ସଂଗ୍ରାମ ରୂପେ ବିକଶିତ ୧୮୭୦-୧୮୮୦ ଖ୍ରୀଷ୍ଟାବ୍ଦର ମହାରାଷ୍ଟ୍ରର କୃଷକ, କାରିଗର ଓ ବ୍ୟବସାୟୀମାନଙ୍କ ଆନ୍ଦୋଳନଟି ବାସୁଦେବ ବଳବନ୍ତ ଫାଡ୍‌କେଙ୍କ (୧୮୪୫-୧୮୮୩) ନେତୃତ୍ୱାଧୀନରେ ବୀରତ୍ୱପୂର୍ଣ୍ଣ ବିପ୍ଳବର ପଥକୁ ବିସ୍ତୃତତର କରିଥିଲା ।

ମରହଟ୍ଟା ପେଶବାମାନଙ୍କର ଜଣେକ ପୂର୍ବତନ କର୍ମଚାରୀ ଓ ଶେଷରେ ଦରିଦ୍ର ହୋଇ ପଡ଼ିଥିବା

ଏକ ପରିବାରରେ ଫାଡ୍‌କେଙ୍କ ଜନ୍ମ । ସେ ଶିକ୍ଷିତ ଥିଲେ ଏବଂ ଭଲ ସଂସ୍କୃତ ଓ ଇଂରେଜୀ ଜାଣିଥିଲେ । ପୁନାର ପ୍ରଶାସନ ବିଭାଗରେ ଅଧସ୍ତନ କର୍ମଚାରୀ ହିସାବରେ କାର୍ଯ୍ୟରତ ଥିଲା ବେଳେ ସେ ଭାରତୀୟ ପେଟି-ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କ ନିୟତି ନିର୍ଦ୍ଦିଷ୍ଟ ବହୁ ଅପମାନଜନକ ଅଭିଜ୍ଞତାର ପ୍ରତ୍ୟକ୍ଷ ସ୍ୱାଦ ଲାଭ କରିଥିଲେ । ବିଶ୍ଳେଷଣାତ୍ମକ ମନ ଓ ପ୍ରବଳ ଦେଶାତ୍ମବୋଧ ଦ୍ୱାରା ପରିଚାଳିତ ଏହି ବ୍ୟକ୍ତିଙ୍କ ମନରେ ଅଚିରେ ସ୍ୱଦେଶର ବିଦେଶୀ ଶାସକମାନଙ୍କ ପ୍ରତି ତୀବ୍ର ଘୃଣା ଦେଖା ଦେଇଥିଲା ।

ପ୍ରାରମ୍ଭରେ ଫାଡ୍‌କେ ପୁନାର ତରୁଣମାନଙ୍କ ମଧ୍ୟରେ ବ୍ରିଟିଶ୍ ବିରୋଧୀ ଉତ୍ତେଜନା ସୃଷ୍ଟି କରୁଥିଲେ । ତା'ପରେ ସେ ତାଙ୍କର ଦୀର୍ଘମିଆଦୀ ପରିକଳ୍ପନା – ବ୍ରିଟିଶ୍ ଔପନିବେଶିକ ସରକାରକୁ ଉତ୍ଖାତ କରିବା ପାଇଁ ଏକ ସଶସ୍ତ୍ର ବିଦ୍ରୋହର ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ । ବିଦ୍ରୋହୀ କୃଷକ ନେତା ହରି ନାୟକଙ୍କ ସହିତ ଯୋଗାଯୋଗ ପରେ ୧୮୭୯ ଖ୍ରୀଷ୍ଟାବ୍ଦ ବସନ୍ତ କାଳରେ ତାଙ୍କ ଉଦ୍ୟୋଗରେ ଏକ ସୈନ୍ୟଦଳ ଗଠିତ ହୋଇଥିଲା । ପ୍ରାରମ୍ଭରେ ସ୍ଥାନୀୟ ମହାଜନ ଓ ସାମନ୍ତମାନଙ୍କ ଉପରେ ସେ ଆକ୍ରମଣ ଚଳେଇଥିଲେ ଏବଂ ସେମାନଙ୍କ ଧନରତ୍ନ ବାଜ୍ୟାପ୍ତ କରି ଦେଉଥିଲେ । ଏହି ଭାବେ ସଂଗୃହୀତ ଅର୍ଥରେ ପେଶାଦାର ଯୋଦ୍ଧାମାନଙ୍କୁ ଭଡ଼ା କରି ଏକ ବିରାଟ ବାହିନୀ ଗଢ଼ିବା ଥିଲା ତାଙ୍କ ପରିକଳ୍ପନା । ଏହି ସେନାବାହିନୀ ବ୍ରିଟିଶ୍ ଔପନିବେଶିକ ଶାସନ କେନ୍ଦ୍ରଗୁଡ଼ିକୁ ଆକ୍ରମଣ କରିବ, ଗୁରୁତ୍ୱପୂର୍ଣ୍ଣ ଯୋଗାଯୋଗ ଓ ପରିବହନ ପଥଗୁଡ଼ିକୁ ଅବରୋଧ କରି ସାରା ମହାରାଷ୍ଟ୍ରରେ ବିଦ୍ରୋହର ସଂକେତ ଦେବ ଏବଂ ପରେ ତାହା ସମଗ୍ର ଦେଶକୁ ବ୍ୟାପି ଯିବ ବୋଲି ସେ ପରିକଳ୍ପନା କରିଥିଲେ ।

ଏହି ପରିକଳ୍ପନାଟିକୁ କାର୍ଯ୍ୟକାରୀ କରିବା ପାଇଁ ଫାଡ୍‌କେ ମହାରାଷ୍ଟ୍ରର ବ୍ୟାପକ କୃଷକ ସାଧାରଣଙ୍କ ଉପରେ ଭରସା ରଖିଥିଲେ । ସେମାନଙ୍କ ସମର୍ଥନ ଦ୍ୱାରା ୧୮୭୯ ଖ୍ରୀଷ୍ଟାବ୍ଦ ବସନ୍ତ ଓ ଗ୍ରୀଷ୍ମ କାଳରେ ଦୁଃସାହସୀ ଆକ୍ରମଣ ଚଳେଇବା ଏବଂ ବ୍ୟାପକ ଉଚ୍ଛେଦ କାର୍ଯ୍ୟ ପରିଚାଳନା କରିବା ସମ୍ଭବ ହୋଇଥିଲା । କିନ୍ତୁ ଦୁର୍ବଳ ସାମରିକ ସଂଗଠନ ଏବଂ ଆନ୍ଦୋଳନ ଦମନ ପାଇଁ ପ୍ରେରିତ ପିଟୁଣି ବାହିନୀର ବିପୁଳ ସଂଖ୍ୟାଗରିଷ୍ଠତା ହେତୁ ଗ୍ରୀଷ୍ମ କାଳର ମଧ୍ୟ ଭାଗରେ ତାଙ୍କ ସୈନ୍ୟଦଳର ପ୍ରଧାନ ଅଂଶଟି ବିଧ୍ୱସ୍ତ ହୋଇ ଯାଇଥିଲା । ଫାଡ୍‌କେ ଧରା ପଡ଼ିଲେ ଏବଂ ପୁନାର ଅଦାଲତ୍‌ରେ ବିଚାର ଦ୍ୱାରା ଯାବଜ୍ଜୀବନ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ ।

ଫାଡ୍‌କେଙ୍କ ସୈନ୍ୟମାନେ ବାସ କରୁଥିବା ଜିଲ୍ଲାଗୁଡ଼ିକର ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ନିକଟରେ ସେ ଏକ ଆବେଦନ ଜଣେଇଥିଲେ ଏବଂ ଏହି ଆବେଦନରେ ତାଙ୍କ ମୂଳ କର୍ମସୂଚୀଟି ଉଲ୍ଲିଖିତ ଥିଲା : ସ୍ୱଳ୍ପ ଖଜଣା, ଜନହିତକର କାର୍ଯ୍ୟକଳାପ ଏବଂ ବ୍ରିଟିଶ୍ ଔପନିବେଶିକ କର୍ମଚାରୀମାନଙ୍କର ଉଚ୍ଚ ବେତନ ହ୍ରାସ । ତାଙ୍କ କର୍ମସୂଚୀ ଗୃହୀତ ନହେଲେ, ଫାଡ୍‌କେ ସାରା ମହାରାଷ୍ଟ୍ରରେ ବିଦ୍ରୋହ ଘୋଷଣା କରିବାକୁ ଧମକ ଦେଇଥିଲେ । ଫାଡ୍‌କେଙ୍କ ଡାଇରିରୁ ଜଣାଯାଏ ଯେ, ତାଙ୍କ କର୍ମସୂଚୀରେ ଜାତୀୟ ଶିଳ୍ପ ଓ ବାଣିଜ୍ୟ ଯଥେଷ୍ଟ ଗୁରୁତ୍ୱ ଲାଭ କରିଥିଲା । ତାଙ୍କ ରାଜନୈତିକ ଦୃଷ୍ଟିଭଙ୍ଗୀ ଥିଲା ସାରଗ୍ରାହୀ, ପ୍ରଜାତାନ୍ତ୍ରିକ ଓ ରାଜତାନ୍ତ୍ରିକ ଆଦର୍ଶର ଏକ ସରଳ ସଂଶ୍ଳେଷ ।

କିନ୍ତୁ ଏହି ବ୍ୟକ୍ତିଙ୍କର ଭାବାଦର୍ଶ ଓ ବାସ୍ତବ କାର୍ଯ୍ୟକଳାପ ଔପନିବେଶିକ ସରକାର ପ୍ରତି ପ୍ରବଳ ଘୃଣାରେ ପୂର୍ଣ୍ଣ ଥିଲା ଏବଂ ସଶସ୍ତ୍ର ସଂଗ୍ରାମ ମାଧ୍ୟମରେ ଜାତୀୟ ସ୍ୱାଧୀନତା ଲାଭ କରିବାର ସଂକଳ୍ପରେ ସେ ଅଟଳ ଥିଲେ ।

ଜାତୀୟ ମୁକ୍ତି ସଂଗ୍ରାମ ଓ ସ୍ଥାନୀୟ ମହାଜନ ବିରୋଧୀ ସଂଗ୍ରାମର ସଂଯୋଜନ ଦ୍ୱାରା ସଂଘଟିତ ଗଣ ବିଦ୍ରୋହ ହିସାବରେ ଫାଡ୍‌କେଙ୍କ ଏହି ଆନ୍ଦୋଳନର ଗୁରୁତ୍ୱ ଉଲ୍ଲେଖନୀୟ । ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ ବିପ୍ଲବୀ ଅଂଶ ସହିତ ଜନସାଧାରଣ କାନ୍ଧକୁକାନ୍ଧ ମିଳେଇ ଆନ୍ଦୋଳନରେ ଅଂଶଗ୍ରହଣ କରିବା କ୍ଷେତ୍ରରେ ଏହା ଥିଲା ପ୍ରଥମ ଦୃଷ୍ଟାନ୍ତ ।

## ରାମ୍ପାରେ ଅଭ୍ୟୁତ୍‌ଥାନ

ଫାଡ୍‌କେଙ୍କ ଆନ୍ଦୋଳନ ଚାଲିଥିଲା ବେଳେ ମାନ୍ଦ୍ରାଜର ଗୋଦାବରୀ ତୀରସ୍ଥ ରାମ୍ପାରେ ଏକ ବିରାଟ କୃଷକ ବିଦ୍ରୋହ ଦେଖା ଦେଇଥିଲା ।

ପ୍ରାରମ୍ଭରେ ଏହାର ଚାଳିକା ଶକ୍ତି ଥିଲେ ରାମ୍ପାରେ ବାସ କରୁଥିବା ପାହାଡ଼ୀ ଉପଜାତିମାନେ । ଏହି ଅଭ୍ୟୁତ୍‌ଥାନର କାରଣ ହେଲା ବ୍ରିଟିଶ୍ କର୍ତ୍ତୃକ ରାଜସ୍ୱ ବୃଦ୍ଧି କରିବାର ସିଦ୍ଧାନ୍ତ ଓ ଆଞ୍ଚଳିକ ତହସିଲ୍‌ଦାରଙ୍କ ଅତ୍ୟାଚାର । ଅଭ୍ୟୁତ୍‌ଥାନଟିରେ କ୍ଷୁଦ୍ର ସାମନ୍ତ ଭୂସ୍ୱାମୀ ଏବଂ ଗ୍ରାମର ମୁଖିଆମାନେ ନେତୃତ୍ୱ ନେଇଥିଲେ । ୧୮୭୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ଓ ଜୁଲାଇ ମାସ ମଧ୍ୟରେ ସଶସ୍ତ୍ର କୃଷକ ଦଳର ବିକ୍ଷିପ୍ତ ଆକ୍ରମଣଗୁଡ଼ିକ ସଂପୂର୍ଣ୍ଣ ଗରିଲା ଯୁଦ୍ଧର ରୂପ ପରିଗ୍ରହ କରିଥିଲା ଏବଂ କେତେକ ସାଫଲ୍ୟ ସହ ଏହା ୧୮୮୦ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗ ପର୍ଯ୍ୟନ୍ତ ଚାଲିଥିଲା ।

ଏହି ଅଭ୍ୟୁତ୍‌ଥାନ ଫଳରେ ଗଢ଼ି ଉଠିଥିବା ଅନେକ ବଡ଼ ବଡ଼ ବିଦ୍ରୋହୀ ଦଳ ୨୦ ଲକ୍ଷ ଜନସଂଖ୍ୟା ଅଧ୍ୟୁଷିତ ଗୋଦାବରୀ ଏବଂ ଭିଜାଗାପଟ୍ଟମ୍ ଜିଲ୍ଲାରେ ମାଡ଼ି ଯାଇଥିଲେ । ଏହିସବୁ ଜିଲ୍ଲାର ଯେଉଁସବୁ ଅଞ୍ଚଳରେ ବିଦ୍ରୋହୀମାନେ ସକ୍ରିୟ ଥିଲେ ସେସବୁ ଅଞ୍ଚଳର ଚାଷୀମାନେ ସେମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ଜଙ୍ଗଲପୂର୍ଣ୍ଣ ଏହି ପାର୍ବତ୍ୟ ଅଞ୍ଚଳର ପୂରା ସୁବିଧା ପାଇ କୁଶଳୀ ଗରିଲା ରଣନୀତି ଦ୍ୱାରା ବିଦ୍ରୋହୀମାନେ ସେମାନଙ୍କୁ ଦମନ କରିବା ପାଇଁ ପ୍ରେରିତ ବିରାଟ ସଂଖ୍ୟାଗରିଷ୍ଠ ନିୟମିତ ସୈନ୍ୟବାହିନୀର ଯଥେଷ୍ଟ କ୍ଷତି ସାଧନ କରିଥିଲେ । ଶତ୍ରୁ ହାତରୁ କାଢ଼ି ନେଇଥିବା ଏବଂ ଅନ୍ୟତ୍ର ଲୁଟ କରି ଲାଭ କରିଥିବା ଅସ୍ତ୍ରଶସ୍ତ୍ର ଦେଇ ବିଦ୍ରୋହୀମାନେ ନିଜକୁ ସଜ୍ଜିତ କରିଥିଲେ ।

୧୮୭୯ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ସମଗ୍ର ରାମ୍ପା ଅଞ୍ଚଳ ଏବଂ ସଂଲଗ୍ନ ଜିଲ୍ଲାଗୁଡ଼ିକ ବିଦ୍ରୋହୀମାନଙ୍କ ହସ୍ତଗତ ହୋଇଥିଲା । ଏପରିକି ବିଦ୍ରୋହ ଦମନ ପାଇଁ ଗୋଦାବରୀ ଦେଇ ପ୍ରେରିତ ସୈନ୍ୟ ବୋଝେଇ ଦୁଇଟି ଜାହାଜ ମଧ୍ୟରୁ ଗୋଟିକୁ ସେମାନେ ଦଖଲ କରି ଜଳେଇ ଦେଇଥିଲେ ।

କିନ୍ତୁ ବିଦ୍ରୋହୀମାନଙ୍କର କୌଣସି କର୍ମସୂଚୀ ନଥିଲା ଏବଂ ଅଭ୍ୟୁତ୍‌ଥାନଟି ଥିଲା ସଂପୂର୍ଣ୍ଣ ସ୍ୱତଃସ୍ଫୂର୍ତ୍ତ । ବିଦ୍ରୋହୀମାନଙ୍କର ନେତାମାନଙ୍କ ମଧ୍ୟରେ ଐକ୍ୟ ନଥିଲା ଏବଂ ସେମାନେ କଦବା କେମିତି ଦୈବାତ୍ ସମନ୍ୱିତ ଅଭିଯାନ ଚଳାଉଥିଲେ । ଦରିଦ୍ରତମ କୃଷକମାନଙ୍କ ଠାରୁ ଆରମ୍ଭ କରି କ୍ଷୁଦ୍ର ସାମନ୍ତ ପର୍ଯ୍ୟନ୍ତ, ବହୁବିଧ ଶ୍ରେଣୀଙ୍କର ମିଶ୍ରଣରେ ଗଠିତ ଏହି ଅଭ୍ୟୁତ୍‌ଥାନ ମଧ୍ୟ ବ୍ୟାପାରଟିକୁ ଜଟିଳ କରି ତୋଳିଥିଲା । ବ୍ରିଟିଶ୍ ଔପନିବେଶିକ କର୍ମଚାରୀ, ପୁଲିସ୍, ମହାଜନ ଓ ତହସିଲ୍‌ଦାରମାନଙ୍କୁ ବିତାଡ଼ିତ କଲା ପରେ, ବସ୍ତୁତଃ, ଅଭ୍ୟୁତ୍‌ଥାନର ଲକ୍ଷ୍ୟ ଅର୍ଜିତ ହୋଇଗଲା ବୋଲି ଭାବି ବିଦ୍ରୋହୀମାନଙ୍କ ନେତାମାନେ ନିଜକୁ "ରାଜା" ବା "ମହାରାଜା" ବୋଲି ଘୋଷଣା କରିଥିଲେ ।

କେବଳ ଅସ୍ତ୍ର ବଳ ଉପରେ ଭରସା ନରଖି ବିଦ୍ରୋହର ନେତାମାନଙ୍କ ମଧ୍ୟରେ କଳହ ଲଗେଇ ଦେବା ଏବଂ ଉତ୍କୋଚ ତଥା ଷଡ଼ଯନ୍ତ୍ରର ଚେଷ୍ଟା କରିବା ପାଇଁ ବ୍ରିଟିଶ୍‌ମାନେ ସ୍ଥିର କରିଥିଲେ । ୧୮୭୯ ଖ୍ରୀଷ୍ଟାବ୍ଦର ଶରତ କାଳରେ ଅନ୍ୟତମ ପ୍ରସିଦ୍ଧ ବିଦ୍ରୋହୀ ନେତା ଅମଲ ରେଡ୍ଡି ବିଶ୍ୱାସଘାତକତା ହେତୁ ବ୍ରିଟିଶ୍‌ମାନଙ୍କ ହାତରେ ଧରା ପଡ଼ିଥିଲେ । ୧୮୮୦ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ଅଭ୍ୟୁତ୍‌ଥାନର ପ୍ରଖ୍ୟାତନାମା ନେତା ଧାରାକନ୍ଦ ଚେନ୍ଦ୍ରାୟା ତାଙ୍କର ଜଣେ ବିଶ୍ୱାସଘାତକ ଅନୁଗାମୀଙ୍କ ହାତରେ ନିହତ ହୋଇଥିଲେ ।

ଚେନ୍ଦ୍ରାୟା ନିହତ ହେଲା ପରେ ଅଭ୍ୟୁତ୍‌ଥାନ ଝିମେଇ ପଡ଼ିଥିଲା । ବିଦ୍ରୋହୀମାନଙ୍କର ବିକ୍ଷିପ୍ତ ଦଳଗୁଡ଼ିକ ସେତେବେଳେ ବ୍ରିଟିଶ୍ ପିଟୁଣି ବାହିନୀର ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ରାମ୍ପା ଜଙ୍ଗଲକୁ ପଳାଇ ଯାଉଥିଲେ । କିନ୍ତୁ ଶେଷ ଗରିଲା ନେତା, ଚେନ୍ଦ୍ରାୟାଙ୍କ ପ୍ରଧାନ ସହଯୋଦ୍ଧା ତାମ୍ମାନ ଧରାଙ୍କ ମୃତ୍ୟୁ ପରେ ୧୮୮୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ, ବସ୍ତୁତଃ, ପ୍ରତିରୋଧର ଅବସାନ ଘଟିଥିଲା ।

ଏହି ବ୍ୟାପକ ଗଣ ଆନ୍ଦୋଳନ ସାଥେ ସାଥେ ଊନବିଂଶ ଶତାବ୍ଦୀର ସତୁରି ଏବଂ ଅଶି ଦଶକର ପ୍ରାରମ୍ଭରେ ମଧ୍ୟ ଏବଂ ଉତ୍ତର-ପୂର୍ବ ଭାରତର ସ୍ଥାନୀୟ ଉପଜାତିମାନଙ୍କ (ଭିଲ୍, ସାନ୍ତାଳ, ଗଣ୍ଡ, ଲୁସାଇ, କୁକି, ନାଗା, ଆଦି) ମଧ୍ୟରେ ବିଦ୍ରୋହ ଦେଖା ଦେଇଥିଲା । ଏସବୁ ଥିଲା ଦାସତ୍ୱ ବିରୁଦ୍ଧରେ ଏବଂ ପ୍ରତିବେଶୀ ଅଗ୍ରସର ଜାତିଗୁଡ଼ିକ ମଧ୍ୟରୁ ଆଗତ ସାମନ୍ତ ଏବଂ ମହାଜନମାନଙ୍କ ଦ୍ୱାରା ସେମାନଙ୍କ ଜମି ଦଖଲ ବିରୁଦ୍ଧରେ ପ୍ରତିବାଦ ସ୍ୱରୂପ । ସ୍ଥାନୀୟ ଔପନିବେଶିକ ପ୍ରଶାସନ ବିରୁଦ୍ଧରେ ପରିଗ୍ଳାଳିତ ହୋଇଥିବାରୁ ଏସବୁ ସାଧାରଣତଃ ପ୍ରକାଶ୍ୟ ଔପନିବେଶିକତା ବିରୋଧୀ ବୈଶିଷ୍ଟ୍ୟ ଲାଭ କରିଥିଲା ।

"ସାମନ୍ତବାଦର ଘାଟି" ଓ ଭାରତରେ ବ୍ରିଟିଶ୍ ଶାସନର ଦୁର୍ଗ ରୂପେ ଚିହ୍ନିତ ଦେଶୀୟ ରାଜ୍ୟଗୁଡ଼ିକର ଜନସାଧାରଣଙ୍କ ମଧ୍ୟରେ ବି ରାଜନୈତିକ ଚେତନା ଦେଖା ଦେଇଥିଲା । ସ୍ଥାନୀୟ ଶାସକମାନଙ୍କୁ ପଦଚ୍ୟୁତ କରିବା ବିରୁଦ୍ଧରେ ୧୮୭୪ ଖ୍ରୀଷ୍ଟାବ୍ଦରେ ପଶ୍ଚିମ ଭାରତର ବରୋଦା ରାଜ୍ୟର ରାଜଧାନୀ ବରୋଦାରେ ବିରାଟ ବ୍ରିଟିଶ୍‌ବିରୋଧୀ ବିକ୍ଷୋଭ ଘଟିଥିଲା । ମରହଟ୍ଟା ରାଜ୍ୟ କୋଲ୍ହାପୁରର ଶାସକ ଓ ତାଙ୍କ ଔପନିବେଶିକ ପୃଷ୍ଠପୋଷକମାନଙ୍କ ବିରୁଦ୍ଧରେ ୧୮୮୦ ଖ୍ରୀଷ୍ଟାବ୍ଦରେ ଫାଡ୍‌କେଙ୍କ ବିଦ୍ରୋହର ଅନୁରୂପ ଏକ ଷଡ଼ଯନ୍ତ୍ର ଧରା ପଡ଼ିଥିଲା ।

ଊନବିଂଶ ଶତାବ୍ଦୀର ଷାଠିଏ ଦଶକରୁ ଅଶି ଦଶକର ପ୍ରାରମ୍ଭ ପର୍ଯ୍ୟନ୍ତ ଗଣ ଆନ୍ଦୋଳନଗୁଡ଼ିକ ଥିଲା ସ୍ଥାନୀୟ ଓ ସାଧାରଣତଃ ସ୍ୱତଃସ୍ଫୂର୍ତ୍ତ । ଏହିସବୁ ଗଣ ଆନ୍ଦୋଳନରେ ଯୋଗଦାନକାରୀମାନଙ୍କର କୌଣସି ସୁସ୍ପଷ୍ଟ ରାଜନୈତିକ କର୍ମସୂଚୀ ନଥିଲା ଏବଂ ସେମାନେ ପ୍ରାୟ ନିଜ ନିଜ ଧର୍ମ ବା ସରଳ ରାଜତନ୍ତ୍ର ନାମରେ ପ୍ରଗ୍ଳାର କରୁଥିଲେ । ତା ସତ୍ତ୍ୱେ ଏହିସବୁ ଆନ୍ଦୋଳନରେ କୃଷକ, କାରିଗର, କେତେକ କ୍ଷେତ୍ରରେ ଛୋଟ ଛୋଟ ବ୍ୟବସାୟୀ ଓ ନବଜାତ ପେଟି-ବୁର୍ଜୁଆ ବୁଦ୍ଧିଜୀବୀମାନେ ଯୋଗ ଦେଇଥିଲେ, ଦେଶର ସମସ୍ତ ପ୍ରଧାନ ଅଞ୍ଚଳଗୁଡ଼ିକରେ ଗଣ ଅସନ୍ତୋଷ ଏବଂ ସଶସ୍ତ୍ର ଅଭ୍ୟୁତ୍‌ଥାନ ସମେତ ସଂଗ୍ରାମର ଦୃଢ଼ ରୂପଗୁଡ଼ିକ ପ୍ରକଟିତ ହୋଇଥିଲା । ଏସବୁର ଅର୍ଥ ହେଲା, ଏହି ସମୟର ଏସବୁ ଗଣ ଆନ୍ଦୋଳନ ବ୍ରିଟିଶ୍ ଔପନିବେଶିକ ଶାସନ ବିରୁଦ୍ଧରେ ଗୁରୁତର ବିପଦ ସୃଷ୍ଟି କରିବା । ଦେଶ ନୂତନ ଏକ ବୈପ୍ଳବିକ ସଂକଟର ସମ୍ମୁଖୀନ ହୋଇଥିଲା ।

କିନ୍ତୁ କୃଷକ ଏବଂ କାରିଗରମାନଙ୍କର ଔପନିବେଶିକତା ଓ ସାମନ୍ତ ବିରୋଧୀ ସଂଗ୍ରାମଗୁଡ଼ିକ ବ୍ରିଟିଶ୍ ଶାସନର ଅବସାନ ଘଟାଇବା ପକ୍ଷରେ ଯଥେଷ୍ଟ ନଥିଲା । ସ୍ମରଣ କରିବାର କଥା ଯେ, ବୁର୍ଜୁଆ ସମାଜର ନୂତନ ଶ୍ରେଣୀଗୁଡ଼ିକ — ଜାତୀୟ ମୁକ୍ତି ସଂଗ୍ରାମକୁ ନେତୃତ୍ୱ ଦେଇ ଭଳି ଶ୍ରମିକ ଶ୍ରେଣୀ ଓ ଜାତୀୟ ବୁର୍ଜୁଆମାନଙ୍କର ରାଜନୈତିକ ସତ୍ତା ସେତେବେଳେ କେବଳ ତା'ର ରୂପ ପରିଗ୍ରହର ପ୍ରାଥମିକ ପର୍ଯ୍ୟାୟରେ ପହଞ୍ଚିବାକୁ ଯାଉଥିଲା ।

## ଶ୍ରମିକ ଆନ୍ଦୋଳନର ସୂତ୍ରପାତ

ଶ୍ରମିକ ଶ୍ରେଣୀର ବୃହତ୍ତର ସମାବେଶ ଘଟିଥିଲା ବସ୍ତ୍ରଶିଳ୍ପ କ୍ଷେତ୍ରରେ । ଶୋଷକମାନଙ୍କ ବିରୁଦ୍ଧରେ ଭାରତୀୟ ଶ୍ରମିକ ଶ୍ରେଣୀର ଆନ୍ଦୋଳନରେ ବସ୍ତ୍ରକଳ ଶ୍ରମିକମାନେ ଯେ ନେତୃତ୍ୱ ଗ୍ରହଣ କରିଥିଲେ, ତା'ର କାରଣ ନିହିତ ଥିଲା ଏଇଥିରେ । ୧୮୭୭ ଖ୍ରୀଷ୍ଟାବ୍ଦରେ ମଧ୍ୟ ଭାରତର ଅନ୍ୟତମ ସହର ନାଗପୁରର ଏକ ବସ୍ତ୍ରକଳରେ ପ୍ରଥମ ଶ୍ରମିକ ଧର୍ମଘଟ ଦେଖା ଦେଇଥିଲା । ୧୮୮୨-୧୮୯୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ବମ୍ବେ ମାଡ୍ରାଜ ପ୍ରଦେଶରେ ୨୫ଟି ଧର୍ମଘଟ ସଂଗଠିତ ହୋଇଥିଲା । ଶିଳ୍ପ ଏବଂ ରେଳ ଶ୍ରମିକମାନଙ୍କ ଛଡ଼ା କୁଲି ଏବଂ ସରକାରୀ ସେବା ସଂସ୍ଥାର ଶ୍ରମିକମାନେ ମଧ୍ୟ ଧର୍ମଘଟରେ ଅଂଶଗ୍ରହଣ କରିଥିଲେ । ଏହିସବୁ ଧର୍ମଘଟଗୁଡ଼ିକ ମଧ୍ୟରେ ପ୍ରଥମଗୁଡ଼ିକ ଥିଲା ସ୍ୱତଃସ୍ଫୂର୍ତ୍ତ, ସ୍ୱଳ୍ପସ୍ଥାୟୀ ଏବଂ ଖୁବ୍ ସ୍ଥାନୀୟ ଆକାରର । ଧର୍ମଘଟକାରୀମାନଙ୍କର ଦାବି ଥିଲା ଅର୍ଥନୈତିକ ।

ବମ୍ବେର ଶ୍ରମିକମାନେ ଥିଲେ ଭାରତୀୟ ଶ୍ରମିକମାନଙ୍କର ସକ୍ରିୟତମ ଅଂଶ । ଏହିଠାରେ ଟ୍ରେଡ୍‌ୟୁନିଅନ୍‌ର ପୂର୍ବସୂରୀ ଶ୍ରମିକ ସଂଗଠନ ଗଢ଼ିବା ଦିଗରେ ପ୍ରଥମ ଉଦ୍ୟୋଗ ନିଆଯାଇଥିଲା । ୧୮୮୪ ଖ୍ରୀଷ୍ଟାବ୍ଦରେ ବମ୍ବେର ବସ୍ତ୍ରଶିଳ୍ପ ଶ୍ରମିକମାନଙ୍କର ପ୍ରଥମ ଜନସଭାଟିରେ ସପ୍ତାହରେ ଦିନେ ଛୁଟି ଏବଂ କାର୍ଯ୍ୟ ଦିନର ଦୈର୍ଘ୍ୟ ନିର୍ଦ୍ଧାରଣ ଆଦି ପ୍ରସ୍ତାବ ଗୃହୀତ ହୋଇଥିଲା । ସେଇ ବର୍ଷ ବସ୍ତ୍ରକଳର ଜନୈକ ମରହଟ୍ଟୀ ଉଚ୍ଚ ପଦସ୍ଥ କର୍ମଚାରୀ, ଏନ୍. ଏମ୍. ଲୋଖାଣ୍ଡେ ବସ୍ତ୍ରଶିଳ୍ପ ଶ୍ରମିକମାନଙ୍କର ପ୍ରଥମ ସଂଗଠନଟିକୁ ଗଢ଼ିଥିଲେ । ଏହାର ସଦସ୍ୟ ସଂଖ୍ୟା, ଅବଶ୍ୟ, କେବେ ସ୍ଥିର ରହୁ ନଥିଲା । ସଂଗଠନଟି ମରହଟ୍ଟୀ ଭାଷାରେ "ଦୀନବନ୍ଧୁ" ନାମକ ବୁର୍ଜୁଆ-ଲୋକହିତୈଷୀ ଧରଣର ଏକ ପତ୍ରିକା ପ୍ରକାଶ କରୁଥିଲା ।

ଅଶି ଦଶକ ଶେଷରେ ଏବଂ ନବେ ଦଶକର ପ୍ରାରମ୍ଭରେ ଧର୍ମଘଟ ଆନ୍ଦୋଳନ କ୍ରମଶଃ ତୀବ୍ର ହୋଇ ଉଠିଥିଲା । ସେତେବେଳେ ଏପରି କୌଣସି କାରଖାନା ନଥିଲା ଯେଉଁଠି କି ଗୋଟିଏ, କିମ୍ବା ଦୁଇଟି ଧର୍ମଘଟ ଦେଖା ଦେଇ ନଥିଲା । ବମ୍ବେର ଶ୍ରମିକମାନଙ୍କ ବ୍ୟତୀତ କଲିକତା, ମାଡ୍ରାଜ, ଆହ୍ମଦାବାଦ ଓ ଅନ୍ୟାନ୍ୟ ସହରର ଶ୍ରମଜୀବୀମାନେ ସଂଗ୍ରାମରେ ଯୋଗ ଦେବାକୁ ଆରମ୍ଭ କରିଥିଲେ । ଏସବୁଥିରେ ନାରୀ ଶ୍ରମିକମାନଙ୍କର ସକ୍ରିୟ ଅଂଶଗ୍ରହଣ ମଧ୍ୟ କ୍ରମଶଃ ବଢ଼ି ଚାଲିଥିଲା ।

ବମ୍ବେର ଶ୍ରମିକ ସଂଗଠନର କାର୍ଯ୍ୟକଳାପ ମଧ୍ୟ ବୃଦ୍ଧି ପାଇଥିଲା । ୧୮୮୯ ଖ୍ରୀଷ୍ଟାବ୍ଦରେ ଲୋଖାଣ୍ଡେଙ୍କ ନେତୃତ୍ୱରେ ବମ୍ବେର ବସ୍ତ୍ରଶିଳ୍ପ ଶ୍ରମିକମାନଙ୍କର ଦ୍ୱିତୀୟ ଜନସଭାଟି ଆହୂତ ହୋଇଥିଲା । ଏହି ସଂଗଠନଟି କ୍ରମଶଃ ସଂସ୍କାରବାଦୀ ବ୍ରିଟିଶ୍ ଟ୍ରେଡ୍‌ୟୁନିଅନ୍ ସହିତ ଘନିଷ୍ଠତର ହୋଇ ଉଠିଥିଲା ।

ଭାରତର ଶ୍ରମିକ ଆନ୍ଦୋଳନର ଏହି ପ୍ରାରମ୍ଭିକ ପର୍ଯ୍ୟାୟରେ ବୁର୍ଜୁଆମାନେ ଏଥିରେ ନିଜର ଭାବାଦର୍ଶକୁ ଆରୋପ କରିବାକୁ ଚେଷ୍ଟା କରିଥିଲେ ।

ବ୍ରିଟିଶ୍ ଔପନିବେଶିକ ସରକାର କର୍ତ୍ତୃକ ନିର୍ଯ୍ୟାତନ ଗ୍ରହଣ ପରେ ଅଶି ଦଶକର ଅପେକ୍ଷାକୃତ ଶାନ୍ତିପୂର୍ଣ୍ଣ ବର୍ଷଗୁଡ଼ିକ ଶେଷ ହୋଇଗଲା ଏଣି ନବେ ଦଶକରେ ଧର୍ମଘଟ ଆନ୍ଦୋଳନ ପୁଣି ତୀବ୍ର ହୋଇ ଉଠିଥିଲା । ଦେଶୀୟ ରାଜ୍ୟଗୁଡ଼ିକୁ କେନ୍ଦ୍ର କରି ସଂଗଠିତ ନୂଆ ଗଣ ଅଶାନ୍ତି ସହିତ ଏହି ଆନ୍ଦୋଳନର ଅଭିବୃଦ୍ଧି ସମପାତିକ ଥିଲା ।

## ନବେ ଦଶକର ଗଣ ଅଶାନ୍ତି

୧୮୯୦ ଖ୍ରୀଷ୍ଟାବ୍ଦରେ ପଶ୍ଚିମ ଭାରତର ଏକ କ୍ଷୁଦ୍ର ଦେଶୀୟ ରାଜ୍ୟ କାମ୍ବେରେ ବିଦ୍ରୋହୀ କୃଷକମାନେ ସେଠାକାର ନବାବକୁ ବିତାଡ଼ନ କରିବା ସଙ୍ଗେ ସଙ୍ଗେ କେତେକ ଉଲ୍ଲେଖଯୋଗ୍ୟ ସାଫଲ୍ୟ ଅର୍ଜନ କରିଥିଲେ । ଏଭଳି ଅବସ୍ଥାରେ ବ୍ରିଟିଶ୍ କର୍ତ୍ତୃପକ୍ଷ ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ବାଧ୍ୟ ହୋଇଥିଲେ – ଆନୁଷ୍ଠାନିକ ଭାବେ ନବାବଙ୍କୁ କ୍ଷମତାଚ୍ୟୁତ କରି ଭୂମିରାଜସ୍ୱ କମେଇ ଦେଲେ ।

୧୮୯୧ ଖ୍ରୀଷ୍ଟାବ୍ଦରେ ସେହି ସମୟର ବୃହତ୍ତମ ଗଣ ଅଭ୍ୟୁତ୍ଥାନ ଘଟିଥିଲା ମଣିପୁର ରାଜ୍ୟରେ । ପୂର୍ବ ଭାରତର ଏହି ଦେଶୀୟ ରାଜ୍ୟରେ ୧୮୯୦ ଖ୍ରୀଷ୍ଟାବ୍ଦର ଶରତ କାଳରେ ପ୍ରାସାଦ ଷଡ଼ଯନ୍ତ୍ର ମାଧ୍ୟମରେ ଦଳେ ସାମନ୍ତ ଅଭିଜାତ କ୍ଷମତାସୀନ ହୋଇଥିଲେ । ଏମାନଙ୍କୁ ନେତୃତ୍ୱ ଦେଇଥିଲେ ପ୍ରକୃତ ଅର୍ଥରେ ରାଜ୍ୟର ଶାସକ, ପଦଚ୍ୟୁତ ରାଜାଙ୍କ ଭାଇ । ଇତିମଧ୍ୟରେ ଅସ୍ଥାୟୀ ରାଜ ପ୍ରତିନିଧି ଟକେନ୍ଦ୍ରଜିତ୍ ସିଂହଙ୍କ ବ୍ରିଟିଶ୍‌ବିରୋଧୀ ଆନ୍ଦୋଳନର ପୃଷ୍ଠପୋଷକ ହେବାର ସଂବାଦ ଶୁଣି ୧୮୯୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ମଣିପୁରର ରାଜଧାନୀ ଇମ୍ଫାଲକୁ ଦଳେ ବ୍ରିଟିଶ୍ ସୈନ୍ୟଙ୍କୁ ପଠାଯାଇଥିଲା । ସେମାନେ ବିନା ବାଧାରେ ସେଠାରେ ପହଞ୍ଚିଥିଲେ । କିନ୍ତୁ ରାଜ ପ୍ରାସାଦକୁ ଦଖଲ କରିବାର ବ୍ୟର୍ଥ ଚେଷ୍ଟା ପରେ ବ୍ରିଟିଶ୍ ସେନାଦଳଟି ଇମ୍ଫାଲର ବ୍ରିଟିଶ୍ ରେସିଡେଣ୍ଟଙ୍କ ବାସ ଭବନରେ ବସ୍ତୁତଃ ବନ୍ଦୀ ହୋଇ ପଡ଼ିଥିଲେ । ବହୁ ସୈନ୍ୟ ଓ କିଛି ସଂଖ୍ୟକ ଅଫିସରଙ୍କୁ ହରେଇ ସେମାନେ ଶେଷକୁ ପଶ୍ଚାଦ୍‌ପସରଣ କରିଥିଲେ ସେଠାରୁ ।

ବ୍ରିଟିଶ୍ ସୈନ୍ୟଦଳର ଏହି ପରାଜୟ କଲିକତାର ଔପନିବେଶିକ ଅଫିସରେ ଭୟ ସୃଷ୍ଟି କରିଥିଲା । ସେଇ ବର୍ଷ ଏପ୍ରିଲ ମାସରେ ବ୍ରିଟିଶ୍‌ମାନେ ମଣିପୁରକୁ ଏକ ବଡ଼ ଧରଣର ସାମରିକ ଅଭିଯାନ ପ୍ରେରଣ କରିଥିଲେ । ରାଜ୍ୟର ଜନସାଧାରଣଙ୍କ ପ୍ରତିରୋଧ ଏବଂ କେତେକ ବ୍ରିଟିଶ ସାମରିକ ଘାଟି ଓ ଯୋଗାଯୋଗର ମାଧ୍ୟମକୁ ଧ୍ୱଂସ କରି ଦେବା ସତ୍ତ୍ୱେ ଇମ୍ଫାଲର ପତନ ଘଟିଥିଲା ଏବଂ ସହରଟିକୁ ନିଶ୍ଚିହ୍ନ କରି ଦିଆଯାଇଥିଲା । ଟକେନ୍ଦ୍ରଜିତ୍ ସିଂହ ବନ୍ଦୀ ଓ ଅନ୍ୟାନ୍ୟ ବିଦ୍ରୋହୀ ନେତାମାନଙ୍କ ସହିତ ପ୍ରାଣଦଣ୍ଡ ପାଇଥିଲେ । ତା'ପରେ ଜଣେକ ବ୍ରିଟିଶ୍ ରାଜକର୍ମଚାରୀଙ୍କୁ ନୂଆ ନାବାଳକ ରାଜାଙ୍କ ରିଜେଣ୍ଟ ବା ପ୍ରତିନିଧି ରୂପେ ନିଯୁକ୍ତ କରାଯାଇଥିଲା ।

ମଣିପୁରର ଏହି ବିଦ୍ରୋହ ଥିଲା ସାମନ୍ତ ଶ୍ରେଣୀର ବ୍ୟକ୍ତିମାନଙ୍କ ଦ୍ୱାରା ପରିଚାଳିତ ଔପନିବେଶିକତାବିରୋଧୀ ଶେଷ ଗଣ ଅଭ୍ୟୁତ୍ଥାନ ।

ସେଇ ୧୮୯୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର କେନ୍ଦୁଝର ରାଜ୍ୟରେ ଏକ ସାମନ୍ତ ବିରୋଧୀ ଅଭ୍ୟୁତ୍ଥାନ ଘଟିଥିଲା ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଖୋଦ୍ ଭାରତରେ କୌଣସି ଉଲ୍ଲେଖଯୋଗ୍ୟ ଗଣ ଆନ୍ଦୋଳନର ଦୃଷ୍ଟାନ୍ତ ନଥିଲେ ବି ଏହାର ପଶ୍ଚିମ ଓ ପୂର୍ବ ସୀମାନ୍ତରେ ଔପନିବେଶିକମାନେ ଯଥାକ୍ରମେ ପଠାଣ ଏବଂ ନାଗା ଉପଜାତିର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ ।

ବ୍ରିଟିଶ୍ ଔପନିବେଶିକ ଶାସକବର୍ଗ ଓ ଆଫ୍‌ଗାନିସ୍ତାନର ଅମିର୍ ଆବ୍ଦୁରରହମାନ୍‌ଙ୍କ ମଧ୍ୟରେ ୧୮୯୩ ଖ୍ରୀଷ୍ଟାବ୍ଦରେ ସୀମାନ୍ତ ଚୁକ୍ତି ସଂପାଦିତ ହେଲା ପରେ ବିଶେଷ ଭାବେ ଆଫ୍‌ଗାନ ଉପଜାତିମାନଙ୍କର ସଂଗ୍ରାମ ତୀବ୍ର ହୋଇ ଉଠିଥିଲା । ଏହା ଫଳରେ "ଡୁରାଣ୍ଡ ଲାଇନ୍" ଦେଇ ବହୁସଂଖ୍ୟକ ଆଫ୍‌ଗାନ ଉପଜାତି ଆଫ୍‌ଗାନିସ୍ତାନରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲେ ଏବଂ ବ୍ରିଟିଶ୍ ପ୍ରଭାବକୁ ଆସି ଯାଇଥିଲେ । ସେଠାରେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ଦୁର୍ଗ ନିର୍ମାଣ ଓ ରାଜସ୍ୱ ପ୍ରବର୍ତ୍ତନ ପାହାଡ଼ୀ ଜାତିମାନଙ୍କର ସଶସ୍ତ୍ର ପ୍ରତିରୋଧର ସମ୍ମୁଖୀନ ହୋଇଥିଲା ।

ସେଠାକାର ଅସଂଖ୍ୟ ଗଣ ଅଭ୍ୟୁତ୍ଥାନ ମଧ୍ୟରେ ୧୮୯୪, ୧୮୯୫ ଓ ୧୮୯୭ ଖ୍ରୀଷ୍ଟାବ୍ଦର ଘଟଣାଗୁଡ଼ିକ ଥିଲା ବୃହତ୍ତମ । କମାଣ ବାହିନୀ ସହ ବିଭିନ୍ନ ଧରଣର ମୋଟ ୪୦ ହଜାର ସୈନ୍ୟ ନିୟୋଗ ପରେ ବ୍ରିଟିଶ୍‌ମାନଙ୍କ ପକ୍ଷରେ ଏମାନଙ୍କୁ ଦମନ କରିବା ସମ୍ଭବ ହୋଇଥିଲା ।

କିନ୍ତୁ ପଠାଣ ଉପଜାତିମାନଙ୍କ ଦ୍ୱାରା ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ଓ ଉତ୍ତର-ପୂର୍ବ ସୀମାନ୍ତ ପ୍ରଦେଶରେ ବ୍ରିଟିଶ୍‌ମାନଙ୍କର ସାମରିକ ଓ ରାଜନୈତିକ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲେ ମଧ୍ୟ ତାହା କେବେ ଦୃଢ଼ ହୋଇ ନଥିଲା ।

## ବୁର୍ଜୁଆ ଜାତୀୟତାବାଦର ଉନ୍ମେଷ ଓ ତା'ର ବିଭିନ୍ନ ପ୍ରବଣତା

ଭାରତରେ ପୁଞ୍ଜିବାଦର ବିକାଶ ଏବଂ ଏକ ବୁର୍ଜୁଆ ଶ୍ରେଣୀର ଉନ୍ମେଷ ଫଳରେ ବୁର୍ଜୁଆମାନଙ୍କର ଜାତୀୟ ଆନ୍ଦୋଳନର ସୂତ୍ରପାତ ଘଟିଥିଲା । ଔପନିବେଶିକତା ବିରୋଧୀ ଓ ସାମ୍ରାଜ୍ୟବାଦ ବିରୋଧୀ ଗଣ ଆନ୍ଦୋଳନର ପ୍ରଭାବ ଭାରତୀୟ ବୁର୍ଜୁଆମାନଙ୍କର ରାଜନୈତିକ ରୂପ ପରିଗ୍ରହଣକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ଭାରତର ବୁର୍ଜୁଆ ଜାତୀୟତାବାଦର ବିକାଶ ଦୁଇଟି ପର୍ଯ୍ୟାୟ ମଧ୍ୟ ଦେଇ ଗତି କରିଥିଲା । ଊନବିଂଶ ଶତାବ୍ଦୀର ଷାଠିଏ ଓ ସତୁରି ଦଶକ ମଧ୍ୟରେ ଦେଶର ବିଭିନ୍ନ ଅଂଶରେ ବୁର୍ଜୁଆ ଓ ଜମିଦାରମାନଙ୍କ ସ୍ଥାନୀୟ ସାମାଜିକ-ରାଜନୈତିକ ସଂଗଠନ ଗଢ଼ି ଉଠିଥିଲା । ଅଶି ଦଶକରେ ଏହାର ଦେଶବ୍ୟାପୀ ଐକ୍ୟ ସାଧନ ଥିଲା ବୁର୍ଜୁଆ-ଜାତୀୟ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ।

### ଷାଠିଏ ଏବଂ ସତୁରି ଦଶକର ବୁର୍ଜୁଆ-ଜାତୀୟ ଆନ୍ଦୋଳନ

ବଙ୍ଗଳା ଏବଂ ବମ୍ବେ ଭଳି ଅର୍ଥନୈତିକ ଭାବେ ଉନ୍ନତତର ପ୍ରଦେଶରେ ବୁର୍ଜୁଆ ଓ ଜମିଦାରମାନଙ୍କର ପ୍ରଥମ ସାମାଜିକ-ରାଜନୈତିକ ସଂଗଠନଗୁଡ଼ିକ ଗଢ଼ି ଉଠିଥିଲା । ସେଇ ବ୍ରିଟିଶ

ଦଶକରୁ କଲିକତାର ବ୍ରିଟିଶ୍ ଇଣ୍ଡିଆନ ଆସୋସିଏସନ୍ ଓ ବମ୍ବେ ପ୍ରେସିଡେନ୍‌ସି ଆସୋସିଏସନ୍ ସକ୍ରିୟ ଥିଲା । ଏହି ସଂଗଠନ ଦୁଇଟି ଶକ୍ତିଶାଳୀ ବଣିକ ଓ ସହଯୋଗୀ ବ୍ୟବସାୟୀ ସମେତ ବୁର୍ଜୁଆ ଓ ଜମିଦାର ଶ୍ରେଣୀଜାତ ଉଚ୍ଚ ସ୍ତରର ବୁଦ୍ଧିଜୀବୀମାନଙ୍କ ସ୍ୱାର୍ଥ ରକ୍ଷା କରୁଥିଲେ । ତା'ଛଡ଼ା, ଲକ୍ଷ୍ୟ କରିବା କଥା ଯେ, ବ୍ରିଟିଶ୍ ଇଣ୍ଡିଆନ ଆସୋସିଏସନ୍‌ରେ ବଙ୍ଗଳାର ଉଦାରନୈତିକ ଜମିଦାରମାନେ ଖୁବ୍ ପ୍ରଭାବଶାଳୀ ଥିଲେ ।

ଏହି ସଂଗଠନଗୁଡ଼ିକର ଅର୍ଥନୈତିକ କର୍ମସୂଚୀରେ କର ଏବଂ ଔପନିବେଶିକ ପ୍ରଶାସନର ବ୍ୟୟ ହ୍ରାସ କରିବାର ଦାବି ଅନ୍ତର୍ଭୁକ୍ତ ହୋଇଥିଲା । ଏଗୁଡ଼ିକର ରାଜନୈତିକ କର୍ମସୂଚୀ ଥିଲା ଖୁବ୍ ସୀମିତ : ଭାରତୀୟ ସମାଜର ଉଚ୍ଚ ସ୍ତରଗୁଡ଼ିକ ପାଇଁ ୟୁରୋପୀୟ ଶିକ୍ଷାର ଅଧିକ ସୁବିଧା ସୁଯୋଗ ଆଦାୟ କରିବା (ଔପନିବେଶିକ ପ୍ରଶାସନରେ ପଦୋନ୍ନତି) ଏବଂ ଦେଶରେ ବ୍ୟାପକ ଭାବେ ପ୍ରଚଳିତ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ପ୍ରତିବାଦ ।

ଗଣ ଆନ୍ଦୋଳନ ଫଳରେ ଔପନିବେଶିକମାନଙ୍କ ସହିତ ଜାତୀୟତାବାଦୀମାନଙ୍କ ମଧ୍ୟରେ ଥିବା ମଧ୍ୟପନ୍ଥୀ ଅଂଶର ଘନିଷ୍ଠ ଯୋଗାଯୋଗ ବୃଦ୍ଧି ପାଉଥିଲା ।

ଜାତୀୟ ମୁକ୍ତି ଆନ୍ଦୋଳନର ଗତିବେଗ ବୃଦ୍ଧି ପାଇବାର ପରିପ୍ରେକ୍ଷିତରେ ପୁରୁଣା ସଂଗଠନଗୁଡ଼ିକ ସାମାଜିକ ଦିଗରୁ ତାତ୍ପର୍ଯ୍ୟହୀନ ହୋଇ ପଡ଼ୁଥିଲେ । ଏହି ଭାବେ ବୁର୍ଜୁଆ ଜାତୀୟତାବାଦୀମାନଙ୍କ ପାଇଁ ନୂତନ, ଆଉରି ର୍‌ୟାଡିକାଲ, ସଂଗଠନ ସ୍ଥାପନ କରିବାର ବସ୍ତୁଗତ ଆବଶ୍ୟକତା ଦେଖା ଦେଇଥିଲା ।

୧୮୭୦ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରରେ "ପୁନା ସାର୍ବଜନୀନ ସଭା" ଏବଂ ୧୮୭୬ ଖ୍ରୀଷ୍ଟାବ୍ଦରେ କଲିକତାର ଇଣ୍ଡିଆନ ଆସୋସିଏସନ ଗଠିତ ହୋଇଥିଲା । ଏହି ସଂଗଠନ ଦୁଇଟି ଭାରତୀୟ ବୁର୍ଜୁଆମାନଙ୍କର ଅର୍ଥନୈତିକ ଓ ରାଜନୈତିକ ସ୍ୱାର୍ଥରକ୍ଷା ପାଇଁ ଅଧିକ ମୁଖର ହୋଇ ଉଠୁଥିଲେ ।

ଏହି ନୂତନ ସଂଗଠନଗୁଡ଼ିକର ଏକାନ୍ତ ଜନ୍ମଲଗ୍ନରେ ଏମାନଙ୍କ ମଧ୍ୟରେ କୌଣସି ଐକ୍ୟ ନଥିଲା (ଏହି ଏକା ରକମର ଅବସ୍ଥା ସମଗ୍ର ବୁର୍ଜୁଆ-ଜାତୀୟ ଆନ୍ଦୋଳନର ଥିଲା) । ବୁର୍ଜୁଆ-ଜାତୀୟ ଆନ୍ଦୋଳନର ଆଭ୍ୟନ୍ତରୀଣ ଇତିହାସ ଯେଉଁ ଦୁଇଟି ପ୍ରଧାନ ପ୍ରବଣତାର ଉନ୍ମେଷ ଓ ବିକାଶ ଦ୍ୱାରା ସୂଚିହ୍ନିତ ହୋଇଛି, ସେ ଦୁଇଟି ହେଲା : ଉଦାରନୈତିକ ଓ ଗଣତାନ୍ତ୍ରିକ ପ୍ରବଣତା ।

୧୮୬୦ ଖ୍ରୀଷ୍ଟାବ୍ଦରୁ ଅଶି ଦଶକର ପ୍ରାରମ୍ଭ ପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନର ସଂଗଠନଗୁଡ଼ିକରେ ଉଦାରନୈତିକମାନଙ୍କର ପ୍ରାଧାନ୍ୟ ରହିଥିଲା । କାରଣ, ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କର ନିଜସ୍ୱ ସଂଗଠନ ସେତେବେଳେ ଗଢ଼ି ଉଠି ନଥିଲା ।

ବଙ୍ଗଳାର ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଏବଂ ବମ୍ବେ ପ୍ରେସିଡେନ୍‌ସିରେ ଦାଦାଭାଇ ନାରୋଜୀ ଓ ମହାଦେବ ଗୋବିନ୍ଦ ରଣଡେଙ୍କ ନେତୃତ୍ୱରେ ଉଦାରନୈତିକମାନେ ଔପନିବେଶିକ ସରକାର ନିକଟରେ ନୂତନ ଭାରତୀୟ ଶିଳ୍ପଗୁଡ଼ିକ ପ୍ରତି ସଂରକ୍ଷଣମୂଳକ ନୀତି ଅନୁସରଣ ଓ ରାଜସ୍ୱ ଓ ଔପନିବେଶିକ କର ହ୍ରାସର ଦାବି ଜଣାଇଥିଲେ । କୃଷି ନୀତି କ୍ଷେତ୍ରରେ ଜମିଦାରି ଅତୁଟ ରଖିବା (ଅବଶ୍ୟ, ରାଜସ୍ୱ ହ୍ରାସ କରି) ଏବଂ କ୍ରମଶଃ ବୃହଦାକାର ଜମିଦାରି (ପ୍ରୁସିଆର-ଜୁଙ୍କରମାନଙ୍କ ଭଳି) ଗଢ଼ି ତୋଳିବାର ପକ୍ଷପାତି ଥିଲେ ସେମାନେ ।

ବଡ଼ଲାଟ୍ ଓ ଲାଟ୍‌ମାନଙ୍କର ନେତୃତ୍ୱାଧୀନ ଆଲୋଚନା ସଭାଗୁଡ଼ିକରେ ଭାରତୀୟ ସମାଜର

ଧନୀ ଉଚ୍ଚ ଶ୍ରେଣୀର ପ୍ରତିନିଧିମାନଙ୍କ ସଂଖ୍ୟା ବୃଦ୍ଧି ଏବଂ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ପ୍ରତିବାଦ ମଧ୍ୟରେ ସେମାନଙ୍କ ରାଜନୈତିକ କର୍ମସୂଚୀ ସୀମିତ ଥିଲା । ସିଭିଲ ସର୍ଭିସ୍ ପରୀକ୍ଷାରେ ଯୋଗ ଦେବା ପାଇଁ ବୟସର ସୀମା ବୃଦ୍ଧି ଏବଂ ପରୀକ୍ଷାଟି ବ୍ରିଟେନ୍ ଏବଂ ଭାରତ ଉଭୟ ଜାଗାରେ କରିବାକୁ ସେମାନେ ଦାବି କରୁଥିଲେ ।

ଔପନିବେଶିକମାନେ ବୁର୍ଜୁଆ ପରିବାରର ତରୁଣ ଇଂରେଜମାନଙ୍କର ସ୍ୱାର୍ଥ ରକ୍ଷା କରିବା ଦୃଷ୍ଟିରୁ ଔପନିବେଶିକ ଶାସନ ଯନ୍ତ୍ରର ଉଚ୍ଚ ବେତନଯୁକ୍ତ ଚାକିରିଗୁଡ଼ିକରେ ସେମାନଙ୍କର ଏକଚାଟିଆ ଅଧିକାର ବଜାଏ ରଖିବାକୁ ଚେଷ୍ଟା କରୁଥିଲେ ବୋଲି ଏହି ଶେଷୋକ୍ତ ଦାବିଟି ଉପସ୍ଥାପିତ କରାଯାଇଥିଲା । ତେଣୁ ଉକ୍ତ ପରୀକ୍ଷା ପାଇଁ ସର୍ବୋଚ୍ଚ ୨୨ ବର୍ଷ ବୟସର ସୀମା ନିର୍ଦ୍ଧାରିତ ଥିଲା ଏବଂ ଏହା କେବଳ ଇଂଲଣ୍ଡରେ ଅନୁଷ୍ଠିତ ହେଉଥିଲା । ବ୍ୟବସ୍ଥାଟି ଭାରତୀୟ ବୁଦ୍ଧିଜୀବୀମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଭାରତୀୟ ସିଭିଲ ସର୍ଭିସ୍‌ରେ ଯୋଗ ଦାନର ସୁଯୋଗରୁ ବଞ୍ଚିତ କରୁଥିଲା । ତତ୍‌କାଳୀନ ଭାରତୀୟମାନେ ବ୍ରିଟେନ୍‌ସ୍ଥ ଛାତ୍ରମାନଙ୍କ ଅପେକ୍ଷା ଅଧିକ ବୟସରେ ସ୍ନାତକ ବା ଗ୍ରାଜୁଏଟ ହେଉଥିଲେ । ତା'ଛଡ଼ା ବ୍ୟୟ ବହୁଳତା ଏବଂ ଜଟିଳତା ଦୃଷ୍ଟିରୁ ସେତେବେଳେ ଅତି ସମୃଦ୍ଧ ଭାରତୀୟ ପରିବାରଗୁଡ଼ିକର ସନ୍ତାନମାନଙ୍କ ପକ୍ଷରେ ବି ବ୍ରିଟେନ୍‌କୁ ଯିବା ମୋଟେ ସହଜ ସାଧ୍ୟ ନଥିଲା ।

ଭାରତୀୟ ଉଦାରନୈତିକମାନଙ୍କର କର୍ମନୀତି ମଧ୍ୟ ସେମାନଙ୍କ ରାଜନୈତିକ କର୍ମସୂଚୀ ଭଳି ମଧ୍ୟପନ୍ଥୀ ଓ ସତର୍କତାମୂଳକ ଥିଲା । ଜାତୀୟ ଆନ୍ଦୋଳନର ମଧ୍ୟପନ୍ଥୀମାନେ ପାର୍ଲିଆମେଣ୍ଟ ଏବଂ ବ୍ରିଟିଶ୍ ଔପନିବେଶିକ କର୍ତ୍ତୃପକ୍ଷଙ୍କ ନିକଟରେ ଦରଖାସ୍ତ ପେଶ୍ କରିବା, ବଡ଼ଲାଟ୍‌ଙ୍କ ନିକଟକୁ ବା ବ୍ରିଟେନ୍‌କୁ ପ୍ରତିନିଧି ପ୍ରେରଣ କରିବା, ସଂବାଦପତ୍ର ଜରିଆରେ ନରମ ପ୍ରତିବାଦ କରିବା, ଜାତୀୟ ସଂଗଠନଗୁଡ଼ିକରେ ପ୍ରସ୍ତାବ ଗ୍ରହଣ ଭଳି ସଂଗ୍ରାମ ଚଳାଉଥିଲେ ।

ଉଦାରନୈତିକମାନେ ଗଣ ବିକ୍ଷୋଭର ପ୍ରବଳ ବିରୋଧିତା କରୁଥିଲେ ଏବଂ ସେମାନେ ଏ ଦେଶରେ ଔପନିବେଶିକ ଶାସନକୁ ବଜାଏ ରଖିବାର ପକ୍ଷପାତୀ ଥିଲେ ।

କିନ୍ତୁ ଜାତୀୟ ଆନ୍ଦୋଳନ ମଧ୍ୟରେ ଏକ ବାମପନ୍ଥୀ, ର୍‌ୟାଡିକାଲ ଅଂଶ କ୍ରମଶଃ ଶକ୍ତିଶାଳୀ ହୋଇ ଉଠୁଥିଲା । ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନେ ଥିଲେ ବଣିକ ବୁର୍ଜୁଆମାନଙ୍କର ଅଧସ୍ତନ ସ୍ତର ଓ କ୍ଷୁଦ୍ର କାରଖାନା ମାଲିକ ଏବଂ ଶିକ୍ଷକ, କିରାଣୀ, ଡାକ୍ତର, ଆଦି ସ୍ୱଳ୍ପ ବେତନଭୁକ୍ତ ବୁଦ୍ଧିଜୀବୀମାନଙ୍କର ପ୍ରତିନିଧି । ତା'ଛଡ଼ା ସେମାନେ ଦାରିଦ୍ର୍ୟଗ୍ରସ୍ତ ସାଧାରଣ ଜମିଦାର ଏବଂ କୃଷକମାନଙ୍କର ଧନୀ ସ୍ତରଗୁଡ଼ିକ ସହିତ ଯୋଗାଯୋଗ ରଖୁଥିଲେ ।

ଉଦାରନୈତିକମାନଙ୍କୁ ବିରୋଧ କରୁଥିବା ବଙ୍ଗଳାର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନେ ଜନସାଧାରଣଙ୍କ ସାମନ୍ତ ବିରୋଧୀ ସଂଗ୍ରାମ ପ୍ରତି ବେଶ୍ ସହାନୁଭୂତିଶୀଳ ଥିଲେ । "ନୀଳ ବିଦ୍ରୋହ" ସମୟର ଲେଖକ ଓ ଗଣତନ୍ତ୍ରବାଦୀ ଦୀନବନ୍ଧୁ ମିତ୍ର ତାଙ୍କ "ନୀଳ ଦର୍ପଣ" ନାଟକରେ ନିର୍ଯ୍ୟାତନମୂଳକ ଚୁକ୍ତି ବ୍ୟବସ୍ଥାର ରୂପ ଉଦ୍‌ଘାଟନ କରିଥିଲେ । ନାଟକଟି ବଙ୍ଗଳା ସମାଜର ପ୍ରଗତିଶୀଳ ଅଂଶ ଉପରେ ଗଭୀର ପ୍ରଭାବ ପାତ କରିଥିଲା । ପାବନାର ଅଭ୍ୟୁତ୍‌ଥାନ ବେଳେ ୧୮୭୩ ଖ୍ରୀଷ୍ଟାବ୍ଦରେ ମୀର୍ ମସାରଫ୍ ହୋସେନ "ଜମିଦାର ଦର୍ପଣ" ନାଟକଟିରେ ଜମିଦାର-ମାନଙ୍କ ଅତ୍ୟାଚାର ଉପରେ ପ୍ରଚୁର ଆଲୋକପାତ କରିଥିଲେ । ଗ୍ରାମଗ୍ରାମାନ୍ତରର କୃଷକ

ଅଭିନେତାମାନଙ୍କ ସାହାଯ୍ୟରେ ଅନୁଷ୍ଠିତ ଏହି ନାଟ୍ୟାଭିନୟ ବଙ୍ଗଳାର ଭଦ୍ରମାନଙ୍କ ମଧ୍ୟରେ ବୈପ୍ଳବିକ ଦୃଷ୍ଟିଭଙ୍ଗି ପ୍ରସାର ଦିଗରେ ସହାୟକ ହୋଇଥିଲା

ବଙ୍ଗଳାର ଜାତୀୟତାବାଦୀ ବାମପନ୍ଥୀମାନେ ନିଶ୍ଚିତ ଥିଲେ ଯେ, କୃଷକମାନଙ୍କ ଆନ୍ଦୋଳନ ପ୍ରଶାସନ ବ୍ୟବସ୍ଥାର ପରିବର୍ତ୍ତନ ଘଟାଇବ, ଔପନିବେଶିକ ଶୋଷଣକୁ ଦୁର୍ବଳ କରିବ ଏବଂ ଶେଷକୁ ତାକୁ ଉତ୍ଖାତ କରିଦେବ ।

ଭାରତର ବୁର୍ଜୁଆ ବିକାଶର ସମର୍ଥକମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ଅଟଳ ରହିବା ହେତୁ ବଙ୍ଗଳାର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କର ସାମାଜିକ-ରାଜନୈତିକ ଦୃଷ୍ଟିଭଙ୍ଗିର ଏହି ସାମନ୍ତବିରୋଧୀ ବୈଶିଷ୍ଟ୍ୟଟି ଗଢ଼ି ଉଠିଥିଲା ।

ଭାରତୀୟ ପେଟି-ବୁର୍ଜୁଆ ଯୁବକମାନଙ୍କର ବ୍ୟାପକ ସ୍ତର ମଧ୍ୟରେ ଦେଶାତ୍ମବୋଧକ ଶିକ୍ଷା ପ୍ରସ୍ତର ମଧ୍ୟରେ ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନେ ସେମାନଙ୍କ ପ୍ରଧାନ କର୍ମ କ୍ଷେତ୍ର ଖୋଜି ପାଇଥିଲେ । ଏଇଥିପାଇଁ ସଂବାଦପତ୍ରରେ ନିଜ ଆଦର୍ଶ ପ୍ରସ୍ତରକୁ ସେମାନେ ପ୍ରଥମ ଅଗ୍ରାଧିକାର ଦେଇଥିଲେ । ଘୋଷ୍ ଭ୍ରାତୃବୃନ୍ଦ, ହରିଶ୍ଚନ୍ଦ୍ର ମୁଖୋପାଧ୍ୟାୟ, ତତ୍କାଳୀନ ପ୍ରଖ୍ୟାତ ଲେଖକ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ଏବଂ ଅନ୍ୟାନ୍ୟ ଅନେକ ସେମାନଙ୍କ ଦ୍ୱାରା ପ୍ରକାଶିତ ସଂବାଦପତ୍ର ଓ ସାମୟିକୀଗୁଡ଼ିକରେ ପେଟି-ବୁର୍ଜୁଆ ଜାତୀୟତାବାଦର ଆଦର୍ଶ ପ୍ରସ୍ତର କରୁଥିଲେ । ଉଦାରନୈତିକମାନଙ୍କ ଠାରୁ ସେମାନଙ୍କର କୌଣସି ପୃଥକ୍ ରାଜନୈତିକ ସଂଗଠନ ନଥିଲା ଏବଂ ଏହିଥିରେ ସେମାନଙ୍କର ଦୁର୍ବଳତା ନିହିତ ଥିଲା । ବଙ୍ଗଳା ପରେ ଭାରତର ଜାତୀୟ ଆନ୍ଦୋଳନର ଦ୍ୱିତୀୟ କେନ୍ଦ୍ର ହିସାବରେ ଚିହ୍ନିତ ମହାରାଷ୍ଟ୍ରର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ କ୍ଷେତ୍ରରେ ଏହାର କୌଣସି ବ୍ୟତିକ୍ରମ ଘଟି ନଥିଲା ।

ଏଠାକାର ବାମପନ୍ଥୀ, ର୍ୟାଡିକାଲ ଜାତୀୟତାବାଦର ଉନ୍ମେଷ ସହିତ ପ୍ରଖ୍ୟାତ ଭାରତୀୟ ବିପ୍ଳବୀ ଓ ଗଣତନ୍ତ୍ରବାଦୀ ବାଳଗଙ୍ଗାଧର ତିଳକଙ୍କ (୧୮୫୬-୧୯୨୦) ନାମଟି ବିଶେଷ ଭାବେ ଜଡ଼ିତ । ମରହଟ୍ଟୀ ବ୍ରାହ୍ମଣମାନଙ୍କର ପ୍ରାଚୀନ ଏକ ବଂଶର ସନ୍ତାନ, ତିଳକ ତରୁଣ ବୟସରୁ ଶିବାଜୀଙ୍କ କର୍ତ୍ତୃକ ପ୍ରଥମ ମରହଟ୍ଟା ରାଜ୍ୟ ପ୍ରତିଷ୍ଠା ସମେତ ମରହଟ୍ଟା ମୁକ୍ତି ଆନ୍ଦୋଳନର ସମସ୍ତ ଐତିହ୍ୟ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ତାଙ୍କ ଦ୍ୱାରା ପରିଗ୍ଳଳିତ ରାଜନୈତିକ ଆନ୍ଦୋଳନଗୁଡ଼ିକ ଏହି ଜାତୀୟ ଐତିହ୍ୟ ଯୁକ୍ତ ଥିଲା । କଲେଜରେ ପାଠ ପଢ଼ିଲା ବେଳେ ସେ ଅନ୍ୟାନ୍ୟ ସହପାଠୀମାନଙ୍କ ସହିତ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ ଓ ଜାତୀୟ ପରମ୍ପରା ଅନୁସାରେ ମରହଟ୍ଟା ଯୁବକମାନଙ୍କ ପାଇଁ ଏକ ସ୍କୁଲ ପ୍ରତିଷ୍ଠା କରିବାକୁ ପରିକଳ୍ପନା କରିଥିଲେ । ୧୮୮୦ ଖ୍ରୀଷ୍ଟାବ୍ଦରେ ପୁନାରେ "ନିଉ ଇଂଲିଶ୍ ସ୍କୁଲ" ପ୍ରତିଷ୍ଠିତ ହୋଇଥିଲା ଏବଂ ପରବର୍ତ୍ତୀ କାଳରେ ତିଳକ ଯଥାକ୍ରମେ ମରହଟ୍ଟୀ ଓ ଇଂରେଜୀରେ "କେଶରୀ" ଓ "ମରହଟ୍ଟା" ନାମକ ଦୁଇଟି ସଂବାଦପତ୍ର ପ୍ରକାଶ କରିଥିଲେ ।

ଏହିସବୁ ସମ୍ବାଦପତ୍ରରେ ତିଳକ ଓ ତାଙ୍କ ସହଯୋଗୀମାନଙ୍କ ଦ୍ୱାରା ପ୍ରକାଶିତ ପ୍ରବନ୍ଧ ଏବଂ ସ୍କୁଲରେ ପ୍ରଦତ୍ତ ବକ୍ତୃତାମାନଙ୍କୁ ପରୀକ୍ଷା କଲେ ଦେଖାଯାଏ ଯେ, ସେମାନେ ସର୍ବଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ଅଟଳ ସମର୍ଥକ ଥିଲେ । ବ୍ରିଟିଶ୍ ପଣ୍ୟ ବର୍ଜନ ମଧ୍ୟରେ ତିଳକ ଭାରତୀୟ ଶିଳ୍ପପତିମାନଙ୍କର ସ୍ୱାର୍ଥ ରକ୍ଷାର ପଥ ଖୋଜି ପାଇଥିଲେ ।

ବଙ୍ଗଳାର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ ଭଳି ତିଳକ ମଧ୍ୟ ଜନସାଧାରଣଙ୍କ ବୈଷୟିକ

ଅବସ୍ଥାର ଉନ୍ନୟନ ସପକ୍ଷରେ ପ୍ରଘର କରୁଥିଲେ । କିନ୍ତୁ କୃଷି ସମସ୍ୟାର ସମାଧାନ ପାଇଁ ସେ କୌଣସି ସୁସ୍ପଷ୍ଟ କର୍ମସୂଚୀ ଦେଇ ପାରି ନଥିଲେ ।

ଔପନିବେଶିକ ଶାସନ ବିରୁଦ୍ଧରେ ଗଣ ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ହେବା ସତ୍ତ୍ୱେ ତିଳକ ସ୍ୱାଧୀନତା ଲାଭର ପଥ ହିସାବରେ ସଶସ୍ତ୍ର ସଂଗ୍ରାମରେ ବିଶ୍ୱାସ କରୁ ନଥିଲେ । ସ୍ୱାଧୀନତା ଲଭ ପାଇଁ ଭାବୀ ସଂଗ୍ରାମ ନିମିତ୍ତ "ଜନସାଧାରଣଙ୍କର" (ଅର୍ଥାତ୍, ସମାଜର ପେଟି-ବୁର୍ଜୁଆର ବ୍ୟାପକ ସ୍ତରର) ପ୍ରସ୍ତୁତିକୁ ତିଳକ ଓ ତାଙ୍କ ଅନୁଗାମୀମାନେ ଏହି ପର୍ଯ୍ୟାୟର ପ୍ରଧାନ କାର୍ଯ୍ୟ ବୋଲି ବିବେଚନା କରୁଥିଲେ ।

ଉନବିଂଶ ଶତାବ୍ଦୀର ସତୁରି ଏବଂ ଅଶି ଦଶକଗୁଡ଼ିକରେ ବଙ୍ଗଳା ଓ ମହାରାଷ୍ଟ୍ର ବାହାରେ ଭାରତର ଅନ୍ୟାନ୍ୟ ଅଂଶରେ ଜାତୀୟ ଆନ୍ଦୋଳନର ବିକାଶ ଏହି ପର୍ଯ୍ୟାୟରେ ପହଞ୍ଚି ପାରି ନଥିଲା ।

## ସର୍ବଭାରତୀୟ ଜାତୀୟ ଆନ୍ଦୋଳନର ସୂତ୍ରପାତ ଓ ଜାତୀୟ କଂଗ୍ରେସ ପ୍ରତିଷ୍ଠା

ଭାରତରେ ଜାତୀୟ ମୁକ୍ତି ଆନ୍ଦୋଳନର ବିକାଶକୁ ବ୍ରିଟିଶ୍ ଔପନିବେଶିକମାନେ ନିର୍ଯ୍ୟାତନମୂଳକ ପନ୍ଥା ଦ୍ୱାରା ବାଧା ଦେବାକୁ ଚେଷ୍ଟା କରିଥିଲେ । ୧୮୭୮ ଖ୍ରୀଷ୍ଟାବ୍ଦରେ ବଡ଼ଲାଟ୍ ଲିଟନ୍‌ଙ୍କ (୧୮୭୬-୧୮୮୦) ଦ୍ୱାରା ଗୃହୀତ ଭାରତୀୟ ଅସ୍ତ୍ର ଆଇନ୍ ଅନୁସାରେ ଭାରତୀୟମାନେ, ଏପରିକି, ବନ୍ୟ ଜନ୍ତୁ କବଳରୁ ଆତ୍ମରକ୍ଷା କରିବା ପାଇଁ ଆଗ୍ନେୟାସ୍ତ୍ର ରଖିବାର ଅଧିକାର ହରାଇଥିଲେ । ସେଇ ବର୍ଷ ସଂବାଦପତ୍ର ସଂକ୍ରାନ୍ତ ଅତି କଠିଣ ଧରଣର ଆଇନ୍ ପାଶ୍ କରି ଭାରତୀୟ ଭାଷାମାନଙ୍କରେ ପ୍ରକାଶିତ ସବୁକିଛି ପାଇଁ ପ୍ରାଥମିକ ସେନ୍‌ସର ବା ଯାଞ୍ଚ ବ୍ୟବସ୍ଥା ପ୍ରବର୍ତ୍ତନର ଏକ ନିର୍ଯ୍ୟାତନମୂଳକ ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା ।

କିନ୍ତୁ ଏହିସବୁ ନିର୍ଯ୍ୟାତନ ଆଶାନୁରୂପ ଫଳ ଦେଲା ନାହିଁ । ତେଣୁ ୧୮୮୦ ଖ୍ରୀଷ୍ଟାବ୍ଦରେ ବ୍ରିଟେନ୍‌ରେ ଲିବରାଲ ପାର୍ଟି କ୍ଷମତାକୁ ଆସିଲା ପରେ ସେମାନେ ବୁର୍ଜୁଆ ଏବଂ ଜମିଦାର ଶ୍ରେଣୀର ଭାରତୀୟ ଜାତୀୟତାବାଦୀମାନଙ୍କ ସହିତ ବୁଝାମଣା ଆରମ୍ଭ କରିଦେଲେ । ନୂତନ ବଡ଼ଲାଟ୍ ରିପନ୍ (୧୮୮୦-୧୮୮୪) ସଂବାଦପତ୍ର ଆଇନ୍‌ଟିକୁ ପ୍ରତ୍ୟାହାର କରିନେଲେ ।

୧୮୮୨ ଖ୍ରୀଷ୍ଟାବ୍ଦରେ ବଡ଼ ବଡ଼ ସହରଗୁଡ଼ିକର ମିଉନିସିପାଲିଟି ପରିଷଦର ଅଧିକାଂଶ ସଦସ୍ୟ ବିତ୍ତଶାଳୀମାନଙ୍କର ଉର୍ଦ୍ଧ୍ୱତନ ସ୍ତର ଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା । ଭାରତୀୟ ଉଦାରନୈତିକମାନଙ୍କ ସହିତ ବୁଝାମଣା ସମୟରେ ଆଇନ୍ କ୍ଷେତ୍ରରେ ବର୍ଣ୍ଣବୈଷମ୍ୟର ଉଚ୍ଛେଦ ପାଇଁ କାର୍ଯ୍ୟନିର୍ବାହୀ ପରିଷଦର ଜନୈକ ସଦସ୍ୟ ଏଲବର୍ଟଙ୍କ ଦ୍ୱାରା ଉପସ୍ଥାପିତ ଖସଡ଼ାଟି ରିପନ୍‌ଙ୍କ ଅନୁମୋଦନ ଲାଭକଲା । କିନ୍ତୁ ବ୍ରିଟିଶ୍ ଅମଲାତନ୍ତ୍ର ଓ ବ୍ରିଟିଶ୍ ବ୍ୟବସାୟୀମାନଙ୍କର ବିରୋଧିତା ଫଳରେ ପାର୍ଲିଆମେଣ୍ଟରେ ଏହା ପାଶ୍ ହେବାର ସମସ୍ତ ସମ୍ଭାବନା ନଷ୍ଟ ହୋଇଥିଲା ଏବଂ ରିପନ୍ ଅବସର ଗ୍ରହଣ କରିଥିଲେ । ଏହି ଦାବି ସପକ୍ଷରେ ପରିଗ୍ଳାଳିତ ଆନ୍ଦୋଳନ ଦ୍ୱାରା ଭାରତୀୟ ଜାତୀୟତାବାଦୀମାନେ ଐକ୍ୟବଦ୍ଧ ହୋଇଥିଲେ ଏବଂ ଦେଶ ସାରା ପ୍ରଘର ଅଭିଯାନ ଚଳାଇଥିଲେ ।

ସତୁରି ଦଶକରେ ଓ ଅଶି ଦଶକର ପ୍ରାରମ୍ଭରେ ଭାରତରେ ଏକ ନୂତନ ଜାତି ଉଗ୍ରର

ଆବିର୍ଭାବ ଘଟିଥିଲା । ଔପନିବେଶିକମାନେ ସେତେବେଳେ ବୁର୍ଜୁଆ ଜାତୀୟତାବାଦୀମାନଙ୍କର ଏକ ବାମପନ୍ଥୀ ଅଂଶ ସହିତ ଗଣ ଆନ୍ଦୋଳନର ସଂଯୋଗର ସମ୍ଭାବନା ଦ୍ୱାରା ବିଶେଷ ଭାବେ ଆତଙ୍କିତ ହୋଇ ଉଠିଥିଲେ । ଜନୈକ ସରକାରୀ କର୍ମଚାରୀ ଆଲନ୍ ହ୍ୟୁମ୍ ତାଙ୍କର ଏକ ଆବେଦନପତ୍ରରେ ଲେଖିଥିଲେ, ଶିକ୍ଷିତ ସଂପ୍ରଦାୟର ପ୍ରତିନିଧିମାନେ ଗଣ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କଲେ, ଏସବୁ ଅଧିକ ଉଦ୍ଦେଶ୍ୟମୁଖୀ, ଏପରିକି ଏକ ଜାତୀୟ ବିଦ୍ରୋହର ରୂପ ଧାରଣ କରିପାରେ ।

ଉଦାରନୈତିକମାନଙ୍କ ନେତୃତ୍ୱରେ ଏକ ସର୍ବଭାରତୀୟ ରାଜନୈତିକ ଦଳ ଗଠନ ସପକ୍ଷରେ ଔପନିବେଶିକମାନଙ୍କର ସମର୍ଥନ କାହିଁକି ଥିଲା, ଏଥିରୁ ସହଜରେ ବୁଝାଯାଏ ।

ବିଭିନ୍ନ ସାମାଜିକ-ରାଜନୈତିକ ଗୋଷ୍ଠୀର ପ୍ରତିନିଧିମାନଙ୍କ ମଧ୍ୟରେ ଘନିଷ୍ଠ ସଂଯୋଗ, ସତୁରି ଦଶକ ଶେଷରେ କ୍ରମଶଃ ବୃଦ୍ଧି ପାଇଥିଲା । ୧୮୮୩-୧୮୮୪ ଖ୍ରୀଷ୍ଟାବ୍ଦରେ ଜାତୀୟତାବାଦୀମାନଙ୍କର ଏକ ସର୍ବଭାରତୀୟ ସଂଗଠନ ଗଢ଼ିବାକୁ ପ୍ରଥମ ଉଦ୍ୟମ ଗ୍ରହଣ କରାଯାଇଥିଲା ।

ଶେଷକୁ ୧୮୮୫ ଖ୍ରୀଷ୍ଟାବ୍ଦରେ ବମ୍ବେରେ ଜାତୀୟ କଂଗ୍ରେସର ପ୍ରଥମ ସମ୍ମେଳନଟି ଆହୂତ ହେଲା । ଏହା ଥିଲା ଜମିଦାର ଓ ବୁର୍ଜୁଆମାନଙ୍କର ପ୍ରଥମ ସର୍ବଭାରତୀୟ ରାଜନୈତିକ ସଂଗଠନ । ଶାସକବର୍ଗଙ୍କର ଅନୁମୋଦନ ସହ ଏବଂ ବଡ଼ଲାଟ୍ ଡଫ୍‌ରିନ୍‌ଙ୍କ (୧୮୮୪-୧୮୮୮) ଅନୁରୋଧ କ୍ରମେ ହ୍ୟୁମ୍‌ଙ୍କୁ ସାଧାରଣ ସଂପାଦକ ରୂପେ ନିର୍ବାଚିତ କରି ଏହା ସ୍ଥାପିତ ହୋଇଥିଲା ।

ଜାତୀୟ କଂଗ୍ରେସ ଜାତୀୟତାବାଦୀ ଭାରତୀୟ ଜମିଦାର ଓ ବୁର୍ଜୁଆମାନଙ୍କର ଉଚ୍ଚ ସ୍ତରର ସ୍ୱାର୍ଥ ରକ୍ଷା କରିବାକୁ ଚେଷ୍ଟା କରିଥିଲା । କଂଗ୍ରେସର ପ୍ରଥମ ଛଅଟି ଅଧିବେଶନର ପ୍ରତିନିଧିମାନଙ୍କ ମଧ୍ୟରେ ଥିଲେ ଶତକଡ଼ା ୫୦ ଭାଗ ବୁର୍ଜୁଆ ଓ ଜମିମାଲିକ ଶ୍ରେଣୀର ବୁଦ୍ଧିଜୀବୀ, ୨୫ ଭାଗ ବ୍ୟବସାୟୀ ଓ ମହାଜନ ସଂପ୍ରଦାୟର ପ୍ରତିନିଧି ଏବଂ ୨୫ ଭାଗ ଜମିଦାର ।

ଜାତୀୟ ଆନ୍ଦୋଳନର ଉଦାରନୈତିକ ଅଂଶଟି କଂଗ୍ରେସର ନେତୃତ୍ୱ ନେଇଥିଲେ । କର୍ମସୂଚୀ କ୍ଷେତ୍ରରେ, ଅବଶ୍ୟ, ସେମାନେ କିଛି ପରିମାଣରେ ଆଗେଇ ଯାଇଥିଲେ—ଯଥା, ଜାତୀୟ ଶିଳ୍ପର ସଂରକ୍ଷଣ ଓ ଉନ୍ନୟନ, କର ହ୍ରାସ ଏବଂ ଭାରତରେ ସଂଗଠିତ ପୁଞ୍ଜିବାଦୀ ଋଣ ଦାନ ବ୍ୟବସ୍ଥା ଗଢ଼ି ତୋଳିବା ପାଇଁ ଦୃଢ଼ ଦାବି କରାଯାଇଥିଲା । ଭାରତୀୟ ଶିଳ୍ପ ପ୍ରତି ଔପନିବେଶିକମାନଙ୍କର ଶୁଳ୍କ ନୀତିର ବୈଷମ୍ୟମୂଳକ ଆଚରଣ ବିରୁଦ୍ଧରେ କଂଗ୍ରେସର ପ୍ରତିବାଦ ଆଉରି ଜୋରଦାର ହୋଇ ଉଠିଥିଲା । କଂଗ୍ରେସର ପୃଷ୍ଠପୋଷକତାରେ ଜାତୀୟ ଶିଳ୍ପୋନ୍ନୟନ ପାଇଁ ଶିଳ୍ପ ସମ୍ମେଳନ ଓ ଶିଳ୍ପ ପ୍ରଦର୍ଶନୀ ଅନୁଷ୍ଠିତ ହେଲା । ସାରା ଦେଶରେ ଏକ ଅଭିନ୍ନ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ କରିବାର ଦାବି ମଧ୍ୟରେ କଂଗ୍ରେସର କୃଷି କର୍ମସୂଚୀ ସୀମିତ ଥିଲା ।

ଜନସାଧାରଣଙ୍କ ଠାରୁ ବିଛିନ୍ନ ଏହିସବୁ ଭାରତୀୟ ଉଦାରନୈତିକମାନେ ନିଜର ଜନସାଧାରଣଙ୍କୁ ଭୟ କରୁଥିଲେ । ୧୮୯୩ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ଏକ ଅଧିବେଶନରେ ନାରଜୀ ସରକାରକୁ ଦୃଢ଼ ଓ ନ୍ୟାୟ ପରାୟଣ ହେବାକୁ ଦାବି କରିଥିଲେ । ଆଇନ୍‌ବିରୋଧୀ ଓ ଜନସାଧାରଣଙ୍କର ଶାନ୍ତି ନଷ୍ଟ କରୁଥିବା ଶକ୍ତିଗୁଡ଼ିକୁ ଦୃଢ଼ ହସ୍ତରେ ଦମନ କରିବାକୁ ସେ ସରକାରର ଆଶୁ କର୍ତ୍ତବ୍ୟ ବୋଲି ଉଲ୍ଲେଖ କରିଥିଲେ ।

କଂଗ୍ରେସର ପ୍ରଧାନ ରାଜନୈତିକ ଦାବି ଥିଲା—ବ୍ୟବସ୍ଥାପକ ସଭାର ପରିସର ବିସ୍ତାର କରିବା ସଙ୍ଗେ ସଙ୍ଗେ ଭାରତୀୟ ବୁର୍ଜୁଆ ଏବଂ ଜମିମାଲିକମାନଙ୍କର ଊର୍ଦ୍ଧ୍ୱତନ ସ୍ତରର ନିର୍ବାଚିତ ସଂଖ୍ୟାଗରିଷ୍ଠ

ପ୍ରତିନିଧିମାନଙ୍କୁ ନେଇ ଏହାକୁ ଗଠନ କରାଯାଉ । ୧୮୯୨ ଖ୍ରୀଷ୍ଟାବ୍ଦରେ ଏହି ସ୍ତରଗୁଡ଼ିକର ପ୍ରତିନିଧିମାନଙ୍କ ସଂଖ୍ୟାକୁ କିଛି ପରିମାଣରେ ବୃଦ୍ଧି କରାଯାଇଥିଲା ।

ଜାତୀୟ କଂଗ୍ରେସ ପ୍ରତିଷ୍ଠା ପରେ ଜାତୀୟ ଆନ୍ଦୋଳନର ଅଂଶୀଦାର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ସଂଘାତ ତୀବ୍ରତର ହେବାକୁ ଲାଗିଲା । ନବେ ଦଶକର ମଧ୍ୟ ଭାଗରେ ତିଳକ "ପୁନା ସାର୍ବଜନୀନ ସଭାର" ଅଧିକାଂଶ ନେତୃବୃନ୍ଦଙ୍କର ସମର୍ଥନ ଲାଭ କରିଥିଲେ । ଇତିମଧ୍ୟରେ ସେ ଦେଶର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କର ସର୍ବଜନ ଶ୍ରଦ୍ଧେୟ ନେତା ହୋଇ ଉଠିଥିଲେ । "ମରହଟ୍ଟା" ପତ୍ରିକାରେ ଲିଖିତ ତାଙ୍କ ପ୍ରବନ୍ଧାବଳୀ ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ବାମପନ୍ଥୀ ଜାତୀୟତାବାଦୀ ବିକାଶ କ୍ଷେତ୍ରରେ ଗଭୀର ପ୍ରଭାବ ପକାଇଥିଲା ।

ତିଳକଙ୍କ ଉଦ୍ୟୋଗରେ ୧୮୯୫ ଖ୍ରୀଷ୍ଟାବ୍ଦରେ ହିନ୍ଦୁମାନଙ୍କ ଦେବତା ଗଣେଶ ଏବଂ ମରହଟ୍ଟାମାନଙ୍କର ଜାତୀୟ ବୀର ଶିବାଜୀଙ୍କ ସମ୍ମାନାର୍ଥେ ଗଣ ଉତ୍ସବର ଆୟୋଜନ ଆରମ୍ଭ ହୋଇଥିଲା । ଶୀଘ୍ର ଏହିସବୁ ଧର୍ମୀୟ ଅନୁଷ୍ଠାନ ରାଜନୈତିକ କର୍ମ କ୍ଷେତ୍ରରେ ପରିଣତ ହେଲା ଏବଂ ତିଳକଙ୍କ ଅନୁଗାମୀମାନେ ଜନସାଧାରଣଙ୍କ ମଧ୍ୟରେ ରାଜନୈତିକ ପ୍ରଚାର ପାଇଁ ଏସବୁର ସୁଯୋଗ ନେଇଥିଲେ । ବଙ୍ଗଳାରେ "ଶିବାଜୀ ଉତ୍ସବ" ନାମ ଦେଇ ଅନୁରୂପ ଉତ୍ସବ ସଂଗଠିତ ହୋଇଥିଲା ।

ତିଳକଙ୍କ ଅନୁଗାମୀମାନଙ୍କର ଏତାଦୃଶ ଧର୍ମୀୟ କାର୍ଯ୍ୟକଳାପରେ ହିନ୍ଦୁ ଧର୍ମର ନେତିବାଚକ ଦିଗଟି ମଧ୍ୟ ରହିଥିଲା । ଅଶି ଦଶକର ପ୍ରାରମ୍ଭରେ ବୁର୍ଜୁଆ ଜାତୀୟତାବାଦର ବିକାଶକୁ ରୋଧ କରିବା ଉଦ୍ଦେଶ୍ୟରେ ଏବଂ ବ୍ରିଟିଶ୍‌ମାନଙ୍କ ସକ୍ରିୟ ସମର୍ଥନରେ ମୁସଲିମ୍ ସାଂସ୍କୃତିକ ସଂଗଠନଗୁଡ଼ିକ ସେମାନଙ୍କ କାର୍ଯ୍ୟକଳାପକୁ ବୃଦ୍ଧି କରିଥିଲେ, ଅର୍ଥାତ୍, ଜାତୀୟ ଆନ୍ଦୋଳନରେ ହିନ୍ଦୁ-ମୁସଲିମ୍ ସଂଘାତର ଏକ ଉପାଦାନର ସଂଯୋଜନ ଘଟିଥିଲା ।

ମୁସଲିମ୍ ସାମନ୍ତ ଓ ଶକ୍ତିଶାଳୀ ବଣିକମାନଙ୍କର ଅଧିକ ସଚେତନ ଅଂଶର ନେତା ସୈୟଦ ଅହମଦ ଖାଁ ଏହି ଆନ୍ଦୋଳନର ନେତା ଥିଲେ । ମୁସଲମାନମାନଙ୍କ ମଧ୍ୟରେ ଶିକ୍ଷା ବିସ୍ତାର ପାଇଁ ବହୁ ସମିତି ଓ ଅଲିଗଡ଼ ବିଶ୍ୱବିଦ୍ୟାଳୟ ସେ ପ୍ରତିଷ୍ଠା କରିଥିଲେ । ଏହି ଶେଷୋକ୍ତ ପ୍ରତିଷ୍ଠାନଟି ଔପନିବେଶିକ ଶାସନ ଯନ୍ତ୍ରରେ କାର୍ଯ୍ୟ କରିବା ପାଇଁ ମୁସଲିମ୍ ତରୁଣମାନଙ୍କୁ ତାଲିମ୍ ଦେଉଥିଲା । ସୈୟଦ ଅହମଦ ଖାଁ ଥିଲେ ଔପନିବେଶିକ ଶାସନର ଦୃଢ଼ ସମର୍ଥକ ।

ଉତ୍ତର ଭାରତର ମୁସଲମାନ ସମାଜରେ ସୈୟଦ ଅହମଦ ଖାଁଙ୍କ ଅନୁଗାମୀମାନଙ୍କ ବ୍ୟତୀତ ଦିଲ୍ଲୀର ଅଦୂରବର୍ତ୍ତୀ ଦେଓବନ୍ଦକୁ କେନ୍ଦ୍ର କରି ଗଢ଼ି ଉଠିଥିବା ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କର ଏକ ସଂଗଠନ ମଧ୍ୟ ଯଥେଷ୍ଟ ସକ୍ରିୟ ଥିଲା । କିନ୍ତୁ ଏହି ଆନ୍ଦୋଳନ ଦ୍ୱାରା ପ୍ରକଟିତ ଧର୍ମୀୟ ପବଣତା ଦେଓବନ୍ଦ ଏବଂ ଅନ୍ୟାନ୍ୟ ସାମାଜିକ-ରାଜନୈତିକ ଜାତୀୟ ସଂଗଠନଗୁଡ଼ିକ ମଧ୍ୟରେ ଘନିଷ୍ଠ ସହଯୋଗିତାକୁ ଜଟିଳ କରି ପକାଉଥିଲା ।

ସତୁରି ଦଶକରୁ ପରବର୍ତ୍ତୀ ବର୍ଷଗୁଡ଼ିକରେ ହିନ୍ଦୁ-ମୁସଲିମ୍ ସଂଘର୍ଷରେ ଇନ୍ଧନ ଯୋଗାଇବବାଟା ବ୍ରିଟିଶ୍‌ମାନଙ୍କର "ବିଭେଦ ସୃଷ୍ଟି କରି ଶାସନ କର" ନୀତିର ଏକ ସ୍ଥାୟୀ ଲକ୍ଷଣରେ ପରିଣତ ହୋଇଥିଲା । ନବେ ଦଶକରେ ବ୍ରିଟିଶ୍‌ମାନେ ବମ୍ବେରେ ଏହି ଦୁଇ ସଂପ୍ରଦାୟ ମଧ୍ୟରେ ବ୍ୟାପକ ହତ୍ୟାଲୀଳା ସଂଗଠନ କରିବାରେ ସଫଳ ହୋଇଥିଲେ ।

୧୮୯୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ବିରୋଧିତାର ଶୀର୍ଷ ପର୍ଯ୍ୟାୟରେ ମହାରାଷ୍ଟ୍ରରେ ତିଳକଙ୍କ ଅନୁଗାମୀ ଘ୍ରପେକାର ଭ୍ରାତୃଦ୍ୱୟ ରଣ୍ଡ ନାମକ ଜଣେ ବ୍ରିଟିଶ୍ କର୍ମଚାରୀଙ୍କୁ ହତ୍ୟା କରିଥିଲେ । ଏହା ଫଳରେ ତିଳକଙ୍କୁ ଗିରଫ୍ କରାଯାଇ ଜେଲ ଦଣ୍ଡ ଦିଆଗଲା ।

ଊନବିଂଶ ଶତାବ୍ଦୀର ଶେଷରେ ଭାରତର ରାଜନୈତିକ ଚିତ୍ର ଖୁବ୍ ଜଟିଳ ହୋଇ ଉଠିଥିଲା । ଏହା ଥିଲା ଜାତୀୟ ମୁକ୍ତି ଆନ୍ଦୋଳନର ଏକ ନବ ପର୍ଯ୍ୟାୟର ସୂଚନା ।

# ଯୁଦ୍ଧପୂର୍ବ ସାମ୍ରାଜ୍ୟବାଦୀ କାଳ ତଥା ଏସିଆର ନବଜାଗରଣ ପର୍ଯ୍ୟାୟରେ ଭାରତବର୍ଷ (୧୮୯୭-୧୯୧୭)

## ବ୍ରିଟେନ୍ ଓ ଭାରତ ମଧ୍ୟରେ ତୀବ୍ରତର ଦ୍ୱନ୍ଦ୍ୱ

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଉଦ୍‌ଭୂତ ପ୍ରବଣତାଗୁଡ଼ିକ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତର ଅର୍ଥନୈତିକ ଓ ସାମାଜିକ ଜୀବନରେ ତୀବ୍ରତର ହୋଇ ଉଠୁଥିଲା । ଏହି ପ୍ରକ୍ରିୟା ମୂଳରେ ଥିଲା ପୁଞ୍ଜିବାଦର ବିକାଶ, ଯେଉଁଥି ପାଇଁ ଏହି ଉପମହାଦେଶରେ ବିଭିନ୍ନ ଶ୍ରେଣୀ ଏବଂ ଜାତିମାନଙ୍କ ମଧ୍ୟରେ ତୀବ୍ରତର ଦ୍ୱନ୍ଦ୍ୱ ଦେଖା ଦେଉଥିଲା ।

### ଔପନିବେଶିକ ଶୋଷଣର ତୀବ୍ରତା ବୃଦ୍ଧି

ଏହି ଶତାବ୍ଦୀର ପ୍ରାରମ୍ଭରେ ସାମ୍ରାଜ୍ୟବାଦର ଯୁଗ ଚରିତ୍ର ହିସାବରେ ଔପନିବେଶିକ ଲୁଣ୍ଠନର ରୂପ ଏବଂ ପଦ୍ଧତିର ଗୁରୁତ୍ୱ ଅତ୍ୟନ୍ତ ବୃଦ୍ଧି ପାଇଥିଲା ।

୧୮୯୩-୧୮୯୯ ଖ୍ରୀଷ୍ଟାବ୍ଦରେ ଔପନିବେଶିକ ସରକାର କର୍ତ୍ତୃକ ଏକ ଆର୍ଥିକ ସଂସ୍କାର ଫଳରେ ବ୍ରିଟେନ୍ ପାଇଁ କୃଷିଜାତ ସାମଗ୍ରୀ ଓ କଞ୍ଚାମାଲର ଯୋଗାଣଦାର ହିସାବରେ ଭାରତର ଭୂମିକା ଆଉରି ଦୃଢ଼ ହୋଇଥିଲା ଏବଂ ଏ ଦେଶରେ ବ୍ରିଟିଶ୍ ପୁଞ୍ଜିର ଅନୁପ୍ରବେଶକୁ ଏହା ସହଜତର କରିଥିଲା । ରୂପାଟଙ୍କା ତିଆରି କରୁଥିବା ଭାରତୀୟ ଟଙ୍କାଶାଳାଗୁଡ଼ିକୁ ବନ୍ଦ କରିଦେଇ ସେମାନେ ସେଠାରେ ପୂର୍ବତନ ରୌପ୍ୟ ମାନ ବଦଳରେ ସ୍ୱର୍ଣ୍ଣ ମାନ ପ୍ରବର୍ତ୍ତନ କଲେ । ବିନିମୟର ହାର ବୃଦ୍ଧି ସହ ଏହାକୁ ବ୍ରିଟିଶ୍ ପାଉଣ୍ଡ ଷ୍ଟାର୍‌ଲିଂର ଅଧୀନସ୍ଥ କରାଯାଇଥିଲା । ଏହି ବ୍ୟବସ୍ଥା ଫଳରେ ବ୍ରିଟେନ୍ ଓ ଭାରତ ମଧ୍ୟରେ ପଣ୍ୟ ସଞ୍ଚଳନର ଉନ୍ନତି ଘଟିଥିଲା ଏବଂ ଏଥି ସଙ୍ଗେ ସଙ୍ଗେ ଭାରତର ଆମଦାନି ଓ ରପ୍ତାନିକୃତ ପଣ୍ୟ ମଧ୍ୟରେ ମୂଲ୍ୟ ପାର୍ଥକ୍ୟ ବୃଦ୍ଧି ପାଇଥିଲା । ଏଥି ସାଥେ ସାଥେ ଅନ୍ୟାନ୍ୟ ଏସୀୟ ଦେଶମାନଙ୍କରେ ରୌପ୍ୟ ମୁଦ୍ରାର ମୂଲ୍ୟ ହ୍ରାସ ଘଟିବାରୁ ଏହି ନୂତନ ବ୍ୟବସ୍ଥା ସେମାନଙ୍କ ସହିତ ଭାରତର ସଂପର୍କକୁ ଜଟିଳ କରି ପକାଇଥିଲା । ବ୍ୟବସାୟ ଓ ଅସମ ବିନିମୟ ହେତୁ ଏହା ଦ୍ୱାରା କେବଳ ବ୍ରିଟିଶ୍ ରପ୍ତାନିକାରୀମାନେ ଲାଭବାନ ହେଉଥିଲେ । ଏହାର ଆଶୁ ପରିଣତି ସ୍ୱରୂପ ଅନେକ ଭାରତୀୟ ବ୍ୟବସାୟୀ ପରିବାର ନିଃସ୍ୱ ହୋଇ ପଡ଼ିଥିଲେ । ମୂଲ୍ୟ ବୃଦ୍ଧି ଘଟିଥିଲା । କିନ୍ତୁ ଜନସାଧାରଣଙ୍କ ସଞ୍ଚୟର ମୂଳ ସାମଗ୍ରୀ – ରୂପା ଅଳଙ୍କାରର ମୂଲ୍ୟ ହ୍ରାସର ବିଷୟଟି ଥିଲା ଏଠାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଅର୍ଥାତ୍, ଏହା ଥିଲା ଶ୍ରମଜୀବୀ ଜନସାଧାରଣଙ୍କ ଉପରେ ଏକ ନୂତନ ଆଘାତ ।

ଆର୍ଥିକ ସଂସ୍କାରଟି ଭାରତୀୟ ବଜାରରେ ବ୍ରିଟିଶ୍ ରପ୍ତାନିକାରୀମାନଙ୍କ ଅବସ୍ଥାନକୁ ମଜବୁତ୍ କରିଥିଲା ଏବଂ ଫଳରେ, ଦେଶଟି ପୂର୍ବାପେକ୍ଷା ଅନେକ ଅଧିକ ପରିମାଣରେ ବ୍ରିଟେନ୍ ପାଇଁ କୃଷିଜାତ ସାମଗ୍ରୀ ଓ କଞ୍ଚାମାଲର ଉତ୍ସ ହୋଇ ଉଠିଥିଲା । ବ୍ରିଟେନ୍, ଭାରତ ଏବଂ ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶଗୁଡ଼ିକ ମଧ୍ୟରେ ଅସମ ବାଣିଜ୍ୟିକ ସଂପର୍କ ପ୍ରକୃତରେ ଯଥାର୍ଥ ମୂଲ୍ୟ ଠାରୁ କମ୍‌ରେ, କିମ୍ବା ବିନା ମୂଲ୍ୟରେ ଏ ଦେଶରୁ ଅପରିମିତ ବୈଷୟିକ ମୂଲ୍ୟର ରପ୍ତାନି ଘଟିଥିଲା । ନିମ୍ନୋକ୍ତ ହିସାବରୁ ଏହା ପରିଷ୍କାର ଜଣା ପଡ଼େ : ୧୯୦୧ ଖ୍ରୀଷ୍ଟାବ୍ଦରେ ଆମଦାନି ଅପେକ୍ଷା ରପ୍ତାନିର ପରିମାଣ ଥିଲା ୧.୧ କୋଟି ପାଉଣ୍ଡ ଷ୍ଟର୍ଲିଂରୁ ବେଶି, କିନ୍ତୁ ୧୯୦୯-୧୯୧୦ – ୧୯୧୩-୧୯୧୪ ଖ୍ରୀଷ୍ଟାବ୍ଦରେ ଏହାର ହାରାହାରି ହିସାବ ପହଞ୍ଚିଥିଲା ୨.୨୫ କୋଟି ପାଉଣ୍ଡରେ ।

ଏଥି ସଙ୍ଗେ ସଙ୍ଗେ ବ୍ରିଟିଶ୍ ପୁଞ୍ଜି ଲଗ୍ନିର କ୍ଷେତ୍ର ହିସାବରେ ଭାରତକୁ ଶୋଷଣ କରିବା ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥିଲା । ପୂର୍ବ ଭଳି ନିର୍ମାଣ କ୍ଷେତ୍ରରେ, ରେଳପଥ ଓ ଯୋଗାଯୋଗ ବ୍ୟବସ୍ଥାରେ, ଜଳସେଚନ, ବଗିଚା ଓ ଖଣି, ବସ୍ତ୍ର ଓ ଖାଦ୍ୟ, ଶିଳ୍ପ ଓ ବ୍ୟାଙ୍କିଙ୍ଗ୍ ଏବଂ ବିମାରେ ଯଥେଷ୍ଟ ପୁଞ୍ଜି ଲଗାଯାଇଥିଲା ।

ସର୍ବୋପରି ଭାରତୀୟ ଅର୍ଥନୀତିର ସେଇସବୁ କ୍ଷେତ୍ରରେ ବ୍ରିଟିଶ୍ ଅର୍ଥ ପୁଞ୍ଜିର ଅନୁପ୍ରବେଶ ଘଟିଥିଲା ଯେଉଁଗୁଡ଼ିକ ଏ ଦେଶକୁ ପ୍ରତ୍ୟକ୍ଷ ଭାବେ ଶୋଷଣ କରିବା ସହିତ ସଂଯୁକ୍ତ ଥିଲା ଏବଂ ଯେଉଁସବୁର ବିକାଶ ପାଇଁ ଭାରତୀୟ ବଜାରରେ ବ୍ରିଟିଶ୍ ପଣ୍ୟକୁ ମାରାତ୍ମକ ପ୍ରତିଯୋଗିତାର ସମ୍ମୁଖୀନ ହେବାର ସମ୍ଭାବନା ନଥିଲା ।

ବଙ୍ଗଳା, ଆସାମ ଓ ଦେଶର ଦକ୍ଷିଣାଞ୍ଚଳର ଅଧିକାଂଶ ଚା ବଗିଚା, ମହୀଶୂରର କଫି ବଗିଚା ଓ ତ୍ରିଭାଙ୍କୁରର ରବର ଉଦ୍ୟାନ, କଲିକତାର ସମସ୍ତ ଝୋଟକଳ, ଯନ୍ତ୍ର ମରାମତର ଅଧିକାଂଶ କର୍ମଶାଳା, ବମ୍ବେ ଏବଂ ଅନ୍ୟାନ୍ୟ ପ୍ରଦେଶର ବହୁ ସଂଖ୍ୟକ ବସ୍ତ୍ରକଳ, ଦେଶର ପ୍ରାୟ ସମସ୍ତ ରେଳପଥ ଓ ଖଣିଗୁଡ଼ିକ ବ୍ରିଟିଶ୍ ଏକଚାଟିଆମାନଙ୍କ ମାଲିକାନାଧୀନ ଥିଲା । ବ୍ରିଟିଶ୍‌ମାନେ ଥିଲେ ଦେଶର ବଡ଼ ବଡ଼ ଶିଳ୍ପ ସଂସ୍ଥାର ମାଲିକ । ୧୯୧୫ ଖ୍ରୀଷ୍ଟାବ୍ଦରେ ଝୋଟକଳ ଓ ବନ୍ଦର କର୍ମୀମାନଙ୍କ ମଧ୍ୟରୁ ସମସ୍ତେ, ରେଳପଥ ଓ ଟ୍ରାମ୍ କର୍ମଶାଳାର ଶ୍ରମିକମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ, ଚିନି ଏବଂ ପଶମ କାରଖାନାର ଅର୍ଦ୍ଧେକ, କାଗଜ ଶିଳ୍ପର ପ୍ରାୟ ୮୦ ଭାଗ ଏବଂ ନିର୍ମାଣ ଓ ଧାତୁ ଶିଳ୍ପର ପ୍ରାୟ ୬୦ଭାଗ ଶ୍ରମିକ ବ୍ରିଟିଶ୍ ପୁଞ୍ଜିପତିମାନଙ୍କ କାରଖାନାରେ କାର୍ଯ୍ୟ କରୁଥିଲେ ।

୧୮୯୬-୧୯୧୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତରେ ବ୍ରିଟିଶ୍ ପୁଞ୍ଜି ଲଗ୍ନି ୪୦୦-୫୦୦ କୋଟିରୁ ୬୦୦-୭୦୦ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ନିମ୍ନୋକ୍ତ ହିସାବଗୁଡ଼ିକରେ ଭାରତର ଅର୍ଥନୀତିରେ ବ୍ରିଟିଶ୍ ଅର୍ଥ ପୁଞ୍ଜିର ପ୍ରାଧାନ୍ୟକୁ ସହଜରେ ଲକ୍ଷ୍ୟ କରାଯାଏ – ୧୯୦୫ ଖ୍ରୀଷ୍ଟାବ୍ଦରେ ବ୍ରିଟେନ୍‌ରେ ରେଜିଷ୍ଟ୍ରୀକୃତ ୧୬୫ଟି କଂପାନି ଭାରତରେ ସେମାନଙ୍କ ପୁଞ୍ଜି ଖଟେଇଥିଲେ । ଏହି ସଂଖ୍ୟାଟି ଥିଲା ଖୋଦ୍ ଭାରତରେ ରେଜିଷ୍ଟ୍ରୀକୃତ କଂପାନିର (ବ୍ରିଟିଶ୍ ଓ ଭାରତୀୟ) ତିନି ଗୁଣରୁ ଅଧିକ ।

କିନ୍ତୁ ଭାରତର ଅର୍ଥନୀତିରେ ବ୍ରିଟିଶ୍ ଏକଚାଟିଆମାନଙ୍କର ଅବସ୍ଥାନ ଏଠାକାର ଅର୍ଥନୀତିର ବିଭିନ୍ନ ଶାଖାରେ କେବଳ ପ୍ରତ୍ୟକ୍ଷ ବ୍ରିଟିଶ୍ ପୁଞ୍ଜି ନିୟୋଗ ଦ୍ୱାରା ନିର୍ଦ୍ଧାରିତ ହୋଇ ନଥିଲା । ବ୍ରିଟିଶ୍ ବୁର୍ଜୁଆମାନେ ନିଜର ଆୟତ୍ତାଧୀନ ନିରଙ୍କୁଶ ଭୂମିକାକୁ ଅକ୍ଷୁଣ୍ଣ ରଖିବା ପାଇଁ ଖୋଦ୍ ନିଜ ଦ୍ୱାରା ପ୍ରବର୍ତ୍ତିତ ନିୟନ୍ତ୍ରଣକୁ ବ୍ୟବହାର କରୁଥିଲେ ।

ଆଗ ଭଳି ଔପନିବେଶିକ ରାଷ୍ଟ୍ରଯନ୍ତ୍ରଟି ଥିଲା ଭାରତରେ ତା'ର ଅର୍ଥନୈତିକ ଓ ରାଜନୈତିକ ପ୍ରାଧାନ୍ୟକୁ ବଜାଏ ରଖିବା ପାଇଁ ସହାୟକ ହେଉଥିବା ଅର୍ଥନୈତିକ କବ୍ଜା । ଭାରତରେ ଲଗ୍ନିକୃତ ବ୍ରିଟିଶ୍ ପୁଞ୍ଜିର ଅର୍ଦ୍ଧେକରୁ ବେଶି ଥିଲା ଔପନିବେଶିକ ରାଷ୍ଟ୍ର କର୍ତ୍ତୃକ ପ୍ରବର୍ତ୍ତିତ ବଣ୍ଡ୍ ଏବଂ ନିଦର୍ଶନପତ୍ର । ପୂର୍ବ ଭଳି ଭାରତର ଜନସାଧାରଣ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ଏସିଆ ଆଉ ଆଫ୍ରିକାରେ ଔପନିବେଶିକ ସାମରିକ ଅଭିଯାନର ଖର୍ଚ୍ଚ ଯୋଗାଉଥିଲେ – ଚୀନ୍‌ରେ "ବକ୍‌ସାର ବିଦ୍ରୋହ" ଦମନ, ତିବ୍ବତ ଅଭିଯାନ, ବୋଅର ଯୁଦ୍ଧ, ଆଦି । ୧୯୦୦-୧୯୧୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ଷ୍ଟର୍ଲିଂ "ଋଣ" ୧୩.୩ କୋଟିରୁ ୧୭.୭ କୋଟି ପାଉଣ୍ଡକୁ ବୃଦ୍ଧି ପାଇଥିଲା ।

ଭାରତରେ ପ୍ରତିଷ୍ଠିତ ବ୍ରିଟିଶ୍ ଔପନିବେଶିକ ଏକଚାଟିଆମାନଙ୍କର ମ୍ୟାନେଜିଂ ଏଜେନ୍‌ସିଗୁଡ଼ିକର ଗୁରୁତ୍ୱ ମଧ୍ୟ ସେତେବେଳେ ବୃଦ୍ଧି ପାଉଥିଲା । ପୁରୁଣା ଏବଂ ନୂଆ ଧରଣର ମ୍ୟାନେଜିଂ ଏଜେନ୍‌ସି (ବଡ଼ ବଡ଼ ଏକଚାଟିଆମାନଙ୍କ ଦ୍ୱାରା ଅନୁମୋଦିତ ସଂସ୍ଥା) ବ୍ରିଟିଶ୍ ଅର୍ଥ ପୁଞ୍ଜି ସହିତ, ପ୍ରଧାନ ପ୍ରଧାନ ବ୍ରିଟିଶ୍ ଔପନିବେଶିକ ବ୍ୟାଙ୍କ୍‌ଗୁଡ଼ିକ ସହିତ ସୁସଂଶ୍ଳିଷ୍ଟ ଥିଲା । ଏସବୁ ଭାରତରେ ଔପନିବେଶିକ ଶାସକମାନଙ୍କର ଉର୍ଦ୍ଧ୍ୱତନ ସ୍ତର, ବ୍ରିଟିଶ୍ ଅର୍ଥପତି ଧନିକଗୋଷ୍ଠୀ ଓ ଅମଲାତନ୍ତ୍ର ସହିତ ଘନିଷ୍ଠ ସଂପର୍କ ରଖି କାର୍ଯ୍ୟ କରୁଥିଲେ । ପ୍ରଖ୍ୟାତ ଭାରତୀୟ ଅର୍ଥନୀତିବିଦ୍ ପି. ଲୋକନାଥନ୍ ରସିକତାର ସହିତ କହିଥିଲେ ଯେ, ଏହି ମ୍ୟାନେଜିଂ ଏଜେନ୍‌ସିଗୁଡ଼ିକ ଥିଲେ ଏକ ପ୍ରକାରର ସଂକୀର୍ଣ୍ଣ ପଥ, ଯାହା ମଧ୍ୟ ଦେଇ ବ୍ରିଟିଶ୍ ପୁଞ୍ଜି ଭାରତକୁ ପ୍ରବାହିତ ହୋଇ ଖୋଦ୍ ସେଇସବୁ ଏଜେନ୍‌ସି ଦ୍ୱାରା ପ୍ରତିଷ୍ଠିତ ବିଭିନ୍ନ ସଂସ୍ଥା ମଧ୍ୟକୁ ବ୍ୟାପି ଥିଲା । ଅନୁମୋଦିତ ସଂସ୍ଥାଗୁଡ଼ିକ ଦ୍ୱାରା ଅର୍ଜିତ ଲଭାଂଶର ଭାଗିଦାର ଏହି ଏଜେନ୍‌ସିଗୁଡ଼ିକ ଭାରତରେ ସଂଚଳିତ ବ୍ରିଟିଶ୍ ଓ ଭାରତୀୟ ଉଭୟ ପୁଞ୍ଜିର ପ୍ରଧାନ ଅଂଶକୁ ନିୟନ୍ତ୍ରଣ କରୁଥିଲେ ।

ଭାରତର ଔପନିବେଶିକ ଶୋଷଣ ତୀବ୍ରତର ହେବା ଫଳରେ ବ୍ରିଟିଶ୍ ଔପନିବେଶିକ ବ୍ୟାଙ୍କ୍‌ଗୁଡ଼ିକର ଭୂମିକା ଆଉରି ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା । ଏସବୁକୁ ନେଇ "ସିଟି ଅଫ୍ ଲଣ୍ଡନର" ପରିଚାଳନାଧୀନ ଆଉରି ଏକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ନିୟନ୍ତ୍ରଣ ପ୍ରବର୍ତ୍ତନ କରାଗଲା । "ମାର୍କେଣ୍ଟାଇଲ୍ ବ୍ୟାଙ୍କ୍", "ଚାର୍ଟାର୍ଡ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ" ଓ ଅନ୍ୟାନ୍ୟ ବ୍ୟାଙ୍କ୍‌ଗୁଡ଼ିକ ଦେଶର ବୈଦେଶିକ ବାଣିଜ୍ୟକୁ ନିୟନ୍ତ୍ରଣ କରୁଥିଲେ ଏବଂ ଆମଦାନି ଓ ରପ୍ତାନିକାରୀ ବଡ଼ ବଡ଼ ବ୍ରିଟିଶ୍ ପାଇକାରୀ-ବ୍ୟବସାୟୀମାନଙ୍କୁ ଅର୍ଥ ଯୋଗାଉଥିଲେ । ଭାରତୀୟ ବ୍ୟବସାୟ ଓ ମହାଜନୀ ପୁଞ୍ଜି ମାଧ୍ୟମରେ ଏହି ବ୍ୟାଙ୍କ୍‌ଗୁଡ଼ିକ ଗ୍ରାମ ସହିତ, କଞ୍ଚାମାଲ ଉତ୍ପାଦକ ଓ ବ୍ରିଟିଶ୍ ଶିଳ୍ପଜାତ ମୋଟ ଭୋଗ୍ୟ ପଣ୍ୟର ଖାଉଟିମାନଙ୍କ ସହିତ ଯୋଗାଯୋଗ ରଖୁଥିଲେ । ଏଥି ସଙ୍ଗେ ସଙ୍ଗେ ଦେଶରେ ପ୍ରକୃତ ପକ୍ଷେ ଶିଳ୍ପ ପାଇଁ କୌଣସି ସଂଗଠିତ ଋଣଦାନ ବ୍ୟବସ୍ଥା ନଥିବାରୁ ଭାରତୀୟ ଶିଳ୍ପୋଦ୍ୟୋଗୀମାନେ ମ୍ୟାନେଜିଂ ଏଜେନ୍‌ସି ବା ବଡ଼ ବଡ଼ ମହାଜନମାନଙ୍କର ଶରଣାପନ୍ନ ହେବାକୁ ବାଧ୍ୟ ହେଉଥିଲେ – ଯେଉଁମାନେ କି ଦେଶର ଆଭ୍ୟନ୍ତରୀଣ ବାଣିଜ୍ୟକୁ ନିୟନ୍ତ୍ରଣ କରୁଥିଲେ ଏବଂ ଯେଉଁମାନଙ୍କ ଉପରେ କାରିଗର ଓ କ୍ଷୁଦ୍ର ଶିଳ୍ପ ମାଲିକମାନେ ନିର୍ଭରଶୀଳ ଥିଲେ ।

ଦେଶରେ ପଣ୍ୟ-ବନାମ-ମୁଦ୍ରା ସଂପର୍କର ନିରବଚ୍ଛିନ୍ନ ବିକାଶ ଏବଂ ସାମନ୍ତ ଓ ସାମ୍ରାଜ୍ୟବାଦୀ ସଂପର୍କର ଆଧିପତ୍ୟ ପୂର୍ଣ୍ଣ ଏକ ସମାଜରେ ଆଭ୍ୟନ୍ତରୀଣ ବଜାରର ଉନ୍ମେଷ ଫଳରେ ଇତି ମଧ୍ୟରେ ବାଣିଜ୍ୟିକ ଓ ମହାଜନୀ ପୁଞ୍ଜିର ଗୁରୁତ୍ୱ ବିପୁଳ ଭାବେ ବୃଦ୍ଧି ପାଇବାର ପଥ ଉନ୍ମୁକ୍ତ ହୋଇଥିଲା ।

ଏହା ପ୍ରଥମତଃ ଏବଂ ପ୍ରଧାନତଃ ବ୍ରିଟିଶ୍ ଏକଚ୍ଛଟିଆମାନଙ୍କର ପ୍ରତିନିଧି ରୂପେ ଦେଖା ଦେଇଥିଲା ବିଂଶ ଶତାବ୍ଦୀର ପ୍ରଥମ ଦଶକର ପ୍ରାରମ୍ଭରେ ମହାଜନମାନଙ୍କର ମୋଟ ବାର୍ଷିକ ଆୟ ପ୍ରାୟ ୨୦ କୋଟି ଟଙ୍କାରେ ପହଞ୍ଚିଥିଲା ।

ଦେଶର ପ୍ରଧାନ ବାଣିଜ୍ୟିକ କେନ୍ଦ୍ରଗୁଡ଼ିକରେ ଏକ ଶକ୍ତିଶାଳୀ ସହଯୋଗୀ ବ୍ୟବସାୟୀ ବୁର୍ଜୁଆ ଗୋଷ୍ଠୀର ଉନ୍ମେଷ ଘଟିଥିଲା ଏବଂ ଏମାନେ ଭାରତରେ ବ୍ରିଟିଶ୍ ଆମଦାନି ରପ୍ତାନି ଦ୍ରବ୍ୟର ନେଣଦେଣ କରୁଥିଲେ ।

## ଭାରତୀୟ ବୁର୍ଜୁଆର ଦୃଢ଼ୀକରଣ

ବ୍ୟବସାୟ ଆଉ ମହାଜନୀ କାରବାର ମାଧ୍ୟମରେ ଭାରତୀୟ ଧନିକ ଶ୍ରେଣୀମାନଙ୍କ ହାତରେ ସଞ୍ଚିତ ହୋଇଥିବା କ୍ରମବର୍ଦ୍ଧମାନ ପୁଞ୍ଜି ଅବଶେଷରେ ଶିଳ୍ପ କ୍ଷେତ୍ରରେ ଲଗିବାର ପଥ ଖୋଜି ପାଇଥିଲା । ଭାରତୀୟ ଶିଳ୍ପୋଦ୍ୟୋଗୀମାନଙ୍କୁ ପଛକୁ ଟାଣି ରଖିବାର ବ୍ରିଟେନ୍‌ର ନୀତି ସତ୍ତ୍ୱେ ଭାରତୀୟ ଅର୍ଥନୀତିର ପୁଞ୍ଜିବାଦୀ ଧରଣ ଦୃଢ଼ ହେବାରେ ଲଗିଥିଲା । ୧୯୦୦-୧୯୧୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜଏଣ୍ଟ-ଷ୍ଟକ୍ କଂପାନିର ସଂଖ୍ୟା ୧୩୬୦ରୁ ୨୫୫୨କୁ ବୃଦ୍ଧି ପାଇଥିଲା ଏବଂ ଏସବୁର ପେଡ୍ ଅପ୍ କ୍ୟାପିଟାଲ ବା ପ୍ରାପ୍ତ ପୁଞ୍ଜି ୩୬.୨ କୋଟିରୁ ୭୨.୧ କୋଟି ଟଙ୍କାରେ ପହଞ୍ଚିଥିଲା । ପୂର୍ବ ଭଳି ବସ୍ତ୍ର ଶିଳ୍ପ ଥିଲା ଭାରତୀୟ କାରଖାନା ମାଲିକମାନଙ୍କର ପ୍ରଧାନ କର୍ମକ୍ଷେତ୍ର । ବଗିଚ୍ଚ ଏବଂ ଖଣିରେ ମଧ୍ୟ ଭାରତୀୟ ପୁଞ୍ଜିର ଅନୁପ୍ରବେଶ ଘଟିଥିଲା । ତୂଳାଶୋଧନ କାରଖାନା, ଗହମ, ଧାନ ଓ ତୈଳକଳ ଏବଂ ମୁଦ୍ରଣ ଶିଳ୍ପର ଅଧିକାଂଶ ଥିଲା ଭାରତୀୟ ମାଲିକମାନଙ୍କ ହାତରେ ।

ଭାରତୀୟମାନଙ୍କ ସଂସ୍ଥାଗୁଡ଼ିକ ମଧ୍ୟରୁ ଅଧିକାଂଶ ଥିଲା କ୍ଷୁଦ୍ର ବା ମଧ୍ୟମ ଆକାରର ଏବଂ ଏସବୁ ମଧ୍ୟରୁ ଶତକଡ଼ା ୮୦ ଭାଗ ଯନ୍ତ୍ରୀକୃତ ନଥିଲା । ଆଧୁନିକ ଧରଣର ବୃହତ୍ ଶିଳ୍ପ ସଂସ୍ଥା ବ୍ୟତୀତ ମ୍ୟାନୁଫାକ୍‌ଚରିଂ କାରଖାନାଗୁଡ଼ିକର ସଂଖ୍ୟା ସେତେବେଳେ ବୃଦ୍ଧି ପାଉଥିଲା । ବସ୍ତ୍ର, ଚମଡ଼ା ସାମଗ୍ରୀ, ଟିଣ ନିର୍ମିତ ବ୍ୟବହାର୍ଯ୍ୟ ଜିନିଷ ଏବଂ ଅନ୍ୟାନ୍ୟ ଗୃହସ୍ଥଳୀ ଦ୍ରବ୍ୟାଦି ଉତ୍ପାଦନରେ ଏବଂ କୃଷିଜାତ କଞ୍ଚାମାଲର ପ୍ରାଥମିକ ପ୍ରସେସିଂ ହିଁ ପୁଞ୍ଜିବାଦୀ ସଂସ୍ଥାର ସରଳତମ ଧରଣଗୁଡ଼ିକ ସର୍ବାଧିକ ସଂଖ୍ୟାରେ ମୁଣ୍ଡ ଟେକି ଉଠୁଥିଲା । କୃଷି ଓ କୁଟୀର ଶିଳ୍ପରେ ସେତେବେଳେ ଅଧିକାଂଶ ଶ୍ରମିକ କାର୍ଯ୍ୟ କରୁଥିଲେ ଏବଂ ଏମାନଙ୍କ ସଂଖ୍ୟା ବହୁ କୋଟିରେ ପହଞ୍ଚିଥିଲା ।

ଦେଶର ଅର୍ଥନୀତିରେ ନିଜର ଅବସ୍ଥାନକୁ ମଜ୍‌ବୁତ୍ କରିବା ଚେଷ୍ଟାରେ ତରୁଣ ଜାତୀୟ ବୁର୍ଜୁଆମାନେ ଏବେ ଭାରୀ ଶିଳ୍ପ କ୍ଷେତ୍ରରେ ଭାରତୀୟ ମାଲିକାନାଧୀନ ସଂସ୍ଥା ଗଢ଼ିବାକୁ ଉଦ୍ୟମ କରିଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ଭାରତୀୟ ବୁର୍ଜୁଆମାନଙ୍କର ଶକ୍ତିଶାଳୀ ଚକ୍ର ଦ୍ୱାରା ସମର୍ଥିତ ଜନୈକ ଭାରତୀୟ ପୁଞ୍ଜିପତି ଜାମସେଦ୍‌ଜୀ ଟାଟା ଜାମସେଦ୍‌ପୁରରେ ପ୍ରଥମ ଭାରତୀୟ ମାଲିକାନାଧୀନ ଧାତୁଶିଳ୍ପ କାରଖାନାଟି ସ୍ଥାପନ କରିଥିଲେ । ୧୯୧୫ ଖ୍ରୀଷ୍ଟାବ୍ଦରେ ଏହି ଟାଟା କଂପାନି ଏକ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ମଧ୍ୟ ନିର୍ମାଣ କରିଥିଲା ।

ଜାତୀୟ ସଂସ୍ଥା ନିର୍ମାଣ ପାଇଁ ପୁଞ୍ଜିବାଦୀ ଋଣ ବ୍ୟବସ୍ଥା ପ୍ରତିଷ୍ଠା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସର୍ତ

ହୋଇଥିବାରୁ ବୁର୍ଜୁଆମାନେ ନିଜସ୍ୱ ବ୍ୟାଙ୍କ୍ ଗଠନ କରିବା ଦିଗରେ ଉଦ୍ୟମ କରିଥିଲେ । ଏହି ଶତାବ୍ଦୀର ପ୍ରାରମ୍ଭରେ କେତେକ ବଡ଼ ବଡ଼ ଭାରତୀୟ ଜଏଣ୍ଟ-ଷ୍ଟକ୍ ବ୍ୟାଙ୍କ୍ ଗଠିତ ହେଲା । ୧୯୧୩ ଖ୍ରୀଷ୍ଟାବ୍ଦରେ ଏସବୁର ସଂଖ୍ୟା ୧୮ଟିରେ ପହଞ୍ଚିଥିଲା । ଏହା ଛଡ଼ା ଭାରତୀୟ ପୁଞ୍ଜିପତିମାନଙ୍କର ଥିଲା ୨୩ଟି ମଧ୍ୟମ ଧରଣର ବ୍ୟାଙ୍କ୍ । ତେବେ ଏହି ସମୟରେ ଭାରତୀୟ ବ୍ୟାଙ୍କ୍-ପୁଞ୍ଜି ଆଭ୍ୟନ୍ତରୀଣ ବାଣିଜ୍ୟ କ୍ଷେତ୍ରରେ ପ୍ରଧାନତଃ ବ୍ୟବହୃତ ହେଉଥିଲା ।

ଭାରତୀୟ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକର ବିକାଶ ଏବଂ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ହାତରେ ଭାରତର ଶୋଷଣ ବୃଦ୍ଧି ହେତୁ ଉଦୀୟମାନ ଭାରତୀୟ ବୁର୍ଜୁଆ ଓ ବିଦେଶୀ ଏକଚେଟିଆମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ତୀବ୍ରତର ହୋଇ ଉଠୁଥିଲା ।

ଭାରତୀୟ ବସ୍ତ୍ର ବଜାରରେ ଏହି ଦୁଇ ଗୋଷ୍ଠୀର ସ୍ୱାର୍ଥ ସଂଘାତ କ୍ରମଶଃ ନଗ୍ନ ଭାବେ ପ୍ରକଟିତ ହେବାକୁ ଲାଗିଲା । ଊନବିଂଶ ଶତାବ୍ଦୀର ଶେଷରେ ଦୂର ପ୍ରାଚ୍ୟ ଓ ଦକ୍ଷିଣ-ପୂର୍ବ ଏସିଆର ବଜାରରେ ଶସ୍ତା ଜାପାନୀ କପଡ଼ା ଦେଖା ଦେବା ଫଳରେ, ଭାରତୀୟ ବସ୍ତ୍ରକଳଗୁଡ଼ିକ ସୂତା ରପ୍ତାନି ବଦଳରେ ଆଭ୍ୟନ୍ତରୀଣ ବଜାର ପାଇଁ ପ୍ରଧାନତଃ କପଡ଼ା ତିଆରି କରିବାକୁ ଆରମ୍ଭ କରିଥିଲେ । ହସ୍ତନିର୍ମିତ କପଡ଼ାର ଉତ୍ପାଦନ ବୃଦ୍ଧି କରିବା ସେତେବେଳେ ବିଦେଶ ସହିତ ସଫଳ ପ୍ରତିଯୋଗିତାର ଅନ୍ୟତମ ଉପାୟ ଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବସ୍ତ୍ରକଳ ଓ ଭାରତୀୟ ତନ୍ତୁବାୟମାନଙ୍କ (ଏମାନଙ୍କ ସଂଖ୍ୟା ସେତେବେଳେ ଥିଲା ୧ କୋଟିରୁ ଅଧିକ) ମଧ୍ୟରେ ନିବିଡ଼ ପାରସ୍ପରିକ ସଂପର୍କ ବିଦ୍ୟମାନ ଥିଲା । ୧୮୯୭-୧୯୦୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ବସ୍ତ୍ରକଳଗୁଡ଼ିକ ବର୍ଷକୁ ୮.୫ କୋଟି ପାଉଣ୍ଡ ଏବଂ ତନ୍ତୁବାୟମାନେ (ଏକକ କାରିଗର ଏବଂ ମ୍ୟାନୁଫାକ୍‌ଚରିଂ ସଂସ୍ଥାର କର୍ମୀମାନଙ୍କ ସମେତ) ମୋଟ ୨୦ କୋଟି ପାଉଣ୍ଡ ସୂତା ବ୍ୟବହାର କରୁଥିଲେ ।

୧୮୮୬ ଓ ୧୯୦୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ସୂତାନିର୍ମିତ କପଡ଼ା ଉତ୍ପାଦନକାରୀ କଳଗୁଡ଼ିକର (ଏସବୁ ମଧ୍ୟରୁ ଅଧିକାଂଶ ଭାରତୀୟମାନଙ୍କର ଥିଲା) ସଂଖ୍ୟା ୯୫ଟିରୁ ବୃଦ୍ଧି ପାଇ ୧୯୭ଟିରେ ପହଞ୍ଚିଥିଲା । ଏହି ସମୟ ମଧ୍ୟରେ କଣ୍ଡା ଓ ତନ୍ତର ସଂଖ୍ୟା ଯଥାକ୍ରମେ ଦ୍ୱିଗୁଣ ଏବଂ ତିନି ଗୁଣ ହୋଇଥିଲା । ବ୍ରିଟିଶ୍ ଶିଳ୍ପପତିମାନେ ଭାରତକୁ ସୂତାବସ୍ତ୍ର ଆମଦାନି ବୃଦ୍ଧି କରିଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ଔପନିବେଶିକ ସରକାରର ଅନୁମତି କ୍ରମେ ସେମାନେ ଭାରତୀୟ ବସ୍ତ୍ର ଉପରେ ୩.୫ ଶତାଂଶ ଶୁଳ୍କ ଧାର୍ଯ୍ୟ କରି ଦେଇଥିଲେ । ତା ସତ୍ତ୍ୱେ ୧୯୦୧-୧୯୦୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ବସ୍ତ୍ର ବଜାରରେ ଆମଦାନିକୃତ କପଡ଼ାର ଅଂଶ ଶତକଡ଼ା ୬୩ ଭାଗରୁ ୫୬ ଭାଗକୁ ଖସି ଆସିଥିଲା । ଅଥଚ ଭାରତୀୟ କାରଖାନା ଏବଂ ହସ୍ତନିର୍ମିତ କପଡ଼ାର ଅଂଶ ଏହି ସମୟରେ ଯଥାକ୍ରମେ ଶତକଡ଼ା ୧୨ରୁ ୧୫ ଭାଗକୁ ଏବଂ ୨୫ରୁ ୨୮ ଭାଗକୁ ବୃଦ୍ଧି ପାଇଥିଲା ।

ଏହି ପର୍ଯ୍ୟାୟରେ ଭାରତୀୟ କାରିଗରମାନେ ଭାରତୀୟ କାରଖାନାଗୁଡ଼ିକର ପ୍ରତିଯୋଗିତାମୂଳକ ଆଘାତର ଯଥାର୍ଥ ଗଭୀରତା ଅନୁଭବ କରି ନଥିଲେ । କିନ୍ତୁ ସେତେବେଳଠୁଁ ସ୍ଥାନୀୟ କାରଖାନାଗୁଡ଼ିକରେ ଉତ୍ପନ୍ନ କପଡ଼ା କେବଳ ବ୍ରିଟିଶ୍ ପଣ୍ୟ ସହିତ ନୁହେଁ, ସ୍ଥାନୀୟ କାରିଗରମାନଙ୍କର ଉତ୍ପାଦନସମୂହ ସହିତ ପ୍ରତିଯୋଗିତା ଆରମ୍ଭ କରିଥିଲା । ୧୯୦୧ରୁ ୧୯୧୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରାୟ ୫ ଲକ୍ଷ ତନ୍ତୁବାୟ ଧ୍ୱଂସ ପାଇ ଯାଇଥିଲେ ବା ଜୀବିକାର ସମ୍ବଳ ହରାଇଥିଲେ । ୧୯୦୭ରୁ ୧୯୧୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ତନ୍ତବସ୍ତ୍ରର ଉତ୍ପାଦନ ସ୍ତରରେ ବିଶେଷ ପରିବର୍ତ୍ତନ ଘଟି ନଥିଲା, ଅଥଚ

କାରଖାନାରେ ତିଆରି କପଡ଼ାର ଉତ୍ପାଦନ ତିନି ଗୁଣ ବୃଦ୍ଧି ପାଇଥିଲା । ସେତେବେଳେ ଲାଙ୍କାଶାୟାର ହିଁ ଥିଲା ଭାରତୀୟ ମିଲ୍ ମାଲିକ ଓ ତନ୍ତୁବାୟମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ।

ଏହି ସମୟଟି ସାଧାରଣ ଭାବେ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଓ ଭାରତୀୟ ବୁର୍ଜୁଆମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱପୂର୍ଣ୍ଣ କାଳ ରୂପେ ପ୍ରକଟିତ । ତେବେ ଏଥି ସଙ୍ଗେ ସଙ୍ଗେ ଭାରତୀୟ ବୁର୍ଜୁଆମାନଙ୍କର ଊର୍ଦ୍ଧ୍ୱତନ ସ୍ତରଗୁଡ଼ିକ ଋଣ ଲାଭର ସୁଯୋଗ, ଯନ୍ତ୍ରପାତି ସରବରାହ ଆଦି ମାଧ୍ୟମରେ ବ୍ରିଟିଶ୍ ଅର୍ଥ ପୁଞ୍ଜି ସହିତ ବିଶେଷତଃ ଘନିଷ୍ଠ ସଂଯୋଗ ରଖିଥିଲେ । ବୁର୍ଜୁଆମାନଙ୍କର ଏହି ଅଂଶଟି ସାମନ୍ତ ସମାଜର ଶୋଷକ ସ୍ତର ସହିତ ନିବିଡ଼ ବନ୍ଧନ ଦ୍ୱାରା ମଧ୍ୟ ଆବଦ୍ଧ ଥିଲା । ଭାରତୀୟ କାରଖାନା ମାଲିକମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବଡ଼ ବଡ଼ ବଣିକ ଓ ମହାଜନ ଏବଂ ସେମାନେ ବ୍ୟବସାୟ ଏବଂ ମହାଜନୀ କାରବାର ମାଧ୍ୟମରେ ସେମାନଙ୍କ ଆୟର ଏକାଂଶ ଅର୍ଜନ କରିଥିଲେ । ଏହି ସମୟରେ ଭାରତରେ ଗଢ଼ି ଉଠିଥିବା ଭାରତୀୟ ଜଏଣ୍ଟ-ଷ୍ଟକ୍ ବାଣିଜ୍ୟିକ ବ୍ୟାଙ୍କ୍‌ଗୁଡ଼ିକ ମାଧ୍ୟମରେ ଶିଳ୍ପପତିମାନେ ବଣିକ ଓ ମହାଜନମାନଙ୍କ ସହିତ ଘନିଷ୍ଠ ସଂପର୍କରେ ଆସିଥିଲେ ।

ସାମନ୍ତବାଦୀ ଭୂମିମାଲିକାନା ସହିତ ଏକକାଳୀନ ପୁଞ୍ଜିର (ବିଶେଷତଃ, ବାଣିଜ୍ୟିକ ଓ ମହାଜନୀ ପୁଞ୍ଜି) ବୃଦ୍ଧି ଘଟିଥିଲା । କେତେକ ଅଞ୍ଚଳରେ ବଣିକ, ମହାଜନ ଓ କ୍ଷୁଦ୍ର ଶିଳ୍ପପତିମାନଙ୍କର ଭୂମି କ୍ରୟ ଏପରି ପର୍ଯ୍ୟାୟରେ ପହଞ୍ଚିଥିଲା ଯେ, ୧୯୦୦ ଖ୍ରୀଷ୍ଟାବ୍ଦରେ ଔପନିବେଶିକ ସରକାର ପଞ୍ଜାବରେ କୃଷକର ଜମି "ଅକୃଷକମାନଙ୍କୁ" ହସ୍ତାନ୍ତର ଉପରେ ନିଷେଧାଜ୍ଞା ଜାରି କରି ଦେଇଥିଲେ । ଇତିମଧ୍ୟରେ ବହୁ ବଡ଼ ବଡ଼ ଜମିଦାର, ଏପରିକି କୌଣସି କୌଣସି ରାଜା ମଧ୍ୟ ଶିଳ୍ପ କଂପାନି ଓ ବ୍ୟାଙ୍କ୍ ସଂସ୍ଥାର ଶେୟାର କ୍ରୟ କରିବାକୁ ଆରମ୍ଭ କରି ଦେଇଥିଲେ । ଭାରତୀୟ ଜାତୀୟ ବୁର୍ଜୁଆ ଓ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ମଧ୍ୟରେ ଅର୍ଥନୈତିକ ସଂଯୋଗ ଏବଂ, ବିଶେଷତଃ, ସାମନ୍ତମାନଙ୍କ ସହିତ ସଂଯୋଗ, ଜାତୀୟ ବୁର୍ଜୁଆମାନଙ୍କର ରାଜନୈତିକ କର୍ମସୂଚୀରେ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନରେ ସେମାନଙ୍କ ଭୂମିକା କ୍ଷେତ୍ରରେ ନିଜସ୍ୱ ବୈଶିଷ୍ଟ୍ୟର ଛାପ ରଖିଛି ।

## ଶ୍ରମଜୀବୀମାନଙ୍କ ଅବସ୍ଥାର କ୍ରମାବନତି – ଶ୍ରେଣୀଗତ ଏବଂ ଜାତୀୟ ଦ୍ୱନ୍ଦ୍ୱ ବୃଦ୍ଧି

ଭାରତରେ ପୁଞ୍ଜିବାଦର ବିକାଶ ସତ୍ତ୍ୱେ ଏହି ଶତାବ୍ଦୀର ପ୍ରାରମ୍ଭରେ ଏହା ଏକ ଅନଗ୍ରସର କୃଷିପ୍ରଧାନ ଦେଶ ଥିଲା ଏବଂ ଏଠାରେ ଅତୀତର ସାମନ୍ତବାଦୀ ବ୍ୟବସ୍ଥାଗୁଡ଼ିକ ଅକ୍ଷୁଣ୍ଣ ରହି ଯାଇଥିଲା । ଅଗଣିତ କାରିଗର ଧ୍ୱଂସ ଏବଂ କର୍ମହୀନ ହୋଇ ପଡ଼ିବା ଫଳରେ ଶିଳ୍ପ ଶ୍ରମିକମାନଙ୍କର ସଂଖ୍ୟା ବୃଦ୍ଧି ଘଟିଲେ ମଧ୍ୟ ୧୯୦୧ରୁ ୧୯୧୧ ଖ୍ରୀଷ୍ଟାବ୍ଦ ମଧ୍ୟରେ କୃଷିରେ ନିଯୁକ୍ତ ଲୋକ ସଂଖ୍ୟା ଶତକଡ଼ା ୬୬ରୁ ୭୨ରେ ପହଞ୍ଚିଥିଲା । ପୂର୍ବ ଭଳି କୃଷକମାନଙ୍କ ଉପରେ ତିନି ଧରଣର ଶୋଷଣ – ବ୍ରିଟିଶ୍ ସାମ୍ରାଜ୍ୟବାଦୀ, ଜମିଦାରୀ ଏବଂ ବାଣିଜ୍ୟିକ ଓ ମହାଜନୀ ପୁଞ୍ଜିର ଶୋଷଣ ଅବ୍ୟାହତ ରହିଥିଲା । ରୟତଓ୍ୱାରି ଅଞ୍ଚଳରେ ଭୂସଂପତ୍ତିର ଦ୍ରୁତ ଠୁଳୀକରଣ ଏବଂ ଭାରତୀୟ କ୍ଷୁଦ୍ର କୃଷକମାନଙ୍କୁ କ୍ରମାଧିକ ମାତ୍ରାରେ ଜମି ଭାଗ ଦେବା ଫଳରେ କ୍ରମଶଃ ଅଧିକ ସଂଖ୍ୟକ ଦରିଦ୍ର କୃଷକ ସେମାନଙ୍କ ଜମି ହରେଇଥିଲେ ଏବଂ ସେସବୁ ଜମିଦାର ତଥା ଧନୀ କୃଷକମାନଙ୍କ ହସ୍ତଗତ ହୋଇଥିଲା ।

ଇତିମଧ୍ୟରେ କୃଷିଜାତ ସାମଗ୍ରୀର ଦର ବୃଦ୍ଧି ହେତୁ କୃଷକମାନଙ୍କର ମଧ୍ୟମ ଓ ଧନୀ ସ୍ତରଗୁଡ଼ିକ ଅବସ୍ଥାରେ ଉନ୍ନତି ଦେଖା ଦେଇଥିଲା । ବ୍ୟାପକ ଆକାରରେ ବାଣିଜ୍ୟିକ ଶସ୍ୟ ଏବଂ ସହରଗୁଡ଼ିକରେ ପୁଞ୍ଜିପତିମାନେ ଅଧିକ ସୁପ୍ରତିଷ୍ଠିତ ହେବା ଫଳରେ ଭାରତର ଗ୍ରାମାଞ୍ଚଳରେ ନୂତନ ବୁର୍ଜୁଆ ସଂପର୍କର ଉନ୍ମେଷ ଘଟିଥିଲା । ସହରକୁ ଏବଂ ଗୁ, କପି, ଆଦି ବଗିଚା ଓ ସଘନ କୃଷିପ୍ରଧାନ ଅଞ୍ଚଳକୁ ନିଃସ୍ୱ କୃଷକମାନଙ୍କର ସ୍ଥାନାନ୍ତରଣ ଘଟିବା ଫଳରେ ଏମାନଙ୍କ ମଧ୍ୟରୁ ଗୋଟିଏ ଅଂଶ ସର୍ବହରା ହୋଇ ଉଠୁଥିଲେ । କୃଷିଜୀବୀମାନଙ୍କର ବର୍ଦ୍ଧମାନ ସଂଖ୍ୟାଧିକତା ହେଉଛି ପ୍ରକୃତରେ ସହଜଲଭ୍ୟ ଶ୍ରମ ସରବରାହର ନାମାନ୍ତର ସ୍ୱରୂପ । ଏହା ପର୍ଯ୍ୟାୟକ୍ରମେ ଧନୀ କୃଷକ ଓ କେତେକ ଜମିଦାରମାନଙ୍କ ଖମାରରେ ଭଡ଼ାଟିଆ ଶ୍ରମ ନିଯୋଗର ମାତ୍ରା ବୃଦ୍ଧି ଘଟେଇଥିଲା । ଗ୍ରାମାଞ୍ଚଳରେ, ଅବଶ୍ୟ, ପୁଞ୍ଜିବାଦୀ ସଂପର୍କ ସେତେବେଳେ ଭ୍ରୂଣାବସ୍ଥାରେ ରହିଥିଲା । ଏହି କ୍ରାନ୍ତି କାଳରେ କେବଳ ସହରରେ ଶ୍ରେଣୀଗତ ଓ ଜାତୀୟ (ଭାରତୀୟ ଜାତିସମୂହ ଓ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ମଧ୍ୟରେ) ଦ୍ୱନ୍ଦ୍ୱ ପ୍ରକଟିତ ହୋଇଥିଲା । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଗଣବିକ୍ଷୋଭର ଅଧିକାଂଶ ଘଟଣାସ୍ଥଳ ଦେଶର ଉପାନ୍ତ ଅଞ୍ଚଳରେ ଥିଲା ବେଳେ ସାମ୍ରାଜ୍ୟବାଦ ଯୁଗ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପ୍ରଧାନତଃ ସହରଗୁଡ଼ିକରେ ବୈପ୍ଳବିକ ସଂଗ୍ରାମର କେନ୍ଦ୍ରସ୍ଥଳିଗୁଡ଼ିକ ଗଢ଼ି ଉଠୁଥିଲା ।

ଇତିମଧ୍ୟରେ ବହୁ କଳକାରଖାନାରେ ବହୁ ବର୍ଷର ଅଭିଜ୍ଞତାସଂପନ୍ନ କର୍ମୀ ଦଳ ଗଢ଼ି ଉଠିଥିଲେ । କଲିକତା, ବମ୍ବେ, ମାନ୍ଦ୍ରାଜ, ଆହମଦାବାଦ ଆଦି ପ୍ରଧାନ ଶିଳ୍ପ କେନ୍ଦ୍ରଗୁଡ଼ିକରେ ଶ୍ରମିକମାନଙ୍କ ସଂଖ୍ୟା ଏବଂ ଠୁଳୀକରଣ କ୍ରମାଗତ ବୃଦ୍ଧି ପାଉଥିଲା । କିନ୍ତୁ ଇତିମଧ୍ୟରେ ଶ୍ରମିକମାନଙ୍କର ବୈଷୟିକ ଅବସ୍ଥାରେ କୌଣସି ପରିବର୍ତ୍ତନ ଘଟି ନଥିଲା । ଆଗ ଭଳି ସେମାନଙ୍କ ଉପରେ ସ୍ଥାନୀୟ ଓ ବିଦେଶୀ ପୁଞ୍ଜିପତି, ମହାଜନ ଓ ବିଭିନ୍ନ ଧରଣର ମଧ୍ୟସ୍ଥ ଠିକାଦାରମାନଙ୍କର ଶୋଷଣ ଅବ୍ୟାହତ ଥିଲା । ଅଧିକାଂଶ କାରଖାନାର କର୍ମ ଦିବସର ପରିସର ଥିଲା ୧୨ ଘଣ୍ଟାରୁ ୧୪ ଘଣ୍ଟା ପର୍ଯ୍ୟନ୍ତ । ବ୍ରିଟିଶ୍ ଏକଚାଟିଆମାନଙ୍କ ସହିତ ପ୍ରତିଯୋଗିତାରେ ଭାରତୀୟ ବୁର୍ଜୁଆମାନେ ଶ୍ରମ ଶକ୍ତିର କମ୍ ମୂଲ୍ୟ ଦ୍ୱାରା ଉତ୍ପାଦନ ଖର୍ଚ୍ଚ କମେଇବାକୁ ଚେଷ୍ଟା କରୁଥିଲେ । ଅର୍ଥାତ୍, ବିଂଶ ଶତାବ୍ଦୀର ପ୍ରାରମ୍ଭିକ ବର୍ଷଗୁଡ଼ିକରେ ତୀବ୍ରତର ହୋଇ ଉଠିଥିବା ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ଅନିବାର୍ଯ୍ୟ ଭାବେ ସାମ୍ରାଜ୍ୟବାଦ ବିରୋଧୀ ବୈଶିଷ୍ଟ୍ୟ ମଧ୍ୟ ଲାଭ କରିଥିଲା ।

ତତ୍କାଳୀନ ଉଦୀୟମାନ ଶିଳ୍ପ ସର୍ବହରା ବ୍ୟତୀତ ସହରମାନଙ୍କରେ କାରିଗର, ଶ୍ରମଜୀବୀ, ଛୋଟ ଛୋଟ କାରଖାନାର ମାଲିକ ଓ ସାଧାରଣ ବ୍ୟବସାୟୀମାନେ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରଧାନ ଶକ୍ତି ହୋଇ ଉଠିଥିଲେ । ଭାରତବର୍ଷ ବ୍ରିଟିଶ୍ ପଣ୍ୟର ବଜାରରେ ପରିଣତ ହେବା ଦ୍ୱାରା ଯେଉଁ ମାରାତ୍ମକ ପରିଣତି ସୃଷ୍ଟି ହେଉଥିଲା, ଦୈନନ୍ଦିନ ବ୍ରିଟିଶ୍ ଔପନିବେଶିକ ପ୍ରଶାସନିକ ଅମଲାତନ୍ତ୍ର ସହିତ ସଂଯୁକ୍ତ ହୋଇଥିବା ସମାଜର ଏହି ସ୍ତରଗୁଡ଼ିକ ସେସବୁକୁ ଯଥାର୍ଥ ଭାବେ ଅନୁଭବ କରୁଥିଲେ ।

ପେଟି-ବୁର୍ଜୁଆ ବୁଦ୍ଧିଜୀବୀମାନେ ମଧ୍ୟ ସେତେବେଳେ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମର ପ୍ରଧାନ ଉଦ୍ୟୋକ୍ତା ଥିଲେ । ଏହା ପ୍ରଥମେ ସହରର ଜନସାଧାରଣଙ୍କ ପେଟି-ବୁର୍ଜୁଆ ସ୍ତର ସମେତ ଧ୍ୱଂସପ୍ରାପ୍ତ କ୍ଷୁଦ୍ର ଜମିମାଲିକମାନଙ୍କ ସହ ଘନିଷ୍ଠ ସଂପର୍କ ରଖୁଥିଲା ଏବଂ କୌଣସି ପ୍ରକାରେ ସାଧାରଣ ଭାବେ ଜୀବନଯାତ୍ରା ନିର୍ବାହ କରୁଥିଲା । ପ୍ରଧାନତଃ ସ୍ୱାଧୀନ ପେଶାଜୀବୀ, ଶିକ୍ଷକ ଓ

ଛୋଟ ଛୋଟ କର୍ମଚାରୀମାନଙ୍କୁ ନେଇ ଗଠିତ ଭାରତୀୟ ବୁଦ୍ଧିଜୀବୀମାନେ ଦୈନନ୍ଦିନ କଠୋର ଜୀବନ ସଂଗ୍ରାମ ସାଥେ ସାଥେ କ୍ରମବର୍ଦ୍ଧମାନ ବେକାରୀ ସମସ୍ୟାରେ ଜର୍ଜରିତ ଥିଲେ । ଔପନିବେଶିକ ପରିସ୍ଥିତିରେ ପୁଞ୍ଜିବାଦର ବିକାଶର ପ୍ରକ୍ରିୟା ମନ୍ଥର ଓ ବିକୃତ ହେଉଥିବାରୁ ଭାରତୀୟ କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକର ସ୍ନାତକମାନଙ୍କ ପାଇଁ ଚାକିରି ସୁଯୋଗ ସୀମାବଦ୍ଧ ହୋଇ ପଡ଼ିଥିଲା । ପ୍ରାୟ ୧୦ ଲକ୍ଷ ଛାତ୍ରଛାତ୍ରୀଙ୍କୁ ନେଇ ଗଠିତ ଭାରତୀୟ ଛାତ୍ର ସମାଜ ଥିଲେ ଏ ଦେଶର ଅନ୍ୟତମ ଶ୍ରେଷ୍ଠ ବିପ୍ଳବୀ ଶକ୍ତି ।

ଦୈନନ୍ଦିନ କାର୍ଯ୍ୟକଳାପ ମଧ୍ୟରେ ଭାରତୀୟ ବୁଦ୍ଧିଜୀବୀମାନଙ୍କୁ ସର୍ବଦା ବର୍ଣ୍ଣବୈଷମ୍ୟ ଓ ଜାତୀୟ ସମ୍ମାନହାନିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଔପନିବେଶିକ ସରକାରର କେବଳ ନିମ୍ନତର ଚାକିରିଗୁଡ଼ିକରେ ଭାରତର ବିପୁଳ ଜନସଂଖ୍ୟାର ପ୍ରବେଶାଧିକାର ଥିଲା । ଚାକିରିଗତ ବୈଷମ୍ୟର ଦୃଷ୍ଟାନ୍ତ ହିସାବରେ ନିମ୍ନୋକ୍ତ ବିଷୟକର ତଥ୍ୟଗୁଡ଼ିକ ଲକ୍ଷଣୀୟ – ଭାରତୀୟ ସିଭିଲ ସର୍ଭିସ୍‌ରେ କର୍ମରତ ୮ ହଜାର ବ୍ରିଟିଶ୍ କର୍ମଚାରୀମାନଙ୍କର ମୋଟ ବେତନର ପରିମାଣ ୧୪ କୋଟି ଷ୍ଟର୍ଲିଂ ପାଉଣ୍ଡ ଥିଲା ବେଳେ ୧ ଲକ୍ଷ ୩୦ ହଜାର ଭାରତୀୟ କର୍ମଚାରୀମାନଙ୍କର ବେତନ ଥିଲା ମାତ୍ର ୩୦ ଲକ୍ଷ ପାଉଣ୍ଡ ।

ତେଣୁ ଭାରତରେ ପୁଞ୍ଜିବାଦର ବିକାଶ ଭାରତର ବିଭିନ୍ନ ଶ୍ରେଣୀ ଓ ସାମାଜିକ ବର୍ଗଙ୍କର ଜାତୀୟ ସଚେତନତାକୁ ଜାଗ୍ରତ କରିବାରେ ସହାୟକ ହୋଇଥିଲା । ସାମ୍ରାଜ୍ୟବାଦର ଏହି ପର୍ଯ୍ୟାୟରେ ଜନସାଧାରଣଙ୍କ ବୈଷୟିକ ଅବସ୍ଥାର ଅବନତି ଓ ପୁଞ୍ଜିବାଦୀ ଶୋଷଣ ସହିତ ସାମନ୍ତ, ବଣିକ ଓ ମହାଜନମାନଙ୍କର ଶୋଷଣର ତୀବ୍ରତା ବୃଦ୍ଧି ସେମାନଙ୍କ ବୈପ୍ଳବିକ ଉଦ୍ଦୀପନା ପାଇଁ ଇନ୍ଧନ ଯୋଗାଇଥିଲା ।

ଖାଦ୍ୟର ଦାମ୍ ଯଥେଷ୍ଟ ବଢ଼ି ଗଲେ ମଧ୍ୟ ମଜୁରିଆ, କିରାଣୀ ଓ ଜନସାଧାରଣଙ୍କ ଅନ୍ୟାନ୍ୟ ସ୍ତରର ବେତନରେ ପ୍ରାୟ କୌଣସି ପରିବର୍ତ୍ତନ ଘଟିଲା ନାହିଁ । ଅନାବୃଷ୍ଟି ଏବଂ ଫସଲହାନି ଘଟୁଥିବା ବର୍ଷଗୁଡ଼ିକରେ ଗୋଟାକ ପରେ ଗୋଟାଏ ଦୁର୍ଭିକ୍ଷ ଦେଖା ଦେଉଥିଲା । ୧୮୯୬-୧୮୯୭ ଖ୍ରୀଷ୍ଟାବ୍ଦରେ ୬.୨ କୋଟି ଜନସଂଖ୍ୟା ଅଧ୍ୟୁଷିତ ଅଞ୍ଚଳରେ ଦୁର୍ଭିକ୍ଷ ଦେଖା ଦେଲା ପରେ କ୍ରମାଗତ ଭାବେ ୧୮୯୯-୧୯୦୦ ଖ୍ରୀଷ୍ଟାବ୍ଦରେ ୨.୮ କୋଟି, ୧୯୦୫-୧୯୦୬ ଖ୍ରୀଷ୍ଟାବ୍ଦରେ ୩୩ ଲକ୍ଷ, ୧୯୦୬-୧୯୦୭ ୧.୩ କୋଟି, ୧୯୦୭-୧୯୦୮ ଖ୍ରୀଷ୍ଟାବ୍ଦରେ ୪.୯୬ କୋଟି ଲୋକ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକ ଦୁର୍ଭିକ୍ଷ କବଳଗ୍ରସ୍ତ ହୋଇଥିଲା । ଏହିସବୁ ଦୁର୍ଭିକ୍ଷ ସହିତ ଦେଖା ଦେଉଥିଲା ହଇଜା ଓ ପ୍ଲେଗ୍ ମହାମାରୀ । ୧୮୯୬-୧୯୦୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ୬୦ଲକ୍ଷ ଲୋକ ପ୍ଲେଗ୍ ରୋଗରେ ପ୍ରାଣ ହରାଇଥିଲେ । ମୁଣ୍ଡ ପିଛା ଜାତୀୟ ଆୟ ମଧ୍ୟ ସେତେବେଳେ ଦ୍ରୁତ କମି ଆସିଥିଲା ଏବଂ ଚରମ ଦାରିଦ୍ର୍ୟ ଆଉରି ତୀବ୍ର ହୋଇ ଉଠିଥିଲା ।

ଦେଶର ଆଭ୍ୟନ୍ତରୀଣ ନୀତି ଦ୍ୱାରା ମଧ୍ୟ ବ୍ରିଟିଶ୍ ଔପନିବେଶିକମାନେ ସେଠାରେ ଅସନ୍ତୋଷ ବୃଦ୍ଧି କରିଥିଲେ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନକୁ ଇନ୍ଧନ ଯୋଗାଇଥିଲେ ।

# ବୈପ୍ଳବିକ ଆନ୍ଦୋଳନର ବିକାଶ (୧୯୦୫-୧୯୦୮)

## ଔପନିବେଶିକ ସରକାରର ଆଭ୍ୟନ୍ତରୀଣ ନୀତି ଏବଂ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବୈପ୍ଳବିକ ଆନ୍ଦୋଳନ

୧୮୯୯ ଖ୍ରୀଷ୍ଟାବ୍ଦରେ ଲର୍ଡ କର୍ଜନ ଭାରତର ବଡ଼ଲାଟ୍ (୧୮୯୯-୧୯୦୫) ରୂପେ ନିଯୁକ୍ତ ହେଲେ । ସେ ଥିଲେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ଚରମ ପ୍ରତିକ୍ରିୟାଶୀଳ ଦଳ ବା ଉଗ୍ରଜାତୀୟତାବାଦର ପ୍ରତିନିଧି । ଜାତୀୟ ଆନ୍ଦୋଳନକୁ ନିର୍ମମ ଭାବେ ଦମନ କରିବା ଥିଲା ତାଙ୍କର ନୀତି ଏବଂ ଏହି ନୀତି ଖୋଲା ବର୍ଣ୍ଣବୈଷମ୍ୟ ଲକ୍ଷ୍ୟରେ ପରିଚାଳିତ ହେଉଥିଲା । ତାଙ୍କ ଶାସନ ବ୍ରିଟିଶ୍ ଶିଳ୍ପପତିମାନଙ୍କୁ ସକ୍ରିୟ ଭାବେ ସମର୍ଥନ କରିବା ସଙ୍ଗେ ସଙ୍ଗେ ଭାରତୀୟ ଶିଳ୍ପପତିମାନଙ୍କର କାର୍ଯ୍ୟକଳାପକୁ ପ୍ରତ୍ୟକ୍ଷ ଭାବେ ବାଧା ଦେଉଥିଲା । ୧୯୦୩ ଖ୍ରୀଷ୍ଟାବ୍ଦରେ ଭାରତର ପ୍ରାକୃତିକ ସଂପଦର ସନ୍ଧାନ ଓ ବ୍ୟବହାର ପାଇଁ ବ୍ରିଟିଶ୍ ଏକଚେଟିଆମାନଙ୍କର ଅନୁକୂଳରେ ଏକ ବିଶେଷ ଆଇନ୍ ପ୍ରବର୍ତ୍ତିତ ହୋଇଥିଲା ।

କର୍ଜନ ଭାରତୀୟ ବୁଦ୍ଧିଜୀବୀମାନଙ୍କୁ ବିଶେଷ ଘୃଣା କରୁଥିଲେ (କରଯୋଗ୍ୟ ଆୟର ସର୍ବନିମ୍ନ ବାର୍ଷିକ ପରିମାଣକୁ ସେ ୫ ଶହ ଟଙ୍କାରୁ ୧ ଶହ ଟଙ୍କାକୁ କମେଇ ଆଣିଥିଲେ । ଏହି ବ୍ୟବସ୍ଥାଟି ଥିଲା ତଥାକଥିତ ସହରରେ ମଧ୍ୟବିତ୍ତମାନଙ୍କର ଏକ ବଡ଼ ଅଂଶ ଉପରେ ମାରାତ୍ମକ ଆଘାତ ସ୍ୱରୂପ ।

୧୮୯୮ ଓ ପୁନଶ୍ଚ ୧୯୦୪ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ ସଂବାଦପତ୍ରଗୁଡ଼ିକୁ ରାଷ୍ଟ୍ରୀୟ ଗୋପନତା ଆଇନ୍‌ର ଅନ୍ତର୍ଗତ କରାଯାଇଥିଲା ।

ବଡ଼ଲାଟ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ ପ୍ରଥମ ଆଇନ୍‌ଗୁଡ଼ିକ ମଧ୍ୟରୁ ଗୋଟିକ ଦ୍ୱାରା କଲିକତା ପୌର ସଭାର ସଦସ୍ୟ ସଂଖ୍ୟାକୁ ହ୍ରାସ କରି ଦିଆଗଲା । ଭାରତୀୟ ଧନିକ ଶ୍ରେଣୀର ପ୍ରତିନିଧିତ୍ୱକୁ କମେଇ ଦେବା ଥିଲା ଏହି ଆଇନ୍‌ର ଲକ୍ଷ୍ୟ । ୧୯୦୪ ଖ୍ରୀଷ୍ଟାବ୍ଦରେ କର୍ଜନ ବିଶ୍ୱବିଦ୍ୟାଳୟଗୁଡ଼ିକର ସଂସ୍କାର ସାଧନ କରିଥିଲେ । ଏହା ଦ୍ୱାରା ବ୍ୟାପକ ଭାବେ ଛାତ୍ରମାନଙ୍କ ଦ୍ୱାରା ପ୍ରଦତ୍ତ ବେତନର ପରିମାଣ ବଢ଼େଇ ଦିଆଗଲା ଏବଂ ବିଶ୍ୱବିଦ୍ୟାଳୟର ଯାବତୀୟ କାର୍ଯ୍ୟକଳାପକୁ ବ୍ରିଟିଶ୍ ଔପନିବେଶିକ ଅମଲାତନ୍ତ୍ରର ଅଧୀନସ୍ଥ କରାଗଲା । ଏପରି କରିବାର ଉଦ୍ଦେଶ୍ୟ ହେଲା ଭାରତୀୟ ମଧ୍ୟବିତ୍ତମାନଙ୍କର ଏକ ବଡ଼ ଅଂଶକୁ ଉଚ୍ଚ ଶିକ୍ଷାରୁ ବଞ୍ଚିତ କରିବା ।

ଜାତୀୟ କଂଗ୍ରେସ ସଂପର୍କରେ କର୍ଜନଙ୍କ ଅଭିମତ ହେଲା – ଏହାର ଶାନ୍ତିପୂର୍ଣ୍ଣ ମୃତ୍ୟୁବରଣ ଦିଗରେ ସେ ସାହାଯ୍ୟ କରିଯିବେ । ଭାରତୀୟ ସଂସ୍କୃତି ସଂପର୍କରେ ତାଙ୍କର ଘୃଣା ବୋଧକୁ ସେ ଗୋପନ ରଖୁ ନଥିଲେ । କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଦତ୍ତ ଏକ ବକ୍ତୃତାରେ ସେ ପ୍ରକାଶ୍ୟ ଭାବେ ଦେଶର ମହାନ୍ ସାଂସ୍କୃତିକ ଐତିହ୍ୟକୁ ବ୍ୟଙ୍ଗ କରିଥିଲେ ।

ପ୍ରତିକ୍ରିୟାଶୀଳ ଆଭ୍ୟନ୍ତରୀଣ ନୀତି ଅନୁସରଣ କରିବା ସଙ୍ଗେ ସଙ୍ଗେ କର୍ଜନ ଏସିଆରେ ସାମରିକ ଅଭିଯାନ ପାଇଁ ପ୍ରସ୍ତୁତି ଚଳେଇଥିଲେ । ସେ ସାମରିକ ଓ ପୁଲିସ୍ ବାହିନୀକୁ ଦୃଢ଼ ଭାବେ ସଂଗଠିତ କରିଥିଲେ । ବୁଅରମାନଙ୍କର ଦମନକାରୀ ଜେନେରାଲ କିଚେନେରଙ୍କୁ ପ୍ରଧାନ ସେନାପତି ରୂପେ

ନିଯୁକ୍ତ କରାଯାଇଥିଲା । ସେ ସାମରିକ କ୍ଷେତ୍ରରେ ବ୍ୟୟ ମଧ୍ୟ ବୃଦ୍ଧି କରିଦେଲେ । ଉତ୍ତର-ପଶ୍ଚିମ ସୀମାନ୍ତରେ ସୈନ୍ୟବାହିନୀର ସହଜ ଅନୁପ୍ରବେଶ ପାଇଁ ସାମରିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ ନୂତନ ରେଳପଥଟି ନିର୍ମିତ ହୋଇଥିଲା । ଏହି ଅଞ୍ଚଳରେ ବ୍ରିଟିଶମାନଙ୍କ ନିୟନ୍ତ୍ରଣକୁ ଦୃଢ଼ କରିବା ଏବଂ ପଠାଣ ଉପଜାତିମାନଙ୍କର ଅବିରତ ପ୍ରତିରୋଧକୁ ମୁକାବିଲା କରିବା ଉଦ୍ଦେଶ୍ୟରେ ୧୯୦୧ ମସିହାରେ ସୀମାନ୍ତ ଅଞ୍ଚଳକୁ ସେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ନାମ ଦେଇ ଏକ ନୂତନ ପ୍ରଦେଶ ସୃଷ୍ଟି କଲେ ।

କିନ୍ତୁ କର୍ଜନଙ୍କ ଦମନମୂଳକ ନୀତି କେବଳ ଔପନିବେଶିକତା ବିରୋଧୀ ଦୃଷ୍ଟିଭଙ୍ଗିକୁ ଦୃଢ଼ତର କରିଥିଲା, ବୈପ୍ଳବିକ ଉଦ୍ଦୀପନାକୁ ଇନ୍ଧନ ଯୋଗାଇଥିଲା ।

୧୮୯୮ ଖ୍ରୀଷ୍ଟାବ୍ଦରେ ଜେଲରୁ ମୁକ୍ତି ପାଇବା ପରେ ତିଳକ ପୁନର୍ବାର "କେଶରୀ" ସଂପାଦନାର ଦାୟିତ୍ୱ ଗ୍ରହଣ କରିଥିଲେ । ଜାତୀୟ ଆନ୍ଦୋଳନର ବାମପନ୍ଥୀମାନେ ତା'ପରେ ମହାରାଷ୍ଟ୍ରରେ ଖୁବ୍ ସକ୍ରିୟ ହୋଇ ଉଠିଥିଲେ । ସେଠାକାର ଅର୍ଦ୍ଧ ଆଇନ୍‌ସମ୍ମତ କ୍ରୀଡ଼ା ଆଉ ଯୁବ ସମିତିଗୁଡ଼ିକ ଉପରେ ପୁଲିସ୍ ନିଷେଧାଜ୍ଞା ଜାରି କରିବାକୁ ବ୍ୟର୍ଥ ହେଲା । ଏଠାରେ ଉଲ୍ଲେଖ କରିବାର କଥା ଯେ, ଔପନିବେଶିକ ଦମନ ବିରୁଦ୍ଧରେ ମରହଟ୍ଟା ଯୁବ ସମାଜର ଜାତୀୟତାବାଦୀ ଅଂଶ ଆଗାମୀ ଦିନର ସକ୍ରିୟ ସଂଗ୍ରାମ ପାଇଁ ଏହି ସମିତିଗୁଡ଼ିକ ମଧ୍ୟରେ ନିଜକୁ ପ୍ରସ୍ତୁତ କରୁଥିଲେ । ଇତିମଧ୍ୟରେ ଜାତୀୟ ଆନ୍ଦୋଳନର ବାମପନ୍ଥୀ ଅଂଶର ନେତା ରୂପେ ଖ୍ୟାତ ତିଳକଙ୍କ ପ୍ରଭାବ ବମ୍ବେ ପ୍ରଦେଶର ସୀମାନ୍ତ ଅତିକ୍ରମ କରି ଯାଇଥିଲା । ମରହଟ୍ଟା ଦେଶପ୍ରେମିକ ଓ ବଙ୍ଗଳାର ଜାତୀୟତାବାଦୀମାନଙ୍କ ମଧ୍ୟରେ ଘନିଷ୍ଠ ସଂଯୋଗ ରହିଥିଲା ।

ଏହି ଶତାବ୍ଦୀର ପ୍ରାରମ୍ଭରେ ମହାରାଷ୍ଟ୍ର ଭଳି ବଙ୍ଗଳାରେ ବାମପନ୍ଥୀ ଜାତୀୟତାବାଦୀମାନଙ୍କର ଅନେକଗୁଡ଼ିଏ ଅର୍ଦ୍ଧ ଆଇନସମ୍ମତ ସଂଗଠନ ଓ ସମ୍ମିଳନୀ ଗଢ଼ି ଉଠିଥିଲା । ଏସବୁର ସଦସ୍ୟମାନେ ଥିଲେ, ଜାତୀୟ କଂଗ୍ରେସର ନେତାମାନଙ୍କ ମଧ୍ୟରୁ ଯେଉଁମାନେ ନରମ ପ୍ରତିବାଦ କରୁଥିଲେ, ସେମାନଙ୍କର ସମାଲୋଚକ ଏବଂ ଭାରତରୁ ବ୍ରିଟିଶ୍ ଔପନିବେଶିକ ଶାସନର ବିଲୋପ ଦିଗରେ ବିକ୍ଷୋଭକୁ ବ୍ୟାପକ କରିବାର ସମର୍ଥକ । ବଙ୍ଗଳାରେ ପ୍ରବର୍ତ୍ତିତ ଗଣେଶ ପୂଜା ଗଣ ଉତ୍ସବ (ମହାରାଷ୍ଟ୍ରର ଅନୁକରଣରେ) ଜାତୀୟ ମୁକ୍ତି ଆନ୍ଦୋଳନରେ ଭାରତୀୟ ଜନସାଧାରଣଙ୍କ ଐକ୍ୟର ପ୍ରତୀକ ହିସାବରେ ବ୍ୟାପକ ଦେଶାତ୍ମମୂଳକ ଦୃଷ୍ଟାନ୍ତର ରୂପ ଲାଭ କରିଥିଲା । ୧୯୦୨ ଖ୍ରୀଷ୍ଟାବ୍ଦରେ କଲିକତାରେ ଏକ ଗୁପ୍ତକମିଟି ଗଠିତ ହୋଇଥିଲା । ଏହାର ଘୋଷିତ ନୀତି ଥିଲା ସଶସ୍ତ୍ର ଅଭ୍ୟୁତ୍ଥାନ ସଂଘଟିତ କରିବା ।

ଏଥି ସଙ୍ଗେ ସଙ୍ଗେ ଜାତୀୟ କଂଗ୍ରେସର ସ୍ଥାନୀୟ ସଂଗଠନଗୁଡ଼ିକ ମଧ୍ୟ ସକ୍ରିୟତର ହୋଇ ଉଠୁଥିଲେ । ଏସବୁ ଦ୍ୱାରା ଅନୁଷ୍ଠିତ ଆଞ୍ଚଳିକ ସମ୍ମେଳନଗୁଡ଼ିକରେ ବାମପନ୍ଥୀ ପେଟି-ବୁର୍ଜୁଆ ଜାତୀୟତାବାଦୀମାନଙ୍କର କଣ୍ଠସ୍ୱର କ୍ରମଶଃ ତୀବ୍ରତର ହୋଇ ଉଠୁଥିଲା । ତିଳକଙ୍କ ଭଳି ଆଉ କେତେକ ବାମପନ୍ଥୀ ଜାତୀୟତାବାଦୀ ନେତାଙ୍କର ଅଭ୍ୟୁଦୟ ମଧ୍ୟ ଘଟିଥିଲା ଏହି ସମୟରେ । ଏମାନଙ୍କ ମଧ୍ୟରେ ବଙ୍ଗଳାର ବିପିନଚନ୍ଦ୍ର ପାଲ ଓ ଅରବିନ୍ଦ ଘୋଷ୍ ଏବଂ ପଞ୍ଜାବର ଲାଲ ଲଜପତ ରାୟଙ୍କ ନାମ ଉଲ୍ଲେଖଯୋଗ୍ୟ । ତତ୍‌କାଳୀନ ନରମପନ୍ଥୀମାନଙ୍କର ପ୍ରତିପକ୍ଷ ହିସାବରେ ବାମପନ୍ଥୀ ଜାତୀୟତାବାଦୀମାନେ "ଚରମପନ୍ଥୀ" ନାମରେ ନାମିତ ହୋଇଥିଲେ ।

## ୧୯୦୫ ଖ୍ରୀଷ୍ଟାବ୍ଦର ବଙ୍ଗଭଙ୍ଗ ଏବଂ ଗଣ ଆନ୍ଦୋଳନର ସୂତ୍ରପାତ

ବ୍ରିଟିଶ୍ ଔପନିବେଶିକ ସରକାର ସମ୍ଭାବ୍ୟ ଏକ ଅଭ୍ୟୁତ୍‌ଥାନକୁ ପଣ୍ଡ କରିବା ଉଦ୍ଦେଶ୍ୟରେ ଜାତୀୟତାବାଦୀ ଦେଶାତ୍ମକ ଶକ୍ତି ଉପରେ ଏକ ଆଘାତ ହାଣିବାକୁ ସ୍ଥିର କରିଥିଲା । ଏହି ଲକ୍ଷ୍ୟରେ ୧୯୦୫ ଖ୍ରୀଷ୍ଟାବ୍ଦରେ ବଡ଼ଲାଟ୍ କର୍ଜନ ବଙ୍ଗଭଙ୍ଗର ସିଦ୍ଧାନ୍ତ ଘୋଷଣା କଲେ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରଧାନ କେନ୍ଦ୍ରଟି ପୂର୍ବ ଭଳି ବଙ୍ଗଳାରେ ଅବସ୍ଥିତ ଥିଲା । ଭାରତୀୟ ଜାତିଗୁଡ଼ିକ ମଧ୍ୟରେ ବଙ୍ଗାଳୀମାନେ ସର୍ବାଧିକ ସୁସ୍ପଷ୍ଟ ଜାତୀୟ ସ୍ୱକୀୟତା ଲାଭ କରିଥିଲେ ଏବଂ ସେମାନଙ୍କ ଜାତୀୟ ଐକ୍ୟ ଦେଶର ଏହି ଅଂଶରେ ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରତି ଉଲ୍ଲେଖନୀୟ ଅବଦାନ ରଖିଥିଲା । ବଙ୍ଗଳାକୁ ପଶ୍ଚିମ ବଙ୍ଗ (ବିହାର, ଓଡ଼ିଶା ସହିତ ଯୁକ୍ତ କରି) ଏବଂ ପୂର୍ବ ବଙ୍ଗରେ (ଆସାମ ସହ) ବିଭକ୍ତ କରିବାର ଏହି ପ୍ରସ୍ତାବ ଫଳରେ ଧର୍ମୀୟ ଓ ଜାତିଗତ ବିରୋଧ ପ୍ରକଟିତ ହୋଇଥିଲା । ଫଳରେ ପଶ୍ଚିମ ବଙ୍ଗରେ ବିହାରୀ ଆଉ ଓଡ଼ିଆମାନଙ୍କର ସଂଖ୍ୟାଧିକ୍ୟ ଘଟିଥିଲା । ପୂର୍ବ ବଙ୍ଗରେ ବଙ୍ଗାଳୀମାନଙ୍କ ସଂଖ୍ୟାଧିକ୍ୟ ସତ୍ତ୍ୱେ ଜନସଂଖ୍ୟାର ଅଧିକାଂଶ ଥିଲେ ମୁସଲମାନ । ପୂର୍ବ ବଙ୍ଗର ମୁସଲିମ୍ ଜମିଦାର ଓ ବ୍ୟବସାୟରତ ଶକ୍ତିଶାଳୀ ମୁସଲିମ୍ ବୁର୍ଜୁଆମାନଙ୍କୁ କୁହାଯାଇଥିଲା ଯେ, ଏହି ନବ ଗଠିତ ପ୍ରଦେଶର ଔପନିବେଶିକ ପ୍ରଶାସନରେ ମୁସଲିମ୍ ବୁଦ୍ଧିଜୀବୀମାନେ ହିନ୍ଦୁମାନଙ୍କ ତୁଳନାରେ ଅନେକ ବେଶି ଗୁରୁତ୍ୱପୂର୍ଣ୍ଣ ପଦ ଲାଭ କରିବାର ସୁଯୋଗ ପାଇବେ ।

କିନ୍ତୁ ଏହା ଦ୍ୱାରା ଔପନିବେଶିକ ଶାସକମାନେ ଯାହା ପରିକଳ୍ପନା କରିଥିଲେ, ତା'ର ବିପରୀତ ଫଳ ଫଳିଥିଲା । ବଙ୍ଗଭଙ୍ଗ ଫଳରେ ବଙ୍ଗାଳୀମାନଙ୍କର ସମସ୍ତ ସ୍ତର ମଧ୍ୟରେ ବିକ୍ଷୋଭ ଦେଖା ଦେଇଥିଲା । ଶିଳ୍ପ ତଥା ବ୍ୟବସାୟରତ ଜାତୀୟ ବୁର୍ଜୁଆମାନେ ବଙ୍ଗଭଙ୍ଗ ଫଳରେ ଇତିପୂର୍ବରୁ ପ୍ରତିଷ୍ଠିତ ଅର୍ଥନୈତିକ ବ୍ୟବସ୍ଥା ଭାଙ୍ଗି ପଡ଼ିବ ଓ ସେମାନଙ୍କ ସ୍ୱାର୍ଥ ରକ୍ଷାକାରୀ ସଂସ୍ଥାଗୁଡ଼ିକ, ବିଶେଷତଃ, "ଚେମ୍ବର ଅଫ୍ କମର୍ସ ଆଣ୍ଡ୍ ଇଣ୍ଡଷ୍ଟ୍ରିଜ୍‌ର" ପ୍ରଭାବ ହ୍ରାସ ପାଇବ ବୋଲି ଭାବି ଭୟଭୀତ ହୋଇ ପଡ଼ିଥିଲେ । ବଙ୍ଗଭଙ୍ଗ ଫଳରେ ଶେଷକୁ ଚିରସ୍ଥାୟୀ ବନ୍ଦୋବସ୍ତ ଲୋପ ଓ ଭୂମିରାଜସ୍ୱ ବୃଦ୍ଧି ପାଇବ ବୋଲି ଜମିଦାରମାନେ ମଧ୍ୟ ଭୀତ ହୋଇ ପଡ଼ିଲେ । ବଙ୍ଗ ଭଙ୍ଗ ଯେ କଲିକତାର ପ୍ରଶାସନିକ ଓ ଆଇନ୍ ଅଦାଲତ୍ ଆଦି ସଂସ୍ଥାଗୁଡ଼ିକର ସଂଖ୍ୟା ହ୍ରାସ କରିବ ଏବଂ ଉଚ୍ଚ ଶିକ୍ଷିତମାନଙ୍କ ମଧ୍ୟରେ ବେକାରିର ମାତ୍ରା ବଢ଼େଇବ—ଏ ସଂପର୍କରେ ବୁଦ୍ଧିଜୀବୀମାନେ ନିଶ୍ଚିତ ଥିଲେ । ଏହିସବୁ ମତାମତର ସମର୍ଥନରେ ବଙ୍ଗଳାର ମଧ୍ୟପନ୍ଥୀ ଜାତୀୟତାବାଦୀ ନେତା ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଲେଖିଥିଲେ—ଏହା ଦ୍ୱାରା ବଙ୍ଗାଳୀମାନେ ଅପମାନିତ, ଅସମ୍ମାନିତ ହେଉଛନ୍ତି ଏବଂ ସେମାନଙ୍କ ସମଗ୍ର ଭବିଷ୍ୟତ ବିପନ୍ନ ହୋଇଛି । ତାଙ୍କ ମତରେ, ବଙ୍ଗଳାଭାଷୀ ଜନସାଧାରଣଙ୍କର କ୍ରମବର୍ଦ୍ଧମାନ ଐକ୍ୟ ପ୍ରତି ବଙ୍ଗଭଙ୍ଗ ଥିଲା ଏକ ସତର୍କ ଭାବେ ପରିକଳ୍ପିତ ଆଘାତ ସ୍ୱରୂପ ।

ଜମିଦାର, ସହଯୋଗୀ ବୁର୍ଜୁଆମାନଙ୍କର ଅଳ୍ପ କେତେକ ଗୋଷ୍ଠୀ ଏବଂ ମୁସଲିମ୍ ସାମନ୍ତ ବୁଦ୍ଧିଜୀବୀମାନଙ୍କର ଏକ ଅଂଶ କେବଳ ବଙ୍ଗଭଙ୍ଗକୁ ସମର୍ଥନ କରିଥିଲେ । ଔପନିବେଶିକ ସରକାର ୧୯୦୫ ଖ୍ରୀଷ୍ଟାବ୍ଦ, ଜୁଲାଇ ମାସରେ ସରକାରୀ ଭାବେ ବଙ୍ଗଭଙ୍ଗ ଘୋଷଣା କରିବା ସଙ୍ଗେ ସଙ୍ଗେ

ଅଗଷ୍ଟ ମାସର ପ୍ରାରମ୍ଭରେ କଲିକତାରେ ବ୍ୟାପକ ପ୍ରତିବାଦ ସଭାଗୁଡ଼ିକ ଆରମ୍ଭ ହୋଇଗଲା । ଏସବୁ ମଧ୍ୟରୁ ଗୋଟିଏ ସଭାରେ ସିଦ୍ଧାନ୍ତ ନିଆଯାଇଥିଲା ବ୍ରିଟିଶ୍ ପଣ୍ୟ ବର୍ଜନ କରିବାକୁ । ଏଥି ସଙ୍ଗେ ସଙ୍ଗେ ଜାତୀୟ ସଂବାଦପତ୍ର, ଜନସଭା ଓ ଜାତୀୟ ରାଜନୈତିକ ଦଳଗୁଡ଼ିକର ସମ୍ମେଳନ ସ୍ଥାନୀୟ ଭାରତୀୟ ଶିଳ୍ପଗୁଡ଼ିକୁ ଉତ୍ସାହ ଦାନ ଓ ଦେଶୀୟ ପଣ୍ୟ (ସ୍ୱଦେଶୀ) କ୍ରୟ ପାଇଁ ଜନସାଧାରଣଙ୍କ ନିକଟରେ ଆବେଦନ ଜଣାଇଥିଲେ ।

ସ୍ୱଦେଶୀ ଆନ୍ଦୋଳନ ବାହ୍ୟତଃ ଅର୍ଥନୈତିକ ଚରିତ୍ରର ହେଲେ ମଧ୍ୟ ଅବିଳମ୍ବେ ଏହା ସମଗ୍ର ଜାତିର ଗଣ ଆନ୍ଦୋଳନର ଚରିତ୍ର ଗ୍ରହଣ କରିଥିଲା । ୧୯୦୫ ମସିହା ଶରତ କାଳରେ ଏହା ବଙ୍ଗଳାର ସୀମାନ୍ତ ପାରି ହୋଇ ଦେଶର ଅନ୍ୟାନ୍ୟ ଅଞ୍ଚଳରେ, ବିଶେଷତଃ, ମହାରାଷ୍ଟ୍ର ଓ ପଞ୍ଜାବରେ ବ୍ୟାପୀ ଯାଇଥିଲା । ତିଳକ ଏବଂ ତାଙ୍କ ଅନୁଗାମୀମାନେ ଏହି ଆନ୍ଦୋଳନକୁ ସକ୍ରିୟ ସମର୍ଥନ ପ୍ରଦାନ କରିଥିଲେ । ଏହା ପରେ ସର୍ବତ୍ର ସ୍ୱଦେଶୀମାନଙ୍କର ଦୋକାନ, କଳକାରଖାନା ଗଢ଼ି ଉଠିବାକୁ ଲାଗିଥିଲା ଏବଂ ବିଦେଶୀ ପଣ୍ୟ ବିକ୍ରୟକାରୀ ଦୋକାନମାନଙ୍କ ଆଗରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ।

୧୯୦୫ ଖ୍ରୀଷ୍ଟାବ୍ଦ, ଅକ୍ଟୋବର ୧୬ ତାରିଖଟି, ଯେଉଁ ଦିନ ବଙ୍ଗଭଙ୍ଗ ଆଇନ୍ ବଳବତ୍ର ହେଲା, ବଙ୍ଗଭଙ୍ଗ ଦିବସ ହିସାବରେ ପୂର୍ବତନ ପ୍ରଦେଶରେ ସର୍ବତ୍ର ଜାତୀୟ ଶୋକ ଦିବସ ରୂପେ ଘୋଷିତ ହୋଇଥିଲା । ସେ ଦିନ କଲିକତାରେ ଏକ ବିରାଟ ବିକ୍ଷୋଭ ପରେ ଏକ ବିଶାଳ ଶୋଭାଯାତ୍ରା ଗଙ୍ଗା ତୀରରେ ପହଞ୍ଚିଥିଲା ଏବଂ "ବନ୍ଦେ ମାତରମ୍" ଜାତୀୟ ସଙ୍ଗୀତ ଗାଇ ମାତୃଭୂମିକୁ ପୁଣି ସଂଯୁକ୍ତ କରିବାକୁ ଦୃଢ଼ ସଂକଳ୍ପ ନେଇଥିଲା । ସହରରେ ସେ ଦିନ ଦୋକାନ ଆଦି ବନ୍ଦ ରହିଥିଲା ଏବଂ କୌଣସି ଘରେ ଚୁଲୀ ଜଳି ନଥିଲା କି ରନ୍ଧା ବଢ଼ା ହୋଇ ନଥିଲା । ଏହି ଆନୁଷ୍ଠାନିକ ପ୍ରତିଜ୍ଞାର ନିଦର୍ଶନ ରୂପେ ବାହୁରେ ରାଖୀ ବନ୍ଧାଯାଇଥିଲା । ଏହି ରାଖୀ ବନ୍ଧନ ଥିଲା ବଙ୍ଗାଳୀ ଜାତିର ଐକ୍ୟର ପ୍ରତୀକ ।

ସହର ସମେତ ଗ୍ରାମାଞ୍ଚଳକୁ ସ୍ୱଦେଶୀ ଆନ୍ଦୋଳନ ବ୍ୟାପି ଯାଇଥିଲା । ପଣ୍ୟ ବର୍ଜନର ବିରୋଧୀମାନଙ୍କୁ ସମାଜଚ୍ୟୁତ କରାଯାଇଥିଲା । ଫଳତଃ ବହୁ ବ୍ୟବସାୟୀ ଏବଂ ସହଯୋଗୀ ବୁର୍ଜୁଆ ଧ୍ୱଂସ ପାଇ ଯାଇଥିଲେ । କଲିକତା ଏବଂ ବଙ୍ଗଳାର ଅନ୍ୟାନ୍ୟ ସହରରେ ପ୍ରଧାନତଃ ଗୁପ୍ତ ସମିତି ଏବଂ ଯୁବକମାନଙ୍କର କ୍ରୀଡ଼ା ସଂଘଗୁଡ଼ିକରୁ ସ୍ୱେଚ୍ଛାସେବକମାନଙ୍କୁ ନେଇ ସ୍ଥାନୀୟ ସ୍ୱେଚ୍ଛାସେବକ ସଂଘମାନ ଗଠିତ ହୋଇଥିଲା । ବିଶେଷ ପୋଷାକ ପରିହିତ (ହଳଦିଆ ଟୋପି ଓ ଲାଲ ସାର୍ଟ) ସ୍ୱେଚ୍ଛାସେବକମାନେ ଶୋଭାଯାତ୍ରା ଓ ଗଣ ବିକ୍ଷୋଭର ପ୍ରଧାନ ସଂଗଠକ ଥିଲେ ଏବଂ ସେଇମାନେ ହିଁ ବ୍ରିଟିଶ୍ ପଣ୍ୟ ବିକ୍ରୟକାରୀ ସଂସ୍ଥାଗୁଡ଼ିକ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ ।

ସ୍ୱଦେଶୀ ଆନ୍ଦୋଳନ ଜାତୀୟ କଂଗ୍ରେସର ନେତୃତ୍ୱକୁ ପ୍ରଭାବିତ କରିଥିଲା । ୧୯୦୫ ଖ୍ରୀଷ୍ଟାବ୍ଦ ଶେଷରେ କଂଗ୍ରେସର ଏକ ଅଧିବେଶନରେ ମଧ୍ୟପନ୍ଥୀମାନଙ୍କର ଅନ୍ୟତମ ପ୍ରଧାନ ନେତା ଓ କଂଗ୍ରେସର ସଭାପତି ଗୋପାଳକୃଷ୍ଣ ଗୋଖଲେ ବଙ୍ଗଭଙ୍ଗ ବିରୁଦ୍ଧରେ ପ୍ରତିବାଦ ରୂପେ ବଙ୍ଗଳାରେ ବ୍ରିଟିଶ୍ ପଣ୍ୟ ବର୍ଜନକୁ ସମର୍ଥନ କରିଥିଲେ । ଏହି ସମୟରେ ତିଳକ ଏବଂ ଚରମପନ୍ଥୀମାନଙ୍କ ଦ୍ୱାରା ଉତ୍ଥାପିତ ସାରା ଭାରତର ସମସ୍ତ ପ୍ରଦେଶକୁ ସ୍ୱଦେଶୀ ଆନ୍ଦୋଳନ ବିସ୍ତାର ଏବଂ ଭାରତୀୟ ଜନଜୀବନର ସମସ୍ତ ସ୍ତରରେ ବର୍ଜନ ଆନ୍ଦୋଳନକୁ ଅନୁସରଣ କରିବା ପାଇଁ ଉତ୍ଥାପିତ ପ୍ରସ୍ତାବଟିକୁ ମଧ୍ୟପନ୍ଥୀମାନେ ପ୍ରତ୍ୟାଖ୍ୟାନ କରିଥିଲେ ।

ମଧ୍ୟପନ୍ଥୀ କଂଗ୍ରେସ ନେତାମାନେ ଯେ ଗଣ ଆନ୍ଦୋଳନକୁ କ୍ରମଶଃ ଏଡ଼ାଇବାକୁ ଅକ୍ଷମ ହୋଇ ପଡ଼ୁଥିଲେ, କଂଗ୍ରେସର ଏହି ଅଧିବେଶନରେ ତାହା ସ୍ପଷ୍ଟ ହୋଇ ପଡ଼ିଥିଲା । କିନ୍ତୁ ଏହିସବୁ ସମ୍ଭାବ୍ୟ ସମସ୍ତ ପନ୍ଥାରେ ସଂଗ୍ରାମର ପରିସରକୁ ସୀମିତ କରିବା ଦିଗରେ ସେମାନଙ୍କ ଚେଷ୍ଟା ଫଳରେ ଏମାନଙ୍କ ସହିତ ଚରମପନ୍ଥୀମାନଙ୍କର ମତନୈକ୍ୟ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚିଥିଲା । ବୈପ୍ଳବିକ ସଂଗ୍ରାମ ଶକ୍ତିଶାଳୀ ହୋଇ ଉଠିଲେ ଜାତୀୟ ଆନ୍ଦୋଳନ ମଧ୍ୟରେ ଏହି ମତ ପାର୍ଥକ୍ୟ ଆଉରି ସ୍ପଷ୍ଟତର ହୋଇ ଉଠିଥିଲା ।

## ସ୍ୱଦେଶୀ ଆନ୍ଦୋଳନର ବିକାଶ ଓ ଗଣ ଆନ୍ଦୋଳନ

୧୯୦୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରୁ ଆରମ୍ଭ କରି ପରବର୍ତ୍ତୀ ବର୍ଷଗୁଡ଼ିକରେ ସାମ୍ରାଜ୍ୟବାଦୀମାନଙ୍କ ବିରୁଦ୍ଧରେ ଅସଂଖ୍ୟ ଗଣ ବିକ୍ଷୋଭ ବଙ୍ଗଳାର ସହର ଆଉ ଗ୍ରାମାଞ୍ଚଳକୁ ବ୍ୟାପୀ ଯାଇଥିଲା ।

ଏହା ପରେ ବଙ୍ଗଳା, ମହାରାଷ୍ଟ୍ର, ପଞ୍ଜାବ ଓ ଅନ୍ୟାନ୍ୟ ପ୍ରଦେଶରେ ଚରମପନ୍ଥୀମାନଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇଥିଲା । "ଅନୁଶୀଳନ ସମିତି" ନାମରେ ଢାକାରେ ଗଠିତ ଏକ ବେଆଇନୀ ବିପ୍ଳବୀ-ସଂସ୍ଥା ଦେଶର ଆତ୍ମଗୋପନକାରୀ କର୍ମୀ ଏବଂ ବିପ୍ଳବୀମାନଙ୍କ କାର୍ଯ୍ୟକଳାପକୁ ସମନ୍ୱିତ କରିବାରେ ସହାୟକ ହୋଇଥିଲା । ବମ୍ବେ ଏବଂ ପଞ୍ଜାବରେ ଏକା ରକମର ସଂଗଠନର ଅଭ୍ୟୁଦୟ ଘଟିଥିଲା । ଗୁପ୍ତ ସମିତିଗୁଡ଼ିକ ସହରର ପେଟି-ବୁର୍ଜୁଆ ସ୍ତରଗୁଡ଼ିକର, ବିଶେଷତଃ, ଉଚ୍ଚ ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ପ୍ରଚାର କାର୍ଯ୍ୟ ଚଳାଉଥିଲେ ।

ଏହି ସମୟରେ ବାମପନ୍ଥୀ ମତବାଦର ସମର୍ଥକ ନୂତନ ସମ୍ବାଦପତ୍ରସବୁ ପ୍ରକାଶ ପାଇଥିଲା ଏବଂ ସେସବୁ ମଧ୍ୟରେ "ଯୁଗାନ୍ତର" ଏବଂ "ବନ୍ଦେ ମାତରମ୍" ଖୁବ୍ ଜନପ୍ରିୟତା ଲାଭ କରିଥିଲା । ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଗଣ ବିଦ୍ରୋହ, ଗ୍ୟାରିବଲ୍ଡି, ମାଜିନି ଓ ରୁଷ୍ ବିପ୍ଳବ ସଂପର୍କରେ ବହୁ ପୁସ୍ତକ ମୁଦ୍ରିତ ହୋଇ ବଣ୍ଟାଯାଉଥିଲା ।

ଚରମପନ୍ଥୀମାନେ ସାରା ଦେଶରେ ଗଠିତ କ୍ରୀଡ଼ା ସମିତି ଓ ଯୁବ ସଂସ୍ଥା ଏବଂ ସ୍ୱଦେଶୀ ଦୋକାନ ଓ ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକୁ ସେମାନଙ୍କ ଗୁପ୍ତ କାର୍ଯ୍ୟକଳାପର ଆଇନ୍‌ର ଆଢ଼ୁଆଳ ହିସାବରେ ବ୍ୟବହାର କରୁଥିଲେ । ସ୍ୱଦେଶୀ ଆନ୍ଦୋଳନ ମାଧ୍ୟମରେ ଭାରତୀୟ ପେଟି-ବୁର୍ଜୁଆ ଜାତୀୟତାବାଦୀମାନେ ଜନସାଧାରଣଙ୍କ ବ୍ୟାପକ ଅଂଶକୁ ସକ୍ରିୟ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନରେ ସଂପୃକ୍ତ କରିବାକୁ ପ୍ରୟାସ କରିଥିଲେ । କେବଳ ସହରର ପେଟି-ବୁର୍ଜୁଆମାନଙ୍କ ମଧ୍ୟରେ ସେମାନେ ସେମାନଙ୍କ କାର୍ଯ୍ୟକଳାପକୁ ସୀମିତ ରଖି ନଥିଲେ, ଶ୍ରମିକ, ଏପରିକି ଗ୍ରାମର ଜନସାଧାରଣଙ୍କ ମଧ୍ୟରେ ମଧ୍ୟ ପ୍ରଚାର ଚଳାଉଥିଲେ ।

ସହରର ପେଟି-ବୁର୍ଜୁଆମାନଙ୍କ ଦ୍ୱାରା ଜନସଭା ଏବଂ ବିକ୍ଷୋଭଗୁଡ଼ିକ ସାଧାରଣତଃ ଅନୁଷ୍ଠିତ ହେଲେ ବି ଏସବୁ ଶ୍ରମିକ ଶ୍ରେଣୀର ସମର୍ଥନ ଲାଭ କରୁଥିଲା । ୧୯୦୫ ମସିହା ଶରତ କାଳରେ ବମ୍ବେ ବସ୍ତ୍ରକଳରେ କେତେକ ବଡ଼ ବଡ଼ ଧର୍ମଘଟ ଅନୁଷ୍ଠିତ ହେବା ଫଳରେ ଶ୍ରମିକମାନଙ୍କ କର୍ମ ଦିନର ଦୈର୍ଘ୍ୟ କିଛି ପରିମାଣରେ ହ୍ରାସ ପାଇଥିଲା । ୧୯୦୬ ଖ୍ରୀଷ୍ଟାବ୍ଦରେ ବଙ୍ଗଳା ଧର୍ମଘଟ ଆନ୍ଦୋଳନର କେନ୍ଦ୍ର ପାଲଟି ଯାଇଥିଲା ।

ସେଇ ବର୍ଷ ଗ୍ରୀଷ୍ମ କାଳରେ ପୂର୍ବ ଭାରତ ରେଳପଥରେ ଦୁଇଟି ବଡ଼ ଧର୍ମଘଟ ଅନୁଷ୍ଠିତ ହୋଇଥିଲ । କଲିକତାରେ ସରକାରୀ ମୁଦ୍ରଣାଳୟର ଶ୍ରମିକ ଓ କିରାଣୀମାନେ ସହରର ପୌରସଭାର କର୍ମଚାରୀମାନଙ୍କ ସହିତ ଏକତ୍ର ଧର୍ମଘଟରେ ଯୋଗ ଦେଇଥିଲେ । ଏହି ବର୍ଷ ମଝାମଝି ଏବଂ ଶେଷ ଆଡ଼କୁ ଏଠାକାର ବ୍ରିଟିଶ୍ ମାଲିକାନାଧୀନ ବସ୍ତକଳରେ କେତେକ ବଡ଼ ବଡ଼ ଧର୍ମଘଟ ଅନୁଷ୍ଠିତ ହୋଇଥିଲ ।

୧୯୦୬ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ ଓ ଶରତ କାଳର ଧର୍ମଘଟଗୁଡ଼ିକ ଥିଲ ନୂତନ ଦିକ୍‌ଚିହ୍ନ ସ୍ୱରୂପ, କାରଣ ଏଥିରେ ଶ୍ରମିକମାନେ କେବଳ ବିଶୁଦ୍ଧ ଅର୍ଥନୈତିକ ଦାବି ନୁହେଁ, ଅନେକ ରାଜନୈତିକ ଦାବି ମଧ୍ୟ ଉପସ୍ଥାପିତ କରିଥିଲେ । ଏ କ୍ଷେତ୍ରରେ ବ୍ରିଟିଶ୍‌ମାନଙ୍କ ଦ୍ୱାରା ଅନୁସୃତ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଶ୍ରମିକମାନଙ୍କର ପ୍ରତିବାଦ, ଅବଶ୍ୟ, ଉଲ୍ଲେଖଯୋଗ୍ୟ । ରେଳପଥ ଓ ବସ୍ତ୍ରକଳ ଶ୍ରମିକମାନଙ୍କର ଏହିସବୁ ଧର୍ମଘଟ ମାଧ୍ୟମରେ ବଙ୍ଗାଳୀ ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ ସାହାଯ୍ୟରେ ସ୍ଥାନୀୟ ଟ୍ରେଡ୍‌ୟୁନିଅନ୍‌ସବୁ ପ୍ରତିଷ୍ଠିତ ହୋଇଥିଲ । ସାଧାରଣ ଗଣତାନ୍ତ୍ରିକ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ଏବଂ ଶ୍ରମିକ ଶ୍ରେଣୀର ସଂଗ୍ରାମ ଏକାଠି ହେବା ଦ୍ୱାରା ଜାତୀୟ ମୁକ୍ତି ଆନ୍ଦୋଳନ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଅଗ୍ରଗତି ସୂଚୀତ ହୋଇଥିଲ ।

ଚରମପନ୍ଥୀମାନେ, ବିଶେଷତଃ, ବଙ୍ଗଳା ଓ ପଞ୍ଜାବରେ, କୃଷକମାନଙ୍କ ମଧ୍ୟରେ ବିକ୍ଷୋଭ ସୃଷ୍ଟି କରାଇଥିଲେ । ବ୍ରିଟିଶ୍ ପଣ୍ୟ ବର୍ଜନ ପାଇଁ କ୍ରମଶଃ ଗ୍ରାମାଞ୍ଚଳରେ ଅଧିକ ପରିମାଣରେ ସଭା, ସମିତି ଓ ବିକ୍ଷୋଭର ଆୟୋଜନ ଚାଲିଥିଲ । ଚରମପନ୍ଥୀ ପ୍ରଚାରକମାନେ କୃଷକମାନଙ୍କ ମଧ୍ୟରେ ବୈପ୍ଳବିକ ପ୍ରଚାରପତ୍ର ବିତରଣ କରୁଥିଲେ । ସେସବୁ ମଧ୍ୟରୁ ଗୋଟିକରେ ଲେଖା ହୋଇଥିଲ : "ଆମ କୁଟୀରଶିଳ୍ପ ଧ୍ୱଂସକାରୀ, ଆମର ତନ୍ତୁବାୟ ଓ କମାରମାନଙ୍କର ପେଶା ହରଣକାରୀ, ଏହି ଚୋରମାନଙ୍କୁ କିପରି ଆମେ ଶାସକ ହିସାବରେ ସ୍ୱୀକାର କରିବା ? ସେମାନେ ସେମାନଙ୍କ ଦେଶରେ ନିର୍ମିତ ପଣ୍ୟକୁ ଆମଦାନି କରନ୍ତି, ଆମ ବଜାରରେ ଆମ ଜନସାଧାରଣଙ୍କୁ ବିକ୍ରି କରନ୍ତି । ଏହି ଭାବେ ସେମାନେ ଲୁଟ୍ କରନ୍ତି, ଆମ ଜନସାଧାରଣଙ୍କ ମୁହଁରୁ ଦାନା ଛଡ଼େଇ ନିଅନ୍ତି । ଯେଉଁମାନେ ଆମ କ୍ଷେତର ଫସଲ ଲୁଟ୍ କରନ୍ତି, ଆମକୁ ଅନାହାର, ଜ୍ୱର ଆଉ ମହାମାରୀ ମଧ୍ୟକୁ ଠେଲି ଦିଅନ୍ତି, ସେମାନଙ୍କୁ ଆମେ କିପରି ଶାସକ ବୋଲି ଭାବିବୁ ?... ଆମ ଉପରେ ଯେଉଁମାନେ କରର ବୋଝ ଚପେଇ ଚାଲିଛନ୍ତି, ସେଇସବୁ ବିଦେଶୀମାନଙ୍କୁ କିପରି ଆମେ ଶାସକ ବୋଲି ସ୍ୱୀକାର କରିବୁ ?... ଭାଇମାନେ, ଆପଣମାନେ ଏସବୁକୁ ଯେତେ ସହ୍ୟ କରିବେ, ଏହି ଶଠମାନେ ସେତେ ଆପଣମାନଙ୍କୁ ଶୋଷଣ କରିବେ । ଆପଣମାନଙ୍କୁ ଦୃଢ଼ ଭାବେ ଦଣ୍ଡାୟମାନ ହେବାକୁ ହେବ । ଏଥିରୁ ତ୍ରାହି ପାଇବାର ପଥ ବାହାର କରିବାକୁ ହେବ । ଭାଇମାନେ, ଆମେମାନେ ଦୁନିଆର ଶ୍ରେଷ୍ଠ ଜାତି । ଆମ ଦୌଲତ୍‌ରେ ସେମାନେ କାମ ନକରି ସେମାନଙ୍କ ମେଦ ବୃଦ୍ଧି କରୁଛନ୍ତି । ସେମାନେ ଆମର ରକ୍ତଶୋଷଣକାରୀ । ଆମେ କାହିଁକି ଏସବୁକୁ ସହ୍ୟ କରିବା ?!... ହିନ୍ଦୁ ଭାଇମାନେ, କାଳୀ, ଦୁର୍ଗା, ମହାଦେବ ଓ ଶ୍ରୀ କୃଷ୍ଣଙ୍କ ନାମରେ ଶପଥ ନିଅନ୍ତୁ, ମୁସଲମାନ ଭାଇମାନେ, ଆଲ୍ଲାଙ୍କ ନାମ ନେଇ କସମ ଖାଆନ୍ତୁ ଏବଂ ଗ୍ରାମେ ଗ୍ରାମେ ଆବାଜ ତୋଳନ୍ତୁ – ହିନ୍ଦୁ-ମୁସଲମାନ କାନ୍ଧକୁ କାନ୍ଧ ମିଳେଇ ଦେଶର ସେବା କରିବେ... ଭାଇମାନେ, ଜାଗି ଉଠନ୍ତୁ ! ମାତୃଭୂମିର ସୁଯୋଗ୍ୟ ସନ୍ତାନ ରୂପେ ନିଜର ପରିଚୟ ଦିଅନ୍ତୁ, ସାହସର ସହିତ ଲଢ଼େଇ କରନ୍ତୁ, ବଙ୍ଗ ଜନନୀ ପାଇଁ ପ୍ରାଣ ଦାନ କରିବାକୁ ପ୍ରସ୍ତୁତ ହୁଅନ୍ତୁ !"

ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ ଐକ୍ୟ ପାଇଁ ଏହି ଆବେଦନ ଏକ ଆକସ୍ମିକ ଘଟଣା ନୁହେଁ । ସଭା ଶୋଭାଯାତ୍ରା ଉପରେ ନିଷେଧାଜ୍ଞା, "ବନ୍ଦେ ମାତରମ୍" ସଂଗୀତର ନିଷିଦ୍ଧକରଣ, ସଭା ଭାଙ୍ଗି ଦେବା ଆଦି ପ୍ରତ୍ୟକ୍ଷ ଦମନ ସଙ୍ଗେ ସଙ୍ଗେ ବ୍ରିଟିଶ୍ ଔପନିବେଶିକ ଶାସକବର୍ଗ ହିନ୍ଦୁ-ମୁସଲମାନ ଶାସକବର୍ଗଙ୍କ ମଧ୍ୟରେ ଧର୍ମୀୟ ଶତ୍ରୁତାର ଇନ୍ଧନ ଯୋଗେଇ ଆନ୍ଦୋଳନ ମଧ୍ୟରେ ବିଭେଦ ସୃଷ୍ଟି କରିବାକୁ ସମ୍ଭାବ୍ୟ ସବୁକିଛି କରିଥିଲେ । ତା ସତ୍ତ୍ୱେ ୧୯୦୫-୧୯୦୬ ଖ୍ରୀଷ୍ଟାବ୍ଦରେ ସେମାନେ ଏହି ଦୁଇ ସଂପ୍ରଦାୟ ମଧ୍ୟରେ କୌଣସି ମାରାତ୍ମକ ସଂଘର୍ଷ ସୃଷ୍ଟି କରି ପାରି ନଥିଲେ । କ୍ରମବର୍ଦ୍ଧମାନ ବୈପ୍ଳବିକ ଉଦ୍ଦୀପନାର ଏହି ପରିସ୍ଥିତିରେ ବ୍ରିଟିଶ୍‌ମାନେ ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଶକ୍ତିଶାଳୀ ମୁସଲିମ୍ ସାମନ୍ତ ଓ ସହଯୋଗୀ ବୁର୍ଜୁଆମାନଙ୍କୁ ଦ୍ରୁତ ସଂଗଠିତ କରିଥିଲେ ।

୧୯୦୬ ଖ୍ରୀଷ୍ଟାବ୍ଦର ଶରତ କାଳରେ ନୂତନ ବଡ଼ଲାଟ୍ ଲର୍ଡ ମିଣ୍ଟୋଙ୍କ (୧୯୦୬-୧୯୧୦) ସହିତ ଆନୁଷ୍ଠାନିକ ସାକ୍ଷାତ୍କାର ପାଇଁ "ମୁସଲିମ୍ ନେତାମାନଙ୍କର" ଏକ ପ୍ରତିନିଧିଦଳ ଗଠିତ ହୋଇଥିଲା । ବଡ଼ଲାଟ୍‌ଙ୍କୁ ପ୍ରଦତ୍ତ ଏକ ସ୍ମାରକପତ୍ରରେ ଏହି ପ୍ରତିନିଧିମାନେ ପୌରସଭା ଓ ଆଇନ୍ ପରିଷଦରେ ମୁସଲମାନମାନଙ୍କ ପାଇଁ ସଂରକ୍ଷିତ ଆସନ ଦାବି କରିଥିଲେ । ଶକ୍ତିଶାଳୀ ମୁସଲମାନ ସାମନ୍ତମାନଙ୍କ ଦ୍ୱାରା ଉପସ୍ଥାପିତ ଏହି ଦାବି ବ୍ରିଟିଶ୍ ଔପନିବେଶିକ ଅମଲାତନ୍ତ୍ରର ସମର୍ଥନ ଲାଭ କରିଥିଲା । ପୂର୍ବ ବଙ୍ଗର ମୁସଲମାନମାନେ ବିଶେଷ ସୁବିଧା ଲାଭ କରିବେ, ପ୍ରଶାସନିକ ବିଭାଗରେ ସେମାନଙ୍କ ପାଇଁ ଚାକିରି ବ୍ୟବସ୍ଥା କରାଯିବ ବୋଲି ସରକାର ଘୋଷଣା କରିଥିଲା ।

ଭାରତୀୟ ମୁସଲମାନମାନଙ୍କ ମଧ୍ୟରେ ବ୍ରିଟିଶ୍‌ମାଙ୍କ ପ୍ରତି ଆନୁଗତ୍ୟ ସୃଷ୍ଟି କରିବା ପାଇଁ ସେଇ ବର୍ଷ ଡିସେମ୍ବର ମାସରେ ଢାକାରେ ମୁସଲିମ୍ ଲୀଗ୍ ନାମରେ ବ୍ରିଟିଶମାନଙ୍କର ସହଯୋଗୀ ଏକ ପ୍ରତିକ୍ରିୟାଶୀଳ ସଂଗଠନ ପ୍ରତିଷ୍ଠିତ ହୋଇଥିଲା ।

ସେଇ ବର୍ଷ ଶାସକମାନଙ୍କ ସମର୍ଥନପୁଷ୍ଟ ହିନ୍ଦୁମାନଙ୍କର ପ୍ରତିକ୍ରିୟାଶୀଳ ଗୋଷ୍ଠୀ "ଶ୍ରୀ ଭାରତ ଧର୍ମମଣ୍ଡଳ" ନାମକ ଏକ ଧର୍ମୀୟ ପ୍ରତିଷ୍ଠାନ ପ୍ରତିଷ୍ଠା କରିଥିଲେ ।

କିନ୍ତୁ ଜାତୀୟ ଆନ୍ଦୋଳନର ପ୍ରାରମ୍ଭରେ ଭାରତୀୟ ଜାତୀୟତାବାଦୀମାନଙ୍କ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ବୈଷମ୍ୟକୁ କାର୍ଯ୍ୟରେ ଲଗାଇବାକୁ ବ୍ରିଟିଶ୍‌ମାନେ ବ୍ୟର୍ଥ ହୋଇଥିଲେ । ମଧ୍ୟପନ୍ଥୀମାନେ କେତେକ କୁଣ୍ଠାପୋଷଣ କରିବା ସତ୍ତ୍ୱେ ସ୍ୱଦେଶୀ ଆନ୍ଦୋଳନ ପ୍ରତି ସେମାନଙ୍କ ସମର୍ଥନ ଦେଇ ଚାଲିଥିଲେ ଏବଂ ତାହା ଭାରତୀୟମାନଙ୍କ ମାଲିକାନାଧୀନ ପୁଞ୍ଜିପନ୍ଥୀ ସଂସ୍ଥାଗୁଡ଼ିକର ଉନ୍ନତି ଦିଗରେ ଉଦ୍ଦୀପନା ଯୋଗାଇଥିଲା । ଠିକ୍ ଏହି ଆନ୍ଦୋଳନ ସମୟରେ ଟାଟା ଇସ୍‌ପାତ କଂପାନି ତା'ର ୭ ହଜାର ଅଂଶୀଦାରମାନଙ୍କ ମଧ୍ୟରେ ଶେୟାର ବଣ୍ଟନ କରିଥିଲା । ଭାରତୀୟ ବୁର୍ଜୁଆମାନଙ୍କର ଏକ ମୁଖ୍ୟ ଅଂଶ ସେତେବେଳେ ବ୍ରିଟିଶ୍ ପଣ୍ୟ ବର୍ଜନର ସୁଫଳଗୁଡ଼ିକୁ ଭୋଗ କରୁଥିଲେ । ଏ କ୍ଷେତ୍ରରେ ଉଲ୍ଲେଖ କରିବାର କଥା ଯେ, ୧୯୦୫-୧୯୦୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତୀୟ କପଡ଼ାର ଦାମ୍ ଶତକଡ଼ା ୮ ଭାଗ ବୃଦ୍ଧି ପାଇଥିଲା ଏବଂ ବିଲାତି କପଡ଼ାର ଦାମ୍ ଶତକଡ଼ା ୨୫ ଭାଗ କମି ଯାଇଥିଲା ।

ଚରମପନ୍ଥୀମାନେ ଏତେ ଦିନ ପର୍ଯ୍ୟନ୍ତ ମଧ୍ୟପନ୍ଥୀମାନଙ୍କ ଠାରୁ ଖୋଲାଖୋଲି ଭାବେ ଅଲଗା ହୋଇଯିବାକୁ ଚିନ୍ତା କରି ନଥିଲେ । ୧୯୦୬ ଖ୍ରୀଷ୍ଟାବ୍ଦର ଶରତ କାଳରେ କଲିକତାରେ ଜାତୀୟ କଂଗ୍ରେସର ଏକ ଅଧିବେଶନରେ ଚରମପନ୍ଥୀମାନଙ୍କର ପ୍ରାର୍ଥୀ ହିସାବରେ କଂଗ୍ରେସର ସଭାପତି ପଦ

ପାଇଁ ତିଲକଙ୍କ ନାମ ପ୍ରସ୍ତାବ କରାଗଲା । କିନ୍ତୁ ମଧ୍ୟପନ୍ଥୀମାନେ ଏହି ନିର୍ବାଚନକୁ ଏଡ଼େଇବା ପାଇଁ ଭାରତୀୟ ଜାତୀୟତାବାଦୀମାନଙ୍କର ଅବିସଂବାଦିତ ସମ୍ମାନୀୟ ନେତା ବିଖ୍ୟାତ ରାଜନୀତିଜ୍ଞ ଦାଦାଭାଇ ନାରୋଜୀଙ୍କୁ ଏହି ପଦରେ ଅଧିଷ୍ଠିତ କରିଥିଲେ ।

ଜାତୀୟ ମୁକ୍ତି ଆନ୍ଦୋଳନ ଆରମ୍ଭ ହେବା ପରେ କଲିକତାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଚରମପନ୍ଥୀମାନଙ୍କ ଚାପରେ ପ୍ରଥମ ଥର ପାଇଁ ସ୍ୱରାଜ ଦାବି ଉପସ୍ଥାପିତ ହୋଇଥିଲା । ସେତେବେଳେ ଏହାକୁ ସ୍ୱାୟତ୍ତଶାସିତ ଅନ୍ୟାନ୍ୟ ବ୍ରିଟିଶ୍ ଉପନିବେଶ ଭଳି ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟରେ ସ୍ୱାୟତ୍ତଶାସନ ରୂପେ ବ୍ୟାଖ୍ୟା କରାଯାଇଥିଲା ।

ଭାରତର ଜାତୀୟ ମୁକ୍ତି ଆନ୍ଦୋଳନ ଉପରେ ପ୍ରଥମ ରୁଷ୍ ବିପ୍ଳବ କି ଗଭୀର ପ୍ରଭାବ ପକାଇଥିଲା, ଜାତୀୟ କଂଗ୍ରେସର ଏହି ଅଧିବେଶନରେ ସହଜରେ ଲକ୍ଷ୍ୟ କରାଯାଏ । ସଭାପତି ଦାଦାଭାଇ ନାରୋଜୀ ଅଧିବେଶନରେ ଘୋଷଣା କରିଥିଲେ ଯେ, ଯଦି ରୁଷ୍ କୃଷକମାନେ କେବଳ ସ୍ୱାୟତ୍ତଶାସନର ପ୍ରସ୍ତୁତି ନୁହେଁ, ପୃଥିବୀରେ ସର୍ବାପେକ୍ଷା ଶକ୍ତିଶାଳୀ ସ୍ୱୈରତନ୍ତ୍ର କବଳରୁ ସେ ଅଧିକାରକୁ ଛଡ଼େଇ ନେଇ ପାରନ୍ତି, ଯଦି ଏସିଆର ପୂର୍ବରେ ଚୀନ୍‌ରେ ଏବଂ ପଶ୍ଚିମରେ ପାରସ୍ୟରେ ଜାଗରଣ ଦେଖା ଦେଇ ପାରେ, ଯଦି ଜାପାନ୍ ଜାଗି ଉଠି ପାରେ, ଯଦି ରୁଷିଆ ମୁକ୍ତି ପାଇଁ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଚଳାଇ ପରେ, ତେବେ ବ୍ରିଟିଶ୍ ସାମ୍ରାଜ୍ୟର ମୁକ୍ତ ନାଗରିକ ହିସାବରେ ଆମେ ଏକ ସ୍ୱୈରାଚାରୀ ଶାସନ ଅଧୀନରେ ସମସ୍ତ ଅଧିକାରରୁ ବଞ୍ଚିତ ପ୍ରଜା ହୋଇ କାହିଁକି ରହିବା ?

## ଜାତୀୟ ଆନ୍ଦୋଳନ ଉପରେ ପ୍ରଥମ ରୁଷ୍ ବିପ୍ଳବର (୧୯୦୫) ପ୍ରଭାବ ।

## ସ୍ୱରାଜ ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ

ପ୍ରଥମ ରୁଷ୍ ବିପ୍ଳବ ଚରମପନ୍ଥୀମାନଙ୍କ ଉପରେ ସର୍ବାପେକ୍ଷା ଅଧିକ ପ୍ରଭାବ ପକାଇଥିଲା । ରୁଷିଆର ବୈପ୍ଳବିକ ଘଟଣାବଳୀର ସମ୍ବାଦ ଭାରତରେ ପ୍ରଧାନତଃ ୟୁରୋପୀୟ ବୁର୍ଜୁଆ ସମ୍ବାଦପତ୍ରଗୁଡ଼ିକ ମାଧ୍ୟମରେ ପହଞ୍ଚିଥିଲା । ସେସବୁ ସମ୍ବାଦପତ୍ର "ରୁଷୀୟ ପଦ୍ଧତି" ହିସାବରେ ଚିହ୍ନିତ ସାଧାରଣ ବିଚ୍ଛିନ୍ନ ଭୟପ୍ରଦ କାର୍ଯ୍ୟକଳାପଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ରୁଷିଆରେ ବୈପ୍ଳବିକ ଘଟଣାବଳୀର ବର୍ଣ୍ଣନା ସମେତ ଗୋପନରେ ମୁଦ୍ରିତ ପ୍ରଚାରପତ୍ରଗୁଡ଼ିକ ମଧ୍ୟ ପହଞ୍ଚିଥିଲା ଭାରତବର୍ଷରେ । ଭାରତର ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀ ଓ ଗୁପ୍ତ ସମିତିଗୁଡ଼ିକର ସଦସ୍ୟମାନେ ରୁଷ୍ ବିପ୍ଳବକୁ ସ୍ୱକୀୟ ଢଙ୍ଗରେ ବ୍ୟାଖ୍ୟା କରି ଦେଶପ୍ରେମିକ ଯୁବକମାନଙ୍କୁ ଆଗ୍ନେୟାସ୍ତ୍ର ବ୍ୟବହାର କରିବାର ଶିକ୍ଷା ଦେବାକୁ ଆରମ୍ଭ କରି ଦେଇଥିଲେ ।

ୟୁରୋପରେ ବାସ କରୁଥିବା ଦେଶାନ୍ତରୀ ଭାରତୀୟ ବିପ୍ଳବୀମାନେ ରୁଷିଆର ବୈପ୍ଳବିକ ଅଭିଜ୍ଞତାକୁ ସଂପ୍ରସାରିତ କରିବାରେ ସହାୟକ ହୋଇଥିଲେ । ୧୯୦୫-୧୯୦୭ ଖ୍ରୀଷ୍ଟାବ୍ଦରେ ନିର୍ବାସିତ ଭାରତୀୟ ବିପ୍ଳବୀମାନେ ପ୍ରଥମେ ଲଣ୍ଡନରେ ଓ ପରେ ପ୍ୟାରିସ୍‌ରେ ଗୋଟିଏ ଲେଖାଁ ବିପ୍ଳବୀ ଚକ୍ର ଗଠନ କରିଥିଲେ । ଏହି ଦେଶାନ୍ତରୀମାନଙ୍କ ସହିତ ରୁଷ୍ ସୋସାଲ-ଡେମୋକ୍ରାଟ୍‌ମାନଙ୍କର ଯୋଗାଯୋଗ ସ୍ଥାପିତ ହେବା ଦ୍ୱାରା ଶେଷୋକ୍ତମାନଙ୍କ ମାଧ୍ୟମରେ ଭାରତୀୟମାନେ ବିପ୍ଳବର ଅଭିଜ୍ଞତା ଲାଭର ସୁଯୋଗ ପାଇଥିଲେ । ଦ୍ୱିତୀୟ ଆନ୍ତର୍ଜାତିକର ଷ୍ଟୁଟ୍‌ଗାର୍ଟ କଂଗ୍ରେସରେ ଭାରତୀୟ

ପ୍ରତିନିଧିମାନେ ଔପନିବେଶିକତା ଓ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆବେଗପୂର୍ଣ୍ଣ ଭାଷଣ ଦେଇଥିଲେ । ସେମାନେ ରୁଷ୍ ବିପ୍ଳବର ବୀରତ୍ୱପୂର୍ଣ୍ଣ ଦୃଷ୍ଟାନ୍ତ ପ୍ରତି ଭାରତୀୟ ଦେଶପ୍ରେମିକମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କଥା ବ୍ୟକ୍ତ କରିଥିଲେ ।

ରୁଷ୍ ବିପ୍ଳବର ପ୍ରତିଧ୍ୱନି ଭାରତରେ ପହଞ୍ଚି ସେ ଦେଶର ବୈପ୍ଳବିକ ଉଦ୍ଦୀପନାକୁ ଆଉରି ପ୍ରଜ୍ଜ୍ୱଳିତ କରିଥିଲା । ଜାତୀୟ କଂଗ୍ରେସର କଲିକତା ଅଧିବେଶନରେ ସଂଗ୍ରାମର ପ୍ରଥମ ଅଧ୍ୟାୟର ସମାପନ ଘଟିଥିଲା । ୧୯୦୭ ଖ୍ରୀଷ୍ଟାବ୍ଦ ପରେ ସ୍ୱଦେଶୀ ଆନ୍ଦୋଳନ ସ୍ୱରାଜ ଲାଭ ଆନ୍ଦୋଳନର ରୂପ ଲାଭ କରିଥିଲା ।

୧୯୦୭ ଖ୍ରୀଷ୍ଟାବ୍ଦର ବସନ୍ତ କାଳରେ ପଞ୍ଜାବରେ ଏହି ଗଣ ଆନ୍ଦୋଳନର କାର୍ଯ୍ୟକଳାପ ତୁଙ୍ଗଦେଶରେ ପହଞ୍ଚିଥିଲା । ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଅନୁଷ୍ଠିତ ଜନସଭା, ବିକ୍ଷୋଭ ଓ ଧର୍ମଘଟଗୁଡ଼ିକରେ ସହରର ଜନତାର ବ୍ୟାପକ ସ୍ତର ସହିତ ଶ୍ରମିକମାନେ ଅଂଶଗ୍ରହଣ କରିଥିଲେ । ଲାଲା ଲଜପତ ରାୟ ଓ ଅଜିତ ସିଂହଙ୍କ ନେତୃତ୍ୱରେ ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନେ ଇତିମଧ୍ୟରେ ଜନସଭାରେ ଅଂଶଗ୍ରହଣକାରୀ ସିପାହୀମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ଲାଲା ଲଜପତ ରାୟ ଏବଂ ଅଜିତ ସିଂହ ଗିରଫ୍ ଓ ନିର୍ବାସିତ ହେଲେ, ରାଓଲପିଣ୍ଡିରେ ବିଦ୍ରୋହ ଦେଖା ଦେଲା ଏବଂ ବ୍ରିଟିଶ୍ ସୈନ୍ୟମାନେ ସେଟିକୁ ଦମନ କରିଥିଲେ । ପଞ୍ଜାବର ସହରଗୁଡ଼ିକରେ ସଂଗଠିତ ଆନୁଷଙ୍ଗିକ ବିକ୍ଷୋଭଗୁଡ଼ିକୁ ସ୍ଥାନୀୟ କୃଷକମାନେ ସମର୍ଥନ ଦେଇଥିଲେ । ଆନ୍ଦୋଳନଟି ପ୍ରକୃତରେ ଜାତୀୟ ଚରିତ୍ର ଲାଭ କରିଥିଲା ।

ବଙ୍ଗଳାରେ ଆନ୍ଦୋଳନ ତୀବ୍ରତର ହୋଇ ଉଠିଲା । ଇତିମଧ୍ୟରେ ସେଠାରେ "ବନ୍ଦେ ମାତରମ୍ ସଂପ୍ରଦାୟ" ନାମରେ ଗଠିତ ଏକ ଗୁପ୍ତ ସମିତି ସଶସ୍ତ୍ର ଅଭ୍ୟୁତ୍ଥାନର ଆୟୋଜନ ଆରମ୍ଭ କରି ଦେଇଥିଲେ । ଜାତୀୟ ସ୍ୱେଚ୍ଛା ସେବକମାନଙ୍କ ଉଦ୍ୟୋଗରେ ବଜାର ଘେରଉ ଓ ବ୍ରିଟିଶ୍ ପଣ୍ୟ ଧ୍ୱଂସର ମାତ୍ରା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ପୁଲିସ୍ ସହିତ ସଂଘର୍ଷରେ ସେତେବେଳେ ପ୍ରାୟ ସଭା ଶୋଭାଯାତ୍ରାର ପରିସମାପ୍ତି ଘଟୁଥିଲା । ଏହିଭଳି ଏକ ସଂଘର୍ଷରେ କଲିକତାରେ କେତେକ ପୁଲିସ୍ ସେଇ ବିକ୍ଷୋଭକାରୀମାନଙ୍କ ସହିତ ଯୋଗ ଦେଇଥିଲେ ।

ବିଭିନ୍ନ ସହର କେନ୍ଦ୍ରମାନଙ୍କରେ ପୁଣି ଧର୍ମଘଟ ବୃଦ୍ଧି ପାଇଥିଲା । ୧୯୦୬ ଖ୍ରୀଷ୍ଟାବ୍ଦ ଭଳି ଏଥରକ ରେଳ ଶ୍ରମିକମାନେ ଅଗ୍ରଗାମୀ ଭୂମିକା ନେଇଥିଲେ । ସେଇ ବର୍ଷ ବସନ୍ତ କାଳରେ ବମ୍ବେର ରେଳ ଶ୍ରମିକମାନେ ଧର୍ମଘଟ କରିଥିଲେ । ଅକ୍ଟୋବର ମାସରେ ପୂର୍ବ ଭାରତ ରେଳପଥର ଶ୍ରମିକ ଓ କିରାଣୀମାନେ ଦଶ ଦିନ ବ୍ୟାପୀ ଏକ ଧର୍ମଘଟରେ ଯୋଗ ଦେଇଥିଲେ । ଫଳରେ ବଙ୍ଗଳାର ଅର୍ଥନୈତିକ ଜୀବନ ନିଷ୍କ୍ରିୟ ହୋଇ ପଡ଼ିଥିଲା – କୋଇଲା ଅଭାବରୁ କଲିକତା ଏବଂ ଅନ୍ୟାନ୍ୟ ସହରର କଳକାରଖାନା ବନ୍ଦ ହୋଇଗଲା, ମାଲ ଖଲାସ ଅଭାବରୁ ଅସଂଖ୍ୟ ମାଲଗାଡ଼ିରେ ଷ୍ଟେସନସବୁ ଭରିଗଲା । ଏସବୁ ମଧ୍ୟରେ ସର୍ବାଧିକ ଉଲ୍ଲେଖଯୋଗ୍ୟ କଥାଟି ହେଲା, ସେତେବେଳେ ବଡ଼ଲାଟ୍ ଦେଶର ଅବଶିଷ୍ଟ ଅଂଶଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିଥିଲେ । ବୈପ୍ଳବିକ ଆନ୍ଦୋଳନ ଦ୍ୱାରା ବିକ୍ଷୁବ୍ଧ ଏକ ଦେଶରେ ଔପନିବେଶିକ ସରକାରର ବ୍ୟାପକ ମର୍ଯ୍ୟାଦାହାନି ଘଟିଥିଲା । ସେ ବର୍ଷ ଶେଷ ପର୍ଯ୍ୟନ୍ତ ଦେଶର ବିଭିନ୍ନ ଅଞ୍ଚଳରେ ଧର୍ମଘଟ ଲାଗି ରହିଥିଲା । ଆଗ ଭଳି ଏସବୁକୁ ସଂଗଠିତ କରିଥିଲେ ପ୍ରଧାନତଃ ଚରମପନ୍ଥୀମାନେ ।

## ଜାତୀୟତାବାଦୀମାନଙ୍କ ମଧ୍ୟରେ ଗଭୀର ଦ୍ୱନ୍ଦ୍ୱ—ଜାତୀୟ କଂଗ୍ରେସର ବିଭାଜନ

ବୈପ୍ଳବିକ ସଂଗ୍ରାମର ଗତିବେଗ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମଧ୍ୟପନ୍ଥୀ ଓ ଚରମପନ୍ଥୀମାନଙ୍କ ମଧ୍ୟରେ ମତାନୈକ୍ୟ ଗଭୀରତର ହେବାକୁ ଲାଗିଲା । ଶକ୍ତିଶାଳୀ ଭାରତୀୟ ବୁର୍ଜୁଆ, ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କର ଊର୍ଦ୍ଧ୍ୱତନ ସ୍ତର ଓ ଜାତୀୟ ଆନ୍ଦୋଳନକୁ ସମର୍ଥନ କରୁଥିବା ଜମିଦାରମାନଙ୍କର ପ୍ରତିନିଧି ହିସାବରେ ମଧ୍ୟପନ୍ଥୀମାନେ ସଂରକ୍ଷଣଶୀଳ ନୀତି ପ୍ରବର୍ତ୍ତନ, ବିଦେଶୀ ପୁଞ୍ଜି ଉପରେ ସୀମିତ ନିୟନ୍ତ୍ରଣ, ବଡ଼ଲାଟ୍ ଓ ପ୍ରାଦେଶିକ ଲାଟମାନଙ୍କ ଅଧୀନସ୍ଥ ଆଇନ୍ ପରିଷଦଗୁଡ଼ିକରେ ଭାରତର ଧନିକ ଶ୍ରେଣୀର ପ୍ରତିନିଧିମାନଙ୍କ ସଂଖ୍ୟା ବୃଦ୍ଧି ଦ୍ୱାରା ସ୍ୱାୟତ୍ତଶାସନ ସଂପ୍ରସାରଣର ଦାବିରେ ତୁଷ୍ଟ ଥିଲେ । ଏମାନେ ଏହି ପରିଷଦଗୁଡ଼ିକୁ ଔପନିବେଶିକ ପ୍ରଶାସନର କେତେକ କାର୍ଯ୍ୟକଳାପକୁ ନିୟନ୍ତ୍ରଣ ଅଧିକାର ଦେବା ପାଇଁ ଦାବି ଜଣାଉଥିଲେ ।

ଚରମପନ୍ଥୀମାନଙ୍କ ମଧ୍ୟରୁ ଅଧିକାଂଶ ନେତା ସଶସ୍ତ୍ର ଅଭ୍ୟୁତ୍‌ଥାନର ପକ୍ଷପାତୀ ନହେଲେ ମଧ୍ୟ ସେମାନେ ସମସ୍ତେ ଭାରତର ପୂର୍ଣ୍ଣ ସ୍ୱାଧୀନତାର ପକ୍ଷପାତୀ ଥିଲେ । ଜାତୀୟ ମୁକ୍ତି ଆନ୍ଦୋଳନରେ ଜନସାଧାରଣଙ୍କର ସକ୍ରିୟ ଯୋଗଦାନ ବ୍ୟତୀତ ଏହାର ସାଫଲ୍ୟ ସମ୍ଭବ ନୁହେଁ ବୋଲି ସେମାନେ ବୁଝିଥିଲେ । ଦେଶରେ ଦିନେ ଏକ ପ୍ରଜାତନ୍ତ୍ର ସଂଘ ଗଠିତ ହେବ ଏବଂ ଦେଶୀୟ ରାଜ୍ୟମାନଙ୍କର ବିଲୋପ ଘଟିବ, ଏଥିରେ ସେମାନଙ୍କର ସନ୍ଦେହ ନଥିଲା । ଦେଶର ଆଭ୍ୟନ୍ତରୀଣ ସାମାଜିକ ସମସ୍ୟାବଳୀ ସମାଧାନ ବିଷୟରେ ଚରମପନ୍ଥୀମାନଙ୍କର କୌଣସି ସୁଚିନ୍ତିତ କର୍ମସୂଚୀ ନଥିଲେ ମଧ୍ୟ ଜନସାଧାରଣଙ୍କ ପ୍ରତି ସେମାନଙ୍କ ଆବେଦନଗୁଡ଼ିକ ବିଷୟଗତ ଭାବେ ଶ୍ରମିକ ଓ କୃଷକମାନଙ୍କର ଶ୍ରେଣୀ ସଂଗ୍ରାମରେ ଅଂଶଗ୍ରହଣ କରିବା ଦିଗରେ ଉତ୍ସାହ ଯୋଗାଇଥିଲା । ଜାତୀୟ କଂଗ୍ରେସର ଆଞ୍ଚଳିକ ସଂଗଠନଗୁଡ଼ିକ ମଧ୍ୟରେ କାର୍ଯ୍ୟ ପରିଚାଳନା କଲା ଭଳି ଦେଶବ୍ୟାପୀ ନିଜସ୍ୱ ସଂଗଠନର ଅଭାବଟି ଥିଲା ସେମାନଙ୍କ ଦୁର୍ବଳତାର ମୂଳ କାରଣ ।

ଜନସାଧାରଣଙ୍କ ବୈପ୍ଳବିକ ଉଦ୍ୟୋଗ ଓ ଧର୍ମଘଟ ଆନ୍ଦୋଳନର ବିସ୍ତାର ଫଳରେ ଭାରତୀୟ ବୁର୍ଜୁଆମାନଙ୍କର ଊର୍ଦ୍ଧ୍ୱତନ ସ୍ତର ଓ ମଧ୍ୟପନ୍ଥୀମାନେ ଭୀତ ହୋଇ ପଡ଼ିଥିଲେ । ବମ୍ବେର ଶକ୍ତିଶାଳୀ କାରଖାନା ମାଲିକ ଏବଂ ଗୋଖଲେ ଓ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କ ଭଳି ମଧ୍ୟପନ୍ଥୀ ନେତାମାନଙ୍କ ବକ୍ତୃତାରେ ଔପନିବେଶିକ ଶାସନ ସହିତ ଆପୋଷ କରିବାର ସୁର କ୍ରମଶଃ ସ୍ପଷ୍ଟତର ହୋଇ ଉଠୁଥିଲା ।

ଜାତୀୟତାବାଦୀମାନଙ୍କର ଦକ୍ଷିଣପନ୍ଥୀ ଅଂଶର ପଶ୍ଚାଦ୍‌ପସରଣକୁ ତ୍ୱରାନ୍ୱିତ କରିବା ପାଇଁ ବଡ଼ଲାଟ୍ ମିଣ୍ଟୋ ଆସନ୍ନ ଶାସନ ସଂସ୍କାର କଥା ଘୋଷଣା କରିଥିଲେ । ଔପନିବେଶିକ ସରକାର ବଙ୍ଗଳାର ଜମିଦାରମାନଙ୍କ ଅଧିକାରକୁ ଅକ୍ଷୁଣ୍ଣ ରଖିବା ପାଇଁ ଆଶ୍ୱାସ ଦେଇଥିଲା ।

୧୯୦୭ ଖ୍ରୀଷ୍ଟାବ୍ଦର ବସନ୍ତ କାଳରେ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କ ନେତୃତ୍ୱରେ ବଙ୍ଗଳାର ମଧ୍ୟପନ୍ଥୀମାନଙ୍କର ଗୋଟିଏ ପ୍ରତିନିଧି ଦଳ ବଡ଼ଲାଟ୍‌ଙ୍କ ସହିତ ସାକ୍ଷାତ୍ କରିଥିଲେ । ଏହି ପ୍ରତିନିଧି ଦଳର ସଦସ୍ୟମାନେ "ବଙ୍ଗଳାରେ ବଣ୍ୟ ଉଚ୍ଛୃଙ୍ଖଳ ବିକ୍ଷୋଭକୁ" ନିୟନ୍ତ୍ରଣ କରିବାରେ ବଡ଼ଲାଟ୍‌ଙ୍କ ସାହାଯ୍ୟ କାମନା କରିଥିଲେ । ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ମଧ୍ୟପନ୍ଥୀମାନେ ଆନୁଗତ୍ୟ ପ୍ରଦର୍ଶନ

କରିବାକୁ ଆଗେଇ ଆସିଥିଲେ । ସେଇ ବର୍ଷ ଗ୍ରୀଷ୍ମ କାଳରେ ବଙ୍ଗଳାର ଜମିଦାରମାନେ ସମ୍ଭାବ୍ୟ ଯେକୌଣସି ଗଣ ଆନ୍ଦୋଳନ ବିରୁଦ୍ଧରେ ଏକ କର୍ମସୂଚୀ ଘୋଷଣା କରିଥିଲେ ।

ଏହି ସମୟରେ ଚରମପନ୍ଥୀମାନଙ୍କ ସମର୍ଥନକୁ ସଂହତ ଓ ସୁଦୃଢ଼ କରିବା ପାଇଁ ସାରା ଦେଶରେ ତିଳକ କେତୋଟି ଗସ୍ତ ଅଭିଯାନ ଆରମ୍ଭ କରିଥିଲେ । ସାରା ଭାରତର ସଂବାଦପତ୍ରଗୁଡ଼ିକରେ ତାଙ୍କ ବକ୍ତୃତାର ପୂରା ବିବରଣୀ ପ୍ରକାଶ ପାଉଥିଲା । "ଭାରତୀୟ ସଂବିଧାନକୁ ଫୌଜଦାରୀ ଆଇନ୍" ହିସାବରେ ବର୍ଜନ କରିବା ପାଇଁ ସେ ଆହ୍ୱାନ ଦେଇଥିଲେ ଏବଂ ଏହି ଆହ୍ୱାନ ସମଗ୍ର ଜାତିର ସମର୍ଥନ ଲାଭ କରିଥିଲା ।

ଜାତୀୟ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ ସଭାପତି ନିର୍ବାଚନ ଘେନି ଜାତୀୟତାବାଦୀମାନଙ୍କ ମଧ୍ୟରେ ତୀବ୍ର ଦ୍ୱନ୍ଦ୍ୱ ଦେଖା ଦେଲେ ମଧ୍ୟ ଏହି ପଦକୁ ତିଳକଙ୍କୁ ନିର୍ବାଚନ କରିବା ପାଇଁ ଚରମପନ୍ଥୀମାନଙ୍କର ଚେଷ୍ଟା ଶେଷକୁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା ।

ସୁରାଟରେ ଅନୁଷ୍ଠିତ ଏହି ଅଧିବେଶନରେ ଉପସ୍ଥିତ ଅଧିକାଂଶ ସଦସ୍ୟ ଥିଲେ ଦକ୍ଷିଣପନ୍ଥୀ । ଉଦ୍‌ବୋଧନୀ ଅନୁଷ୍ଠାନରେ ତିଳକ ପୂର୍ବବର୍ତ୍ତୀ ଅଧିବେଶନରେ ଗୃହୀତ ସ୍ୱରାଜ ଆନ୍ଦୋଳନକୁ ମଧ୍ୟପନ୍ଥୀମାନେ ପରିତ୍ୟାଗ କରୁଛନ୍ତି ବୋଲି ଅଭିଯୁକ୍ତ କରିଥିଲେ । ସଭା କ୍ଷେତ୍ରରେ ପାଟିତୁଣ୍ଡ ସୃଷ୍ଟି ହେଲେ ମଧ୍ୟପନ୍ଥୀମାନଙ୍କ ଉଦ୍ୟୋଗରେ ପୁଲିସ୍‌କୁ ଡକାଯାଉଥିଲା । ପରଦିନ ଦୁଇ ଦଳ ଅଲଗା ଅଲଗା ଭାବେ ଦୁଇଟି ସଭାର ଆୟୋଜନ କରିଥିଲେ । ମଧ୍ୟପନ୍ଥୀମାନଙ୍କର ବକ୍ତୃତା ଓ ଗୃହୀତ ପ୍ରସ୍ତାବଗୁଡ଼ିକରେ ସାମ୍ରାଜ୍ୟବାଦୀମାନଙ୍କ ନିକଟରେ ଆତ୍ମସମର୍ପଣର ମନୋଭାବ ସ୍ପଷ୍ଟ ହୋଇ ଉଠିଥିଲା । ଚରମପନ୍ଥୀମାନେ ସେମାନଙ୍କର ଏକ ସଂଗଠନ ପ୍ରତିଷ୍ଠା କରିବାକୁ ଯାଇ ବ୍ୟର୍ଥ ହେଲା ପରେ ଗଣ ଆନ୍ଦୋଳନ ବୃଦ୍ଧି କରିବା ପାଇଁ ଆବେଦନ ଜଣାଇଥିଲେ । ଏହା ପରେ କଂଗ୍ରେସର ବିଭାଜନ ସୁନିର୍ଦ୍ଦିଷ୍ଟ ହୋଇ ଯାଇଥିଲା ।

## ଗଣ ଆନ୍ଦୋଳନର ବିକାଶ – ବମ୍ବେରେ ରାଜନୈତିକ ଧର୍ମଘଟ

ଔପନିବେଶିକ ସରକାର ନିକଟରେ ମଧ୍ୟପନ୍ଥୀମାନଙ୍କ ଆତ୍ମସମର୍ପଣ ପରେ ବଙ୍ଗଳାର ଗଣ ଆନ୍ଦୋଳନରେ ଭଟା ଦେଖା ଦେଇଥିଲା ଏବଂ ଗୁପ୍ତ ସମିତିଗୁଡ଼ିକର କାର୍ଯ୍ୟକଳାପ ବିକ୍ଷିପ୍ତ ସନ୍ତ୍ରାସରେ ପର୍ଯ୍ୟବସିତ ହେଲା । ଏହି ସମୟରେ ସଂଗ୍ରାମର କେନ୍ଦ୍ରସ୍ଥଳୀ ସ୍ଥାନାନ୍ତରିତ ହୋଇଥିଲା ମହାରାଷ୍ଟ୍ର ଓ ଦକ୍ଷିଣ ଭାରତକୁ ।

୧୯୦୮ ଖ୍ରୀଷ୍ଟାବ୍ଦ ବସନ୍ତ କାଳରେ ତିନ୍ନେଭେଲି ଓ ତୁତିକୋରିନ୍‌ରେ ବ୍ୟାପକ ଅସନ୍ତୋଷ ଦେଖା ଦେଲା ଏବଂ ଆଞ୍ଚଳିକ ଚରମପନ୍ଥୀ ସଂଗଠନର ନେତୃତ୍ୱରେ ଏହା ଏକ ସାଧାରଣ ରାଜନୈତିକ ଧର୍ମଘଟର ରୂପ ପରିଗ୍ରହ କଲା । ଆନ୍ଦୋଳନଟିକୁ ବ୍ରିଟିଶ୍ ସୈନ୍ୟବାହିନୀ ସହାୟତାରେ ନିର୍ମମ ଭାବେ ଦମନ କରାଯାଇଥିଲା ।

ମହାରାଷ୍ଟ୍ରର ଚରମପନ୍ଥୀମାନେ ବମ୍ବେ ପ୍ରଦେଶର ପ୍ରତ୍ୟେକଟି ତାଲୁକରେ ନିଜସ୍ୱ କେନ୍ଦ୍ର ପ୍ରତିଷ୍ଠା ପାଇଁ ବ୍ୟାପକ ସାଂଗଠନିକ କାର୍ଯ୍ୟକଳାପ ଚଳାଇଥିଲେ । ସେମାନେ ବମ୍ବେର ଶ୍ରମିକମାନଙ୍କ ମଧ୍ୟରେ

ସେମାନଙ୍କ କାର୍ଯକର୍ମ ବୃଦ୍ଧି କରିଥିଲେ ଏବଂ କେତୋଟି ବଡ଼ ଧର୍ମଘଟ ସଂଗଠିତ କରିଥିଲେ । ସେସବୁ ମଧ୍ୟରୁ ଗୋଟିଏ ହେଲା, ଟେଲିଗ୍ରାଫ୍ କର୍ମୀମାନଙ୍କ ଧର୍ମଘଟ । ଏହା ଅନ୍ୟାନ୍ୟ ସହରକୁ ବ୍ୟାପୀ ଯାଇଥିଲା ।

ଇତିମଧ୍ୟରେ ବ୍ରିଟିଶମାନେ ବିପ୍ଳବୀ ଶକ୍ତିଗୁଡ଼ିକ ବିରୁଦ୍ଧରେ ବ୍ୟାପକ ପ୍ରତିଆଘାତ ହାଣିଥିଲେ । ବଙ୍ଗଳାର ଜାତୀୟ ସ୍ୱେଚ୍ଛାସେବକ ସଂଗଠନଟି ବେଆଇନୀ ଘୋଷିତ ହୋଇଥିଲା । ଜାତୀୟ ସ୍ଲୋଗାନ ଚିହ୍ନିତ ପୋଷାକ ପିନ୍ଧିବା ଶାସ୍ତିଯୋଗ୍ୟ ଅପରାଧ ବୋଲି ବିବେଚିତ ହେଲା । ୧୯୦୭ ଖ୍ରୀଷ୍ଟାବ୍ଦରେ "ରାଜବିଦ୍ରୋହମୂଳକ ସଭାନୁଷ୍ଠାନ ଆଇନ୍" ପାଶ୍ କରାଯାଇଥିଲା । ଏହି ଆଇନ୍ ବଳରେ ରାଜନୈତିକ ସଭା ଓ ଶୋଭାଯାତ୍ରାକୁ ଭାଙ୍ଗି ଦିଆଯାଇଥିଲା । ୧୯୦୮ ଖ୍ରୀଷ୍ଟାବ୍ଦରେ "ସଂବାଦପତ୍ର ଆଇନ୍" ପାଶ୍ କରାଗଲା । "ବିଦ୍ରୋହ ପାଇଁ ପ୍ରରୋଚନା ଦାନ" ଅଭିଯୋଗରେ ଏହି ଆଇନ୍ ଦ୍ୱାରା ଯେକୌଣସି ସଂବାଦପତ୍ରକୁ ବନ୍ଦ କରି ଦିଆଯାଉଥିଲା ।

ବ୍ରିଟିଶ୍ ଔପନିବେଶିକ କର୍ତ୍ତୃପକ୍ଷ ଏବଂ ତତ୍କାଳୀନ ଭାରତର ରାଷ୍ଟ୍ର ସଚିବ ମର୍ଲିଙ୍କର ଏହି ଆଇନ୍ ସଂପର୍କରେ ଲେନିନ୍ ଲେଖିଥିଲେ: "ସ୍ୱାଧୀନ ବ୍ରିଟେନ୍‌ର ଶ୍ରେଷ୍ଠ ଉଦାରନୈତିକ ଓ ର୍ୟାଡିକାଲ ପ୍ରତିନିଧିବର୍ଗ, ଲୁଷ୍ ଓ ଅଣଲୁଷ୍ କାଦେଟ୍‌ମାନଙ୍କ ଆଦର୍ଶ, 'ପ୍ରଗତିଶୀଳ' ସାମ୍ବାଦିକତାର ଜ୍ୟୋତିଷ୍କ ସ୍ୱରୂପ (ପ୍ରକୃତରେ, ପୁଞ୍ଜିବାଦର ବୃକୁଗ୍ରବୂହା) ଜନ୍ ମର୍ଲିଙ୍କ (Morley) ଭଳି ଲୋକେ ଭାରତକୁ ଶାସନ କରିବାର ଦାୟିତ୍ୱ ଲାଭ କଲେ, ରୀତିମତ ଚିଙ୍ଗିଜ୍ ଖାଁ ପାଲଟି ଯିବେ । ନିଜ ଅଧୀନସ୍ଥ ଜନସାଧାରଣଙ୍କୁ 'ଶାନ୍ତ କରିବା' ପାଇଁ ସମ୍ଭାବ୍ୟ ଯେକୌଣସି ପନ୍ଥାର ଆଶ୍ରୟ, ଏପରିକି ରାଜନୈତିକ ପ୍ରତିବାଦୀମାନଙ୍କ ପାଇଁ ବେତପାହାର ଅନୁମୋଦନ କରିବାକୁ ଦ୍ୱିଧାବୋଧ କରିବେ ନାହିଁ ।"*

ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରତି ଚରମ ଆଘାତ ହାଣିବା ପାଇଁ ଔପନିବେଶିକ ସରକାର ୧୯୦୮ ଖ୍ରୀଷ୍ଟାବ୍ଦର ସମ୍ବାଦପତ୍ର ଆଇନ୍ ବଳରେ ତିଳକଙ୍କୁ ଗିରଫ କଲା । ତିଳକଙ୍କର ଗିରଫ୍ ଓ ବିଗ୍ଭର (୧୯୦୮ ଖ୍ରୀଷ୍ଟାବ୍ଦର ୧୩-୨୨ ଜୁଲାଇ) ଫଳରେ ସମଗ୍ର ବମ୍ବେ ପ୍ରଦେଶରେ ଗଣ ବିକ୍ଷୋଭ ଓ ପ୍ରତିବାଦ ସଭା ଅନୁଷ୍ଠିତ ହୋଇଥିଲା । ତିଳକଙ୍କ ସମର୍ଥକମାନେ ବମ୍ବେର କଳକାରଖାନାଗୁଡ଼ିକରେ ଧର୍ମଘଟ କରିବାକୁ ସିଦ୍ଧାନ୍ତ ନେଲେ ।

ବିଗ୍ଭରାଳୟରେ ଆତ୍ମସମର୍ଥନ ପାଇଁ ପ୍ରଦତ୍ତ ବିବୃତିଟିକୁ ତିଳକ ଭାରତରେ ବ୍ରିଟିଶ୍‌ମାନଙ୍କ ସାମ୍ରାଜ୍ୟବାଦୀ ନୀତିର ତୀବ୍ର ନିନ୍ଦାରେ ରୂପାନ୍ତରିତ କରିଥିଲେ । ଏହି ଉଦ୍ଦୀପ୍ତ ବକ୍ତୃତା ଫଳରେ ଭାରତରେ ବ୍ୟାପକ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ଏବଂ ଏହାର ଖ୍ୟାତି ଦେଶର ସୀମାନ୍ତକୁ ଅତିକ୍ରମ କରି ଯାଇଥିଲା ।

ଜନସାଧାରଣଙ୍କ ପ୍ରତିବାଦ ସତ୍ତ୍ୱେ ତିଳକ ବିପୁଳ ଅର୍ଥଦଣ୍ଡ ସମେତ ୬ ବର୍ଷ ପାଇଁ କଠୋର ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ । ପରେ, ଅବଶ୍ୟ, ଏହାକୁ ବଦଳେଇ ତାଙ୍କୁ ସାଧାରଣ କାରାଦଣ୍ଡ ଦିଆଯାଇଥିଲା ।

ଦଣ୍ଡାଦେଶ ଘୋଷଣା ସଙ୍ଗେ ସଙ୍ଗେ ଚରମପନ୍ଥୀମାନେ ତାଙ୍କୁ କଠୋର ସଶ୍ରମ କାରାଦଣ୍ଡର ପ୍ରତିଟି ବର୍ଷ ପାଇଁ ଦିନେ କରି ବମ୍ବେରେ ୬ ଦିନର ସାଧାରଣ ଧର୍ମଘଟର ଆହ୍ୱାନ ଦେଇଥିଲେ ।

---

* V. I. Lenin, "Collected Works", vol. 15, p. 184.

ଜୁଲାଇ ୨୩ ତାରିଖ ଦିନ ଏହି ସାଧାରଣ ରାଜନୈତିକ ଧର୍ମଘଟ ଆରମ୍ଭ ହୋଇଥିଲା । ବମ୍ବେର ସମସ୍ତ କଳକାରଖାନାର କର୍ମୀମାନେ ଧର୍ମଘଟରେ ଯୋଗ ଦେଇଥିଲେ, ଦୋକାନପତ୍ର ଓ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକ ବନ୍ଦ ହୋଇ ଯାଇଥିଲା । ଦେଶାତ୍ମବୋଧକ ଧ୍ୱନି ଓ ତିଳକଙ୍କ ଛବି ଦ୍ୱାରା ସହରଟି ଛାଇ ହୋଇ ଯାଇଥିଲା । ବିକ୍ଷୋଭ ଓ ପ୍ରତିବାଦ ସଭାର ଅଂଶଗ୍ରହଣକାରୀମାନେ ପୁଲିସ୍ ଉପରକୁ ଇଟା ପଥର ନିକ୍ଷେପ କରିଥିଲେ । ଔପନିବେଶିକ ଶାସକମାନେ ଧର୍ମଘଟର ମୁକାବିଲା କରିବାକୁ ବ୍ୟର୍ଥ ହୋଇଥିଲେ ଏବଂ ପରିକଳ୍ପନା ଅନୁଯାୟୀ ଛଅ ଦିନ ପରେ ଧର୍ମଘଟ ପ୍ରତ୍ୟାହୃତ ହୋଇଥିଲା ।

ବମ୍ବେର ଏହି ଘଟଣାବଳୀର ଐତିହାସିକ ତାତ୍ପର୍ଯ୍ୟ ବିଶ୍ଳେଷଣ କରି ଲେନିନ୍ ଲେଖିଥିଲେ : "ଭାରତୀୟ ଗଣତନ୍ତ୍ରବାଦୀ ତିଳକଙ୍କ ବିରୁଦ୍ଧରେ ବ୍ରିଟିଶ୍ ଶୃଗାଳମାନେ ଯେଉଁ ଜଘନ୍ୟ ଦଣ୍ଡାଦେଶ ଦେଇଥିଲେ – ଦୀର୍ଘ ମିଆଦୀ ନିର୍ବାସନ ଦଣ୍ଡରେ ସେ ଦଣ୍ଡିତ ହୋଇଥିଲେ । ସେ ଦିନ ବ୍ରିଟିଶ୍ କମନ୍ସ ସଭାରେ ଏକ ପ୍ରଶ୍ନ ଦ୍ୱାରା ଜଣାଗଲା ଯେ, ଭାରତୀୟ ଜୁରିମାନେ ମୁକ୍ତି ସପକ୍ଷରେ ଥିଲେ ଏବଂ କାରାଦଣ୍ଡଟି ପାଶ୍ ହୋଇଥିଲା ବ୍ରିଟିଶ୍ ଜୁରିଙ୍କ ଭୋଟରେ ! ଗଣତନ୍ତ୍ରବାଦୀମାନଙ୍କ ଉପରେ ଟଙ୍କାଥଳିର ସେବାଦାସମାନଙ୍କର ଏହି ପ୍ରତିହିଂସା ଦ୍ୱାରା ବମ୍ବେରେ ଶୋଭାଯାତ୍ରା ଏବଂ ଧର୍ମଘଟ ଦେଖା ଦେଇଛି । ଭାରତରେ ମଧ୍ୟ ସର୍ବହରା ଇତିମଧ୍ୟରେ ସଚେତନ, ରାଜନୈତିକ ଗଣ ଆନ୍ଦୋଳନର ରୂପ ପରିଗ୍ରହ କରିଛି ଏବଂ ଏହି ପରିପ୍ରେକ୍ଷିତରେ ଭାରତରେ ରୁଷୀୟ ଧରଣର ବ୍ରିଟିଶ୍ ସରକାରର ନିଶ୍ଚିତ ଧ୍ୱଂସ ଘଟିବ !" *

ବମ୍ବେର ଏହି ଧର୍ମଘଟ ୧୯୦୫-୧୯୦୮ ଖ୍ରୀଷ୍ଟାବ୍ଦର ବୈପ୍ଳବିକ ଘଟଣାବଳୀର ଶୀର୍ଷାବସ୍ଥା ରୂପେ ଚିହ୍ନିତ । ଇତିମଧ୍ୟରେ ବଙ୍ଗଳା ଓ ପଞ୍ଜାବରେ ସହରର ପେଟି-ବୁର୍ଜୁଆମାନଙ୍କର ବ୍ୟାପକ ଅଂଶ, ମଧ୍ୟବିତ୍ତ, ଶ୍ରମିକ ଓ କୃଷକମାନଙ୍କ ମଧ୍ୟରେ କେତେକ ଗୋଷ୍ଠୀ ବ୍ରିଟିଶ୍ ଔପନିବେଶିକମାନଙ୍କ ବିରୁଦ୍ଧରେ ରାଜନୈତିକ ସଂଗ୍ରାମରେ ଯୋଗ ଦେବାକୁ ଆରମ୍ଭ କରିଥିଲେ । ବୈପ୍ଳବିକ କାର୍ଯ୍ୟକଳାପରେ ଚରମପନ୍ଥୀମାନଙ୍କର ସକ୍ରିୟ ଯୋଗଦାନ ଏବଂ ଭାରତର ବିଭିନ୍ନ ସ୍ଥାନରେ ସେମାନଙ୍କର ସଂଗଠିତ ଗଣ ପ୍ରତିବାଦ ମୂଳତଃ ଜାତୀୟ ମୁକ୍ତି ଆନ୍ଦୋଳନ ଅନ୍ତର୍ଗତ ପେଟି-ବୁର୍ଜୁଆ, ଗଣତାନ୍ତ୍ରିକ ଅଂଶର ସଂହତି ବୃଦ୍ଧି କରିବା ଦିଗରେ ସହାୟକ ହୋଇଥିଲା । ପ୍ରଥମ ରୁଷ୍ ବିପ୍ଳବର ପ୍ରଭାବ ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ କାର୍ଯ୍ୟକଳାପ ମଧ୍ୟରେ ସର୍ବାଧିକ ପ୍ରକଟିତ ହୋଇ ଉଠିଥିଲା । ସେମାନେ ଏହି ବ୍ୟାପକ ରାଜନୈତିକ ବିକ୍ଷୋଭ ଓ ସାଧାରଣ ଧର୍ମଘଟରେ ରୁଷ୍ ଅଭିଜ୍ଞତାକୁ ସ୍ୱାଗତ ଜଣେଇଥିଲେ ଏବଂ ଭାରତୀୟ ଅବସ୍ଥାରେ ଏହାକୁ ଖାପ ଖୁଆଇ ନେଇଥିଲେ । ପେଟି-ବୁର୍ଜୁଆ ବିପ୍ଳବୀ ଗଣତନ୍ତ୍ରବାଦର ଆଦର୍ଶଗତ ଅଗ୍ରଗତି କ୍ରମଶଃ ଭାରତୀୟମାନଙ୍କର କ୍ରମବର୍ଦ୍ଧମାନ ଜାତୀୟ ଉପଲବ୍ଧି ମଧ୍ୟରେ ପ୍ରକାଶ ପାଇଥିଲା ଏବଂ ତାହା ଏକ ନୂତନ ସ୍ତରରେ ପହଞ୍ଚିଥିଲା । ତିଳକ, ବିପିନଚନ୍ଦ୍ର ପାଲ୍, ଅରବିନ୍ଦ ଘୋଷ୍ ଓ ଅନ୍ୟାନ୍ୟ ଚରମପନ୍ଥୀ ନେତାମାନଙ୍କ ରଚନା ଓ ବକ୍ତୃତା ମଧ୍ୟରେ ଏହା ବିଶେଷ ଭାବେ ସ୍ପଷ୍ଟ ହୋଇ ଉଠିଥିଲା ।

କିନ୍ତୁ ୧୯୦୫-୧୯୦୮ ଖ୍ରୀଷ୍ଟାବ୍ଦର ଘଟଣାବଳୀର ସ୍ଥାନୀୟ ସୀମାବଦ୍ଧତା ମଧ୍ୟରେ ପ୍ରକଟିତ

---

* V. I. Lenin, "Collected Works", vol. 15, p. 184.

ଜାତୀୟ ଆନ୍ଦୋଳନର ଦୁର୍ବଳତା ପ୍ରକୃତରେ ଥିଲା ତତ୍କାଳୀନ ଦେଶର ଇତିହାସ ନିର୍ଦ୍ଧାରିତ ଅର୍ଥନୈତିକ ଓ ସାମାଜିକ-ରାଜନୈତିକ ସ୍ତରାବସ୍ଥାନର ଫଳ ସ୍ୱରୂପ । ଜାତୀୟ ଶକ୍ତି ମଧ୍ୟରେ ବିଭେଦ ଓ ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କର ଦେଶବ୍ୟାପୀ ସଂଗଠନର ଅଭାବ ଥିଲା ଏହାର ଦୁଇଟି ପ୍ରଧାନ ସମସ୍ୟା ।

ବିଂଶ ଶତାବ୍ଦୀର ପ୍ରଥମ ଦଶକର ଘଟଣାବଳୀ ଜାତୀୟ ଆନ୍ଦୋଳନରେ ଜନସାଧାରଣଙ୍କର ଅଂଶଗ୍ରହଣର ସମ୍ଭାବନା (ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ସାଫଲ୍ୟର ପୂର୍ବସର୍ତ୍ତ) ସ୍ପଷ୍ଟ ହୋଇ ଉଠିଥିଲେ ମଧ୍ୟ ଭାରତୀୟ ଜନସାଧାରଣଙ୍କର ବିପୁଳ ଅଂଶ, ସଂଖ୍ୟାଗରିଷ୍ଠ ଅଂଶ – କୃଷକମାନଙ୍କ ପକ୍ଷରେ ସେତେବେଳେ ରାଜନୈତିକ ସଂଗ୍ରାମରେ ଯୋଗଦାନର ଅପରିହାର୍ଯ୍ୟ ସାମାଜିକ ଚେତନାର ବିଶେଷ ସ୍ତରରେ ପହଞ୍ଚିବା ସମ୍ଭବ ହୋଇ ନଥିଲା ।

ଜାତୀୟ ମୁକ୍ତି ଆନ୍ଦୋଳନର ଏହି ପର୍ଯ୍ୟାୟର ଐତିହାସିକ ତାତ୍ପର୍ଯ୍ୟ ହେଲା : ଭାରତୀୟ ସମାଜର ଯେଉଁ ଶ୍ରେଣୀ ଓ ସ୍ତରଗୁଡ଼ିକ ଆଗାମୀ ୧୯୨୦ ଦଶକର ବୈପ୍ଲବିକ ସଂଗ୍ରାମର ବିକାଶ କାଳରେ ଔପନିବେଶିକତା ବିରୋଧୀ ସଂଗ୍ରାମର ଚାଳିକା ଶକ୍ତି ଥିଲେ, ଏଥିରେ ସେମାନଙ୍କ ରାଜନୈତିକ ଜାଗରଣର ସୂତ୍ରପାତ ଘଟିଥିଲା ।

# ପ୍ରଥମ ମହାଯୁଦ୍ଧର ପ୍ରାକ୍‌କାଳୀନ ଏବଂ ଯୁଦ୍ଧକାଳୀନ ଭାରତବର୍ଷ

## ମର୍ଲି – ମିଣ୍ଟୋ ସଂସ୍କାର

ବମ୍ବେର ରାଜନୈତିକ ଧର୍ମଘଟ ପରେ ଗଣ ଆନ୍ଦୋଳନ କ୍ଷେତ୍ରରେ କିଛି ପରିମାଣରେ ଭଟା ଦେଖା ଦେଇଥିଲା । ଔପନିବେଶିକତାର ବିରୋଧୀମାନଙ୍କ ମଧ୍ୟରେ ବିଭେଦକୁ ଗଭୀରତର କରିବା ଉଦ୍ଦେଶ୍ୟରେ ଇଂରେଜ-ଭାରତୀୟ ଶାସକମାନଙ୍କର ଅନୁସୃତ ଆଭ୍ୟନ୍ତରୀଣ ନୀତି ପାଇଁ ଅଂଶତଃ ଏପରି ଘଟିଥିଲା । ପୂର୍ବ ଭଳି ବ୍ରିଟିଶ୍ ପ୍ରଶାସନ "କଦଳୀର ମୋହ" ଦେଖାଇ କାର୍ଯ୍ୟ ହାସଲ କରିବାର ପଦ୍ଧତି ଅନୁସରଣ କରୁଥିଲା ।

ଗୋଟିଏ ଦିଗରେ, ସେତେବେଳେ ଔପନିବେଶିକ ସରକାରର ସକ୍ରିୟ ବିରୋଧୀମାନଙ୍କ ଉପରେ ନିର୍ଯ୍ୟାତନ ଚାଲିଥିଲା । ବ୍ରିଟିଶ୍ ବିରୋଧୀ ଗୁପ୍ତ ସଂଗଠନଗୁଡ଼ିକ ବିରୁଦ୍ଧରେ ୧୯୦୮-୧୯୧୩ ଖ୍ରୀଷ୍ଟାବ୍ଦରେ ଗୃହୀତ ଆଇନ୍‌ଗୁଡ଼ିକୁ ବ୍ୟବହାର କରି (୧୯୦୮ ଖ୍ରୀଷ୍ଟାବ୍ଦରେ ବିସ୍ଫୋରକ ଦ୍ରବ୍ୟ ଆଇନ୍, ୧୯୦୮ ଓ ୧୯୧୩ ଖ୍ରୀଷ୍ଟାବ୍ଦର ଫୌଜଦାରୀ ବିଧି ସଂଶୋଧନ ଆଇନ୍) ସନ୍ତ୍ରାସ ସୃଷ୍ଟିର ଏକ ଆଇନଗତ ଭିତ୍ତି ସୃଷ୍ଟି କରାଯାଇଥିଲା ।

ବିଦ୍ରୋହ କରିବାର ଉଦ୍ଦେଶ୍ୟ ନେଇ ସଭା ଆହ୍ୱାନକୁ ବନ୍ଦ କରିବା ନିମିତ୍ତ ପାଶ୍ ହୋଇଥିବା ଆଇନ୍‌ଟିକୁ (୧୯୦୭) ୧୯୧୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଢ଼ାଇ ଦେଲା ପରେ ଏହାକୁ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଚାଲୁ ରଖିବାର ସିଦ୍ଧାନ୍ତ ଘୋଷିତ ହୋଇଥିଲା । ୧୯୧୦ ଖ୍ରୀଷ୍ଟାବ୍ଦରେ ଗୃହୀତ ନୂତନ ଭାରତୀୟ

ସଂବାଦପତ୍ର ଆଇନ୍ ଦ୍ୱାରା ଔପନିବେଶିକ ଶାସକମାନେ ଜାତୀୟତାବାଦୀ ସମ୍ବାଦପତ୍ରଗୁଡ଼ିକୁ ହଇରାଣ କରିବାକୁ ବ୍ୟାପକ କ୍ଷମତା ଲାଭ କରିଥିଲେ । ଆଇନ୍‌ଟି ଗୃହୀତ ହେବାର ପ୍ରଥମ କେଇ ବର୍ଷ ମଧ୍ୟରେ ଶହ ଶହ ଭାରତୀୟ ପୁସ୍ତକାଦିର ପ୍ରକାଶନ ବନ୍ଦ, ବାଜେୟାପ୍ତ କିମ୍ବା ଏସବୁ ଉପରେ ମୋଟା ପରିମାଣର ଜୋରିମାନା ଚପେଇ ଦିଆଗଲା । ସମଗ୍ର ଦେଶରେ ଦେଖାଦେଲା ପୁଲିସ୍ ସନ୍ତ୍ରାସର ରାଜତ୍ୱ ।

ଅନ୍ୟ ଦିଗରେ, ସେମାନଙ୍କ ସମର୍ଥକ ଧନିକ ଶ୍ରେଣୀଗୁଡ଼ିକର (ରାଜା, ସାମନ୍ତ ଓ ସହଯୋଗୀ ବୁର୍ଜୁଆ) ଅବସ୍ଥାନକୁ ମଜ୍‌ବୁତ୍ କରିବା ପାଇଁ ଏବଂ ଜାତୀୟ ଆନ୍ଦୋଳନର ମଧ୍ୟପନ୍ଥୀ ନେତାମାନଙ୍କ ସ୍ୱପକ୍ଷକୁ ଆଣିବା ପାଇଁ ବ୍ରିଟିଶ୍‌ମାନେ ନାନାବିଧ ରାଜନୈତିକ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ ।

୧୯୦୯ ଖ୍ରୀଷ୍ଟାବ୍ଦରେ ବଡ଼ଲାଟ୍ ମିଣ୍ଟୋ ଓ ଭାରତର ରାଷ୍ଟ୍ର ସଚିବ ମର୍ଲି ନୂତନ ଭାରତୀୟ ପରିଷଦ-ବିଧି ପ୍ରବର୍ତ୍ତନ କରିଥିଲେ । ଏହା ମର୍ଲି–ମିଣ୍ଟୋ ସଂସ୍କାର ନାମରେ ଖ୍ୟାତ । ୧୯୧୦ ଖ୍ରୀଷ୍ଟାବ୍ଦରେ ବଳବତ୍ ହୋଇଥିବା ଏହି ନୂତନ ଆଇନ୍ ଅନୁଯାୟୀ ବଡ଼ଲାଟ୍‌ଙ୍କ ଅଧୀନସ୍ଥ କେନ୍ଦ୍ରୀୟ ଆଇନ୍ ପରିଷଦର ନିର୍ବାଚିତ ସଦସ୍ୟଙ୍କ ସଂଖ୍ୟା ବୃଦ୍ଧି କରି ମୋଟ ସଂଖ୍ୟାର ଅର୍ଦ୍ଧେକ ଏବଂ ବଡ଼ ବଡ଼ ପ୍ରଦେଶରେ ଲାଟ୍‌ଙ୍କ ଆଇନ୍ ପରିଷଦରେ ପ୍ରତିନିଧିମୂଳକ ସଦସ୍ୟଙ୍କ ସଂଖ୍ୟା ବୃଦ୍ଧି କରିବାର ବ୍ୟବସ୍ଥା ଗ୍ରହଣ ହେଲା । ଏଥି ସଙ୍ଗେ ସଙ୍ଗେ ସାଂପ୍ରଦାୟିକ ପ୍ରତିନିଧିତ୍ୱ ବ୍ୟବସ୍ଥା ମଧ୍ୟ ପ୍ରବର୍ତ୍ତିତ ହେଲା : ସାଧାରଣ, ଜମିଦାର ଏବଂ ମୁସଲମାନମାନଙ୍କ ପାଇଁ ସଂରକ୍ଷିତ ଆସନର ସଂଖ୍ୟା ବୃଦ୍ଧି ପାଇଥିଲା । ତା'ଛଡ଼ା ଯେଉଁଠି ଜମିଦାର ଓ ମୁସଲମାନମାନେ ପ୍ରତ୍ୟକ୍ଷ ଭୋଟ ଦେଉଥିଲେ, ସେଠାରେ ସାଧାରଣ ତାଲିକାଭୁକ୍ତ ଲୋକଙ୍କ ପାଇଁ ନିର୍ବାଚନ ହେଉଥିଲା ଦୁଇ-ତିନୋଟି ପର୍ଯ୍ୟାୟରେ । ଏହିସବୁ ବ୍ୟବସ୍ଥା ଦ୍ୱାରା ମୁସଲିମ୍ ସଂପ୍ରଦାୟର ସାମନ୍ତ ଓ ମୁଖିଆମାନେ ହିନ୍ଦୁ ବୁର୍ଜୁଆ ଓ ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କର ଊର୍ଦ୍ଧ୍ୱତନ ସ୍ତରଗୁଡ଼ିକ ତୁଳନାରେ ବିଶେଷ ସୁବିଧାଭୋଗୀ ହୋଇ ଉଠିଥିଲେ । ଏହିସବୁ ବ୍ୟବସ୍ଥାର ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା : ହିନ୍ଦୁ-ମୁସଲମାନ ବିଭେଦ ସୃଷ୍ଟି କରି ଶାସନ ପରିଚାଳନା କରିବା ।

୧୯୦୯ ଖ୍ରୀଷ୍ଟାବ୍ଦର ଶାସନ ସଂସ୍କାର ଭାରତୀୟ ସଂଖ୍ୟାଗରିଷ୍ଠ ଜନସାଧାରଣଙ୍କ ସ୍ୱାର୍ଥକୁ ବିନ୍ଦୁମାତ୍ର ସାହାଯ୍ୟ କରି ନଥିଲା । ଏହା ଦ୍ୱାରା ଭୋଟଦାନର ଅଧିକାରୀ ହୋଇଥିଲେ ଜନସାଧାରଣଙ୍କର ଶତକଡ଼ା ମାତ୍ର ୦.୨ ଭାଗ ଲୋକ ଏବଂ ପୂର୍ବ ପରି ପରିଷଦର କ୍ଷମତା ଉପଦେଶ ଦେବା ମଧ୍ୟରେ ସୀମିତ ଥିଲା ।

ଭାରତର ଧନିକ ଶ୍ରେଣୀଗୁଡ଼ିକ ମଧ୍ୟରେ ଔପନିବେଶିକ ସରକାରର ସାମାଜିକ ସମର୍ଥନ ଲାଭର ଭିତ୍ତିକୁ ଆଉରି ପ୍ରଶସ୍ତ କରିବା ଲକ୍ଷ୍ୟରେ ନୂତନ ବଡ଼ଲାଟ୍ ଲର୍ଡ ହାର୍ଡିଞ୍ଜ୍‌ଙ୍କ (୧୯୧୦-୧୯୧୬) ଆଭ୍ୟନ୍ତରୀଣ ନୀତି ପରିଚାଳିତ ହୋଇଥିଲା । ୧୯୧୧ ଖ୍ରୀଷ୍ଟାବ୍ଦରେ ପ୍ରଥମ କରି ବ୍ରିଟିଶ୍ ସମ୍ରାଟ ଭାରତ ପରିଦର୍ଶନରେ ଆସିଥିଲେ । ଏକ ଆଡ଼ମ୍ବରପୂର୍ଣ୍ଣ ଅନୁଷ୍ଠାନରେ (ଦରବାର) ଭାରତ ସମ୍ରାଟ ହିସାବରେ ୫ମ ଜର୍ଜଙ୍କ ଅଭିଷେକ ସଂପନ୍ନ ହୋଇଥିଲା । ବ୍ରିଟିଶ୍ ରାଜ ପ୍ରତି ଭାରତୀୟ ସାମନ୍ତ ଜମିଦାର ଶ୍ରେଣୀର ଆନୁଗତ୍ୟ ପ୍ରଦର୍ଶନ ପାଇଁ ଅନୁଷ୍ଠିତ ଏହି ରାଜ୍ୟାଭିଷେକରେ ଜନଧିକୃତ ବଙ୍ଗଭଙ୍ଗ ବନ୍ଦ କରିବାର ସିଦ୍ଧାନ୍ତ ଘୋଷିତ ହୋଇଥିଲା ଏବଂ ଆସାମ, ବିହାର ଓ ଓଡ଼ିଶା ପ୍ରଶାସନିକ ମର୍ଯ୍ୟାଦା ଲାଭ କରିଥିଲେ । କିନ୍ତୁ କଲିକତାରୁ ଦିଲ୍ଲୀକୁ ରାଜଧାନୀ ସ୍ଥାନାନ୍ତରିତ ହୋଇଥିଲା ।

ଏହି ଶେଷ କାର୍ଯ୍ୟଟି ପ୍ରଭାବିତ ହୋଇଥିଲା ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି ସଂକ୍ରାନ୍ତ

ବିବେଚନା ଦ୍ୱାରା । ଏସିଆରେ ପ୍ରଭାବାଧୀନ ଅଞ୍ଚଳ ରୂପେ ଚିହ୍ନିତକାରୀ ୧୯୦୭ ଖ୍ରୀଷ୍ଟାବ୍ଦର ଇଂରେଜ-ରୁଷ୍ ଚୁକ୍ତି ସ୍ୱାକ୍ଷରିତ ହେବା ଫଳରେ ଭାରତର ସୀମାନ୍ତବର୍ତ୍ତୀ ଦେଶଗୁଡ଼ିକରେ, ବିଶେଷତଃ, ତିବ୍ବତରେ ବ୍ରିଟିଶ୍ ପ୍ରଭାବ ବିଶେଷ ଭାବେ ବୃଦ୍ଧି ପାଇଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ୧୯୦୪ ଖ୍ରୀଷ୍ଟାବ୍ଦରେ ତିବ୍ବତକୁ ଏକ ବ୍ରିଟିଶ୍ ସାମରିକ ଅଭିଯାନ ପରିଚାଳନା କରାଯାଇଥିଲା । ଏସିଆରେ ଇଂରେଜ-ରୁଷ୍ ପ୍ରତିଦ୍ୱନ୍ଦ୍ୱିତାର ମାତ୍ରାନୁଯାୟୀ ବିଶ୍ୱର ଏହି ଅଞ୍ଚଳରେ ବ୍ରିଟେନ୍ ଓ ଜର୍ମାନୀ ମଧ୍ୟରେ କ୍ରମବର୍ଦ୍ଧମାନ ସଂଘାତର ସମ୍ଭାବନାର ପରିପ୍ରେକ୍ଷିତରେ ଭାରତରେ ଥିବା ବ୍ରିଟିଶ୍ ରାଜନୀତିବିଦ୍‌ମାନେ ମୁସଲିମ୍ ପ୍ରାଚ୍ୟ ଆଡ଼କୁ ସେମାନଙ୍କ ମନୋଯୋଗ ନିବଦ୍ଧ କରିଥିଲେ । ସ୍ମରଣ ରଖିବାର କଥା ଯେ, ଅଟୋମାନ ସାମ୍ରାଜ୍ୟର ଯେଉଁ ଅଂଶଟିକୁ ନେଇ ମୁସଲିମ୍ ପ୍ରାଚ୍ୟର ରାଜ୍ୟଗୁଡ଼ିକ ଗଠିତ ହୋଇଥିଲା, ସେଠାରେ ଜର୍ମାନ୍ ଏଜେଣ୍ଟମାନେ ଖୁବ୍ ତତ୍ପର ହୋଇ ଉଠିଥିଲେ । ଏଥି ସଙ୍ଗେ ସଙ୍ଗେ ବ୍ରିଟିଶ୍‌ମାନେ ଆଫ୍‌ଗାନିସ୍ତାନରେ ସେମାନଙ୍କ କ୍ଷମତାକୁ ଦୃଢ଼ କରିବାରେ ସଫଳ ହୋଇଥିଲେ । ମୋଗଲ ସମ୍ରାଟମାନଙ୍କ ସିଂହାସନକୁ ବ୍ରିଟିଶ ରାଜାଙ୍କ ଦ୍ୱାରା ଆଇନସମ୍ମତ ଭାବେ ଅଧିକାର କରି ନେବାଟି ଥିଲା (ବ୍ରିଟିଶ୍ ରାଜନୀତିଜ୍ଞମାନଙ୍କ ଦୃଷ୍ଟିରେ) ଭାରତର ମୁସଲିମ୍ ସଂପ୍ରଦାୟ ଓ ମଧ୍ୟ ପ୍ରାଚ୍ୟର ମୁସଲମାନ ଉଭୟଙ୍କ ନିକଟରେ ଔପନିବେଶିକ ସରକାରର ସମ୍ମାନ ବୃଦ୍ଧିର ନାମାନ୍ତର ସ୍ୱରୂପ ।

ଏହି ସମୟରେ ଔପନିବେଶିକ ସରକାର ଦ୍ୱାରା ପରିଚାଳିତ ସାଂସ୍କୃତିକ ନୀତି ମଧ୍ୟ କେତେକ କ୍ଷେତ୍ରରେ ଏହି ଲକ୍ଷ୍ୟରେ ପରିଚାଳିତ ହେଉଥିଲା ।

## ଏହି ଶତାବ୍ଦୀର ପ୍ରାରମ୍ଭରେ ଭାରତୀୟ ସଂସ୍କୃତିର ବିକାଶ

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଲର୍ଡ କର୍ଜନ ବଡ଼ଲାଟ୍ ଥିଲା ବେଳେ ମଧ୍ୟଯୁଗୀୟ ସ୍ଥାପତ୍ୟର କେତେକ ଶ୍ରେଷ୍ଠ ନିଦର୍ଶନ (ପ୍ରଧାନତଃ ତଥାକଥିତ ହିନ୍ଦୁ-ମୁସଲିମ୍ ସ୍ଥାପତ୍ୟ) ପୁନଃସ୍ଥାପିତ ହୋଇଥିଲା । ୟୁରୋପୀୟ ପ୍ରଥାସିଦ୍ଧ ଗୋଷ୍ଠୀର କେତେକ ଚିତ୍ର ବ୍ୟତୀତ ଭାରତୀୟ କାରୁଶିଳ୍ପ, ମଧ୍ୟଯୁଗୀୟ କ୍ଷୁଦ୍ରାବୟବ ଚିତ୍ର ଓ ଭାସ୍କର୍ଯ୍ୟଗୁଡ଼ିକ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରତିଷ୍ଠିତ ନୂତନ ସଂଗ୍ରହାଳୟଗୁଡ଼ିକରେ (କଲିକତାରେ ମହାରାଣୀ ଭିକ୍ଟୋରିୟା ଜାଦୁଘର, ବମ୍ବେରେ ପ୍ରିନ୍‌ସ ଅଫ୍ ଓ୍ୱେଲସ୍ ଜାଦୁଘର) ପ୍ରଦର୍ଶିତ ହୋଇଥିଲା । କିନ୍ତୁ ଏଥି ସଙ୍ଗେ ସଙ୍ଗେ ପ୍ରାଚୀନ ଓ ମଧ୍ୟ ଯୁଗର ଅସଂଖ୍ୟ ସ୍ଥାପତ୍ୟ ସୌଧ ଅବହେଳିତ ଅବସ୍ଥାରେ ଧସି ପଡ଼ୁଥିଲା ଏବଂ ଇଂରେଜ-ଭାରତୀୟ ସୈନ୍ୟମାନଙ୍କର ବ୍ୟାରକ ହେଲା ଭଳି ଉପଯୋଗୀ ବହୁ ଐତିହାସିକ ଦୁର୍ଗକୁ (ଦିଲ୍ଲୀର ଲାଲକିଲା, ଏଲାହାବାଦ, ଆହମଦ୍‌ନଗର ଓ ଅନ୍ୟାନ୍ୟ ସହରର ଦୁର୍ଗଗୁଡ଼ିକ) ସାଙ୍ଘାତିକ ଭାବେ ବିକୃତ କରାଯାଇଥିଲା ।

ଭାରତର ପରମ୍ପରା ଅନୁସାରେ ଜାତୀୟ ସ୍ଥାପତ୍ୟର ନିର୍ମାତା, ପଥର ମିସ୍ତ୍ରୀମାନଙ୍କ ବର୍ଣ୍ଣଜାତ କାରିଗରମାନେ ଏବେ ରାଷ୍ଟ୍ର ବା ବ୍ୟକ୍ତିବିଶେଷଙ୍କ ନିକଟରୁ କୌଣସି ବଡ଼ ଧରଣର କାମର ବରାଦ ନପାଇ କ୍ରମଶଃ ଲୋପ ପାଇଯିବାକୁ ଆରମ୍ଭ କରିଥିଲେ । ଗ୍ରାମରେ ବସତି କୋଠାବାଡ଼ି ଏବଂ ମଫସଲ ସହରର ଅଟ୍ଟାଳିକାଗୁଡ଼ିକରେ କେବଳ ଏହି ପରମ୍ପରାଗୁଡ଼ିକ ତିଷ୍ଠି ରହିଥିଲା । ରେଳ ଷ୍ଟେସନ

ଓ ଅଫିସ୍ ଭଳି ସରକାରୀ କୋଠାଗୁଡ଼ିକରେ ସେତେବେଳେ ପ୍ରଧାନତଃ ଭିକ୍ଟୋରିୟା ଯୁଗର ଘକଚକ୍ୟପୂର୍ଣ୍ଣ ଶୈଳୀ ଅନୁସୃତ ହେଉଥିଲା ଏବଂ ତାହା ଥିଲା ନକଲୀ-ଶାସ୍ତ୍ରୀୟ ଓ ନକଲୀ-ଗଥିକ୍ ଶୈଳୀ ସହିତ ହିନ୍ଦୁ ମନ୍ଦିର ଓ ମୁସଲିମ୍ ମସ୍‌ଜିଦ୍‌ର ସାଜସଜ୍ଜାର ଏକ କୁତ୍ସିତ ମିଶ୍ରଣ । ଏହି ସମୟରେ ତଥାକଥିତ ନବ୍ୟ ଭାରତୀୟ ରୀତିର ଉନ୍ମେଷ ଘଟିଥିଲା । ଏହା ହିଁ ଥିଲା, ମୂଳତଃ, ଭାରତର ମଧ୍ୟଯୁଗୀୟ ସ୍ଥାପତ୍ୟର, ବିଶେଷତଃ, ମୋଗଲ ଯୁଗର ପ୍ରାସାଦର କୃତ୍ରିମ ଅନୁକରଣ ମାତ୍ର । ଏହି ଶୈଳୀର ଦୃଷ୍ଟାନ୍ତ ହିସାବରେ ଦେଶର ନୂତନ ରାଜଧାନୀ ନୂଆ ଦିଲ୍ଲୀର (୧୯୧୩-୧୯୩୧) ୟୁରୋପୀୟ ଅଞ୍ଚଳର ସରକାରୀ ଅଟ୍ଟାଳିକାଗୁଡ଼ିକ ଦ୍ରଷ୍ଟବ୍ୟ ।

ଗୃହ ସ୍ଥାପତ୍ୟରେ ଏହି ନବ୍ୟ ଭାରତୀୟ ଶୈଳୀ ବିସ୍ତାରର ବିଷୟଟି ଔପନିବେଶିକ ସରକାରର "ରାଜକୀୟ ଐତିହ୍ୟ" ଉନ୍ନୟନ ନୀତି ସହିତ ସଂଯୁକ୍ତ ଥିଲା । କିନ୍ତୁ ଏହି ଶତାବ୍ଦୀର ପ୍ରାରମ୍ଭରେ ଭାରତୀୟ ଜନସାଧାରଣଙ୍କର ଐତିହାସିକ ଓ ସାଂସ୍କୃତିକ ଐତିହ୍ୟ ପ୍ରତି ବ୍ରିଟିଶ୍ ଓ ଭାରତୀୟ ବୁଦ୍ଧିଜୀବୀମାନଙ୍କର ପ୍ରଗତିଶୀଳ ଅଂଶର ନବ ଜାଗ୍ରତ କୌଶଳ ହିଁ ପ୍ରକୃତରେ ଏହି ରୀତିର ଉନ୍ମେଷ ପ୍ରତି ଉଦ୍ଦୀପନା ଯୋଗାଇଥିଲା । ଭାରତୀୟ ଶାସ୍ତ୍ରୀୟ ଶିଳ୍ପ ପ୍ରତି କୌତୂହଳ ସୃଷ୍ଟି କ୍ଷେତ୍ରରେ କଲିକତାର ଶିଳ୍ପକଳା ବିଦ୍ୟାଳୟର ଅଧ୍ୟକ୍ଷ, ବ୍ରିଟେନ୍‌ର ଶିଳ୍ପ-ଇତିହାସବିଦ୍ ଆଇ.ବି.ହାଭେଲ ଏବଂ ତାଙ୍କ ଭାରତୀୟ ସହକର୍ମୀ ଆନନ୍ଦ କୁମାରସ୍ୱାମୀଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଭାରତୀୟ ଶିଳ୍ପକଳା ଓ କାରୁଶିଳ୍ପର ଗବେଷଣା ଓ ପୁନରୁଜ୍ଜୀବନର ଉଦ୍ୟୋଗ ପ୍ରତି ଏମାନଙ୍କର ଅବଦାନ ଅବିସ୍ମରଣୀୟ ।

ଊନବିଂଶ ଶତାବ୍ଦୀର ଶେଷରେ କେତେକ କାରୁଶିଳ୍ପ ପ୍ରତି କେତେକ ୟୁରୋପୀୟ ଓ ଭାରତୀୟମାନଙ୍କର କୌତୂହଳ ବୃଦ୍ଧି ଭାରତୀୟ ଫଳିତ ଶିଳ୍ପର (ପଥର ଖୋଦେଇ, ଧାତୁକାର୍ଯ୍ୟ, କାଠ ଖୋଦେଇ, ଅଳଙ୍କାର, ଚୀନାମାଟି ଦ୍ରବ୍ୟ, ବସ୍ତ୍ର, ସୂଚିଶିଳ୍ପ, ଆଦି) ପରମ୍ପରା ରକ୍ଷା ଦିଗରେ ସହାୟତା ଯୋଗାଇଥିଲା । ଇତିମଧ୍ୟରେ ପ୍ରଧାନତଃ ୟୁରୋପୀୟ କ୍ରେତାମାନଙ୍କ କଥା ମନେ ରଖି ନିର୍ମିତ କାରୁଶିଳ୍ପଗୁଡ଼ିକରେ (କାଶ୍ମୀର ଶାଲ୍, ଦିଲ୍ଲୀର ସ୍ୱର୍ଣ୍ଣକାରମାନଙ୍କ ଦ୍ୱାରା ନିର୍ମିତ ବିଭିନ୍ନ ଦ୍ରବ୍ୟ) କେତେକ ବିଦେଶୀ ପ୍ରଭାବ ଦେଖା ଦେଇଥିଲା ।

ଦେଶର ଶାସ୍ତ୍ରୀୟ ଚିତ୍ରକଳାର ପରମ୍ପରା ଅନୁସରଣକାରୀ ଓ ବିକାଶକାରୀ ବିଭିନ୍ନ ଭାରତୀୟ ଶିଳ୍ପୀ ସେମାନଙ୍କ ଅଙ୍କନ ଏବଂ ଛବିରେ ୟୁରୋପୀୟ ଏବଂ ପ୍ରାଚ୍ୟର (ଜାପାନ୍ ଓ ଚୀନ୍‌ର) ଶିଳ୍ପ ଶୈଳୀର ଉପଯୋଗ କରିଥିଲେ । ଭାରତୀୟ ଚିତ୍ରକଳାର ଏହି ପରମ୍ପରାର ସ୍ରଷ୍ଟା ଥିଲେ କଲିକତାରେ କର୍ମରତ ଅବନୀନ୍ଦ୍ରନାଥ ଠାକୁର (୧୮୭୧-୧୯୫୧) । ଭାରତରେ ଜ୍ଞାନ ବିସ୍ତାର ପାଇଁ ଖ୍ୟାତି ଲାଭ କରିଥିବା ଏହି ଠାକୁର ପରିବାରର ଅନ୍ୟତମ ସନ୍ତାନ ରୂପେ ବିଶ୍ୱ ବରେଣ୍ୟ ରବୀନ୍ଦ୍ରନାଥ ଠାକୁରଙ୍କ ନାମ ବିଶେଷ ଭାବେ ସ୍ମରଣଯୋଗ୍ୟ । ଏହି ଗୋଷ୍ଠୀର ଅଧିକାଂଶ ଶିଳ୍ପୀ ବଙ୍ଗାଳୀ ହୋଇଥିବାରୁ ଭାରତୀୟ ଶିଳ୍ପ କ୍ଷେତ୍ରରେ ଏହି ଆନ୍ଦୋଳନ ବଙ୍ଗାଳୀ ପୁନର୍ଜାଗରଣ ନାମରେ ପରିଚିତ । ଅବନୀନ୍ଦ୍ରନାଥ ଠାକୁର ଏବଂ ନନ୍ଦଲାଲ ବସୁ, ଅସିତ କୁମାର ହାଲଦାର, ସମରେନ୍ଦ୍ରନାଥ ଗୁପ୍ତ ଓ ସାରଦାଚରଣ ଉକିଲଙ୍କ ଶିଳ୍ପକଳା ମାଧ୍ୟମରେ ଆଧୁନିକ ଭାରତୀୟ ଚିତ୍ରକଳା ଓ ଗ୍ରାଫିକ୍ ଚିତ୍ରର ଭିତ୍ତି ପ୍ରତିଷ୍ଠିତ ହୋଇଥିଲା ।

ଔପନିବେଶିକ ଭାରତରେ ଉଦୀୟମାନ ବୁର୍ଜୁଆ ସମାଜ ସହିତ ସଂଶ୍ଳିଷ୍ଟ ନୂତନ ଭାରତୀୟ

ସଂସ୍କୃତିର ଉନ୍ମେଷ ମାଧ୍ୟମରେ ନୂତନ ଭାରତୀୟ ସାହିତ୍ୟର ବିକାଶ ପରିଷ୍କାର ଭାବେ ବୈଶିଷ୍ଟ୍ୟ ଲାଭ କରିଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶକଗୁଡ଼ିକରେ ଭାରତୀୟ ଲେଖକବୃନ୍ଦ ୟୁରୋପୀୟ ଗଦ୍ୟ ସାହିତ୍ୟ – ଉପନ୍ୟାସ, କ୍ଷୁଦ୍ର ଗଳ୍ପ ଓ ପ୍ରବନ୍ଧର ଦୀର୍ଘ ଓ ଜଟିଳ ପ୍ରକ୍ରିୟାସମୂହର ଆତ୍ମସ୍ଥକରଣ ସଂପୂର୍ଣ୍ଣ ହୋଇଥିଲା । ପ୍ରାଚୀନ ଭାରତର ଐତିହ୍ୟ ସହିତ ସଂଯୁକ୍ତ କାହାଣୀଗୁଡ଼ିକ ଥିଲା ଅଧିକାଂଶ ଭାରତୀୟ ଗଣ ସାହିତ୍ୟର ବିଷୟବସ୍ତୁ ଏବଂ ନାଟକ ଆଉ କାବ୍ୟରେ ଏହାର କୌଣସି ବ୍ୟତିକ୍ରମ ଘଟି ନଥିଲା । ପୁରାକାଳର ଯୁଦ୍ଧ ଓ ଅଭ୍ୟୁତ୍‌ଥାନର ନାୟକମାନଙ୍କୁ ନେଇ ଏସବୁ ନିବିଷ୍ଟ ଥିବା ହେତୁ, ଔପନିବେଶିକ ପରିପ୍ରେକ୍ଷିତରେ ପ୍ରଧାନତଃ, ଏସବୁଥିରେ ଏହି ଲେଖକମାନେ ସେମାନଙ୍କ ପାଠକମାନଙ୍କ ମଧ୍ୟରେ ଦେଶାତ୍ମବୋଧ ସୃଷ୍ଟି କରିବାର ଏକମାତ୍ର ସମ୍ଭାବନା ଲକ୍ଷ୍ୟ କରିଥିଲେ । ଐତିହାସିକ ଏବଂ ବୀରତ୍ୱପୂର୍ଣ୍ଣ ଏହିସବୁ କାହାଣୀରେ ଆବଦ୍ଧ ରହିବା ଥିଲା ଆଧୁନିକ ଭାରତୀୟ ସାହିତ୍ୟର ରୋମାଣ୍ଟିକ୍ ପର୍ବର ଅବଶ୍ୟମ୍ଭାବୀ ଦୀର୍ଘସ୍ଥାୟିତ୍ୱର କାରଣ ।

କିନ୍ତୁ ଏକଥା ମଧ୍ୟ ଲକ୍ଷଣୀୟ ଯେ, ପ୍ରକୃତ ସାହିତ୍ୟ ରସୋତ୍ତୀର୍ଣ୍ଣ ଐତିହାସିକ ଉପନ୍ୟାସ ବ୍ୟତୀତ ଊନବିଂଶ ଶତାବ୍ଦୀର ଶେଷରେ ଓ ବିଂଶ ଶତାବ୍ଦୀର ଆରମ୍ଭରେ ଭାରତୀୟ ସାହିତ୍ୟରେ ଏପରି କେତେକ ଅନୁକୃତିର ବ୍ୟାପକ ଅନୁପ୍ରବେଶ ଘଟିଥିଲା ଯେଉଁଠି ସାମନ୍ତବାଦୀ ଅତୀତର ପ୍ରତିକ୍ରିୟାଶୀଳ ଆଦର୍ଶ ମଧ୍ୟରେ ପୌରାଣିକ ବା ଐତିହାସିକ କାହାଣୀର ରୋମାଣ୍ଟିକ୍ ବିଶ୍ଳେଷଣ ପର୍ଯ୍ୟବସିତ ହୋଇଥିଲା ।

ତା ସତ୍ତ୍ୱେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହି ରୋମାଣ୍ଟିକ୍‌ତାରୁ ଶେଷକୁ ବିଶେଷଣାତ୍ମକ ବାସ୍ତବବାଦର ଉନ୍ମେଷ ଘଟିଥିଲା : ଆଲୋଚ୍ୟ ଲେଖକମାନଙ୍କ ଦ୍ୱାରା ବ୍ୟବହୃତ ଏହିସବୁ ବୀରତ୍ୱପୂର୍ଣ୍ଣ ଓ ରୋମାଣ୍ଟିକ୍ ଘଟଣାଗୁଡ଼ିକ ମଧ୍ୟରେ ଭାରତୀୟ ଗଦ୍ୟର ସାମାଜିକ ଲକ୍ଷ୍ୟ ତା'ର ସାମାଜିକ ଅଭୀଷ୍ଟ ଖୋଜି ପାଇଥିଲା । ବିଂଶ ଶତାବ୍ଦୀର ଆରମ୍ଭର ଶିକ୍ଷିତ ଭାରତୀୟ ଯୁବକମାନଙ୍କର ପ୍ରଗତିଶୀଳ ଅଂଶର ଦୃଷ୍ଟି ଆକର୍ଷଣକାରୀ ସମସ୍ୟାବଳୀ ଏହିସବୁ ଗ୍ରନ୍ଥରେ ପ୍ରାଧାନ୍ୟ ଲାଭ କରିଥିଲା । ଆଧୁନିକ ଯୁଗର ପ୍ରାକ୍‌କାଳରେ ମୁଖ୍ୟ ଭାରତୀୟ ଲେଖକମାନଙ୍କର ରଚନାବଳୀରେ ସାମାଜିକ ଦ୍ୱନ୍ଦ୍ୱସଂପନ୍ନ ବିଷୟଗୁଡ଼ିକ କ୍ରମଶଃ ସ୍ପଷ୍ଟତର ହୋଇ ଉଠିଥିଲା ।

ନୂତନ ଭାରତୀୟ ସାହିତ୍ୟ ମଧ୍ୟରେ ଅନ୍ୟତମ ପ୍ରଧାନ ସ୍ଥାନ ଲାଭ କରିଥିବା ବଙ୍ଗଳା ସାହିତ୍ୟରେ ନୂତନ ପ୍ରବଣତାର ଉନ୍ମେଷ ସେତେବେଳକୁ ସର୍ବାଧିକ ଭାବେ ପ୍ରକଟିତ ହୋଇଥିଲା । ଏହି ସମୟରେ ବଙ୍ଗଳା ସାହିତ୍ୟ କ୍ଷେତ୍ରରେ ରବୀନ୍ଦ୍ରନାଥ ଠାକୁରଙ୍କର ଅଭ୍ୟୁଦୟ ଘଟିଥିଲା ଏବଂ ବିଂଶ ଶତାବ୍ଦୀର ସମଗ୍ର ପ୍ରଥମାର୍ଦ୍ଧ ବ୍ୟାପୀ ଦେଶର ସାଂସ୍କୃତିକ ଜୀବନକୁ ସେ ପ୍ରଭାବିତ କରିଥିଲେ । ସେ ଥିଲେ ଏକାଧାରରେ ଲେଖକ, ସଂଗୀତ ରଚୟିତା, ଶିଳ୍ପୀ, ଦାର୍ଶନିକ, ଶିକ୍ଷକ ଏବଂ ଜନନେତା । ତାଙ୍କର କବିତା, ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ସାହିତ୍ୟ ସମାଲୋଚନା, ରେଖାଚିତ୍ର, ଦାର୍ଶନିକ ପ୍ରବନ୍ଧ ଓ ନାଟକ ଭାରତୀୟ ସାହିତ୍ୟ ପ୍ରତି ଅମୂଲ୍ୟ ଅବଦାନ । ୧୮୮୦ ଦଶକ ଓ ୧୮୯୦ ଦଶକ ବେଳକୁ ସେ ତାଙ୍କର କବିତା, ନାଟକ ଏବଂ ବିଭିନ୍ନ କ୍ଷୁଦ୍ର ଗଳ୍ପର ସମାହାର ପାଇଁ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ବିଂଶ ଶତାବ୍ଦୀରେ ତାଙ୍କର "ଗୋରା" (୧୯୦୭-୧୯୧୦) ଏବଂ "ଘରେ ଓ ବାହିରେ" (୧୯୧୫-୧୯୧୬) ଉପନ୍ୟାସ ଦୁଇଟି ପ୍ରକାଶ ପାଇଲା ପରେ ସେ ଜଣେ ଚିନ୍ତାବିଦ୍ ରୂପେ ସୁପରିଚିତ ହୋଇଥିଲେ । ଏହି ଉପନ୍ୟାସ ଦୁଇଟି ବୌଦ୍ଧିକ ତଥା ଆତ୍ମିକ ସଂକଟ ଏବଂ ବଙ୍ଗାଳୀ

ବୁଦ୍ଧିଜୀବୀ ସଂପ୍ରଦାୟର ଆଦର୍ଶରାଜି ପ୍ରତିଫଳିତ ହୋଇଥିଲା । "ଘରେ ଓ ବାହିରେ" ଉପନ୍ୟାସଟି ବିଶେଷ ଭାବେ ଗୁରୁତ୍ୱପୂର୍ଣ୍ଣ ହେବାର କାରଣ ହେଲା । ଏହା ମାଧ୍ୟମରେ ଭାରତୀୟ ସାହିତ୍ୟ ମଧ୍ୟକୁ ଜାତୀୟ ଆନ୍ଦୋଳନର ବିଷୟବସ୍ତୁ ପ୍ରବେଶ କରିଥିଲା । ସ୍ୱଦେଶୀ ଏବଂ ସ୍ୱରାଜ ଆନ୍ଦୋଳନ କାଳରେ ଜାତୀୟ ଆନ୍ଦୋଳନର ବିଭିନ୍ନ ଧାରା ପ୍ରତି ରବୀନ୍ଦ୍ରନାଥଙ୍କ ଦୃଷ୍ଟିକୋଣ ଏଥିରେ ପ୍ରକାଶ ପାଇଥିଲା । ବିଶ୍ୱ ସ୍ୱୀକୃତି ଲାଭ କରିଥିବା ତାଙ୍କର ରଚନାସମୂହ ଜରିଆରେ ସେ ଭାରତୀୟ ସାହିତ୍ୟ କ୍ଷେତ୍ରରେ ସମାଲୋଚନାତ୍ମକ ବାସ୍ତବତାବାଦର ବିଜୟ ଘୋଷଣା କରିଥିଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ସେ ସାହିତ୍ୟ ପାଇଁ ନୋବେଲ ପୁରସ୍କାର ଲାଭ କରିଥିଲେ ।

ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟ (୧୮୭୬-୧୯୩୮) ମଧ୍ୟ ତତ୍କାଳୀନ ବଙ୍ଗଳା ସାହିତ୍ୟର ବାସ୍ତବଧର୍ମୀ ଧାରାର ଦ୍ୱିତୀୟ ପ୍ରଖ୍ୟାତ ଲେଖକ ଥିଲେ । ସମକାଳୀନ ଜୀବନର ବାସ୍ତବତା ଚିହ୍ନିତ ତାଙ୍କ ଉପନ୍ୟାସସମୂହ ବଙ୍ଗଳା ତଥା ଭାରତୀୟ ସାହିତ୍ୟ ପ୍ରତି ଅମୂଲ୍ୟ ଅବଦାନ ।

ଆଧୁନିକ ଯୁଗର ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ ଅଭିନ୍ନ ଘଟଣାବଳୀର ଦୃଷ୍ଟାନ୍ତ ମିଳିଥାଏ । ସେସବୁଥିରେ ମଧ୍ୟ ନୂତନ ଶୈଳୀର ଉନ୍ମେଷ ଘଟିଥିଲା, ବିଶ୍ଳେଷଣାତ୍ମକ ବାସ୍ତବବାଦ ଦେଖା ଦେଇଥିଲା । ମହାରାଷ୍ଟ୍ରରେ ଏହିସବୁ ପ୍ରବଣତାର ପଥ ପ୍ରଦର୍ଶକ ଥିଲେ ଆଧୁନିକ ମରହଟ୍ଟା ଗଦ୍ୟର ଜନକ ହରିନାରାୟଣ ଆପ୍ଟେ (୧୮୬୪-୧୯୧୯) । ତାଙ୍କ ଚିନ୍ତାରେ ତିଲକଙ୍କ ପ୍ରଭାବ ସହଜରେ ଲକ୍ଷ୍ୟ କରାଯାଇଥାଏ । ଅନ୍ୟାନ୍ୟମାନଙ୍କ ସହିତ ହିନ୍ଦୀ (ଶ୍ରୀନିବାସ ଦାସ, କିଶୋରିଲାଲ ଗୋସ୍ୱାମୀ, ପ୍ରମୁଖ) ଏବଂ ତେଲୁଗୁ ଲେଖକମାନେ (କଳାଚଳମ୍ ଶ୍ରୀନିବାସ ରାଓ, ବେଦାନ୍ତ ଭେଙ୍କଟରାୟା ଶାସ୍ତ୍ରୀ, ପ୍ରମୁଖ) ସେମାନଙ୍କ ଉପନ୍ୟାସ ଓ ନାଟକରେ ଐତିହାସିକ ଘଟଣାବଳୀର ବ୍ୟବହାର କରିଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକିରମୋହନ ସେନାପତି (୧୮୪୭-୧୯୪୮) ତାଙ୍କ ଉପନ୍ୟାସ "ଛମାଣ ଆଠ ଗୁଣ୍ଠରେ" (୧୯୦୨) ତତ୍କାଳୀନ ଭାରତର ଗ୍ରାମୀଣ ସମାଜର ଜଟିଳ ସମସ୍ୟାଗୁଡ଼ିକର ଚିତ୍ର ଟେକି ଧରିଥିଲେ ।

ଏହି ନୂଆ ଧରଣର ରଚନାବଳୀ ସହିତ ଐତିହ୍ୟବହନକାରୀ ରଚନାଗୁଡ଼ିକ – କାବ୍ୟ ଏବଂ ଆଂଶିକ ଭାବେ ନାଟକର ମଧ୍ୟ ବିକାଶ ଘଟିଥିଲା । ସେତେବେଳେ, ଏପରିକି କାବ୍ୟରେ ମଧ୍ୟ ନୂତନର ସ୍ପର୍ଶ ଲାଗିଥିଲା, କବିତାର ଆଧେୟ ଓ ଅନ୍ତର୍ନିହିତ ବକ୍ତବ୍ୟରେ ପରିବର୍ତ୍ତନ ଦେଖା ଦେଇଥିଲା । ଏହି ସମୟରେ ଭାରତର ଆଧୁନିକ ଯୁଗର ଅନ୍ୟତମ ଶ୍ରେଷ୍ଠ କବି ମହମ୍ମଦ ଇକ୍‌ବାଲଙ୍କ (୧୮୭୩-୧୯୩୮) ରଚନାବଳୀ ଉର୍ଦ୍ଦୁ, ଫାରାସୀ ଓ ପଞ୍ଜାବୀରେ ପ୍ରକାଶ ପାଇଥିଲା । ବିଂଶ ଶତାବ୍ଦୀର ସଂପୂର୍ଣ୍ଣ ପ୍ରାରମ୍ଭରେ ସାମାଜିକ ସମସ୍ୟା ଓ ଦେଶପ୍ରେମ, ଇକବାଲଙ୍କ କବିତାର ପ୍ରଧାନ ବିଷୟବସ୍ତୁ ହୋଇ ଉଠିଥିଲା ।

ମୁଖ୍ୟ ଜାତୀୟ ଲେଖକ ଓ ଅନ୍ୟାନ୍ୟ ଶିକ୍ଷକ-ନେତୃବର୍ଗଙ୍କ ଉଦ୍ୟୋଗରେ ପ୍ରତିଷ୍ଠିତ ଭାରତୀୟ ଭାଷା ଓ ସାହିତ୍ୟ ଶିକ୍ଷା କେନ୍ଦ୍ର ଏବଂ ଆଲୋଚନାମୂଳକ ସାହିତ୍ୟ ସାମୟିକ ପତ୍ରପତ୍ରିକାଗୁଡ଼ିକ ଭାରତର ବିଭିନ୍ନ ଜାତିର ଏହି ନୂତନ ସାହିତ୍ୟର ଆବିର୍ଭାବ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । ଏସବୁ ମଧ୍ୟରେ ଇତିହାସ ଗବେଷଣା ଏବଂ ହିନ୍ଦୀ ଭାଷା ଓ ସାହିତ୍ୟ ଉନ୍ନୟନ ପାଇଁ ୧୮୯୩ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ "କାଶୀ ନଗରୀ ପ୍ରଗ୍ରିଣୀ ସଭା" ଉଲ୍ଲେଖଯୋଗ୍ୟ । ଭାରତୀୟ ସମାଲୋଚନା ସାହିତ୍ୟର ପ୍ରତିଷ୍ଠାତାମାନଙ୍କ ମଧ୍ୟରେ ହିନ୍ଦୀ ସାହିତ୍ୟରେ ମହାବୀର ପ୍ରସାଦ ଦ୍ୱିବେଦୀ,

ଉର୍ଦ୍ଦୁ ସାହିତ୍ୟରେ ମହମ୍ମଦ ହୋସେନ ଆଜାଦ ଓ ତାମିଲ ସାହିତ୍ୟରେ ସୁବ୍ରହ୍ମଣ୍ୟ ଆୟାର ସ୍ୱନାମଧନ୍ୟ ।

ନବ୍ୟ ଧାରାର ଲେଖକମାନଙ୍କର ରଚନାବଳୀରେ ଚଳନ୍ତି ଶବ୍ଦାବଳୀର ବ୍ୟବହାର ଦ୍ୱାରା ଏକ ପ୍ରାଣବନ୍ତ ନୂତନ ଭାଷାର ଉନ୍ମେଷ ଘଟିଥିଲା । ଏମାନଙ୍କ ମଧ୍ୟରେ ଭାଷା ସଂସ୍କାରକ ହିସାବରେ ଅନେକ ଖ୍ୟାତି ଅର୍ଜନ କରିଥିଲେ : ତେଲୁଗୁରେ କାନ୍ଦୁକୁରି ବିରେଶଲିଙ୍ଗମ୍ (୧୮୪୮-୧୯୧୯) ଓ ଗୁରୁଜାଦା ଆପ୍‌ପା ରାଓ (୧୮୬୧-୧୯୧୫) ।

ଔପନିବେଶିକ ଶାସନ ବିରୁଦ୍ଧରେ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନ ଆଧୁନିକ ଓ ପ୍ରଥାନୁଗାମୀ ସାହିତ୍ୟର ବିଷୟବସ୍ତୁ ଓ ଆବେଦନ ଉପରେ ଚୂଡ଼ାନ୍ତ ପ୍ରଭାବ ପାତ କରିଥିଲା । ଜନପ୍ରିୟ ନାଟ୍ୟକଳା ଏବଂ ତତ୍‌କାଳୀନ ସଙ୍ଗୀତ ଓ ନୃତ୍ୟ କ୍ଷେତ୍ରରେ ଏହା ବହୁ ପରିମାଣରେ ପ୍ରଯୋଜ୍ୟ । ଏସବୁଥିରେ ଅତି ଭାରତୀୟ ପୌରାଣିକ କାହାଣୀର ନାୟକନାୟିକାଙ୍କ ମୁଖରେ ରୂପକଥାର ଭାଷାଜାଲ ମଧ୍ୟରେ ଔପନିବେଶିକତା ବିରୁଦ୍ଧରେ ସଂଗ୍ରାମର କଥା ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରାଯାଉଥିଲା । ଲୋକପ୍ରିୟ ଶିଳ୍ପକଳାରେ ସ୍ୱାଧୀନତାର ସ୍ୱୀକୃତିଗୁଡ଼ିକରେ ବ୍ରିଟିଶ୍‌ବିରୋଧୀ ଗୁପ୍ତ ସମିତିଗୁଡ଼ିକର କର୍ମୀମାନଙ୍କର ରାଜନୈତିକ ଓ ଆଦର୍ଶଗତ ନୀତିଗୁଡ଼ିକ ପ୍ରତିଧ୍ୱନିତ ହେଉଥିଲା ।

## ବିପ୍ଳବୀ ଗୁପ୍ତ ସମିତିଗୁଡ଼ିକର କାର୍ଯ୍ୟକଳାପ

ଏହି ଶତାବ୍ଦୀର ପ୍ରାରମ୍ଭରେ ଗଢ଼ି ଉଠିଥିବା ଏବଂ ସ୍ୱଦେଶୀ ଓ ସ୍ୱରାଜ ଆନ୍ଦୋଳନରେ ସକ୍ରିୟ ଥିବା ବଙ୍ଗଳା ଓ ମହାରାଷ୍ଟ୍ରର ବୈପ୍ଳବିକ ଅର୍ଦ୍ଧଆଇନସମ୍ମତ ଗୁପ୍ତ ସମିତିଗୁଡ଼ିକ ଗଣଆନ୍ଦୋଳନରେ ଭଟା ଦେଖା ଦେବା ପରେ ରାଜନୈତିକ ସନ୍ତ୍ରାସର କୌଶଳ ଗ୍ରହଣ କରିଥିଲେ । ବଙ୍ଗଳାର ଗୁପ୍ତ ସମିତିଗୁଡ଼ିକ ମଧ୍ୟରେ ଢାକାରେ "ଅନୁଶୀଳନ ସମିତି" ଓ କଲିକତାରେ "ଯୁଗାନ୍ତର ପାର୍ଟି" ପ୍ରଧାନ ଥିଲା । ଅନ୍ୟାନ୍ୟ ସହର, ଏପରିକି ଗ୍ରାମରେ ଏସବୁ ସେମାନଙ୍କ ନିଜ ଶାଖା ଗଠନ କରିଥିଲେ । ପୁସ୍ତିକା ଓ କଲିକତାର "ଯୁଗାନ୍ତର" ସଂବାଦ ଅନୁଯାୟୀ ଏହି ବିପ୍ଳବୀ ସମିତିଗୁଡ଼ିକର ଗୃହୀତ ଲକ୍ଷ୍ୟ ଥିଲା : ଭାରତୀୟ ଯୁବକମାନଙ୍କ ମଧ୍ୟରେ ଜାତୀୟ ସଚେତନା ଆଣିବା, ଭାରତର ପୂର୍ଣ୍ଣ ସ୍ୱାଧୀନତା ଅର୍ଜନ ପାଇଁ ସମ୍ଭାବ୍ୟ ଯେକୌଣସି ପଥରେ ସଂଗ୍ରାମ ପରିଚାଳନାର ପ୍ରସ୍ତୁତି ଏବଂ ପରିଶେଷରେ ସଶସ୍ତ୍ର ଆକ୍ରମଣ ଓ ସନ୍ତ୍ରାସ ସୃଷ୍ଟିର ଉଦ୍ୟୋଗ ନେବା । ଗୁପ୍ତ ସମିତି ଦ୍ୱାରା ପ୍ରକାଶିତ "ବର୍ତ୍ତମାନ ରଣନୀତି" ନାମକ ଏକ ପୁସ୍ତିକାର ବକ୍ତବ୍ୟ ଅନୁସାରେ—ଯଦି ଅନ୍ୟକୌଣସି ପନ୍ଥାରେ ଶୋଷଣର ଅବସାନ ନଘଟେ, ଯଦି ଦାସତ୍ୱର କୁଷ୍ଠ ରୋଗ ଜାତିର ରକ୍ତକୁ ବିଷାକ୍ତ କରେ ଓ ତା'ର ଜୀବନୀ ଶକ୍ତିକୁ ଶୋଷି ନିଏ, ତେବେ ଯୁଦ୍ଧ ଅନିବାର୍ଯ୍ୟ ହୋଇ ଉଠିବ ।

ଭାରତୀୟ ଆତ୍ମଗୋପନକାରୀ ବିପ୍ଳବୀମାନଙ୍କ ଦ୍ୱାରା ରାଜନୈତିକ ସନ୍ତ୍ରାସର ଏହି କୌଶଳ ଗ୍ରହଣ ଉପରେ ଅନେକାଂଶରେ ୟୁରୋପୀୟ ବିପ୍ଳବୀ ସଂଗଠନର, ବିଶେଷତଃ, ରୁଷିଆର ପ୍ରଭାବପାତ ଘଟିଥିଲା । ୧୯୦୭ ଖ୍ରୀଷ୍ଟାବ୍ଦରେ "ଯୁଗାନ୍ତର ପାର୍ଟିର" ଅନ୍ୟତମ ସଦସ୍ୟ ହେମଚନ୍ଦ୍ର ଦାସ ପଶ୍ଚିମ ୟୁରୋପକୁ ଯାଇଥିଲେ ଏବଂ ରୁଷ୍ ବିପ୍ଳବୀ ଦେଶାନ୍ତରୀମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ ।

ସେଠାରେ ସେ ଶିକ୍ଷା କରିଥିଲେ କିପରି ବିସ୍ଫୋରଣାତ୍ମକ ଜିନିଷ ତିଆରି କରିବାକୁ ହୁଏ । ୧୯୦୮ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ତାଙ୍କର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ପରେ ଭାରତର ସର୍ବତ୍ର ବିପ୍ଳବୀ ସମିତିଗୁଡ଼ିକ ମଧ୍ୟରେ "ବୋମା ପୂଜାର" ବନ୍ୟା ଦେଖା ଦେଇଥିଲା । ବିକ୍ଷିପ୍ତ ସନ୍ତ୍ରାସ ଅବଶ୍ୟ ଭାରତୀୟ ବିପ୍ଳବୀମାନଙ୍କର ଶେଷ ଲକ୍ଷ୍ୟ ନଥିଲା । ଯେଉଁସବୁ ବ୍ରିଟିଶ୍ ବା ଭାରତୀୟ ଗୁପ୍ତ ଆନ୍ଦୋଳନ ପକ୍ଷରେ ଆଶୁ ବିପଦର କାରଣ ହୋଇ ଉଠିଥିଲେ, କେବଳ ସେମାନଙ୍କ ବିରୁଦ୍ଧରେ ଏହା ପ୍ରଯୁକ୍ତ ହେଉଥିଲା । ଗୁପ୍ତ ସମିତିର ନେତୃବୃନ୍ଦ ସନ୍ତ୍ରାସକୁ ଭାରତୀୟ ସମାଜ ମଧ୍ୟରେ ବୈପ୍ଳବିକ କାର୍ଯ୍ୟକଳାପର ଅଭିବୃଦ୍ଧି ପକ୍ଷରେ ପ୍ରରୋଚକ ରୂପେ ମନେ କରୁଥିଲେ । ବଙ୍ଗଳାର ଅନ୍ୟତମ ସନ୍ତ୍ରାସବାଦୀ ନେତା ବାରୀନ ଘୋଷ୍ ଲେଖିଥିଲେ, ସେ ଏବଂ ତାଙ୍କର ସହକର୍ମୀମାନେ କେତେକ ବ୍ରିଟିଶ୍‌ଙ୍କୁ ହତ୍ୟା କରିବା ମାଧ୍ୟମରେ ଦେଶକୁ ସ୍ୱାଧୀନ କରିବା କଥା ଭାବୁ ନାହାନ୍ତି, ସେମାନେ କିପରି ବିପଦ ଓ ମୃତ୍ୟୁବରଣ କରୁଛନ୍ତି, ତାହା ଦେଖିବା ହେଉଛି ସେମାନଙ୍କର ଉଦ୍ଦେଶ୍ୟ । ତେଣୁ ବିଭିନ୍ନ ଗୁପ୍ତ ସମିତି ମାଧ୍ୟମରେ ସନ୍ତ୍ରାସର ଅର୍ଥ ବିଭିନ୍ନ ରୂପ ପରିଗ୍ରହ କରିଥିଲା । "ଯୁଗାନ୍ତର ପାର୍ଟିର" ପ୍ରଧାନ ଗୋଷ୍ଠୀ —"ମାଣିକତାଲା ଗାର୍ଡେନ୍ ସୋସାଇଟି" ଅନୁଯାୟୀ ସନ୍ତ୍ରାସ ମଧ୍ୟରେ ସେମାନଙ୍କ ବୈପ୍ଳବିକ କର୍ମକାଣ୍ଡର ପ୍ରଧାନ ଅଂଶଟି ନିହିତ ଥିଲା । କିନ୍ତୁ ଗୋଆଲିଅର "ନବ ଭାରତ ସୋସାଇଟି" ଓ ଢାକାର "ଅନୁଶୀଳନ ସମିତି" ଭାବୀ ଅଭ୍ୟୁତ୍‌ଥାନର ଲକ୍ଷ୍ୟରେ ସେମାନଙ୍କ କାର୍ଯ୍ୟକଳାପ କେନ୍ଦ୍ରୀଭୂତ କରିଥିଲେ ।

ବଙ୍ଗଳା ବ୍ୟତୀତ ମହାରାଷ୍ଟ୍ରରେ ଆତ୍ମଗୋପନକାରୀ ବିପ୍ଳବୀମାନେ ସକ୍ରିୟ ଥିଲେ । ସେଠାକାର ସମିତିଗୁଡ଼ିକ ମଧ୍ୟରେ ୧୯୦୭ ଖ୍ରୀଷ୍ଟାବ୍ଦରେ ବିନାୟକ ଓ ଗଣେଶ ସାଭାରକର ଭାଇମାନଙ୍କ ଦ୍ୱାରା ପ୍ରତିଷ୍ଠିତ "ଅଭିନବ ଭାରତ" ସବୁଠାରୁ ପ୍ରଭାବଶାଳୀ ଥିଲା । ବଙ୍ଗଳା ଓ ମହାରାଷ୍ଟ୍ରର କେନ୍ଦ୍ରୀୟ ସମିତିଗୁଡ଼ିକ ସହିତ ସଂଶ୍ଳିଷ୍ଟ ଅନ୍ୟାନ୍ୟ ଗୁପ୍ତ ସଂଗଠନ ମଧ୍ୟ ପଞ୍ଜାବ, ଯୁକ୍ତ ପ୍ରଦେଶ, ମଧ୍ୟ ପ୍ରଦେଶ ଏବଂ ଦକ୍ଷିଣ ଭାରତରେ ସକ୍ରିୟ ଥିଲେ ।

୧୯୦୮ ଖ୍ରୀଷ୍ଟାବ୍ଦରେ ବଙ୍ଗଳା ଓ ମହାରାଷ୍ଟ୍ରରେ ପ୍ରଥମ ସନ୍ତ୍ରାସମୂଳକ କାର୍ଯ୍ୟକଳାପ ଅନୁଷ୍ଠିତ ହେଲା । ଆତ୍ମଗୋପନକାରୀ ବିପ୍ଳବୀମାନଙ୍କ ବିରୁଦ୍ଧରେ ଔପନିବେଶିକ ସରକାର ନିଷ୍ଠୁର ପ୍ରତିହିଂସା ଗ୍ରହଣ କଲା : ହତ୍ୟା ସହିତ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ ବିପ୍ଳବୀମାନଙ୍କୁ ମୃତ୍ୟୁଦଣ୍ଡ ଏବଂ ଗୁପ୍ତ ସମିତିର ସଦସ୍ୟମାନଙ୍କୁ ଦୀର୍ଘମିଆଦୀ ବା କଠୋର ସଶ୍ରମ କାରାଦଣ୍ଡ ଦିଆଗଲା । ୧୯୦୮-୧୯୦୯ ଖ୍ରୀଷ୍ଟାବ୍ଦ ମଧ୍ୟରେ "ମାନିକ୍‌ତାଲା ଗାର୍ଡେନ୍ ସୋସାଇଟି", "ଅଭିନବ ଭାରତ" ଓ "ଅନୁଶୀଳନ ସମିତିର" ବିଲୁପ୍ତି ଘଟିଥିଲା ଏବଂ ବାରିନ ଘୋଷ୍, ଉଲ୍ଲାସକର ଦତ୍ତ, ହେମଚନ୍ଦ୍ର ଦାସ, ଉପେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ଜିତେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ପୁଲୀନ ବିହାରୀ ଦାସ, ଭୂପେଶଚନ୍ଦ୍ର ନାଗ ଓ ସାଭାରକର ଭାଇମାନଙ୍କ ସହ ବିପ୍ଳବୀ ନେତୃବୃନ୍ଦ ଜେଲ ବନ୍ଦୀ ହୋଇଥିଲେ । କିନ୍ତୁ ଏହିସବୁ ନିର୍ଯ୍ୟାତନ ସତ୍ତ୍ୱେ ବୈପ୍ଳବିକ କାର୍ଯ୍ୟକଳାପ ପୂରାପୂରି ଥମି ଯାଇ ନଥିଲା । ନିଶ୍ଚିହ୍ନ ସମିତିଗୁଡ଼ିକ ସ୍ଥାନରେ ନୂଆ ଦଳ ଏବଂ ସଂଗଠନ ଦେଖା ଦେବାକୁ ଲାଗିଲା । ୧୯୦୯ ଖ୍ରୀଷ୍ଟାବ୍ଦରେ ବାରାଣସୀରେ ପୁନଃପ୍ରତିଷ୍ଠିତ "ଅନୁଶୀଳନ ସମିତିର" ଏକ ଶାଖା, ମହାରାଷ୍ଟ୍ରରେ "ନବ ଭାରତ ସୋସାଇଟି"; କଲିକତାରେ "ରାଜାବଜାର ସମିତି" ଓ ପୂର୍ବ ବଙ୍ଗରେ "ବରିସାଲ୍ ସମିତି", ଆଦି ଖୁବ୍ ସକ୍ରିୟ ହୋଇ ଉଠିଥିଲେ । ବ୍ରିଟିଶ୍ ଏବଂ ପୁଲିସ୍‌ର ଦଲାଲ ଶ୍ରେଣୀର ଭାରତୀୟମାନଙ୍କ ବିରୁଦ୍ଧରେ ସନ୍ତ୍ରାସ

ଅବ୍ୟାହତ ରହିଥିଲା । ୧୯୦୯-୧୯୧୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହିଭଳି ୩୨ଟି ଘଟଣା ଘଟିଥିଲା । ୧୯୧୨ ଖ୍ରୀଷ୍ଟାବ୍ଦରେ ବିପ୍ଳବୀମାନେ ବଡ଼ଲାଟ୍ ହାର୍ଡିଞ୍ଜ୍‌ଙ୍କୁ ହତ୍ୟା କରିବା ପାଇଁ ଚେଷ୍ଟା କରିଥିଲେ ଏବଂ ବୋମା ବିସ୍ଫୋରଣ ଦ୍ୱାରା ସେ ମାରାତ୍ମକ ଭାବେ ଆଘାତ ପାଇଥିଲେ ।

୧୯୦୫-୧୯୦୬ ଖ୍ରୀଷ୍ଟାବ୍ଦରେ ଜାତୀୟ ଆନ୍ଦୋଳନର ଶକ୍ତି ବୃଦ୍ଧି ବେଳେ ଆତ୍ମଗୋପନକାରୀ ବିପ୍ଳବୀମାନେ ବ୍ରିଟିଶ୍-ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ସେମାନଙ୍କ ପ୍ରଚାର କାର୍ଯ୍ୟ ଜୋରଦାର କରିଥିଲେ । ସୈନ୍ୟ ଏବଂ ନନ୍‌କମିସନ୍‌ଡ ଅଫିସରମାନଙ୍କୁ ସେମାନେ ଭାବୀ ଅଭ୍ୟୁତ୍ଥାନର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଶକ୍ତି ବୋଲି ମନେ କରୁଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦରେ କଲିକତାରେ ଅବସ୍ଥିତ ପଞ୍ଜାବୀ ସୈନ୍ୟମାନଙ୍କ ମଧ୍ୟରେ ଅଭ୍ୟୁତ୍ଥାନ ଘଟାଇବାର ଚେଷ୍ଟା ବ୍ୟର୍ଥ ହୋଇଥିଲା । ୧୯୧୫ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ପଞ୍ଜାବର ପ୍ରଧାନ ସହର ଲାହୋର ସମେତ ଉତ୍ତର ଭାରତର ପାଞ୍ଚଟି ଗ୍ୟାରିସନ୍‌ରେ ଏକାସାଙ୍ଗରେ ଅଭ୍ୟୁତ୍ଥାନ ଘଟାଇବାର ଏକ ସତର୍କ ପ୍ରସ୍ତୁତି ସଂପନ୍ନ ହୋଇଥିଲା । କିନ୍ତୁ ଛଦ୍ମବେଶୀ ଜନୈକ ଦଲାଲ ପାଇଁ ପରିକଳ୍ପନାଟି ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା ଏବଂ ସଂପୃକ୍ତ ଲୋକମାନେ ବନ୍ଦୀ ହୋଇଥିଲେ । ଏହା ପରେ ରାସ ବିହାରୀ ବସୁଙ୍କ ନେତୃତ୍ୱାଧୀନ ଏହାର ସଂଗଠକମାନେ ଛିନ୍ନଛତ୍ର ହୋଇ ପଡ଼ିଥିଲେ ।

ପ୍ରଥମତଃ ଏବଂ ପ୍ରଧାନତଃ ଜନଗଣଙ୍କ ସହିତ ଦୁର୍ବଳ ଯୋଗାଯୋଗ ଏବଂ କୌଣସି ଅର୍ଥନୈତିକ ଓ ସାମାଜିକ କର୍ମସୂଚୀର ଅନୁପସ୍ଥିତି ହେତୁ ପେଟି-ବୁର୍ଜୁଆ ଜାତୀୟତାବାଦୀ-ବିପ୍ଳବୀମାନଙ୍କୁ ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଉଲ୍ଲେଖଯୋଗ୍ୟ ବୈଷୟିକ ସମ୍ବଳହୀନ, ନିର୍ମମ ପୁଲିସ୍ ଅତ୍ୟାଚାରର ଲକ୍ଷ୍ୟ ସ୍ୱରୂପ ଏହି ବିଚ୍ଛିନ୍ନ ଓ ଅତି ସୀମିତ ସଂଖ୍ୟକ ଗୁପ୍ତ ସମିତିଗୁଡ଼ିକ କେବଳ ଛାତ୍ର, ସହରର ପେଟି-ବୁର୍ଜୁଆ ଓ ପେଟି-ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ସେମାନଙ୍କ କାର୍ଯ୍ୟକଳାପ କେନ୍ଦ୍ରୀଭୂତ କରିଥିଲେ । ଗୁପ୍ତ ସମିତିଗୁଡ଼ିକର ବିଭିନ୍ନ ଗୋଷ୍ଠୀ ମଧ୍ୟରେ କଦବା କେମିତି ସଂଯୋଗ ଘଟିଲେ ମଧ୍ୟ କୌଣସି ଦିନ ଏମାନଙ୍କ ମଧ୍ୟରେ ଦେଶବ୍ୟାପୀ କୌଣସି ସଂହତି ପ୍ରତିଷ୍ଠିତ ହୋଇ ନଥିଲା । ଜାତୀୟ ବିପ୍ଳବୀମାନଙ୍କର କାର୍ଯ୍ୟକଳାପ ମଧ୍ୟରେ ସଂଯୋଗ ପ୍ରତିଷ୍ଠାର ଏହି ଅଭାବର କାରଣ ପ୍ରକୃତରେ ତତ୍କାଳୀନ ଭାରତୀୟ ସମାଜ ଜୀବନର ବାସ୍ତବ ପରିସ୍ଥିତି ମଧ୍ୟରେ, ତା'ର ଜାତି, ଅଞ୍ଚଳ, ବର୍ଣ୍ଣ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଧର୍ମୀୟ ପ୍ରତିବନ୍ଧକ ମଧ୍ୟରେ ନିହିତ ଥିଲା ।

ଧର୍ମୀୟ ଓ ଅନ୍ୟାନ୍ୟ ପାରମ୍ପରିକ ନିୟମ ଦ୍ୱାରା ବିପୁଳ ସଂଖ୍ୟାଗରିଷ୍ଠ ଭାରତୀୟମାନେ ପରିଚାଳିତ ହେଉଥିଲେ । ତେଣୁ ଧର୍ମୀୟ ଆଧେୟ ବିନା କୌଣସି ଆବେଦନ ଏହି ଜନସାଧାରଣଙ୍କ ନିକଟରେ ଗ୍ରହଣଯୋଗ୍ୟ ନଥିଲା । ଏହା ଉଭୟ ଚରମପନ୍ଥୀ ଏବଂ ଗୁପ୍ତ ସମିତିଗୁଡ଼ିକର କ୍ରିୟାକଳାପ ପ୍ରତି ପ୍ରଯୋଜ୍ୟ । ୧୯୦୫-୧୯୦୮ ଖ୍ରୀଷ୍ଟାବ୍ଦରେ ଏମାନଙ୍କ ଭାବାଦର୍ଶ ତେଣୁ ବ୍ୟାପକ ଭାବେ ଅରବିନ୍ଦ ଘୋଷଙ୍କ ପ୍ରଭାବାଧୀନ ହୋଇଥିଲା (୧୯୦୯ ଖ୍ରୀଷ୍ଟାବ୍ଦ ପରେ ସେ ସକ୍ରିୟ ରାଜନୀତି ତ୍ୟାଗ କରି ଧର୍ମ ସଂସାର, ଶିକ୍ଷା, ଦାର୍ଶନିକ ସମସ୍ୟାବଳୀ ବ୍ୟାଖ୍ୟା କରିବାରେ ନିଜକୁ ନିଯୁକ୍ତ କରିଥିଲେ) ବିଭିନ୍ନ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ଶାନ୍ତି ଏବଂ ସଂହତିର ବିବିଧ ଆବେଦନ ପ୍ରଚାର କରିବା ସତ୍ତ୍ୱେ ବିପ୍ଳବୀ ଗୁପ୍ତ ସମିତିଗୁଡ଼ିକରେ କାହିଁକି କେବଳ ହିନ୍ଦୁମାନେ ଯୋଗ ଦେଇଥିଲେ, ଏହିଥିରେ ତା'ର ବ୍ୟାଖ୍ୟା ମିଳିଥାଏ । ଇତିମଧ୍ୟରେ ଭାରତୀୟ ମୁସଲମାନମାନଙ୍କର ର୍‍ୟାଡିକାଲ ଅଂଶର କାର୍ଯ୍ୟକଳାପ ସାଂପ୍ରଦାୟିକ ସଂଗଠନଗୁଡ଼ିକର ଚଉକାଠ ମଧ୍ୟରେ ଆଗେଇ ଚାଲିଥିଲା ।

# ନିର୍ବାସିତ ଭାରତୀୟ ବିପ୍ଳବୀମାନଙ୍କ କାର୍ଯ୍ୟକଳାପ

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତର ଜାତୀୟ ମୁକ୍ତି ଆନ୍ଦୋଳନର ର୍‍ୟାଡିକାଲ ପେଟି-ବୁର୍ଜୁଆ ପ୍ରବଣତାଗୁଡ଼ିକ କେବଳ ଭାରତ ମଧ୍ୟରେ ନୁହେଁ, ଦେଶର ସୀମାନ୍ତ ବାହାରେ ବିକାଶ ଲାଭ କରିଥିଲା । ପ୍ରବାସୀ ଭାରତୀୟମାନେ ପ୍ରଥମେ ୟୁରୋପରେ ଏବଂ ଶେଷରେ ଆମେରିକା ତଥା ପ୍ରାଚ୍ୟର ବିଭିନ୍ନ ଦେଶରେ ବହୁ ବିପ୍ଳବୀ ସଂଗଠନ ଗଢ଼ିଥିଲେ । ପ୍ରବାସୀ ଭାରତୀୟମାନଙ୍କର ଏହିଭଳି ପ୍ରଥମ କେନ୍ଦ୍ରଟି ୧୯୦୫ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା ଲଣ୍ଡନରେ । ଶ୍ୟାମାଜୀ କୃଷ୍ଣବର୍ମା ନାମକ ଜନୈକ ପ୍ରବାସୀ ଭାରତୀୟ ସେଠାରେ "ଇଣ୍ଡିଆନ୍ ହୋମ୍ ରୁଲ୍" ସମିତି ପ୍ରତିଷ୍ଠା କରିଥିଲେ । କୃଷ୍ଣବର୍ମାଙ୍କ ଉଦ୍ୟୋଗରେ ପ୍ରକାଶିତ "ଇଣ୍ଡିଆନ୍ ସୋସିଓଲଜିଷ୍ଟ" ନାମକ ଜାତୀୟତାବାଦୀ ପତ୍ରିକାଟି ପାଠକମାନଙ୍କୁ ଭାରତର ସ୍ୱାଧୀନତା ଅର୍ଜନର ସଂଗ୍ରାମରେ ଉଦ୍‌ବୁଦ୍ଧ କରିଥିଲା । କୃଷ୍ଣବର୍ମାଙ୍କ "ଭାରତ ଭବନ" ନାମକ ଯେଉଁ ଘରଟିକୁ କେନ୍ଦ୍ର କରି ପ୍ରବାସୀ ଭାରତୀୟମାନେ ସଂଘବଦ୍ଧ ହୋଇଥିଲେ, ପ୍ରକୃତରେ ଏହା ଥିଲା ବ୍ରିଟିଶ୍ ବିଶ୍ୱବିଦ୍ୟାଳୟରେ ପାଠରତ ଭାରତୀୟ ଛାତ୍ରମାନଙ୍କର ଏକ ଆବାସିକ ଭବନ । କୃଷ୍ଣବର୍ମାଙ୍କ ବ୍ୟତୀତ ସଂଗଠନଟିର ନେତୃତ୍ୱରେ ଥିଲେ ବିନାୟକ ସାଭାରକର, ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ଏସ୍. ରାଭାଭାଇ ରାନା, ଭି.ଭି. ଆୟାର, ପ୍ରମୁଖ । ବ୍ରିଟିଶ୍ ପୁଲିସ୍‌ର ଅତ୍ୟାଗ୍ରର ଫଳରେ ଲଣ୍ଡନ ଦଳର ଅଧିକାଂଶ ସଦସ୍ୟ ୧୯୦୯-୧୯୧୦ ଖ୍ରୀଷ୍ଟାବ୍ଦର ପ୍ୟାରିସ୍‌କୁ ଗ୍ଲଲି ଯିବାକୁ ବାଧ୍ୟ ହୋଇଥିଲେ । ୧୯୧୦-୧୯୧୪ ଖ୍ରୀଷ୍ଟାବ୍ଦରେ ସେଠାରେ ପ୍ରବାସୀ ଭାରତୀୟମାନଙ୍କର ଦ୍ୱିତୀୟ ବୃହତ୍ତମ କେନ୍ଦ୍ରଟି ଗଢ଼ି ଉଠିଥିଲା ।

ପ୍ୟାରିସ୍ ଗୋଷ୍ଠୀ ଗଠିତ (ଏହାର ପ୍ରଧାନ ସଦସ୍ୟମାନଙ୍କ ମଧ୍ୟରେ ଥିଲେ ଶ୍ରୀମତୀ ଆର୍. କାମା, ହରଦୟାଲ ଏବଂ ଲଣ୍ଡନରୁ ଆଗତ କୃଷ୍ଣବର୍ମା, ଏସ୍. ରାଭାଭାଇ ରାନା, ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ଭି.ଭି.ଏସ୍. ଆୟାର ପ୍ରମୁଖ) ହେବା ପରେ ଭାରତୀୟ ଜାତୀୟ-ମୁକ୍ତି ଆନ୍ଦୋଳନର ବାମପନ୍ଥୀ ଦଳଗୁଡ଼ିକର ଆନ୍ତର୍ଜାତିକ ସଂଯୋଗର ପରିସର ବହୁଗୁଣ ବୃଦ୍ଧି ପାଇଥିଲା । ଅଥଚ ଇତି ପୂର୍ବରୁ ଏହା ବ୍ରିଟିଶ୍ ଉଦାରନୈତିକ ଓ ଶ୍ରମିକ ଦଳର ସଦସ୍ୟମାନଙ୍କ ମଧ୍ୟରେ ମୂଳତଃ ସୀମିତ ଥିଲା । କାମା, ରାନା, ହରଦୟାଲ ପ୍ରଭୃତି କେବଳ ଫରାସୀ ସମାଜବାଦୀମାନଙ୍କ ସହିତ ନୁହେଁ, ଅନ୍ୟାନ୍ୟ ୟୁରୋପୀୟ ଦେଶ, ବିଶେଷତଃ, ପ୍ରବାସୀ ରୁଷ୍ ବିପ୍ଳବୀମାନଙ୍କ ସହିତ (ସୋସାଲ-ଡେମୋକ୍ରାଟ୍) ଏବଂ ସମାଜବାଦୀ ଆନ୍ତର୍ଜାତିକ ସହିତ ସଂଯୋଗ ସ୍ଥାପନ କରିଥିଲେ । ପ୍ୟାରିସ୍ କେନ୍ଦ୍ରଟି ଭାରତୀୟ ଗୁପ୍ତ ସମିତିଗୁଡ଼ିକ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ ଏବଂ ସେଠାରୁ ପ୍ରକାଶିତ ସେମାନଙ୍କର ପତ୍ରପତ୍ରିକା "ଇଣ୍ଡିଆନ୍ ସୋସିଓଲଜିଷ୍ଟ" (କୃଷ୍ଣବର୍ମାଙ୍କ ଦ୍ୱାରା ସଂପାଦିତ) ଓ "ବନ୍ଦେ ମାତରମ୍" (କାମା ଏବଂ ରାନାଙ୍କ ଦ୍ୱାରା ସଂପାଦିତ) ଭାରତକୁ ପଠାଉଥିଲେ । ପ୍ରଥମ ବିଶ୍ୱ ଯୁଦ୍ଧ ଆରମ୍ଭ ହୋଇଯିବା ପରେ ପ୍ୟାରିସ୍‌ର ଭାରତୀୟ ବିପ୍ଳବୀମାନଙ୍କର କେନ୍ଦ୍ରଟି ଭାଙ୍ଗି ପଡ଼ିଥିଲା : କାମା ଓ ରାନାଙ୍କୁ ଅନ୍ତରୀଣ ବନ୍ଦୀ କରାଯାଇଥିଲା, କୃଷ୍ଣବର୍ମା ସୁଇଜରଲଣ୍ଡରେ ଏବଂ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ବର୍ଲିନ୍‌କୁ ପଳାୟନ କରିଥିଲେ । ସେମାନଙ୍କ ଦ୍ୱାରା ପ୍ରକାଶିତ ପତ୍ରିକାଗୁଡ଼ିକର ପ୍ରକାଶନା ବନ୍ଦ ହୋଇ ଯାଇଥିଲା ।

ୟୁରୋପର ଏହି ସଂଗଠନଗୁଡ଼ିକ ଛଡ଼ା ଏହି ସମୟରେ ଉତ୍ତର ଆମେରିକାରେ—କାନାଡା ଓ

ଆମେରିକା ଯୁକ୍ତ ରାଷ୍ଟ୍ରରେ ଏହି ଜାତୀୟତାବାଦୀ ସଂଗଠନ ଗଢ଼ି ଉଠିଥିଲା । ଏହିସବୁ ଦେଶର କାରଖାନା ଓ ଅଫିସ୍‌ର ସ୍ଥାନୀୟ (ଆମେରିକାନ୍ ଓ କାନାଡିଆନ୍) ସହକର୍ମୀମାନଙ୍କ ସହିତ ସମାନ ସୁବିଧା ସୁଯୋଗ ଲାଭ ପାଇଁ ଦାବି କରି ଆନ୍ଦୋଳନ ମାଧ୍ୟମରେ ପ୍ରବାସୀ ଭାରତୀୟମାନେ ପ୍ରଥମ ସଂଗଠନଗୁଡ଼ିକ (ଯଥା, "ୟୁନାଇଟେଡ୍ ଇଣ୍ଡିଆନ ଲୀଗ୍") ଗଢ଼ିଥିଲେ । କିନ୍ତୁ ସେଠାକୁ ଆସିଥିବା ଭାରତୀୟ ବିପ୍ଳବୀମାନଙ୍କର ପ୍ରଭାବରେ ଅବିଳମ୍ବେ ଏହିସବୁ ସଂଗଠନ ରାଜନୈତିକ ବୈଶିଷ୍ଟ୍ୟ ଲାଭ କରିଥିଲା ।

୧୯୦୬ ଖ୍ରୀଷ୍ଟାବ୍ଦରେ କାନାଡାକୁ ଆସିଥିବା ବଙ୍ଗାଳୀ ବିପ୍ଳବୀ ତାରକନାଥ ଦାସ ବ୍ରିଟିଶ୍ ଔପନିବେଶିକ ସରକାର ବିରୁଦ୍ଧରେ ପ୍ରଚାର କାର୍ଯ୍ୟ ଚଳାଇବାରେ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ୧୯୦୮ ଖ୍ରୀଷ୍ଟାବ୍ଦରେ ତାରକନାଥ ଦାସ ଆମେରିକା ଯୁକ୍ତ ରାଷ୍ଟ୍ରରେ ପହଞ୍ଚି "ଫ୍ରି ହିନ୍ଦୁସ୍ତାନ" ନାମକ ଏକ ସାମୟିକ ପତ୍ରିକା ପ୍ରକାଶ କରିଥିଲେ ତାହା ପ୍ରବାସୀ ଭାରତୀୟମାନଙ୍କ ମଧ୍ୟରେ ଯଥେଷ୍ଟ ଜନପ୍ରିୟ ହୋଇ ଉଠିଥିଲା । ତାରକନାଥ ଦାସଙ୍କର ସାମାଜିକ-ରାଜନୈତିକ ମତବାଦ ଥିଲା ସମାନତାବାଦୀ ଦୃଷ୍ଟିକୋଣରୁ ଆଧୁନିକ ବୁର୍ଜୁଆ ସଭ୍ୟତାର ସମାଲୋଚନା ଦ୍ୱାରା ଅନୁରଞ୍ଜିତ । ଲିଓ ଟଲଷ୍ଟୟଙ୍କ ନିକଟକୁ ଲିଖିତ "ଖୋଲା ଚିଠି" ନାମକ ତାଙ୍କର ବିଖ୍ୟାତ ପ୍ରବନ୍ଧରେ ସେ ସାର୍ବଜନୀନ ମାନବ ଭ୍ରାତୃତ୍ୱ ପ୍ରତି ନିଜ ଆସ୍ଥା ସ୍ଥାପନ କରିବା ସାଥେ ସାଥେ ଯେକୌଣସି ବର୍ଣ୍ଣ, ଜାତି, ସମାଜ ବା ବ୍ୟକ୍ତିବିଶେଷଙ୍କ କର୍ତ୍ତୃକ ଅନ୍ୟମାନଙ୍କୁ ଶୋଷଣ କରିବାର ବିରୋଧିତା କରିଥିଲେ । ତାରକନାଥ ଦାସ ଏହି ପ୍ରଚାର ମାଧ୍ୟମରେ ପ୍ରବାସୀ ଭାରତୀୟ ବିପ୍ଳବୀମାନଙ୍କର ଏକ ବ୍ୟାପକଭିତ୍ତିକ ସଂଗଠନ ପ୍ରତିଷ୍ଠାର ପରିପ୍ରେକ୍ଷିତ ତିଆରି କରିଥିଲେ । ଏହାର ମୂଳ ସଂଗଠକ ଥିଲେ ହରଦୟାଲ ।

୧୯୧୧ ଖ୍ରୀଷ୍ଟାବ୍ଦରେ ସାନ-ଫ୍ରାନ୍‌ସିସ୍‌କୋରେ ପହଞ୍ଚିଲା ପରେ ଅବିଳମ୍ବେ ହରଦୟାଲ ଆମେରିକା ଯୁକ୍ତ ରାଷ୍ଟ୍ରର ପ୍ରବାସୀ ଭାରତୀୟମାନଙ୍କର ମଧ୍ୟରେ ଏକ ବିଶିଷ୍ଟ ବ୍ୟକ୍ତିତ୍ୱ ରୂପେ ପରିଗଣିତ ହୋଇଥିଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ତାଙ୍କ ଉଦ୍ୟୋଗରେ "ଗଦର" ("ବିଦ୍ରୋହ") ନାମକ ଏକ ସଂବାଦପତ୍ର ପ୍ରତିଷ୍ଠିତ ହୋଇଥିଲା । ଏହି ନାମଟି ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ବିଦ୍ରୋହର ସ୍ମୃତି ଉଦ୍ଦେଶ୍ୟରେ ଦିଆଯାଇଥିଲା । ସେଇ ବର୍ଷ ଆମେରିକାର ବିଭିନ୍ନ ପ୍ରବାସୀ ଭାରତୀୟ ସଂପ୍ରଦାୟର ଏକ କଂଗ୍ରେସରେ "ଇଣ୍ଡିଆନ୍ ଆସୋସିଏସନ୍" ନାମକ ଯେଉଁ ସଂସ୍ଥାଟି ଗଠିତ ହୋଇଥିଲା, ତା'ର ମୁଖ୍ୟ ଥିଲେ ହରଦୟାଲ । ଅଚିରେ ଏହି ସଂସ୍ଥାଟିର ନାମ "ଗଦର" ହୋଇଗଲା । ଆମେରିକା, ଜାପାନ୍, ଫିଲିପାଇନ୍‌ସ, ଇଣ୍ଡୋନେସିଆ, ମାଳୟ, ଚୀନ୍, ଆଦି ପ୍ରଶାନ୍ତ ମହାସାଗରୀୟ ବହୁ ଦେଶରେ ଏହାର ଶାଖା ପ୍ରଶାଖା ଜାଲ ଭଳି ମେଲି ଯାଇଥିଲା । ଏହାର ସଦସ୍ୟମାନେ ଭାରତରେ ଅଭ୍ୟୁତ୍ଥାନ ଘଟାଇବା ପାଇଁ ବହୁ ପରିକଳ୍ପନା ତିଆରି କରିବା ସଙ୍ଗେ ସଙ୍ଗେ ସେସବୁକୁ ବାସ୍ତବରେ ପରିଣତ କରିବା ଲକ୍ଷ୍ୟରେ ଦଳର ନେତାମାନଙ୍କ ପରିଚାଳନା ଅନୁଯାୟୀ ଏକ ସୈନ୍ୟ ଦଳ ଗଠନ କରିଥିଲେ । ଏହି ସୈନ୍ୟ ଦଳଟି ପ୍ରବାସୀ ଭାରତୀୟମାନଙ୍କୁ ନେଇ ଗଠିତ ହୋଇଥିଲା ଏବଂ ଏହା ବିପ୍ଳବୀମାନଙ୍କର କୋଷ କେନ୍ଦ୍ର ଥିଲା । ଏହି ଉଦ୍ଦେଶ୍ୟରେ ପ୍ରବାସୀମାନଙ୍କ (ଯେଉଁମାନଙ୍କ ମଧ୍ୟରୁ କେତେକ ଖୁବ୍ ଧନୀ ଥିଲେ) ଠାରୁ ସଂଗୃହୀତ ଅର୍ଥରେ ଅସ୍ତ୍ରଶସ୍ତ୍ର କ୍ରୟ କରାଯାଇଥିଲା । ସାପ୍ତାହିକ ସଂବାଦପତ୍ର "ଗଦର" ଏବଂ ବିଭିନ୍ନ ଭାରତୀୟ ଭାଷାରେ ଆମେରିକା ଯୁକ୍ତ ରାଷ୍ଟ୍ରରେ ଥିବା ଏହି ଦଳର ନେତାମାନଙ୍କ ଦ୍ୱାରା ପ୍ରକାଶିତ ପୁସ୍ତିକାଗୁଡ଼ିକ ଖୋଦ୍ ଭାରତରେ ପ୍ରଚାରିତ ହେବା ଫଳରେ ସେସବୁ

ଜନସାଧାରଣଙ୍କ ମଧ୍ୟରେ ବ୍ରିଟିଶ୍‌ବିରୋଧୀ ମନୋଭାବ ସୃଷ୍ଟି କରିବା ପକ୍ଷରେ ଶକ୍ତିଶାଳୀ ହତିଆର ହୋଇଥିଲା ।

୧୯୧୪ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ପ୍ରଥମ ବିଶ୍ୱ ଯୁଦ୍ଧ ଲାଗିଗଲେ, ଭାରତର ସାମାଜିକ-ରାଜନୈତିକ ଶକ୍ତିଗୁଡ଼ିକ ସହିତ ପେଟି-ବୁର୍ଜୁଆ ବିପ୍ଳବୀମାନଙ୍କର ଦୃଷ୍ଟିଭଙ୍ଗିକୁ ଏହା ପ୍ରଭାବିତ କରିଥିଲା ।

## ଯୁଦ୍ଧକାଳୀନ ଭାରତୀୟ ପୁଞ୍ଜି

୧୯୧୩-୧୯୧୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅନେକ ଭାରତୀୟ ବ୍ୟାଙ୍କ୍ ଦେଉଳିଆ ହୋଇ ପଡ଼ିଥିଲେ । ଫଳରେ ଉତ୍ପାଦନ ଏବଂ ପଣ୍ୟ ସଞ୍ଚାଳନ କ୍ଷେତ୍ରରେ ଭାରତୀୟ ମାଲିକାନାଧୀନ ଅନେକ ଉଦ୍ୟୋଗ ମାରାତ୍ମକ ଭାବେ କ୍ଷତିଗ୍ରସ୍ତ ହୋଇଥିଲେ । ମୂଳତଃ ଭାରତୀୟ ଅର୍ଥନୀତିର ଔପନିବେଶିକ ଚରିତ୍ର୍ୟର ଫଳ ହିସାବରେ ଏବଂ ସରକାର ନିକଟରୁ ଓ ଭାରତରେ ପ୍ରତିଷ୍ଠିତ ଶକ୍ତିଶାଳୀ ବ୍ରିଟିଶ୍ ବ୍ୟାଙ୍କ୍‌ଗୁଡ଼ିକରୁ ଭାରତୀୟ ବ୍ୟାଙ୍କ୍-ପୁଞ୍ଜି କୌଣସି ସହାୟତା ନପାଇବା ହେତୁ ଏପରି ଘଟିଥିଲା ।

ଯୁଦ୍ଧ ବର୍ଷଗୁଡ଼ିକରେ ଭାରତରେ ଔପନିବେଶିକ ଶୋଷଣ ଆଉରି ତୀବ୍ରତର ହୋଇ ଉଠିଥିଲା । ପ୍ରଚୁର ପରିମାଣର ଖାଦ୍ୟ, କୃଷିଜାତ ଓ ଶିଳ୍ପଲଗ୍ନ କଞ୍ଚାମାଲ, ଖଣି, ଧାତୁ ଶିଳ୍ପ ଉତ୍ପନ୍ନର ଏକ ବଡ଼ ଅଂଶ ରପ୍ତାନି କରିବା ଫଳରେ ଆଭ୍ୟନ୍ତରୀଣ ଉତ୍ପାଦନ ବୃଦ୍ଧି କରିବା କଠିନ ହୋଇ ପଡ଼ିଲା । ବ୍ରିଟିଶ୍ ରାଜକୋଷ ସାଧାରଣ ଭାରତୀୟ କରଦାତାମାନଙ୍କ ଉପରେ ଋଣ ସୃଷ୍ଟି ମାଧ୍ୟମରେ ବିପୁଳ ଯୁଦ୍ଧ ଖର୍ଚ୍ଚକୁ କମେଇବା ପାଇଁ ଚେଷ୍ଟା କରିଥିଲା । ଏହି ନୀତି ଫଳରେ କେବଳ ଜନସାଧାରଣ ନୁହନ୍ତି, ଭାରତୀୟ ଧନିକ ସଂପ୍ରଦାୟ ମଧ୍ୟ କ୍ଷତିଗ୍ରସ୍ତ ହୋଇଥିଲେ । ଔପନିବେଶିକ ସରକାର ଏବଂ ବ୍ରିଟିଶ୍ ବ୍ୟବସାୟୀମାନଙ୍କର ଅର୍ଥ ଓ ମୁଦ୍ରା ବ୍ୟବସ୍ଥା ଫଳରେ ମୁଦ୍ରାସ୍ଫୀତି ଦେଖା ଦେଲା (୧୯୧୪-୧୯୧୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରଚଳିତ କାଗଜ ମୁଦ୍ରାର ପରିମାଣ ପ୍ରାୟ ତିନି ଗୁଣ ହୋଇଯାଇଥିଲା) ଏବଂ ରୂପାର ଦାମ୍ ଯଥେଷ୍ଟ ବୃଦ୍ଧି ପାଇଥିଲା । ଭାରତର ବୈଦେଶିକ ବାଣିଜ୍ୟରେ ବିଘ୍ନ ଘଟିବା ଫଳରେ ଦେଶର ଆମଦାନି ଓ ରପ୍ତାନି ମାରାତ୍ମକ ଭାବେ କମି ଯାଇଥିଲା । ଏହିସବୁ ଦେଶର ଅର୍ଥନୈତିକ ଅବସ୍ଥାରେ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଥିଲା ।

ଅର୍ଥ ଓ ବୈଦେଶିକ ବାଣିଜ୍ୟ ଉପରେ ରାଷ୍ଟ୍ରର କଠୋରତର ନିୟନ୍ତ୍ରଣ ଓ ଶାସନ, ଭାରତୀୟ ସଂସ୍ଥାଗୁଡ଼ିକ ନିକଟରେ ବଡ଼ ବଡ଼ ସାମରିକ ବରାଦ ଏବଂ ସରକାର କର୍ତ୍ତୃକ ଦେଶୀୟ ବଜାର ବ୍ୟାପକ କ୍ରୟ ସେତେବେଳେ ଭାରତର ଅର୍ଥନୀତିରେ ରାଷ୍ଟ୍ରୀୟ ପୁଞ୍ଜିବାଦର ଉନ୍ମେଷରେ ସାହାଯ୍ୟ କରିଥିଲା । ଔପନିବେଶିକ ସରକାରର ଅନୁସୃତ ଅର୍ଥନୀତିଜାତ ବର୍ଦ୍ଧମାନ ବିଧି ନିଷେଧ ଫଳରେ ସ୍ଥାନୀୟ ସଂସ୍ଥାଗୁଡ଼ିକର ଭାରତୀୟ ମାଲିକମାନଙ୍କ କାର୍ଯ୍ୟକଳାପ କ୍ଷେତ୍ରରେ ଯଥେଷ୍ଟ ବାଧା ସୃଷ୍ଟି ହୋଇଥିଲା ।

ଏଥି ସଙ୍ଗେ ସଙ୍ଗେ ସୃଷ୍ଟି ହୋଇଥିଲା ସ୍ଥାନୀୟ ବୁର୍ଜୁଆମାନଙ୍କର ସଂପଦ ବୃଦ୍ଧିର ଅନୁକୂଳ ପରିସ୍ଥିତି । ବ୍ରିଟିଶ୍ ସଂସ୍ଥା ଓ ବିଭାଗଗୁଡ଼ିକ ଦ୍ୱାରା ଭାରତରୁ କ୍ରୀତ ପଣ୍ୟ-ସାମଗ୍ରୀର ଏକ ବଡ଼ ଅଂଶ ଭାରତୀୟ ଶିଳ୍ପପତିମାନଙ୍କର କାରଖାନାଗୁଡ଼ିକ ତିଆରି କରିଥିଲେ । ଏହି ସମୟରେ ଭାରତରେ ରେଜେଷ୍ଟ୍ରୀକୃତ ଜଏଣ୍ଟ-ଷ୍ଟକ୍ କଂପାନିର ସଂଖ୍ୟା ଓ ସେଗୁଡ଼ିକର ମୋଟ ପୁଞ୍ଜି ଯଥାକ୍ରମେ ୧୦ ଓ

ପ୍ରାୟ ୩୦ ଶତାଂଶ ବୃଦ୍ଧି ପାଇଥିଲା । ଆମଦାନିକୃତ ଓ ହସ୍ତନିର୍ମିତ କପଡ଼ାର ପରିମାଣ ସେତେବେଳେ କମୁଥିଲା, ଭାରତୀୟ ମିଲ ବସ୍ତ୍ର ଓ ଦେଶରେ ଏସବୁର ବ୍ୟବହାର ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ଏହା ୧୯୧୭ ଖ୍ରୀଷ୍ଟାବ୍ଦରେ ଏକ ତୃତୀୟାଂଶରେ ପହଞ୍ଚିଥିଲା । ଯୁଦ୍ଧ ବର୍ଷଗୁଡ଼ିକରେ ଭାରତୀୟ କାରଖାନା-ମାଲିକମାନଙ୍କର ମୁନାଫାର ହାର ଓ ପରିମାଣରେ ଯଥେଷ୍ଟ ବୃଦ୍ଧି ଦେଖା ଦେଇଥିଲା ।

ଜନସାଧାରଣଙ୍କ ବୃହତ୍ତମ ଅଂଶର ବର୍ଦ୍ଧମାନ ଦାରିଦ୍ର୍ୟ ଏବଂ ମୌଳିକ ଯନ୍ତ୍ରପାତି ଆମଦାନିର ସୁଯୋଗର ଅଭାବରୁ ଆଭ୍ୟନ୍ତରୀଣ ବଜାର ସଂକୋଚନ ଫଳରେ ବହୁ ଅର୍ଥନୈତିକ ସମସ୍ୟା ସୃଷ୍ଟି ହୋଇଥିଲା । ଏଭଳି ଅବସ୍ଥାରେ ଭାରତୀୟ ଶିଳ୍ପ ପୁଞ୍ଜିପତିମାନଙ୍କର ବିଭିନ୍ନ ଦଳ ଏବଂ ବଣିକ ଓ ମହାଜନମାନଙ୍କ ଦ୍ୱାରା ସଞ୍ଚିତ ଅର୍ଥର ଲଗ୍ନି ପାଇଁ ସେପରି କୌଣସି ସୁଯୋଗ ନଥିଲା ।

ଏହିସବୁ ଜାତୀୟ ବୁର୍ଜୁଆମାନଙ୍କ ଦ୍ୱାରା ଗୃହୀତ ରାଜନୈତିକ ପଦକ୍ଷେପକୁ ପ୍ରଭାବିତ କରିଥିଲା । ବ୍ରିଟିଶ୍ ସାମରିକ ଉଦ୍ୟୋଗ ପ୍ରତି ସାର୍ବିକ ସମର୍ଥନ ସତ୍ତ୍ୱେ ଏମାନଙ୍କର ବ୍ୟାପକ ଅଂଶ ମଧ୍ୟରେ ଔପନିବେଶିକ ସରକାର ପ୍ରତି ଅସନ୍ତୋଷ ବୃଦ୍ଧି ପାଇଥିଲା । ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ (ପ୍ରଧାନ ଜାତୀୟ ସଂଗଠନ) ଉଭୟ ସଂଗଠନ ମଧ୍ୟରେ ଏହି ମନୋଭାବ ସ୍ପଷ୍ଟ ହୋଇ ଉଠୁଥିଲା ।

## ପ୍ରଥମ ମହାଯୁଦ୍ଧର ପ୍ରାକ୍‌କାଳୀନ ଓ ଯୁଦ୍ଧ କାଳୀନ ବର୍ଷମାନଙ୍କରେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ।

### ହୋମ୍ ରୁଲ୍ ଆନ୍ଦୋଳନ

ଚରମପନ୍ଥୀମାନେ ନିଜସ୍ୱ ସଂଗଠନ ଗଢ଼ି ତୋଳି ନଥିବାରୁ ଗଣ ଆନ୍ଦୋଳନରେ ଭଟା ଦେଖା ଦେଲା ପରେ ସେମାନେ ପ୍ରାୟ ଛିନ୍ନଛତ୍ର ହୋଇ ପଡ଼ିଥିଲେ । ତିଳକଙ୍କ ଭଳି କେତେକ ନେତା ସେତେବେଳେ ଜେଲରେ ରହିଥିଲେ ଏବଂ ଅରବିନ୍ଦ ଘୋଷ୍‌ଙ୍କ ଭଳି ଅନ୍ୟାନ୍ୟ ନେତୃବୃନ୍ଦ ଇତିମଧ୍ୟରେ ରାଜନୈତିକ ସଂଗ୍ରାମ ପରିତ୍ୟାଗ କରିଥିଲେ । ବିପିନଚନ୍ଦ୍ର ପାଲ ଏବଂ ତାଙ୍କ ଅନୁଗାମୀ ତୃତୀୟ ଦଳଟି ସେତେବେଳକୁ ମଧ୍ୟପନ୍ଥୀ ହୋଇ ଉଠିଥିଲେ । ଏହି ସମୟରେ ଗୁପ୍ତ ସମିତିଗୁଡ଼ିକ ଅଧିକତର ସକ୍ରିୟ ହୋଇ ଉଠିବା ଫଳରେ ମଧ୍ୟପନ୍ଥୀ ପରିଚାଳିତ କଂଗ୍ରେସ ନେତାମାନେ ଔପନିବେଶିକ ବ୍ରିଟିଶ୍ ସରକାର ପ୍ରତି ସେମାନଙ୍କ ଆନୁଗତ୍ୟ ଘୋଷଣା କରିବାକୁ ବ୍ୟଗ୍ର ହୋଇ ପଡ଼ିଥିଲେ । ୧୯୧୨ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ଦ୍ୱାରା ଗୃହୀତ ସନନ୍ଦରେ ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟରେ "ସାଂବିଧାନିକ ଉପାୟରେ" ଭାରତର ସ୍ୱାୟତ୍ତଶାସନ ଲାଭକୁ ଜାତୀୟ ଆନ୍ଦୋଳନର ଲକ୍ଷ୍ୟ ବୋଲି ଘୋଷଣା କରାଗଲା । କଂଗ୍ରେସର ବାର୍ଷିକ ଅଧିବେଶନଗୁଡ଼ିକରେ ପ୍ରତିନିଧି ନିର୍ବାଚନର କୌଶଳ ପାଇଁ ବାମପନ୍ଥୀ ଜାତୀୟତାବାଦୀମାନଙ୍କର ନେତୃପଦକୁ ନିର୍ବାଚନ ଅସମ୍ଭବ ହୋଇ ପଡ଼ିଥିଲା । କିନ୍ତୁ ଅବିଳମ୍ବେ ଚରମପନ୍ଥୀ ଓ ମଧ୍ୟପନ୍ଥୀ ସାଧାରଣ କର୍ମୀମାନଙ୍କ ମଧ୍ୟରେ ପୁନର୍ବାର ବୁଝାମଣା ପ୍ରତିଷ୍ଠାର ଲକ୍ଷଣ ଦେଖା ଦେଇଥିଲା ।

୧୯୧୪ ଖ୍ରୀଷ୍ଟାବ୍ଦରେ ଜେଲ ମିଆଦ ଶେଷ ହେଲା ପରେ ତିଳକ ଜେଲରୁ ମୁକ୍ତି ଲାଭ କଲେ । ରାଜନୈତିକ ମଞ୍ଚରେ ତାଙ୍କର ପୁନରାବିର୍ଭାବ ଫଳରେ ସୃଷ୍ଟ ବ୍ୟାପକ ଉଦ୍ଦୀପନା ପ୍ରକୃତରେ

ଜାତୀୟତାବାଦୀମାନଙ୍କ ନିକଟରେ ତିଳକଙ୍କ ଅକ୍ଷୟ ଜନପ୍ରିୟତାକୁ ପ୍ରକଟିତ କରିଥିଲା । କର୍ତ୍ତୃପକ୍ଷଙ୍କର କେତେକ ଗ୍ରଘରେ ଏବଂ କେତେକ କୌଶଳଗତ କାରଣରୁ ତିଳକ ଭାରତରେ ବ୍ରିଟିଶ୍ ଶାସନ ପ୍ରତି ଆନୁଗତ୍ୟ ଘୋଷଣା କରିବା ସଙ୍ଗେ ସଙ୍ଗେ ସନ୍ତ୍ରାସମୂଳକ କାର୍ଯ୍ୟକଳାପର ନିନ୍ଦା କରିଥିଲେ । ବର୍ଜନ କର୍ମ କୌଶଳକୁ ଗଣ ଆନ୍ଦୋଳନ ଭିତ୍ତିକ ରାଜନୈତିକ ବିକ୍ଷୋଭରେ ରୂପାନ୍ତରଣ କରିବା ଏହା ପରେ ତିଳକଙ୍କ ଅନୁସୃତ ପଥର ମୂଳ ଲକ୍ଷ୍ୟ ହୋଇ ଉଠିଥିଲା ଏବଂ ଫଳରେ ଭାରତର ରାଜନୈତିକ ମଞ୍ଚରେ ଚରମପନ୍ଥୀମାନେ ପୁନଃପ୍ରତିଷ୍ଠିତ ହୋଇଥିଲେ । ତିଳକ ଏବଂ ତାଙ୍କ ଅନୁଗାମୀମାନେ "ହୋମ୍ ରୁଲ୍", ଅର୍ଥାତ୍, "ଇଣ୍ଡିଆନ ଥିଓସଫିକାଲ ସୋସାଇଟିର" ନେତ୍ରୀ ଆନି ବେସାନ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱାୟତ୍ତ ଶାସନ ଆନ୍ଦୋଳନକୁ ସେମାନଙ୍କ କର୍ମସୂଚୀ ରୂପେ ବାଛି ନେଇଥିଲେ । ୧୯୧୬ ଖ୍ରୀଷ୍ଟାବ୍ଦରେ ତିଳକ ପୁନାରେ "ହୋମ୍ ରୁଲ୍ ଲୀଗ୍" ପ୍ରତିଷ୍ଠା କରି ତାଙ୍କ ଅନୁଗାମୀମାନଙ୍କୁ ଏକ ସଂଗଠନ ମଧ୍ୟରେ ଏକତ୍ରିତ କରିଥିଲେ । ବର୍ଷକ ମଧ୍ୟରେ କର୍ମୀମାନେ ଭାରତର ବିଭିନ୍ନ ଅଞ୍ଚଳରେ ଏହି ଲୀଗ୍‌ର ବହୁ ଶାଖା ଗଠନ କରିଥିଲେ ଏବଂ ଶରତ କାଳରେ ଆନି ବେସାନ୍ତଙ୍କ ନେତୃତ୍ୱରେ ମାଡ୍ରାଜରେ "ନିଖିଳ ଭାରତ ହୋମ୍ ରୁଲ୍ ଲୀଗ୍" ପ୍ରତିଷ୍ଠିତ ହୋଇଥିଲା ।

ଜନସାଧାରଣଙ୍କ ମଧ୍ୟରେ ବ୍ୟାପକ ପ୍ରଚାରାଭିଯାନ ଚଳାଇବା କ୍ଷେତ୍ରରେ ଏହି ସାଫଲ୍ୟ ହେତୁ ଜାତୀୟ ଆନ୍ଦୋଳନ ମଧ୍ୟରେ ତିଳକଙ୍କ ଅବସ୍ଥାନ ମଜବୁତ୍ ହୋଇ ଉଠିଥିଲା । ଏଥି ସଙ୍ଗେ ସଙ୍ଗେ, ଏକ ଦିଗରେ, ତାଙ୍କ ନମନୀୟ ରାଜନୈତିକ ଦୃଷ୍ଟିଭଙ୍ଗୀ ଓ ଅନ୍ୟ ଦିଗରେ ଜାତୀୟ କଂଗ୍ରେସ ମଧ୍ୟରେ ବିରୋଧ ବୃଦ୍ଧି ଫଳରେ ତିଳକ ଓ ଗୋଖଲେ ଏବଂ ମେହ୍‌ତାଙ୍କ ନେତୃତ୍ୱାଧୀନ କଂଗ୍ରେସର ନେତାମାନଙ୍କ ମଧ୍ୟରେ ବୁଝାମଣାର ପଥ ପ୍ରଶସ୍ତ ହୋଇଥିଲା । ୧୯୧୫-୧୯୧୬ ଖ୍ରୀଷ୍ଟାବ୍ଦର ଆଳାପ ଆଲୋଚନା ଫଳରେ ୧୯୧୨ ଖ୍ରୀଷ୍ଟାବ୍ଦରେ ଗୃହୀତ କଂଗ୍ରେସ ସଂବିଧାନର ନିଷେଧାଜ୍ଞାଟି ପ୍ରତ୍ୟାହାର କରାଗଲା ଏବଂ ଫଳରେ ୧୯୧୬ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ନୌରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ତିଳକଙ୍କ ନେତୃତ୍ୱରେ ଚରମପନ୍ଥୀମାନେ ମଧ୍ୟ ଯୋଗ ଦେଇଥିଲେ । ଏହି ଅଧିବେଶନରେ "ହୋମ୍ ରୁଲ୍ ଲୀଗ୍‌ର" କାର୍ଯ୍ୟକଳାପ ପ୍ରତି କଂଗ୍ରେସ ଅନୁମୋଦନ ପ୍ରଦାନ କରିଥିଲା ।

"ହୋମ୍ ରୁଲ୍ ଲୀଗ୍" ଏହା ପରେ ଚରମପନ୍ଥୀମାନଙ୍କ ସାଂଗଠନିକ କାର୍ଯ୍ୟର ଭିତ୍ତି ତିଆରି କଲା ଏବଂ ଖୋଦ୍ ଆନ୍ଦୋଳନ ଜନସାଧାରଣଙ୍କର ବ୍ୟାପକ ସ୍ତରକୁ, ବିଶେଷତଃ ମଧ୍ୟବିତ୍ତମାନଙ୍କୁ, ଏହି ସ୍ୱାୟତ୍ତଶାସନ ଲାଭର ସଂଗ୍ରାମରେ ଜଡ଼ିତ କରିବାର ଉପାୟରେ ପରିଣତ ହେଲା ।

ଆଇନସମ୍ମତ କାର୍ଯ୍ୟକଳାପରେ ରତ ଜାତୀୟ ଆନ୍ଦୋଳନର ପ୍ରଧାନ ଶକ୍ତିଗୁଡ଼ିକର ଐକ୍ୟ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ସ୍ପଷ୍ଟ ହୋଇ ଉଠିଥିଲା । ଏଥିରେ କଂଗ୍ରେସର ଦୁଇ ଦଳ ମଧ୍ୟରେ ଘନିଷ୍ଠତା ଦେଖା ଦେବା ସଙ୍ଗେ ସଙ୍ଗେ ନୂତନ ନେତୃତ୍ୱାଧୀନ ମୁସଲିମ୍ ଲୀଗ୍ ସହିତ ଏକ ଚୁକ୍ତିରେ ପହଞ୍ଚିବା ସମ୍ଭବ ହୋଇଥିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମୁସଲମାନ ସଂପ୍ରଦାୟର ଆନ୍ଦୋଳନ ମଧ୍ୟରେ ଏକ ନୂତନ ଗଣତାନ୍ତ୍ରିକ ପ୍ରବଣତା ଦେଖା ଦେଇଥିଲା । ମୁସଲିମ୍ ପେଟି-ବୁର୍ଜୁଆ ଓ ବୁଦ୍ଧିଜୀବୀମାନେ ରାଜନୀତିରେ ନୂଆ କରି ଯୋଗ ଦେବା ଦ୍ୱାରା ଏହା ଆରମ୍ଭ ହୋଇଥିଲା । ଏହି ନୂତନ ପ୍ରବଣତାର ତାତ୍ତ୍ୱିକମାନଙ୍କ ମଧ୍ୟରେ ନୋମାନି ଶିବ୍‌ଲୀ, ଆବୁଲ କାଲାମ ଆଜାଦ୍, ମହମ୍ମଦ୍ ଅଲୀ ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ସେମାନଙ୍କ ବକ୍ତୃତା ଓ ରଚନାବଳୀ ମଧ୍ୟରେ ଭାରତର ଶିକ୍ଷିତ ମୁସଲମାନ

ଯୁବକମାନେ ସମକାଳୀନ ରାଜନୈତିକ ସମସ୍ୟା ସହିତ ପରିଚିତ ହେଲେ ଏବଂ ଦେଶର ଜାତୀୟ ସାମାଜିକ ସଂଗଠନଗୁଡ଼ିକ ସହିତ ସେମାନଙ୍କର ଘନିଷ୍ଠତା ବୃଦ୍ଧି ପାଇଲା ।

ଆଜାଦ୍‌ଙ୍କ ଦ୍ୱାରା ପ୍ରକାଶିତ "ଆଲ୍-ହିଲାଲରେ", ମହମ୍ମଦ୍ ଅଲୀଙ୍କ ଦ୍ୱାରା ପ୍ରକାଶିତ "କମ୍ରେଡ୍" ଓ ଜାଫର ଅଲୀ ଖାଁଙ୍କ ଦ୍ୱାରା ପ୍ରକାଶିତ "ଜମିଦାର" ସଂବାଦପତ୍ରଗୁଡ଼ିକ ନରମପନ୍ଥୀ ଧରଣର ହେଲେ ମଧ୍ୟ ଔପନିବେଶିକ ସରକାରର ସମାଲୋଚନା କରୁଥିଲେ । ୧୯୦୫-୧୯୦୮ ଖ୍ରୀଷ୍ଟାବ୍ଦର ବୈପ୍ଳବିକ ଘଟଣାବଳୀରେ ଆବୁଲ କାଲମ୍ ଆଜାଦ୍‌ଙ୍କ ଭୂମିକା ତାଙ୍କୁ ମୁସଲିମ୍ ମଧ୍ୟବିତ୍ତମାନଙ୍କ ମଧ୍ୟରେ ଆଉରି ଜନପ୍ରିୟ କରି ତୋଳିଥିଲା । ଆଜାଦ୍, ମହମ୍ମଦ୍ ଓ ସଓକତ୍ ଅଲୀ ଭ୍ରାତୃଦ୍ୱୟ ଏବଂ ଅନ୍ୟମାନଙ୍କ ନେତୃତ୍ୱରେ ସଂହତ ମୁସଲିମ୍ ଲୀଗ୍‌ର ବାମପନ୍ଥୀମାନେ ସଂଗଠନର ରାଜନୈତିକ ଲକ୍ଷ୍ୟ ପରିବର୍ତ୍ତନ ପାଇଁ ପ୍ରୟାସ ଆରମ୍ଭ କରିଥିଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ଏହାର ସନନ୍ଦ ସଂଶୋଧିତ ହୋଇଥିଲା । ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟରେ ସ୍ୱାୟତ୍ତଶାସନ ଲାଭ କରିବା ଏହି ସଂଗଠନର ଘୋଷିତ ନୀତି ହୋଇ ଉଠିଥିଲା । ଏହା ଯେତେବେଳେ ମୂଳତଃ ସାଂପ୍ରଦାୟିକ ହେଲେ ମଧ୍ୟ ଅନ୍ୟାନ୍ୟ ଜାତୀୟ ସଂଗଠନଗୁଡ଼ିକ ସହିତ ସହଯୋଗିତା ବିସ୍ତାରର ଅପରିହାର୍ଯ୍ୟତା କଥା ଏଥିରେ ଉଲ୍ଲେଖ କରାଯାଇଥିଲା ।

୧୯୧୫ ଖ୍ରୀଷ୍ଟାବ୍ଦରେ ଆଜାଦ୍ ଓ ଅନ୍ୟାନ୍ୟ ବାମପନ୍ଥୀମାନଙ୍କ ଦ୍ୱାରା ସମର୍ଥିତ ମହମ୍ମଦ୍ ଅଲୀ ଜିନ୍ନାଙ୍କୁ ସଭାପତି ରୂପେ ନିର୍ବାଚନ କରିବା ଫଳରେ ଲୀଗ୍ ମଧ୍ୟରେ ବାମପନ୍ଥୀମାନଙ୍କର ଶକ୍ତି ବୃଦ୍ଧି ଘଟିଥିଲା ।

ଏହି ପରିବର୍ତ୍ତନ ଫଳରେ ଲୀଗ୍ ଓ କଂଗ୍ରେସ୍ ମଧ୍ୟରେ ସ୍ୱାୟତ୍ତଶାସନ ଲାଭ ପାଇଁ ଐକ୍ୟବଦ୍ଧ ସଂଗ୍ରାମ ନିମିତ୍ତ ଏକ ଆନୁଷ୍ଠାନିକ ଚୁକ୍ତି ସଂପାଦନର ଅନୁକୂଳ ପରିସ୍ଥିତି ସୃଷ୍ଟ ହେଲା । ଏହି ଚୁକ୍ତି ଥିଲା ସମସ୍ତ ସାମ୍ରାଜ୍ୟବାଦବିରୋଧୀ ଶକ୍ତିର ଐକ୍ୟ ଦିଗରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସୂଚକ ଭଳି । ଲକ୍ଷ୍ନୌ ଚୁକ୍ତି ଅନୁଯାୟୀ ନିର୍ବାଚିତ ବିଧାନ ପରିଷଦଗୁଡ଼ିକରେ ଲୀଗ୍‌କୁ ମୁସଲମାନ ସଂପ୍ରଦାୟର ପ୍ରତିନିଧିତ୍ୱର (ଯେଉଁମାନେ କେବଳ ବିଶେଷ ନିର୍ବାଚକ ମଣ୍ଡଳୀ ଦ୍ୱାରା ନିର୍ବାଚିତ ହେବେ) ଏକଚାଟିଆ ଅଧିକାର ଦିଆଗଲା । ସାଂପ୍ରଦାୟିକ ପ୍ରତିନିଧିତ୍ୱର ଏହି ନୀତି ସହିତ କଂଗ୍ରେସ ନେତୃବୃନ୍ଦଙ୍କର ଆପୋଷ ହିନ୍ଦୁ-ମୁସଲମାନଙ୍କୁ ପରସ୍ପର ଠାରୁ ବିଚ୍ଛିନ୍ନ କରି ରଖିଥିବା ବ୍ରିଟିଶ୍ ନୀତିକୁ ଅବ୍ୟାହତ ରଖିବା ପାଇଁ ଏକ ଭିତ୍ତି ଯୋଗାଇ ଦେଇଥିଲା । କଂଗ୍ରେସ ଓ ଲୀଗ୍ ମଧ୍ୟରେ (ଲକ୍ଷ୍ନୌରେ ମୁସଲିମ୍ ଲୀଗ୍‌ର ଏକ ସଭା ଅନୁଷ୍ଠିତ ହୋଇଥିଲା) ସ୍ୱାକ୍ଷରିତ ଏହି ଚୁକ୍ତିକୁ, ଅବଶ୍ୟ, ବ୍ୟାପକ ଭାରତୀୟ ଜନସାଧାରଣ ଦେଶର ସ୍ୱାଧୀନତା ଲାଭର ସଂଗ୍ରାମରେ ହିନ୍ଦୁ-ମୁସଲିମ୍ ଐକ୍ୟର ଲକ୍ଷଣ ହିସାବରେ ଦେଖିଥିଲେ ।

## ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ରାଜନୈତିକ କାର୍ଯ୍ୟକଳାପର ପ୍ରାରମ୍ଭିକ ପର୍ଯ୍ୟାୟ

ଜାତୀୟ ମୁକ୍ତି ଆନ୍ଦୋଳନର ଭାବୀ ନେତା ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ (୧୮୬୯-୧୯୪୮) ଆବିର୍ଭାବ ତତ୍କାଳୀନ ସାମାଜିକ-ରାଜନୈତିକ ପରିସ୍ଥିତି ପକ୍ଷରେ ଏକ ସ୍ମରଣୀୟ ଘଟଣା । ସେ ୧୯୧୪ ମସିହାରେ ସ୍ୱଦେଶକୁ ଫେରି ଆସିଥିଲେ । ଗୁଜରାଟର ଏକ ସମୃଦ୍ଧ ବଣିକ ପରିବାରରେ ଗାନ୍ଧୀଙ୍କର ଜନ୍ମ । ତାଙ୍କ ପୂର୍ବପୁରୁଷମାନେ ଗୁଜରାଟର ଏକ ଛୋଟ ଦେଶୀୟ ରାଜ୍ୟର କର୍ମଚାରୀ

ଥିଲେ । ବ୍ରିଟେନ୍‌ର ଏକ ବିଶ୍ୱବିଦ୍ୟାଳୟରୁ ସ୍ନାତକ ହେଲା ପରେ ଗାନ୍ଧୀ ଆଇନ୍ ବ୍ୟବସାୟ ୧୯୦୩-୧୯୧୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦକ୍ଷିଣ ଆଫ୍ରିକାରେ କରିଥିଲେ । ସେଇଠି ତାଙ୍କ ରାଜନୈତିକ କାର୍ଯ୍ୟକଳାପର ଶୁଭାରମ୍ଭ ଘଟିଥିଲା । ଦକ୍ଷିଣ ଆଫ୍ରିକାରେ ନିଷ୍ଠୁର ବର୍ଣ୍ଣବୈଷମ୍ୟର ଶିକାର ପାଲଟିଥିବା ପ୍ରବାସୀ ଭାରତୀୟମାନଙ୍କର (ସେମାନଙ୍କ ସଂଖ୍ୟା ଲକ୍ଷାଧିକ ଥିଲା) ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ସେ ସଂଗ୍ରାମ ଆରମ୍ଭ କରିଥିଲେ । ଦକ୍ଷିଣ ଆଫ୍ରିକାରେ ବାସ କରିବାର ସେଇସବୁ ବର୍ଷଗୁଡ଼ିକରେ ଗାନ୍ଧୀଙ୍କର ଦାର୍ଶନିକ ଓ ସାମାଜିକ-ରାଜନୈତିକ ଭାବାଦର୍ଶଗୁଡ଼ିକ ମୋଟାମୋଟି ଭାବେ ରୂପ ଲଭ କରିଥିଲା । ଏ କ୍ଷେତ୍ରରେ ସ୍ମରଣ ରଖିବାର କଥା ଯେ, ପରବର୍ତ୍ତୀ କାଳରେ ଏହାକୁ ଭିତ୍ତି କରି ବ୍ରିଟିଶ୍ ଔପନିବେଶିକ ଶାସନ ବିରୁଦ୍ଧରେ ତାଙ୍କ ସଂଗ୍ରାମର କୌଶଳଟି ନିର୍ଦ୍ଧାରିତ ହୋଇଥିଲା । ସେଠାରେ ସେ ଅହିଂସ ପ୍ରତିରୋଧ ବା ସତ୍ୟାଗ୍ରହର ନୀତିଗୁଡ଼ିକୁ ପ୍ରୟୋଗ କରିବାକୁ ଉଦ୍ୟମ କରିଥିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆର ସାମାଜିକ ଓ ରାଜନୈତିକ ଘଟଣାବଳୀର ପ୍ରଭାବରେ ମୂଳତଃ ଏହାର ଉଦ୍‌ଭବ ହୋଇଥିଲା । ରୁଷିଆର ବିପ୍ଳବରୁ ଏବଂ ବିଶେଷ କରି ଦେଶବ୍ୟାପୀ ସଂଘଟିତ ରାଜନୈତିକ ଧର୍ମଘଟରୁ ଲାଭ କରିଥିବା ଅଭିଜ୍ଞତା ଦ୍ୱାରା ଗାନ୍ଧୀ ରାଜନୈତିକ ପ୍ରତିପକ୍ଷ ଉପରେ ଚାପ ସୃଷ୍ଟି କରିବାର ଉପାୟ ହିସାବରେ ସଂଗଠିତ ଗଣ ଆନ୍ଦୋଳନର ପ୍ରୟୋଜନୀୟତା ସଂପର୍କରେ ନିଶ୍ଚିତ ହୋଇଥିଲେ । ରୁଷିଆରେ ୧୯୦୫ ଖ୍ରୀଷ୍ଟାବ୍ଦର ଘଟଣାବଳୀର ମୂଲ୍ୟାୟନ ସମୟରେ ଗାନ୍ଧୀ ଲେଖିଥିଲେ, ସବୁଠାରୁ କ୍ଷମତାଶାଳୀ ଶାସକ ମଧ୍ୟ ଶାସିତମାନଙ୍କ ସାହାଯ୍ୟ ବ୍ୟତୀତ ଶାସନ କାର୍ଯ୍ୟ ଚଳାଇ ପାରୁ ନାହାନ୍ତି । ଅହିଂସା ସଂପର୍କରେ ଟଲଷ୍ଟୟଙ୍କ ଲେଖା ଗାନ୍ଧୀଙ୍କ ଅହିଂସା ସଂଗ୍ରାମକୁ ଅନୁପ୍ରାଣିତ କରିଥିଲା । ୧୯୦୮ ଖ୍ରୀଷ୍ଟାବ୍ଦରେ ସେ ପ୍ରଥମ ଅସହଯୋଗ ଆନ୍ଦୋଳନ, ଅର୍ଥାତ୍, ସଂଗଠିତ ଭାବେ ଦକ୍ଷିଣ ଆଫ୍ରିକା ସରକାରର ଅନୁସୃତ ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ ।

ପ୍ରତ୍ୟେକଟି ପ୍ରଚାରାଭିଯାନ ଆରମ୍ଭ କରିବା ପୂର୍ବରୁ ଗାନ୍ଧୀ କର୍ତ୍ତୃପକ୍ଷଙ୍କ ସହିତ ଆଲାପ ଆଲୋଚନା କରୁଥିଲେ । ଏପରିକି, ସତ୍ୟାଗ୍ରହ ଚାଲିଥିବା ବେଳେ ସେ କର୍ତ୍ତୃପକ୍ଷଙ୍କ ସହିତ ବୁଝାମଣାରେ ପହଞ୍ଚିବା ପାଇଁ ମଧ୍ୟ ଉଦ୍ୟମ କରୁଥିଲେ । ନିଜ କାର୍ଯ୍ୟର ଅହିଂସ, ଶାନ୍ତିପୂର୍ଣ୍ଣ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଆକର୍ଷଣ କରି ସେ ବ୍ରିଟିଶ୍ ସରକାର ପ୍ରତି ତାଙ୍କ ଆନୁଗତ୍ୟ ପ୍ରଦର୍ଶନ କରୁଥିଲେ । ୧୯୦୬ ଖ୍ରୀଷ୍ଟାବ୍ଦରେ ଗାନ୍ଧୀଙ୍କ ନେତୃତ୍ୱରେ ଗଠିତ ଏକ ଭାରତୀୟ ଚିକିତ୍ସକ ଦଳ ଜୁଲୁମାନଙ୍କ ଏଲାକାରେ ସାମରିକ ଅଭିଯାନ ପରିଚାଳନା ସମୟରେ ଔପନିବେଶିକ ସୈନ୍ୟମାନଙ୍କ ପକ୍ଷରେ କାର୍ଯ୍ୟ କରିଥିଲେ । ପ୍ରଥମ ବିଶ୍ୱ ଯୁଦ୍ଧ ସମୟରେ ତାଙ୍କ ନିଜସ୍ୱ ପ୍ରଦେଶ ଗୁଜରାଟର କୃଷକମାନଙ୍କୁ ସୈନ୍ୟବାହିନୀରେ ଯୋଗ ଦେବା ପାଇଁ ପ୍ରଚାର କରି ସେ ବ୍ରିଟିଶ୍‌ମାନଙ୍କୁ ସହାୟତା କରିଥିଲେ ।

ଆଫ୍ରିକାରେ ଅସହଯୋଗ ଆନ୍ଦୋଳନର କେତେକ ସାଫଲ୍ୟ ଏବଂ ସମ୍ବାଦପତ୍ରରେ, ବିଶେଷତଃ, ନିଜ ଦ୍ୱାରା ପ୍ରକାଶିତ ଭାରତରେ ସ୍ୱାୟତଶାସନର ସମର୍ଥକ "ଇଣ୍ଡିଆନ୍ ଓପିନିଅନ" ପତ୍ରିକାରେ ତାଙ୍କର ଅସଂଖ୍ୟ ପ୍ରବନ୍ଧ ସ୍ୱଦେଶରେ କ୍ରମଶଃ ଗାନ୍ଧୀଙ୍କ ଖ୍ୟାତି ଓ ଜନପ୍ରିୟତା ବୃଦ୍ଧି କରିଥିଲା । ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ପରେ ସତ୍ୟାଗ୍ରହ ଭାବାଦର୍ଶ ପ୍ରଚାର କରିବା ପାଇଁ ଗାନ୍ଧୀ ଗୁଜରାଟର ବୁର୍ଜୁଆମାନଙ୍କର ସହାୟତାରେ ୧୯୧୫ ଖ୍ରୀଷ୍ଟାବ୍ଦରେ ଆହମଦାବାଦରେ "ସତ୍ୟାଗ୍ରହ ଆଶ୍ରମ" ନାମରେ ଏକ ପ୍ରତିଷ୍ଠାନ ଗଢ଼ିଥିଲେ । ଏହା ପରେ ୧୯୧୫ରେ ରାଜକୋଟ ରାଜ୍ୟରେ କେତେକ ଶୁଳ୍କ ଉଠେଇ

ଦେବା ପାଇଁ, ୧୯୧୭ରେ ଭାରତ ବାହାରେ କାର୍ଯ୍ୟ ପାଇଁ କୁଲିମାନଙ୍କୁ ନିଯୁକ୍ତ କରିବାର ପ୍ରଥାର ସଂସାର ଦାବି କରି ଏବଂ ଏହି ବର୍ଷ ଶେଷରେ – ୧୯୧୮ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ବିହାରରେ ବ୍ରିଟିଶ୍ ବଗିଚାମାଲିକମାନଙ୍କ ଦ୍ୱାରା ଚାଷୀମାନଙ୍କୁ ଶୋଷଣ କରିବା ବିରୁଦ୍ଧରେ ତିନୋଟି ଅହିଂସ ଆନ୍ଦୋଳନ କରି ସେ ସାଫଲ୍ୟ ଅର୍ଜନ କରିଥିଲେ । ଜନମାନସରେ ଏହିସବୁ ଆନ୍ଦୋଳନ ଗଭୀର ରେଖାପାତ କରିଥିଲା ଏବଂ ଭାରତର ରାଜନୈତିକ ଜୀବନର ଏକାନ୍ତ ଅଗ୍ରଭାଗରେ ଗାନ୍ଧୀଙ୍କୁ ଏହା ପ୍ରତିଷ୍ଠିତ କରିଥିଲା । ଔପନିବେଶିକ ସରକାର ବିରୁଦ୍ଧରେ ସଂଗ୍ରାମରେ ଜନସାଧାରଣଙ୍କୁ ଜଡ଼ିତ କରିବାର ଅପରିହାର୍ଯ୍ୟତା ସଂପର୍କରେ ଜାତୀୟତାବାଦୀମାନେ ତାଙ୍କ ବକ୍ତୃତା ଓ ରଚନାବଳୀ ଦ୍ୱାରା ହୃଦ୍‌ବୋଧତା ଲାଭ କରିଥିଲେ ।

## ପ୍ରଥମ ବିଶ୍ୱ ଯୁଦ୍ଧକାଳୀନ ବୈପ୍ଳବିକ ଗୁପ୍ତ ସମିତି

ଯୁଦ୍ଧ ଚାଲିଥିବା କାଳରେ ପେଟି-ବୁର୍ଜୁଆ ଜାତୀୟ ବିପ୍ଳବୀ ସମିତିଗୁଡ଼ିକ ପୁନର୍ବାର ସକ୍ରିୟ ହୋଇ ଉଠିଥିଲେ । ୟୁରୋପରେ ଯୁଦ୍ଧାରମ୍ଭ ଏବଂ ଅନ୍ୟାନ୍ୟ ଯୁଦ୍ଧ କ୍ଷେତ୍ରକୁ ବ୍ରିଟିଶ୍ ସୈନ୍ୟ ଓ ନୌବାହିନୀର ପ୍ରଧାନ ଅଂଶଟି ପ୍ରେରିତ ହେବା ଫଳରେ ସୃଷ୍ଟ ହୋଇଥିବା ପରିସ୍ଥିତିକୁ "ଗଦର" ପାର୍ଟିର ନେତୃବୃନ୍ଦ ଭାରତରେ ସଶସ୍ତ୍ର ଅଭ୍ୟୁତ୍ଥାନ ଘଟାଇବା ପାଇଁ ସେମାନଙ୍କ ପରିକଳ୍ପନାକୁ ରୂପାୟିତ କରିବା ଦିଗରେ ଅନୁକୂଳ ଏବଂ ସୁବର୍ଣ୍ଣ ସୁଯୋଗ ରୂପେ ବିବେଚନା କରିଥିଲେ । ଯୁଦ୍ଧର ପ୍ରଥମ ମାସଗୁଡ଼ିକରେ ପାର୍ଟି ନେତୃବୃନ୍ଦଙ୍କର ଆହ୍ୱାନ ଦ୍ୱାରା ପାର୍ଟି ସଦସ୍ୟ ଓ ସମର୍ଥକ ହଜାର ହଜାର ପ୍ରବାସୀ ଭାରତୀୟ ବିଭିନ୍ନ ପଥରେ, ପ୍ରଧାନତଃ ଚୀନ୍, ଶ୍ୟାମ ଓ ବ୍ରହ୍ମ ଦେଶ ଦେଇ ଦେଶକୁ ଫେରି ଆସିଥିଲେ । ସୋହାନ୍ ସିଂହ ଭାକନାଙ୍କ ନେତୃତ୍ୱରେ କିଛି ସଂଖ୍ୟକ "ଗଦର" ନେତା ମଧ୍ୟ ସେତେବେଳେ ଭାରତକୁ ଆସିଥିଲେ । ୧୯୧୪-୧୯୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରାୟ ୮ ହଜାର ଭାରତୀୟ ଦେଶକୁ ଫେରିଥିଲେ । ଭାରତକୁ ଜାହାଜରେ ବହୁ ପରିମାଣର ଅସ୍ତ୍ରଶସ୍ତ୍ର ପଠାଇବାର କେତେକ ବ୍ୟର୍ଥ ଚେଷ୍ଟା ମଧ୍ୟ ହୋଇଥିଲା । ଦେଶକୁ ଫେରି ଆସି "ଗଦର" ସଦସ୍ୟମାନେ ସ୍ଥାନୀୟ ଗୁପ୍ତ ସମିତିଗୁଡ଼ିକ ସହିତ ଯୋଗାଯୋଗ ସ୍ଥାପନ କରିବାରେ ସଫଳ ହୋଇଥିଲେ, ତା'ଛଡ଼ା ବର୍ଲିନ୍ କମିଟିର ଉଦ୍ୟୋଗରେ ସଂଗଠିତ ପ୍ରବାସୀ ସଂଗଠନଗୁଡ଼ିକର ସମର୍ଥନ ମଧ୍ୟ ଏମାନେ ଲାଭ କରିଥିଲେ । "ଗଦର" ସଦସ୍ୟମାନେ ଏହି ଭାବେ ଅଭ୍ୟୁତ୍ଥାନର ଆୟୋଜନ କରିଥିଲେ । ଅଧିକାଂଶ "ଗଦର" ସଦସ୍ୟ ଥିଲେ ଶିଖ ଏବଂ ସେଇଥିପାଇଁ ପଞ୍ଜାବରେ ଏହି ପାର୍ଟିର ପ୍ରଭାବ ଯଥେଷ୍ଟ ବ୍ୟାପକ ଥିଲା ।

ଏହି ଅଭ୍ୟୁତ୍ଥାନରେ ଚୂଡ଼ାନ୍ତ ଭୂମିକା ପାଳନ କରିବାର କଥା ଥିଲା ଇଂରେଜ-ଭାରତୀୟ ବାହିନୀର ସୈନ୍ୟମାନଙ୍କର । ଏମାନଙ୍କ ମଧ୍ୟରେ "ଗଦର" ପାର୍ଟି ସଫଳତାର ସହିତ ବିଟିଶବିରୋଧୀ ପ୍ରଚାର ଚଳେଇଥିଲା । ୧୯୧୪ ମସିହା ନଭେମ୍ବର ମାସରେ ଉତ୍ତର ଏବଂ ଉତ୍ତର-ପଶ୍ଚିମ ଭାରତରେ ଅନେକ ଗ୍ୟାରିସନ୍ ବା ଦୁର୍ଗରେ ବିଦ୍ରୋହ ଆରମ୍ଭ କରିବାର ସମ୍ଭାବ୍ୟ ତାରିଖଟିକୁ ୧୯୧୫ ମସିହା ଫେବୃଆରୀ ପର୍ଯ୍ୟନ୍ତ ମୁଲତବି ରଖାଯାଇଥିଲା । କିନ୍ତୁ ଦୁର୍ବଳ ସଂଗଠନ ଏବଂ "ଗଦର" ସଦସ୍ୟମାନଙ୍କର ସାଧାରଣ ସ୍ତରରେ ଦଲାଲମାନଙ୍କର ଅନୁପ୍ରବେଶ ଏବଂ ଏମାନଙ୍କ ମାଧ୍ୟମରେ କର୍ତ୍ତୃପକ୍ଷଙ୍କ ନିକଟରେ ଆନୁଷଙ୍ଗିକ ଖବରାଦି ପ୍ରକାଶ ହୋଇଯିବା ଫଳରେ ନାଟକୀୟ ବ୍ୟର୍ଥତା ଅବଶ୍ୟମ୍ଭାବୀ ହୋଇ

ପଡ଼ିଥିଲା । ହଜାର ହଜାର ଆତ୍ମଗୋପନକାରୀ କର୍ମୀ ଏବଂ ପଞ୍ଜାବରେ "କୃଷକ ଆନ୍ଦୋଳନ"ର ସଂଗଠନମାନଙ୍କୁ ଗିରଫ୍ କରାଯାଇ ସେମାନଙ୍କ ବିଗ୍ଭର ହୋଇଥିଲା । ୧୯୧୫ ମସିହା ନଭେମ୍ବର ମାସରେ ସିଙ୍ଗାପୁରରେ ଅନୁଷ୍ଠିତ ସିପାହୀ ବିଦ୍ରୋହଟି ଥିଲା କେତେକ ବିକ୍ଷିପ୍ତ ଘଟଣା ଏବଂ ଏହାକୁ ସହଜରେ ଦମନ କରାଯାଇଥିଲା । ଏହି ବ୍ୟର୍ଥତା ସତ୍ତ୍ୱେ "ଗଦର" ସଦସ୍ୟମାନେ ସଂଗ୍ରାମ ଅବ୍ୟାହତ ରଖିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଯୋଗ୍ୟ ନେତୃତ୍ୱ ଏବଂ ବୈଷୟିକ ସମ୍ବଳର ଅଭାବରୁ ଏହି ସବୁ ଉଦ୍ୟମ ଅବିଳମ୍ବେ ହତାଶାରେ ପରିଣତ ହେଲା । ବିଶ୍ୱ ଯୁଦ୍ଧ ଶେଷ ହେଲା ବେଳକୁ ଆମେରିକା ଯୁକ୍ତ ରାଷ୍ଟ୍ର ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳର ସମସ୍ତ "ଗଦର" କେନ୍ଦ୍ର ଭାଙ୍ଗି ପଡ଼ିଥିଲା ।

"ଗଦର" ଆନ୍ଦୋଳନ ସହିତ ସମାନ୍ତରାଳ ଭାବେ ଭାରତବର୍ଷରୁ ବ୍ରିଟିଶ୍ ସରକାରକୁ ହଟାଇବା ପାଇଁ ଆଉ ଏକ ପ୍ରଚେଷ୍ଟା ମଧ୍ୟ ଗ୍ଭଲିଥିଲା । ଏହା ଥିଲା ଦେଓବନ୍ଦର ମୁସଲିମ୍ ଧର୍ମୀୟ ବିଦ୍ୟାଳୟ "ଦାର-ଉଲ-ଉଲେମକୁ" କେନ୍ଦ୍ର କରି ଗଢ଼ି ଉଠିଥିବା ମୁସଲିମ୍ ଜାତୀୟତାବାଦୀମାନଙ୍କ ଗୁପ୍ତ ସମିତିର ଉଦ୍ୟୋଗ । ମୁସଲିମ୍ ସାମ୍ପ୍ରଦାୟିକ ଆନ୍ଦୋଳନର ଜାତୀୟତାବାଦୀ ବିପ୍ଳବୀ ଅଂଶର ଚରମ-ବାମପନ୍ଥୀ ତତ୍କାଳ ମାହ୍‌ମୁଦ ହାସାନ୍ ଥିଲେ ଏହାର ନେତା । ମାହ୍‌ମୁଦ ହାସାନ୍ ଓ ତାଙ୍କ ଅନୁଗାମୀମାନେ ପ୍ୟାନ୍‌ଇସ୍‌ଲାମ୍ ଏବଂ ତୁରସ୍କର ଖଲିଫାଙ୍କ ଅଧିକାର ରକ୍ଷା ନାମରେ ବ୍ରିଟିଶ୍ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ । ଦେଓବନ୍ଦ କେନ୍ଦ୍ର ଭାରତ ବାହାରେ ଥିବା ମୁସଲମାନମାନଙ୍କ ସହିତ ଏବଂ ବ୍ରିଟିଶ୍‌ବିରୋଧୀ ସରକାରଗୁଡ଼ିକ ସହିତ, ବିଶେଷତଃ, ଜର୍ମାନ୍ ଓ ତୁରସ୍କ ସହିତ ସଂପର୍କ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲା । ୧୯୧୫ ଖ୍ରୀଷ୍ଟାବ୍ଦରେ ମାହ୍‌ମୁଦ ହାସାନ୍‌ଙ୍କ ଅନ୍ୟତମ ସହକର୍ମୀ ଓବାଏଦଉଲ୍ଲାହ୍ ସିନ୍ଧୀ ଆଫ୍‌ଗାନିସ୍ତାନରେ ରହୁଥିବା ବର୍ଲିନ୍‌ର ପ୍ରବାସୀ କେନ୍ଦ୍ରର ପ୍ରତିନିଧି ଏବଂ ଜର୍ମାନ୍ ସାମରିକ ଓ କୂଟନୈତିକ ମିଶନ ସହିତ ଯୋଗାଯୋଗ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ କାବୁଲକୁ ଆସିଥିଲେ । ଏଥି ସଙ୍ଗେ ସଙ୍ଗେ ସେ ଆଫ୍‌ଗାନିସ୍ତାନର ଅମିର୍ ହାବିବୁଲ୍ଲାଙ୍କୁ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧାଚରଣ ପାଇଁ ପ୍ରରୋଚିତ କରିବାକୁ ଚେଷ୍ଟା କରିଥିଲେ, ଯାହା ଫଳରେ ସୀମାନ୍ତର ପଠାଣ ଉପଜାତିଗୁଡ଼ିକ ମଧ୍ୟରେ ବିଦ୍ରୋହ ଦେଖାଦେବ ।

କିନ୍ତୁ ହାବିବୁଲ୍ଲା ନିରପେକ୍ଷତାର ନୀତି ଅନୁସରଣ କରିବାରେ ଅବିଚଳ ଥିଲେ । "ସିଲ୍‌କ ଲଫାପାର କନ୍‌ସ୍ପିରେସି" ନାମରେ ଖ୍ୟାତ ଏହି ଷଡ଼ଯନ୍ତ୍ରଟିର ପରିକଳ୍ପନା ବ୍ରିଟିଶ୍‌ମାନଙ୍କ ହସ୍ତଗତ ହୋଇଥିଲା ଏବଂ ଏହାର ସଦସ୍ୟମାନେ ଶାସ୍ତି ପାଇଥିଲେ ।

ଭାରତର ଆଭ୍ୟନ୍ତରୀଣ ବିପ୍ଳବୀ ଓ ଔପନିବେଶିକତା ବିରୁଦ୍ଧରେ ସଂଗ୍ରାମରତ ପ୍ରବାସୀ ଭାରତୀୟ ଉଭୟ ଯୁଦ୍ଧରେ ବ୍ରିଟିଶ୍‌ଙ୍କ ଶତ୍ରୁ ପକ୍ଷଙ୍କ ନିକଟରୁ ସାହାଯ୍ୟ ଆଶା କରିଥିଲେ । ଭାରତର ସ୍ୱାଧୀନତା ପାଇଁ ୧୯୧୫ ଖ୍ରୀଷ୍ଟାବ୍ଦରେ ଗଠିତ ବର୍ଲିନ୍ କମିଟି ପ୍ରଧାନତଃ ଜର୍ମାନ୍ ଓ ତୁରସ୍କ ସରକାର ସହିତ ଯୋଗାଯୋଗ ସ୍ଥାପନ କରିବାକୁ ଚେଷ୍ଟା କରିଥିଲେ । ୧୯୧୬ ଖ୍ରୀଷ୍ଟାବ୍ଦରେ ଏହି କମିଟି ଏକ କର୍ମସୂଚୀ ମାଧ୍ୟମରେ ବ୍ରିଟିଶ୍ ବିରୁଦ୍ଧରେ ଭାରତୀୟମାନଙ୍କ ପକ୍ଷରୁ ଯୁଦ୍ଧ ଘୋଷଣା କରିଥିଲେ । ସେଇ ସମୟରେ ହରଦୟାଲ ଓ ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ଭଳି ଶ୍ରେଷ୍ଠ ବିପ୍ଳବୀମାନେ ବର୍ଲିନ୍ କେନ୍ଦ୍ରରେ କର୍ମବ୍ୟସ୍ତ ଥିଲେ । ୧୯୧୫ ଖ୍ରୀଷ୍ଟାବ୍ଦରେ ଏହି କମିଟି ସାହାଯ୍ୟରେ କାବୁଲରେ ନିର୍ବାସିତ ଅସ୍ଥାୟୀ ଭାରତ ସରକାର ପ୍ରତିଷ୍ଠିତ ହୋଇଥିଲା । ଏହାର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ବୈଦେଶିକ ମନ୍ତ୍ରୀ ଥିଲେ ଯଥାକ୍ରମେ ମହେନ୍ଦ୍ର ପ୍ରତାପ, ବରକତଉଲ୍ଲାହ୍ ଓ ଓବାଏଦଉଲ୍ଲାହ୍ । ୧୯୧୬-୧୯୧୭

ଖ୍ରୀଷ୍ଟାବ୍ଦରେ ଏହି ଅସ୍ଥାୟୀ ସରକାର ତିନି ଥର ରୁଷିଆର ଜାର୍ ସରକାର ନିକଟରେ ଏବଂ ପରେ ଅସ୍ଥାୟୀ ରୁଷ୍ ସରକାର ନିକଟକୁ ସିଧାସଳଖ ସାହାଯ୍ୟ ପାଇଁ ପ୍ରତିନିଧି ପଠାଇଥିଲା ।

ଜର୍ମାନ୍ ସରକାର ବା ତୁରସ୍କ ସାମ୍ରାଜ୍ୟ, କେହି ଔପନିବେଶିକତା ବିରୁଦ୍ଧରେ ଭାରତର ସଂଗ୍ରାମକୁ ସମର୍ଥନ ଦେବାକୁ ଉତ୍ସାହୀ ନଥିଲେ – ଏହି ସତ୍ୟଟି ଯୁଦ୍ଧର ଶେଷ ବେଳକୁ ଜାତୀୟତାବାଦୀ-ବିପ୍ଳବୀମାନଙ୍କ ନିକଟରେ ସ୍ପଷ୍ଟ ହୋଇ ଉଠିଥିଲା । ୧୯୧୬ ଖ୍ରୀଷ୍ଟାବ୍ଦରେ ବର୍ଲିନ୍ କେନ୍ଦ୍ରର ଅଧିକାଂଶ ସକ୍ରିୟ ସଦସ୍ୟ ଷ୍ଟକ୍‌ହୋମ୍‌କୁ ଚାଲି ଯାଇଥିଲେ ଏବଂ ସେଠାରୁ ଔପନିବେଶିକତାବିରୋଧୀ ପ୍ରଚାର ଆନ୍ଦୋଳନ ଚଳାଇଥିଲେ ।

ଭାରତୀୟ ରାଜନୀତିରେ ପ୍ରଭୂତ "ଦାହ୍ୟ ପଦାର୍ଥ" ପୁଞ୍ଜିଭୂତ ହେବା ସତ୍ତ୍ୱେ ଜାତୀୟ ଆନ୍ଦୋଳନରେ ତିନୋଟି ଧାରା – ମଧ୍ୟପନ୍ଥୀ, ଚରମପନ୍ଥୀ ଓ ଜାତୀୟତାବାଦୀ-ବିପ୍ଳବୀ – ଏଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ହେଲେ ଔପନିବେଶିକ ସରକାର ଠାରୁ ବିଶେଷ ସୁବିଧା ଆଦାୟ କରି ପାରି ନଥିଲେ । ଏହିସବୁ ଭାରତୀୟ ଦେଶପ୍ରେମିକମାନଙ୍କର କାର୍ଯ୍ୟକଳାପ, ଅବଶ୍ୟ, ବୈପ୍ଳବିକ ପରିସ୍ଥିତି ସୃଷ୍ଟି କରିବା ଦିଗରେ ଅପରିହାର୍ଯ୍ୟ କେତେକ ଉପାଦାନ ଯୋଗ୍ କରିଥିଲା । ଏହା ସ୍ମରଣଯୋଗ୍ୟ ଯେ, ପ୍ରଥମ ବିଶ୍ୱ ଯୁଦ୍ଧ ପରେ ଏବଂ ରୁଷିଆରେ ମହାନ୍ ଅକ୍ଟୋବର ବିପ୍ଳବ ଜୟଯୁକ୍ତ ହେବା ଫଳରେ ଭାରତରେ ଏହି ବୈପ୍ଳବିକ ପରିସ୍ଥିତି ସୃଷ୍ଟି ହୋଇଥିଲା ।

# ପ୍ରଥମ ବୈପ୍ଳବିକ ଆଘାତ ଏବଂ ଭାରତରେ ରାଜନୈତିକ ଗଣ ସଂଗଠନର ଉନ୍ମେଷ (୧୯୧୮-୧୯୨୭)

ରୁଷିଆର ଅକ୍ଟୋବର ବିପ୍ଳବର ବିଜୟ ପୁଞ୍ଜିବାଦରେ ସାଧାରଣ ସଂକଟ ସୃଷ୍ଟି କଲା ଏବଂ ଏହାର ଅଂଶ ହିସାବରେ ଔପନିବେଶିକ ବ୍ୟବସ୍ଥାରେ ମଧ୍ୟ ସଂକଟ ଦେଖାଦେଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରାଚ୍ୟର ଜାତିମାନଙ୍କର ରାଜନୈତିକ ଜାଗରଣ ଫଳରେ ସେଠାକାର ଜନସାଧାରଣ ସାମ୍ରାଜ୍ୟବାଦୀ ଶୋଷଣର ଅବସାନ ଘଟାଇବାକୁ ବଦ୍ଧପରିକର ହୋଇ ଉଠିଥିଲେ । ବିଂଶ ଶତାବ୍ଦୀର କୋଡ଼ିଏ ଦଶକର ଆରମ୍ଭରେ ଭାରତରେ ସଂଘଟିତ ଘଟଣାବଳୀ ଏସିଆର ପ୍ରାୟ ସମସ୍ତ ଅଧାଉପନିବେଶ ଓ ଉପନିବେଶ ସମେତ ଏହି ମହା ଆନ୍ଦୋଳନ ସହିତ ମିଶି ଯାଇଥିଲେ । ବ୍ରିଟିଶ୍ ଉପନିବେଶିକତା ସହିତ ଯୁଦ୍ଧରତ ଅବସ୍ଥାରେ ଭାରତବର୍ଷ ଇତିହାସର ସାଂପ୍ରତିକ ପର୍ବକୁ ପ୍ରବେଶ କରିଥିଲା ।

## ଜାତୀୟ-ମୁକ୍ତି ଆନ୍ଦୋଳନର ଜୁଆର

### ଦେଶର ରାଜନୈତିକ ତଥା ଅର୍ଥନୈତିକ ଆଭ୍ୟନ୍ତରୀଣ ପରିସ୍ଥିତି

ପ୍ରଥମ ବିଶ୍ୱଯୁଦ୍ଧ ବେଳେ ବ୍ରିଟିଶ୍ ସରକାର ତା'ର ପ୍ରଧାନ ଉପନିବେଶ ଉପରେ ଅଧିକାଂଶ ସାମରିକ ବ୍ୟୟର ବୋଝ ଲଦି ଦେଇଥିଲା ଏବଂ ଏହା ଫଳରେ ଭାରତର ଶୋଷଣ ତୀବ୍ରତର ହୋଇ ପଡ଼ିଲା । ସହର ଓ ଗ୍ରାମାଞ୍ଚଳର ଜନସାଧାରଣ ଏହାର ମାରାତ୍ମକ କୁଫଳ ଭୋଗ କରିଥିଲେ ।

ଯୁଦ୍ଧ କାଳୀନ ବିଶ୍ୱ ଅର୍ଥନୀତିର ଦୁରାବସ୍ଥା ହେତୁ ଭାରତର ଝୋଟ, ତୂଳା, ତୈଳବୀଜ, ଅନ୍ୟାନ୍ୟ ଶିଳ୍ପ ସଂପୃକ୍ତ ରପ୍ତାନି ହ୍ରାସ ପାଇବା ଦ୍ୱାରା କୃଷକମାନେ କ୍ଷତିଗ୍ରସ୍ତ ହୋଇଥିଲେ । ଖୋଦ୍ ଉତ୍ପାଦକ, ଅର୍ଥାତ୍, କୃଷକମାନଙ୍କ ଉପରେ ଶୋଷଣକୁ ତୀବ୍ରତର କରି ଜମିଦାର ଏବଂ ବ୍ୟବସାୟୀମାନେ ସେମାନଙ୍କ କ୍ଷତିପୂରଣ କରିବାକୁ ଉଦ୍ୟମ କରିଥିଲେ । ୧୯୧୧-୧୯୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ମହାଜନମାନଙ୍କ ନିକଟରେ କୃଷକମାନଙ୍କ ଋଣ ଦ୍ୱିଗୁଣିତ ହୋଇ ମୋଟ ୬୦୦ କୋଟି ଟଙ୍କାରେ ପହଞ୍ଚିଥିଲା ।

ଜମିଦାର ଏବଂ ସାମନ୍ତ ଭୂସ୍ୱାମୀ , କରଆଦାୟକାରୀ , ବ୍ୟବସାୟୀ ଓ ମହାଜନମାନଙ୍କ ଦ୍ୱାରା କୃଷକମାନଙ୍କୁ କ୍ରମବର୍ଦ୍ଧମାନ ଶୋଷଣ ଫଳରେ ଜମି ହସ୍ତାନ୍ତର ଓ କ୍ରୟ ବିକ୍ରୟର ପରିମାଣ ଯଥେଷ୍ଟ ବୃଦ୍ଧି ପାଇଥିଲ । ବନ୍ଧକ ଏବଂ ବିକ୍ରୟ ଫଳରେ କ୍ରମଶଃ ଅଧିକ ସଂଖ୍ୟକ କୃଷକ ସେମାନଙ୍କ ଜମି ହରେଇଥିଲେ ।

କୃଷକମାନଙ୍କ ପରେ କାରିଗର ଓ ସେମାନଙ୍କ ପରିବାରସମୂହ ମାରାତ୍ମକ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । ଯୁଦ୍ଧର ପ୍ରାରମ୍ଭରେ ଏବଂ ଯୁଦ୍ଧ ଗ୍ଲିଥିଲ ବେଳେ କେତେକ କାରୁକର୍ମ ଓ କୁଟୀରଶିଳ୍ପର (ବିଶେଷତଃ, ଚନ୍ତ କପଡ଼ା) ଉତ୍ପାଦନ ହ୍ରାସ ପାଇବା ଦ୍ୱାରା ଲକ୍ଷ ଲକ୍ଷ କାରିଗର, କ୍ଷୁଦ୍ର ଉତ୍ପାଦକ ଓ ଫଳତଃ ସାଧାରଣ ବ୍ୟବସାୟୀମାନଙ୍କର ଆୟ ବହୁ ପରିମାଣରେ କମି ଯାଇଥିଲ।

ଶ୍ରମବଜାରରେ ଲକ୍ଷ ଲକ୍ଷ ଧ୍ୱଂସପ୍ରାପ୍ତ କାରିଗରମାନଙ୍କର ଆବିର୍ଭାବ ଶିଳ୍ପ-ସର୍ବହରାର ଅବସ୍ଥା ଉପରେ ବିରୂପ ପ୍ରତିକ୍ରିୟା ସୃଷ୍ଟି କରିଥିଲ, କ୍ରମାଗତ ମୂଲ୍ୟ ବୃଦ୍ଧି ଫଳରେ ସେମାନଙ୍କ ମଜୁରିର ମୂଲ୍ୟ ହାନି ଘଟିଥିଲ ।

୧୯୧୮-୧୯୧୯ ଏବଂ ୧୯୨୦-୧୯୨୧ ମସିହା ମଧ୍ୟରେ ଦୁଇ ଥର ଫସଲ ହାନି ଘଟିବା ଫଳରେ ଦେଶର ଅର୍ଥନୈତିକ ଅବସ୍ଥା ଆଉରି ସାଂଘାତିକ ହୋଇ ପଡ଼ିଲ । ଉତ୍ପାଦନ ହ୍ରାସ, ଅର୍ଥାତ୍, ଶସ୍ୟ ରପ୍ତାନି ପୂର୍ବ ଭଳି ରହିବା ଫଳରେ ବ୍ୟାପକ ଦୁର୍ଭିକ୍ଷ ଦେଖାଦେଲ ଏବଂ ଏହି ସମୟରେ ଇନ୍‌ଫ୍ଲୁଏଞ୍ଜା ମହାମାରୀ ଦେଖା ଦେବା ହେତୁ (ମୃତ୍ୟୁ ସଂଖ୍ୟା ୧.୩ କୋଟି) ଏହାର ପ୍ରତିକ୍ରିୟା ଭୟାବହ ରୂପ ନେଇଥିଲ ।

ଖାଦ୍ୟାଭାବ ଏବଂ ଚଡ଼ାଦର ଦ୍ୱାରା କେବଳ ଶ୍ରମିକ ଶ୍ରେଣୀର ପ୍ରଧାନ ଅଂଶ ନୁହେଁ, ଶିଳ୍ପୋଦ୍ୟୋଗୀମାନଙ୍କର ଅଧସ୍ତନ ସ୍ତର, ବୁଦ୍ଧିଜୀବୀ ଓ କିରାଣୀମାନଙ୍କର ସ୍ୱାର୍ଥ ହାନି ଘଟିଥିଲ ।

ଭାରତୀୟ ଜାତୀୟ ବୁର୍ଜୁଆମାନେ ଯୁଦ୍ଧ ସମୟରେ ସେମାନଙ୍କ ବ୍ୟବସାୟ-ନିଗମର ସଂପ୍ରସାରଣ ଏବଂ ଅର୍ଥନୈତିକ ଅବସ୍ଥାନକୁ ଦୃଢ଼ କରି ନେଇଥିଲେ । ଫଳରେ ସେମାନେ ଔପନିବେଶିକ ଶୋଷଣ ହେତୁ ବାଧା ନିଷେଧ ଏବଂ ଦେଶର ଅର୍ଥନୀତି, ରାଜନୀତି ଓ ସଂସ୍କୃତିର ବିଭିନ୍ନ କ୍ଷେତ୍ରରେ ଔପନିବେଶିକ ସରକାର ଦ୍ୱାରା ପ୍ରବର୍ତ୍ତିତ ବୈଷମ୍ୟମୂଳକ ବ୍ୟବସ୍ଥାର ଫଳାଫଳ ସଂପର୍କରେ ଅତୀତ ତୁଳନାରେ ଅନେକ ବେଶି ଅନୁଭବ କରିଥିଲେ ।

ଏହି ଶତାବ୍ଦୀର ବିଂଶ ଦଶକର ପ୍ରାରମ୍ଭରେ ଭାରତର ଅସଂଗତି ବା ଦ୍ୱନ୍ଦ୍ୱସମୂହ ବିଶେଷ ଭାବେ ଦୁଇଟି କ୍ଷେତ୍ରରେ ପ୍ରକଟିତ ହୋଇଥିଲ : (୧) ଶୋଷକ ଓ ଶୋଷିତମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଏବଂ (୨) ଗୋଟିଏ ଦିଗରେ, ଭାରତୀୟ ସମାଜର ପ୍ରଧାନ ପ୍ରଧାନ ଶ୍ରେଣୀ ଓ ସାମାଜିକ ସ୍ତରସମୂହ ସହିତ, ଅନ୍ୟ ଦିଗରେ, ବ୍ରିଟିଶ୍ ସାମ୍ରାଜ୍ୟବାଦର ଦ୍ୱନ୍ଦ୍ୱ । ଏହି ସାମ୍ରାଜ୍ୟବାଦ ସେତେବେଳେ ଏ ଦେଶର ଜମିଦାର ଓ ସାମନ୍ତ ଭୂସ୍ୱାମୀ ଶ୍ରେଣୀ, ରାଜନ୍ୟବର୍ଗ, ସହଯୋଗୀ ବୁର୍ଜୁଆ ଓ ଏମାନଙ୍କ ସହଯୋଗୀ ବ୍ୟବସାୟୀ ଓ ମହାଜନମାନଙ୍କ ସମର୍ଥନ ଉପରେ ନିର୍ଭର କରୁଥିଲ ।

ଶ୍ରମିକ ଶ୍ରେଣୀର ନୂତନ ଆନ୍ଦୋଳନ ଫଳରେ ଜାତୀୟ ମୁକ୍ତି ସଂଗ୍ରାମର ତୀବ୍ରତା ବୃଦ୍ଧି ପାଇଥିଲ । ୧୯୧୮ ମସିହାରେ ବମ୍ବେ, ମାନ୍ଦ୍ରାଜ, କାନ୍‌ପୁର ଓ ଆହମଦାବାଦରେ ସେହି ସମୟ ତୁଳନାରେ ବ୍ୟାପକ ଧର୍ମଘଟ ଅନୁଷ୍ଠିତ ହୋଇଥିଲ । ଯୁଦ୍ଧ କାଳୀନ ଉତ୍ପାଦନକୁ ସଙ୍କୋଚି ନେବା ଫଳରେ ବ୍ୟାପକ ହାରରେ କର୍ମୀ ଛଟେଇ ହେବା ଦ୍ୱାରା ଅର୍ଥନୈତିକ ଚରିତ୍ରସଂପନ୍ନ ଏହିସବୁ ଧର୍ମଘଟ ଦେଖା ଦେଇଥିଲ । ଧର୍ମଘଟ ପ୍ରସ୍ତର ଜୋର୍‌ଦାର ହେବା ଫଳରେ ଟ୍ରେଡ୍‌ୟୁନିୟନ୍ ଗଠନ ଆରମ୍ଭ

ହୋଇଥିଲା (ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତର ଶିଳ୍ପ ଶ୍ରମିକ ଏବଂ ଗ୍ରମିରିଜୀବୀମାନଙ୍କର ବହୁ ସଂଗଠନ ଟ୍ରେଡ୍‌ୟୁନିଅନ୍ ଭଳି କାର୍ଯ୍ୟ କରୁଥିଲେ, କିନ୍ତୁ ପ୍ରଥମ ବିଶ୍ୱ ଯୁଦ୍ଧ ଶେଷରେ ସେସବୁ ପୂରାପୂରି ଲୋପ ପାଇ ଯାଇଥିଲା) । ଏସବୁକୁ ବୁର୍ଜୁଆ ଜାତୀୟତାବାଦୀ ଓ ଜନହିତୈଷୀମାନେ ଗଢ଼ି ତୋଳିଥିଲେ । ମାଡ୍ରାଜରେ ୧୯୧୮ ଖ୍ରୀଷ୍ଟାବ୍ଦରେ ବି.ପି. ଓୟାଡ଼ିୟାଙ୍କ କର୍ତ୍ତୃକ ଦେଶର ପ୍ରଥମ ଟ୍ରେଡ୍‌ୟୁନିଅନ୍ ପ୍ରତିଷ୍ଠିତ ହେଲା ପରେ ବମ୍ବେ ଏବଂ ଆହ୍‌ମଦାବାଦ ସହ ଅନ୍ୟ କେତେକ ଶିଳ୍ପ କେନ୍ଦ୍ରରେ ଏହାର ପୁନରାବୃତ୍ତି ଘଟିଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ୧୯୧୮ ଖ୍ରୀଷ୍ଟାବ୍ଦରେ ଆହ୍‌ମଦାବାଦରେ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ସହଯୋଗିତାରେ ଆହ୍‌ମଦାବାଦ ମିଲ୍ ମଜଦୁର ୟୁନିଅନ୍‌ଟି ଗଠିତ ହୋଇଥିଲା ।

ରୁଷିଆରେ ବିପ୍ଳବର ସଂବାଦ ଏହା ପରେ କ୍ରମାନ୍ୱୟରେ ଭାରତରେ ଆସି ପହଞ୍ଚିବାକୁ ଲାଗିଲା ଏବଂ ଫଳରେ ଦେଶରେ ବୈପ୍ଳବିକ ଆବେଗର ଏକ ନୂତନ ଉଚ୍ଛ୍ୱାସ ଦେଖାଦେଲା ।

## ଭାରତରେ ଅକ୍ଟୋବର ବିପ୍ଳବର ପ୍ରଭାବ

ବ୍ରିଟିଶ୍ ସମ୍ବାଦପତ୍ର ମାଧ୍ୟମରେ ଭାରତରେ ପହଞ୍ଚିଥିବା ଫେବୃଆରୀ ବିପ୍ଳବ ଓ ଜାର୍‌ର ପତନ ସଂବାଦ ଭାରତୀୟ ଜାତୀୟତାବାଦୀମାନଙ୍କ ଉପରେ ଗଭୀର ପ୍ରଭାବ ପାତ କରିଥିଲା । ଏହି ଜାତୀୟତାବାଦୀମାନେ ଜାର୍ ସ୍ୱୈରାଗ୍ରରୀ ଶାସନ ଓ ଭାରତରେ ବ୍ରିଟିଶ୍ ସରକାରକୁ ସମପର୍ଯ୍ୟାୟର ରୂପ ବୋଲି ମନେ କରୁଥିଲେ । ୧୯୧୭ ମସିହାରେ ହୋମ୍ ରୁଲ କମିଟି କର୍ତ୍ତୃକ ପ୍ରକାଶିତ "ରୁଷିଆର ଦୃଷ୍ଟାନ୍ତ" ନାମକ ପୁସ୍ତିକାରେ "ଶିକ୍ଷିତ ସମାଜ" ପ୍ରତି ଏକ ଆବେଦନ ସେମାନଙ୍କ ଭାରତୀୟ ଜନସାଧାରଣଙ୍କୁ ରୁଷ୍ ବିପ୍ଳବର ତାତ୍ପର୍ଯ୍ୟ ଓ ମର୍ମାର୍ଥ ବୁଝାଇବା ପାଇଁ କୁହାଯାଇଥିଲା । ସାଫଲ୍ୟମଣ୍ଡିତ ରୁଷ୍ ବିପ୍ଳବ ଭାରତୀୟ ଜାତୀୟତାବାଦୀମାନଙ୍କର ମୁକ୍ତି ସଂଗ୍ରାମକୁ ତୀବ୍ରତର କରିବାର ପ୍ରେରଣା ଯୋଗାଇଥିଲା । ଏହିସବୁ ଘଟଣା ପ୍ରତି ଭାରତର ଜାତୀୟତାବାଦୀ ସଂବାଦପତ୍ରଗୁଡ଼ିକର ତତ୍କାଳୀନ ଦୃଷ୍ଟିଭଙ୍ଗିର ଦୃଷ୍ଟାନ୍ତ ହିସାବରେ ଏଲାହାବାଦରୁ ପ୍ରକାଶିତ "ଅଭ୍ୟୁଦୟ" (ମାର୍ଚ୍ଚ ୨୪, ୧୯୧୭) ପତ୍ରିକାରେ ଏକ ମନ୍ତବ୍ୟକୁ ଲକ୍ଷ୍ୟ କରିବାର କଥା । ଏଥିରେ କୁହାଯାଇଥିଲା : "ଉଦ୍ଦୀପକ, ପ୍ରାଣଦାତ୍ରୀ ଜାତୀୟତାବାଦ ନିକଟରେ ପୃଥିବୀର ସମସ୍ତ ବାଧା ଯେ କେତେ ତୁଚ୍ଛ, ତାହା ରୁଷଆର ବିପ୍ଳବରୁ ଆମେ ବୁଝିଛେ ।"

ରୁଷିଆର ବୈପ୍ଳବିକ ଘଟଣାବଳୀର ଅଗ୍ରଗତି ସଙ୍ଗେ ସଙ୍ଗେ ବ୍ରିଟିଶ୍ ସହ ପଶ୍ଚିମର ସମସ୍ତ ବୁର୍ଜୁଆ ସଂବାଦପତ୍ର ତରୁଣ ସୋଭିଏତ୍ ପ୍ରଜାତନ୍ତ୍ର ବିରୁଦ୍ଧରେ କ୍ରମଶଃ ଅଧିକରୁ ଅଧିକ ଅପପ୍ରଗ୍ରର ଚଳେଇ ନିଜ ପାଠକମାନଙ୍କୁ ବିଭ୍ରାନ୍ତ କରୁଥିଲେ । ଭାରତରେ ବ୍ରିଟିଶ୍ ସରକାର ରୁଷିଆର ଘଟଣାବଳୀ ସଂକ୍ରାନ୍ତ ସଂବାଦ ପ୍ରକାଶ ଉପରେ କଠୋର ନିୟନ୍ତ୍ରଣ ଜାରି କରିବା ସଙ୍ଗେ ସଙ୍ଗେ ଏ ଦେଶରେ କମ୍ୟୁନିଷ୍ଟ ସାହିତ୍ୟ ଛାପିବାକୁ ପୂରାପୂରି ନିଷିଦ୍ଧ କରି ଦେଇଥିଲା । କିନ୍ତୁ ଔପନିବେଶିକ ପ୍ରଶାସନର ଏହିସବୁ ବ୍ୟବସ୍ଥା ସତ୍ତ୍ୱେ ଅକ୍ଟୋବରର ପ୍ରକୃତ ଘଟଣାବଳୀ ଖୁବ୍ ଶୀଘ୍ର ଭାରତରେ ବିସ୍ତାର ଲାଭ କରିଥିଲା । ଭାରତ ସଚିବ ମଣ୍ଟେଗୁ ଓ ବଡ଼ଲାଟ୍ ଚେମ୍‌ସଫୋର୍ଡ ୧୯୧୮ ମସିହାରେ ପ୍ରକାଶିତ ଭାରତରେ ବ୍ରିଟିଶ୍ ନୀତି ସଂପର୍କିତ ସେମାନଙ୍କର ରିପୋର୍ଟରେ ଏହି ସତ୍ୟକୁ ସ୍ୱୀକାର କରି

ଲେଖିଥିଲେ ଯେ, ରୁଷିଆର ବିପ୍ଳବ ଓ ତା'ର ସୂତ୍ରପାତ ଭାରତରେ ସ୍ୱୈରାଗ୍ରର ବିରୁଦ୍ଧରେ ବିଜୟ ରୂପେ ବିବେଚିତ ହୋଇଛି । ଏହା ଭାରତର ରାଜନୈତିକ ଆକାଂକ୍ଷାରେ ଉଦ୍ଦୀପନା ସଞ୍ଚାର କରିଛି ।

ୟୁରୋପ ଏବଂ ମଧ୍ୟ ପ୍ରାଚ୍ୟର ଯୁଦ୍ଧ କ୍ଷେତ୍ରରୁ ଯୁଦ୍ଧ ଶେଷରେ ଦେଶକୁ ଫେରି ଆସିଥିବା ଦଳତ୍ୟାଗୀ ସୈନ୍ୟମାନଙ୍କ ନିକଟରୁ ଭାରତର ଗ୍ରାମର ଲୋକେ ଦୂର ରୁଷିଆର ଘଟଣାବଳୀ ଜାଣିବାକୁ ପାଉଥିଲେ । ଏହା ଉତ୍ତର ଭାରତରେ, ବିଶେଷତଃ, ପଞ୍ଜାବରେ ଘଟିଥିଲା । କାରଣ ସେଠାରୁ ଭାରତୀୟ ସୈନ୍ୟମାନଙ୍କର ପ୍ରଧାନ ଅଂଶଟି ସଂଗୃହୀତ ହେଉଥିଲେ । ଏମାନେ ଯୁଦ୍ଧ ସମୟରେ ତୁର୍କିସ୍ତାନ, ମଧ୍ୟ ଏସିଆ ସମେତ କାସ୍ପିଆନ ସାଗରର ତୀରବର୍ତ୍ତୀ ଅନ୍ୟାନ୍ୟ ରାଜ୍ୟରେ ସାମରିକ ଅଭିଯାନରେ ଅଂଶଗ୍ରହଣ କରିଥିଲେ ।

୧୯୧୭ ମସିହାର ନଭେମ୍ବର ମାସର ମଧ୍ୟଭାଗ ବେଳକୁ ଭାରତର ଜାତୀୟତାବାଦୀ ସଂବାଦପତ୍ରଗୁଡ଼ିକ ସୋଭିଏତ୍ ରୁଷିଆର ଘଟଣାବଳୀର ସଂବାଦ ପ୍ରକାଶ କରିବାକୁ ଆରମ୍ଭ କରି ଦେଇଥିଲେ ଏବଂ "ରୁଷିଆର ଜାତିସମୂହର ଅଧିକାର" ସଂକ୍ରାନ୍ତ ଲେନିନ୍‌ଙ୍କ ବିଖ୍ୟାତ ଘୋଷଣା (୧୯୧୭, ନଭେମ୍ବର ୧୫ରେ ଗୃହୀତ) ଓ ସେଇ ବର୍ଷ ଡିସେମ୍ବର ୩ ତାରିଖରେ ଗଣ କମିସାର ପରିଷଦ (ମନ୍ତ୍ରୀମଣ୍ଡଳ) କର୍ତ୍ତୃକ "ରୁଷିଆର ତଥା ପ୍ରାଚ୍ୟର ମେହନତୀ ମୁସଲମାନମାନଙ୍କ ପ୍ରତି" ଆବେଦନଟି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା ।

ଅକ୍ଟୋବର ବିପ୍ଳବର ପ୍ରାରମ୍ଭିକ ବର୍ଷମାନଙ୍କରେ ରୁଷିଆରେ ଏହି ସଂଗ୍ରାମ ପ୍ରତି ସହାନୁଭୂତିଶୀଳ ଭାରତୀୟ ଜାତୀୟତାବାଦୀମାନେ ଏହି ବୈପ୍ଳବିକ ଘଟଣାବଳୀର ସାମାଜିକ ତାତ୍ପର୍ଯ୍ୟଗୁଡ଼ିକୁ ଯଥାଯଥ ଭାବେ ଉପଲବ୍ଧି କରି ପାରି ନଥିଲେ । ତେବେ ନବୀନ ସୋଭିଏତ୍ ରାଷ୍ଟ୍ର ଜାତୀୟ ଓ ଔପନିବେଶିକ ଶୋଷଣବିରୋଧୀ ସଂଗ୍ରାମର ସମର୍ଥକ ହେବ, ଏହା ହିଁ ସେମାନେ ଆଶା କରିଥିଲେ ।

କିନ୍ତୁ ସେଇ ସମୟରେ ଜାତୀୟ ଆନ୍ଦୋଳନର କେତେକ ବାମପନ୍ଥୀ ନେତା ଅକ୍ଟୋବର ବିପ୍ଳବ ମଧ୍ୟରେ ଏକ ଯୁଗାନ୍ତକାରୀ ସାମାଜିକ ପରିବର୍ତ୍ତନର ସୂଚନା ଲକ୍ଷ୍ୟ କରିଥିଲେ ।

ଲେନିନ୍‌ଙ୍କ ବିରୁଦ୍ଧରେ ବ୍ରିଟିଶ୍ ପତ୍ରିକାଗୁଡ଼ିକର କୁତ୍ସାପ୍ରଚାର ବିରୁଦ୍ଧରେ ତାଙ୍କୁ ସମର୍ଥନ ଜଣାଇ ତିଳକ "କେଶରୀ" ପତ୍ରିକାରେ (୧୯୧୮, ଜାନୁଆରୀ ୨୯) ଏକ ସଂପାଦକୀୟରେ ଲେଖିଥିଲେ ଯେ, ଅଭିଜାତମାନଙ୍କ ଜମିକୁ କୃଷକମାନଙ୍କ ମଧ୍ୟରେ ବଣ୍ଟନ କରିଦେବା ଫଳରେ ସୈନ୍ୟବାହିନୀ ଏବଂ ଜନସାଧାରଣଙ୍କ ମଧ୍ୟରେ ଲେନିନ୍‌ଙ୍କ ଜନପ୍ରିୟତା ବୃଦ୍ଧି ପାଇଛି । ବାମପନ୍ଥୀ ଜାତୀୟତାବାଦୀମାନଙ୍କର ଅନ୍ୟତମ ନେତା ବିପିନ୍‌ଚନ୍ଦ୍ର ପାଲ ମଧ୍ୟ ସୋଭିଏତ୍ ରାଷ୍ଟ୍ର ଦ୍ୱାରା ଅନୁସୃତ ମୂଳ ରାଜନୈତିକ ନୀତିସମୂହ ପ୍ରତି ଦୃଢ଼ ସମର୍ଥନ ଜଣାଇଥିଲେ ଏବଂ ୧୯୧୯ ମସିହାରେ ତାଙ୍କର ଏକ ବକ୍ତୃତାରେ ଖୋଲାଖୋଲି ଭାବେ ଘୋଷଣା କରିଥିଲେ ଯେ, ବଲ୍‌ଶେଭିକ୍‌ମାନେ ସମସ୍ତ ଧରଣର ଅର୍ଥନୈତିକ ଓ ପୁଞ୍ଜିବାଦୀ ଶୋଷଣ, ଫଟକାବାଜୀ ଓ ସାମାଜିକ ଅସାମ୍ୟର ବିରୋଧୀ ।

ଜାତୀୟତାବାଦୀ ସମ୍ବାଦପତ୍ରଗୁଡ଼ିକରେ ସୋଭିଏତ୍ ରୁଷିଆର ପ୍ରକୃତ ଖବର ପରିବେଷଣ କରିବା ଫଳରେ ବଲ୍‌ଶେଭିକ୍‌ମାନଙ୍କ କର୍ମସୂଚୀ ଓ ନୀତି ସଂପର୍କରେ ଭାରତୀୟ ସମାଜର ଆଗ୍ରହ ଦ୍ରୁତ ବୃଦ୍ଧି ପାଇଥିଲା । ବିଂଶ ଶତାବ୍ଦୀର କୋଡ଼ିଏ ଦଶକର ପ୍ରାରମ୍ଭରେ ଲେନିନ୍ ଓ ସୋଭିଏତ୍ ରାଷ୍ଟ୍ର ସଂପର୍କରେ ଭାରତୀୟ ଲେଖକମାନଙ୍କର ରଚନାଗୁଡ଼ିକ ପ୍ରକାଶ ପାଉଥିଲା । ଗ୍ରନ୍ଥାକାରରେ ଭାରତରେ ଲେନିନ୍‌ଙ୍କ ପ୍ରଥମ ଜୀବନୀ (ଇଂରେଜୀ ଭାଷାରେ) ରଚନା କରିଥିଲେ ଦକ୍ଷିଣ ଭାରତର ସମାଜବାଦୀ

ଜି.ଭି. କୃଷ୍ଣ ରାଓ । "ନିକୋଲାଇ ଲେନିନ୍ — ଜୀବନୀ ଓ କର୍ମ" ନାମରେ ଏହି କ୍ଷୁଦ୍ର ପୁସ୍ତିକାଟି ୧୯୨୦ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜରୁ ପ୍ରକାଶ ପାଇଥିଲା । ୧୯୨୧-୧୯୨୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଲେନିନ୍ ଓ ଅକ୍ଟୋବର ବିପ୍ଳବ ସଂପର୍କରେ ଭାରତରେ ହିନ୍ଦି, ଉର୍ଦ୍ଦୁ, ବଙ୍ଗଳା, ମରହଟ୍ଟୀ, କନ୍ନଡ଼ା ଓ ଇଂରେଜୀରେ ଅନେକ ଗ୍ରନ୍ଥ ପ୍ରକାଶ ପାଇଥିଲା ।

ବିପ୍ଳବୀ ଗୁପ୍ତ ସମିତିଗୁଡ଼ିକରେ କର୍ମରତ ବାମପନ୍ଥୀ ଭାରତୀୟ ଜାତୀୟତାବାଦୀମାନେ ସୋଭିଏତ୍ ପ୍ରଜାତନ୍ତ୍ରକୁ ବ୍ରିଟିଶ୍ ଔପନିବେଶିକ ସରକାର ବିରୁଦ୍ଧରେ ସଂଗ୍ରାମରେ ସେମାନଙ୍କ ଘନିଷ୍ଠ ସହଯୋଗୀ ରୂପେ ଦେଖିଥିଲେ ଏବଂ ସୋଭିଏତ୍ ରୁଷିଆ ସହିତ ସିଧାସଳଖ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ୧୯୧୭ ଖ୍ରୀଷ୍ଟାବ୍ଦ ଶେଷରେ ଦିଲ୍ଲୀରେ ଅନୁଷ୍ଠିତ ମୁସଲିମ୍ ଜାତୀୟତାବାଦୀମାନଙ୍କର ଏକ ସଭାରେ ରୁଷ୍ ବିପ୍ଳବକୁ ଅଭିନନ୍ଦନ ଜଣେଇ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ଏକ ବେଆଇନୀ ଭାରତୀୟ ପତ୍ରିକା ୧୯୧୮ ମସିହାର ଜାନୁଆରୀ ମାସରେ ଏହାକୁ ପ୍ରକାଶ କରିଥିଲା । ସାଭାର ଏବଂ ଜବ୍ବାର — ଏହି ଦୁଇ ମୁସଲିମ୍ ଜାତୀୟତାବାଦୀଙ୍କୁ ସୋଭିଏତ୍ ସରକାର ନିକଟରେ ପୂର୍ବୋକ୍ତ ଅଭିନନ୍ଦନଟିକୁ ପହଞ୍ଚାଇ ଦେବା ପାଇଁ ମସ୍କୋକୁ ପଠାଯାଇଥିଲା । ସେମାନେ ୟୁରୋପ ଦେଇ ଅନେକ ପଥ ଘୂରି ଶେଷକୁ ୧୯୧୮ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ସୋଭିଏତ୍ ରାଜଧାନୀରେ ପହଞ୍ଚିଥିଲେ । ବୈଦେଶିକ ବିଭାଗ ସଂକ୍ରାନ୍ତ ଜନକମିସାରିଏତ୍ ନିକଟରେ ପ୍ରଦତ୍ତ ସେମାନଙ୍କର ସ୍ମାରକ ଲିପିରେ ଏହି ଭାରତୀୟ ପେଟି-ବୁର୍ଜୁଆ ବିପ୍ଳବୀମାନେ ରୁଷ୍ ବିପ୍ଳବ ପ୍ରତି ସେମାନଙ୍କର ପ୍ରଶସ୍ତି ଜଣାଇବା ସଙ୍ଗେ ସଙ୍ଗେ ଔପନିବେଶିକ ଜୁଆଳିରୁ ମୁକ୍ତିପ୍ରୟାସୀ ଭାରତୀୟ ଆନ୍ଦୋଳନରେ ରୁଷିଆର ସହାୟତା ପାଇବାର ଆଶା ମଧ୍ୟ ପ୍ରକାଶ କରିଥିଲେ । ନଭେମ୍ବର ୨୩ ତାରିଖରେ ପ୍ରତିନିଧି ଦଳଟିକୁ ଲେନିନ୍ ଅଭ୍ୟର୍ଥନା ଜଣାଇଥିଲେ ଏବଂ ଦୁଇ ଦିନ ପରେ ସେମାନେ ନିଖିଳ ରୁଷ୍ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟି ପରିଷଦର ସଭାରେ ଯୋଗ ଦେଇଥିଲେ ଏବଂ ଜବ୍ବାର ସେଠାରେ ବକ୍ତୃତା ଦେଇଥିଲେ । ମସ୍କୋରେ ସେମାନେ ଯାହାସବୁ ଦେଖିଲେ ଏବଂ ଲେନିନ୍ ଓ ସ୍ୱେର୍ଦଲଭ୍‌ଙ୍କ ସହିତ ଯେଉଁ ସାକ୍ଷାତ୍ କରିଥିଲେ, ତାହା ଏହି ଭାରତୀୟ ପ୍ରତିନିଧିମାନଙ୍କ ଉପରେ କେତେକ ଗଭୀର ପ୍ରଭାବ ପକାଇଥିଲା । ଦେଶକୁ ଫେରିଲା ପରେ ସେମାନଙ୍କ ଦ୍ୱାରା ପ୍ରକାଶିତ ଘୋଷଣା ମଧ୍ୟରେ ସେସବୁ ସ୍ପଷ୍ଟ ହୋଇ ଉଠିଥିଲା ।

ପ୍ରବାସୀ ଭାରତୀୟ ବିପ୍ଳବୀମାନେ ମଧ୍ୟ ସୋଭିଏତ୍ ରୁଷିଆ ସହିତ ଯୋଗାଯୋଗ ପ୍ରତିଷ୍ଠା କରିବାକୁ ଆରମ୍ଭ କରି ଦେଇଥିଲେ । ୧୯୧୮, ମାର୍ଚ୍ଚ ମାସରେ ଅସ୍ଥାୟୀ ଭାରତ ସରକାରର (କାବୁଲ) ରାଷ୍ଟ୍ରପତି ମହେନ୍ଦ୍ର ପ୍ରତାପ ପେଟ୍ରଗ୍ରାଡ୍‌ରେ ପହଞ୍ଚିଥିଲେ । ସେଇ ଦିନ ଭାରତ ସହିତ ସଂହତି ପ୍ରଦର୍ଶନ ପାଇଁ ସେଠାରେ ଲୁନାଚାରସ୍କିଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ପରବର୍ତ୍ତୀ କାଳରେ ପ୍ରକାଶିତ ସ୍ମୃତି କଥାରେ ମହେନ୍ଦ୍ର ପ୍ରତାପ ଘଟଣାଟିକୁ ଅବିସ୍ମରଣୀୟ ଓ ବିସ୍ମୟକର ବୋଲି ବର୍ଣ୍ଣନା କରିଥିଲେ । ପରବର୍ଷ ସେଇ ସରକାରର ପ୍ରଧାନମନ୍ତ୍ରୀ ବରକତଉଲ୍ଲାହ୍ ମସ୍କୋ ଆସିଥିଲେ । "ଇଜ୍‌ଭେସ୍ତିଆର" ଜନୈକ ସଂବାଦଦାତାଙ୍କ ସହିତ ଏକ ସାକ୍ଷାତ୍‌କାରରେ ସେ ସୋଭିଏତ୍ ରୁଷିଆ ସଂପର୍କରେ ପ୍ରବାସୀ ଭାରତୀୟ ବିପ୍ଳବୀମାନଙ୍କ ଦ୍ୱାରା ଅନୁସୃତ ନୀତିର ଏକ ସୁସ୍ପଷ୍ଟ ରୂପରେଖା ଉପସ୍ଥାପିତ କରିଥିଲେ । ବରକତଉଲ୍ଲାହ୍ କହିଥିଲେ, ସେ କମ୍ୟୁନିଷ୍ଟ ବା ସମାଜବାଦୀ ନୁହନ୍ତି, କିନ୍ତୁ ତାଙ୍କର ରାଜନୈତିକ କର୍ମସୂଚୀ ହେଲା ଏସିଆରୁ ବ୍ରିଟିଶ୍‌ମାନଙ୍କୁ

ବିଚାଚ୍ଚନ କରିବା । ସେ କମ୍ୟୁନିଷ୍ଟମାନଙ୍କ ଭଳି ନିଜକୁ ୟୁରୋପୀୟ ପୁଞ୍ଜିବାଦର ଜଣେ ଆପୋଷହୀନ ଶତ୍ରୁ ବୋଲି ମନେ କରନ୍ତି ଏବଂ ଏହି ଅର୍ଥରେ କମ୍ୟୁନିଷ୍ଟମାନଙ୍କର ପ୍ରବାସୀ ବିପ୍ଳବୀମାନଙ୍କର ପ୍ରକୃତ ସହଯୋଗୀ ବୋଲି ଉଲ୍ଲେଖ କରିଥିଲେ ।

୧୯୧୯ ଖ୍ରୀଷ୍ଟାବ୍ଦରେ ମହେନ୍ଦ୍ର ପ୍ରତାପ ଓ ବରକତଉଲ୍ଲାହ୍‌ଙ୍କ ନେତୃତ୍ୱରେ ପ୍ରବାସୀ ଭାରତୀୟ ବିପ୍ଳବୀମାନଙ୍କର ଏକ ଦଳ ମସ୍କୋ ପରିଦର୍ଶନରେ ଆସିଥିଲେ ଏବଂ ମେ ମାସ ୭ ତାରିଖରେ ଲେନିନ୍ ସେମାନଙ୍କୁ ଅଭ୍ୟର୍ଥନା ଜଣାଇଥିଲେ ।

ତା'ପରେ ଲେନିନ୍ ଓ ଭାରତୀୟ ବିପ୍ଳବୀମାନଙ୍କ ମଧ୍ୟରେ ଆଉରି କେତେକ ସାକ୍ଷାତ୍‌କାର ଘଟିଥିଲା । ପୃଥିବୀର ପ୍ରଥମ ଶ୍ରମିକ-କୃଷକ ରାଷ୍ଟ୍ରର ନେତା ଭାରତର ଜାତୀୟ-ମୁକ୍ତି ସଂଗ୍ରାମର ବିକାଶ ସଂପର୍କରେ ଖୁବ୍ ଆଗ୍ରହୀ ଥିଲେ । ତାଙ୍କ ମତରେ, ଏହା ଥିଲା ସାମ୍ରାଜ୍ୟବାଦ ବିରୁଦ୍ଧରେ ଦୁନିଆ ବ୍ୟାପୀ ଲଢ଼େଇରେ ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ । "ବରଂ କମ୍, କିନ୍ତୁ ଭଲ କର" ପ୍ରବନ୍ଧରେ ଲେନିନ୍ ଲେଖିଥିଲେ, "ରୁଷିଆ, ଭାରତ, ଚୀନ୍, ଆଦି ଦେଶ ପୃଥିବୀର ବୃହତ୍ତମ ଜନସଂଖ୍ୟାର ଅଧିକାରୀ ହେବାର ଘଟଣାଟି ସଂଗ୍ରାମର ଫଳାଫଳକୁ ନିର୍ଦ୍ଧାରଣ କରିବ । ଗତ କେଇ ବର୍ଷ ମଧ୍ୟରେ ଏହି ସଂଖ୍ୟାଗରିଷ୍ଠମାନେ ଅତି ଦ୍ରୁତତାର ସହିତ ମୁକ୍ତ ସଂଗ୍ରାମର ଅଂଶୀଦାର ହୋଇଛନ୍ତି ।"*

କାବୁଲରେ ଅନୁଷ୍ଠିତ ଭାରତୀୟ ବିପ୍ଳବୀ ସମ୍ମିଳନୀର (ପ୍ରତାପଙ୍କ ଦ୍ୱାରା ପ୍ରତିଷ୍ଠିତ) ସମାବେଶରୁ ପ୍ରେରିତ ଅଭିନନ୍ଦନ ବାଣୀର ଜବାବରେ ୧୯୨୦ ମସିହା ମେ ମାସ ୨୦ ତାରିଖରେ ଲେନିନ୍ ତାଙ୍କ ବିସ୍ମୟକର ଅନ୍ତର୍ଦୃଷ୍ଟି ଦ୍ୱାରା ଭାରତର ସଂଗ୍ରାମରେ ସାଫଲ୍ୟ ଲାଭର ଅନ୍ୟତମ ନିର୍ଦ୍ଧାରକ ଉପାଦାନ, ହିନ୍ଦୁ-ମୁସଲିମ୍ ଐକ୍ୟର ଦିଗଟି ପ୍ରତି ଦୃଷ୍ଟି ଆକର୍ଷଣ କରି ଲେଖିଥିଲେ: "ମୁସଲମାନ ଓ ଅମୁସଲମାନମାନଙ୍କ ମଧ୍ୟରେ ଘନିଷ୍ଠ ମୈତ୍ରୀକୁ ଆମେ ସ୍ୱାଗତ ଜଣାଉଛୁ । ଏହି ମୈତ୍ରୀ ପ୍ରାଚ୍ୟର ସମସ୍ତ ଶ୍ରମଜୀବୀମାନଙ୍କ ମଧ୍ୟରେ ବିସ୍ତାର ଲାଭ କରୁ । ଏହା ହିଁ ଆମର ଆନ୍ତରିକ ଇଚ୍ଛା ।"**

ସୁତରାଂ, ଅକ୍ଟୋବର ବିପ୍ଳବର ବିଜୟ ଭାରତୀୟ ମୁକ୍ତି ଆନ୍ଦୋଳନ ଦ୍ୱାରା ପ୍ରତିଷ୍ଠିତ ଆନ୍ତର୍ଜାତିକ ମୈତ୍ରୀର ଉଲ୍ଲେଖଯୋଗ୍ୟ ସଂପ୍ରସାରଣକୁ ଅପରିହାର୍ଯ୍ୟ କରି ତୋଳିଥିଲା । ଏସବୁଥିରେ ଗୁଣଗତ ଭାବେ ଏହା ଅନୁପ୍ରବେଶ କରାଇଥିଲା ଏକ ନୂତନ ଉପାଦାନ । ସେ ଉପାଦାନଟି ହେଉଛି, ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ର ଓ ପ୍ରାଚ୍ୟର ଜନସାଧାରଣଙ୍କର ଜାତୀୟ-ମୁକ୍ତି ସଂଗ୍ରାମ ମଧ୍ୟରେ ମୈତ୍ରୀ ।

ଭାରତୀୟ ଜାତୀୟ ଆନ୍ଦୋଳନ ଅନ୍ତର୍ଭୁକ୍ତ ବିଭିନ୍ନ ଦଳ ଉପରେ ଏହାର ପ୍ରଭାବ ଭିନ୍ନ ଭିନ୍ନ ହୋଇଥିଲା । ଅକ୍ଟୋବର ସମାଜବାଦୀ ବିପ୍ଳବର ପ୍ରଭାବ ଫଳରେ ଜାତୀୟତାବାଦୀମାନଙ୍କର ବାମପନ୍ଥୀ ଦଳ ଦ୍ୱାରା ଉପସ୍ଥାପିତ ସାମାଜିକ କର୍ମସୂଚୀ ଅନେକ ର୍ୟାଡିକାଲ ହୋଇ ଉଠିଥିଲା ଏବଂ ଏମାନେ କ୍ରମଶଃ ଶ୍ରମିକ ଶ୍ରେଣୀର ଐତିହାସିକ ଭୂମିକାକୁ ଉପଲବ୍ଧି କରିବାକୁ ଆରମ୍ଭ କରିଥିଲେ । ୧୯୧୯ ଖ୍ରୀଷ୍ଟାବ୍ଦର ଶେଷରେ ଏକ ଜନସଭାରେ ବକ୍ତୃତା ଦେଇ ତିଳକ କହିଥିଲେ: "ସମୟର ପ୍ରକ୍ରିୟା ସହିତ

---

*V. I. Lenin, "Collected Works", vol. 33, p. 500.

** V. I. Lenin, "To the Indian Revolutionary Association", "Collected Works", vol. 31, p. 138.

ଶ୍ରମିକ ସଂଗଠନଗୁଡ଼ିକର କ୍ଷମତା ବୃଦ୍ଧି ପାଇବାରେ ଲାଗିବ ଏବଂ ଶ୍ରମିକମାନେ ଶାସକ ହେବାର ଦିନ ମଧ୍ୟ ଆଗେଇ ଆସିବ ।" ଚରମପନ୍ଥୀମାନଙ୍କର ଆଉ ଏକ ନେତା ଲାଲା ଲଜପତ୍ ରାୟ ଶ୍ରମିକମାନଙ୍କ ସଂଗ୍ରାମରେ ଧର୍ମଘଟର ଅର୍ଥ ବ୍ୟାଖ୍ୟା କରି କହିଥିଲେ ଯେ, ୟୁରୋପୀୟ ଶ୍ରମିକମାନେ ପ୍ରତ୍ୟକ୍ଷ ସଂଗ୍ରାମର ଆଉ ଏକ ହତିଆର ଲାଭ କରିଛନ୍ତି । ଏମାନଙ୍କର ଅଗ୍ରଭାଗରେ ଅଛନ୍ତି ରୁଷ୍ ଶ୍ରମିକମାନେ, ଯେଉଁମାନେ ସର୍ବହରା ଏକନାୟକତ୍ୱ ପ୍ରତିଷ୍ଠା କରିବାକୁ ଦୃଢ଼ ପ୍ରତିଜ୍ଞ ।

ଅକ୍ଟୋବର ବିପ୍ଳବର ପ୍ରଭାବ ନିଶ୍ଚିତ ଭାବେ "ଚରମପନ୍ଥୀ" ଓ ବିପ୍ଳବୀମାନଙ୍କର କେତେକ ଗୋଷ୍ଠୀ ଏବଂ ବ୍ରିଟିଶ୍‌ବିରୋଧୀ ଗୁପ୍ତ ସମିତିଗୁଡ଼ିକର ସଦସ୍ୟମାନଙ୍କ ପକ୍ଷରେ ଦ୍ରୁତ ବୈଜ୍ଞାନିକ ସମାଜବାଦୀ ଦୃଷ୍ଟିଭଙ୍ଗି ଗ୍ରହଣ କରିବାକୁ ସହଜ କରି ଦେଇଥିଲା ।

ରାଜନୈତିକ ଜାତୀୟ ସଂଗଠନଗୁଡ଼ିକ ମଧ୍ୟରେ ସର୍ବାଧିକ ପ୍ରଭାବଶାଳୀ ଭାରତର ଜାତୀୟ କଂଗ୍ରେସର ନେତୃବୃନ୍ଦ ସାମଗ୍ରିକ ଭାବେ ଅକ୍ଟୋବର ବିପ୍ଳବକୁ ସ୍ୱାଗତ ଜଣେଇଥିଲେ, ଯଦିଓ ସେମାନେ ଏହାର ସାମାଜିକ-ରାଜନୈତିକ କର୍ମସୂଚୀକୁ ସମର୍ଥନ କରି ନଥିଲେ । ୧୯୧୭ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ଏକ ଅଧିବେଶନର ଉଦ୍‌ବୋଧନ କାଳରେ ଆନି ବେସାନ୍ତ ଘୋଷଣା କରିଥିଲେ "ରୁଷ୍ ବିପ୍ଳବ ଏବଂ ୟୁରୋପ ଓ ଏସିଆର ରୁଷ୍ ପ୍ରଜାତନ୍ତ୍ରର ସମ୍ଭାବ୍ୟ ଉନ୍‌ମେଷ ଭାରତରେ ଇତିପୂର୍ବରୁ ବିଦ୍ୟମାନ ପରିସ୍ଥିତିଗୁଡ଼ିକୁ ପୂରାପୂରି ବଦଳେଇ ଦେଇଛି । ଏବେଠୁଁ ଆରମ୍ଭ କରି ଭାରତ ସ୍ୱାଧୀନତା ଅର୍ଜନ କଲା ପର୍ଯ୍ୟନ୍ତ ଏହା ତା'ର ସ୍ୱାଧୀନ ପ୍ରତିବେଶୀମାନଙ୍କୁ ସର୍ବଦା ଦେଖିବାରେ ଲାଗିବ ଏବଂ ସେମାନଙ୍କ ଅବସ୍ଥାନ ସହିତ ତା'ର ବିପରୀତତା ଏ ଦେଶରେ ବିଶୃଙ୍ଖଳାକୁ ପ୍ରୋତ୍ସାହିତ କରିବ ।"*

ଭାରତରେ ଅକ୍ଟୋବର ବିପ୍ଳବର ପ୍ରଭାବ ଥିଲା ଏକ ଦୀର୍ଘ ଏବଂ ବହୁମୁଖୀ ପ୍ରକ୍ରିୟା । ଭାରତୀୟ ସମାଜର ବିଭିନ୍ନ ଶ୍ରେଣୀ ଏବଂ ଏସବୁର ପ୍ରତିନିଧି ହିସାବରେ ବିଭିନ୍ନ ସାମାଜିକ-ରାଜନୈତିକ ସଂଗଠନସମୂହ ରୁଷିଆର ଘଟଣାବଳୀରୁ ଯେଉଁ ଶିକ୍ଷା ଲାଭ କରିଥିଲେ, ତନ୍‌ମଧ୍ୟରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଓ ଅଭ୍ରାନ୍ତ ହେଲା : ଜନସାଧାରଣଙ୍କ ସକ୍ରିୟ ଅଂଶଗ୍ରହଣ ଉପରେ ହିଁ କେବଳ ମୁକ୍ତି ସଂଗ୍ରାମର ସାଫଲ୍ୟ ସମ୍ଭବ ।

ଇଂରେଜ-ଭାରତୀୟ ଔପନିବେଶିକ ସରକାର ତା'ର ନିଜସ୍ୱ ଚରିତ୍ର ଅନୁଯାୟୀ ରୁଷିଆର ବୈପ୍ଳବିକ ଘଟଣାବଳୀ ପାଇଁ ପ୍ରତିକ୍ରିୟା ଜଣାଇଥିଲା ।

## ଭାରତରେ ବ୍ରିଟିଶ୍ ନୀତି । ମଣ୍ଟେଗୁ–ଚେମ୍‌ସଫୋର୍ଡ ସଂସ୍କାର

୧୯୧୭ ଖ୍ରୀଷ୍ଟାବ୍ଦର ମେ ମାସରେ ବଡ଼ଲାଟ୍ ଚେମ୍‌ସଫୋର୍ଡ ଭାରତରେ ବ୍ରିଟିଶ୍ ନୀତି ପରିବର୍ତ୍ତନର ଜରୁରୀ ପ୍ରୟୋଜନ ପ୍ରତି ବ୍ରିଟିଶ୍ ସରକାରର ଦୃଷ୍ଟି ଆକର୍ଷଣ କରିଥିଲେ । ରୁଷ୍ ବିପ୍ଳବର ପ୍ରଭାବ ଫଳରେ ଦେଶର ପରିସ୍ଥିତି ବଦଳି ଯାଇଥିବା ହେତୁ ଏହି ପଦକ୍ଷେପ ପ୍ରୟୋଜନୀୟ ହୋଇ ପଡ଼ିଥିଲା । ଏହି ବର୍ଷ ଅଗଷ୍ଟ ୨୦ ତାରିଖରେ ଭାରତ ସଚିବ ମଣ୍ଟେଗୁ ବିଲାତର କମନ୍‌ସ

---

* "Congress Presidential Addresses" (Second Series), Madras, 1934, p. 310.

ସଭାରେ ଭାରତରେ "ଦାୟିତ୍ୱଶୀଳ ସରକାର" ଗଠନ ପାଇଁ ଅନୁକୂଳ ଭିତ୍ତି ସ୍ଥାପନ ଲକ୍ଷ୍ୟରେ ଏକ ସରକାରୀ ବିବୃତି ପ୍ରଦାନ କରିଥିଲେ । ଏହି ବିବୃତି ଅନୁଯାୟୀ ବ୍ରିଟିଶ୍ ସରକାର ଓ ପାର୍ଲିଆମେଣ୍ଟ ପାଇଁ ମଣ୍ଟେଗୁ ଓ ଚେମ୍‌ସଫୋର୍ଡଙ୍କ ଦ୍ୱାରା ପ୍ରଣୀତ ଭାରତରେ ବ୍ରିଟିଶ୍ ନୀତି ସଂପର୍କିତ ରିପୋର୍ଟଟି ୧୯୧୮, ଜୁଲାଇ ମାସରେ ପ୍ରକାଶ ପାଇଥିଲା । ଏହି ରିପୋର୍ଟର ମୂଳ ବିଷୟଗୁଡ଼ିକ ବ୍ରିଟିଶ୍ ପାର୍ଲିଆମେଣ୍ଟ କର୍ତ୍ତୃକ ୧୯୧୯ ଖ୍ରୀଷ୍ଟାବ୍ଦରେ ଗୃହୀତ ଓ ମଣ୍ଟେଗୁ—ଚେମ୍‌ସଫୋର୍ଡ ସଂସ୍କାର ନାମରେ ପରିଚିତ ଭାରତ ଆଇନ୍‌ର ଅନ୍ତର୍ଭୁକ୍ତ ହୋଇଥିଲା ।

ଏହି ଆଇନ୍ ଅନୁସାରେ କେନ୍ଦ୍ରୀୟ (ପୂର୍ଣ୍ଣ ବୟସ୍କମାନଙ୍କର ଶତକଡ଼ା ଏକ ଭାଗ) ଓ ପ୍ରାଦେଶିକ (ପୂର୍ଣ୍ଣ ବୟସ୍କମାନଙ୍କର ଶତକଡ଼ା ୩ ଭାଗ) ଆଇନ୍ ସଭାର ନିର୍ବାଚକ ମଣ୍ଡଳୀର କେତେକ ସଂପ୍ରସାରଣ ଘଟିଥିଲା । ୧୯୦୯ ଖ୍ରୀଷ୍ଟାବ୍ଦରେ ଗୃହୀତ ମର୍ଲି—ମିଣ୍ଟୋ ସଂସ୍କାରରେ ପୂର୍ଣ୍ଣ ବୟସ୍କମାନଙ୍କର ମାତ୍ର ଶତକଡ଼ା ୦.୨ ଭାଗ ଭୋଟାଧିକାର ଲାଭ କରିଥିବାର ହିସାବଟି ଲକ୍ଷଣୀୟ । କେନ୍ଦ୍ରୀୟ ଆଇନ୍ ସଭାର ନିମ୍ନ ପରିଷଦରେ (ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି) ଓ ଉଚ୍ଚ ପରିଷଦରେ (କାଉନ୍‌ସିଲ ଅଫ୍ ଷ୍ଟେଟସ୍) ଏବଂ ପ୍ରାଦେଶିକ ଆଇନ୍ ସଭାଗୁଡ଼ିକରେ ଅବିଳମ୍ବେ ଏକ ସ୍ଥାୟୀ ନିର୍ବାଚିତ ସଂଖ୍ୟାଗରିଷ୍ଠତାର ଉଦ୍‌ଭବ ଘଟିଥିଲା ।

ବଡ଼ଲାଟ୍ ଏବଂ ପ୍ରାଦେଶିକ ଲାଟ୍‌ମାନଙ୍କର କାର୍ଯ୍ୟ ନିର୍ବାହୀ ପରିଷଦଗୁଡ଼ିକରେ ଭାରତୀୟମାନଙ୍କୁ ଆସନ ଦିଆଯାଇଥିଲା ଏବଂ ସେମାନେ ସ୍ୱାସ୍ଥ୍ୟ, ଶିକ୍ଷା ଓ ଔପନିବେଶିକ ସରକାରର ଦ୍ୱିତୀୟ ଶ୍ରେଣୀର ଗୁରୁତ୍ୱପୂର୍ଣ୍ଣ ଅନ୍ୟାନ୍ୟ କେତେକ ବିଭାଗରେ ମନ୍ତ୍ରୀ ଦାୟିତ୍ୱ ପାଳନର ଅଧିକାର ଲାଭ କରିଥିଲେ ।

ଶାସନ ସଂସ୍କାରର ଏହିସବୁ ବ୍ୟବସ୍ଥା ଥିଲା ଭାରତର ଧନିକ ଶ୍ରେଣୀଗୁଡ଼ିକୁ କେତେକ ସୁବିଧାଦାନ ସ୍ୱରୂପ । ତା'ଛଡ଼ା, ଏକ ଦିଗରେ, ଜାତୀୟତାବାଦୀ ବୁର୍ଜୁଆ, ଜମିଦାର ଏବଂ ବୁର୍ଜୁଆ ଓ ଜମିମାଲିକ ପରିବାରଗୁଡ଼ିକର ଶକ୍ତିଶାଳୀ ବୁଦ୍ଧିଜୀବୀ ଗୋଷ୍ଠୀ, ଏବଂ, ଅନ୍ୟ ଦିଗରେ, ଜାତୀୟ ମୁକ୍ତି ଆନ୍ଦୋଳନ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିବା ଥିଲା ଏହାର ଲକ୍ଷ୍ୟ ।

ପ୍ରସଙ୍ଗତଃ, ଏହା ଦ୍ୱାରା ଆଇନ୍ ସଭାର ନିର୍ବାଚନର ସାଂପ୍ରଦାୟିକ ପ୍ରତିନିଧିତ୍ୱ ବ୍ୟବସ୍ଥା ପ୍ରବର୍ତ୍ତନ ମାଧ୍ୟମରେ ଭାରତୀୟ ଜାତୀୟତାବାଦୀ କର୍ମୀମାନଙ୍କୁ ଭାଗ ଭାଗ କରି ଦେବାର ବ୍ୟବସ୍ଥାଟି ଉଲ୍ଲେଖଯୋଗ୍ୟ । ଏହି ବ୍ୟବସ୍ଥା ଦ୍ୱାରା କେବଳ ହିନ୍ଦୁ ଓ ମୁସଲମାନମାନଙ୍କର ପୃଥକ୍ ଭୋଟ ନୁହେଁ, ଶେଷୋକ୍ତମାନେ କେତେକ ବିଶେଷ ସୁବିଧା ପାଇବେ ବୋଲି ନିଶ୍ଚୟତା ପାଇଥିଲେ । ମୁସଲିମ୍ ସଂଖ୍ୟାଲଘୁ ପ୍ରଦେଶଗୁଡ଼ିକରେ ସେମାନଙ୍କ ପାଇଁ ୩୦ ଶତାଂଶ ଆସନ ସଂରକ୍ଷିତ ରଖିବା ସମେତ ମୁସଲିମ୍ ସଂଖ୍ୟାଗରିଷ୍ଠ ପ୍ରଦେଶମାନଙ୍କରେ ସେମାନଙ୍କୁ ଅର୍ଦ୍ଧେକରୁ ବେଶି ଆସନର ନିଶ୍ଚୟତା ଦିଆଯାଇଥିଲା ।

ଏସବୁ ଦ୍ୱାରା ନୂତନ ଭାରତ ଆଇନ୍ ଏ ଦେଶରେ ହିନ୍ଦୁ-ମୁସଲିମ୍ ବିରୋଧିତାକୁ ସୃଷ୍ଟି କରିବାରେ ବ୍ରିଟିଶ୍ ନୀତିକୁ ଆଉରି ପ୍ରଶସ୍ତ କରିଥିଲା ।

ଭାରତୀୟ ସମାଜର ଉଚ୍ଚ ସ୍ତରର ପ୍ରତିନିଧିମାନଙ୍କୁ ଦେଶର ଶାସନ ଯନ୍ତ୍ରର ଊର୍ଦ୍ଧ୍ୱ ସ୍ତରରେ ପହଞ୍ଚାଇ ଦେବାର କେତେକ ସୁଯୋଗ ଦେବା ସତ୍ତ୍ୱେ ବ୍ରିଟିଶ୍‌ମାନେ ବାସ୍ତବରେ ସେମାନଙ୍କର କୌଣସି କ୍ଷମତାକୁ ତ୍ୟାଗ କରି ନଥିଲେ । ପୂର୍ବ ପରି ଅର୍ଥ, ସୈନ୍ୟବାହିନୀ, ପୁଲିସ୍, ଆଦି

ସବୁକିଛି ସେମାନଙ୍କ ପୂର୍ଣ୍ଣ ନିୟନ୍ତ୍ରଣରେ ଥିଲା । ତା'ଛଡ଼ା ବଡ଼ଲାଟ୍ ଓ ପ୍ରାଦେଶିକ ଲାଟ୍‌ମାନଙ୍କର କାର୍ଯ୍ୟନିର୍ବାହୀ ପରିଷଦକୁ ଭାଙ୍ଗି ଦେବା ଏବଂ ଏହି ପରିଷଦ ଦ୍ୱାରା ଗୃହୀତ ସିଦ୍ଧାନ୍ତ ମନଃପୂତ ନହେଲେ, ତାକୁ ନାକଚ କରି ଦେବାର କ୍ଷମତା ଅକ୍ଷୁଣ୍ଣ ରହିଥିଲା । ନିର୍ବାଚନୀ ନୀତି ଓ କାର୍ଯ୍ୟନିର୍ବାହୀ ପରିଷଦରେ ଭାରତୀୟ ମନ୍ତ୍ରୀମାନଙ୍କର ସୀମିତ କ୍ଷମତା ସାଙ୍ଗକୁ ବଡ଼ଲାଟ୍ ତଥା ତାଙ୍କ ପ୍ରତିନିଧି ହିସାବରେ ପ୍ରାଦେଶିକ ଗଭର୍ଣ୍ଣରମାନଙ୍କର ସ୍ୱୈରାଗ୍ରହୀ କ୍ଷମତାର ଏହା ଦ୍ୱୈତ ଶାସନ ନାମରେ ପରିଚିତ ଥିଲା । ଭାରତରେ ସେମାନଙ୍କର ସାମାଜିକ ଅବସ୍ଥାନକୁ ଦୃଢ଼ କରିବା ପାଇଁ ବ୍ରିଟିଶ୍‌ମାନେ ଏଥି ସଙ୍ଗେ ସଙ୍ଗେ ଦେଶର ଜାତୀୟ-ମୁକ୍ତି ଆନ୍ଦୋଳନକୁ ଦମନ କରିବାର ଯନ୍ତ୍ରଟିକୁ ଆଉରି ଶକ୍ତିଶାଳୀ କରିବାର ବ୍ୟବସ୍ଥା ଗ୍ରହଣ କରିଥିଲେ ।

ବ୍ରିଟିଶ୍ ବିଚାରପତି ରାଓଲାଟଙ୍କ ନେତୃତ୍ୱାଧୀନ କମିଟି କର୍ତ୍ତୃକ ପ୍ରଣୀତ ଭାରତରେ ବ୍ରିଟିଶ୍‌ବିରୋଧୀ କାର୍ଯ୍ୟକଳାପ ସଂପର୍କିତ ରିପୋର୍ଟଟି ୧୯୧୮ ମସିହାରେ ପ୍ରକାଶିତ ହୋଇଥିଲା । ଭାରତର ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିରୁଦ୍ଧରେ ନିର୍ଯ୍ୟାତନକୁ ତୀବ୍ରତର କରିବା ପାଇଁ ଏହି କମିଟିର ନିର୍ଦ୍ଧାରିତ ସିଦ୍ଧାନ୍ତ ଓ ପ୍ରସ୍ତାବସମୂହର ଭିତ୍ତିରେ "ରାଓଲାଟ ଆଇନ୍" ନାମରେ ଏକ ନୂତନ ଆଇନ୍ ୧୯୧୯ ମସିହା ମାର୍ଚ୍ଚ ୧୮ ତାରିଖରେ ଜାରି କରାଯାଇଥିଲା । ଏହି ନୂତନ ମାରାତ୍ମକ ଆଇନ୍ ବଳରେ ବଡ଼ଲାଟ୍ ଓ ପ୍ରାଦେଶିକ ଲାଟ୍‌ମାନେ ଯେକୌଣସି ବ୍ୟକ୍ତିକୁ ଗିରଫ୍ କରି ବିନା ବିଚାରରେ ଅଟକ ରଖି ପାରୁଥିଲେ ଓ ନିର୍ବାସିତ କରି ପାରୁଥିଲେ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଏ ଦେଶରେ ଅନୁସୃତ ବ୍ରିଟିଶ୍ "ପ୍ରଲୋଭନ-ବନାମ-ନିର୍ଯ୍ୟାତନ" ନୀତିର କାର୍ଯ୍ୟକାରିତା ଶେଷକୁ ବିଫଳ ହୋଇଥିଲା । ଜାତୀୟ-ମୁକ୍ତି ସଂଗ୍ରାମର ପ୍ରବଳ ଜୁଆରର ମୁହଁରେ ମଣ୍ଟେଗୁ–ଚେମସ୍‌ଫୋର୍ଡ ସଂସ୍କାର ବା "ରାଓଲାଟ ଆଇନ୍"ର ଫଳପ୍ରସୂତାର ସମ୍ଭାବନା ନଥିଲା । ଏଥି ସଙ୍ଗେ ସଙ୍ଗେ ଏହି ବ୍ୟବସ୍ଥାବଳୀ ଗଣ ସଂଗ୍ରାମରେ ଓ ସଂଗଠିତ ଜାତୀୟ ଆନ୍ଦୋଳନର ଧାରା ପରିବର୍ତ୍ତନ କରିବାରେ ଅନୁଘଟକର ଭୂମିକା ପାଳନ କରିଥିଲା ।

## କଂଗ୍ରେସର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ । ମୋହାନଦାସ କରମଚନ୍ଦ ଗାନ୍ଧୀଙ୍କ କର୍ତ୍ତୃକ ଜାତୀୟ ଆନ୍ଦୋଳନର ନେତୃତ୍ୱ ଗ୍ରହଣ

ତିଲକଙ୍କ ନେତୃତ୍ୱରେ ଚରମପନ୍ଥୀମାନଙ୍କର ଜାତୀୟ କଂଗ୍ରେସ ମଧ୍ୟକୁ ପ୍ରତ୍ୟାବର୍ତ୍ତନ ଏବଂ ହୋମ୍ ରୁଲ୍ ଲୀଗ୍‌ର କାର୍ଯ୍ୟକଳାପ ଏହା ପରେ ପାର୍ଟିର ମଧ୍ୟପନ୍ଥୀ ଉଦାରନୈତିକ ନେତୃତ୍ୱ ସହିତ ଆଉ ଏକ ବିରୋଧୀ ନେତୃତ୍ୱର କ୍ରମାଗତ ଉନ୍ମେଷକୁ ସହାୟତା ଯୋଗାଇଥିଲା । ୧୯୧୮ ଖ୍ରୀଷ୍ଟାବ୍ଦରେ ଅଗଷ୍ଟ ମାସରେ ବମ୍ବେରେ ମଣ୍ଟେଗୁ–ଚେମ୍‌ସଫୋର୍ଡ ସଂସ୍କାର ଉପରେ ଆଲୋଚନା ପାଇଁ ଆହୂତ କଂଗ୍ରେସର ଏକ ବିଶେଷ ଅଧିବେଶନରେ ଏହି ପ୍ରକାଶ୍ୟ ବିଭେଦ ସ୍ପଷ୍ଟ ହୋଇ ଯାଇଥିଲା । ଅଧିକାଂଶ ଭୋଟରେ ଏହି ବ୍ରିଟିଶ୍ ପ୍ରସ୍ତାବଟି "ଅଯଥେଷ୍ଟ, ଅଯୋଗ୍ୟ ଓ ନୈରାଶ୍ୟଜନକ" ବୋଲି ପ୍ରତ୍ୟାଖ୍ୟାତ ହୋଇଥିଲା । ଜନସାଧାରଣଙ୍କର ବୁର୍ଜୁଆ ଓ ପେଟି-ବୁର୍ଜୁଆ ସ୍ତରଗୁଡ଼ିକ ମଧ୍ୟରେ ବ୍ୟାପକ ବିରୋଧୀ ମନୋଭାବଟି ଜାତୀୟ କଂଗ୍ରେସ କ୍ରମଶଃ ସ୍ପଷ୍ଟତର ଭାବେ ପ୍ରକାଶ କରିଥିଲା ।

ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ଓ ଅନ୍ୟାନ୍ୟ କେତେକଙ୍କ ନେତୃତ୍ୱରେ କଂଗ୍ରେସର ଦକ୍ଷିଣପନ୍ଥୀମାନେ

ସେତେବେଳେ କଂଗ୍ରେସ ତ୍ୟାଗ କଲେ ଏବଂ ସେମାନଙ୍କ ଉଦ୍ୟୋଗରେ ଲିବରାଲ ଫେଡେରେସନ ନାମରେ ଏକ ନୂତନ ପାର୍ଟି ଗଠିତ ହୋଇଥିଲା । ବୁର୍ଜୁଆ ଏବଂ ଜମିଦାରମାନଙ୍କର ଊର୍ଦ୍ଧ୍ବତନ ସ୍ତରର ପ୍ରତିନିଧିମାନଙ୍କୁ ନେଇ ଗଠିତ ଏହି ରାଜନୈତିକ ସଂଗଠନଟି ପ୍ରଧାନତଃ ଭାରତର ସହଯୋଗୀ ନିର୍ଭରଶୀଳ ବୁର୍ଜୁଆମାନଙ୍କର ସ୍ୱାର୍ଥ ରକ୍ଷା କରୁଥିଲା ଏବଂ ପରବର୍ତ୍ତୀ କାଳରେ ଔପନିବେଶିକ ସରକାରକୁ ପୂର୍ଣ୍ଣ ସମର୍ଥନ ଦେଉଥିଲା । କହିବା ବାହୁଲ୍ୟ ଯେ, ଏହି ପାର୍ଟି ଭାରତର ସାମାଜିକ-ରାଜନୈତିକ କ୍ଷେତ୍ରରେ କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରି ପାରି ନଥିଲା ।

ଏହା ପରେ କଂଗ୍ରେସରେ ଗାନ୍ଧୀଙ୍କ ପ୍ରଭାବ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଥିଲା । ଭାରତରେ ତାଙ୍କ ଦ୍ୱାରା ପରିଚାଳିତ ଦୁଇଟି ସଫଳ ସତ୍ୟାଗ୍ରହ ଏବଂ ଆହମଦାବାଦରେ ତାଙ୍କ ଦ୍ୱାରା ସଂଗଠିତ ଶ୍ରମିକମାନଙ୍କର ଟ୍ରେଡ୍‌ୟୁନିଅନ୍, ସଂବାଦପତ୍ରରେ ଘନ ଘନ ପ୍ରକାଶିତ ପ୍ରବନ୍ଧାବଳୀ ଓ ରାଜନୈତିକ ସଭାରେ ପ୍ରଦତ୍ତ ବକ୍ତୃତାଗୁଡ଼ିକ ଦ୍ୱାରା ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗାନ୍ଧୀ ଭାରତର ଜାତୀୟତାବାଦୀମାନଙ୍କ ମଧ୍ୟରେ ସର୍ବାଧିକ ଜନପ୍ରିୟ ହୋଇ ଉଠିଥିଲେ । କଂଗ୍ରେସ ସହିତ ସହଯୋଗିତା ସତ୍ତ୍ୱେ ପ୍ରଥମେ ପ୍ରଥମେ ସେ କଂଗ୍ରେସର ବାହାରେ ରହି ତାଙ୍କ କାର୍ଯ୍ୟକଳାପ ଚଳାଉଥିଲେ ।

ଜାତୀୟ ଭିତ୍ତିରେ ଗଣ ଆନ୍ଦୋଳନ ସଂଗଠନ କରିବାରେ ଗାନ୍ଧୀଙ୍କ ପ୍ରଥମ ପ୍ରଧାନ ଉଦ୍ୟୋଗଟି ହେଲା "ରାଓଲଟ ଆଇନ୍" ବିରୁଦ୍ଧରେ ତାଙ୍କର ପ୍ରତିବାଦ । ୧୯୧୮ ଖ୍ରୀଷ୍ଟାବ୍ଦରେ ସହକର୍ମୀ ଓ ସହଯୋଗୀମାନଙ୍କ ସହାୟତାରେ ସେ "ସତ୍ୟାଗ୍ରହର ଏକ ଶପଥକୁ" ସୂତ୍ରବଦ୍ଧ ଏବଂ ସ୍ୱାକ୍ଷରିତ କରିଥିଲେ । ତା'ପରେ ଆଇନ୍ ଅମାନ୍ୟ କରିବା ମାଧ୍ୟମରେ ଭାରତର ଜାତୀୟ ଆନ୍ଦୋଳନକୁ ଦମନକାରୀ ଏହି ଆଇନ୍ ଓ ଅନୁରୂପ ଆଇନ୍‌ସମୂହ ବିରୁଦ୍ଧରେ ସଂଗ୍ରାମ ପାଇଁ ଦୃଢ଼ ଶପଥ ଗ୍ରହଣ କରିଥିଲେ । ଗାନ୍ଧୀ ବମ୍ବେରେ "ଏକ ସତ୍ୟାଗ୍ରହ ସଭା" ଆହ୍ୱାନ କଲେ ଏବଂ ସେଥିରେ "ସତ୍ୟାଗ୍ରହ ଶପଥ" ପାଇଁ ସ୍ୱାକ୍ଷରାଭିଯାନ ଚାଲିଥିଲା । ଏହି ଆନ୍ଦୋଳନର ସାଫଲ୍ୟ ଫଳରେ ଗାନ୍ଧୀ ପରବର୍ତ୍ତୀ ପଦକ୍ଷେପ ନେବାକୁ ସମର୍ଥ ହୋଇଥିଲେ ଏବଂ ଏହି ସଭା ନାମରେ ଓ "ରାଓଲାଟ ଆଇନ୍" ବିରୁଦ୍ଧରେ ସେ ୧୯୧୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ସାରା ଦେଶରେ ଏକ ସାଧାରଣ ହରତାଳ ପାଇଁ ଆହ୍ୱାନ ଦେଇଥିଲେ । ପ୍ରାର୍ଥନା ଏବଂ ଅନଶନ ମାଧ୍ୟମରେ ହିନ୍ଦୁ ମୁସଲମାନ ସମସ୍ତଙ୍କ ନିକଟରେ ଏହି ଦିନଟିକୁ ପାଳନ କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । ହରତାଳ ଦିନଟି ଥିଲା ୧୯୧୯, ଏପ୍ରିଲ ୬ ତାରିଖ । ଗାନ୍ଧୀଙ୍କ ଆହ୍ୱାନ ପ୍ରତି ବ୍ୟାପକ ସୁପ୍ରତିକ୍ରିୟା ଏବଂ ଏହି ଉଦ୍ୟୋଗ ପ୍ରତି କଂଗ୍ରେସ ପକ୍ଷରୁ ସମର୍ଥନ ଜାତୀୟ ଆନ୍ଦୋଳନରେ ଗାନ୍ଧୀଙ୍କ ଆସନ୍ନ ଅବିସଂବାଦିତ ନେତୃତ୍ୱର ପ୍ରମାଣ ମିଳିଥିଲା ।

ମୂଳତଃ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଢ଼ି ଉଠିଥିବା ତାଙ୍କର ସାମାଜିକ-ରାଜନୈତିକ ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଏବଂ ଭାରତୀୟ ସମାଜର ବିଭିନ୍ନ ଅଂଶ ମଧ୍ୟରେ ତାଙ୍କ ସ୍ୱାଧୀନତା ସଂଗ୍ରାମର କର୍ମସୂଚୀ ଓ କର୍ମକୌଶଳର ଜନପ୍ରିୟତା ଥିଲା ଜାତୀୟ ନେତା ହିସାବରେ ଗାନ୍ଧୀଙ୍କର ଦ୍ରୁତ ଅଭ୍ୟୁଦୟର କାରଣ ।

ଆଧୁନିକ ବୁର୍ଜୁଆ ସଭ୍ୟତା, ବୃହଦାୟତନ ଯନ୍ତ୍ରଶିଳ୍ପ ଓ ପୁଞ୍ଜିବାଦୀ ନଗରାୟନର ସମାଲୋଚନାର ଏବଂ କାରିଗରୀ ଓ କୁଟୀରଶିଳ୍ପର ପୁନରୁଜ୍ଜୀବନ ଓ ସଂପ୍ରସାରଣ ସମେତ ଆଗାମୀ ଯୁଗର ଅର୍ଥନୈତିକ

ଭାବେ ସ୍ୱୟଂସଂପୂର୍ଣ୍ଣ ଗ୍ରାମଗୋଷ୍ଠୀର ଭିତ୍ତିରେ ଦେଶର ଅର୍ଥନୀତି ବିକେନ୍ଦ୍ରୀକରଣ ସଂକ୍ରାନ୍ତ ଗାନ୍ଧୀଙ୍କ କର୍ମସୂଚୀ ମଧ୍ୟରେ ଭାରତୀୟ କୃଷକ, କାରିଗର, କ୍ଷୁଦ୍ର କାରଖାନାର ଶ୍ରମିକ ଓ ଛୋଟ ବ୍ୟବସାୟୀମାନଙ୍କର ପେଟି-ବୁର୍ଜୁଆ କଳ୍ପନାବିଳାସୀ ସମାଜବାଦର ଆଦର୍ଶଟି ମୂର୍ତ୍ତ ହୋଇ ଉଠିଥିଲା ।

ତତ୍କାଳୀନ ସାମାଜିକ ଚେତନାର ଅନୁନ୍ନତ ଅବସ୍ଥା ଏବଂ ଦେଶର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନରେ ସାମନ୍ତବାଦୀ ପ୍ରଭାବର ବିଦ୍ୟମାନତା ହେତୁ ଗାନ୍ଧୀଙ୍କ ଆହ୍ୱାନର ଧର୍ମୀୟ ଓ ନୈତିକ ରୂପଟି ନିରକ୍ଷର ଜନସାଧାରଣଙ୍କ ନିକଟରେ ତାଙ୍କର ମତାଦର୍ଶକୁ ଅଧିକତର ଗ୍ରହଣଯୋଗ୍ୟ କରିଥିଲା । ହିନ୍ଦୁ ଧର୍ମ ଭିତ୍ତିକ ତାଙ୍କର ଏହି ଦାର୍ଶନିକ ଧାରଣାବଳୀରେ ଇସ୍‌ଲାମ୍, ଖ୍ରୀଷ୍ଟ ଓ ଅନ୍ୟାନ୍ୟ ଧର୍ମର ସାରସତ୍ତା ନିହିତ ଥିବାରୁ କାର୍ଯ୍ୟଟି ଆଉରି ସହଜତର ହୋଇ ଉଠିଥିଲା ।

ବ୍ୟକ୍ତିଗତ ଜୀବନରେ ସନ୍ନ୍ୟାସୀ ଭଳି ସରଳତା, ଜନସାଧାରଣଙ୍କ ସହିତ ବ୍ୟାପକ ସଂଯୋଗ (ସେ ରେଳଗାଡ଼ିର କେବଳ ତୃତୀୟ ଶ୍ରେଣୀରେ ଯାଉଥିଲେ ଏବଂ ବହୁ ଭାଷାରେ କଥାବାର୍ତ୍ତା କରୁଥିଲେ), ମାନବ ଚରିତ୍ର ସଂପର୍କରେ ସୂକ୍ଷ୍ମ ବୋଧ ଓ ଜନସାଧାରଣଙ୍କ ନିରକ୍ଷର, ଦରିଦ୍ର ଅଂଶର ମନୋଭାବକୁ ଉପଲବ୍ଧି କରି ପାରିବାର କ୍ଷମତା ପାଇଁ ତାଙ୍କର ଜନପ୍ରିୟତା ଦ୍ରୁତ ଗତିରେ ବୃଦ୍ଧି ପାଇଥିଲା ।

ସ୍ୱାଧୀନତା ଲାଭ ପାଇଁ ଧୀରେ ଧୀରେ, ପର୍ଯ୍ୟାୟ କ୍ରମେ ଅଗ୍ରସର ହେବା ଥିଲା ଗାନ୍ଧୀଙ୍କ କର୍ମନୀତିର ଲକ୍ଷ୍ୟ । ଗୋଟିଏ ମାତ୍ର ବୁର୍ଜୁଆ ଜାତୀୟ ନେତୃତ୍ୱ ଅଧୀନରେ ଭାରତୀୟ ସମାଜର ସମସ୍ତ ଶ୍ରେଣୀ ଓ ରାଜନୈତିକ ଶକ୍ତିଗୁଡ଼ିକର ଐକ୍ୟ ସାଧନ ହିଁ ଏହି ଲକ୍ଷ୍ୟଜାତ ମୂଳ ରାଜନୈତିକ କାର୍ଯ୍ୟକଳାପ ହୋଇ ଉଠିଥିଲା । ଗାନ୍ଧୀ କାହିଁକି ଭାରତୀୟ ସମାଜରେ ଶ୍ରେଣୀ ସଂଗ୍ରାମର ବିରୋଧୀ ଥିଲେ ଏବଂ ସହର ଓ ଗ୍ରାମରେ ସାମାଜିକ ଓ ଅର୍ଥନୈତିକ ସଂଘାତର ସମାଧାନ ପାଇଁ ନିରନ୍ତର ଆପୋଷ ଓ ଶ୍ରେଣୀ ଶାନ୍ତିର ପଥ ସମର୍ଥନ କରୁଥିଲେ, ଏହିଥିରୁ ତା'ର ବ୍ୟାଖ୍ୟା ମିଳିଥାଏ । ଧର୍ମ ଆଉ ବର୍ଣ୍ଣଜାତ ଗଭୀର ବୈଷମ୍ୟ ଦ୍ୱାରା ଛିନ୍ନଭିନ୍ନ ଏହି ସମାଜରେ ଗାନ୍ଧୀ ହିନ୍ଦୁ-ମୁସଲମାନ ଐକ୍ୟ ଏବଂ ଦେଶର ବିଭିନ୍ନ ଜାତି ଓ ବର୍ଣ୍ଣସମୂହର ସହଯୋଗିତା ସ୍ଥାପନ କରିବା ଲକ୍ଷ୍ୟରେ ତାଙ୍କର ଭାବାଦର୍ଶଗତ ଓ ରାଜନୈତିକ କ୍ରିୟାକଳାପ ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ ।

ସ୍ୱାଧୀନତା ସଂଗ୍ରାମରେ ବ୍ୟାପକ ଆକାରରେ ଜନସାଧାରଣଙ୍କର ଅଂଶଗ୍ରହଣ ମାଧ୍ୟମରେ ଯେ କେବଳ ଭାରତୀୟ ଜାତୀୟତାବାଦୀମାନଙ୍କ ଐକ୍ୟସାଧନ ଓ ତାଙ୍କ କର୍ମସୂଚୀର ବାସ୍ତବାୟନ ପାଇଁ ସଫଳ ସଂଗ୍ରାମ ପରିଚାଳନା କରିବା ସମ୍ଭବ, ଗାନ୍ଧୀ ଯଥାର୍ଥରେ ଏହି ସତ୍ୟଟିକୁ ଉପଲବ୍ଧି କରିଥିଲେ । ସତ୍ୟାଗ୍ରହ ମଧ୍ୟରେ ଗାନ୍ଧୀ ଅହିଂସା ସହିତ ଔପନିବେଶିକ ସରକାର ପ୍ରତି ସକ୍ରିୟ ବିରୋଧିତାକୁ ମିଳେଇ ଦେଇଥିଲେ । ତା'ଛଡ଼ା ଏଥିରେ ଜାତୀୟ-ମୁକ୍ତି ଆନ୍ଦୋଳନରେ ଜନସାଧାରଣଙ୍କର ବ୍ୟାପକ ସ୍ତରର ଅଂଶଗ୍ରହଣର ସମ୍ଭାବନା ଓ ଆନ୍ଦୋଳନର ନେତୃତ୍ୱ ଜାତୀୟ ବୁର୍ଜୁଆ ଶକ୍ତିସମୂହର ହାତରେ ରହିବାର ନିଶ୍ଚୟତା ଥିଲା ।

ଭାରତରେ ପୁଞ୍ଜିବାଦୀ ସଂସ୍ଥା ଗଠନର ସକ୍ରିୟ ସମର୍ଥକ ଗାନ୍ଧୀଙ୍କ ରାଜନୈତିକ କର୍ମସୂଚୀ ଓ ତାଙ୍କ ଦ୍ୱାରା ଉଦ୍‌ଭାବିତ କର୍ମକୌଶଳ ଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ମୂଳ ଅଂଶର ଓ ଜାତୀୟତାବାଦୀ ଜମିଦାରମାନଙ୍କର ବ୍ୟାପକ ସମର୍ଥନ ଲାଭ କରିଥିଲା । ବିଂଶ ଦଶକର ପ୍ରାରମ୍ଭରେ ସେ ଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ରାଜନୈତିକ ନେତାରେ ପରିଣତ ହୋଇଥିଲେ ।

ଔପନିବେଶିକତା ବିରୋଧୀ ସଂଗ୍ରାମର ଏହି ନୂତନ ପର୍ଯ୍ୟାୟରେ ଗାନ୍ଧୀ ଭାରତୀୟ ବୁର୍ଜୁଆ ଓ ପେଟି-ବୁର୍ଜୁଆ ଜାତୀୟତାବାଦୀ ମୂଳ ପ୍ରବଣତାଗୁଡ଼ିକର ପ୍ରତୀକ ହୋଇ ଉଠିଥିଲେ ।

## ଗଣ ସଂଗ୍ରାମର ଶୁଭାରମ୍ଭ ଏବଂ ଜାଲିଆନୱାଲାବାଗ

୧୯୧୯, ଏପ୍ରିଲ ମାସରେ ଭାରତର ବହୁ ସହରରେ ଯେଉଁ ହରତାଳ ଅନୁଷ୍ଠିତ ହୋଇଥିଲା, ସେସବୁ ଥିଲା ବୈପ୍ଳବିକ ଅଗ୍ରଗତି ପଥରେ ଏକ ନୂତନ ପର୍ଯ୍ୟାୟର ସୂଚକ ସ୍ୱରୂପ । ୧୯୧୮ ଖ୍ରୀଷ୍ଟାବ୍ଦର ଅର୍ଥନୈତିକ ଧର୍ମଘଟରୁ – ଯେଉଁଥିରେ ସହରର ଜନସାଧାରଣଙ୍କର ବ୍ୟାପକ ଅଂଶ ଯୋଗ ଦେଇଥିଲେ – ଏହା ବେଳେ ବେଳେ ସଂଗ୍ରାମର ଚରମ ରୂପ ହିସାବରେ ସଶସ୍ତ୍ର ଅଭ୍ୟୁତ୍‌ଥାନକୁ ଉତ୍ତୀର୍ଣ୍ଣ ହେଉଥିବା ଏକ ଗଣ ସଂଗ୍ରାମର ରୂପ ପରିଗ୍ରହ କରୁଥିଲା ।

ଏହି ସମୟର ଉଲ୍ଲେଖଯୋଗ୍ୟ ସାଫଲ୍ୟସମୂହ ମିଳିଥିଲା ପଞ୍ଜାବରେ । ଏହା ପଛରେ ନିମ୍ନୋକ୍ତ କାରଣଗୁଡ଼ିକ ରହିଥିଲା । ପ୍ରଥମତଃ, ପଞ୍ଜାବକୁ ସବୁଠାରୁ ବେଶି "ରକ୍ତ କର" ଦେବାକୁ ପଡ଼ୁଥିଲା (ଏହିଠାରୁ ଇଂରେଜ-ଭାରତୀୟ ସୈନ୍ୟମାନଙ୍କର ପ୍ରଧାନ ଅଂଶଟି ନିଯୁକ୍ତ ହେଉଥିଲେ), ଦେଶର ଶସ୍ୟ ଭଣ୍ଡାର ବୋଲି ଖ୍ୟାତ ଏହି ଭୂଖଣ୍ଡର କୃଷକମାନେ ସାମରିକ ଖର୍ଚ୍ଚର ପ୍ରଧାନ ବୋଝ ବହନ କରୁଥିଲେ ଏବଂ ପଞ୍ଜାବର କାରିଗର ଓ କ୍ଷୁଦ୍ର ଶିଳ୍ପଗୁଡ଼ିକ ବୃହଦାକାର ଶିଳ୍ପ ସହିତ ପ୍ରତିଯୋଗିତାରେ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଥିଲେ । ଦ୍ୱିତୀୟତଃ, ବ୍ରିଟିଶ୍ ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ପଞ୍ଜାବ ସୋଭିଏତ୍ ମଧ୍ୟ ଏସିଆର ନିକଟତମ ହୋଇଥିବାରୁ ରୁଷ୍ ବୈପ୍ଳବିକ ଘଟଣାବଳୀର ସମ୍ବାଦ ସେଠାରେ ଅପେକ୍ଷାକୃତ ଦ୍ରୁତ ପହଞ୍ଚିଥିଲା ଏବଂ ଶିଖ୍ ସୈନ୍ୟମାନେ ଦେଶକୁ ଫେରିଲେ, ତାହା ଆଉରି ଖେଳି ଯାଉଥିଲା । ତୃତୀୟତଃ, ପଞ୍ଜାବରେ ଗଦର ପାର୍ଟିର ପ୍ରଭାବ ସେତେବେଳେ ଅବ୍ୟାହତ ରହିଥିଲା ଏବଂ ଏମାନଙ୍କ ସହିତ ଘନିଷ୍ଠ ଯୋଗାଯୋଗକାରୀ ପ୍ରବାସୀ ବିପ୍ଳବୀମାନଙ୍କର ପ୍ରଭାବ ମଧ୍ୟ ଏଠାରେ ଅକ୍ଷୁଣ୍ଣ ରହିଥିଲା ।

ମାର୍ଚ୍ଚ ମାସରୁ ପଞ୍ଜାବର ବିଭିନ୍ନ ସହରରେ ସ୍ଥାନୀୟ ଜାତୀୟତାବାଦୀମାନେ ବ୍ରିଟିଶ୍‌ବିରୋଧୀ ସଭା ଓ ବିକ୍ଷୋଭ ଆରମ୍ଭ କରି ଦେଇଥିଲେ । ଏପ୍ରିଲ ୧୦ ତାରିଖ ଦିନ ବ୍ରିଟିଶ୍ ଶାସକମାନେ ଅମୃତସରର ଦୁଇଜଣ ଜନପ୍ରିୟ ନେତା, ସୈଫୁଦ୍ଦିନ୍ କିଚଲୁ ଓ ସତ୍ୟପାଲଙ୍କୁ ବହିଷ୍କାର କରିଦେଲେ ଦେଶରେ ପ୍ରତିବାଦର ନୂତନ ଏକ ଝଡ଼ ବହିଗଲା । ଏହା ପରେ ପଞ୍ଜାବରେ ଆଉ ଦୁଇଟି ସହର, ଲାହୋର ଓ ଗୁଜରାନ୍‌ୱାଲାରେ ହରତାଳ ଓ ବିକ୍ଷୋଭ ବ୍ରିଟିଶ୍ ଶାସନ ବିରୁଦ୍ଧରେ ସଶସ୍ତ୍ର ଅଭ୍ୟୁତ୍‌ଥାନର ରୂପ ଲାଭ କରିଥିଲା ଏବଂ ଏଥିରେ ଶ୍ରମିକମାନେ, ବିଶେଷତଃ, ରେଳ ଶ୍ରମିକମାନେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଏହି ସମୟରେ ଲଟ୍ ସାହେବ ଓ'ଡୟେର ଏବଂ ଜେନେରାଲ ଡାୟାରଙ୍କ ନେତୃତ୍ୱରେ ପଞ୍ଜାବର ଔପନିବେଶିକ ପ୍ରଶାସନ ରାଜନୈତିକ କର୍ମୀମାନଙ୍କ ବିରୁଦ୍ଧରେ ନୃଶଂସ ପ୍ରତିଶୋଧ ନେବାକୁ ଦୃଢ଼ ଭାବେ ଉଦ୍ୟମ କରିଥିଲା । ଏହି ଉଦ୍ଦେଶ୍ୟରେ ଏପ୍ରିଲ ୯ ତାରିଖ ଦିନ ପଞ୍ଜାବକୁ ନୂଆ ସୈନ୍ୟ ମଧ୍ୟ ଚାଲାନ୍ କରାଯାଇଥିଲା । ଏପ୍ରିଲ ୧୩ ତାରିଖ ଦିନ କିଚଲୁ ଏବଂ ସତ୍ୟପାଲଙ୍କ ବହିଷ୍କାରର ପ୍ରତିବାଦରେ ବିକ୍ଷୋଭରତ ନିରସ୍ତ୍ର ନରନାରୀଙ୍କ ଉପରେ ସୈନ୍ୟବାହିନୀ ଗୁଳି ଚଳେଇଲା । ଏହା ଫଳରେ

ଅମୃତସରର ଜାଲିଆନଓ୍ୱାଲାବାଗ ପଡ଼ିଆରେ ପ୍ରାୟ ଏକ ହଜାର ଅସହାୟ ଲୋକ ନିର୍ମମ ଭାବେ ନିହତ ଓ ପ୍ରାୟ ଦୁଇ ହଜାର ଆହତ ହୋଇଥିଲେ । ତାପରେ ସଙ୍ଗେ ସଙ୍ଗେ ସାନ୍ଧ୍ୟ ଆଇନ୍ ଜାରି କରି ଦେଲେ ଏବଂ ତା ଫଳରେ କୌଣସି ଚିକିତ୍ସା ସାହାଯ୍ୟ ନପହଞ୍ଚିବାରୁ ପଡ଼ିଆ ଏବଂ ଆଖପାଖ ରାସ୍ତାରେ ଅନେକ ଲୋକ ପ୍ରାଣ ହରେଇଥିଲେ । ପରେ ପଞ୍ଜାବରେ ସାମରିକ ଆଇନ୍ ଜାରି କରାଯାଇଥିଲା ଏବଂ ବ୍ୟାପକ ହାରରେ ଗିରଫ୍ ଏବଂ ଅବାଧ ଅତ୍ୟାଚାର ଚାଲିଲା ।

କିନ୍ତୁ ଏହି ନିଷ୍ଠୁର ଅତ୍ୟାଚାର ସତ୍ତ୍ୱେ ବ୍ରିଟିଶ୍‌ମାନେ ସେମାନଙ୍କ ଈପ୍‌ସିତ ଫଳ ଲାଭ କରି ପାରି ନଥିଲେ । ପକ୍ଷାନ୍ତରେ, ଲାହୋର ଓ ଅମୃତସରରେ ପ୍ରଧାନତଃ ଲାଠିଧାରୀ "ଦଣ୍ଡ ଫୌଜ" ନାମକ ଏକ ରକ୍ଷୀ ବାହିନୀ ଗଢ଼ାଯାଇଥିଲା । ସମଗ୍ର ପ୍ରଦେଶରେ ସେତେବେଳେ ରାଜନୈତିକ କାର୍ଯ୍ୟକଳାପର ଜୁଆର ଖେଳିଗଲା । ଥାନା ଆକ୍ରମଣ, ବନ୍ଦୀମାନଙ୍କୁ ଛଡ଼େଇ ନେବା ଆଦି କାର୍ଯ୍ୟ ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହେଲା । ସ୍ଥାନୀୟ କୃଷକମାନଙ୍କ ସାହାଯ୍ୟରେ ରେଳ କର୍ମୀମାନେ କେତେକ ସୈନ୍ୟ ବୋଝେଇ ରେଳଗାଡ଼ିକୁ ଲାଇନଚ୍ୟୁତ କରି ଦେଇଥିଲେ ।

ପଞ୍ଜାବର ଘଟଣାବଳୀ ସଂକ୍ରାନ୍ତ ସଂବାଦ ଉପରେ ବ୍ରିଟିଶ୍‌ମାନଙ୍କର କଡ଼ା ନିୟନ୍ତ୍ରଣ ସତ୍ତ୍ୱେ ଅମୃତସରର ଘଟଣାବଳୀ ସାରା ଦେଶରେ ଖେଳି ଯାଇଥିଲା ଏବଂ ସର୍ବତ୍ର ଉଠିଥିଲା ପ୍ରତିବାଦ ଝଡ଼ । ବମ୍ବେ, କଲିକତା, ମାନ୍ଦ୍ରାଜ, କାନ୍‌ପୁର ପ୍ରଭୃତି ଶିଳ୍ପ କେନ୍ଦ୍ରଗୁଡ଼ିକରେ ବ୍ରିଟିଶ୍‌ବିରୋଧୀ ବିକ୍ଷୋଭ ଓ ଶୋଭାଯାତ୍ରା ପ୍ରବଳ ଆକାର ଧାରଣ କରିଥିଲା । ଆହ୍‌ମଦାବାଦର ବସ୍ତ୍ରକଳ ଶ୍ରମିକମାନେ ସେତେବେଳେ ବ୍ୟାପକ ରାଜନୈତିକ କ୍ରିୟାକଳାପ ଆରମ୍ଭ କରି ଦେଇଥିଲେ ।

ଆନ୍ଦୋଳନର ଚରିତ୍ର ଅହିଂସାଚ୍ୟୁତ ହୋଇଯିବ ବୋଲି ଆଶଙ୍କା କରି ଗାନ୍ଧୀ ଆହ୍‌ମଦାବାଦ ଜନସାଧାରଣଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରିଥିଲେ ଏବଂ ପଞ୍ଜାବକୁ ଯିବା ପାଇଁ ଉଦ୍ୟୋଗ ନେଇଥିଲେ । କିନ୍ତୁ ବ୍ରିଟିଶ୍ ପ୍ରଶାସନର ପ୍ରତିବନ୍ଧକତା ହେତୁ ତାଙ୍କର ଏହି ଉଦ୍ୟୋଗ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା ।

ପଞ୍ଜାବର ଏହିସବୁ ଘଟଣାବଳୀକୁ ଲେନିନ୍ ଘନିଷ୍ଠ ଭାବେ ଅନୁସରଣ କରୁଥିଲେ । ପ୍ରାଚ୍ୟରେ ମୁକ୍ତି ଆନ୍ଦୋଳନ ସଂପର୍କରେ ଆଲୋଚନା କରିବାକୁ ଯାଇ ଭାରତରେ ଏହି ଆନ୍ଦୋଳନର ନୂତନ ପର୍ଯ୍ୟାୟ ସଂପର୍କରେ ଲେନିନ୍ ଲେଖିଥିଲେ: "ଅଗ୍ରଭାଗରେ ବ୍ରିଟିଶ୍ ଭାରତ ଏହିସବୁ ଦେଶର ରହିଛି । ସେଠାରେ, ଏକ ଦିଗରେ, ବିପ୍ଳବ ଆନୁପାତିକ ଭାବେ ପରିପକ୍ୱ ହୋଇ ଉଠୁଛି, ଶିଳ୍ପ ଓ ରେଳବାଇରେ ସର୍ବହରାର ସଂଖ୍ୟା ବଢ଼ୁଛି ଏବଂ, ଅନ୍ୟ ଦିଗରେ, ବ୍ରିଟିଶ୍‌ମାନେ ବର୍ବର ସନ୍ତ୍ରାସର ମାତ୍ରା ବୃଦ୍ଧି କରିବାରେ ଲାଗିଛନ୍ତି । ସେମାନେ କ୍ରମଶଃ ଘନ ଘନ ଗଣହତ୍ୟା (ଅମୃତସର) ଏବଂ ବ୍ୟାପକ ଲାଠି ଚାଳନା ଆଦିର ଆଶ୍ରୟ ନେଉଛନ୍ତି ।" *

୧୯୧୯ ଖ୍ରୀଷ୍ଟାବ୍ଦର ବୈପ୍ଳବିକ ଘଟଣାବଳୀ ଜାତୀୟ କଂଗ୍ରେସର ନିୟନ୍ତ୍ରଣରେ ମୋଟେ ନଥିଲା । ତେଣୁ ସ୍ୱୀୟ ସମ୍ମାନ ଓ ପ୍ରଭାବକୁ ଅକ୍ଷୁଣ୍ଣ ରଖିବା ପାଇଁ ଗଣ ସଂଗଠନଗୁଡ଼ିକର କ୍ରିୟାକଳାପ ପ୍ରତି ଦୃଷ୍ଟିଭଙ୍ଗି ପରିବର୍ତ୍ତନ କରିବା କଂଗ୍ରେସ ପକ୍ଷରେ ଅପରିହାର୍ଯ୍ୟ ହୋଇ ଉଠିଥିଲା । ବ୍ରିଟିଶ୍ ବର୍ବରତା

---

* V. I. Lenin, "Third Congress of the Communist International", " Collected Works", vol. 32, p. 455.

ବିରୁଦ୍ଧରେ ପ୍ରତିବାଦ ହିସାବରେ ୧୯୧୯ ଖ୍ରୀଷ୍ଟାବ୍ଦରେ ଅମୃତସରରେ ଆହୂତ ଏକ ସଭାରେ ବିଶେଷ ଏକ ପ୍ରସ୍ତାବରେ ଶ୍ରମିକମାନଙ୍କର ଏକ ଟ୍ରେଡ୍‌ୟୁନିଅନ୍ ଗଠନ ନିମିତ୍ତ କଂଗ୍ରେସ ସଦସ୍ୟମାନଙ୍କ ପ୍ରତି ଆହ୍ୱାନ ଦିଆଯାଇଥିଲା ।

ଏହି ସମ୍ମେଳନରେ ନୂତନ ଭାରତ ଆଇନ୍ ଅନୁଯାୟୀ ଗଠିତ ଆଇନ୍ ସଭାଗୁଡ଼ିକର ନିର୍ବାଚନକୁ ବର୍ଜନ କରିବାର ସିଦ୍ଧାନ୍ତଟି ମଧ୍ୟ ଗୃହୀତ ହୋଇଥିଲା । ଫଳରେ, କେନ୍ଦ୍ରୀୟ ଓ ପ୍ରାଦେଶିକ ଆଇନ୍ ସଭାଗୁଡ଼ିକର ନିର୍ବାଚନ ପରିତ୍ୟକ୍ତ ହୋଇଥିଲା ।

## ପ୍ରଥମ ଅସହଯୋଗ ଆନ୍ଦୋଳନ ଓ ଖିଲାଫତ ଆନ୍ଦୋଳନ

୧୯୧୯ ଖ୍ରୀଷ୍ଟାବ୍ଦର ବ୍ୟାପକ ରାଜନୈତିକ ଅଭିଜ୍ଞତାରୁ ଗାନ୍ଧୀ ଏଥର ସତ୍ୟାଗ୍ରହ ଆନ୍ଦୋଳନ ପରିଗ୍ଳକନା ପାଇଁ ଏକ ପର୍ଯ୍ୟାୟକ୍ରମିକ ବିଶଦ କର୍ମସୂଚୀ ପ୍ରଣୟନ କରିବାକୁ ସିଦ୍ଧାନ୍ତ ନେଇଥିଲେ । ତାଙ୍କ ମତରେ, କେବଳ ଏହା ଦ୍ୱାରା ହିଁ ଆନ୍ଦୋଳନକୁ ଅହିଂସ ରଖାଯାଇ ପାରିବ । ଔପନିବେଶିକ ସରକାର ସହିତ ଦେଶବ୍ୟାପୀ ଅସହଯୋଗିତା କ୍ଷେତ୍ରରେ ଦୁଇଟି ଅପରିହାର୍ଯ୍ୟ ପର୍ଯ୍ୟାୟର କଥା ସେ ଚିନ୍ତା କରିଥିଲେ । ପ୍ରଥମ ପର୍ଯ୍ୟାୟରେ ଔପନିବେଶିକ ସରକାର ବିରୁଦ୍ଧରେ ପରିଗ୍ଳିତ ବର୍ଜନର ପଦ୍ଧତି ହେବ : ସମ୍ମାନସୂଚକ ନିଯୁକ୍ତି ଓ ଉପାଧି, ସରକାରୀ ସମ୍ବର୍ଦ୍ଧନା ଆଦି, ବ୍ରିଟିଶ୍ ସ୍କୁଲ କଲେଜ, ଅଦାଲତ୍, ଆଇନ୍ ସଭା ନିର୍ବାଚନ, ଆମଦାନି ପଣ୍ୟ ବର୍ଜନ । ଦ୍ୱିତୀୟ ପର୍ଯ୍ୟାୟଟି ହେବ— ସରକାରକୁ କର ଦେବା ବନ୍ଦ ।

୧୯୨୦ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧ ତାରିଖକୁ ଆନ୍ଦୋଳନର ଶୁଭାରମ୍ଭ ଦିନ ବୋଲି ଧାର୍ଯ୍ୟ କରାଗଲା । ଖିଲାଫତ ଆନ୍ଦୋଳନର ନେତୃବୃନ୍ଦଙ୍କ ସହିତ ଘନିଷ୍ଠ ସହଯୋଗିତା ଦ୍ୱାରା ଗାନ୍ଧୀ ଏବଂ ତାଙ୍କ ଅନୁଗାମୀମାନେ ଆନ୍ଦୋଳନଟିର ପରିକଳ୍ପନା ଏବଂ ସଂଗଠନ କରିଥିଲେ । ପ୍ରସଙ୍ଗତଃ ସ୍ମରଣଯୋଗ୍ୟ ଯେ, ଭାରତୀୟ ମୁସଲମାନମାନଙ୍କ ସମେତ ସମସ୍ତ ସୁନ୍ନି ମୁସଲମାନମାନଙ୍କର ଅନ୍ୟତମ ଖଲିଫା, ତୁରସ୍କର ସୁଲତାନ୍‌ଙ୍କ ଅଧିକାର ରକ୍ଷା ପାଇଁ ମୁସଲିମ୍ ବୁଦ୍ଧିଜୀବୀ ଓ ଧର୍ମୀୟ ନେତାମାନଙ୍କ ଉଦ୍ୟୋଗରେ ଖିଲାଫତ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଆନ୍ଦୋଳନର ନେତାମାନଙ୍କ ନିକଟରେ ତୁରସ୍କ ସାମ୍ରାଜ୍ୟର ପତନ ଓ ସୁଲତାନ୍‌ଙ୍କ ପଦଚ୍ୟୁତି ପ୍ରକୃତରେ ପ୍ରାଚ୍ୟ ପାଶ୍ଚାତ୍ୟ ଶକ୍ତିର, ବିଶେଷତଃ, ବ୍ରିଟିଶ୍ ନୀତିର ପ୍ରତ୍ୟକ୍ଷ ଫଳ ରୂପେ ପ୍ରକଟିତ ହେବା ଦ୍ୱାରା ଆନ୍ଦୋଳନଟି ଅବିଳମ୍ବେ ସାମ୍ରାଜ୍ୟବାଦ ବିରୋଧୀ ଚରିତ୍ର ଲାଭ କରିଥିଲା । ଭାରତର ବ୍ୟାପକ ସଂଖ୍ୟକ ମୁସଲମାନମାନଙ୍କ ନିକଟରେ ଆନ୍ଦୋଳନର ଧର୍ମୀୟ ବୈଶିଷ୍ଟ୍ୟ ଲାଭ କରିବା ପରିବର୍ତ୍ତେ ଏହାର ଔପନିବେଶିକ ବିରୋଧୀ ଚରିତ୍ରଟି ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା । ଏହି ଆନ୍ଦୋଳନର ସାଧାରଣ କର୍ମୀମାନଙ୍କ ନିକଟରେ ଅନେକ ସମୟରେ ଖିଲାଫତ ଆନ୍ଦୋଳନ ନାମରେ କଥିତ ("ଖିଲାଫତ" ଅର୍ଥ ବିରୁଦ୍ଧରେ) ଏହି ଆନ୍ଦୋଳନ ଥିଲା ବ୍ରିଟିଶ୍‌ବିରୋଧୀ । ଏହା ପରେ ଉତ୍ତର-ପଶ୍ଚିମ ସୀମାନ୍ତରେ ଆଫ୍‌ଗାନିସ୍ତାନ ସ୍ୱାଧୀନତା ଯୁଦ୍ଧ ଆରମ୍ଭ କରି ଦେଲେ ଏହି ପ୍ରବଣତାଟି ଆଉରି ବୃଦ୍ଧି ପାଇଥିଲା । ପ୍ରତିବେଶୀ ଏହି ମୁସଲିମ୍ ରାଜ୍ୟର ସଂଗ୍ରାମକୁ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ସଂଗ୍ରାମୀ ପଠାଣ ଉପଜାତିଗୁଡ଼ିକ ସକ୍ରିୟ ସମର୍ଥନ ପ୍ରଦାନ କରିଥିଲେ ।

୧୯୧୮ ଖ୍ରୀଷ୍ଟାବ୍ଦରେ ମୁସଲିମ୍ ଲୀଗ୍‌ରୁ ବାହାରି ଆସିଥିବା ବାମପନ୍ଥୀ ପେଟି-ବୁର୍ଜୁଆ ଅଂଶଟି ହାତକୁ ଖିଲାଫତ ଆନ୍ଦୋଳନର ନେତୃତ୍ୱ ଆସି ଯାଇଥିଲା । ଖିଲାଫତ ଆନ୍ଦୋଳନ ଓ ଅସହଯୋଗ ଆନ୍ଦୋଳନର ସମାନ୍ତରାଳ ବିକାଶ ଫଳରେ ଭାରତର ଦୁଇଟି ପ୍ରଧାନ ଧର୍ମୀୟ ସଂପ୍ରଦାୟ ହିନ୍ଦୁ ଓ ମୁସଲମାନମାନଙ୍କ ପାଇଁ ମୁକ୍ତି ସଂଗ୍ରାମରେ ସହଯୋଗିତା ଓ ମିଳିତ କାର୍ଯ୍ୟ ପରିଚାଳନା ପାଇଁ ଅନୁକୂଳ ପରିସ୍ଥିତି ଦେଖାଦେଲା । ଜାତୀୟ କଂଗ୍ରେସର ସଦସ୍ୟ, ମହମ୍ମଦ୍ ଓ ଶଓକତ ଅଲୀ ଭ୍ରାତୃଦ୍ୱୟଙ୍କ ନେତୃତ୍ୱାଧୀନ ଖିଲାଫତ କମିଟି ସହିତ ଗାନ୍ଧୀ ଘନିଷ୍ଠ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ଏହି ନବଗଠିତ ଐକ୍ୟର ପ୍ରତୀକ ହିସାବରେ ଗାନ୍ଧୀଙ୍କୁ ଖିଲାଫତ କମିଟିର ଅନ୍ୟତମ ନେତା ରୂପେ ଗ୍ରହଣ କରାଯାଇଥିଲା ।

ସମାବେଶ, ବିକ୍ଷୋଭ ଓ ବିଭିନ୍ନ ଧରଣର ହରତାଳ ଆକାରରେ ୧ ଅଗଷ୍ଟରୁ ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନ ଦେଶର ବିଭିନ୍ନ ଅଞ୍ଚଳରେ କ୍ରମଶଃ ବ୍ୟାପୀ ଯାଇଥିଲା । କଂଗ୍ରେସର ନେତୃବୃନ୍ଦଙ୍କ ସହିତ ପରାମର୍ଶ ବିନା ଗାନ୍ଧୀ ସତ୍ୟାଗ୍ରହ ଘୋଷଣା କରିବା ସଙ୍ଗେ ସଙ୍ଗେ ନିଜେ ଏହାକୁ ପରିଚାଳନା କରୁଥିଲେ । ତା ସତ୍ତ୍ୱେ ଗାନ୍ଧୀଙ୍କ ରାଜନୈତିକ କର୍ମ କୌଶଳର ସାଫଲ୍ୟ ଦେଶର ପ୍ରଧାନ ଜାତୀୟ ସଂଗଠନଟିକୁ କ୍ରମଶଃ ଅଧିକ ମାତ୍ରାରେ ପ୍ରଭାବିତ କରିଥିଲା । ୧୯୨୦ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଏହା ସ୍ପଷ୍ଟ ହୋଇ ଉଠିଥିଲା । ସେପ୍ଟେମ୍ବର ଆରମ୍ଭରେ କଲିକତାରେ ଆହୂତ ଏକ ବିଶେଷ ଅଧିବେଶନରେ ଲାଲା ଲଜପତ୍ ରାୟ, ଚିତ୍ତରଞ୍ଜନ ଦାସ ପ୍ରମୁଖ ବହୁ ପ୍ରତିଷ୍ଠିତ ନେତାମାନଙ୍କ ଆପତ୍ତି ସତ୍ତ୍ୱେ ଗାନ୍ଧୀଙ୍କ ଦ୍ୱାରା ଉତ୍‌ଥାପିତ ଅସହଯୋଗ କର୍ମସୂଚୀର ପ୍ରସ୍ତାବଟି ଗୃହୀତ ହୋଇଥିଲା । ମଣ୍ଟେଗୁ – ଚେମ୍‌ସଫୋର୍ଡ ସଂସ୍କାରକୁ ଭିତ୍ତି କରି ନିର୍ବାଚନରେ ଅଂଶଗ୍ରହଣ ନକରିବାର ପ୍ରସ୍ତାବଟିକୁ କଂଗ୍ରେସ ପୁଣି ସମର୍ଥନ କରିଥିଲା ।

ଏହି ବର୍ଷ ଡିସେମ୍ବର ମାସରେ ନାଗପୁରରେ ଅନୁଷ୍ଠିତ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ ଗାନ୍ଧୀ ଏବଂ ତାଙ୍କ ଅନୁଗାମୀମାନଙ୍କ ଦ୍ୱାରା ଅର୍ଜିତ ଏହି ବିଜୟ ସୁଦୃଢ଼ ହୋଇ ଉଠିଥିଲା । ଏହି ଅଧିବେଶନରେ ଗାନ୍ଧୀଙ୍କ ଦ୍ୱାରା ଉଦ୍‌ଭାବିତ ରାଜନୈତିକ କର୍ମସୂଚୀ ଓ ରଣକୌଶଳ ଗୃହୀତ ହୋଇଥିଲା ଏବଂ ତାଙ୍କ ଦର୍ଶନ, ଗାନ୍ଧୀବାଦ କଂଗ୍ରେସର ମତାଦର୍ଶରେ ପରିଣତ ହେଲା । କଂଗ୍ରେସକୁ ଏକ ଗଣ ସଂଗଠନରେ ପରିଣତ କରିବା ପାଇଁ ପ୍ରଥମତଃ ସମ୍ବିଧାନଟି ପୁନଃରଚିତ ହେଲା । ଅଧିବେଶନର ଅନ୍ତର୍ବର୍ତ୍ତୀ କାଳରେ କାର୍ଯ୍ୟ ପରିଚାଳନା ପାଇଁ ଉଚ୍ଚ ପର୍ଯ୍ୟାୟର କେତେକ କମିଟି ଗଠିତ ହୋଇଥିଲା । ସେସବୁ କମିଟି ମଧ୍ୟରେ ଥିଲା ବ୍ୟାପକ ଭିତ୍ତି ସଂପନ୍ନ ନିଖିଳ ଭାରତ କଂଗ୍ରେସ କମିଟି ଓ ପ୍ରଦେଶର ସ୍ଥାନୀୟ ଶାଖାଗୁଡ଼ିକ ସମେତ ଅପେକ୍ଷାକୃତ ଏକାନ୍ତ କ୍ଷୁଦ୍ରାୟତନ ବିଶିଷ୍ଟ କାର୍ଯ୍ୟକାରୀ କମିଟି । କଂଗ୍ରେସକୁ ଲୋକଙ୍କର ନିକଟବର୍ତ୍ତୀ କରିବା ପାଇଁ ଏବଂ ଜାତୀୟ ସ୍ୱାୟତ୍ତଶାସନର ଲକ୍ଷ୍ୟରେ ପରିଚାଳିତ ପ୍ରତ୍ୟେକ ଜାତିର କ୍ରିୟାକଳାପକୁ ନିୟନ୍ତ୍ରଣ କରିବା ସମେତ ଔପନିବେଶିକମାନଙ୍କ ଦ୍ୱାରା ଆରୋପିତ ଦେଶର ପ୍ରଶାସନିକ ଓ ଅଞ୍ଚଳ ବିଭାଗର ବିରୋଧିତା ପାଇଁ ଜାତୀୟ ଭିତ୍ତିରେ, ଅର୍ଥାତ୍, କଂଗ୍ରେସର ତଥାକଥିତ ଭାଷା ଭିତ୍ତିକ ପ୍ରଦେଶର ଭିତ୍ତିରେ ସ୍ଥାନୀୟ ଶାଖାଗୁଡ଼ିକ ଗଠିତ ହୋଇଥିଲା ।

କଂଗ୍ରେସ ପୁନର୍ଗଠନର ଫଳସମୂହ ଅବିଳମ୍ବେ ସ୍ପଷ୍ଟ ହୋଇ ଉଠିଥିଲା : ପରବର୍ଷ ଶେଷ ବେଳକୁ କଂଗ୍ରେସର ସଦସ୍ୟ ସଂଖ୍ୟା ପ୍ରାୟ ୧ କୋଟିରେ ପହଞ୍ଚିଥିଲା । ୧୯୨୦ ଖ୍ରୀଷ୍ଟାବ୍ଦର ଶରତ କାଳ ମଧ୍ୟରେ ୧୫ ଲକ୍ଷ ତରୁଣ କଂଗ୍ରେସ ସଦସ୍ୟଙ୍କୁ ନେଇ ଗଠିତ ହୋଇଥିଲା ଏକ ସ୍ୱେଚ୍ଛାସେବୀ ଦଳ ।

ଅସହଯୋଗ ଆନ୍ଦୋଳନ ସହିତ ସଂଶ୍ଳିଷ୍ଟ ସମାବେଶ, ବିକ୍ଷୋଭ ଓ ପିକେଟିଂ ସଂଗଠନର ଦାୟିତ୍ୱ ସ୍ୱେଚ୍ଛାସେବୀମାନେ ଗ୍ରହଣ କରିଥିଲେ । ଏହିମାନେ ହିଁ ଥିଲେ ପାର୍ଟିର ମେରୁଦଣ୍ଡ ସ୍ୱରୂପ ।

ଅସହଯୋଗ ଆନ୍ଦୋଳନ ଓ ବ୍ରିଟିଶ୍‌ବିରୋଧୀ ଖିଲାଫତ ଆନ୍ଦୋଳନ ସହିତ ଶ୍ରମିକ ଓ କୃଷକମାନଙ୍କର ଶ୍ରେଣୀଭିତ୍ତିକ କାର୍ଯ୍ୟକଳାପର ପରିସର ମଧ୍ୟ ବ୍ୟାପକତର ହୋଇଥିଲା ।

## ବିଂଶ ଦଶକର ପ୍ରାରମ୍ଭରେ ଶ୍ରମିକ ଓ କୃଷକ ଆନ୍ଦୋଳନ

୧୯୨୦ ଓ ୧୯୨୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ଧର୍ମଘଟ ଆନ୍ଦୋଳନ କ୍ରମଶଃ ଶକ୍ତିଶାଳୀ ହୋଇ ଉଠିଥିଲା (ହାରାହାରି ୪ରୁ ୬ ଲକ୍ଷ ପର୍ଯ୍ୟନ୍ତ କର୍ମୀ ଧର୍ମଘଟରେ ଯୋଗ ଦେଇଥିଲେ) । ଆନ୍ଦୋଳନର ପୂର୍ବବର୍ତ୍ତୀ ପର୍ଯ୍ୟାୟ (୧୯୧୮-୧୯୧୯) ତୁଳନାରେ ବର୍ତ୍ତମାନ ସଂଗଠିତ ଶ୍ରମିକ ଆନ୍ଦୋଳନରେ ଅଦୃଷ୍ଟପୂର୍ବ ଅନେକ ବୈଶିଷ୍ଟ୍ୟ ପ୍ରକଟିତ ହୋଇଥିଲା । ଶ୍ରମିକମାନଙ୍କର ଶ୍ରେଣୀ ଐକ୍ୟ ବୃଦ୍ଧି ପାଇଥିଲା ଏବଂ ସେମାନେ କ୍ରମାଗତ ଅଧିକ ପରିମାଣରେ ସଂହତିମୂଳକ ଧର୍ମଘଟରେ ସାମିଲ ହୋଇଥିଲେ । ବମ୍ବେ, ଜାମସେଦ୍‌ପୁର ଓ ଅନ୍ୟାନ୍ୟ ଶିଳ୍ପ କେନ୍ଦ୍ରଗୁଡ଼ିକରେ ସାଧାରଣ ଧର୍ମଘଟ ମଧ୍ୟରେ ଏହା ସ୍ପଷ୍ଟ ଜଣା ପଡ଼ିଥିଲା ।

ସାର୍ବିକ ରାଜନୈତିକ ସଂଗ୍ରାମ ସହିତ, ଅର୍ଥାତ୍, ଅସହଯୋଗ ଆନ୍ଦୋଳନ ସହିତ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ନିବିଡ଼ ଭାବେ ସଂଯୁକ୍ତ ହେବାର ସମ୍ଭାବନାର ସମୟ ଆସନ୍ନ ହୋଇ ଆସୁଥିଲା ।

ଚା, ଆଦି ବଗିଚା କର୍ମୀମାନଙ୍କ ଭଳି ଭାରତୀୟ ଶ୍ରମିକ ଶ୍ରେଣୀର ଅନଗ୍ରସରତମ ଅଂଶଗୁଡ଼ିକ ମଧ୍ୟ ଏଥର ସଂଗ୍ରାମରେ ଅଂଶଗ୍ରହଣ କରିବାକୁ ଆରମ୍ଭ କରିଥିଲେ । ୧୯୨୧ ଖ୍ରୀଷ୍ଟାବ୍ଦ, ମେ ମାସରେ ଆସାମର ଚା ବଗିଚାଗୁଡ଼ିକରେ ବ୍ୟାପକ ଧର୍ମଘଟ ଆରମ୍ଭ ହୋଇ ଯାଇଥିଲା ଏବଂ ଏଥିରେ ପ୍ରାୟ ୧୨ ହଜାର ଶ୍ରମିକ ଯୋଗ ଦେଇଥିଲେ ।

ଧର୍ମଘଟ ଆନ୍ଦୋଳନ (ଯେଉଁଥିରେ କାର୍ଯ୍ୟାବସ୍ଥାର ଉନ୍ନତି ସମେତ ମଜୁରି ବୃଦ୍ଧିର ମୂଳ ଦାବି ଆଦାୟ କରାଯାଉଥିଲା) ବୃଦ୍ଧି ପାଇବା ଫଳରେ ନୂଆ ଟ୍ରେଡ୍‌ୟୁନିଅନ୍ ପ୍ରତିଷ୍ଠିତ ହୋଇଥିଲା । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର ଗଠନ କରିବାର ସମ୍ଭାବନାଟି ଏହି ଭାବେ ପରିପକ୍ୱ ହୋଇ ଉଠିଥିଲା । ଜେନିଭାରେ ଅନୁଷ୍ଠିତ ଆନ୍ତର୍ଜାତିକ ଶ୍ରମିକ ସମ୍ମେଳନରେ ଔପନିବେଶିକ ସରକାର କର୍ତ୍ତୃକ ଭାରତୀୟ ପ୍ରତିନିଧି ନିଯୁକ୍ତି ବିରୁଦ୍ଧରେ ବ୍ୟାପକ ପ୍ରତିବାଦ ସଭାମାନ ଅନୁଷ୍ଠିତ ହୋଇଥିଲା । ଏହିସବୁ ମଧ୍ୟରେ ଏହି ଧରଣର ସଂଗଠନ ଗଢ଼ି ତୋଳିବାର ଅନୁକୂଳ ସୂଚନା ଦେଖିବାକୁ ମିଳିଥିଲା । ୧୯୨୦ ଖ୍ରୀଷ୍ଟାବ୍ଦ ମେ ମାସରେ ବମ୍ବେରେ ଅନୁଷ୍ଠିତ ଏହି ସଭାରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଗଠନର ପ୍ରସ୍ତାବଟି ଗୃହୀତ ହେଲା ।

ଏହି ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଥିଲା ବୁର୍ଜୁଆ ସଂସ୍କାରବାଦୀମାନଙ୍କର ନେତୃତ୍ୱାଧୀନ । ଜାତୀୟ କଂଗ୍ରେସର ଅନ୍ୟତମ ନେତା ଲାଲା ଲଜପତ୍ ରାୟ ସଂଗଠନର ପ୍ରଥମ ସଭାପତି ନିର୍ବାଚିତ ହୋଇଥିଲେ ।

ଏହି ସଂଗଠନ ପ୍ରତିଷ୍ଠା ଫଳରେ ଧର୍ମଘଟ ଆନ୍ଦୋଳନ ଆଉରି ବ୍ୟାପକ ହୋଇଥିଲା : ୧୯୧୯

ଖ୍ରୀଷ୍ଟାବ୍ଦର ୧୯ଟି ଧର୍ମଘଟ ଘଟଣାରେ ୧୯୨୦ ଓ ୧୯୨୧ ଖ୍ରୀଷ୍ଟାବ୍ଦରେ ଏହା ଯଥାକ୍ରମେ ୨୦୦ ଓ ୪୦୦ରେ ପହଞ୍ଚିଥିଲା । ଇତିପୂର୍ବରୁ ଧର୍ମଘଟଗୁଡ଼ିକ ଅସଂଗଠିତ, ଦୁର୍ବଳ ଭାବେ ଘଟୁଥିଲା ।

ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଦୁର୍ବଳତା ସତ୍ତ୍ୱେ ସଂଗଠିତ ଶ୍ରମିକ ଆନ୍ଦୋଳନ ଏବଂ ଭାରତରେ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ ଗଢ଼ି ତୋଳିବା କ୍ଷେତ୍ରରେ ଏହାର ପ୍ରତିଷ୍ଠା ନିଶ୍ଚିତ ଭାବେ ଏକ ବ୍ୟୂହଭେଦ ଭଳି କହିବାକୁ ହେବ ।

ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ଐକ୍ୟ ଶ୍ରମିକ ଶ୍ରେଣୀ ମଧ୍ୟରେ ତା'ର ଅତୁଟ ପ୍ରଭାବ ଓ ସେ ପ୍ରଭାବକୁ ବୃଦ୍ଧି କରିବା ପାଇଁ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ମଧ୍ୟରେ ଆଉରି ପ୍ରଖର କାର୍ଯ୍ୟଟିକୁ ଜାତୀୟ କଂଗ୍ରେସ ସମ୍ମୁଖରେ ଉପସ୍ଥାପିତ କରିଥିଲା । ଏହି ଉଦ୍ଦେଶ୍ୟରେ ୧୯୨୧ ଖ୍ରୀଷ୍ଟାବ୍ଦ, ଜାନୁଆରୀ ମାସରେ ଏକ ବିଶେଷ କଂଗ୍ରେସ କମିଟି ଗଠିତ ହୋଇଥିଲା ।

୧୯୨୦ ଖ୍ରୀଷ୍ଟାବ୍ଦର ଶରତ କାଳରେ ଆନ୍ଦୋଳନ ଗ୍ରାମାଞ୍ଚଳକୁ ବ୍ୟାପୀ ଯାଇଥିଲା । ଯୁକ୍ତ ପ୍ରଦେଶରେ, ବିଶେଷତଃ, ୧୮୫୭-୧୮୫୯ ଖ୍ରୀଷ୍ଟାବ୍ଦର ଅଭ୍ୟୁତ୍‌ଥାନର ସ୍ମୃତି ଜଡ଼ିତ ଏହାର ପୂର୍ବାଞ୍ଚଳୀୟ ଜିଲ୍ଲାଗୁଡ଼ିକରେ ୧୯୨୧-୧୯୨୨ ଖ୍ରୀଷ୍ଟାବ୍ଦରେ ବ୍ୟାପକତମ କୃଷକ ଆନ୍ଦୋଳନ ଗଢ଼ି ଉଠିଥିଲା । ପ୍ରଥମତଃ, ଫୈଜାବାଦ ଓ ରାୟ ବେରିଲୀ ଜିଲ୍ଲାରେ କୃଷକ ବିକ୍ଷୋଭ ଦେଖା ଦେଇଥିଲା । ନିୟମାନୁଯାୟୀ ସେଠାକାର ଭଉତ ଚାଷୀମାନେ ଥିଲେ ନିମ୍ନ ଜାତିର ଲୋକ । ସେମାନେ ସ୍ଥାନୀୟ ଜମିଦାରମାନଙ୍କର କ୍ଷେତର ଫସଲକୁ ନଷ୍ଟ କରିଥିଲେ, ସେମାନଙ୍କ ଘରଦ୍ୱାର ଆକ୍ରମଣ କରିଥିଲେ ଏବଂ ବ୍ୟବସାୟ କେନ୍ଦ୍ର ଓ ଛୋଟ ସହରର ମହାଜନ ଓ ବଣିକମାନଙ୍କ ଉପରେ ଚଡ଼ଉ କରିଥିଲେ । ସାଧାରଣ କୃଷକମାନଙ୍କ ମଧ୍ୟରୁ ସେମାନଙ୍କ ନେତାମାନଙ୍କର ଉଦ୍‌ଭବ ଘଟିଥିଲା । ଏମାନଙ୍କ ମଧ୍ୟରୁ କେତେକ ଜନସାଧାରଣଙ୍କୁ ଉତ୍ତେଜିତ କରିବାର ମାଧ୍ୟମ ରୂପେ ଗ୍ରାମୀଣ ମେଳା ମହୋତ୍ସବରେ ପ୍ରଥାନୁଯାୟୀ ନାଟ୍ୟାଭିନୟ ଏବଂ ଭ୍ରମଣ କବି ଓ ସଂଗୀତଜ୍ଞମାନଙ୍କ ଆବୃତ୍ତିକୁ କାମରେ ଲଗାଉଥିଲେ ।

୧୯୨୧ ଖ୍ରୀଷ୍ଟାବ୍ଦର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଅବ୍ୟାହତ ରହିଥିବା ଏହିସବୁ ସ୍ୱତଃସ୍ଫୂର୍ତ୍ତ କାର୍ଯ୍ୟକଳାପକୁ ଶେଷରେ ପୁଲିସ୍ ଏବଂ ସୈନ୍ୟବାହିନୀ ନିର୍ମମ ଭାବେ ଦମନ କରିଥିଲେ । କେଇ ହଜାର କୃଷକ ଏହି ନିର୍ଯ୍ୟାତନ ସମୟରେ ଗିରଫ୍ ହୋଇଥିଲେ ।

ଯୁକ୍ତ ପ୍ରଦେଶର ସୁଲତାନ୍‌ପୁର ଜିଲ୍ଲାରେ ଅନୁଷ୍ଠିତ ୧୯୨୧ ଖ୍ରୀଷ୍ଟାବ୍ଦର ମଧ୍ୟ ଏବଂ ଶେଷରେ କୃଷକ ଆନ୍ଦୋଳନରେ ଏକା ରକମର ପୁନରାବୃତ୍ତି ଘଟିଥିଲା ।

ଯୁକ୍ତ ପ୍ରଦେଶର କୃଷକ ଆନ୍ଦୋଳନ ଅଯୋଧ୍ୟାରେ ଉଚ୍ଚତର ପର୍ଯ୍ୟାୟରେ ପହଞ୍ଚିଥିଲା । ସେଠାରେ "ଐକ୍ୟ" ନାମକ ସଂଗ୍ରାମରେ ସଶସ୍ତ୍ର ଭଉତ ଚାଷୀମାନେ ସକ୍ରିୟ ହୋଇ ଉଠିଥିଲେ । ଏହିସବୁ ସଂଗ୍ରାମୀ କୃଷକ ସେଠାରେ ତାଲୁକଦାରମାନଙ୍କର ଜମିଜମା ଓ ବିଷୟ ସଂପତ୍ତି ଦଖଲ କରି ନେଇଥିଲେ । ସେମାନଙ୍କୁ ଦମନ କରିବା ପାଇଁ ପଠାଯାଇଥିବା ପିଟୁଣି ବାହିନୀ ବିରୁଦ୍ଧରେ ଏହି ଦଖଲ ଦୀର୍ଘ ଦିନ ପର୍ଯ୍ୟନ୍ତ ଅତୁଟ ରଖିଥିଲେ । ଏମାନଙ୍କ ନେତାମାନଙ୍କ ମଧ୍ୟରେ ନିମ୍ନ ଜାତିରେ ଜାତ ପାସି ମାଦାରି ଓ ସାହ୍‌ରେବ ଯନାମଧନ୍ୟ ହୋଇଛନ୍ତି ।

ସ୍ୱତଃସ୍ଫୂର୍ତ୍ତ ଓ ସ୍ଥାନୀୟ ଚରିତ୍ର, ବିଭିନ୍ନ ଗୋଷ୍ଠୀ ମଧ୍ୟରେ ସମନ୍ୱୟର ଅଭାବ, ନିର୍ଦ୍ଦିଷ୍ଟ କର୍ମସୂଚୀର ଅଭାବ, ଆଦି ଦୁର୍ବଳତା ସତ୍ତ୍ୱେ ଯୁକ୍ତ ପ୍ରଦେଶର କୃଷକ ଆନ୍ଦୋଳନ ଜମିଦାର ଓ ମହାଜନମାନଙ୍କ ବିରୁଦ୍ଧରେ ପରିଚାଳିତ ହୋଇଥିଲା ।

କେତେକ ଅଞ୍ଚଳରେ କୃଷକ ଆନ୍ଦୋଳନ ସମୟରେ କୃଷକ ସଭା ଆକାରରେ କୃଷକ ସଂଗଠନର ପ୍ରଥମ ବୀଜ ଅଙ୍କୁରିତ ହୋଇଥିଲା । ଗ୍ରାମାଞ୍ଚଳରେ କର୍ମରତ କଂଗ୍ରେସ ନେତାମାନେ ଏହିସବୁ ସଂଗଠନରେ ଅଂଶ ଗ୍ରହଣ କରିଥିଲେ । ଚରଣ ଜବହାରଲାଲ ନେହେରୁ କୃଷକ ଆନ୍ଦୋଳନରେ ଅଂଶଗ୍ରହଣ କରି ପ୍ରଥମ ଥର ପାଇଁ ଗିରଫ ହୋଇଥିଲେ ।

ଗ୍ରାମାଞ୍ଚଳରେ କଂଗ୍ରେସ ଓ ଖିଲାଫତ ଆନ୍ଦୋଳନର ସୀମିତ ପ୍ରଭାବ ସତ୍ତ୍ୱେ ସଂଗଠିତ ଜାତୀୟ ଆନ୍ଦୋଳନ ଓ ସ୍ୱତଃସ୍ଫୂର୍ତ୍ତ କୃଷକ ଆନ୍ଦୋଳନ ମଧ୍ୟରେ କ୍ରମଶଃ ସଂଯୋଗ ଗଢ଼ି ଉଠିଥିଲା । ଯୁକ୍ତ ପ୍ରଦେଶର ସଂଗ୍ରାମୀ କୃଷକମାନେ ଗାନ୍ଧୀଙ୍କ ନିକଟରେ ଆବେଦନ କରିଥିଲେ ଏବଂ କେତେକ କ୍ଷେତ୍ରରେ ଏମାନଙ୍କ ସହିତ କଂଗ୍ରେସ ସ୍ୱେଚ୍ଛାସେବୀମାନେ ମଧ୍ୟ ସଂଗ୍ରାମରେ ଯୋଗ ଦେଇଥିଲେ ।

ଯୁକ୍ତ ପ୍ରଦେଶର କୃଷକ ଆନ୍ଦୋଳନରେ ସୁସ୍ପଷ୍ଟ ଶ୍ରେଣୀ ଚରିତ୍ର ଓ ନୂତନ ଐତିହାସିକ ଯୁଗର ଅଗ୍ରଗାମୀ ବୈଶିଷ୍ଟ୍ୟ ଫୁଟି ଉଠିଥିଲେ ମଧ୍ୟ ଅନ୍ୟାନ୍ୟ ବ୍ୟାପକ କୃଷକ ଆନ୍ଦୋଳନଗୁଡ଼ିକରେ (ଯଥା, ମାଲବାର ଓ ପଞ୍ଜାବରେ) ସେତେବେଳେ ଅତୀତମୁଖୀ ଚରିତ୍ର୍ୟ ଅତୁଟ ରହିଥିଲା । ଏହିସବୁ ଆନ୍ଦୋଳନ ଧର୍ମୀୟ ଖୋଳପାର ଆଢ଼ୁଆଳରେ ପରିଚାଳିତ ହେଉଥିଲା ।

୧୯୨୧-୧୯୨୨ ମସିହାରେ ଏକାଧିକ ବାର ଶିଖ କୃଷକମାନଙ୍କ ମଧ୍ୟରେ ମହନ୍ତ ବିରୋଧୀ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ଧର୍ମ ଗୁରୁ ହିସାବରେ ଏହିସବୁ ମହନ୍ତମାନେ ମନ୍ଦିରର ସଂପତ୍ତି ଆଉ ଆୟର ତଦାରଖି କରୁଥିଲେ । କାର୍ଯ୍ୟତଃ, ଏହା ଥିଲା ସାମନ୍ତ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ କୃଷକମାନଙ୍କର, କ୍ଷୁଦ୍ର ଜମିମାଲିକ ତଥା ରଇତ୍ ଚାଷୀର ସଂଗ୍ରାମ ଏବଂ ଆପାତ ଦୃଷ୍ଟିରେ ଏଥିରେ ଶିଖ୍ ସଂପ୍ରଦାୟର ଗଣତାନ୍ତ୍ରିକ ଐତିହ୍ୟର ପୁନଃପ୍ରତିଷ୍ଠା ଦାବି ଉଚ୍ଚାରିତ ହୋଇଥିଲା । ଏହା ପରେ ଏହି ସଂପ୍ରଦାୟ ମଧ୍ୟରେ "ଅକାଳୀ" (ଅମର) ଦଳର ଅଭ୍ୟୁଦୟ ଘଟିଥିଲା ଏବଂ ଏମାନେ ଶାନ୍ତିପୂର୍ଣ୍ଣ ଭାବେ ଶିଖ୍ ମନ୍ଦିରଗୁଡ଼ିକୁ ଦଖଲ କରିବାରେ ଉଦ୍ୟୋଗୀ ହୋଇଥିଲେ ।

ଅକାଳୀ ଆନ୍ଦୋଳନର ଶାନ୍ତିପୂର୍ଣ୍ଣ ଚରିତ୍ର ସତ୍ତ୍ୱେ ୧୯୨୧ ମସିହାରେ ନାନ୍‌କାନା ନିକଟରେ, ୧୯୨୨ ମସିହାରେ ଗୁରୁ-କା-ବାଗ୍‌ର ଅଦୂରରେ, ପଞ୍ଜାବର ଶିଖ୍ ତୀର୍ଥସ୍ଥାନଗୁଡ଼ିକର ମନ୍ଦିର ରକ୍ଷକ ମହନ୍ତମାନଙ୍କ ଦ୍ୱାରା ଆହୂତ ପୁଲିସ୍ ହାତରେ ନିରସ୍ତ୍ର ଅକାଳୀମାନେ ବହୁ ନିର୍ଯ୍ୟାତନ ଭୋଗ କରିଥିଲେ ।

ଅକାଳୀ ଆନ୍ଦୋଳନ ଦମନ ପରେ ୧୯୨୩ ମସିହାରେ ଏହି ଦଳଟି ବିଭକ୍ତ ହୋଇଯାଇ "ବାବର ଅକାଳୀ" (ଅକାଳୀ-ସିଂହ) ନାମରେ ଏକ ବାମପନ୍ଥୀ ଦଳର ଅଭ୍ୟୁଦୟ ଘଟିଥିଲା । ଏହା ପରେ ପଞ୍ଜାବର ସନ୍ତ୍ରାସବାଦୀମାନଙ୍କ ଗୋପନ ସଂଗଠନରେ ଯୋଗ ଦେଇଥିଲା । ଅହିଂସ ଚରିତ୍ର ହେତୁ ଅକାଳୀ ଆନ୍ଦୋଳନ ଗାନ୍ଧୀଙ୍କର ସୁଗଭୀର ସହାନୁଭୂତି ଓ ଜାତୀୟ କଂଗ୍ରେସର ସମର୍ଥନ ଲାଭ କରିଥିଲା ।

ଗାନ୍ଧୀ ଏବଂ କଂଗ୍ରେସ କିନ୍ତୁ ଏକା ଆନ୍ଦୋଳନ ଏବଂ ବିଂଶ ଦଶକର ପ୍ରାରମ୍ଭରେ ମାନ୍ଦ୍ରାଜ ପ୍ରଦେଶର ମାଲବାର ଜିଲ୍ଲାର ପ୍ରଧାନ କୃଷକ ଆନ୍ଦୋଳନଗୁଡ଼ିକ ସଂପର୍କରେ ସଂପୂର୍ଣ୍ଣ ଭିନ୍ନ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିଲେ ।

୧୯୨୧ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ମୋପଲା (ଦକ୍ଷିଣ-ପଶ୍ଚିମ ଭାରତରେ—କେରଳରେ ବସତିସ୍ଥାପନକାରୀ ମାଲୟାଲୀ ମୁସଲମାନ) ବିଦ୍ରୋହ ଦେଖା ଦେଇଥିଲା । ମୋପଲା

କୃଷକ ଓ କେତେକ ମୁସଲିମ୍ ଧର୍ମୀୟ ନେତା ଏଥିରେ ଅଂଶଗ୍ରହଣ କରିଥିଲେ । କିନ୍ତୁ ମୋପଲା ବଣିକମାନେ ଏହି ଅଭ୍ୟୁତ୍ଥାନ ଠାରୁ ଦୂରେଇ ରହିଥିଲେ ।

ଉଚ୍ଚ ଶ୍ରେଣୀର ବ୍ରାହ୍ମଣ ନମ୍ବୁଦ୍ରି ଭୂସ୍ୱାମୀମାନେ ତିରୁରଙ୍ଗାଡି ନାମକ ଛୋଟ ସହରରେ ଏକ ମସଜିଦ୍ ଉପରେ ଚଢ଼ଉ କରିବା ଫଳରେ ଏହି ବିଦ୍ରୋହଟି ଆରମ୍ଭ ହୋଇଥିଲା । ଏହା କ୍ରମଶଃ ମାଲାବାର ଜିଲାର ବିସ୍ତୃତ ଅଞ୍ଚଳକୁ ବ୍ୟାପୀ ଯାଇଥିଲା ଏବଂ ହିନ୍ଦୁ ଜମିଦାରମାନଙ୍କ ବିରୁଦ୍ଧରେ ମୋପଲା ରଇତ ଚାଷୀମାନଙ୍କ ସଂଗ୍ରାମର ରୂପ ଧାରଣ କରିଥିଲା । ଅନେକ ଜାଗାରେ ହିନ୍ଦୁ ରଇତ ଚାଷୀମାନେ ମୋପଲାମାନଙ୍କ ସହିତ କାନ୍ଧକୁ କାନ୍ଧ ମିଳେଇ ଲଢ଼େଇ କରିଥିଲେ । ଏହି ସଂଗ୍ରାମର ଧର୍ମୀୟ ଚରିତ୍ର ସତ୍ତ୍ୱେ ମୋପଲା ବିଦ୍ରୋହ ସ୍ପଷ୍ଟତଃ ସାମନ୍ତବିରୋଧୀ, ଔପନିବେଶିକତା ବିରୋଧୀ ବୈଶିଷ୍ଟ୍ୟ ଲାଭ କରିଥିଲା ।

ଆର୍ନାଦ ଓ ଓୟାଲୁଭାନ୍ଦ ତାଲୁକରେ ଔପନିବେଶିକ ପ୍ରଶାସନର ଉଚ୍ଛେଦ ପରେ ବିଦ୍ରୋହୀମାନଙ୍କ ଉଦ୍ୟୋଗରେ ସେଠାରେ "ଖଲିଫାଙ୍କ ରାଜ୍ୟ" ପ୍ରତିଷ୍ଠିତ ହୋଇଥିଲା । ଏହି ସଂଗଠନଟି ବିଦ୍ରୋହୀମାନଙ୍କ କାର୍ଯ୍ୟକଳାପକୁ ଅନୁପ୍ରେରଣା ଯୋଗାଇଥିଲା ଏବଂ ସ୍ଥାନୀୟ ପ୍ରଶାସନ କାର୍ଯ୍ୟାଦି ପରିଚାଳନା କରିଥିଲା । ଏହି "ରାଜ୍ୟର" ରାଷ୍ଟ୍ରପତି ଥିଲେ ସ୍ଥାନୀୟ ମୁସଲମାନ ନେତାମାନଙ୍କର ପ୍ରତିନିଧିମାନେ—ପ୍ରଥମେ ଅଲୀ ମୁସାଲିଆର ଏବଂ ପରେ କୁନେଆହମ୍ମଦ ଖାଜି ।

ଯଥା ସମୟରେ ମୋପଲାମାନଙ୍କ ବିରୁଦ୍ଧରେ ପୁଲିସ୍ ଓ ସୈନ୍ୟବାହିନୀ ପ୍ରେରିତ ହୋଇଥିଲା । ବୀରତ୍ୱପୂର୍ଣ୍ଣ ପ୍ରତିରୋଧ ଏବଂ ବନାକୀର୍ଣ୍ଣ ଏଲାକାରେ ପ୍ରତିଷ୍ଠିତ ସେମାନଙ୍କ ଘାଟିଗୁଡ଼ିକରୁ କୌଶଳପୂର୍ଣ୍ଣ ଯୁଦ୍ଧ ଚାଳନା ସତ୍ତ୍ୱେ ପର ବର୍ଷ ପ୍ରାରମ୍ଭରେ ବିଦ୍ରୋହୀମାନେ ପରାଜୟ ବରଣ କରିଥିଲେ । ଏଥିରେ ୩୦ ହଜାରରୁ ଅଧିକ ମୋପଲା ବନ୍ଦୀ ହୋଇଥିଲେ ।

ବିଦ୍ରୋହୀମାନଙ୍କ ବିରୁଦ୍ଧରେ ବ୍ରିଟିଶ୍‌ମାନେ ନିଷ୍ଠୁର ପ୍ରତିଶୋଧ ନେଇଥିଲେ । ବନ୍ଦୀମାନଙ୍କୁ ରେଳଗାଡ଼ିରେ ପଠାଇଲା ବେଳେ ଗୋଟିଏ ଡବାରେ ଶ୍ୱାସରୁଦ୍ଧ ହୋଇ ୭୦ଜଣ ମୋପଲାଙ୍କର ମୃତ୍ୟୁ ଘଟିଥିଲା ।

ପଦାନୂର ରେଳ ଷ୍ଟେସନରେ ସଂଘଟିତ ଏହି ଘଟଣାଟିର ତଦନ୍ତ ପାଇଁ ଏକ ଜନପ୍ରତିନିଧି ଦଳ ଗଠିତ ହେଲେ ମଧ୍ୟ ଜାତୀୟ କଂଗ୍ରେସ ସଶସ୍ତ୍ର ଅଭ୍ୟୁତ୍ଥାନ ପାଇଁ ମୋପଲା ବିଦ୍ରୋହକୁ କଠୋର ଭାବେ ସମାଲୋଚନା କରିଥିଲା । ଏ ବିଷୟରେ ଖିଲାଫତ କମିଟି ମଧ୍ୟ ଗାନ୍ଧୀଙ୍କର ଅନୁରୂପ ମନୋଭାବ ପ୍ରଦର୍ଶନ କରିଥିଲା ।

ମାଲାବାର ଉପକୂଳ, ପଞ୍ଜାବ ଓ ଯୁକ୍ତ ପ୍ରଦେଶର ଏହିସବୁ ଘଟଣାବଳୀ ଛଡ଼ା ବଙ୍ଗଳା, ବମ୍ବେ ପ୍ରେସିଡେନ୍‌ସି ଓ ଦେଶର ଅନ୍ୟାନ୍ୟ ଅଂଶରେ ବିକ୍ଷିପ୍ତ ସ୍ୱତଃସ୍ଫୂର୍ତ୍ତ କୃଷକ ବିକ୍ଷୋଭ ଦେଖା ଦେଇଥିଲା । ଏହିସବୁ କୃଷକ ଆନ୍ଦୋଳନ, ଅବଶ୍ୟ, ଜାତୀୟ-ମୁକ୍ତି ଆନ୍ଦୋଳନ କ୍ଷେତ୍ରରେ କୌଣସି ସ୍ୱାଧୀନ ବା ନିର୍ଣ୍ଣାୟକମୂଳକ ଉପାଦାନ ହୋଇ ପାରି ନଥିଲା ।

## ଆନ୍ଦୋଳନରୁ ପଶ୍ଚାଦ୍‌ପସରଣ

୧୯୨୧ ଖ୍ରୀଷ୍ଟାବ୍ଦ ଶେଷରେ ଭାରତର ରାଜନୈତିକ ପରିସ୍ଥିତି ଆଉରି ଉତ୍ତେଜନାପୂର୍ଣ୍ଣ ହୋଇ ଉଠିଥିଲା । ସେଇ ବର୍ଷ ଦ୍ୱିତୀୟାର୍ଦ୍ଧରେ ଶ୍ରମିକ ଓ କୃଷକ ଆନ୍ଦୋଳନ ତା'ର ଶୀର୍ଷଦେଶରେ

ପହଞ୍ଚିଥିଲା ଏବଂ ଅସହଯୋଗ ଆନ୍ଦୋଳନର ଶକ୍ତି ମଧ୍ୟ କ୍ରମଶଃ ବୃଦ୍ଧି ପାଉଥିଲା । ଇତିମଧ୍ୟରେ କଂଗ୍ରେସର ପ୍ରଭାବ ସଂପ୍ରସାରିତ ହେବା ସଙ୍ଗେ ସଙ୍ଗେ ଏହାର ଗଣ ସମର୍ଥନ ମଧ୍ୟ ଦୃଢ଼ ହେଉଥିଲା । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଦ୍ୱିତୀୟ ଅଧିବେଶନଟି କଂଗ୍ରେସ ଦ୍ୱାରା ସଂଗଠିତ ଶ୍ରମିକ ଆନ୍ଦୋଳନ ଉପରେ ତା'ର ପ୍ରଭାବକୁ ଶକ୍ତିଶାଳୀ କରି ପାରିଥିଲା ।

୧୯୨୧ ଖ୍ରୀଷ୍ଟାବ୍ଦ, ନଭେମ୍ବର ୧୭ ତାରିଖରେ ବ୍ରିଟିଶ୍ ସିଂହାସନର ଭାବୀ ଅଧିକାରୀ ପ୍ରିନ୍‌ସ ଅଫ୍ ଓ୍ୱେଲସ୍‌ଙ୍କ ଭାରତ ଆଗମନ ଉପଲକ୍ଷେ ବମ୍ବେ ଶ୍ରମିକମାନଙ୍କର ଚାରିଦିନବ୍ୟାପୀ ରାଜନୈତିକ ଧର୍ମଘଟ ହେଲା ଏହି ସମୟର ଉଲ୍ଲେଖନୀୟ ରାଜନୈତିକ ଘଟଣା । ମାଡ୍ରାଜ ଏବଂ ଅନ୍ୟାନ୍ୟ ସହରରେ ମଧ୍ୟ ପ୍ରତିବାଦମୂଳକ ଧର୍ମଘଟ ଓ ବିକ୍ଷୋଭ ଦେଖା ଦେଇଥିଲା ।

ଗାନ୍ଧୀ ବମ୍ବେରେ ଅନୁଷ୍ଠିତ ବ୍ରିଟିଶ୍ ଅତ୍ୟାଚାରର ନିନ୍ଦା କରିଲେ ମଧ୍ୟ ପଶ୍ଚାଦ୍‌ପସରଣ କରିବାକୁ ସେପର୍ଯ୍ୟନ୍ତ ଇଙ୍ଗିତ ଦେଇ ନଥିଲେ । କଂଗ୍ରେସର ଆହ୍ମଦାବାଦ ଅଧିବେଶନରେ (୧୯୨୧, ଡିସେମ୍ବର) ସ୍ୱରାଜ ଲାଭ ଏବଂ ଖଲିଫାଙ୍କ ପଦମର୍ଯ୍ୟାଦା ପୁନଃପ୍ରତିଷ୍ଠା ନହେଲା ପର୍ଯ୍ୟନ୍ତ ଅସହଯୋଗ ଅବ୍ୟାହତ ରହିବ ବୋଲି ସିଦ୍ଧାନ୍ତ ନିଆଯାଇଥିଲା । ଏଥିରେ ଗାନ୍ଧୀ ସର୍ବମୟ କ୍ଷମତାର ଅଧିକାର ସମେତ ଆନ୍ଦୋଳନ ପରିଚାଳନା କରିବାକୁ ନେତୃତ୍ୱ ଲାଭ କରିଥିଲେ ।

ଏହି ସମୟରେ ଔପନିବେଶିକ ସରକାର ଆନ୍ଦୋଳନର ଅଂଶୀଦାର, ମୁଖ୍ୟତଃ କଂଗ୍ରେସର ସ୍ୱେଚ୍ଛାସେବକମାନଙ୍କ ବିରୁଦ୍ଧରେ ବ୍ୟାପକ ନିର୍ଯ୍ୟାତନ ଚଳେଇଥିଲା । ୧୯୨୨ ମସିହାର ପ୍ରାରମ୍ଭରେ ମୋତିଲାଲ ନେହରୁ, ଜବାହାରଲାଲ ନେହରୁ, ଅଲୀ ଭ୍ରାତୃଦ୍ୱୟ, ଚିତ୍ତରଞ୍ଜନ ଦାସ, ଲାଲା ଲଜପତ୍ ରାୟ ପ୍ରମୁଖ ବହୁ କଂଗ୍ରେସ ନେତାଙ୍କ ସମେତ ପ୍ରାୟ ୧୦ ହଜାର କର୍ମୀଙ୍କୁ ଗିରଫ୍ କରାଯାଇଥିଲା ।

ଏହି ବର୍ଷ ଫେବୃଆରୀ ପହିଲାରେ ଗାନ୍ଧୀ ନିର୍ଯ୍ୟାତନ ବନ୍ଦ କରିବାକୁ ଦାବି କରି ବଡ଼ଲାଟ୍ ରିଡ଼ିଙ୍ଗ୍‌ଙ୍କ ନିକଟକୁ ଏକ ଚରମପତ୍ର ପଠାଇଥିଲେ । ଅନ୍ୟଥା, ସେ ଅସହଯୋଗର ଦ୍ୱିତୀୟ ପର୍ଯ୍ୟାୟ, କର ବନ୍ଦ ପାଇଁ ଜନସାଧାରଣଙ୍କୁ ଆବେଦନ ଜଣେଇବେ ବୋଲି ଧମକ ଦେଇଥିଲେ ।

କିନ୍ତୁ କିଛି ଦିନ ମଧ୍ୟରେ ଗାନ୍ଧୀ ହଠାତ୍ ତାଙ୍କ ରଣକୌଶଳ ପରିବର୍ତ୍ତନ କରିଦେଲେ । କଂଗ୍ରେସର ଏହି ଆକସ୍ମିକ ମତ ପରିବର୍ତ୍ତନର ଆଳ ହିସାବରେ ଚୌରିଚୌରାରେ (ଯୁକ୍ତ ପ୍ରଦେଶର ଗୋରଖପୁର ଜିଲ୍ଲାର ଏକ ଛୋଟ ସହର) ଫେବୃଆରୀ ୪ ତାରିଖ ଦିନ ପୁଲିସ୍ କର୍ତ୍ତୃକ ଗୁଳି ଚାଳନା ପରେ ଦଳେ କୃଷକ ସେମାନଙ୍କ ପଶ୍ଚାଦ୍‌ଧାବନ କରି ଥାନାରେ ଅଗ୍ନିସଂଯୋଗ କରିବା ଘଟଣାଟି ଉଲ୍ଲିଖିତ ହୋଇଥିଲା ।

ଗାନ୍ଧୀ ପ୍ରକାଶ୍ୟରେ ନିହତ ପୁଲିସ୍‌ମାନଙ୍କର ପରିବାରବର୍ଗଙ୍କ ପ୍ରତି ସହାନୁଭୂତି ଜଣାଇଥିଲେ ଏବଂ କୃଷକ ବିଦ୍ରୋହରେ ଅଂଶଗ୍ରହଣକାରୀଙ୍କୁ ତୀବ୍ର ନିନ୍ଦା କରିଥିଲେ । ସେ ଘୋଷଣା କରିଥିଲେ, ତାଙ୍କ ମତରେ, ଦେଶ ଏପର୍ଯ୍ୟନ୍ତ ଅହିଂସ ଆନ୍ଦୋଳନ ପର୍ଯ୍ୟାୟରେ ପହଞ୍ଚି ନାହିଁ ଏବଂ ଏଥିପାଇଁ ସେ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କରି ନେଉଛନ୍ତି ।

ଗାନ୍ଧୀଙ୍କ ମତାନୁଯାୟୀ ତାଙ୍କର ସିଦ୍ଧାନ୍ତ ମୂଳରେ ଥିଲା—ଏକ ଦିଗରେ, ବିରୋଧୀ ଜାତୀୟ ଶକ୍ତି ସେତେବେଳେ ସାମ୍ରାଜ୍ୟବାଦୀ ସରକାରର ଚାପ ସହ୍ୟ କଲା ଭଳି ଅବସ୍ଥାରେ ପହଞ୍ଚି ନଥିଲା, ଅନ୍ୟ ଦିଗରେ, ଗଣ ଆନ୍ଦୋଳନଗୁଡ଼ିକ କଂଗ୍ରେସର ନିୟନ୍ତ୍ରଣାତୀତ ହୋଇ ପଡ଼ୁଥିଲା ।

ଗୁଜରାଟର ଏକ ଛୋଟ ସହର ବରଦୋଲିରେ ଆହୂତ କଂଗ୍ରେସ କାର୍ଯ୍ୟକାରୀ କମିଟିର ବିଶେଷ

ଅଧିବେଶନରେ ଗୃହୀତ ଏକ ପ୍ରସ୍ତାବରେ ଗାନ୍ଧୀଙ୍କୁ ଏହି ବିଷୟରେ ଆନୁଷ୍ଠାନିକ ସମର୍ଥନ ପ୍ରଦାନ କରାଯାଇଥିଲା । ଆନ୍ଦୋଳନ ପରିତ୍ୟାଗ ପାଇଁ କୃଷକମାନଙ୍କୁ ଆବେଦନ ଏବଂ ଜମିଦାରମାନଙ୍କ ପ୍ରତି ସହାନୁଭୂତି ଜ୍ଞାପନ, ଏହି ପ୍ରସ୍ତାବର ଅନ୍ତର୍ଭୁକ୍ତ ଥିଲା । ଏଥିରେ ସ୍ୱେଚ୍ଛାସେବକ ଦଳର କାର୍ଯ୍ୟକଳାପ ବନ୍ଦ କରିବାକୁ ପ୍ରସ୍ତାବ ଦିଆଯାଇଥିଲା । କଂଗ୍ରେସର ସଦସ୍ୟମାନେ ଗାନ୍ଧୀଙ୍କ ପ୍ରସ୍ତାବିତ ଗଠନମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିବା ପାଇଁ ଉଦ୍‌ଗ୍ରୀବ୍ ହୋଇ ଉଠିଥିଲେ ଏବଂ ଏହି କର୍ମସୂଚୀର ପ୍ରଧାନ ଅଂଶ ହିସାବରେ ସମ୍ଭାବ୍ୟ ସବୁମତେ ସେମାନେ ସୂତାକଟା ଓ ଲୁଗା ବୁଣାର ବିକାଶରେ ଉତ୍ସାହ ଯୋଗାଇଥିଲେ ।

ଏକ ବୈପ୍ଳବିକ ପରିସ୍ଥିତିରେ ଗାନ୍ଧୀ ଆଉ କଂଗ୍ରେସ ନେତୃବୃନ୍ଦଙ୍କ ଦ୍ୱାରା ଅନୁସୃତ ଏହି ପଥ ସ୍ୱାଧୀନତା ଆନ୍ଦୋଳନର ସାଧାରଣ କର୍ମୀମାନଙ୍କ ପକ୍ଷରେ ଅପ୍ରତ୍ୟାଶିତ ଥିଲା । କଂଗ୍ରେସ ଅନ୍ତର୍ଭୁକ୍ତ ବହୁ ଗଣସଂଗଠନ ମଧ୍ୟ ଏହାର ପ୍ରତିବାଦ କରିଥିଲେ, ବାମପନ୍ଥୀମାନଙ୍କ ମଧ୍ୟରେ ଘନିଷ୍ଠତା ବୃଦ୍ଧି ପାଇଥିଲା ଏବଂ ସନ୍ତ୍ରାସବାଦୀମାନଙ୍କର ଗୋପନ କାର୍ଯ୍ୟକଳାପରେ ନୂତନ ଜୁଆର ଦେଖା ଦେଇଥିଲା ।

ସୁତରାଂ, ନେତୃତ୍ୱହୀନ ଆନ୍ଦୋଳନର କାର୍ଯ୍ୟକଳାପ ଏହା ପରେ ଅବ୍ୟାହତ ରହିଲେ ମଧ୍ୟ କ୍ରମବର୍ଦ୍ଧମାନ ନିର୍ଯ୍ୟାତନମୂଳକ ପରିସ୍ଥିତିରେ ଅବିଳମ୍ବେ ଏହା ଦୁର୍ବଳ ହୋଇ ପଡ଼ିଥିଲା ।

## ବ୍ରିଟିଶ୍ ସାମ୍ରାଜ୍ୟବାଦର ପ୍ରତ୍ୟାଘାତ

### ଭାରତରେ ବ୍ରିଟିଶ୍ ନୀତି — ୧୯୨୩-୧୯୨୭

୧୯୧୮-୧୯୨୨ ଖ୍ରୀଷ୍ଟାବ୍ଦର ପ୍ରଥମ ବୈପ୍ଳବିକ ଆଘାତ ପରେ ଜାତୀୟ ସ୍ୱାଧୀନତାକାମୀ ଶକ୍ତିଗୁଡ଼ିକ କିଛି ପରିମାଣରେ ପଶ୍ଚାଦ୍‌ପସରଣ କରିଥିଲେ ଏବଂ ସାମ୍ରାଜ୍ୟବାଦୀମାନେ ୧୯୨୭ ପର୍ଯ୍ୟନ୍ତ ସେମାନଙ୍କ ପ୍ରତ୍ୟାଘାତ ଅବ୍ୟାହତ ରଖିଥିଲେ । ପୁଞ୍ଜିବାଦୀ ଓ ଔପନିବେଶିକ ଦୁନିଆର ଆଭ୍ୟନ୍ତରୀଣ କାର୍ଯ୍ୟକର ସାର୍ବିକ ପ୍ରକ୍ରିୟାସମୂହର ଅଂଶ ହିସାବରେ ଭାରତର ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତିରେ ପରିବର୍ତ୍ତନ ଦେଖା ଦେଇଥିଲା ଏବଂ ତାହା ପୁଞ୍ଜିବାଦର ଆଂଶିକ ଭାବେ ଏକ ସ୍ଥାୟୀ କାଳ ପର୍ବର ସୂଚନା ଦେଇଥିଲା ।

ବ୍ରିଟିଶ୍ ବୁର୍ଜୁଆମାନେ ଭାରତରେ ସେମାନଙ୍କ ଅର୍ଥନୈତିକ ଓ ରାଜନୈତିକ କ୍ଷୟକ୍ଷତିସମୂହକୁ ପୂରଣ କରିବା ପାଇଁ ଚେଷ୍ଟା କରିଥିଲେ । ଔପନିବେଶିକ ସରକାରର ପ୍ରତ୍ୟକ୍ଷ ସମର୍ଥନ ଉପରେ ନିର୍ଭର କରି ଏବଂ ପ୍ରାପ୍ତ ଅର୍ଥନୈତିକ ସୁବିଧା ସୁଯୋଗର ଉପଯୋଗ କରି ବ୍ରିଟିଶ୍ ଶିଳ୍ପପତିମାନେ ଭାରତରେ ସୂତାବସ୍ତ୍ର ସହ ଅନ୍ୟାନ୍ୟ ପଣ୍ୟ ରପ୍ତାନି ବୃଦ୍ଧି କରିଥିଲେ । ଭାରତର ବଜାରରେ ବିଦେଶୀ ପ୍ରତିଯୋଗିତା ନିମ୍ନୋକ୍ତ ଶୁଳ୍କ ନୀତି ସାହାଯ୍ୟରେ ହ୍ରାସ କରାଯାଇଥିଲା : ଭାରତୀୟ ବସ୍ତ୍ରଶିଳ୍ପର ଅନୁକୂଳ ସଂରକ୍ଷଣମୂଳକ ଶୁଳ୍କ ନୀତିଟି ୧୯୨୫ ଖ୍ରୀଷ୍ଟାବ୍ଦରେ ପରିତ୍ୟକ୍ତ ହେଲା ଏବଂ ୧୯୨୭ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଲୁହା ଉତ୍ପାଦନ କ୍ଷେତ୍ରରେ ଏହାର ପୁନରାବୃତ୍ତି ଘଟିଥିଲା । ଏଥି ସଙ୍ଗେ ସଙ୍ଗେ ରେଳବାହୀ ମାଲର ଅବକାରୀ ଶୁଳ୍କ ଏବଂ ଆମଦାନି ରପ୍ତାନି ଶୁଳ୍କ ବୃଦ୍ଧି ପାଇଥିଲା । ଏହିସବୁ ବ୍ୟବସ୍ଥା ଫଳରେ ଭାରତରେ ନିର୍ମିତ ପଣ୍ୟ କ୍ଷେତ୍ରରେ ପ୍ରତିଯୋଗିତାର ମାତ୍ରା ହ୍ରାସ ପାଇଥିଲା ।

ଟଙ୍କା ବିନିମୟର ନୂତନ ହାର ପ୍ରବର୍ତ୍ତନ କରି ଫିନାନ୍ସ ଏବଂ ମୁଦ୍ରା ନୀତି କ୍ଷେତ୍ରରେ ସଂସ୍କାର ଦ୍ୱାରା ବ୍ରିଟେନ୍ ଭାରତୀୟ ଅର୍ଥନୀତିର ବିଦ୍ୟମାନ ଅବସ୍ଥାକୁ ମଜ୍‌ବୁତ୍ କରିଥିଲା ।

ରାଜନୈତିକ କ୍ଷେତ୍ରରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଏଥର ମଣ୍ଟେଗୁ–ଚେମ୍‌ସଫୋର୍ଡ ସଂସ୍କାର ମାଧ୍ୟମରେ ଭାରତୀୟ ବୁର୍ଜୁଆମାନଙ୍କୁ ପ୍ରଦତ୍ତ ସାମାନ୍ୟ ସୁବିଧାସୁଯୋଗକୁ ଧୀରେ ଧୀରେ ଫାଙ୍କା ଆବାଜରେ ପର୍ଯ୍ୟବସିତ କରି ଦେଇଥିଲେ । ଅସହଯୋଗ ଆନ୍ଦୋଳନକୁ ଦମନ କଲା ପରେ ଔପନିବେଶିକ ପ୍ରଶାସନ ଦେଶର, ବିଶେଷତଃ, ବଙ୍ଗଳାରେ ସମସ୍ତ ପ୍ରକାର ବିରୋଧିତାର ମୂଳୋତ୍ପାଟନ କରିବାରେ ଲାଗି ପଡ଼ିଥିଲା ।

୧୯୨୨, ଅଗଷ୍ଟ ମାସରେ କର୍ମନୀତି ସଂକ୍ରାନ୍ତ ଏକ ଭାଷଣରେ ଲଏଡ ଜର୍ଜ ଭାରତକୁ ସ୍ୱାୟତ୍ତଶାସନ ନଦେବା ପାଇଁ ସ୍ପଷ୍ଟ ଭାବେ ଘୋଷଣା କରିଥିଲେ । ପ୍ରଦେଶଗୁଡ଼ିକରେ ବ୍ରିଟିଶ୍ ଔପନିବେଶିକ କର୍ମଚାରୀମାନଙ୍କ ହାତରେ ପୂର୍ବେ ଯେଉଁସବୁ କ୍ଷମତା ଥିଲା ଏବେ ଦ୍ରୁତତାର ସହିତ ସେସବୁକୁ ପ୍ରତ୍ୟାର୍ପଣ କରାଗଲା ଏବଂ ସେମାନେ ଖୋଲାଖୋଲି ଭାବେ କେନ୍ଦ୍ରୀୟ ଓ ପ୍ରାଦେଶିକ କାର୍ଯ୍ୟନିର୍ବାହୀ ସଂସ୍ଥାଗୁଡ଼ିକରେ ଗୃହୀତ ପ୍ରସ୍ତାବସମୂହକୁ ଅଗ୍ରାହ୍ୟ କରି ଚାଲିଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ୧୯୨୨ ଖ୍ରୀଷ୍ଟାବ୍ଦରେ ବଡ଼ଲାଟ୍‌ଙ୍କ କର୍ତ୍ତୃକ ଆଇନ୍ ସଭାର ସଂଖ୍ୟାଗରିଷ୍ଠ ସଦସ୍ୟମାନଙ୍କର ମତାମତକୁ ଅଗ୍ରାହ୍ୟ କରି ଦେଶୀୟ ରାଜ୍ୟଗୁଡ଼ିକରେ ଜାତୀୟ ଆନ୍ଦୋଳନକୁ ଦମନ କରିବା ପାଇଁ ନିର୍ଯ୍ୟାତନ ଚଳାଇବା ନିମିତ୍ତ ଅନୁକୂଳ ଏକ ଆଇନ୍ ପାଶ୍ କରିବାର ଘଟଣାଟି ଉଲ୍ଲେଖଯୋଗ୍ୟ । ବଙ୍ଗଳା ଓ ମଧ୍ୟ ପ୍ରଦେଶରେ ୧୯୨୪-୧୯୨୫ ଖ୍ରୀଷ୍ଟାବ୍ଦରେ ଦ୍ୱୈତଶାସନକୁ ଆନୁଷ୍ଠାନିକ ଭାବେ ବାତିଲ କରାଯାଇଥିଲା ।

ବିଶେଷ ନିର୍ବାଚକ ମଣ୍ଡଳୀର ବ୍ୟାପକ ବ୍ୟବହାର ଦ୍ୱାରା ବ୍ରିଟିଶ୍ ଔପନିବେଶିକମାନେ ଏଥି ସହିତ ପୁନର୍ବାର ହିନ୍ଦୁ ମୁସଲମାନ ସଂପ୍ରଦାୟ ମଧ୍ୟରେ ଶତ୍ରୁତା ବୃଦ୍ଧି ପାଇଁ ଇନ୍ଧନ ଯୋଗାଇଥିଲେ । ଫଳରେ ବର୍ତ୍ତମାନ ଶତାବ୍ଦୀର ପ୍ରାରମ୍ଭରେ ପ୍ରତିଷ୍ଠିତ ମୁସଲିମ୍ ଲୀଗ୍ ଓ ହିନ୍ଦୁ ମହାସଭାର ସାଂପ୍ରଦାୟିକ କ୍ରିୟାକଳାପ ପୁନରୁଜ୍ଜୀବିତ ହୋଇଥିଲା । ୧୯୨୫ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହିନ୍ଦୁ ମହାସଭାର ଅଧିବେଶନଟି ଥିଲା ହିନ୍ଦୁ ଉଗ୍ରଜାତ୍ୟାଭିମାନ ପ୍ରଚାର କରିବାର ଏକ ଦୃଷ୍ଟାନ୍ତ ସ୍ୱରୂପ । ଏଥିରେ ସେମାନେ ଭାରତୀୟ ମୁସଲମାନମାନଙ୍କୁ ବଳପୂର୍ବକ ହିନ୍ଦୁ ଧର୍ମରେ ଦୀକ୍ଷିତ କରିବାକୁ ଆନ୍ଦୋଳନ ଜଣାଇଥିଲେ । ଏହାର ପ୍ରତିବାଦରେ ମୁସଲିମ୍ ନେତୃବୃନ୍ଦ ଓ ସାଂପ୍ରଦାୟିକ ସଂଗଠନସମୂହ ଉନ୍ମତ୍ତ ହିନ୍ଦୁ ବିରୋଧୀ ପ୍ରଚାରରେ ମାତି ଉଠିଥିଲେ । ଠିକ୍ ଏହିଭଳି ଏକ ପରିସ୍ଥିତିରେ ବ୍ରିଟିଶ୍‌ମାନେ ଏହି ଦୁଇ ସଂପ୍ରଦାୟର ଧର୍ମୀୟ ସଂଗଠନଗୁଡ଼ିକର ସାହାଯ୍ୟରେ ୧୯୨୩-୧୯୨୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅନେକ ହିନ୍ଦୁ ମୁସଲମାନ ଦଙ୍ଗା ଓ ଗଣହତ୍ୟା ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ଖିଲାଫତ ଆନ୍ଦୋଳନ ସମୟରେ ଏହି ଦୁଇ ସଂପ୍ରଦାୟ ମଧ୍ୟରେ ଗଢ଼ି ଉଠିଥିବା ମୈତ୍ରୀ ଏହି ଭାବେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା ।

ଏହି ସମୟରେ ବିଭିନ୍ନ ପ୍ରଦେଶରେ ଗଢ଼ି ଉଠିଥିବା ସାମନ୍ତ ଭୂସ୍ୱାମୀମାନଙ୍କର ପ୍ରତିକ୍ରିୟାଶୀଳ ଦଳଗୁଡ଼ିକ (ଯଥା, ପଞ୍ଜାବର "ୟୁନିଅନ୍ ପାର୍ଟି", ମାନ୍ଦ୍ରାଜର "ଜଷ୍ଟିସ୍ ପାର୍ଟି") ଔପନିବେଶିକ ସରକାରକୁ ସମର୍ଥନ ପ୍ରଦାନ କରିଥିଲେ ।

ବ୍ରିଟିଶ୍‌ମାନେ ପ୍ରତିକ୍ରିୟାଶୀଳ ଦଳ ଓ ସଂଗଠନଗୁଡ଼ିକର ଏକ ଐକ୍ୟବଦ୍ଧ ସାମ୍ମୁଖ୍ୟକୁ ଜାତୀୟ ବିରୋଧୀ ଦଳର ପ୍ରତିପକ୍ଷ ହିସାବରେ ଛିଡ଼ା କରାଇବାକୁ ଚେଷ୍ଟା କରିଥିଲେ ।

ଜାତୀୟ କଂଗ୍ରେସର ସମର୍ଥକ ବୁର୍ଜୁଆ-ଜମିଦାର ଚକ୍ରର ଆପୋଷମୂଳକ ମନୋଭାବ ଦେଶର ଅଭ୍ୟନ୍ତରରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ଏହି ଅବସ୍ଥାନକୁ ଦୃଢ଼ କରିବାରେ ସହାୟତା କରୁଥିଲେ । ଏହି ଶେଷୋକ୍ତ ପ୍ରବଣତାଟି ବିଂଶ ଦଶକର ମଧ୍ୟ ଭାଗରେ ଉଦ୍‌ଭୂତ ଏକ ପରିସ୍ଥିତି ଦ୍ୱାରା ପ୍ରୋତ୍ସାହିତ ହୋଇଥିଲା, ଯାହାକି ଭାରତୀୟ ବୃହଦାକାର ଶିଳ୍ପୋଦ୍ୟୋଗଗୁଡ଼ିକର ଆଉରି ଉନ୍ନତି ପକ୍ଷରେ ତୁଳନାମୂଳକ ଭାବେ ଅନୁକୂଳ ଥିଲା ।

## କଂଗ୍ରେସ ମଧ୍ୟରେ ସଂଘାତ । ସ୍ୱରାଜପନ୍ଥୀବୃନ୍ଦ

୧୯୨୨ ଖ୍ରୀଷ୍ଟାବ୍ଦରେ ଜାତୀୟ ଶକ୍ତିସମୂହର ପଶ୍ଚାଦ୍‌ପସରଣ ପରେ ଗଣ ଆନ୍ଦୋଳନରେ ଭଟା ଦେଖା ଦେଇଥିଲା । ଏହି ସମୟ କାଳଟି ଥିଲା ପ୍ରବଳ ବୈପ୍ଳବିକ କ୍ରିୟାକଳାପପୂର୍ଣ୍ଣ ବର୍ଷଗୁଡ଼ିକରେ ଅଂଶଗ୍ରହଣକାରୀମାନଙ୍କ ପାଇଁ ଅର୍ଜିତ ରାଜନୈତିକ ଅଭିଜ୍ଞତାସମୂହର ବିଶ୍ଳେଷଣର ସମୟ । ଦେଶର ଏହି ନୂତନ ଆଭ୍ୟନ୍ତରୀଣ ପରିସ୍ଥିତିରେ ଅନୁସୃତ ରଣନୀତି ନେଇ ତୁମୁଳ ଆଲୋଚନା ଚାଲିଥିଲା ।

ସଂଗଠନ ହିସାବରେ ଜାତୀୟ କଂଗ୍ରେସରେ ସେତେବେଳେ ଦେଖା ଦେଇଥିଲା ସଂକଟ — ୧୯୨୧-୧୯୨୩ ମସିହାରେ ଏହାର ସଦସ୍ୟ ସଂଖ୍ୟା ୧ କୋଟିରୁ କମି ଆସି କେଇ ଲକ୍ଷରେ ପହଞ୍ଚିଥିଲା । ଏହି ବ୍ୟାପକ ହ୍ରାସର କାରଣ ନିହିତ ଥିଲା ମୁକ୍ତି ଆନ୍ଦୋଳନର ସାମୟିକ ପରାଜୟ ମଧ୍ୟରେ । କଂଗ୍ରେସର ନେତୃବୃନ୍ଦଙ୍କ ଦ୍ୱାରା "ବରଦୋଲି ପ୍ରସ୍ତାବ" ଗୃହୀତ ହେଲା ପରେ ସଂଗ୍ରାମର ନେତା ହିସାବରେ କଂଗ୍ରେସର ସମ୍ମାନ ହାନି ଘଟିଥିଲା ।

ସ୍ୱରାଜ ଲାଭର ସଂଗ୍ରାମର ସମ୍ଭାବ୍ୟ ରଣକୌଶଳରେ ପରିବର୍ତ୍ତନ ଓ ଗଣଆନ୍ଦୋଳନର ନେତୃତ୍ୱ ଘେନି କଂଗ୍ରେସର ଆଭ୍ୟନ୍ତରୀଣ ମତାନୈକ୍ୟ ଫଳରେ ପାର୍ଟି ମଧ୍ୟରେ ଦୁଇଟି ପ୍ରଧାନ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ପ୍ରଥମଟିରେ ଥିଲେ ତଥାକଥିତ ସ୍ଥିତାବସ୍ଥା ପରାୟଣ ଗୋଷ୍ଠୀ, ଗାନ୍ଧୀଙ୍କ ସମର୍ଥକଗଣ । ନବଜାତ ପରିସ୍ଥିତିରେ ଜାତୀୟ ନେତା ସାମୟିକ ଭାବେ ସୁପରୀକ୍ଷିତ ଗଣ ସତ୍ୟାଗ୍ରହ ପ୍ରତ୍ୟାହାର କରି ନେଇ ତା ସ୍ଥାନରେ ତଥାକଥିତ ଗଠନମୂଳକ କର୍ମସୂଚୀ ଉପସ୍ଥାପିତ କରିଥିଲେ ।

ଏଭଳି ଏକ ଅବସ୍ଥାରେ ଗାନ୍ଧୀ ଏବଂ ତାଙ୍କ ଅନୁଗାମୀମାନଙ୍କ ଦ୍ୱାରା ଅନୁସୃତ ମୂଳ କାର୍ଯ୍ୟାବଳୀର ଧରଣ ଥିଲା : କୁଟୀରଶିଳ୍ପ, ବିଶେଷତଃ, ସୂତାକଟା ପ୍ରତି ଉତ୍ସାହଦାନ; ଅସ୍ପୃଶ୍ୟତା ବିରୁଦ୍ଧରେ, ଅର୍ଥାତ୍, ଅସ୍ପୃଶ୍ୟ ଶ୍ରେଣୀଭୁକ୍ତ ଲୋକଙ୍କ ପ୍ରତି ସାମାଜିକ ଓ ଦୈନନ୍ଦିନ ବୈଷମ୍ୟମୂଳକ ଆଚରଣ ବିରୁଦ୍ଧରେ ସଂଗ୍ରାମ; ହିନ୍ଦୁ ମୁସଲମାନ ଐକ୍ୟ ପାଇଁ ପ୍ରଚାର । ଏହି "ଗଠନମୂଳକ କର୍ମସୂଚୀର" ବାସ୍ତବାୟନରେ ଗାନ୍ଧୀ, ଅବଶ୍ୟ, ଦୁଇଟି ପ୍ରଧାନ ଲକ୍ଷ୍ୟକୁ ମନେ ରଖିଥିଲେ : ବ୍ରିଟିଶ୍ କର୍ତ୍ତୃକ ଜାତୀୟ ଆନ୍ଦୋଳନରେ ବିଭେଦ ସୃଷ୍ଟି କରିବାର ପ୍ରଚେଷ୍ଟାକୁ ପଣ୍ଡ କରିଦେବା ଏବଂ କଂଗ୍ରେସର ଗଣ ଭିତ୍ତି, ପ୍ରଧାନତଃ, ସହରର ଜନସାଧାରଣଙ୍କର ମଧ୍ୟ ସ୍ତର କାରିଗର ଓ କ୍ଷୁଦ୍ର ବ୍ୟବସାୟୀମାନଙ୍କ ସମର୍ଥନକୁ ଅତୁଟ ରଖିବା ।

୧୯୨୪ ଓ ୧୯୨୫ ଖ୍ରୀଷ୍ଟାବ୍ଦରେ ଗାନ୍ଧୀଜୀ ଦକ୍ଷିଣ ଭାରତର ଦେଶୀୟ ରାଜ୍ୟ ତ୍ରିଭାଙ୍କୁରର

ଭାଇକମ୍ ସହରରେ ସୀମିତ ଆକାରରେ ଦୁଇଟି ସତ୍ୟାଗ୍ରହ ଅଭିଯାନ ଚଳେଇଥିଲେ । ଅସ୍ପୃଶ୍ୟମାନଙ୍କ ପ୍ରତି ପ୍ରଯୁକ୍ତ କେତେକ ଧର୍ମୀୟ ଓ ସାମାଜିକ ବିଧି ନିଷେଧ ବିରୁଦ୍ଧରେ ଏହି ସତ୍ୟାଗ୍ରହ ପରିଚାଳିତ ହୋଇଥିଲା । ୧୯୨୫ ଖ୍ରୀଷ୍ଟାବ୍ଦରେ ସେ ନିଖିଳ ଭାରତ ଖଦି ସଂଘ ପ୍ରତିଷ୍ଠା କରିଥିଲେ । ଏହା କେବଳ ଚରଖା ନୁହେଁ, ସୂତାକଟାଳୀମାନଙ୍କୁ କଞ୍ଚାମାଲ ଯୋଗାଇବା ସମେତ ସେମାନଙ୍କ ପଣ୍ୟାଦି ବିକ୍ରୟ କରିବାର ବ୍ୟବସ୍ଥା କରୁଥିଲା ।

ଜାତୀୟ କଂଗ୍ରେସର ଦ୍ୱିତୀୟ ଉପଦଳଟି ଥିଲା ତଥାକଥିତ ପରିବର୍ତ୍ତନ ପନ୍ଥୀ । ଏଥିରେ ଥିଲେ ଯୁକ୍ତ ପ୍ରଦେଶର ବୁର୍ଜୁଆମାନଙ୍କର ଅନ୍ୟତମ ନେତା ମୋତିଲାଲ ନେହରୁ ଓ ବଙ୍ଗଳା କଂଗ୍ରେସର ନେତା ଚିତ୍ତରଞ୍ଜନ ଦାସ । ଏହି ନେତାମାନେ ରାଜନୈତିକ ସଂଗ୍ରାମରେ ଜନସାଧାରଣଙ୍କର ଅଂଶଗ୍ରହଣ କରିବାର ବିରୋଧିତା କରୁଥିଲେ । ସୀମାଲଙ୍ଘନ ନକରି, କଂଗ୍ରେସ ସଦସ୍ୟଗଣଙ୍କ କର୍ତ୍ତୃକ କେନ୍ଦ୍ରୀୟ ଏବଂ ପ୍ରାଦେଶିକ ପରିଷଦଗୁଡ଼ିକୁ ଦଖଲ କରି ସ୍ୱରାଜ ଲାଭ କଥା ସେମାନେ ଭାବୁଥିଲେ । ଏଥି ପାଇଁ ସେମାନେ ଆଗାମୀ ପରିଷଦ ନିର୍ବାଚନରେ କଂଗ୍ରେସର ଅଂଶଗ୍ରହଣ ସପକ୍ଷରେ ମତ ପ୍ରକାଶ କରିଥିଲେ । ଭାରତର ରାଜନୈତିକ କ୍ଷେତ୍ରରେ ଏକ ସ୍ୱାଧୀନ ତଥା ପ୍ରଧାନ ଉପାଦାନ ହିସାବରେ ମେହନତୀ ଜନସାଧାରଣଙ୍କର ଅଂଶଗ୍ରହଣର ଭୟ ଏମାନଙ୍କ କର୍ମସୂଚୀର ମର୍ମବସ୍ତୁକୁ କିଛି ପରିମାଣରେ ପ୍ରଭାବିତ କରିଥିଲା ।

୧୯୨୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଏଲାହାବାଦରେ ଏହି ଗୋଷ୍ଠୀର ଏକ ସଭାରେ ଜାତୀୟ କଂଗ୍ରେସର ଅଭ୍ୟନ୍ତରରେ ସ୍ୱରାଜ ଦଳ ଗଠନର ସିଦ୍ଧାନ୍ତ ଗୃହୀତ ହେଲା । ଔପନିବେଶିକ ପ୍ରଶାସନ ମଧ୍ୟରେ ଏବଂ ଆଇନ୍ ସଭା ମାଧ୍ୟମରେ ପ୍ରତିବନ୍ଧକ ସୃଷ୍ଟି କରିବାର ପଦ୍ଧତି ଗ୍ରହଣ କରି ଔପନିବେଶିକ ସରକାରକୁ ଜାତୀୟ ଆନ୍ଦୋଳନର ଦାବି ସ୍ୱୀକାର କରିବାକୁ କିପରି ବାଧ୍ୟ କରାଯିବ, ସେଥିପାଇଁ ଏହି ଦଳର ସଦସ୍ୟମାନେ ଆଇନ୍ ସଭାର ନିର୍ବାଚନରେ ଅଂଶଗ୍ରହଣର ଆହ୍ୱାନ ସମେତ ଏକ ପ୍ରସ୍ତାବ ଅନୁମୋଦନ କରିଥିଲେ ।

୧୯୨୨ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ବିହାରର ଗୟାରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ଏକ ଅଧିବେଶନରେ ଗାନ୍ଧୀପନ୍ଥୀମାନଙ୍କୁ ସମର୍ଥନ କରିଥିଲେ । କିନ୍ତୁ ଏହାର ପର ବର୍ଷ, ଦିଲ୍ଲୀରେ ଆହୂତ ଏକ ବିଶେଷ ଅଧିବେଶନରେ ଅନ୍ୟ ଏକ ପ୍ରସ୍ତାବ ମାଧ୍ୟମରେ ସ୍ୱରାଜ ଦଳର ସଦସ୍ୟମାନଙ୍କ ନିର୍ବାଚନରେ ପ୍ରାର୍ଥୀ ଛିଡ଼ା କରାଇବାକୁ ଅନୁମତି ଦିଆଯାଇଥିଲା ।

ଦଳ ମଧ୍ୟରେ ଏହି ତୀବ୍ର ସଂଘାତ ଫଳରେ ଗାନ୍ଧୀ ସ୍ୱରାଜ ଦଳକୁ କେତେକ ସୁବିଧା ଦାନ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଏକ ବିଶେଷ ଦଲିଲରେ (ଗାନ୍ଧୀ–ଚିତ୍ତରଞ୍ଜନ ଦାସ ଚୁକ୍ତି) ଅସହଯୋଗକୁ କଂଗ୍ରେସ କାର୍ଯ୍ୟକର୍ମର ମୁଖ୍ୟ ରୂପ ହିସାବରେ ବାଦ୍ ଦେଇଥିଲେ । ୧୯୨୪ ଖ୍ରୀଷ୍ଟାବ୍ଦରେ ବେଲଗାଓଁ (ବମ୍ବେ ପ୍ରେସିଡେନ୍‌ସି) ସହରରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଏକ ପ୍ରସ୍ତାବ ମାଧ୍ୟମରେ ଏହି ଚୁକ୍ତି ଅନୁମୋଦିତ ହୋଇଥିଲା । ପର ବର୍ଷ କାନ୍‌ପୁରରେ ଅନୁଷ୍ଠିତ ସଭାରେ ସ୍ୱରାଜପନ୍ଥୀମାନଙ୍କର କାର୍ଯ୍ୟକଳାପ କଂଗ୍ରେସ ସଦସ୍ୟମାନଙ୍କ କ୍ରିୟାକଳାପର ମୁଖ୍ୟ ରୂପ ହିସାବରେ ସ୍ୱୀକୃତି ପାଇଥିଲା । କିନ୍ତୁ ଆଇନ୍ ସଭା ଓ ଉପଦେଷ୍ଟା ସଂସ୍ଥାଗୁଡ଼ିକରେ କାର୍ଯ୍ୟ ମାଧ୍ୟମରେ ସ୍ୱରାଜପନ୍ଥୀମାନେ ବ୍ରିଟିଶ୍ ପ୍ରଶାସନ ନିକଟରୁ କୌଣସି ସୁବିଧା ଆଦାୟ କରି ପାରିଲେ ନାହିଁ । ଆଇନ୍ ସଭା ଓ ଉପଦେଷ୍ଟା ସଂସ୍ଥାଗୁଡ଼ିକରେ ସ୍ୱରାଜପନ୍ଥୀମାନଙ୍କର ବ୍ୟର୍ଥତା ଫଳରେ ଅବିଳମ୍ବେ

ବୁର୍ଜୁଆ-ଜମିଦାର ଚକ୍ର ମଧ୍ୟରେ ଏମାନଙ୍କ ପ୍ରଭାବ ହ୍ରାସ ପାଇଥିଲା ଏବଂ ୧୯୨୬ ଖ୍ରୀଷ୍ଟାବ୍ଦରେ ନିର୍ବାଚନରେ ସ୍ୱରାଜ ଦଳର ପରାଜୟ ଘଟିଲା ।

ଜାତୀୟ କଂଗ୍ରେସରେ ସ୍ୱରାଜ ଦଳର ନିଷ୍କ୍ରିୟ କର୍ମନୀତି ବିରୁଦ୍ଧରେ ଜାତୀୟ ବୁର୍ଜୁଆମାନଙ୍କର ବ୍ୟାପକ ସ୍ତର (ବିଶେଷତଃ ପେଟି-ବୁର୍ଜୁଆ ଓ ମଧ୍ୟମ ବୁର୍ଜୁଆମାନଙ୍କ ମଧ୍ୟରେ) ଓ କଂଗ୍ରେସର ଅଭ୍ୟନ୍ତରରେ ସେମାନଙ୍କ ସ୍ୱାର୍ଥରକ୍ଷକ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଅସନ୍ତୋଷ ଦେଖା ଦେଇଥିଲା । ଏହି ପରିସ୍ଥିତିରେ ସ୍ୱରାଜପନ୍ଥୀମାନଙ୍କ ଦୁର୍ବଳତାର ଫଳ ରୂପେ ଦଳ ମଧ୍ୟରେ ଶକ୍ତିର ପୁନର୍ବିନ୍ୟାସ ଘଟିଥିଲା ଏବଂ ଦଳର ନେତୃତ୍ୱର ସଂହତି ମଧ୍ୟ କିଛି ପରିମାଣରେ ପ୍ରଭାବିତ ହୋଇଥିଲା । ଏହି ଭାବେ ୧୯୨୩-୧୯୨୭ ଖ୍ରୀଷ୍ଟାବ୍ଦ ମଧ୍ୟରେ କଂଗ୍ରେସରେ ଚିତ୍ତରଞ୍ଜନ ଦାସ ଓ ମୋତିଲାଲ ନେହରୁଙ୍କ ନେତୃତ୍ୱରେ ଗୋଟିଏ ଏବଂ ଗାନ୍ଧୀଙ୍କ ନେତୃତ୍ୱରେ (ରାଜେନ୍ଦ୍ର ପ୍ରସାଦ, ବିଠଲଭାଇ ଓ ବଲ୍ଲଭଭାଇ ପଟେଲ ଭ୍ରାତୃଦ୍ୱୟ ପ୍ରମୁଖ) ଅନ୍ୟ ଏକ ଗୋଷ୍ଠୀର ଉଦ୍‌ଭବ ଘଟିଥିଲା ।

## କଂଗ୍ରେସରେ ବାମପନ୍ଥୀମାନଙ୍କ ଆବିର୍ଭାବ

ନେତୃବୃନ୍ଦଙ୍କର କାର୍ଯ୍ୟକଳାପ ଫଳରେ ସୃଷ୍ଟ ବ୍ୟାପକ ଅସନ୍ତୋଷ ମଧ୍ୟରୁ କଂଗ୍ରେସରେ ବାମପନ୍ଥୀ ଗୋଷ୍ଠୀର ଉଦ୍‌ଭବ ଘଟିଥିଲା । ଏହା ଥିଲା, ପ୍ରଥମତଃ ଓ ପ୍ରଧାନତଃ, କଂଗ୍ରେସ ସମର୍ଥକ ପେଟି-ବୁର୍ଜୁଆ ସ୍ୱାର୍ଥର ପ୍ରତିନିଧି । ପ୍ରକୃତରେ ଏହି ସାମାଜିକ ଓ ଶ୍ରେଣୀଭିତ୍ତିକ ଗୋଷ୍ଠୀଗୁଡ଼ିକ ସାମ୍ରାଜ୍ୟବାଦୀମାନଙ୍କ ଅର୍ଥନୈତିକ ଓ ରାଜନୈତିକ କାର୍ଯ୍ୟାଦିର ସର୍ବାଧିକ କୁଫଳଭୋଗୀ ହେତୁ ଏମାନେ ଔପନିବେଶିକ ସରକାର ବିରୁଦ୍ଧରେ ସକ୍ରିୟତର ସଂଗ୍ରାମର ପ୍ରବକ୍ତା ଥିଲେ ।

କଂଗ୍ରେସର ତରୁଣ କର୍ମୀମାନଙ୍କ ଦ୍ୱାରା ସମର୍ଥିତ ଏହି ପ୍ରବଣତାଟିର ନେତା ଥିଲେ ଜବାହାରଲାଲ ନେହରୁ (୧୮୮୯-୧୯୬୪) ଓ ସୁଭାଷଚନ୍ଦ୍ର ବସୁ (୧୮୯୭-୧୯୪୬) । ଏମାନେ ଉଭୟେ ଭାରତୀୟ ଉଚ୍ଚ ସମାଜର ସନ୍ତାନ ଏବଂ ବିଖ୍ୟାତ ବ୍ରିଟିଶ୍ ବିଶ୍ୱବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ନେହରୁ ଓ ବସୁ ଉଭୟ ଗାନ୍ଧୀଙ୍କ ଦୃଢ଼ ସମର୍ଥକ ହିସାବରେ ଜାତୀୟ ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ ।

କଂଗ୍ରେସ ମଧ୍ୟରେ ବାମପନ୍ଥୀମାନଙ୍କର ଉଦ୍‌ଭବ ଏବଂ ଦଳର ନେତୃତ୍ୱରେ ଏମାନଙ୍କ ପ୍ରତିନିଧିମାନଙ୍କର ଅନ୍ତର୍ଭୁକ୍ତି ଫଳରେ ଜନସାଧାରଣଙ୍କ ମଧ୍ୟରେ କଂଗ୍ରେସର ପ୍ରଭାବ ବୃଦ୍ଧି ପାଇଥିଲା ଏବଂ ଏହା ନିଃସନ୍ଦେହରେ ଜାତୀୟ ଆନ୍ଦୋଳନ ପରିଚାଳନାରେ ଜାତୀୟ ବୁର୍ଜୁଆ ନେତୃତ୍ୱକୁ ନିଶ୍ଚିତ କରିଥିଲା ।

ଏଥି ସଙ୍ଗେ ସଙ୍ଗେ କଂଗ୍ରେସ ମଧ୍ୟରେ ଏହିସବୁ ପରିବର୍ତ୍ତନ ଥିଲା ୧୯୨୨-୧୯୨୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ରାଜନୈତିକ ଜୀବନରେ ଦେଖା ଦେଉଥିବା ନିବିଡ଼ ପରିବର୍ତ୍ତନର ସୂଚକ ସ୍ୱରୂପ । ଗଣ ଆନ୍ଦୋଳନର ସାମୟିକ ଭଟା ସତ୍ତ୍ୱେ ତାହା ଦେଶର ବାମପନ୍ଥୀମାନଙ୍କ ଶକ୍ତି ବୃଦ୍ଧି କରିଥିଲା ।

ସମୟର ଗତି ସାଥେ ସାଥେ ନୂତନ ବୈପ୍ଳବିକ ଧାରଣା ପ୍ରତି ସଂବେଦନଶୀଳ ଓ ଖୋଦ୍ ଭାରତରେ ସଂଘଟିତ ସାମାଜିକ-ରାଜନୈତିକ ପରିସ୍ଥିତିରୁ ଜାତ ପରିବର୍ତ୍ତନ ସଂପର୍କରେ ବିଶ୍ଳେଷଣକ୍ଷମ ବାମପନ୍ଥୀ ଶକ୍ତିଗୁଡ଼ିକ କଂଗ୍ରେସର କର୍ମସୂଚୀର ବୈପ୍ଳବିକ ପରିବର୍ତ୍ତନ ଓ ଜନସାଧାରଣଙ୍କ ମଧ୍ୟରେ

କଂଗ୍ରେସ ସଦସ୍ୟମାନଙ୍କର କ୍ରିୟାକଳାପ ବୃଦ୍ଧିର ଅପରିହାର୍ଯ୍ୟତା ଉପଲବ୍ଧି କରିଥିଲେ । ଲେନିନ୍‌ଙ୍କ ଶିକ୍ଷା ଏବଂ ଅକ୍ଟୋବର ବିପ୍ଳବ ଓ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ନିର୍ମାଣର ଅଭିଜ୍ଞତା ଏହିସବୁ ଶକ୍ତିର ଧ୍ୟାନଧାରଣା ପରିବର୍ତ୍ତନ କରିବା କ୍ଷେତ୍ରରେ ସହାୟକ ହୋଇଥିଲା । ୧୯୨୭ ଖ୍ରୀଷ୍ଟାବ୍ଦରେ ଜବାହାରଲାଲ ନେହରୁଙ୍କ ସୋଭିଏତ୍ ୟୁନିଅନ୍ ଭ୍ରମଣ (ମୋତିଲାଲ ନେହରୁଙ୍କ ସହିତ ସେ ତରୁଣ ବୟସରେ ଏଠାକୁ ଆସିଥିଲେ) ତାଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

କିନ୍ତୁ ଏହିସବୁ ତରୁଣ ନେତାମାନଙ୍କ ବାସ୍ତବ କାର୍ଯ୍ୟକଳାପ ମଧ୍ୟରେ ସେମାନଙ୍କ ନିର୍ଦ୍ଦିଷ୍ଟ ପାର୍ଥକ୍ୟଗୁଡ଼ିକ ସ୍ପଷ୍ଟ ହୋଇ ଉଠୁଥିଲା । ବିଂଶ ଦଶକ ଶେଷରେ ଓ ତିରିଶ ଦଶକର ପ୍ରାରମ୍ଭରେ ବସୁ ଯୁବ ସଂଗଠନରେ, ସର୍ବୋପରି ଛାତ୍ର ସଂଗଠନରେ ଓ ବଙ୍ଗଳାର କଂଗ୍ରେସରେ ନିଜର ପ୍ରଭାବକୁ ଶକ୍ତିଶାଳୀ କରିବା ଲକ୍ଷ୍ୟରେ ନିଜର ଉଦ୍ୟମକୁ କେନ୍ଦ୍ରୀଭୂତ କରିଥିଲେ । ଏହି ସମୟରେ ଜବାହାରଲାଲ ନେହରୁ ଭାରତର ଜାତୀୟ ଆନ୍ଦୋଳନ ଏବଂ ବିଦେଶର ପ୍ରଗତିଶୀଳ ସଂସ୍ଥା ଓ ବିପ୍ଳବୀ ସଂଗଠନଗୁଡ଼ିକ ମଧ୍ୟରେ ସଂଯୋଗ ପ୍ରତିଷ୍ଠା ଏବଂ ପ୍ରସାର ଦିଗରେ ଉଦ୍ୟୋଗୀ ହୋଇଥିଲେ । ୧୯୨୭ ଖ୍ରୀଷ୍ଟାବ୍ଦରେ ସେ ଔପନିବେଶିକ ଶୃଙ୍ଖଳରେ ଥିବା ଜାତିମାନଙ୍କର ବ୍ରସେଲ୍‌ସ କଂଗ୍ରେସରେ ଭାରତର ପ୍ରତିନିଧିତ୍ୱ କରିଥିଲେ ଏବଂ ସେଠାରେ ସାମ୍ରାଜ୍ୟବାଦବିରୋଧୀ ଲୀଗ୍ ଗଠିତ ହୋଇଥିଲା । ଦେଶକୁ ଫେରି ଆସି ନେହରୁ ଖୋଦ୍ ଭାରତରେ ଲୀଗ୍‌ର ଶାଖା ଗଠନ ପାଇଁ ବ୍ୟାପକ କାର୍ଯ୍ୟକର୍ମ ଚଳେଇଥିଲେ ।

୧୯୨୭ ଖ୍ରୀଷ୍ଟାବ୍ଦ ଶେଷରେ ଜାତୀୟ କଂଗ୍ରେସର ବାମପନ୍ଥୀମାନେ ଅତୀତ ତୁଳନାରେ ଅନେକ ବେଶି ଶକ୍ତିଶାଳୀ ହୋଇ ଉଠିଥିଲେ । କଂଗ୍ରେସର ମାଡ୍ରାଜ ଅଧିବେଶନରେ ନେହରୁଙ୍କ ଦ୍ୱାରା ଉତ୍ଥାପିତ ଭାରତୀୟ ଜାତୀୟ-ମୁକ୍ତି ଆନ୍ଦୋଳନର ଲକ୍ଷ୍ୟ ହିସାବରେ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବଟି ଅନୁମୋଦନ ଲାଭ କରିଥିଲା । ସାମ୍ରାଜ୍ୟବାଦବିରୋଧୀ ଲୀଗ୍ ସହିତ ସଂପର୍କ ସ୍ଥାପନକୁ କଂଗ୍ରେସ ଅନୁମୋଦନ ଜଣାଇଥିଲା । ୧୯୨୮ ଖ୍ରୀଷ୍ଟାବ୍ଦରେ ନେହରୁ ଓ ବସୁ କଂଗ୍ରେସର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ ।

## ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନର ଉଦ୍‌ଭବ ଏବଂ ଶ୍ରମିକ, କୃଷକ ରାଜନୈତିକ ସଂଗଠନ ପ୍ରତିଷ୍ଠା

### ନିର୍ବାସିତ ବିପ୍ଳବୀ ଗୋଷ୍ଠୀସମୂହ

ନିର୍ବାସିତ ଭାରତୀୟମାନଙ୍କର ବିଭିନ୍ନ ବିପ୍ଳବୀ କେନ୍ଦ୍ର ଓ ତରୁଣ ସୋଭିଏତ୍ ପ୍ରଜାତନ୍ତ୍ର ମଧ୍ୟରେ ୧୯୧୮ ଖ୍ରୀଷ୍ଟାବ୍ଦରେ ଗଢ଼ି ଉଠିଥିବା ସଂଯୋଗ ତତ୍କାଳୀନ ଜାତୀୟତାବାଦୀ-ବିପ୍ଳବୀମାନଙ୍କ ମଧ୍ୟରେ ମାର୍କସ୍‌ବାଦୀ ଭାବାଦର୍ଶ ବିସ୍ତାର ଦିଗରେ ପଥକୁ ପ୍ରଶସ୍ତ କରିଥିଲା । ୧୯୧୮ - ୧୯୨୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ସୋଭିଏତ୍ ରୁଷିଆକୁ ଆସିଥିବା ଭାରତୀୟମାନେ ଲେନିନ୍‌ଙ୍କ ସମେତ ଅନ୍ୟାନ୍ୟ ସୋଭିଏତ୍ ନେତାମାନଙ୍କ ସହିତ ସାକ୍ଷାତ୍ କରିଥିଲେ ଏବଂ ମସ୍କୋ, ପେଟ୍ରଗ୍ରାଡ୍, ତାସ୍‌ଖନ୍ଦ, ବାକୁ

ଓ ଦେଶର ଅନ୍ୟାନ୍ୟ ସହରରେ ସଂଘଟିତ ବିଭିନ୍ନ ଘଟଣା ଦେଖି ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ଅକ୍ଟୋବର ବିପ୍ଳବ, ବଲ୍‌ଶେଭିକ୍ କର୍ମସୂଚୀ ଓ କର୍ମକୌଶଳର ବୈଶିଷ୍ଟ୍ୟ ସଂପର୍କରେ ଭାରତୀୟ ପେଟି-ବୁର୍ଜୁଆ ବିପ୍ଳବୀମାନଙ୍କର ଅସ୍ପଷ୍ଟ ଧାରଣା ସତ୍ତ୍ୱେ ବ୍ରିଟିଶ୍ ଔପନିବେଶିକତା ବିରୁଦ୍ଧରେ ସଂଗ୍ରାମରେ ସେମାନେ ସୋଭିଏତ୍ ରୁଷିଆକୁ ମିତ୍ର ଭାବେ ଦେଖିଥିଲେ । ପ୍ରବାସୀ ଭାରତୀୟ ବିପ୍ଳବୀ ଓ ମସ୍କୋ ମଧ୍ୟରେ ଯୋଗାଯୋଗ ପ୍ରଥମେ କାବୁଲ ଓ ପରେ ବର୍ଲିନ୍ କେନ୍ଦ୍ର ମାଧ୍ୟମରେ ଚାଲିଥିଲା ।

ବରକତଉଲ୍ଲାହ୍, ଏମ୍.ପି.ବି.ଟି ଆଚାର୍ଯ୍ୟ ଓ ଆବ୍‌ଦୁର ରବ୍‌ଙ୍କ ନେତୃତ୍ୱରେ ଭାରତୀୟ ବିପ୍ଳବୀମାନଙ୍କ ସମ୍ମେଳନ ଏବଂ କାବୁଲସ୍ଥ "ଅସ୍ଥାୟୀ ଭାରତ ସରକାରର" ଏକ ପ୍ରତିନିଧି ଦଳ ୧୯୧୯ ଖ୍ରୀଷ୍ଟାବ୍ଦର ବସନ୍ତ କାଳଟି ମସ୍କୋରେ ଅତିବାହିତ କରିଥିଲେ ଓ ଲେନିନ୍‌ଙ୍କ ସହିତ ସାକ୍ଷାତ୍ କରିଥିଲେ। ସେମାନେ କେଇ ମାସ ସୋଭିଏତ୍ ଦେଶ ଭ୍ରମଣ କରିଥିଲେ । ପରେ ବରକତଉଲ୍ଲାହ୍ ଫରାସୀ ଭାଷାରେ "ବଲ୍‌ଶେଭିକ୍‌ବାଦ ଓ ମୁସଲମାନ ଜାତିସମୂହ" ନାମକ ଏକ ଗ୍ରନ୍ଥ (ତାସ୍‌ଖନ୍ଦ, ୧୯୧୯) ଲେଖିଥିଲେ । ଏହା ଅବିଳମ୍ବେ ଅନ୍ୟ କେତେକ ପ୍ରାଚ୍ୟ ଭାଷାରେ ଅନୂଦିତ ହୋଇଥିଲା । ପୁସ୍ତିକାଟି ଭାରତ ସମେତ ମଧ୍ୟ ପ୍ରାଚ୍ୟର ଦେଶମାନଙ୍କରେ, ସୋଭିଏତ୍ ମଧ୍ୟ ଏସିଆରେ ସୋଭିଏତ୍ ଜାତି ସଂକ୍ରାନ୍ତ ନୀତି ସଂପର୍କରେ ସତ୍ୟ ସମ୍ବାଦ ପରିବେଷଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା ।

୧୯୧୯ ଖ୍ରୀଷ୍ଟାବ୍ଦ ଶେଷରେ କାବୁଲକୁ ପ୍ରତ୍ୟାବର୍ତ୍ତନ ପରେ ଆଚାର୍ଯ୍ୟ ଏବଂ ଆବ୍‌ଦୁର ରବ୍ କେତେକ ଭାରତୀୟଙ୍କୁ ଦଳ ଦଳ କରି ଆଫ୍‌ଗାନିସ୍ତାନରୁ ସୋଭିଏତ୍ ତୁର୍କିସ୍ତାନରେ ପହଞ୍ଚିବାକୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ୧୯୨୦ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ନିଖିଳ ଭାରତ ଖିଲାଫତ କମିଟିର ଆହ୍ୱାନ କ୍ରମେ ଏହି ଆନ୍ଦୋଳନରେ ଅଂଶଗ୍ରହଣକାରୀ ଅନେକଗୁଡ଼ିଏ ବଡ଼ ବଡ଼ ଦଳ, ବିଶେଷତଃ, ଜାତୀୟତାବାଦୀ ମୁସଲମାନ ତରୁଣମାନେ ଭାରତ-ଆଫ୍‌ଗାନ ସୀମାନ୍ତ ଅତିକ୍ରମ କରିବାକୁ ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ତୁରସ୍କରେ ପହଞ୍ଚି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମରେ ଅଂଶ ନେବା ଏବଂ ସୁଲତାନ୍‌ଙ୍କର (ଖଲିଫା) ମର୍ଯ୍ୟାଦା ରକ୍ଷା କରିବା ଥିଲା ଏମାନଙ୍କର ଉଦ୍ଦେଶ୍ୟ । ଖିଲାଫତ ଦ୍ୱାରା ଆୟୋଜିତ ଶୋଭାଯାତ୍ରା ଓ ସଭାରେ ଆଫ୍‌ଗାନିସ୍ତାନର ଅମିର୍‌ଙ୍କର ଏକ ବାଣୀରେ ମୁହାଜିର୍‌ମାନଙ୍କର (ଉଦ୍‌ବାସ୍ତୁ) ଆନ୍ଦୋଳନ ପ୍ରତି ତାଙ୍କର ସମର୍ଥନ ସଂପର୍କରେ ପ୍ରକାଶ୍ୟରେ ଘୋଷଣା କରାଯାଇଥିଲା । ଭାରତରୁ ମୋଟ ୩୦ ହଜାରରୁ ୫୦ ହଜାର ଭଳି ମୁହାଜିର୍ ଆଫ୍‌ଗାନିସ୍ତାନରେ ପହଞ୍ଚିଥିଲେ ଏବଂ ଏହା ଫଳରେ ଆଫ୍‌ଗାନ ସରକାର ଯଥେଷ୍ଟ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଅବଶ୍ୟ, ସେ ବର୍ଷ ଶେଷ ବେଳକୁ ଅଧିକାଂଶ ମୁହାଜିର୍ ଭାରତକୁ ଫେରି ଆସିଥିଲେ ଏବଂ ସେମାନଙ୍କର ଏକ କ୍ଷୁଦ୍ର ଅଂଶ ବିଭିନ୍ନ ପଥ ଦେଇ ମଧ୍ୟ ପ୍ରାଚ୍ୟରେ ପହଞ୍ଚିଥିଲେ ।

କାବୁଲର ଗୋପନ ବିପ୍ଳବୀ ସମିତିର ସଦସ୍ୟବୃନ୍ଦ, ପ୍ରଧାନତଃ, ଆଚାର୍ଯ୍ୟ ଓ ଆବ୍‌ଦୁର ରବ୍‌ଙ୍କ କର୍ତ୍ତୃକ ସର୍ବାଧିକ ରାଜନୀତି ସଚେତନ ମୁହାଜିର୍‌ମାନଙ୍କ ମଧ୍ୟରେ ବ୍ୟାପକ ପ୍ରଚାର କାର୍ଯ୍ୟ ପରିଚାଳନା ଫଳରେ ତିନି ଦଳ ମୁହାଜିର୍, ସର୍ବମୋଟ ପ୍ରାୟ ୨୦୦ଜଣ, ୧୯୨୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆଫ୍‌ଗାନ-ସୋଭିଏତ୍ ସୀମାନ୍ତ ଅତିକ୍ରମ କରି ପାରିଥିଲେ । ଅବିଳମ୍ବେ ଏମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଭାରତକୁ

ଫେରି ଆସିଥିଲେ, ଅନ୍ୟମାନଙ୍କୁ ଟ୍ରାନ୍ସକକେସିୟା ମଧ୍ୟ ଦେଇ ତୁରସ୍କ ପଠାଇ ଦିଆଯାଇଥିଲା । ପ୍ରାୟ ୩୦ଜଣ ତାସ୍‌ଖନ୍ଦକୁ ଯାଇଥିଲେ ଓ ସେଠାରେ ଏମାନଙ୍କ ମାଧ୍ୟମରେ ଆଗ୍ରର୍ଯ୍ୟ ଓ ରବ୍ ଭାରତୀୟ ବିପ୍ଳବୀ ସମ୍ମିଳନୀର ତାସ୍‌ଖନ୍ଦ ଶାଖା ପ୍ରତିଷ୍ଠା କରିଥିଲେ । ଏହି ସମ୍ମିଳନୀର ପ୍ରତିନିଧି ହିସାବରେ ଆଗ୍ରର୍ଯ୍ୟ ୧୯୨୦ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ଅନୁଷ୍ଠିତ ଦ୍ୱିତୀୟ କମିଣ୍ଟର୍ଣର କଂଗ୍ରେସରେ ଯୋଗ ଦେଇଥିଲେ ।

ଇତିମଧ୍ୟରେ ଆଉରି ଦଳେ ଭାରତୀୟ ସେଠାରେ ପହଞ୍ଚିଥିଲେ ଏବଂ ବସବାସ କରିଥିଲେ । ଏମାନେ ମୁଖ୍ୟତଃ ଥିଲେ ଖୋରାସାନର (ଇରାନ୍) ବ୍ରିଟିଶ୍ ୟୁନିଟ୍‌ରୁ ପଳାଇ ଆସିଥିବା ସୈନିକ । ସେମାନେ ବାକୁରେ “ଆଜାଦ ହିନ୍ଦୁସ୍ତାନ ଆକବର” (“ସ୍ୱାଧୀନ ଭାରତର ସଂବାଦ”) ନାମରେ ଏକ ଉର୍ଦ୍ଦୁ ପତ୍ରିକା ପ୍ରକାଶ କରିଥିଲେ । ୧୯୨୦ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ ବାକୁରେ ଅନୁଷ୍ଠିତ ପ୍ରାଚ୍ୟର ନିର୍ଯ୍ୟାତିତ ଜାତିସମୂହର କଂଗ୍ରେସରେ ଭାରତୀୟ ପ୍ରତିନିଧିମାନେ ମଧ୍ୟ ଯୋଗ ଦେଇଥିଲେ ।

ଭାରତୀୟ ବିପ୍ଳବୀମାନଙ୍କ ମଧ୍ୟରେ କ୍ରମଶଃ ମାର୍କସ୍‌ବାଦୀ ଦୃଷ୍ଟିଭଙ୍ଗିର ପ୍ରସାର ଘଟିଥିଲା । ଏ କ୍ଷେତ୍ରରେ ମାନବେନ୍ଦ୍ରନାଥ ରାୟଙ୍କ ଭୂମିକା ବିଶେଷ ଭାବେ ଉଲ୍ଲେଖନୀୟ ।

ଭାରତର ଗୋପନ ବିପ୍ଳବୀ ସମିତିର କର୍ମୀ ଓ ପରେ ଜାପାନ୍, ଆମେରିକା ଯୁକ୍ତ ରାଷ୍ଟ୍ର ଓ ମେକ୍‌ସିକୋରେ ପ୍ରବାସୀ ମାନବେନ୍ଦ୍ରନାଥ ରାୟ ଥିଲେ ମେକ୍‌ସିକୋ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା । ପାର୍ଟିର ଅନୁମତି କ୍ରମେ ଦ୍ୱିତୀୟ କମିଣ୍ଟର୍ଣ କଂଗ୍ରେସର ପ୍ରତିନିଧି ରୂପେ ସେ ବର୍ଲିନ୍ ଦେଇ ୧୯୨୦ ସମିହାରେ ମସ୍କୋରେ ପହଞ୍ଚିଥିଲେ । କଂଗ୍ରେସରେ ସେ କମିଣ୍ଟର୍ଣର କାର୍ଯ୍ୟକାରୀ ସଂସଦକୁ ନିର୍ବାଚିତ ହୋଇଥିଲେ ଏବଂ ସେଠାରେ ପ୍ରାଚ୍ୟ ବ୍ୟୁରୋର ଅନ୍ୟତମ ନେତା ହିସାବରେ ୧୯୨୦-୧୯୨୭ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

କଂଗ୍ରେସର କାର୍ଯ୍ୟ ସମାପ୍ତ ହେଲା ପରେ ରାୟ ତାସ୍‌ଖନ୍ଦକୁ ଯାଇଥିଲେ ଏବଂ ନିର୍ବାସିତ ଭାରତୀୟ କମ୍ୟୁନିଷ୍ଟମାନଙ୍କର ପ୍ରଥମ ଦଳଟି ଗଠନ କରିବାକୁ ଉଦ୍ୟମ କରିଥିଲେ । ୧୯୨୦ ଖ୍ରୀଷ୍ଟାବ୍ଦର ଅକ୍ଟୋବର ୧୭ ତାରିଖରେ ଆନୁଷ୍ଠାନିକ ଭାବେ ଭାରତର କମ୍ୟୁନିଷ୍ଟ ପାର୍ଟି ସେ ସେଠାରେ ପ୍ରତିଷ୍ଠା କରିଥିଲେ । ପ୍ରଥମେ ଏହାର ସଦସ୍ୟ ସଂଖ୍ୟା ୧୦ରୁ ଅଧିକ ନଥିଲା, କିନ୍ତୁ ୧୯୨୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ମୁହାଜିର୍‌ମାନଙ୍କ ଆଗମନ ଫଳରେ ଏହାର କର୍ମୀ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଥିଲା । ୧୯୨୧ ଖ୍ରୀଷ୍ଟାବ୍ଦରେ କମିଣ୍ଟାର୍ଣର ଉଦ୍ୟୋଗରେ ପ୍ରତିଷ୍ଠିତ ପ୍ରାଚ୍ୟର ଶ୍ରମଜୀବୀମାନଙ୍କର କମ୍ୟୁନିଷ୍ଟ ବିଶ୍ୱବିଦ୍ୟାଳୟରେ ସେଇ ବର୍ଷ ସେମାନେ ଏକ ଦଳ ଗଠନ କରିଥିଲେ । ଦ୍ୱିତୀୟ କମିଣ୍ଟର୍ଣର କଂଗ୍ରେସ ସମୟରେ ମାନବେନ୍ଦ୍ରନାଥ ରାୟଙ୍କ ଉଦ୍ୟମରେ ସେତେବେଳକୁ ମସ୍କୋକୁ ଆସିଥିବା ଦେଶାନ୍ତରୀ ବିପ୍ଳବୀମାନଙ୍କୁ ନେଇ “ନିଖିଳ ଭାରତର ଅସ୍ଥାୟୀ ବିପ୍ଳବୀ କେନ୍ଦ୍ର କମିଟି” ଗଠିତ ହେଲା । ଏହି ସଂଗଠନର ନାମରେ ସେ ଭାରତରେ ଅଭ୍ୟନ୍ତର ତଥା ଭାରତର ସୀମାନ୍ତ ବାହାରେ ଅବସ୍ଥିତ ବିପ୍ଳବୀମାନଙ୍କ ସହିତ ଯୋଗାଯୋଗ ରକ୍ଷା କରିଥିଲେ ।

ଏହି ଦଳଟିର ପ୍ରଥମ ସଂପାଦକ ଥିଲେ ମହମ୍ମଦ୍ ଶଫିକ୍ । ନିର୍ବାଚନ ପୂର୍ବରୁ ୧୯୨୦, ମେ ମାସରେ ଭାରତୀୟ ବିପ୍ଳବୀ ସମ୍ମିଳନୀର ଭାବାଦର୍ଶ ପ୍ରଚାର ଉଦ୍ଦେଶ୍ୟରେ ସେ “ଜମିନ୍‌ଦାର” (କୃଷକ—ସଂପାଦକ) ନାମରେ ଏକ ପତ୍ରିକାର ଗୋଟିଏ ସଂଖ୍ୟା ପ୍ରକାଶ କରିଥିଲେ ।

ତାସ୍‌ଖନ୍ଦ ଏବଂ ମସ୍କୋରେ ଶିକ୍ଷା ଲାଭ କଲା ପରେ ମହମ୍ମଦ୍ ଶଫିକ୍, ଫିରୋଜୁଦ୍ଦିନ୍ ମନସୁର,

ଆବଦୁଲ ମଜିଦ, ରଫିକ ଆହମେଦ ଓ ଶଉକତ୍ ଉସମାନୀଙ୍କ ସମେତ ପୂର୍ବତନ ମହାଜିର୍‌ମାନଙ୍କର ଏକ ଦଳ ଭାରତକୁ ଫେରି ଯାଇଥିଲେ ଏବଂ ସେଠାରେ ଗଠିତ କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର କାର୍ଯ୍ୟକଳାପରେ ଅଂଶଗ୍ରହଣ କରିଥିଲେ । ଅନ୍ୟମାନେ ବିଦେଶରୁ କମିଣ୍ଟର୍ଣ୍ଣ ସହିତ ସଂଶ୍ଳିଷ୍ଟ ବିଭିନ୍ନ ସଂସ୍ଥା ବା ଅନ୍ୟାନ୍ୟ ଆନ୍ତର୍ଜାତିକ ବିପ୍ଳବୀ ସଂଗଠନଗୁଡ଼ିକରେ ସେମାନଙ୍କ କ୍ରିୟାକଳାପ ଅବ୍ୟାହତ ରଖିଥିଲେ ।

ମାନବେନ୍ଦ୍ରନାଥ ରାୟଙ୍କ ଛଡ଼ା ଭାରତୀୟ ପ୍ରବାସୀ କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକ ଗଠନ କ୍ଷେତ୍ରରେ ଅବନୀ ମୁଖାର୍ଜୀଙ୍କ ଭୂମିକା ମଧ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ଦ୍ୱିତୀୟ କମିଣ୍ଟର୍ଣ୍ଣ କଂଗ୍ରେସରେ ବର୍ଲିନସ୍ଥ ଭାରତୀୟ ବୈପ୍ଳବିକ କମିଟିର ପ୍ରତିନିଧି ହିସାବରେ ଯୋଗ ଦେଇଥିଲେ ।

ବିଂଶ ଦଶକ ଆଡ଼କୁ ରାୟ ଓ ମୁଖାର୍ଜୀ ଭାରତର ଜାତୀୟ ମୁକ୍ତି ଆନ୍ଦୋଳନ, ଦେଶର ଆଭ୍ୟନ୍ତରୀଣ ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତି ସଂଶ୍ଳିଷ୍ଟ ସମସ୍ୟାଦି ନେଇ ପୁସ୍ତକପୁସ୍ତିକା ଓ ପ୍ରବନ୍ଧାଦି ପ୍ରକାଶ କରିଥିଲେ ଏବଂ ସେସବୁ ବେଆଇନ୍ ଭାବେ ଭାରତକୁ ପଠାଯାଇଥିଲା । ଦେଶର ପେଟି-ବୁର୍ଜୁଆ ଜାତୀୟତାବାଦୀମାନଙ୍କ ମଧ୍ୟରେ ମାର୍କସ୍‌ବାଦ ପ୍ରସାର ଓ ଭାରତର କମ୍ୟୁନିଷ୍ଟ ପାର୍ଟିର ଭିତ୍ତି ପ୍ରତିଷ୍ଠା କରିବାରେ ଏସବୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । ୧୯୨୦ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ବ୍ରିଟିଶ୍ ସମ୍ବାଦପତ୍ରରେ ପ୍ରକାଶିତ "ଭାରତୀୟ ବିପ୍ଳବୀମାନଙ୍କର ପ୍ରଥମ ଇସ୍ତାହାରରେ" ଏମାନଙ୍କ ସ୍ୱାକ୍ଷର ରହିଥିଲା । ସର୍ବହରା ଆନ୍ତର୍ଜାତୀୟତା ଓ ଭାରତରେ ସାମାଜିକ ବିପ୍ଳବର ପ୍ରସ୍ତୁତି ଚଳାଇବା ଲକ୍ଷ୍ୟରେ ଜାତୀୟତାବାଦୀ-ବିପ୍ଳବୀମାନଙ୍କର ରୂପାନ୍ତର ସାଧନ ପାଇଁ ସମ୍ଭାବ୍ୟ କର୍ତ୍ତବ୍ୟରାଜି ଏହି ଇସ୍ତାହାର ଉପସ୍ଥାପିତ କରିଥିଲା ।

ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ଏହି ପ୍ରାଥମିକ ପର୍ଯ୍ୟାୟରେ ରାୟଙ୍କ ଭୂମିକା ଯଥେଷ୍ଟ ଅସଙ୍ଗତିପୂର୍ଣ୍ଣ ଥିଲା । ଦ୍ୱିତୀୟ କମିଣ୍ଟର୍ଣ୍ଣ କଂଗ୍ରେସରେ ଜାତୀୟ ଓ ଔପନିବେଶିକତା ପ୍ରଶ୍ନ ଉପରେ ଲେନିନ୍‌ଙ୍କ ସହିତ ତାଙ୍କର ମତପାର୍ଥକ୍ୟ ମଧ୍ୟରେ ଏହା ପ୍ରକଟିତ ହୋଇଥିଲା । ପ୍ରାଚ୍ୟର ଦେଶସମୂହରେ ବିପ୍ଳବର ମୂଲ୍ୟାୟନ କ୍ଷେତ୍ରରେ ରାୟଙ୍କର ମତାନ୍ଧତାପୂର୍ଣ୍ଣ ଦୃଷ୍ଟିଭଙ୍ଗି ଓ ସ୍ୱାଧୀନତା ଆନ୍ଦୋଳନରେ ଜାତୀୟ ବୁର୍ଜୁଆର ଭୂମିକା ସଂପର୍କରେ ତାଙ୍କର ନାସ୍ତିବାଚକ ମତ ଥିଲା । ଏହା ଫଳରେ ବିଂଶ ଦଶକରେ ଗଠିତ ଭାରତର କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକ ପକ୍ଷରେ ଶୁଦ୍ଧ ରାଜନୈତିକ ପଦକ୍ଷେପ ଗ୍ରହଣରେ ବାଧା ଦେଖା ଦେଇଥିଲା ଏବଂ ଭାରତୀୟ ଜାତୀୟ ଆନ୍ଦୋଳନ ଅନ୍ତର୍ଗତ ବାମପନ୍ଥୀ ଶକ୍ତିସମୂହର ଐକ୍ୟବଦ୍ଧ ସାମ୍ମୁଖ୍ୟ ଗଠନ ବାଧା ପାଇଥିଲା । ରାୟଙ୍କ ରାଜନୈତିକ ଭୁଲ ଫଳରେ ଶେଷକୁ କମ୍ୟୁନିଷ୍ଟ ଧାରାରୁ ତାଙ୍କର ବିଚ୍ୟୁତି ଘଟିଥିଲା ଏବଂ ୧୯୨୯ ଖ୍ରୀଷ୍ଟାବ୍ଦରେ କମିଣ୍ଟର୍ଣ୍ଣର କାର୍ଯ୍ୟକାରୀ କମିଟିରୁ ତାଙ୍କୁ ବହିଷ୍କାର କରାଗଲା ।

ତା ସତ୍ତ୍ୱେ ମାର୍କସ୍‌ବାଦୀ ଭାବାଦର୍ଶ ପ୍ରସାର ଓ ଭାରତର କମ୍ୟୁନିଷ୍ଟମାନଙ୍କୁ ସଂଗଠିତ କରିବାରେ ରାୟଙ୍କର ଅବଦାନକୁ ଅସ୍ୱୀକାର କରି ହେବ ନାହିଁ । ଜାତୀୟତାବାଦୀ-ବିପ୍ଳବୀ କର୍ମୀମାନଙ୍କ ମଧ୍ୟରେ ଅନ୍ୟତମ ହିସାବରେ ରାୟ ଓ ମୁଖାର୍ଜୀ ଭାରତର ଗୋପନ ବିପ୍ଳବୀ ସମିତି, ସେସବୁର ପ୍ରବାସୀ କେନ୍ଦ୍ରସମୂହ ଓ ଜାତୀୟ କଂଗ୍ରେସର ବାମପନ୍ଥୀମାନଙ୍କୁ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନର ସଂରକ୍ଷିତ ଶକ୍ତି ବୋଲି ମନେ କରୁଥିଲେ । ଫଳରେ, ସେମାନେ ଭାରତୀୟ ପେଟି-ବୁର୍ଜୁଆ ଯୁବକମାନଙ୍କୁ ସମ୍ଭାବ୍ୟ ଅଳ୍ପ ସମୟ ମଧ୍ୟରେ ବୁର୍ଜୁଆ ଭାବାଦର୍ଶର ପ୍ରଭାବରୁ ମୁକ୍ତ କରିବାକୁ ନିଜର ଦାୟିତ୍ୱ ବୋଲି

ବିଗ୍ରହିଥିଲେ ।' ଏହି ଲକ୍ଷ୍ୟରେ ରାୟ, ମୁଖାର୍ଜୀ ଏବଂ ସେମାନଙ୍କ ନେତୃତ୍ୱରେ ଦଳେ ପ୍ରବାସୀ ଭାରତୀୟ କମ୍ୟୁନିଷ୍ଟ, ସ୍ୱରାଜପନ୍ଥୀ ନେତାମାନଙ୍କ ଠାରୁ ଆରମ୍ଭ କରି ଗୁପ୍ତ ବିପ୍ଳବୀ ସଂଗଠନଗୁଡ଼ିକ ସହିତ ଯୋଗସୂତ୍ର ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ ଯେଉଁମାନେ କି ୧୯୨୨ ପରେ ନୂଆ ଭାବେ ରାଜନୈତିକ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ ।

୧୯୨୧, ଡିସେମ୍ବର ମାସରେ ଆହ୍ମଦାବାଦରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ପରବର୍ତ୍ତୀ ଅଧିବେଶନ ପାଇଁ ରାୟ ଓ ମୁଖାର୍ଜୀ ଏକ ବିଶଦ "ଇସ୍ତାହାର" ରଚନା କରିଥିଲେ । ଏଥିରେ ଶ୍ରମିକ ଓ କୃଷକମାନଙ୍କୁ ସଂଗଠିତ କରିବା ପାଇଁ କଂଗ୍ରେସକୁ ଆବେଦନ କରାଯାଇଥିଲା । ଏହି ଉପଲକ୍ଷେ ଆଉରି କୁହାଯାଇଥିଲା ଯେ, ଏମାନଙ୍କ ଦାବିସମୂହକୁ କଂଗ୍ରେସର କର୍ମସୂଚୀଭୁକ୍ତ କଲେ ଯାଇ କଂଗ୍ରେସ ସପକ୍ଷରେ ଫଳପ୍ରଦ ନେତୃତ୍ୱ ଲାଭ କରିବା ସମ୍ଭବ ହୋଇ ପାରିବ । "ଇସ୍ତାହାରର" କେତେକ ନକଲ କମ୍ୟୁନିଷ୍ଟ କର୍ମୀ ନଳିନୀ ଗୁପ୍ତ ଭାରତକୁ ବେଆଇନ୍ ଭାବେ ନେଇ ଯାଇଥିଲେ ।

ଭାରତୀୟ ଜାତୀୟ ଆନ୍ଦୋଳନର ବିପ୍ଳବୀ ଅଂଶରେ ବିଭିନ୍ନ ସଂସ୍ଥା ଓ ସଂଗଠନର ଅସ୍ତିତ୍ୱ, ରାୟ ଓ ଭାରତର ଆଉ କେତେକ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ପେଟି-ବୁର୍ଜୁଆ ଭାବାଦର୍ଶର ପ୍ରାଧାନ୍ୟ ଓ ମତାନ୍ଧତାପୂର୍ଣ୍ଣ ଦୃଷ୍ଟିଭଙ୍ଗି – ଏହିସବୁ ବାମପନ୍ଥୀ ଶକ୍ତିଗୁଡ଼ିକର ଏକ ସାଧାରଣ ରାଜନୈତିକ କର୍ମପନ୍ଥା ଗ୍ରହଣର ସମ୍ଭାବନାରେ ବାଧା ସୃଷ୍ଟି କରିଥିଲା । ଏହା ଫଳରେ ନିର୍ବାସିତ ବିପ୍ଳବୀ ଶକ୍ତିଗୁଡ଼ିକୁ ଏକତ୍ରିତ କରିବା ସାଫଲ୍ୟ ମଣ୍ଡିତ ହୋଇ ନଥିଲା । ବର୍ଲିନସ୍ଥ ଭାରତର ବୈପ୍ଳବିକ କମିଟିର ଅନ୍ୟତମ ନେତା ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ୧୯୨୧ ଖ୍ରୀଷ୍ଟାବ୍ଦରେ ମସ୍କୋରେ ଅନୁଷ୍ଠିତ ଏକ ବିଶେଷ ଅଧିବେଶନରେ ଏହାର ଉଦ୍ୟୋଗ ଗ୍ରହଣ କରିଥିଲେ । ମସ୍କୋରେ ଅନୁଷ୍ଠିତ ବିଭିନ୍ନ ନିର୍ବାସିତ ବିପ୍ଳବୀ ଦଳଗୁଡ଼ିକର ଏହି ଆଲୋଚନା ବ୍ୟର୍ଥ ହେଲା ପରେ ଚଟ୍ଟୋପାଧ୍ୟାୟ ବର୍ଲିନ୍‌କୁ ଫେରି ଆନ୍ତର୍ଜାତିକ ସାମ୍ରାଜ୍ୟବାଦବିରୋଧୀ ଲୀଗ୍‌ର ଏକ ସମ୍ମିଳନୀ ଆହ୍ୱାନ କରିବାକୁ ଉଦ୍ୟୋଗ ନେଇଥିଲେ । ଏହା ପରେ ସେ ଏହି ଲୀଗ୍‌ର ଅନ୍ୟତମ ସଂଗଠକ ଓ ନେତା ହୋଇ ଉଠିଥିଲେ ।

ବିଂଶ ଦଶକର ପ୍ରାରମ୍ଭରେ ଖୋଦ୍ ଭାରତରେ ପ୍ରଥମ କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକ ଗଠିତ ହୋଇଥିଲେ ।

## ଭାରତରେ କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର ଉଦ୍‌ଭବ ଓ ଭାରତର କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠା

ବୈପ୍ଳବିକ ଗୋଷ୍ଠୀଗୁଡ଼ିକର ପଶ୍ଚାଦ୍‌ପସରଣର ସୁସ୍ପଷ୍ଟ ଇଂଗିତବାହୀ "ବରଦୋଲି ପ୍ରସ୍ତାବ" ପରେ ଜାତୀୟତାବାଦୀ-ବିପ୍ଳବୀ ଓ ଅତୀତରେ ଅସହଯୋଗ ଆନ୍ଦୋଳନର ସକ୍ରିୟ ଅଂଶଗ୍ରହଣକାରୀ କଂଗ୍ରେସର ବାମପନ୍ଥୀମାନେ ଗାନ୍ଧୀଙ୍କ ରାଜନୈତିକ ନେତୃତ୍ୱ ଉପରେ ଆସ୍ଥା ହରେଇ ଦେଇଥିଲେ । ଏହା ଫଳରେ ପୁଣି ଗୋପନ ଆନ୍ଦୋଳନରେ ସକ୍ରିୟତା ଦେଖାଦେଲା । ହିନ୍ଦୁସ୍ତାନ ରିପବ୍ଲିକାନ ଆସୋସିଏସନ ମାଧ୍ୟମରେ ଏମାନେ ସମସ୍ତେ ସଂଘବଦ୍ଧ ହେବାକୁ ଲାଗିଲେ । ଆତ୍ମଗୋପନକାରୀ ବିପ୍ଳବୀମାନେ, ବିଶେଷତଃ, ପଞ୍ଜାବର ଗୋଷ୍ଠୀଗୁଡ଼ିକ ୧୯୨୧ ଖ୍ରୀଷ୍ଟାବ୍ଦରେ କାବୁଲରେ ପୁନର୍ଗଠିତ ନିର୍ବାସିତମାନଙ୍କ ବିପ୍ଳବୀ କେନ୍ଦ୍ର ସହିତ ଘନିଷ୍ଠ ସହଯୋଗିତା ରଖିଥିଲେ । ଶେଷୋକ୍ତମାନେ ଜାତୀୟ କଂଗ୍ରେସର ଶାଖା ହିସାବରେ ସେମାନଙ୍କ କାର୍ଯ୍ୟକଳାପ ଚଳାଉଥିଲେ । ଏହି ବର୍ଷ ଔପନିବେଶିକ ସରକାର

ପଞ୍ଜାବରେ ସଶସ୍ତ୍ର ଅଭ୍ୟୁତ୍ଥାନ ଘଟାଇବାର ଏକ ନୂତନ ଷଡ଼ଯନ୍ତ୍ର ଆବିଷ୍କାର କରିଥିଲା । ବିପ୍ଲବୀ ଯୁବକର୍ମୀମାନଙ୍କ ସମେତ କ୍ରମଶଃ ଅଧିକ ସଂଖ୍ୟକ ଲୋକ ସେତେବେଳେ ମାର୍କସ୍‌ବାଦ ପ୍ରତି ଆକୃଷ୍ଟ ହେଉଥିଲେ ।

୧୯୧୭-୧୯୨୧ ଖ୍ରୀଷ୍ଟାବ୍ଦର ମଧ୍ୟବର୍ତ୍ତୀ ସମୟଟି ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରସ୍ତୁତି ପର୍ବ ରୂପେ ଚିହ୍ନିତ । ଅକ୍ଟୋବର ବିପ୍ଳବର ଫଳାଫଳର ପ୍ରଚାର ଓ ତରୁଣ ସୋଭିଏତ୍ ରାଷ୍ଟ୍ର ଦ୍ୱାରା ଗୃହୀତ ପ୍ରଥମ ପଦକ୍ଷେପ ଓ କମିଣ୍ଟର୍ଣ ଏବଂ ମାନବେନ୍ଦ୍ରନାଥ ରାୟ ଓ ଅବନୀ ମୁଖାର୍ଜୀଙ୍କ ଦ୍ୱାରା ପରିଚାଳିତ ନିର୍ବାସିତ ଭାରତୀୟ କମ୍ୟୁନିଷ୍ଟ ଗୋଷ୍ଠୀର କାର୍ଯ୍ୟକଳାପ ଫଳରେ ପ୍ରଥମ ମାର୍କସ୍‌ବାଦୀ ଚକ୍ରଗୁଡ଼ିକର ଅଭ୍ୟୁଦୟର ପ୍ରସ୍ତୁତି ପୂର୍ଣ୍ଣ ହୋଇଥିଲା ।

ବୈଜ୍ଞାନିକ କମ୍ୟୁନିଜମ୍‌ର ମୂଳ ଧାରଣାସମୂହର ବ୍ୟାଖ୍ୟା (ବିଭିନ୍ନ ଭାବେ ଏବଂ ବିଭିନ୍ନ ରୂପରେ) ପାଇଁ ସେତେବେଳେ ପ୍ରକାଶିତ ଗ୍ରନ୍ଥାବଳୀ ମଧ୍ୟରେ ବମ୍ବେର ଛାତ୍ର ଶ୍ରୀପଦ ଅମୃତ ଡାଙ୍ଗେଙ୍କ ଦ୍ୱାରା ଲିଖିତ "ଗାନ୍ଧୀ ବନାମ୍ ଲେନିନ୍" (୧୯୨୧) ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ଅସହଯୋଗ ଆନ୍ଦୋଳନର ସକ୍ରିୟ ଅଂଶଗ୍ରହଣକାରୀ ଶ୍ରୀ ଡାଙ୍ଗେ ଏହି ପୁସ୍ତିକାଟିରେ ଗାନ୍ଧୀ ଏବଂ ଲେନିନ୍‌ଙ୍କର ରାଜନୈତିକ ସଂଗ୍ରାମର ପଦ୍ଧତିସମୂହର ତୁଳନା ସହ ଗାନ୍ଧୀଙ୍କ କର୍ମସୂଚୀ ଓ ରଣକୌଶଳର ସମାଲୋଚନା କରିଥିଲେ । ୧୯୨୨ ମସିହାରେ ଡାଙ୍ଗେଙ୍କ ଉଦ୍ୟୋଗରେ ଭାରତର ପ୍ରଥମ ମାର୍କସ୍‌ବାଦୀ ପତ୍ରିକା "ସୋସାଲିଷ୍ଟ" (ଇଂରେଜୀ ଭାଷାରେ) ପ୍ରକାଶିତ ହୋଇଥିଲା । ଏଥିରେ ମାର୍କସ୍, ଲେନିନ୍‌ଙ୍କ ରଚନାବଳୀର ବିଶଦ ବିବରଣୀ ଓ ରୁଷିଆରେ ଅକ୍ଟୋବର ବିପ୍ଳବର ତଥ୍ୟାଦି ସାଙ୍ଗକୁ ଭାରତର ଜାତୀୟ-ମୁକ୍ତି ଆନ୍ଦୋଳନର ବିଭିନ୍ନ ଦିଗ ଆଲୋଚିତ ହେଉଥିଲା । ଏହି ପତ୍ରିକାର ପ୍ରଚାର ଫଳରେ ଡାଙ୍ଗେଙ୍କ କାର୍ଯ୍ୟକଳାପର କ୍ଷେତ୍ରଟି ବମ୍ବେର ବିଭିନ୍ନ ବିପ୍ଳବୀ ଯୁବଦଳର ଐକ୍ୟବଦ୍ଧ ହେବାର ଏକ କେନ୍ଦ୍ରରେ ପରିଣତ ହୋଇଥିଲା । ୧୯୨୨, ସେପ୍ଟେମ୍ବର ମାସରେ "ସୋସାଲିଷ୍ଟ" ପତ୍ରିକା ଭାରତର ଜାତୀୟ କଂଗ୍ରେସ ମଧ୍ୟରେ "ଭାରତୀୟ ଶ୍ରମିକ ସମାଜବାଦୀ ପାର୍ଟି" ଗଠନର ଘୋଷଣା ପ୍ରଚାର କରିଥିଲା । ଏହି ମାର୍କସ୍‌ବାଦୀ ଦଳରେ ଏସ୍.ଏ.ଡାଙ୍ଗେ, ଏସ୍.ଭି. ଘାଟେ, କେ. ଏନ୍. ଯୋଗଲେକର, ଆର୍.ଏସ୍. ନିମକରଙ୍କ ଅନ୍ତର୍ଭୁକ୍ତିରୁ ଜଣାଯାଏ ଯେ, ତତ୍କାଳୀନ ଜାତୀୟ ଆନ୍ଦୋଳନରେ ମାର୍କସ୍‌ବାଦୀ ଦଳର ଅଭ୍ୟୁଦୟ ଡାଙ୍ଗେ ଓ ତାଙ୍କ ସହକର୍ମୀମାନଙ୍କ ନିକଟରେ କଂଗ୍ରେସ ମଧ୍ୟରେ ଏକ ବାମପନ୍ଥୀ ଅଂଶର ଉଦ୍‌ଭବ ହିସାବରେ ପ୍ରକଟିତ ହୋଇଥିଲା । ୧୯୨୩ ଖ୍ରୀଷ୍ଟାବ୍ଦରେ ବମ୍ବେର ଏହି ଗୋଷ୍ଠୀ "ସୋସାଲିଷ୍ଟ" ନାମରେ ଏକ ମାସିକ ପତ୍ରିକା ପ୍ରକାଶ କରିଥିଲେ ।

ଅନ୍ୟାନ୍ୟ ବଡ଼ ବଡ଼ ଶିଳ୍ପ କେନ୍ଦ୍ରରେ ମଧ୍ୟ ମାର୍କସ୍‌ବାଦୀ ଦଳର ଅଭ୍ୟୁଦୟ ଘଟିଥିଲା । ଶଉକତ ଉସମାନୀ ମସ୍କୋରୁ ଫେରି ୧୯୨୨ ଖ୍ରୀଷ୍ଟାବ୍ଦରେ ବାରଣସୀରେ ଏକ କମ୍ୟୁନିଷ୍ଟ ଚକ୍ର ଗଠନ କରିଥିଲେ । ଗୋଲାମ ହୋସେନଙ୍କ ନେତୃତ୍ୱରେ ଲାହୋରରେ ଏକ କମ୍ୟୁନିଷ୍ଟ ଚକ୍ର ଗଠିତ ହୋଇଥିଲା । ତାସ୍‌ଖନ୍ଦରୁ କାବୁଲ ପ୍ରତ୍ୟାଗତ ମହମ୍ମଦ୍ ଅଲୀଙ୍କ (ସେପାସୀ) ସହିତ ଗୋଲାମ ହୋସେନ୍ ଘନିଷ୍ଠ ଯୋଗାଯୋଗ ରଖୁଥିଲେ । ଗୋଲାମ ହୋସେନଙ୍କ ଦ୍ୱାରା ସଂପାଦିତ "ଇନ୍‌କିଲାବ" ("ବିପ୍ଳବ") ଥିଲା ଲାହୋର ଗୋଷ୍ଠୀର ମୁଖପତ୍ର । ମୁଜଫ୍‌ଫର ଆହମଦଙ୍କ ଦ୍ୱାରା ପ୍ରତିଷ୍ଠିତ କଲିକତା ଗୋଷ୍ଠୀଟି ମଧ୍ୟ ବୈଜ୍ଞାନିକ କମ୍ୟୁନିଜମ୍‌କୁ ସେମାନଙ୍କ ଆଦର୍ଶ ରୂପେ ଗ୍ରହଣ କରିଥିଲେ । ୧୯୨୩ ମସିହାରେ ମୁଜଫ୍‌ଫର ଆହମଦଙ୍କ ସଂପାଦନାରେ "ଗଣବାଣୀ" ନାମରେ ଏକ ସଂବାଦପତ୍ର ପ୍ରକାଶ ପାଇବାକୁ ଆରମ୍ଭ କରିଥିଲା ।

ସିଙ୍ଗାରାଭେଲୁ ଚେଟ୍ଟିୟାର ମାଦ୍ରାଜରେ ଏକ ମାର୍କସ୍‌ବାଦୀ ଗୋଷ୍ଠୀ ଗଠନ କରି ୧୯୨୩ ମସିହାରେ "କିଷାନ-ଲେବର ଗେଜେଟ" ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ ।

ପ୍ରଥମ ମାର୍କସ୍‌ବାଦୀ ସଂବାଦପତ୍ରଗୁଡ଼ିକ ମିଳିତ ପ୍ରଗ୍ରର ଓ ସଂଗଠନ କେନ୍ଦ୍ରରେ ପରିଣତ ହୋଇଥିଲା । ଏ କ୍ଷେତ୍ରରେ ଗୋପନରେ ଭାରତରେ ପ୍ରଗ୍ରରିତ ହେଉଥିବା "ଭ୍ୟାନ୍‌ଗାର୍ଡ ଅଫ୍ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନସ" (୧୯୨୨-୧୯୨୪) ଓ "ମାସେସ୍ ଅଫ୍ ଇଣ୍ଡିଆ" (୧୯୨୫-୧୯୨୭) ପତ୍ରିକାଗୁଡ଼ିକର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା ।

୧୯୨୩-୧୯୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ କେବଳ ପ୍ରତିଷ୍ଠିତ ମାର୍କସ୍‌ବାଦୀ ଗୋଷ୍ଠୀଗୁଡ଼ିକର ଆୟତନ ନୁହେଁ, କାନ୍‌ପୁର ଓ କରାଚି ଭଳି ଶିଳ୍ପକେନ୍ଦ୍ରଗୁଡ଼ିକରେ ନୂଆ ମାର୍କସ୍‌ବାଦୀ ଚକ୍ର ମଧ୍ୟ ଗଠିତ ହେଉଥିଲା । ଇତିମଧ୍ୟରେ ବିଭିନ୍ନ ମାର୍କସ୍‌ବାଦୀ କେନ୍ଦ୍ର ମଧ୍ୟରେ ଯୋଗାଯୋଗ ପ୍ରତିଷ୍ଠିତ ହୋଇଥିଲା ଏବଂ ନିର୍ବାସିତ ଭାରତୀୟ କମ୍ୟୁନିଷ୍ଟ ଚକ୍ରଗୁଡ଼ିକ ସହିତ ମଧ୍ୟ ପତ୍ର ବିନିମୟ ହେଉଥିଲା । ନିଜର କାର୍ଯ୍ୟକଳାପର ସମନ୍ୱୟ ଏବଂ ଏକ ନିଖିଳ ଭାରତ ସଂଗଠନ ଗଢ଼ିବା ସେତେବେଳେ ମାର୍କସ୍‌ବାଦୀ ଚକ୍ରଗୁଡ଼ିକର ପ୍ରଧାନ କର୍ତ୍ତବ୍ୟ ହୋଇ ଉଠିଥିଲା ।

ଅତ୍ୟାଗ୍ରରୀ ଔପନିବେଶିକ ସରକାରର କଡ଼ା କଟକଣା ହେତୁ ଭାରତୀୟ କମ୍ୟୁନିଷ୍ଟମାନଙ୍କ ପକ୍ଷରେ ଆଇନସମ୍ମତ କାର୍ଯ୍ୟକଳାପ ଚଳାଇବାର ସମ୍ଭାବନା ଥିଲା ଖୁବ୍ ସୀମିତ । ନିର୍ବାସିତ ବିପ୍ଳବୀମାନଙ୍କର କେନ୍ଦ୍ରଗୁଡ଼ିକର କାର୍ଯ୍ୟରେ ଅଂଶଗ୍ରହଣ ପରେ ସଂପ୍ରତି ସ୍ୱଦେଶକୁ ପ୍ରତ୍ୟାଗତ ମୁହାଜିର୍‌ମାନଙ୍କ ବିରୁଦ୍ଧରେ ୧୯୨୨-୧୯୨୩ ଖ୍ରୀଷ୍ଟାବ୍ଦରେ କର୍ତ୍ତୃପକ୍ଷ "ପେଶଓ୍ୱାର ମକଦ୍ଦମା" ନାମରେ ଏକ ମିଥ୍ୟା କେଶ୍ ତିଆରି କରିଥିଲା । ୧୯୨୪ ଖ୍ରୀଷ୍ଟାବ୍ଦରେ କାନ୍‌ପୁରରେ ଅନୁଷ୍ଠିତ ପ୍ରଥମ କମ୍ୟୁନିଷ୍ଟ ବିରୋଧୀ କେଶ୍‌ରେ ଶ୍ରୀପଦ ଅମୃତ ଡାଙ୍ଗେ, ମୁଜଫ୍‌ଫର ଆହ୍‌ମଦ, ଶଉକତ ଉସମାନୀଙ୍କ ସମେତ ମାର୍କସ୍‌ବାଦୀ ଚକ୍ରଗୁଡ଼ିକର ନେତାମାନଙ୍କୁ ବିଭିନ୍ନ ମିଆଦର କାରାଦଣ୍ଡ ଦିଆଯାଇଥିଲା । ଏଥିରେ ଭାରତୀୟ କମ୍ୟୁନିଷ୍ଟମାନେ "ବଲ୍‌ଶେଭିକ୍ ଦଲାଲ" ହିସାବରେ ଅଭିଯୁକ୍ତ ହୋଇଥିଲେ । ଏହିସବୁ ନିର୍ଯ୍ୟାତନ ସତ୍ତ୍ୱେ ବ୍ରିଟିଶ୍ ଗୁପ୍ତଚରମାନେ ଭାରତରୁ କମ୍ୟୁନିଷ୍ଟ ଆନ୍ଦୋଳନକୁ ଉଚ୍ଛେଦ କରି ପାରି ନଥିଲେ । ଅନ୍ୟ ଦିଗରେ, ୧୯୨୪-୧୯୨୫ ଖ୍ରୀଷ୍ଟାବ୍ଦରେ ଏ ଦେଶରେ ମାର୍କସ୍‌ବାଦୀ ଗୋଷ୍ଠୀଗୁଡ଼ିକ ସେମାନଙ୍କ କାର୍ଯ୍ୟକଳାପକୁ ବୃଦ୍ଧି କରିଥିଲେ ।

୧୯୨୪ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ସତ୍ୟ ଭକ୍ତ ନାମକ କାନ୍‌ପୁରର ଜନୈକ ସାଂବାଦିକ ଏକ ଆଇନସମ୍ମତ "ଭାରତୀୟ କମ୍ୟୁନିଷ୍ଟ ପାର୍ଟି" ଗଠନର କଥା ଘୋଷଣା କରିଦେଲେ । ଏହି ପାର୍ଟିର ନେତୃବୃନ୍ଦଙ୍କ ବିବୃତ୍ତିରେ କୁହାଯାଇଥିଲା ଯେ, ଏହା କମିଣ୍ଟର୍ଣ୍ଣ ଓ ବିଦେଶସ୍ଥ ଅନ୍ୟାନ୍ୟ ବିପ୍ଳବୀ କେନ୍ଦ୍ର ସହିତ ସଂଯୋଗକୁ ଅସ୍ୱୀକାର କରିଯିବାରୁ ଏହାର ଗଠନ ସଂପର୍କରେ କର୍ତ୍ତୃପକ୍ଷ କିଛି ପରିମାଣରେ ସହନଶୀଳ ମନୋଭାବ ପ୍ରଦର୍ଶନ କରିଥିଲେ । ସତ୍ୟ ଭକ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ପାର୍ଟି ଭାରତୀୟ କମ୍ୟୁନିଷ୍ଟମାନଙ୍କର ଏକତ୍ରୀକରଣ ଦିଗରେ ଏକ କେନ୍ଦ୍ର ନହୋଇ ଉଠିଲେ ମଧ୍ୟ ସତ୍ୟ ଭକ୍ତ ଭାରତୀୟ ମାର୍କସ୍‌ବାଦୀମାନଙ୍କର ବିଭିନ୍ନ ଗୋଷ୍ଠୀକୁ ଐକ୍ୟବଦ୍ଧ କରିବା ପାଇଁ ଉଦ୍ୟମ କରି ଯାଇଥିଲେ । କଂଗ୍ରେସର ବାମପନ୍ଥୀ ନେତା ହିସାବରେ ଖ୍ୟାତ ହାସ୍‌ରତ ମୋହାନୀଙ୍କ ନେତୃତ୍ୱରେ ଆଗାମୀ ସଂହତି ସମ୍ମେଳନ ପାଇଁ ଏକ ସାଂଗଠନିକ କମିଟି ଗଠିତ ହୋଇଥିଲା । ଫଳରେ, ୧୯୨୫ ଖ୍ରୀଷ୍ଟାବ୍ଦରେ (ଡିସେମ୍ବର, ୨୮-୩୦) ମାଦ୍ରାଜର କମ୍ୟୁନିଷ୍ଟ ଏମ୍. ସିଙ୍ଗାରାଭେଲୁ ଚେଟିୟାରଙ୍କ ସଭାପତିତ୍ୱରେ

କାନ୍‌ପୁରରେ ଭାରତୀୟ କମ୍ୟୁନିଷ୍ଟମାନଙ୍କର ପ୍ରଥମ ସମ୍ମିଳନୀଟି ଆହୂତ ହୋଇଥିଲା । ବମ୍ବେରେ ପାର୍ଟିର ଏକ କେନ୍ଦ୍ରୀୟ ଅଫିସ୍ ପ୍ରତିଷ୍ଠା କରିବାର ନିଷ୍ପତ୍ତି ସମେତ ଭାରତର କମ୍ୟୁନିଷ୍ଟ ପାର୍ଟି ଗଠନର ପ୍ରସ୍ତାବ ଏଥିରେ ଗୃହୀତ ହୋଇଥିଲା । ଏହା ପରେ ଜେ.ପି.ଭଗୀରଥ ଓ ଏସ୍.ଭି.ଘାଟେଙ୍କୁ ସଂପାଦକ ନିର୍ବାଚନ କରି ଭାରତର ସମସ୍ତ କମ୍ୟୁନିଷ୍ଟ ଗୋଷ୍ଠୀର ପ୍ରତିନିଧିମାନଙ୍କୁ ନେଇ ଏକ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟି ଗଠିତ ହୋଇଥିଲା ।

କମିଣ୍ଟର୍ଣ୍ଣ ସହିତ ସଂପର୍କର ପ୍ରଶ୍ନ ନେଇ ଅବିଳମ୍ବେ ଏହି କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ମତାନୈକ୍ୟ ଦେଖା ଦେଇଥିଲା । ସତ୍ୟ ଭକ୍ତ ସେତେବେଳେ ଭାରତର କମ୍ୟୁନିଷ୍ଟ ପାର୍ଟିକୁ "ଜାତୀୟ ଚରିତ୍ର" ରକ୍ଷା କରିବା ଏବଂ କମିଣ୍ଟର୍ଣ୍ଣ ସହିତ କୌଣସି ଯୋଗାଯୋଗ ପ୍ରତିଷ୍ଠା ନକରିବା ପକ୍ଷରେ ମତ ଦେଇଥିଲେ । ୧୯୨୬ ଖ୍ରୀଷ୍ଟାବ୍ଦରେ କଲିକତାରେ ଅନୁଷ୍ଠିତ ପାର୍ଟିର ଦ୍ୱିତୀୟ ସମ୍ମେଳନରେ ଅଧିକାଂଶ ପ୍ରତିନିଧି ଏହି ଦୃଷ୍ଟିଭଙ୍ଗିକୁ ପ୍ରତ୍ୟାଖ୍ୟାନ କରିବାରୁ ସତ୍ୟ ଭକ୍ତ ପାର୍ଟି ତ୍ୟାଗ କରି "ଭାରତୀୟ ଜାତୀୟ କମ୍ୟୁନିଷ୍ଟ ପାର୍ଟି" ଗଠନ କରିଥିଲେ । ଏହା, ମୂଳତଃ, ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ସଂଗଠନରେ ପରିଣତ ହୋଇଥିଲା ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟି ତା'ର ଆଇନସମ୍ମତ କ୍ରିୟାକଳାପକୁ ଅବ୍ୟାହତ ରଖିବା ପାଇଁ ସେତେବେଳେ କମିଣ୍ଟର୍ଣ୍ଣରେ ଯୋଗ ନଦେଲେ ମଧ୍ୟ ଆନ୍ତର୍ଜାତିକ ଆନ୍ଦୋଳନ ସହିତ ତା'ର ସଂଯୋଗକୁ ମଜ୍‌ବୁତ୍ କରିଥିଲା । ବ୍ରିଟେନ୍‌ର କମ୍ୟୁନିଷ୍ଟ ପାର୍ଟି ସହିତ ତା'ର ସଂପର୍କ ଜରିଆରେ ଏହି ଯୋଗାଯୋଗ ବୃଦ୍ଧି ପାଇଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, କମିଣ୍ଟର୍ଣ୍ଣର କାର୍ଯ୍ୟକାରୀ କମିଟିର ଏକ ପ୍ରସ୍ତାବ ଅନୁଯାୟୀ ବ୍ରିଟେନ୍‌ର କମ୍ୟୁନିଷ୍ଟ ପାର୍ଟି ଉପରେ ଭାରତର କମ୍ୟୁନିଷ୍ଟ ପାର୍ଟିକୁ ସହାୟତା ଦେବା ପାଇଁ ଦାୟିତ୍ୱ ଅର୍ପଣ କରାଯାଇଥିଲା । ୧୯୨୫-୧୯୨୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟିର କେତେକ ପ୍ରତିନିଧି ଭାରତକୁ ଆସିଥିଲେ । ବ୍ୟାପକ ଭିତ୍ତିକ ବୈପ୍ଳବିକ ସଂଗଠନ ଓ ସାମ୍ରାଜ୍ୟବାଦବିରୋଧୀ ମେଣ୍ଟ ଗଠନର କର୍ମସୂଚୀ ଏହା ପରେ ଭାରତର କମ୍ୟୁନିଷ୍ଟ ପାର୍ଟିର ଲକ୍ଷ୍ୟ ହୋଇ ଉଠିଥିଲା ।

ମାନବେନ୍ଦ୍ରନାଥ ରାୟଙ୍କ ନେତୃତ୍ୱାଧୀନ ନିର୍ବାସିତ ଭାରତୀୟ କମ୍ୟୁନିଷ୍ଟ ଗୋଷ୍ଠୀଟି ୧୯୨୪ ଖ୍ରୀଷ୍ଟାବ୍ଦରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ବୈଦେଶିକ ବ୍ୟୁରୋର ଦାୟିତ୍ୱ ଗ୍ରହଣ କରିଥିଲେ । ସ୍ମରଣଯୋଗ୍ୟ ଯେ, ୧୯୨୭ ଖ୍ରୀଷ୍ଟାବ୍ଦରେ ବମ୍ବେରେ ଅନୁଷ୍ଠିତ ପାର୍ଟିର ତୃତୀୟ ସମ୍ମେଳନରେ ଏହା ସମ୍ବିଧାନଭୁକ୍ତ ହୋଇଥିଲା ।

ଭାରତର କମ୍ୟୁନିଷ୍ଟ ପାର୍ଟି ଗଠନ ଦେଶର କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ନୂତନ ପର୍ଯ୍ୟାୟର ସୂଚନା ଦେଇଥିଲା ଏବଂ ଦେଶର ଶ୍ରମିକ ଶ୍ରେଣୀ ଓ ଟ୍ରେଡ୍‌ୟୁନିଅନ୍ ଦ୍ୱାରା ଆୟୋଜିତ ନୂତନ ଅର୍ଥନୈତିକ ସଂଗ୍ରାମ ସହିତ ସମପାତିକ ଥିଲା ।

## ୧୯୨୩-୧୯୨୭ ଖ୍ରୀଷ୍ଟାବ୍ଦର ଶ୍ରମିକ ଆନ୍ଦୋଳନ । ଶ୍ରମିକ ଓ କୃଷକ ପାର୍ଟି

୧୯୨୨ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇଥିବା ସାମ୍ରାଜ୍ୟବାଦବିରୋଧୀ ଗଣ ଆନ୍ଦୋଳନରେ ଭଟା ମଧ୍ୟ ଶ୍ରମିକ ଆନ୍ଦୋଳନ ମଧ୍ୟରେ ପ୍ରକଟିତ ହୋଇଥିଲା । ପରବର୍ତ୍ତୀ ବର୍ଷଗୁଡ଼ିକରେ ଧର୍ମଘଟର ସଂଖ୍ୟା ଏବଂ

ଏସବୁରେ ଅଂଶଗ୍ରହଣକାରୀ ଶ୍ରମିକମାନଙ୍କର ସଂଖ୍ୟା ମଧ୍ୟ ହ୍ରାସ ପାଇଥିଲା । କିନ୍ତୁ ଏଥି ସଙ୍ଗେ ସଙ୍ଗେ ଧର୍ମଘଟଗୁଡ଼ିକ ଅଧିକ ସୁସଂଗଠିତ, ଦୀର୍ଘସ୍ଥାୟୀ ଏବଂ ଦୃଢ଼ ହୋଇଥିଲା । ୧୯୨୪ ଏବଂ ୧୯୨୫ ଖ୍ରୀଷ୍ଟାବ୍ଦରେ ଧର୍ମଘଟ ଆନ୍ଦୋଳନରେ ବିଶେଷ ତୀବ୍ରତା ଦେଖାଦେଲା ଏବଂ ଏହି ବର୍ଷଗୁଡ଼ିକରେ ଯଥାକ୍ରମେ ୮୭ ଲକ୍ଷ ଓ ୧ କୋଟି ୨୫ ଲକ୍ଷ କାର୍ଯ୍ୟ ଦିନ (୧୯୨୨ ୩୯ ଲକ୍ଷ, ୧୯୨୬ରେ ୧୦ ଲକ୍ଷ ଏବଂ ୧୯୨୭ରେ ୨୦ ଲକ୍ଷ କାର୍ଯ୍ୟ ଦିନ) ନଷ୍ଟ ହୋଇଥିଲା । ଏହିସବୁ ଧର୍ମଘଟ ଥିଲା ଆତ୍ମରକ୍ଷାମୂଳକ ଚରିତ୍ରର । ମଜୁରି ହ୍ରାସ ବା କାର୍ଯ୍ୟ ଦିନର ସମୟ ବୃଦ୍ଧି ଆଦି ବିରୁଦ୍ଧରେ ଏସବୁ ସଂଗଠିତ ହେଉଥିଲା । ୧୯୨୪ ଓ ୧୯୨୫ ଖ୍ରୀଷ୍ଟାବ୍ଦର ବମ୍ବେର ବସ୍ତ୍ରକଳ ଶ୍ରମିକମାନଙ୍କର ସାଧାରଣ ଧର୍ମଘଟ ଏବଂ ୧୯୨୬ ଓ ୧୯୨୭ ଖ୍ରୀଷ୍ଟାବ୍ଦର ରେଳ ଶ୍ରମିକମାନଙ୍କର ଧର୍ମଘଟଗୁଡ଼ିକ ଥିଲା ଶ୍ରମିକ ଶ୍ରେଣୀର ତତ୍କାଳୀନ ବୃହତ୍ତମ କର୍ମୋଦ୍ୟମ । ଏହି ପର୍ଯ୍ୟାୟରେ ବମ୍ବେର ଶ୍ରମିକମାନେ ଭାରତୀୟ ଶ୍ରମିକ ଆନ୍ଦୋଳନର ଅଗ୍ରଦୂତ ହୋଇ ଉଠିଥିଲେ ।

ଶିଳ୍ପୋଦ୍ୟୋଗୀ ଓ ସେମାନଙ୍କ ସମର୍ଥକ ଔପନିବେଶିକ କର୍ତ୍ତୃପକ୍ଷ ସେତେବେଳେ ଆକ୍ରମଣକାରୀମାନଙ୍କର ଭୂମିକା ଗ୍ରହଣ କରିଥିଲେ ଏବଂ ୧୯୨୬ ଖ୍ରୀଷ୍ଟାବ୍ଦରେ ବିଶେଷ କାରଖାନା ଆଇନ୍ ଜାରି ହୋଇଥିଲା । ଏହି ଆଇନ୍ ବଳରେ ସରକାର ଶ୍ରମିକ ସଂଗଠନର କାର୍ଯ୍ୟକଳାପକୁ ଦମନ କରିବାର ସୁଯୋଗ ପାଇଥିଲା ଏବଂ ଅନେକ ଧର୍ମଘଟରେ ଶ୍ରମିକମାନେ ପରାଜିତ ହୋଇଥିଲେ । ଏହା ପଛରେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ନେତୃତ୍ୱରେ ଜାତୀୟତାବାଦୀ-ସଂସ୍କାରପନ୍ଥୀମାନଙ୍କର ଅବସ୍ଥାନର ଅବଦାନ ମଧ୍ୟ କମ୍ ନଥିଲା ।

୧୯୧୮-୧୯୨୨ ଖ୍ରୀଷ୍ଟାବ୍ଦର ବ୍ୟାପକ ବୈପ୍ଳବିକ କାର୍ଯ୍ୟକଳାପ ପରେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ବିକାଶ ଘଟିଥିଲା ଏବଂ ଏସବୁର ସଂଗଠନ ଦୃଢ଼ ହୋଇ ଉଠିଥିଲା । ଏହା ସନ୍ଦେହାତୀତ ଯେ, ନୂଆ ସଦସ୍ୟ ହିସାବରେ ବହୁ କିରାଣୀ ଏବଂ ଶିଳ୍ପ ଶ୍ରମିକମାନଙ୍କର ଯୋଗଦାନ ଫଳରେ, ମୂଳତଃ, ଶ୍ରମିକ ଆନ୍ଦୋଳନରେ ଏହି ଉନ୍ନତି ଦେଖା ଦେଇଥିଲା । ୧୯୨୬ ଖ୍ରୀଷ୍ଟାବ୍ଦରେ ଭାରତର ପ୍ରାୟ ୨୦୦ ଟ୍ରେଡ୍‌ୟୁନିଅନ୍‌ର ମୋଟ ସଦସ୍ୟ ସଂଖ୍ୟା ଥିଲା ୩ ଲକ୍ଷ ଭଳି । ତନ୍ମଧ୍ୟରୁ ୧ ଲକ୍ଷ ୨୫ ହଜାର ସଦସ୍ୟମାନଙ୍କର ୫୭ଟି ୟୁନିଅନ୍ ଥିଲା ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅନୁମୋଦନ ପ୍ରାପ୍ତ ।

ଭାରତବର୍ଷରେ କମ୍ୟୁନିଷ୍ଟ ଆନ୍ଦୋଳନର ଉନ୍ମେଷ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ କ୍ଷେତ୍ରରେ କେତେକ ପରିବର୍ତ୍ତନ ଆଣିଥିଲା । ପ୍ରଥମ ଗଢ଼ି ଉଠିଥିବା କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର ସଦସ୍ୟମାନେ ଧର୍ମଘଟ ସଂଗଠନ ସହ ଶିଳ୍ପ ଶ୍ରମିକ ଓ ଅଫିସ୍ କର୍ମଚାରୀମାନଙ୍କ ମଧ୍ୟରେ ସ୍ଥାନୀୟ ଭିତ୍ତିରେ ସଂହତି ପ୍ରତିଷ୍ଠା କରିବାରେ ନେତୃତ୍ୱ ଗ୍ରହଣ କରିଥିଲେ । କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର ବହୁ ନେତାଙ୍କର (ମୁଜଫ୍‌ଫର ଆହ୍‌ମଦ, ଗୋଲାମ ହୋସେନ ଓ ବମ୍ବେ ଗୋଷ୍ଠୀର ନେତୃବୃନ୍ଦ) ଇତିମଧ୍ୟରେ ଟ୍ରେଡ୍‌ୟୁନିଅନ୍ ସଂକ୍ରାନ୍ତ କାର୍ଯ୍ୟକଳାପ ସହିତ ଘନିଷ୍ଠ ଯୋଗାଯୋଗ ହେତୁ ଏହା ସମ୍ଭବ ହୋଇଥିଲା । ୧୯୨୫ ଖ୍ରୀଷ୍ଟାବ୍ଦରେ ଭାରତର କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲା ପରେ ଟ୍ରେଡ୍‌ୟୁନିଅନ୍ ମଧ୍ୟରେ କମ୍ୟୁନିଷ୍ଟମାନଙ୍କ କାର୍ଯ୍ୟକଳାପ କ୍ରମାଗତ ବୃଦ୍ଧି ପାଇଥିଲା ।

କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ର୍‍ୟାଡିକାଲମାନଙ୍କର ପ୍ରଭାବରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅଧିବେଶନଗୁଡ଼ିକରେ ରାଜନୈତିକ ବୈଶିଷ୍ଟ୍ୟପୂର୍ଣ୍ଣ ବହୁ ପ୍ରସ୍ତାବ ଗୃହୀତ ହୋଇଥିଲା ।

ଦୃଷ୍ଟାନ୍ତ ସ୍ୱରୂପ, ୧୯୨୪ ଖ୍ରୀଷ୍ଟାବ୍ଦରେ ଗୃହୀତ କର୍ମୀମାନଙ୍କର କାର୍ଯ୍ୟକଳାପ ବନ୍ଦ କରିବା ପାଇଁ ପୁଲିସ୍ ନିୟୋଗ ବିରୁଦ୍ଧରେ ପ୍ରତିବାଦ ପ୍ରସ୍ତାବ ; ୧୯୨୫ ଖ୍ରୀଷ୍ଟାବ୍ଦର ଶ୍ରମିକମାନଙ୍କୁ ଭୋଟାଧିକାର ପ୍ରଦାନ କରିବାର ପ୍ରସ୍ତାବ ; ୧୯୨୬ ଖ୍ରୀଷ୍ଟାବ୍ଦରେ "ଅସ୍ପୃଶ୍ୟତା" ଓ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଗୃହୀତ ପ୍ରସ୍ତାବ ଉଲ୍ଲେଖଯୋଗ୍ୟ ।

ଏହି ସମୟରେ ସଂଗଠିତ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ଦଖଲ ପାଇଁ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ସହିତ ଜାତୀୟତାବାଦୀ-ସଂସ୍କାରପନ୍ଥୀମାନଙ୍କର ଲଢ଼ାଇ ଆରମ୍ଭ ହୋଇ ଯାଇଥିଲା । ୧୯୨୫-୧୯୨୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ବ୍ରିଟିଶ୍ ଲେବର ପାର୍ଟି ଅନେକଗୁଡ଼ିଏ ପ୍ରତିନିଧିଦଳ ପ୍ରେରଣ କରି ଭାରତୀୟ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକୁ ନିଜର ପ୍ରଭାବାଧୀନ କରିବାକୁ ଚେଷ୍ଟା କରିଥିଲେ ।

୧୯୨୭ ଖ୍ରୀଷ୍ଟାବ୍ଦରେ କାନ୍‌ପୁରରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅଷ୍ଟମ ଅଧିବେଶନ ସମୟରେ ବିଭିନ୍ନ ରାଜନୈତିକ ଶକ୍ତି ମଧ୍ୟରେ ଏକ ଲଢ଼ାଇ ସ୍ପଷ୍ଟ ହୋଇ ଉଠିଥିଲା । ଏହି ସଭାରେ ବ୍ରିଟିଶ୍ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସାଧାରଣ ପରିଷଦ କର୍ତ୍ତୃକ ଉତ୍‌ଥାପିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସକୁ "ପୀତ" ଟ୍ରେଡ୍‌ୟୁନିଅନ୍‌ର ଆମଷ୍ଟର୍ଡାମ ଆନ୍ତର୍ଜାତିକର ସଦସ୍ୟ ଭୁକ୍ତ କରିବାର ପ୍ରସ୍ତାବଟି କାଟ ଖାଇ ଯାଇଥିଲା । ଏଥି ସାଥେ ସାଥେ ପ୍ରଫିନ୍‌ଟାର୍ଣ୍ଣ ଓ ସାମ୍ରାଜ୍ୟବାଦବିରୋଧୀ ଲୀଗ୍‌ରେ ଏହାର ଅନ୍ତର୍ଭୁକ୍ତି ପାଇଁ ବାମପନ୍ଥୀମାନଙ୍କ ଦ୍ୱାରା ଉତ୍‌ଥାପିତ ପ୍ରସ୍ତାବଟି ମଧ୍ୟ ଅଗ୍ରାହ୍ୟ ହୋଇ ଯାଇଥିଲା । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର କାର୍ଯ୍ୟକାରୀ ପରିଷଦର ଅଧିକାଂଶ ପଦ ସେତେବେଳେ ଜାତୀୟତାବାଦୀ-ସଂସ୍କାରପନ୍ଥୀମାନଙ୍କ ଦଖଲଭୁକ୍ତ ଥିଲେ ମଧ୍ୟ କମ୍ୟୁନିଷ୍ଟମାନେ କେତେକ ପଦ ଦଖଲ କରିଥିଲେ । ବମ୍ବେ ଶ୍ରମିକ ଓ କୃଷକ ପାର୍ଟିର ସଭାପତି ଡି.ଆର.ଥେଙ୍ଗାଡ଼ି ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସହସଭାପତି ଏବଂ ତାଙ୍କେ ସହକାରୀ ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ ।

କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରମିକ ଓ କୃଷକ ପାର୍ଟିର କାର୍ଯ୍ୟକଳାପ ଶ୍ରମିକ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ଅବସ୍ଥାନକୁ ଦୃଢ଼ କରିବାରେ ସହାୟକ ହୋଇଥିଲା ।

କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ଶ୍ରମଜୀବୀମାନଙ୍କର ଏକ ଆଇନସମ୍ମତ ଗଣ ସଂଗଠନ — ଶ୍ରମିକ ଓ କୃଷକ ପାର୍ଟି ଗଠନର କରିବାକୁ ପ୍ରଥମ ଚେଷ୍ଟା କରିଥିଲେ ସିଙ୍ଗାରଭେଲୁ ଚେଟିୟାର (ମାନ୍ଦ୍ରାଜ) । ତାଙ୍କର ଏହି ଉଦ୍ୟମ ବ୍ୟର୍ଥ ହୋଇଥିଲା । ୧୯୨୬-୧୯୨୮ ଖ୍ରୀଷ୍ଟାବ୍ଦରେ ବଙ୍ଗଳାରେ ଏବଂ ପରେ ବମ୍ବେ ପ୍ରଦେଶ, ପଞ୍ଜାବ ଓ ଯୁକ୍ତ ପ୍ରଦେଶରେ ଶ୍ରମିକ ଓ କୃଷକ ପାର୍ଟି ଗଠିତ ହୋଇଥିଲା । ଏହିସବୁ ସଂଗଠନର ନେତୃତ୍ୱରେ ଥିଲେ ବିପ୍ଳବୀ ଗଣତନ୍ତ୍ରବାଦୀ ଓ କମ୍ୟୁନିଷ୍ଟମାନେ ।

ଶ୍ରମିକ ଓ କୃଷକ ପାର୍ଟିଗୁଡ଼ିକ ଥିଲେ ସେତେବେଳେ ଶ୍ରମିକ ଶ୍ରେଣୀ, କୃଷକ ଓ ସହରର ମଧ୍ୟବିତ୍ତମାନଙ୍କ ଉପରେ କମ୍ୟୁନିଷ୍ଟ ପ୍ରଭାବ ବିସ୍ତାରର ମୂଳ ପଥ । ଏସବୁ ନେତୃତ୍ୱରେ ତିରିଶ ଦଶକର ପ୍ରାରମ୍ଭରେ ପ୍ରତିଷ୍ଠିତ ଅନେକ ଶ୍ରମିକ ଟ୍ରେଡ୍‌ୟୁନିଅନ୍ ଓ କିଷାନ ସଭା ଜୋର୍‌ଦାର ହୋଇ ଉଠିଥିଲେ ।

ଏହିସବୁ ପାର୍ଟି ଶ୍ରମିକ ଶ୍ରେଣୀ ଓ କୃଷକମାନଙ୍କର ସ୍ୱାର୍ଥ ରକ୍ଷା କରୁଥିଲେ ଏବଂ ଜମିଦାରୀ ପ୍ରଥା ବିଲୋପ ସମେତ ପୂର୍ଣ୍ଣ ସ୍ୱାଧୀନତାର ଦାବି ଜଣାଉଥିଲେ । ଶ୍ରମିକ ଓ କୃଷକ ପାର୍ଟିଗୁଡ଼ିକର କର୍ମସୂଚୀ ପ୍ରକାଶ ଏବଂ ଜାତୀୟ କଂଗ୍ରେସ ନିକଟରେ ସେମାନଙ୍କର ଆବେଦନ କଂଗ୍ରେସ ମଧ୍ୟରେ ବାମପନ୍ଥୀ ଗୋଷ୍ଠୀକୁ ଦୃଢ଼ କରିଥିଲା । ଏହିସବୁ ଗୋଷ୍ଠୀ ଦ୍ୱାରା ପ୍ରକାଶିତ ବିଭିନ୍ନ ସମ୍ବାଦପତ୍ର

ସେମାନଙ୍କ ପ୍ରଚାର କାର୍ଯ୍ୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ବଙ୍ଗଳାର "ଗଣବାଣୀ", ବମ୍ବେର "କ୍ରାନ୍ତି", ପଞ୍ଜାବର "କିର୍ତି" ("ଶ୍ରମିକ"), "ମେହନତକାଶ" ("ମେହନତି ମଣିଷ") ଓ "ମଜଦୁର କିଷାନ" ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ।

କମ୍ୟୁନିଷ୍ଟ ଏବଂ ଶ୍ରମିକ ଓ କୃଷକ ପାର୍ଟିଗୁଡ଼ିକର କ୍ରିୟାକଳାପ ମୁକ୍ତି ଆନ୍ଦୋଳନରେ ଏକ ନୂତନ ଜୁଆର ପାଇଁ ଅପରିହାର୍ଯ୍ୟ ପୂର୍ବସର୍ତ୍ତ ସୃଷ୍ଟି କରିବାରେ ସହାୟତା ଯୋଗାଇଥିଲା ।

୧୯୨୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ସରକାର କର୍ତ୍ତୃକ ଭାରତ ସରକାର ପାଇଁ ଏକ ନୂତନ ବିଧି ପ୍ରଣୟନ ଉଦ୍ଦେଶ୍ୟରେ ଲର୍ଡ ସାଇମନ୍‌ଙ୍କ ନେତୃତ୍ୱରେ ଏକ କମିସନ ଗଠିତ ହେବାର ସଂବାଦ ଘୋଷିତ ହେଲା । ଏହା ଦ୍ୱାରା ଆଭ୍ୟନ୍ତରୀଣ ପରିସ୍ଥିତିରେ ପୁନର୍ବାର ସୃଷ୍ଟି ହୋଇଥିଲା ନୂଆ ଉତ୍ତେଜନା । ଏହି କମିସନରେ କୌଣସି ଭାରତୀୟ ନଥିବାରୁ ଏହା ବିରୁଦ୍ଧରେ ତୀବ୍ର ନିନ୍ଦା ଘୋଷଣା କରାଗଲା । କଂଗ୍ରେସର ମାଡ୍ରାଜ ଅଧିବେଶନରେ ସାଇମନ କମିସନକୁ ବର୍ଜନ କରିବାକୁ ପ୍ରସ୍ତାବ ନିଆଗଲା । ବ୍ରିଟିଶ୍ ଔପନିବେଶିକ ନୀତି ବିରୁଦ୍ଧରେ ପ୍ରତିବାଦମୂଳକ ପ୍ରଚାର ଅଭିଯାନ ଏହି ସମୟରେ ସାରା ଦେଶରେ ଖେଳି ଯାଇଥିଲା ।

# ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନର ବୃଦ୍ଧି ଓ ମିଳିତ ସାମ୍ମୁଖ୍ୟ ଗଠନ ପାଇଁ ସଂଗ୍ରାମ (୧୯୨୮-୧୯୩୯)

୧୯୧୮-୧୯୨୨ ଖ୍ରୀଷ୍ଟାବ୍ଦରେ ଯେଉଁସବୁ ଅର୍ଥନୈତିକ ଓ ସାମାଜିକ-ରାଜନୈତିକ ହେତୁ ଭାରତରେ ବୈପ୍ଳବିକ ଆନ୍ଦୋଳନର ଜୁଆର ସୃଷ୍ଟି କରିଥିଲେ ସେସବୁ ନିଷ୍କ୍ରିୟ ହୋଇ ପଡ଼ି ନଥିଲେ । ପରବର୍ତ୍ତୀକାଳରେ ସାମ୍ରାଜ୍ୟବାଦୀ ପ୍ରତ୍ୟାଘାତ ଫଳରେ ଔପନିବେଶିକ ସରକାର ଏବଂ ଭାରତୀୟ ସମାଜର ବିଭିନ୍ନ ଶ୍ରେଣୀମାନଙ୍କ ମଧ୍ୟରେ ଅସଙ୍ଗତି ବୃଦ୍ଧି ପାଇଥିଲା ।

ଏମନ୍ତାବସ୍ଥାରେ ଜାତୀୟ ପୁଞ୍ଜିବାଦର ଆଉରି ବିକାଶ ବ୍ରିଟିଶ୍ ଏକଚ୍ଛଟିଆ ଓ ଭାରତୀୟ ଜାତୀୟ ବୁର୍ଜୁଆ ମଧ୍ୟରେ ଦ୍ୱନ୍ଦ୍ୱକୁ କେବଳ ଗଭୀରତର କରିଥିଲା ।

## ଜାତୀୟ-ମୁକ୍ତି ଆନ୍ଦୋଳନର ନୂତନ ଅଧ୍ୟାୟ

### ଭାରତର ଅର୍ଥନୀତିରେ ବିଶ୍ୱ ଅର୍ଥନୈତିକ ସଂକଟର ପ୍ରଭାବ

୧୯୨୯ ଖ୍ରୀଷ୍ଟାବ୍ଦର ବିଶ୍ୱ ଅର୍ଥନୈତିକ ସଂକଟ ଭାରତର ଅର୍ଥନୀତି ଉପରେ ଏକ ମାରାତ୍ମକ ଆଘାତ ହାଣିଥିଲା । ଇତିପୂର୍ବରୁ ସେଇ ୧୯୨୭-୧୯୨୮ ଖ୍ରୀଷ୍ଟାବ୍ଦରେ କୃଷିଜାତ ଦ୍ରବ୍ୟର ବିକ୍ରି କ୍ଷେତ୍ରରେ ମାନ୍ଦାବସ୍ଥା ସମେତ କୃଷି ସଂକଟ ଦେଖା ଦେଇଥିଲା । ଏହା ଦ୍ୱାରା ପ୍ରଧାନ ପ୍ରଧାନ କୃଷି ପଣ୍ୟର ଦାମ୍ ଯଥେଷ୍ଟ ହ୍ରାସ ପାଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଗହମର ଦାମ୍ ୫୦ ଶତାଂଶ ଏବଂ ଝୋଟର ଦାମ୍ ୫୦-୬୫ ଶତାଂଶ ହ୍ରାସ ଘଟଣାଟି ଉଲ୍ଲେଖଯୋଗ୍ୟ । ଏହି ସମୟରେ ଔପନିବେଶିକ ସରକାର ଯଥେଷ୍ଟ ଖଜଣା ବୃଦ୍ଧି ଲକ୍ଷ୍ୟରେ ଭୂମିରାଜସ୍ୱର ହାର ପୁନର୍ବିବେଚନା କରିବାକୁ ଉଦ୍ୟମ କରିଥିଲା । ଏହା ଦ୍ୱାରା ପ୍ରକୃତ ଚାଷୀର ଆୟ ଅନେକ ପରିମାଣରେ କମିଗଲା । ପ୍ରତିକୂଳ ବଜାରର ପରିସ୍ଥିତି ହେତୁ କ୍ଷତି ପୂରଣ ପାଇଁ ଜମିଦାରମାନେ ଦ୍ରବ୍ୟ ବଦଳରେ ଅର୍ଥ ଆକାରରେ ଖଜଣା ଆଦାୟ ଆରମ୍ଭ କରିଥିଲେ । କ୍ରମଶଃ ଅଧିକରୁ ଅଧିକ ରଇତ ଚାଷୀ ଓ କ୍ଷୁଦ୍ର ଚାଷୀ ଦେଉଳିଆ ହୋଇ ପଡ଼ିଥିଲେ ଏବଂ କୃଷକମାନଙ୍କ ଜମି କ୍ରମଶଃ ଅଧିକରୁ ଅଧିକ ଜମିଦାର, ମହାଜନ ଓ ଧନୀ କୃଷକମାନଙ୍କ ହସ୍ତଗତ ହୋଇଥିଲା । ଏହି ସମୟରେ କୃଷି ଋଣର ପରିମାଣ ୯୦୦ କୋଟି ଟଙ୍କାରେ ପହଞ୍ଚିଥିଲା ।

ଗ୍ରାମ ଉପରେ ଏହିସବୁ ଆଘାତ ଛଡ଼ା ସଂକଟ ସେତେବେଳେ ସହରଗୁଡ଼ିକୁ ମଧ୍ୟ ଗ୍ରାସ କରିଥିଲା । କାରଖାନା ଓ ଛୋଟ ଛୋଟ ଶିଳ୍ପ ସଂସ୍ଥା ଅଚଳ ହୋଇ ପଡ଼ିଥିଲେ । ଜିନିଷପତ୍ର ଦର ବୃଦ୍ଧି ସାଙ୍ଗକୁ ଏହି ସମୟରେ ପୁନର୍ଗଠନ ନାମରେ ବ୍ୟାପକ ଶ୍ରମିକ ଛଟେଇ ଫଳରେ ଶ୍ରମିକ ଶ୍ରେଣୀ ଓ ସାଧାରଣ ଅଫିସ୍ କର୍ମଚାରୀମାନଙ୍କର ଅବସ୍ଥାରେ ଅବନତି ଘଟିଥିଲା ।

ବ୍ରିଟିଶ୍ ବୁର୍ଜୁଆମାନେ ଉପନିବେଶଗୁଡ଼ିକର ମୂଲ୍ୟରେ, ପ୍ରଥମତଃ ଓ ପ୍ରଧାନତଃ ଭାରତବର୍ଷର ମୂଲ୍ୟରେ ଏହି ଅର୍ଥନୈତିକ ସଂକଟକୁ ଏଡ଼ାଇବାକୁ ଚାହିଁଥିଲେ । ଏହି ସମୟରେ ଭାରତୀୟ ରପ୍ତାନି ଆମଦାନି (ସର୍ବୋପରି ବ୍ରିଟେନ୍‌ରୁ) ଦର ମଧ୍ୟରେ ତଫାତ୍ ଯଥେଷ୍ଟ ବୃଦ୍ଧି ପାଉଥିଲା ।

ତତ୍କାଳୀନ ଜୀବନଯାତ୍ରାର ବ୍ୟୟ ବୃଦ୍ଧି ଏବଂ ବହୁ କ୍ଷୁଦ୍ର ସଂସ୍ଥା ଦେଉଳିଆ ହୋଇଯିବା ହେତୁ ଅନେକ ଭାରତୀୟ ସେମାନଙ୍କ ସଞ୍ଚୟକୁ (ପ୍ରଥାନୁଯାୟୀ ରୂପା ଆଉ ସୁନାର ଅଳଙ୍କାର ଆକାରରେ ସଞ୍ଚିତ) ଖର୍ଚ୍ଚ କରିବାକୁ ବାଧ୍ୟ ହେଉଥିଲେ । ଏହି ସଂକଟ କାଳରେ ବ୍ରିଟିଶ୍ ବ୍ୟାଙ୍କଗୁଡ଼ିକ ସେମାନଙ୍କ ମହାଜନ ଦଲାଲଙ୍କ ମାଧ୍ୟମରେ ୩୦୦ କୋଟି ଟଙ୍କା ମୂଲ୍ୟର ମୂଲ୍ୟବାନ ଧାତୁ ଭାରତ ବାହାରକୁ ପଠାଇ ଦେଇଥିଲେ ।

ସଂକଟ କେବଳ ଶ୍ରମଜୀବୀମାନଙ୍କୁ ଆଘାତ କରି ନଥିଲା । ସମଗ୍ର ଦେଶରେ ସେତେବେଳେ କ୍ଷୁଦ୍ର ଓ ମଧ୍ୟମ ଧରଣର ଶିଳ୍ପ ଓ ବ୍ୟବସାୟ ସଂସ୍ଥାଗୁଡ଼ିକ ଦେଉଳିଆ ହୋଇ ପଡ଼ିଥିଲେ । ଏଭଳି ଅବସ୍ଥାରେ ବିଦେଶୀ ଏକଚାଟିଆ ଓ ଭାରତୀୟ ବୁର୍ଜୁଆମାନଙ୍କର ଉର୍ଦ୍ଧ୍ୱ ସ୍ତରଗୁଡ଼ିକର ଅବସ୍ଥାନ କେବଳ ଅତୁଟ ରହିଥିଲା । କିନ୍ତୁ ଔପନିବେଶିକ ଶାସନର ପରିପ୍ରେକ୍ଷିତରେ ଭାରତୀୟ ଶିଳ୍ପୋଦ୍ୟୋଗୀମାନଙ୍କର ଊର୍ଦ୍ଧ୍ୱତନ ସ୍ତରର ଏହି ଶକ୍ତି ବୃଦ୍ଧି ଫଳରେ ଏମାନଙ୍କର ଏବଂ ସାମ୍ରାଜ୍ୟବାଦୀମାନଙ୍କର ସ୍ୱାର୍ଥ ମଧ୍ୟରେ ଦ୍ୱନ୍ଦ୍ୱର ତୀବ୍ରତା ବୃଦ୍ଧି ପାଇଥିଲା ।

ତେଣୁ, ଭାରତରେ ଶ୍ରେଣୀଗତ ଓ ଜାତୀୟ ଦ୍ୱନ୍ଦ୍ୱ ବୃଦ୍ଧିକାରୀ ଏହି ଅର୍ଥନୈତିକ ସଂକଟ ଦେଶର ଶ୍ରେଣୀ ସଂଗ୍ରାମରେ ତଥା ସ୍ୱାଧୀନତା ସଂଗ୍ରାମରେ ନୂତନ ଗତିବେଗ ସଞ୍ଚାର କରିଥିଲା ।

## ଶ୍ରମିକ ଆନ୍ଦୋଳନ (୧୯୨୮-୧୯୨୯)

ଶ୍ରମିକ ଶ୍ରେଣୀର ସଂଗ୍ରାମ ସହିତ ଦେଶର ବୈପ୍ଳବିକ କାର୍ଯ୍ୟକଳାପର ଜୁଆର ଆରମ୍ଭ ହୋଇଥିଲା । ଏହି ସମୟରେ ଧର୍ମଘଟ ଆନ୍ଦୋଳନ ତୀବ୍ର ହୋଇ ଉଠିଥିଲା । ୧୯୨୮ ଖ୍ରୀଷ୍ଟାବ୍ଦରେ ୫ ଲକ୍ଷାଧିକ ଲୋକ ଧର୍ମଘଟରେ ଯୋଗ ଦେଇଥିଲେ । ଗତ ୧୦ ବର୍ଷର ଅର୍ଥନୈତିକ ସଂଗ୍ରାମରେ ଯେଉଁସବୁ ନୂତନ ବୈଶିଷ୍ଟ୍ୟ ଦେଖିବାକୁ ମିଳି ନଥିଲା, ତାହା ବିଂଶ ଦଶକର ଶେଷରେ ଏବଂ ତିରିଶ ଦଶକର ପ୍ରାରମ୍ଭରେ ଅନୁଷ୍ଠିତ ଧର୍ମଘଟରେ ପ୍ରକଟିତ ହୋଇଥିଲା ।

ବିକ୍ଷୋଭ ଏବଂ ଧର୍ମଘଟ କମିଟି ଗଠନ—ସଂଗ୍ରାମର ଏହି ଦୁଇଟି ରୂପର ବ୍ୟବହାର କ୍ରମଶଃ ବୃଦ୍ଧି ପାଉଥିଲା । ସଂଗଠିତ ଶ୍ରମିକ ଆନ୍ଦୋଳନ ମଧ୍ୟରେ ଟ୍ରେଡ୍‌ୟୁନିଅନ୍ ଓ ଧର୍ମଘଟ କମିଟିଗୁଡ଼ିକର ନେତୃତ୍ୱ ଲାଭ ପାଇଁ କମ୍ୟୁନିଷ୍ଟ ଓ ଗଣତନ୍ତ୍ରବାଦୀମାନଙ୍କ ସହିତ ଜାତୀୟତାବାଦୀ-ସଂସ୍କାରପନ୍ଥୀମାନଙ୍କର ସଂଗ୍ରାମ ତୀବ୍ର ହୋଇ ଉଠିଥିଲା ।

ଏହି ସଂଗ୍ରାମ ଫଳରେ ବିପ୍ଳବୀ ଟ୍ରେଡ୍‌ୟୁନିଅନ୍‌ସବୁ ପ୍ରତିଷ୍ଠିତ ହୋଇଥିଲା ଏବଂ ଏସବୁ ଏକାସାଙ୍ଗରେ ଅର୍ଥନୈତିକ ଓ ରାଜନୈତିକ ସଂଗ୍ରାମ ପରିଚାଳନା କରୁଥିଲେ, ଦୃଢ଼ ଭାବେ ଶ୍ରମିକମାନଙ୍କ ଶ୍ରେଣୀ ସ୍ୱାର୍ଥ ରକ୍ଷା କରୁଥିଲେ ।

ସୂତାକଳ ଶ୍ରମିକମାନଙ୍କର ସାଧାରଣ ଧର୍ମଘଟର ପ୍ରସ୍ତୁତି ପର୍ବରେ ଏହି ଧରଣର ପ୍ରଥମ ଟ୍ରେଡ୍‌ୟୁନିଅନ୍ ପ୍ରତିଷ୍ଠିତ ହୋଇଥିଲା ବମ୍ବେରେ । ଡାଙ୍ଗେ ଏବଂ ଭାରତରେ କର୍ମରତ ବ୍ରିଟିଶ୍ କମ୍ୟୁନିଷ୍ଟ ବେନ ବ୍ର୍ୟାଡ୍‌ଲିଙ୍କ ଦ୍ୱାରା ପରିଚାଳିତ "ଗିର୍‌ନି କାମଗାର ଜଲ ବାଉଟା" ନାମକ ସୂତାକଳ ଶ୍ରମିକମାନଙ୍କର ଏକ ଟ୍ରେଡ୍‌ୟୁନିଅନ୍ ପରବର୍ତ୍ତୀ କାଳରେ ବାମପନ୍ଥୀ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର କେନ୍ଦ୍ର ବିନ୍ଦୁ ହୋଇ ପଡ଼ିଥିଲା ।

କେଇ ହଜାର ଶ୍ରମିକ ଛଟାଇ ହେଲା ପରେ ବମ୍ବେର ସୂତାକଳଗୁଡ଼ିକରେ ବ୍ୟାପକ ତାଲାବନ୍ଦ ଆରମ୍ଭ ହୋଇ ଯିବା ଫଳରେ ଏକ ଧର୍ମଘଟ ଆରମ୍ଭ ହୋଇଗଲା । ବମ୍ବେର ସମସ୍ତ ସୂତାକଳର ଶ୍ରମିକ ଏଥିରେ ଯୋଗ ଦେଇ ଥିଲେ । ଛଅ ମାସ କାଳ (୧୯୨୮, ଏପ୍ରିଲରୁ ଅକ୍ଟୋବର ପର୍ଯ୍ୟନ୍ତ) ଏହି ଧର୍ମଘଟରେ ୨ କୋଟିରୁ ଅଧିକ କର୍ମଦିବସ ନଷ୍ଟ ହୋଇଥିଲା । ଧର୍ମଘଟକାରୀମାନଙ୍କର ଅନମନୀୟତା ସମଗ୍ର ଭାରତର ଶ୍ରମିକ ଆନ୍ଦୋଳନକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ଶୋଲାପୁର ଓ ଅନ୍ୟାନ୍ୟ ଶିଳ୍ପକେନ୍ଦ୍ରର ଶ୍ରମିକ ଏବଂ ରେଳ ଶ୍ରମିକମାନେ ସହାନୁଭୂତିମୂଳକ ଧର୍ମଘଟରେ ଯୋଗ ଦେଇଥିଲେ । ଭାରତ, ବ୍ରିଟେନ୍ ଓ ସୋଭିଏତ୍ ୟୁନିଅନ୍‌ରେ ଧର୍ମଘଟକାରୀମାନଙ୍କ ପାଇଁ ବିଶେଷ ପାଣ୍ଠି ସଂଗୃହୀତ ହୋଇଥିଲା ।

ଧର୍ମଘଟ ସଂଗଠନକାରୀମାନଙ୍କ ବିରୁଦ୍ଧରେ ଦମନମୂଳକ ବ୍ୟବସ୍ଥା ଏବଂ ଧର୍ମଘଟ ଭାଙ୍ଗିବା ପାଇଁ ଗୁଣ୍ଡା ନିୟୋଗ ଓ ଆନୁଷଙ୍ଗିକ ଅନ୍ୟାନ୍ୟ ବ୍ୟବସ୍ଥା ସାହାଯ୍ୟରେ ଧର୍ମଘଟକାରୀମାନଙ୍କର ପ୍ରତିରୋଧକୁ ଦୁର୍ବଳ କରିବାର ଚେଷ୍ଟା ସତ୍ତ୍ୱେ ଶିଳ୍ପମାଲିକମାନେ ଓ ଔପନିବେଶିକ ସରକାର ଶେଷକୁ ଶ୍ରମିକମାନଙ୍କୁ ସୁବିଧା ଦାନ କରିବାକୁ ବାଧ୍ୟ ହୋଇଥିଲେ । ଫଳରେ ଧର୍ମଘଟକାରୀମାନଙ୍କର ଅର୍ଥନୈତିକ ଦାବୀସମୂହ ପର୍ଯ୍ୟାଲୋଚନା ପାଇଁ ଏକ ବିଶେଷ କମିଟି ଗଠନ ସମେତ (ମଜୁରି କାଟ, ଛଟେଇ ଏବଂ "ଅସ୍ପୃଶ୍ୟମାନଙ୍କ" ପ୍ରତି ବୈଷମ୍ୟମୂଳକ ଆଚରଣ ବନ୍ଦ) "ଗିର୍‌ନି କାମଗାର" ଟ୍ରେଡ୍‌ୟୁନିଅନ୍ ବମ୍ବେର ସୂତାକଳ ଶ୍ରମିକମାନଙ୍କର ଟ୍ରେଡ୍‌ୟୁନିଅନ୍ ରୂପେ ସରକାରଙ୍କ ସ୍ୱୀକୃତି ଲାଭ କରିଥିଲା ଏବଂ ଧର୍ମଘଟ ଆନ୍ଦୋଳନର ନେତୃବୃନ୍ଦଙ୍କ ଉପରେ ପୁଲିସ୍ ଜୁଲମ ବନ୍ଦ ହୋଇଥିଲା ।

ବମ୍ବେର ସୂତାକଳ ଶ୍ରମିକମାନଙ୍କର ସାଧାରଣ ଧର୍ମଘଟ ଭାରତର ଶ୍ରମିକ ଆନ୍ଦୋଳନର ଇତିହାସରେ ଏକ ଗୌରବମୟ ଅଧ୍ୟାୟ ହୋଇ ରହି ଆସିଛି । ଏହା ଭାରତୀୟ ଶ୍ରମିକ ଶ୍ରେଣୀର ସଂଗଠିତ କାର୍ଯ୍ୟକଳାପର ପରବର୍ତ୍ତୀ ପର୍ଯ୍ୟାୟକୁ ବୈପ୍ଳବିକ ଉଦ୍ଦୀପନା ଯୋଗାଇଥିଲା ।

"ଗିର୍‌ନି କାମଗାର" ଟ୍ରେଡ୍‌ୟୁନିଅନ୍ ପ୍ରତିଷ୍ଠା ଓ ଏହାର ଆଶୁ ସାଫଲ୍ୟ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ମଧ୍ୟରେ ବାମପନ୍ଥୀ ଗୋଷ୍ଠୀ ଗଠନକୁ ତ୍ୱରାନ୍ୱିତ କରିଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ସେଇ ସମୟରେ ଟ୍ରେଡ୍‌ୟୁନିଅନ୍ କଂଗ୍ରେସରେ କମ୍ୟୁନିଷ୍ଟମାନଙ୍କ ଭୂମିକା କ୍ରମଶଃ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା ।

୧୯୨୮ ଖ୍ରୀଷ୍ଟାବ୍ଦରେ ଝରିଆରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଅଧିବେଶନରେ ଜମି ଆଉ ଶିଳ୍ପ ଜାତୀୟକରଣର ଭିତ୍ତିରେ ଭାରତରେ ସ୍ୱାଧୀନ, ସମାଜବାଦୀ ପ୍ରଜାତନ୍ତ୍ର ଗଠନ ପାଇଁ

ଆହ୍ୱାନ ଜଣାଇ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ରାଜନୈତିକ କର୍ମସୂଚୀ ଯେ ଇତିମଧ୍ୟରେ ଯଥେଷ୍ଟ ବୈପ୍ଳବିକ ହୋଇ ଉଠିଥିଲା, ତା'ର ପ୍ରମାଣ ଏହି ଉଦ୍ୟୋଗ ମଧ୍ୟରୁ ମିଳିଥାଏ ।

୧୯୨୯ ଖ୍ରୀଷ୍ଟାବ୍ଦରେ କ୍ଷମତାସୀନ ଇଂଲଣ୍ଡର ଲେବର ପାର୍ଟି ଭାରତର ଟ୍ରେଡ୍‌ୟୁନିଅନ୍ ସଂଗଠନଗୁଡ଼ିକରେ ବାମପନ୍ଥୀମାନଙ୍କର ଏହି ସଂହତି ପ୍ରତି ଦ୍ୱିବିଧ ପ୍ରତିକ୍ରିୟା ପ୍ରଦର୍ଶନ କରିଥିଲେ : ଏକ ଦିଗରେ, ଭାରତର ଶ୍ରମିକ ଶ୍ରେଣୀ ସହିତ ଏକ ବୁଝାମଣାରେ ପହଞ୍ଚିବାର ମନୋଭାବ ଦେଖା ଦେଇଥିଲା । ଏହା ହୁଇଟଲିଙ୍କ ନେତୃତ୍ୱରେ ଭାରତରେ ଶ୍ରମିକମାନଙ୍କ ପାଇଁ ରାଜକୀୟ କମିସନ ଗଠନ କରିଥିଲା, ଏବଂ ଅନ୍ୟ ଦିଗରେ ସଂଗଠିତ ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ଉପସ୍ଥିତ ନିର୍ମମ ନୀତିକୁ ଅବ୍ୟାହତ ରଖିଥିଲା । ଏହା ଶ୍ରମିକ ଶ୍ରେଣୀକୁ ରାଜନୈତିକ ସଂସ୍ଥା ଗଠନ କରିବାକୁ ଦେଇ ନଥିଲା । ଟ୍ରେଡ୍‌ୟୁନିଅନ୍ କାର୍ଯ୍ୟକଳାପକୁ କେବଳ ଅର୍ଥନୈତିକ ବିଷୟ ମଧ୍ୟରେ ସୀମିତ କରି ଆଇନ୍ ପାଶ୍ କରିବା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟ କାର୍ଯ୍ୟକଳାପକୁ ଦମନ କରିବାରେ ଏହା ତତ୍ପର ହୋଇ ଉଠିଥିଲା ।

ବାମପନ୍ଥୀ ଟ୍ରେଡ୍‌ୟୁନିଅନ୍‌କୁ ସମର୍ଥନ କରୁଥିବା କାରଖାନା କମିଟିଗୁଡ଼ିକର ସଦସ୍ୟମାନଙ୍କୁ ବିଭିନ୍ନ ଧରଣର ଉତ୍ପୀଡ଼ନର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ବମ୍ବେର ସୂତାକଳ ଶ୍ରମିକମାନେ ୧୯୨୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ "ଗିର୍‌ନି କାମଗାର" ୟୁନିଅନ୍‌ର ସମର୍ଥନରେ ପୁଣି ଏକ ସାଧାରଣ ଧର୍ମଘଟ କରିଥିଲେ । କିନ୍ତୁ ଟ୍ରେଡ୍‌ୟୁନିଅନ୍‌ର ପ୍ରଧାନ ବାମପନ୍ଥୀ ନେତାମାନେ ଆରମ୍ଭରେ ଗିରଫ୍ ହୋଇଯିବାରୁ ଧର୍ମଘଟ ଏଥର ସଫଳ ହୋଇ ପାରିଲା ନାହିଁ ।

ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ କମ୍ୟୁନିଷ୍ଟ ଓ ବାମପନ୍ଥୀ କଂଗ୍ରେସ ସଦସ୍ୟମାନଙ୍କର କ୍ରମବର୍ଦ୍ଧମାନ ପ୍ରଭାବ ଜାତୀୟ ବୁର୍ଜୁଆ ମହଲଗୁଡ଼ିକ ପକ୍ଷରେ ଯଥେଷ୍ଟ ଉଦ୍‌ବେଗର କାରଣ ହୋଇ ଉଠିଥିଲା । ଦଶମ ସମ୍ମେଳନରେ (୧୯୨୯ ଖ୍ରୀଷ୍ଟାବ୍ଦ, ନଭେମ୍ବର, ନାଗପୁର) ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଦକ୍ଷିଣପନ୍ଥୀମାନେ "ଗିର୍‌ନି କାମଗାର" ଟ୍ରେଡ୍‌ୟୁନିଅନ୍ ସଂଗଠନକୁ କଂଗ୍ରେସରେ ଅନ୍ତର୍ଭୁକ୍ତ ହେବାରେ ବାଧା ଦେଇଥିଲେ । ନିଜର ସଂଖ୍ୟାଲଘୁତ୍ୱକୁ ଲକ୍ଷ୍ୟ କରି ଦକ୍ଷିଣପନ୍ଥୀମାନେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସକୁ ପରିତ୍ୟାଗ କରି ସେଇ ବର୍ଷ ଡିସେମ୍ବର ମାସରେ ଭି.ଭି. ଗିରି ଓ ଏନ୍.ଏମ୍. ଯୋଶୀଙ୍କ ନେତୃତ୍ୱରେ "ଭାରତୀୟ ଟ୍ରେଡ୍‌ୟୁନିଅନ୍ ଫେଡେରେସନ୍" ନାମରେ ଏକ ନୂତନ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର ଗଠନ କରିଥିଲେ । ଏହି ଭାବେ ଐକ୍ୟବଦ୍ଧ ଭାରତୀୟ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ପ୍ରଥମ ଫାଟଟି ସୃଷ୍ଟି ହୋଇଥିଲା ।

ନାଗପୁର ସମ୍ମିଳନୀରେ ହୁଇଟଲି କମିସନ ବର୍ଜନ କରିବାକୁ ପ୍ରସ୍ତାବ ଗୃହୀତ ହେଲା । ସୁଭାଷଚନ୍ଦ୍ର ବସୁ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସଭାପତି ନିର୍ବାଚିତ ହେଲେ । ଭାରତୀୟ ଶ୍ରମିକ ଆନ୍ଦୋଳନର ଘଟଣାବଳୀରୁ ଦେଖାଯାଏ ଯେ, ସେତେବେଳେ ଉପସ୍ଥିତ ଅନୁକୂଳ ପରିସ୍ଥିତିରେ କମ୍ୟୁନିଷ୍ଟ ଏବଂ ସେମାନଙ୍କ ସମର୍ଥକ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ପକ୍ଷରେ କଂଗ୍ରେସର ବାମପନ୍ଥୀମାନଙ୍କ ସହିତ ସହଯୋଗ କରିବା ସମ୍ଭବ ଥିଲା । କିନ୍ତୁ ଏହି ସୁଯୋଗର ସଦ୍‌ବ୍ୟବହାର କରାଯାଇ ନଥିଲା । ଏଥି ପାଇଁ ଖୋଦ୍ କମ୍ୟୁନିଷ୍ଟମାନଙ୍କ ଦୃଷ୍ଟିଭଙ୍ଗି ମଧ୍ୟ ଏ ଦିଗରେ କମ୍ ଦାୟୀ ନୁହେଁ ।

ବିଂଶ ଦଶକର ଶେଷ ଓ ତିରିଶ ଦଶକର ପ୍ରାରମ୍ଭରେ ଟ୍ରେଡ୍‌ୟୁନିଅନ୍ ହିଁ କମ୍ୟୁନିଷ୍ଟ କାର୍ଯ୍ୟକଳାପର ପ୍ରଧାନ କ୍ଷେତ୍ର ହୋଇ ଉଠିଥିଲା ଏବଂ ଏଥିରେ ଉଲ୍ଲେଖଯୋଗ୍ୟ ସାଫଲ୍ୟ ମଧ୍ୟ ଅର୍ଜିତ ହୋଇଥିଲା । ଆଉ ଯେଉଁସବୁ କ୍ଷେତ୍ରରେ ଭାରତର କମ୍ୟୁନିଷ୍ଟ ପାର୍ଟି ତା'ର ଅନୁଗାମୀମାନଙ୍କ ସଂଖ୍ୟା ବୃଦ୍ଧି କରି ପାରିଥାନ୍ତା ସେସବୁ ହେଲା ଶ୍ରମିକ ଆଉ କୃଷକ ପାର୍ଟି । ଶ୍ରମିକ ଆନ୍ଦୋଳନ ସୁପ୍ରତିଷ୍ଠିତ ହେବା ଫଳରେ ଏହିସବୁ ପାର୍ଟିର କାର୍ଯ୍ୟକଳାପ ମଧ୍ୟ ବୃଦ୍ଧି ପାଇଥିଲା ।

ବିଭିନ୍ନ ପ୍ରଦେଶରେ ଏହି ନାମରେ ପ୍ରତିଷ୍ଠିତ ସଂଗଠନଗୁଡ଼ିକୁ ଏକତ୍ର କରିବା ଉଦ୍ଦେଶ୍ୟରେ ୧୯୨୮ ମସିହା ଡିସେମ୍ବର ମାସରେ ଭାରତର ଶ୍ରମିକ ଓ କୃଷକ ପାର୍ଟିର ପ୍ରଥମ ସମ୍ମିଳନୀ ଡକାଯାଇଥିଲା ।

ଏହାର ବିଭିନ୍ନ ପ୍ରସ୍ତାବରେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଅର୍ଜନ ପାଇଁ ଆହ୍ୱାନ ଦିଆଯାଇଥିଲା ଏବଂ ଏହା ଜାତୀୟ-ମୁକ୍ତି ଆନ୍ଦୋଳନରେ ଶ୍ରମିକ ଶ୍ରେଣୀର ମୁଖ୍ୟ ଭୂମିକାକୁ ଅପରିହାର୍ଯ୍ୟ କରି ତୋଳିଥିଲା । ସମ୍ମେଳନ ଶ୍ରମିକ ଓ କୃଷକଙ୍କ କର୍ତ୍ତୃକ ଶ୍ରେଣୀ ସଂଗ୍ରାମକୁ ତୀବ୍ରତର କରିବା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଥିଲା ।

କମ୍ୟୁନିଷ୍ଟମାନେ ବଙ୍ଗଳା, ପଞ୍ଜାବ ଓ ବମ୍ବେର ଶ୍ରମିକ ଓ ଛାତ୍ରମାନଙ୍କ ମଧ୍ୟରେ ସର୍ବାଧିକ ପ୍ରଭାବଶାଳୀ ହୋଇ ଉଠିଥିଲେ । ସେମାନେ "ନଓଜବାନ ଭାରତ ସଭା" ଆଦି ଯୁବ ସଂସ୍ଥା ଗଠନ କରିଥିଲେ ।

ଗଣ ସଂଗଠନରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ବୃଦ୍ଧିକୁ ବନ୍ଦ କରିବା ଉଦ୍ଦେଶ୍ୟରେ ଔପନିବେଶିକ ପ୍ରଶାସନ ୧୯୨୯ ମସିହା ମାର୍ଚ୍ଚ ମାସରେ ବାମପନ୍ଥୀ ନେତୃବୃନ୍ଦଙ୍କ ଉପରେ ବଡ଼ ଧରଣର ଆକ୍ରମଣ ଚଳେଇଥିଲା । ଭାରତର କମ୍ୟୁନିଷ୍ଟ ପାର୍ଟିର ନେତାଙ୍କ ସମେତ ୧୪ଜଣ ସଦସ୍ୟ ଅନ୍ତର୍ଭୁକ୍ତ ୩୩ଜଣ ବାମପନ୍ଥୀ ନେତା ଓ ୧୮ଜଣ ଟ୍ରେଡ୍‌ୟୁନିଅନ୍ ନେତାଙ୍କୁ ଗିରଫ୍ କରାଗଲା ଏବଂ ସେମାନଙ୍କ ବିରୁଦ୍ଧରେ ରାଜବିଦ୍ରୋହର ଅଭିଯୋଗ ଅଣାଗଲା । ଚାରି ବର୍ଷ ବ୍ୟାପୀ "ମିରାଟ ଷଡ଼ଯନ୍ତ୍ର କେଶ୍" ନାମରେ ଖ୍ୟାତ ଏହି ମାମଲାକୁ କମ୍ୟୁନିଷ୍ଟମାନେ ସୁକୌଶଳରେ ଭାରତରେ ବ୍ରିଟିଶ୍ ଔପନିବେଶିକ ନୀତିକୁ ଅଭିଯୁକ୍ତ କରିବା ଏବଂ ବୈଜ୍ଞାନିକ ସମାଜବାଦର ଭାବଧାରାକୁ ପ୍ରଚାରର ଉପାୟ ରୂପେ ବ୍ୟବହାର କରିଥିଲେ । ଜାତୀୟ କଂଗ୍ରେସର ନେତୃବୃନ୍ଦଙ୍କ ସମେତ ଜନସାଧାରଣଙ୍କର ବ୍ୟାପକ ଅଂଶ ସେମାନଙ୍କୁ ସମର୍ଥନ ଦେଇଥିଲେ । ଭାରତ ଏବଂ ବିଦେଶରେ ଅଭିଯୁକ୍ତମାନଙ୍କ ସମର୍ଥନରେ ବିଶେଷ କମିଟି ଗଠିତ ହୋଇଥିଲା ।

ପାର୍ଟିର ଯେଉଁସବୁ ନେତା ଗିରଫ୍ ହୋଇ ନଥିଲେ ସେମାନଙ୍କର ସଙ୍କୀର୍ଣ୍ଣ ଦୃଷ୍ଟିଭଙ୍ଗି ହେତୁ ଦେଶର କମ୍ୟୁନିଷ୍ଟ ଆନ୍ଦୋଳନ ସେତେବେଳେ ମାରାତ୍ମକ ଭାବେ କ୍ଷତିଗ୍ରସ୍ତ ହୋଇଥିଲା । କମିଣ୍ଟର୍ଣ୍ଣ କର୍ତ୍ତୃକ ପ୍ରକାଶିତ "ଇଣ୍ଟରନେସନାଲ ପ୍ରେସ୍ କରେସପଣ୍ଡେନସ" ଦ୍ୱାରା ୧୯୩୦ ମସିହା ଡିସେମ୍ବର ମାସରେ ପ୍ରକାଶିତ "ଭାରତର କମ୍ୟୁନିଷ୍ଟ ପାର୍ଟିର ଖସଡ଼ା କର୍ମପନ୍ଥାରୁ" ଦେଖାଯାଏ ଯେ, ତତ୍କାଳୀନ ଭାରତୀୟ ପରିସ୍ଥିତିର ପରିପ୍ରେକ୍ଷିତରେ ଏହା ସଶସ୍ତ୍ର ଅଭ୍ୟୁତ୍ଥାନ ମାଧ୍ୟମରେ ସମାଜବାଦୀ ବିପ୍ଳବ ସଂପାଦନ ଓ ସୋଭିଏତ୍ ରାଜ ପ୍ରତିଷ୍ଠାର ଆହ୍ୱାନ ଜଣାଇଥିଲା । କହିବା ବାହୁଲ୍ୟ ଯେ, ଏହା

ଥିଲା ବାମପନ୍ଥୀ ସଂକୀର୍ଣ୍ଣତାବାଦର ନାମାନ୍ତର ମାତ୍ର । ଏହିସବୁ ପ୍ରସ୍ତାବ ଅନୁଯାୟୀ ୧୯୩୧-୧୯୩୨ ଖ୍ରୀଷ୍ଟାବ୍ଦରେ ଜାତୀୟ କଂଗ୍ରେସ କର୍ତ୍ତୃକ ଆୟୋଜିତ ଦେଶବ୍ୟାପୀ ଗଣ ଆନ୍ଦୋଳନରେ କମ୍ୟୁନିଷ୍ଟ ପାର୍ଟି ଯୋଗ ଦେଇ ନଥିଲା ।

ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ବୈପ୍ଳବିକ ପ୍ରାଣକେନ୍ଦ୍ରର ବିଲୋପ, ଏମାନଙ୍କ ମଧ୍ୟରେ ବିଭେଦ ଓ କମ୍ୟୁନିଷ୍ଟମାନଙ୍କ ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ଅବସ୍ଥାନ—ଏସବୁ ଶ୍ରମିକ ଶ୍ରେଣୀର ଆନ୍ଦୋଳନକୁ କ୍ଷତିଗ୍ରସ୍ତ କରିଥିଲା । ବୈପ୍ଳବିକ କାର୍ଯ୍ୟକଳାପର ଦୁର୍ଗ୍ରାବସ୍ଥା ସତ୍ତ୍ୱେ ଏହି ସମୟରେ ଧର୍ମଘଟ ଆନ୍ଦୋଳନ ୧୯୨୭-୧୯୨୯ ମସିହାର ପର୍ଯ୍ୟାୟରେ ପହଞ୍ଚି ପାରି ନଥିଲା ।

ଗ୍ରେଟ୍ ଇଣ୍ଡିଆନ ପେନିନ୍‌ସୁଲାର ରେଳବାଇ ଶ୍ରମିକ ଓ ଅଫିସ୍ କର୍ମଗରୀମାନଙ୍କ ଧର୍ମଘଟ ଥିଲା ୧୯୩୦-୧୯୩୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ବୃହତ୍ତମ ଧର୍ମଘଟ । ଏଥିରେ ୮୦ ହଜାରରୁ ଅଧିକ କର୍ମୀ ଯୋଗ ଦେଇଥିଲେ । ଔପନିବେଶିକ ଭାରତରେ ସୂତାକଳ ଶ୍ରମିକମାନଙ୍କ ସହିତ ଏକତ୍ର ଶ୍ରମିକ ଶ୍ରେଣୀର ସଂଗ୍ରାମୀ ଅଗ୍ରଦୂତ ହୋଇ ଉଠିଥିବା ଏହି ରେଳବାଇ ଶ୍ରମିକମାନେ ନିଜ ଲକ୍ଷ୍ୟ ସାଧନ ଦିଗରେ ଅନୁକରଣୀୟ ଦୃଢ଼ତାର ପରିଚୟ ଦେଇଥିଲେ । ଟ୍ରେଡ୍‌ୟୁନିଅନ୍ ନେତାମାନଙ୍କର ଆପୋଷମୂଳକ ଅବସ୍ଥାନ, ଛାଲବନ୍ଦ ଓ ସୈନ୍ୟ ନିୟୋଗ ସତ୍ତ୍ୱେ ଧର୍ମଘଟ ବର୍ଷେ କାଳ ସ୍ଥାୟୀ ହୋଇଥିଲା ଏବଂ ଅନ୍ୟାନ୍ୟ ରେଳପଥର ଶ୍ରମିକ ଓ ଅଫିସ୍ କର୍ମଗ୍ରରୀମାନଙ୍କ ସମର୍ଥନ ଲାଭ କରିଥିଲା ।

ଟ୍ରେଡ୍‌ୟୁନିଅନ୍ କେନ୍ଦ୍ରର ଦ୍ୱିତୀୟ ବାର ବିଭାଜନ ଫଳରେ ପୁନର୍ବାର ସଂଗଠିତ ଶ୍ରମିକ ଆନ୍ଦୋଳନ ଦୁର୍ବଳ ହୋଇ ପଡ଼ିଲା । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ (କଲିକତା, ୧୯୩୧) କମ୍ୟୁନିଷ୍ଟ ନେତୃତ୍ୱାଧୀନ ବାମପନ୍ଥୀମାନେ ସଂଗଠନ ତ୍ୟାଗର ସିଦ୍ଧାନ୍ତ ଘୋଷଣା କରିଥିଲେ । ରେଳ ଶ୍ରମିକମାନଙ୍କର କମ୍ୟୁନିଷ୍ଟ ପ୍ରତିନିଧିମାନେ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ପୂର୍ଣ୍ଣ ସଦସ୍ୟ ରୂପେ ବିବେଚ୍ୟ କି ନୁହନ୍ତି, ଅଧିକାଂଶ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଏହି ପ୍ରସଙ୍ଗରେ ତୀବ୍ର ମତ ବୈଷମ୍ୟ କାରଣରୁ ଏପରି ଘଟିଥିଲା । ଏହା ପରେ ସାରା ଦେଶରେ "ଲାଲ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର" ନାମକ ନୂଆ ଏକ ଟ୍ରେଡ୍‌ୟୁନିଅନ୍ ଗଠିତ ହେଲା ଏବଂ ତାହା ପ୍ରଫିଣ୍ଟାର୍ଣ୍ଣର ଅନୁମୋଦନ ଲାଭ କଲା ।

କମିଣ୍ଟର୍ଣ୍ଣ ଏବଂ ଭ୍ରାତୃସୁଲଭ କମ୍ୟୁନିଷ୍ଟ ପାର୍ଟିଗୁଡ଼ିକ ଭାରତୀୟ କମ୍ୟୁନିଷ୍ଟମାନଙ୍କର ଭୁଲକୁ ସଂଶୋଧନ କରିବା ପାଇଁ ଉଦ୍ୟୋଗ ଗ୍ରହଣ କରିଥିଲେ । ୧୯୩୨, ଜୁନ୍ ମାସରେ କମିଣ୍ଟର୍ଣ୍ଣର ପତ୍ରପତ୍ରିକାରେ ଜର୍ମାନୀ, ଗ୍ରେଟ୍ ବ୍ରିଟେନ୍ ଓ ଚୀନ୍ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପ୍ରସ୍ତାବିତ "ଭାରତୀୟ କମ୍ୟୁନିଷ୍ଟମାନଙ୍କ ପ୍ରତି ଖୋଲା ଚିଠି" ପ୍ରକାଶ ପାଇଥିଲା । ଏହି ଚିଠିରେ ଭାରତର କମ୍ୟୁନିଷ୍ଟ ପାର୍ଟିର ଅନୁସୃତ ବାମପନ୍ଥୀ ସଂକୀର୍ଣ୍ଣତାବାଦର ସମାଲୋଚନା ସମେତ ଭାରତର କମ୍ୟୁନିଷ୍ଟ ପାର୍ଟିକୁ ସାମ୍ରାଜ୍ୟବାଦବିରୋଧୀ ସାମ୍ମୁଖ୍ୟ ତିଆରି କରିବା ପାଇଁ କଂଗ୍ରେସ ପରିଗ୍ଳଳିତ ଦେଶବ୍ୟାପୀ ଆନ୍ଦୋଳନରେ ଅଂଶଗ୍ରହଣ କରିବାକୁ ସୁପାରିସ୍ କରାଯାଇଥିଲା ।

ଏହି ଦଲିଲ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନ ଉପରେ ସୁପ୍ରଭାବ ପକାଇଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଏହାର କେତେକ ନେତା, ଯେଉଁମାନେ କି ମିରଟ କେଶ୍‌ରେ ଜେଲରେ ଥିଲେ, ସେମାନେ ଏହି ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ଦୃଷ୍ଟିକୋଣ ଗ୍ରହଣ କରି ନଥିଲେ ।

୧୯୩୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ କଲିକତାରେ ଅନୁଷ୍ଠିତ ନିଖିଳ ଭାରତ ପାର୍ଟି ସମ୍ମିଳନୀରେ

ଗଙ୍ଗାଧର ଅଧିକାରୀଙ୍କୁ ସାଧାରଣ ସଂପାଦକ ରୂପେ ନିର୍ବାଚିତ କରି ଏକ ନୂତନ କେନ୍ଦ୍ରୀୟ କମିଟି ଗଠିତ ହୋଇଥିଲା । ଏଥର ଭାରତୀୟ କମ୍ୟୁନିଷ୍ଟ ପାର୍ଟି କମିଣ୍ଟର୍ଣ୍ଣର ଅନୁମୋଦନ ଲାଭ କରିଥିଲା ଏବଂ ଦେଶବ୍ୟାପୀ ସକ୍ରିୟ ଆନ୍ଦୋଳନରେ ଯୋଗଦେଲା । ଅବଶ୍ୟ, ବୈପ୍ଳବିକ କାର୍ଯ୍ୟକଳାପରେ ଭଟା ଦେଖା ଦେବା ପରେ ଏସବୁ ସଂଘଟିତ ହୋଇଥିଲା ।

୧୯୨୮ ଓ ୧୯୨୯ ଖ୍ରୀଷ୍ଟାବ୍ଦରେ ଶ୍ରମିକ ଶ୍ରେଣୀର ବ୍ୟାପକ କାର୍ଯ୍ୟକଳାପ ସମଗ୍ର ଭାରତର ରାଜନୈତିକ ଜୀବନରେ ପ୍ରାଣଶକ୍ତି ସଞ୍ଚାର କରିଥିଲା ।

## ନୂତନ ଭାରତ ଆଇନ୍ ପ୍ରଣୟନ ପାଇଁ ପ୍ରସ୍ତୁତି । ଜାତୀୟ କଂଗ୍ରେସର ଦୃଷ୍ଟିଭଙ୍ଗି

ଭାରତର ପ୍ରଶାସନ ପାଇଁ ନୂତନ ଆଇନ୍ ପ୍ରଣୟନ ଉଦ୍ଦେଶ୍ୟରେ ନିଯୁକ୍ତ ସାଇମନ୍ କମିସନ ୧୯୨୮ ଖ୍ରୀଷ୍ଟାବ୍ଦ, ଫେବୃଆରୀ ୩ ତାରିଖରେ ଭାରତବର୍ଷରେ ପହଞ୍ଚିଲେ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନର ନୂତନ ତରଙ୍ଗ ଉଭାଳ ହୋଇ ଉଠିଥିଲା । ଜାତୀୟ କଂଗ୍ରେସ ଓ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ "ସାଇମନ୍, ଭାରତ ଛାଡ଼ !" ଆହ୍ୱାନ ଦେଇ ଧର୍ମଘଟର ଡାକ ଦେଲେ । ନୂତନ ଆଇନ୍ ପ୍ରଣୟନ ସମୟରେ ବ୍ରିଟିଶ୍ ସରକାର କର୍ତ୍ତୃକ ସ୍ୱେଚ୍ଛାରେ ଭାରତୀୟ ଜନମତକୁ ଉପେକ୍ଷା କରିବା ବିରୁଦ୍ଧରେ କେବଳ ଜାତୀୟ କଂଗ୍ରେସ ଏବଂ ଶ୍ରମିକ ଓ କୃଷକ ପାର୍ଟି ଓ ଟ୍ରେଡ୍‌ୟୁନିଅନ୍ ଭଳି ଗଣତାନ୍ତ୍ରିକ ସଂଗଠନସମୂହ ନୁହେଁ, ମୁସଲିମ୍ ଲୀଗ୍, ହିନ୍ଦୁ ମହାସଭା ମଧ୍ୟ ପ୍ରତିବାଦ ଜଣାଇଥିଲେ । କେବଳ ପ୍ରତିକ୍ରିୟାଶୀଳ ଜମିଦାର ପାର୍ଟିସମୂହ ସାଇମନ୍ କମିସନ୍‌କୁ ସହାୟତା କରିଥିଲେ ।

ଭାରତୀୟ ରାଜନୈତିକ ସଂଗଠନଗୁଡ଼ିକର ଏହି ବର୍ଜନ ଡାକ କେନ୍ଦ୍ରୀୟ ଆଇନ୍ ସଭାର ଅଧିକାଂଶ ସଦସ୍ୟଙ୍କ ସମର୍ଥନ ଲାଭ କରିଥିଲା ।

୧୯୨୮ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ କଂଗ୍ରେସର ଉଦ୍ୟୋଗରେ ଆହୂତ ଆନ୍ତଃପାର୍ଟି ସମ୍ମିଳନୀଗୁଡ଼ିକରେ ଦେଶକୁ ମିଳିବାର ଥିବା ସମ୍ଭାବ୍ୟ ଡୋମିନିଅନ ମର୍ଯ୍ୟାଦା ସଂପର୍କରେ ଦେଶର ବିଭିନ୍ନ ରାଷ୍ଟ୍ରୀୟ ଓ ରାଜନୈତିକ ସଂଗଠନର ନୀତି ଘେନି ବ୍ୟାପକ ଆଳାପ ଆଲୋଚନା ଚାଲିଥିଲା ।

ସାଇମନ୍ କମିସନ ବିରୁଦ୍ଧରେ ଦେଶବ୍ୟାପୀ ବର୍ଜନ ଆନ୍ଦୋଳନ ଏବଂ ଭାରତର ଖସଡ଼ା ସମ୍ବିଧାନ ରଚନା ଛଡ଼ା ଜାତୀୟ କଂଗ୍ରେସ ସେତେବେଳେ ତା'ର ଗଣ ସମର୍ଥନର ଭିତ୍ତି ମଧ୍ୟ ସଂପ୍ରସାରିତ କରିଥିଲା । ବହୁ ଗ୍ରାମରେ ଜାତୀୟ କଂଗ୍ରେସର ଶାଖା ପ୍ରତିଷ୍ଠା କ୍ରମେ ପ୍ରଧାନତଃ ଧନୀ କୃଷକମାନଙ୍କୁ ଏସବୁଥିରେ ସଂଗଠିତ କରାଯାଇଥିଲା ।

ଗୁଜରାଟର ବରଦୋଲିରେ ଗାନ୍ଧୀ ଏବଂ ବଲ୍ଲଭଭାଇ ପଟେଲଙ୍କ କର୍ତ୍ତୃକ ଖଜଣା ବନ୍ଦ ଦାବି ନେଇ ପରିଚାଳିତ ଜମିମାଲିକ କୃଷକମାନଙ୍କ ସତ୍ୟାଗ୍ରହ କଂଗ୍ରେସ ତଥା ବ୍ୟକ୍ତିଗତ ଭାବେ ଗାନ୍ଧୀଙ୍କ ସମ୍ମାନ ବୃଦ୍ଧି କରିବାରେ ବିଶେଷ ଭାବେ ସହାୟକ ହୋଇଥିଲା । ଏହି ଆନ୍ଦୋଳନଟି ପରିଚାଳିତ ହୋଇଥିଲା ଅତ୍ୟଧିକ ଖଜଣା ବୃଦ୍ଧି ବିରୁଦ୍ଧରେ । ପୁଲିସ୍ ଅତ୍ୟାଚାର ଓ ଜମି ବାଜ୍ୟାପ୍ତ ସତ୍ତ୍ୱେ କୃଷକମାନଙ୍କୁ ଦୃଢ଼ ସମର୍ଥନ ଦେଇ କଂଗ୍ରେସ ୧୯୨୮, ଜୁନ୍ ୧୨ ତାରିଖରେ ସାରା ଦେଶରେ "ବରଦୋଲି ଦିବସ" ପାଳନ କରିଥିଲା ଏବଂ ସର୍ବତ୍ର ଜନସଭା ଓ ସଂହତିମୂଳକ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥିଲା ।

ସତ୍ୟାଗ୍ରହର ଆଂଶିକ ସାଫଲ୍ୟ ଏବଂ ଜାତୀୟ ସଂବାଦପତ୍ରଗୁଡ଼ିକରେ ଏ ବିଷୟରେ କେତେକ ଆଲୋଚନା ହେବା ଫଳରେ ଗାନ୍ଧୀ ଓ କଂଗ୍ରେସ ନେତାମାନଙ୍କର ଜନପ୍ରିୟତା ଓ ପ୍ରଭାବ ଯଥେଷ୍ଟ ବୃଦ୍ଧି ପାଇଥିଲା ।

ଇତିମଧ୍ୟରେ ୧୯୨୮, ଜୁଲାଇ ମାସରେ ମୋତିଲାଲ ନେହରୁଙ୍କ ନେତୃତ୍ୱରେ ଗଠିତ କମିଟିର ରିପୋର୍ଟ ପ୍ରକାଶ ପାଇଥିଲା । "ନେହରୁ ସମ୍ବିଧାନ" ନାମରେ ପରିଚିତ ଭାରତର ଏହି ଖସଡ଼ା ସମ୍ବିଧାନଟି ଥିଲା, ଏକ ଦିଗରେ, ଡୋମିନିଅନ ମର୍ଯ୍ୟାଦା ଦାନ, ବଜେଟ ଉପରେ ନିର୍ବାଚିତ ସଂସ୍ଥାର ନିୟନ୍ତ୍ରଣ ଏବଂ, ଅନ୍ୟ ଦିଗରେ, ବୈଦେଶିକ ନୀତି ଓ ପ୍ରତିରକ୍ଷା ବ୍ୟବସ୍ଥା ବ୍ରିଟିଶ୍ ହାତରେ ରହିବାର ପ୍ରସ୍ତାବ । "ନେହରୁ ସମ୍ବିଧାନରେ" ଦେଶୀୟ ରାଜ୍ୟସମୂହର ଅଧିକାର ସଂରକ୍ଷିତ ହୋଇଥିଲା, ଏବଂ, ଅନ୍ୟ ଦିଗରେ, ସମଗ୍ର ଦେଶର ଶ୍ରମଜୀବୀମାନଙ୍କର ଅତ୍ୟାବଶ୍ୟକୀୟ ସ୍ୱାର୍ଥସମୂହକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା ।

ପାର୍ଟିର ସ୍ଥାନୀୟ ଶାଖାଗୁଡ଼ିକରେ "ନେହରୁ ସଂବିଧାନ" ଘେନି ଆଲୋଚନା ବେଳେ କମିଟିର ବିଶଦ କର୍ମସୂଚୀର ଚରମ ସୀମାବଦ୍ଧତା ସଂପର୍କରେ ତୀବ୍ର ସମାଲୋଚନା କରାଯାଇଥିଲା । ନେହରୁ କମିଟିର ଏହି ପ୍ରସ୍ତାବକୁ ବିରୋଧିତା କରୁଥିବା କଂଗ୍ରେସର ବାମପନ୍ଥୀମାନେ ସେମାନଙ୍କ ପ୍ରତିକ୍ରିୟା ହିସାବରେ ସମଗ୍ର ଦେଶରେ ଇଣ୍ଡିପେଣ୍ଡେନ୍ସ ଲୀଗ୍ ଗଠନ କରି "ପୂର୍ଣ୍ଣ ସ୍ୱରାଜ" ଦାବି ଜଣାଇ ବିକ୍ଷୋଭ ସଂଘଟିତ କରିଥିଲେ । ୧୯୨୮ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ଜବାହାରଲାଲ ନେହରୁ ଓ ସୁଭାଷଚନ୍ଦ୍ର ବସୁଙ୍କ ନେତୃତ୍ୱରେ ନିଖିଳ ଭାରତ ଇଣ୍ଡିପେଣ୍ଡେନ୍ସ ଲୀଗ୍‌ର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

ସାଇମନ୍ କମିସନ, ଅବଶ୍ୟ, "ନେହରୁ ସମ୍ବିଧାନ" ପ୍ରତି ଧ୍ୟାନ ଦେଇ ନଥିଲେ । ଫଳତଃ, ସାମ୍ବିଧାନିକ ପନ୍ଥାରେ ବ୍ରିଟିଶ୍‌ମାନଙ୍କ ନିକଟରୁ କଂଗ୍ରେସର ସୁବିଧା ଲାଭେଚ୍ଛୁ ମଧ୍ୟପନ୍ଥୀମାନେ ହତାଶ ହୋଇଥିଲେ । ଏହା ଫଳରେ ଦେଶର ବିଭିନ୍ନ ଅଂଶ ମଧ୍ୟରେ ଇଣ୍ଡିପେଣ୍ଡେନ୍ସ ଲୀଗ୍ ମାଧ୍ୟମରେ ପାର୍ଟି ମଧ୍ୟରେ ଓ ବାହାରେ "ପୂର୍ଣ୍ଣ ସ୍ୱରାଜ" ପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା, କଂଗ୍ରେସର ବାମପନ୍ଥୀମାନଙ୍କର ଅବସ୍ଥାନ ଆଉରି ମଜବୁତ୍ ହୋଇଥିଲା । କିନ୍ତୁ ଗାନ୍ଧୀଙ୍କ ସହିତ ଅଧିକାଂଶ କଂଗ୍ରେସ ନେତୃବର୍ଗ ସେତେବେଳେ ବାମପନ୍ଥୀମାନଙ୍କ ଦ୍ୱାରା ଉତ୍ଥାପିତ ଦାବିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ୧୯୨୮ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ କଲିକତାରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ ମୋତିଲାଲ ନେହରୁ କମିସନର ରିପୋର୍ଟ ଅନୁମୋଦନ ଲାଭ କରିଥିଲା ଏବଂ ଆଉ ଏକ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବାର ସିଦ୍ଧାନ୍ତ ବର୍ଷକ ପାଇଁ ମୁଲତବି ରହିଥିଲା ।

## ଆତ୍ମଗୋପନକାରୀ ବିପ୍ଳବୀମାନଙ୍କ କାର୍ଯ୍ୟକଳାପ । ସଂତ୍ରାସବାଦୀ ସଂଗଠନଗୁଡ଼ିକର ସଂକଟ

ଏହି ସମୟରେ ସମଗ୍ର ଦେଶରେ ଉପସ୍ଥିତ ଗଣତାନ୍ତ୍ରିକ ଆଶା ଆକାଂକ୍ଷା ଓ ଶ୍ରମିକ ଶ୍ରେଣୀର ଦୃଢ଼ କାର୍ଯ୍ୟକଳାପ ଗୁପ୍ତ ବୈପ୍ଳବିକ ସମିତିଗୁଡ଼ିକୁ ନୂଆ କରି କାର୍ଯ୍ୟାରମ୍ଭ କରିବାକୁ ଅନୁପ୍ରେରଣା ଯୋଗାଇଥିଲା । ବିଂଶ ଦଶକର ଶେଷ ଓ ତିରିଶ ଦଶକର ପ୍ରାରମ୍ଭରେ କମ୍ୟୁନିଷ୍ଟ ଏବଂ କଂଗ୍ରେସ

ସଦସ୍ୟମାନେ ପ୍ରଥମେ ଛାତ୍ର ଓ ଯୁବ ସଂଗଠନଗୁଡ଼ିକୁ ପ୍ରତିଷ୍ଠା କଲେ ମଧ୍ୟ ର୍‌ୟାଡ଼ିକାଲ ଯୁବକମାନଙ୍କର କେତେକ ଅଂଶ (ପ୍ରଧାନତଃ, ପେଟି-ବୁର୍ଜୁଆ) ଏହି ଦୁଇ ଦଳ ମଧ୍ୟରୁ କୌଣସିଟିର କାର୍ଯ୍ୟକଳାପରେ ସନ୍ତୁଷ୍ଟ ନଥିଲେ । ସ୍ମରଣ କରିବାର କଥା ଯେ, କମ୍ୟୁନିଷ୍ଟମାନେ ସେତେବେଳେ ଭାରତୀୟ ସମାଜ ଉପରେ ସେପରି କୌଣସି ପ୍ରଭାବ ବିସ୍ତାର କରି ପାରି ନଥିଲେ । ଅଧିକାଂଶ ଭାରତୀୟ ଯୁବକ ସେତେବେଳେ ଅବିଳମ୍ବେ କିଛି କରିବା ପାଇଁ ଅଧୀର ହୋଇ ପଡ଼ିଥିଲେ ଏବଂ ପରମ୍ପରାଗତ ଗୋପନ ସଂଗ୍ରାମର ପଥ ଅନୁସରଣ କରିଥିଲେ ।

୧୯୨୮ ଖ୍ରୀଷ୍ଟାବ୍ଦରେ ଅନମନୀୟ ବିପ୍ଳବୀ ଭଗତ ସିଂହଙ୍କ ନେତୃତ୍ୱରେ ଭାରତୀୟ ରିପବ୍ଲିକାନ ସୋସାଲିଷ୍ଟ ଆସୋସିଏସନ ଗଠନ ମାଧ୍ୟମରେ ବେପରୁଆ ବିପ୍ଳବୀ ଗୋଷ୍ଠୀଗୁଡ଼ିକୁ ସଂଘବଦ୍ଧ କରାଯାଇଥିଲା । ପଞ୍ଜାବ, ରାଜପୁତାନା, ଯୁକ୍ତ ପ୍ରଦେଶ ଓ ବିହାର, ଅର୍ଥାତ୍, ସମଗ୍ର ଉତ୍ତର-ପଶ୍ଚିମ ଓ ଉତ୍ତର ଭାରତରେ ଏହାର ଶାଖା ଗଢ଼ି ଉଠିଥିଲା । ବଙ୍ଗଳାରେ ଏକ ବଡ଼ ଗୁପ୍ତ ସମିତି ସକ୍ରିୟ ଥିଲା ଏବଂ ଅନେକ ସନ୍ତ୍ରାସବାଦୀ ସ୍ଥାନୀୟ କଂଗ୍ରେସର ସଦସ୍ୟ ଥିଲେ ।

ଏହି ଶାଖାଗୁଡ଼ିକ ମଧ୍ୟରେ ପଞ୍ଜାବର ସଂଗଠନଟି ଥିଲା ସର୍ବାଧିକ ସକ୍ରିୟ । ଏସବୁ ଭଗତ ସିଂହଙ୍କ ଦ୍ୱାରା ୧୯୨୫ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ "ନଓଜୋଆନ ଭାରତ ସଭା" ଠାରୁ ସମର୍ଥନ ପାଉଥିଲେ । ଲାହୋର ସନ୍ତ୍ରାସବାଦୀମାନେ ବୋମା ତିଆରିର ଗୋପନ କାରଖାନା ଗଢ଼ି ପାରିଥିଲେ ।

ବ୍ୟାପକ ସନ୍ତ୍ରାସମୂଳକ କାର୍ଯ୍ୟକଳାପ ଫଳରେ କୃଷକ ଆନ୍ଦୋଳନରେ ବ୍ୟାପକ ଉଦ୍ଦୀପନା ସଞ୍ଚାରିତ ହେବ ବୋଲି ଏହି ବିପ୍ଳବୀମାନେ ନିଶ୍ଚିତ ଥିଲେ । କୃଷକ ବିଦ୍ରୋହରୁ ସ୍ୱତଃସ୍ଫୂର୍ତ୍ତ ଭାବେ ଜାତ ଗ୍ରସ ଫଳରେ ଭାରତରେ ଔପନିବେଶିକ ଶାସନର ଅବସାନ କରିବା ହିଁ ଥିଲା ସେମାନଙ୍କର ଧାରଣା । ଏହି ବିପ୍ଳବୀମାନେ ଶ୍ରମିକ ଶ୍ରେଣୀର ଭୂମିକା ଏବଂ ଶ୍ରମଜୀବୀମାନଙ୍କର ଗଣ ସଂଗଠନର କାର୍ଯ୍ୟକଳାପର ଗୁରୁତ୍ୱକୁ ବୁଝିବାକୁ ବ୍ୟର୍ଥ ହୋଇଥିଲେ ।

ପୂର୍ବନିର୍ଦ୍ଧାରିତ ପରିକଳ୍ପନା ଅନୁଯାୟୀ ରିପବ୍ଲିକାନ ଆସୋସିଏସନର ନେତା ଭଗତ ସିଂହ ଓ ସଦସ୍ୟ ବଟୁକେଶ୍ୱର ଦତ୍ତ କେନ୍ଦ୍ରୀୟ ଆଇନ୍ ସଭା ଗୃହରେ ୧୯୨୯ ମସିହା ଏପ୍ରିଲ ୮ ତାରିଖରେ ବୋମା ନିକ୍ଷେପ କରି ଏବଂ ପରେ ସ୍ୱେଚ୍ଛାରେ ଆତ୍ମସମର୍ପଣ କରିଥିଲେ । ବ୍ରିଟିଶ୍ ପୁଲିସ୍ ଉକ୍ତ ଆସୋସିଏସନର କେନ୍ଦ୍ରୀୟ ଦପ୍ତରକୁ ଭାଙ୍ଗି ଦେଇଥିଲା ଏବଂ ଗୋପନ ବୋମା କାରଖାନାଟିକୁ ମଧ୍ୟ ଖୋଜି ବାହାର କରିଥିଲା । ଭଗତ ସିଂହ ଏବଂ ବଟୁକେଶ୍ୱର ଦତ୍ତଙ୍କ ବିରୁଦ୍ଧରେ "ଲାହୋର ଷଡ଼ଯନ୍ତ୍ର" ମାମଲାର ଅଭିଯୋଗ ଅଣାଗଲା । ଭଗତ ସିଂହ ଏବଂ ତାଙ୍କ ସହଯୋଦ୍ଧାମାନେ ଜାତୀୟତାବାଦୀମାନଙ୍କ ମଧ୍ୟରେ ବିପୁଳ ସମର୍ଥନ ଲାଭ କରିଥିଲେ । ଏହି ବନ୍ଦୀମାନେ ଜେଲରେ ଅନଶନ ଧର୍ମଘଟ ଆରମ୍ଭ କଲେ, ଦେଶ ସାରା ପ୍ରତିବାଦ ସଭା ଓ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥିଲା ।

କିନ୍ତୁ ଭାରତର ଆତ୍ମଗୋପନକାରୀ ବିପ୍ଳବୀମାନଙ୍କର ସନ୍ତ୍ରାସମୂଳକ କାର୍ଯ୍ୟକଳାପ ଫଳରେ ଔପନିବେଶିକ ସରକାର ବିରୁଦ୍ଧରେ କୌଣସି ବ୍ୟାପକ ଆନ୍ଦୋଳନ ସୃଷ୍ଟି ହୋଇ ନଥିଲା । ସନ୍ତ୍ରାସବାଦୀମାନଙ୍କର ବିଫଳ କ୍ରିୟାକଳାପ ଫଳରେ ଏହି ଆନ୍ଦୋଳନ ମଧ୍ୟରେ ଗଭୀର ସଂକଟ ଦେଖା ଦେଇଥିଲା । ବନ୍ଦୀ ଅବସ୍ଥାରେ ଭଗତ ସିଂହ ଓ ଗୁପ୍ତ ସମିତିର ଅନ୍ୟାନ୍ୟ ନେତାମାନେ ସେମାନଙ୍କ ଧାରଣାସମୂହକୁ ପୁନର୍ବିବେଚନା କରିଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଶେଷକୁ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦୃଷ୍ଟିଭଙ୍ଗି ଗ୍ରହଣ କରିଥିଲେ ଏବଂ ଭାରତର କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ଫାଶିକାଠରେ ଆତ୍ମଦାନ କରିବା ପୂର୍ବରୁ ଭଗତ ସିଂହ ଯେଉଁ ଶେଷ ପୁସ୍ତକଟି ପଢ଼ୁଥିଲେ, ସେଟି ଥିଲା ଲେନିନ୍‌ଙ୍କ ଜୀବନୀ । ବ୍ୟକ୍ତିଗତ ସନ୍ତ୍ରାସର ଅନ୍ତର୍ନିହିତ ନୀତିର ଭ୍ରାନ୍ତିକୁ ସ୍ୱୀକାର କଲା ଭଳି ରାଜନୈତିକ ସାହସ ତାଙ୍କର ଥିଲା । ଏବଂ ସେ ଭାରତୀୟ ବିପ୍ଳବୀମାନଙ୍କ ଉଦ୍ଦେଶ୍ୟରେ ଜେଲରୁ ଏକ ଚିଠି ଲେଖିଥିଲେ । ଏହି ଚିଠିରେ ସେ ଶ୍ରମିକ ଶ୍ରେଣୀର ସଂଗ୍ରାମ ସହିତ ସେମାନଙ୍କ ଭାଗ୍ୟକୁ ଯୁକ୍ତ କରିବାକୁ ଆହ୍ୱାନ ଦେଇଥିଲେ ।

ତିରିଶ ଦଶକର ପ୍ରାରମ୍ଭରେ ଜାତୀୟତାବାଦୀ ଆନ୍ଦୋଳନର ଅନ୍ୟତମ ସ୍ୱାଧୀନ ଶକ୍ତି ରୂପେ ସନ୍ତ୍ରାସବାଦୀ ଆନ୍ଦୋଳନ ତା'ର ଗୁରୁତ୍ୱ ଦ୍ରୁତ ହରେଇ ବସିଥିଲା ।

ତା ସତ୍ତ୍ୱେ ବ୍ୟାପକ ସାମ୍ରାଜ୍ୟବାଦବିରୋଧୀ କାର୍ଯ୍ୟକଳାପର ପରିପ୍ରେକ୍ଷୀତରେ ସାରା ଦେଶରେ ବୈପ୍ଳବିକ ମନୋଭାବ ଗଢ଼ି ତୋଳିବା ଦିଗରେ ଆତ୍ମଗୋପନକାରୀ ବିପ୍ଳବୀମାନଙ୍କର ଏହି ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ସହାୟକ ହୋଇଥିଲା ।

## ଦ୍ୱିତୀୟ ଅସହଯୋଗ ଆନ୍ଦୋଳନ । ଆନ୍ଦୋଳନରୁ ଅଭ୍ୟୁତ୍‌ଥାନ

ଦ୍ରୁତ ସାମାଜିକ ଉତ୍ତେଜନା ବୃଦ୍ଧି ଫଳରେ ଦେଶରେ ରାଜନୈତିକ ଗଣ ଆନ୍ଦୋଳନରେ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ଗାନ୍ଧୀ ଏହାକୁ ଔପନିବେଶିକ ସରକାର ଉପରେ ଚରମ ଚାପ ସୃଷ୍ଟି କରିବା ପାଇଁ ସୁବର୍ଣ୍ଣ ମୁହୂର୍ତ୍ତ ବୋଲି ଭାବିଥିଲେ । ଜବାହାରଲାଲ ନେହରୁଙ୍କ ସଭାପତିତ୍ୱରେ ଜାତୀୟ କଂଗ୍ରେସର ଲାହୋର ଅଧିବେଶନ (ଡିସେମ୍ବର, ୧୯୨୯) ଏକ ନୂତନ ଅସହଯୋଗ ଆନ୍ଦୋଳନର ପ୍ରସ୍ତୁତି ପାଇଁ ଆହ୍ୱାନ ଜଣାଇଥିଲା । ପୂର୍ବ ଭଳି ଏଥରକ ମଧ୍ୟ ଗାନ୍ଧୀ ଏହାର ନେତା ଥିଲେ ।

ଦେଶର ତତ୍କାଳୀନ ମୁଖ୍ୟ ପରିସ୍ଥିତି ଓ ଜାତୀୟ ଆନ୍ଦୋଳନ ଅନ୍ତର୍ଗତ ବାମପନ୍ଥୀମାନଙ୍କ ଚାପ ଫଳରେ ଏହି ସମ୍ମିଳନୀ ଜାତୀୟ ସଂଗ୍ରାମର ଶେଷ ଲକ୍ଷ୍ୟ ସଂପର୍କରେ ନୂଆ ଏକ ବ୍ୟାଖ୍ୟା ଉପସ୍ଥାପିତ କରିଥିଲା । କହିବା ବାହୁଲ୍ୟ, ଏହା ଥିଲା ପୂର୍ଣ୍ଣ ସ୍ୱାଧୀନତା ।

ଜାତୀୟ କଂଗ୍ରେସ କର୍ତ୍ତୃକ ଗୃହୀତ ପ୍ରସ୍ତାବ ଅନୁଯାୟୀ ୧୯୩୦, ଜାନୁଆରୀ ୨୬ ତାରିଖଟି ଦେଶରେ ସର୍ବତ୍ର ସ୍ୱାଧୀନତା ଦିବସ ରୂପେ ପାଳିତ ହୋଇଥିଲା । ସଂଗଠକମାନେ ଆଶା କରିଥିଲେ ଯେ, କଂଗ୍ରେସ ଦ୍ୱାରା ଆୟୋଜିତ ଏହି ବିକ୍ଷୋଭରେ ଦେଶପ୍ରେମିକ ଶକ୍ତିସମୂହର ଅଂଶଗ୍ରହଣର ମାତ୍ରା ନୂତନ ଅସହଯୋଗ ଆନ୍ଦୋଳନ ପାଇଁ ଦେଶ କେତେ ପ୍ରସ୍ତୁତ ହୋଇଛି, ତା'ର ସୂଚନା ପ୍ରଦାନ କରିବ ।

ଏହି ବର୍ଷ ମାର୍ଚ୍ଚ ମାସରେ ଗାନ୍ଧୀ ତାଙ୍କ ଦ୍ୱାରା ସଂପାଦିତ "ଇୟଂ ଇଣ୍ଡିଆ" ସଂବାଦପତ୍ରରେ ତାଙ୍କର ବିଖ୍ୟାତ ୧୧ ଦଫା ଦାବି ପ୍ରକାଶ କରିଥିଲେ । ଏହି ଦଫାଗୁଡ଼ିକରେ ବ୍ରିଟିଶ୍‌ମାନଙ୍କ ନିକଟରେ ଭାରତୀୟ ବୁର୍ଜୁଆମାନଙ୍କର ସ୍ୱାର୍ଥାନୁକୂଳରେ ଅର୍ଥନୈତିକ କର୍ମନୀତି ପରିବର୍ତ୍ତନ କରିବା ସମେତ ହିଂସାତ୍ମକ କାର୍ଯ୍ୟକଳାପରେ ଅଭିଯୁକ୍ତ ନହୋଇଥିବା ସମସ୍ତ ରାଜନୈତିକ ବନ୍ଦୀଙ୍କୁ (ଏଥିରୁ ଜଣାଯାଏ, ଯେଉଁସବୁ ସନ୍ତ୍ରାସବାଦୀ ସେତେବେଳେ ଜେଲରେ ଅଶେଷ ଦୁଃଖ ଭୋଗ କରୁଥିଲେ, ଗାନ୍ଧୀ ସେମାନଙ୍କ ସପକ୍ଷରେ ନଥିଲେ) ମୁକ୍ତି ଦେବା ପାଇଁ ଦାବି କରାଯାଇଥିଲା ।

ବଡ଼ଲାଟ୍ ଇରଉଇନ ଏହିସବୁ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଲା ପରେ ଗାନ୍ଧୀ ୧୯୩୦

ମସିହାରେ ଏପ୍ରିଲ ମାସରେ ଏକ ନୂତନ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ଆନ୍ଦୋଳନଟି ଥିଲା ଅନେକାଂଶରେ ବିଂଶ ଦଶକର ପ୍ରାରମ୍ଭରେ ସଂଘଟିତ ଆନ୍ଦୋଳନଟି ଭଳି । ଏଥିରେ ଲୁଣ ତିଆରି କ୍ଷେତ୍ରରେ ରାଷ୍ଟ୍ରୀୟ ଏକଚାଟିଆ ଅଧିକାରକୁ ବାତିଲ କରିବା ପାଇଁ ନୂଆ ଏକ ଦାବି ଅନ୍ତର୍ଭୁକ୍ତ କରାଯାଇଥିଲା । ଫଳରେ ଆନ୍ଦୋଳନର ଧାରାରେ କୌଣସି ମୌଳିକ ପରିବର୍ତ୍ତନ ନଘଟିଲେ ମଧ୍ୟ ତତ୍‌କ୍ଷଣାତ୍ ଦେଶର ଜନସାଧାରଣଙ୍କର ବ୍ୟାପକ ସ୍ତର ମଧ୍ୟରେ ଏହାର ସଂଗଠକମାନଙ୍କର ଜନପ୍ରିୟତା ବିପୁଳ ଭାବେ ବୃଦ୍ଧି ପାଇଥିଲା ।

ଏହି ବର୍ଷ ମାର୍ଚ୍ଚ ମାସରେ ଗାନ୍ଧୀ ତାଙ୍କର ୭୮ଜଣ ଅନୁଗାମୀଙ୍କୁ ଧରି ଗୁଜରାଟ ମଧ୍ୟ ଦେଇ ଏକ ପ୍ରସ୍ତରାଭିଯାନ ଚଳାଇବା ନିମିତ୍ତ ସାବରମତିର କେନ୍ଦ୍ରୀୟ କାର୍ଯ୍ୟାଳୟ – ସତ୍ୟାଗ୍ରହ ଆଶ୍ରମରୁ ଯାତ୍ରାରମ୍ଭ କରିଥିଲେ । ଏହି ପ୍ରସ୍ତରାଭିଯାନ ଚଳାଇ ସେ ଆରବ ସାଗରର ତୀରବର୍ତ୍ତୀ ଦାଣ୍ଡି ନାମକ ଏକ ଛୋଟ ସହର ପର୍ଯ୍ୟନ୍ତ ଚାଲି ଚାଲି ଯାଇଥିଲେ । ସେଠାରେ ସମୁଦ୍ର ଜଳକୁ ନିଆଁରେ ଫୁଟେଇ ଲୁଣ ମାରିବା ଜରିଆରେ ଲୁଣ ମାରିବା ପାଇଁ ସରକାରୀ ନିଷେଧାଜ୍ଞାକୁ ଅମାନ୍ୟ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ଦୁଇ ସପ୍ତାହ ବ୍ୟାପୀ ଏହି ପଦଯାତ୍ରାର ବିଶଦ ସଂବାଦ ଭାରତୀୟ ସଂବାଦପତ୍ରଗୁଡ଼ିକ ପ୍ରକାଶ କରିଥିଲେ ଏବଂ ଏହା ଦ୍ୱାରା ସତ୍ୟାଗ୍ରହ ସଂପର୍କରେ ଧାରଣା ପରିପକ୍ୱ ହୋଇ ଉଠିଥିଲା । ଏହା ପରେ ସାରା ଭାରତରେ ଅସହଯୋଗ ଆନ୍ଦୋଳନ ଦାନାବାନ୍ଧିବାକୁ ଆରମ୍ଭ କରିଥିଲା ଏବଂ ଔପନିବେଶିକମାନେ ଏହା ବିରୁଦ୍ଧରେ ପ୍ରତିଆକ୍ରମଣ ଚଳାଇବାକୁ ସିଦ୍ଧାନ୍ତ ନେଇଥିଲେ ।

ବ୍ରିଟିଶ୍ କର୍ତ୍ତୃପକ୍ଷ ପ୍ରଥମେ ଅସହଯୋଗ ଆନ୍ଦୋଳନ ଓ ଅନ୍ୟାନ୍ୟ ଜାତୀୟ ସଂଗଠନ ସମେତ କଂଗ୍ରେସକୁ ବେଆଇନ୍ ଘୋଷଣା କରି ଦେଲେ ଏବଂ ବ୍ୟାପକ ଗିରଫ୍ ଆରମ୍ଭ ହୋଇଗଲା । ମେ ମାସରେ ଗାନ୍ଧୀ ମଧ୍ୟ ଗିରଫ୍ ହେଲେ । ୧୯୩୦ ମସିହାର ଶେଷ ବେଳକୁ ପ୍ରାୟ ୬୦ ହଜାର କର୍ମୀ ଦଣ୍ଡ ପାଇଥିଲେ ।

ଏହିସବୁ ନିର୍ଯ୍ୟାତନ କିନ୍ତୁ ଆନ୍ଦୋଳନକୁ ଦମନ କରି ପାରି ନଥିଲା । ବସନ୍ତ କାଳରେ ଏହି କାର୍ଯ୍ୟକଳାପ ତୁଙ୍ଗଦେଶରେ ପହଞ୍ଚି ସଶସ୍ତ୍ର ଅଭ୍ୟୁତ୍ଥାନର ରୂପ ପରିଗ୍ରହ କରିଥିଲା ।

ପେଶୱାର, ଚଟ୍ଟଗ୍ରାମ ଓ ଶୋଲାପୁର – ଏହି ତିନୋଟି ସହରରେ ବ୍ୟାପକ ଅଭ୍ୟୁତ୍ଥାନ ଦେଖା ଦେଇଥିଲା । ଏସବୁଥିରେ ସଶସ୍ତ୍ର ଅଭ୍ୟୁତ୍ଥାନ କୌଣସି ଆକସ୍ମିକ ଘଟଣା ନଥିଲା । ବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକରେ ପୂର୍ବୋକ୍ତ ସହରଗୁଡ଼ିକରେ ମୁକ୍ତି ଆନ୍ଦୋଳନ ତା'ର ଶୀର୍ଷଦେଶରେ ପହଞ୍ଚିଥିଲା ଏବଂ ଏହି ସହର ତିନୋଟି ଯଥାକ୍ରମେ ଉତ୍ତର-ପଶ୍ଚିମ ଭାରତ, ବଙ୍ଗଳା ଏବଂ ମହାରାଷ୍ଟ୍ରରେ ଅବସ୍ଥିତ ।

ଏପ୍ରିଲ ମାସରେ ପେଶୱାରରେ ଅସହଯୋଗ ଆନ୍ଦୋଳନର ନେତୃବର୍ଗ ଗିରଫ୍ ହେବା ଫଳରେ ସହରରେ ବ୍ୟାପକ ଗଣ ଅସନ୍ତୋଷ ଦେଖାଦେଲା ଏବଂ ଅବିଳମ୍ବେ ବ୍ୟାରିକେଡ୍ ଧରଣର ଲଢ଼େଇ ଆରମ୍ଭ ହୋଇଗଲା । ସ୍ଥାନୀୟ ପଠାଣ ଗ୍ରାମଗୁଡ଼ିକରୁ କୃଷକମାନେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର କେନ୍ଦ୍ର – ପେଶୱାର ବାସୀମାନଙ୍କ ସାହାଯ୍ୟାର୍ଥେ ଆଗେଇ ଆସିଥିଲେ । ସହରର ବ୍ୟବସାୟ ବାଣିଜ୍ୟ କାରବାର ବନ୍ଦ ହୋଇ ଯାଇଥିଲା । ବ୍ରିଟିଶ୍‌ମାନେ ସ୍ଥାନୀୟ ଦୁର୍ଗରେ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ ।

ଏହି ସମୟରେ ଗାଢ୍ୱୋୟାଲ ସୈନ୍ୟଦଳଟି ବିଦ୍ରୋହୀମାନଙ୍କ ସହିତ ସଂହତି ପ୍ରକାଶ କରି ସେମାନଙ୍କୁ ଗୁଳି ନକରିବାରୁ ପରିସ୍ଥିତି ଜଟିଳ ଆକାର ଧାରଣ କରିଥିଲା । ସ୍ଥାନୀୟ ସୈନ୍ୟବାହିନୀର ବ୍ରିଟିଶ୍ ସେନାପତିମାନେ ଭାରତୀୟ ସୈନ୍ୟମାନଙ୍କୁ ନିରସ୍ତ୍ର କରି ଦୁଇ ସପ୍ତାହ ପାଇଁ ସହର ବାହାରକୁ ପଠାଇ ଦେଇ ସହରବାସୀମାନଙ୍କ ସହିତ ଏମାନଙ୍କର ଯୋଗଦାନର ସମ୍ଭାବନାକୁ ଏଡ଼ାଇଥିଲେ ।

ପଠାଣ ଉପଜାତିର (ମହ୍ମାନ୍ଦ ଏବଂ ଆଫ୍ରିଦି) ବିଦ୍ରୋହୀ ଦଳ ପେଶୱାରକୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ । କିନ୍ତୁ କଂଗ୍ରେସ ନେତାମାନେ ଏଥିରେ ହସ୍ତକ୍ଷେପ କରିଥିଲେ ଏବଂ ସେମାନଙ୍କୁ ହିଂସାଚରଣରୁ ବିରତ ରହିବା ପାଇଁ ଅନୁରୋଧ ଜଣାଇବା ଫଳରେ ସେମାନେ ନିଜର ପାର୍ବତ୍ୟ ଗ୍ରାମକୁ ଫେରି ଯାଇଥିଲେ । ମେ ୪ ତାରିଖରେ ବ୍ରିଟିଶ୍ ସୈନ୍ୟମାନେ ପେଶୱାରରେ ପ୍ରବେଶ କରିଲେ ମଧ୍ୟ ଏହି ମାସର ମଝାମଝି ବେଳକୁ ସେମାନଙ୍କ ପକ୍ଷରେ ସହରଟିକୁ ପୂରା ନିୟନ୍ତ୍ରଣ କରିବା ସମ୍ଭବ ହୋଇ ନଥିଲା ।

ପେଶୱାର ଅଭ୍ୟୁତ୍‌ଥାନ ଥିଲା ପଠାଣ କୃଷକମାନଙ୍କ ପକ୍ଷରେ ବ୍ୟାପକ ବ୍ରିଟିଶ୍‌ବିରୋଧୀ ଆନ୍ଦୋଳନରେ ଅଂଶଗ୍ରହଣ କରିବାର ସୂଚନା ସ୍ୱରୂପ । ସେତେବେଳେ ଲାଲକୁର୍ତ୍ତା ବାହିନୀର ବିଭିନ୍ନ ଦଳଗୁଡ଼ିକୁ ଐକ୍ୟବଦ୍ଧ କରିବା ଦ୍ୱାରା ସ୍ୱାଧୀନ "ପୁଶ୍‌ତୁ ଜିର୍ଗା" ("ଆଫ୍‌ଗାନ ପରିଷଦ") ସଂଗଠିତ ହୋଇଥିଲା । ପଠାଣ ବିଦ୍ରୋହୀମାନଙ୍କର ନେତା ଥିଲେ ଗାନ୍ଧୀଙ୍କ ଅନୁଗାମୀ ଆବ୍‌ଦୁଲ ଗଫ୍‌ଫର ଖାଁ ।

୧୯୩୦ ଖ୍ରୀଷ୍ଟାବ୍ଦର ଶେଷ ଆଡ଼କୁ ସମଗ୍ର ସୀମାନ୍ତ ପ୍ରଦେଶରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ଆଫ୍ରିଦି ଓ ମହ୍ମାନ୍ଦ ଉପଜାତିଗୁଡ଼ିକର ଦାବି ସମର୍ଥନକାରୀ ଲାଲକୁର୍ତ୍ତା ବାହିନୀ ଏହି ଅଞ୍ଚଳରେ ଦକ୍ଷତାର ସହିତ ଗରିଲା ଯୁଦ୍ଧ ଆରମ୍ଭ କରି ଦେଲେ ଇଂରେଜ-ଭାରତୀୟ ସୈନ୍ୟମାନଙ୍କର ପ୍ରଧାନ ଅଂଶଟିକୁ ଏଠାକୁ ଅଣାଯାଇଥିଲା । ପରବର୍ତ୍ତୀ ସଂଗ୍ରାମ ଅବ୍ୟାହତ ରହିଥିଲା ଏବଂ ଲାଲକୁର୍ତ୍ତାଙ୍କ ସଂଖ୍ୟା ବର୍ଷକ ମଧ୍ୟରେ ୮୦ ହଜାରରୁ ୩ ଲକ୍ଷକୁ ବୃଦ୍ଧି ପାଇଥିଲା ।

ପେଶୱାର ଘଟଣାର ପ୍ରାୟ ସମସାମୟିକ ଭାବେ ଦେଶର ପୂର୍ବସୀମାନ୍ତର ଚଟ୍ଟଗ୍ରାମରେ ଏକ ଅଭ୍ୟୁତ୍‌ଥାନ ଘଟିଥିଲା । ପେଶୱାର ଅଭ୍ୟୁତ୍‌ଥାନ ସହିତ ଏହାର ବ୍ୟତିକ୍ରମ ହେଲା ଯେ, ଏହା ଥିଲା ପୂର୍ବ ପରିକଳ୍ପିତ ।

ସୂର୍ଯ୍ୟ ସେନ ଓ ଅମ୍ବିକା ଚକ୍ରବର୍ତ୍ତୀଙ୍କ ନେତୃତ୍ୱରେ ସ୍ଥାନୀୟ ଗୁପ୍ତ ସମିତି, "ଚଟ୍ଟଗ୍ରାମ ରିପବ୍ଲିକାନ୍ ଆର୍ମି" ଏହି ଅଭ୍ୟୁତ୍‌ଥାନ ପରିଚାଳନା କରିଥିଲେ ।

ଲାହୋର ସନ୍ତ୍ରାସବାଦୀ ଗୋଷ୍ଠୀର ଦୁଃଖଜନକ ଅଭିଜ୍ଞତାର ପରିପ୍ରେକ୍ଷିତରେ ସେନ ଓ ଚକ୍ରବର୍ତ୍ତୀ ଦେଶପ୍ରେମିକ ଯୁବକମାନଙ୍କୁ ନେଇ ଏକ ସଶସ୍ତ୍ର ବାହିନୀ ଗଠନ କରିଥିଲେ । ଅସ୍ତ୍ରାଗାର, ବ୍ୟାରକ, ରେଳ ଷ୍ଟେସନ ଉପରେ ଆକ୍ରମଣ କରି ଏପ୍ରିଲ ୧୮ ତାରିଖରେ ଅଭ୍ୟୁତ୍‌ଥାନ ଆରମ୍ଭ ହୋଇଥିଲା । ସହରଟି ୧୦ ଦିନ ପର୍ଯ୍ୟନ୍ତ ଥିଲା ବିଦ୍ରୋହୀମାନଙ୍କ ଦଖଲରେ । ବ୍ରିଟିଶ୍‌ମାନେ ଚଟ୍ଟଗ୍ରାମ ବନ୍ଦରରେ ସେମାନଙ୍କ ସୈନ୍ୟମାନଙ୍କୁ ଏକତ୍ରିତ କଲା ପରେ କଲିକତା ସହିତ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ ଏବଂ ସେଠାରୁ ସୈନ୍ୟ ସାହାଯ୍ୟ ପାଇଥିଲେ । ସେତେବେଳେ ସାମରିକ ଶୃଙ୍ଖଳାର ସହିତ ବିଦ୍ରୋହୀମାନେ ସହର ପରିତ୍ୟାଗ କରି ସହରତଳିର ପାହାଡ଼ରେ ଘାଟି ତିଆରି କରିଥିଲେ । ସେମାନଙ୍କ ଶକ୍ତି ଅସମ ହେଲେ ମଧ୍ୟ ଅଭ୍ୟୁତ୍‌ଥାନ ଦମନ ହେଲା ପର୍ଯ୍ୟନ୍ତ ସେମାନେ ସେଠାରୁ ଆତ୍ମରକ୍ଷାମୂଳକ ଯୁଦ୍ଧ ଚଳେଇ ଯାଇଥିଲେ ।

ଏହିସବୁ ଅଭ୍ୟୁତ୍‌ଥାନ ମଧ୍ୟରୁ ତୃତୀୟଟି ଘଟିଥିଲା ଶୋଲାପୁରରେ । ସେଠାରେ ମେ ମାସ ୮ ତାରିଖରେ ପୁଲିସ୍ ଅତ୍ୟାଚାର ଫଳରେ ଲଢ଼େଇ ଆରମ୍ଭ ହୋଇ ଯାଇଥିଲା ଏବଂ ଅଚିରେ ଏହା ବ୍ୟାପକ ଅଭ୍ୟୁତ୍‌ଥାନର ରୂପ ପରିଗ୍ରହ କରିଥିଲା । ବିଦ୍ରୋହୀମାନେ ଔପନିବେଶିକ ପ୍ରଶାସନ କାର୍ଯ୍ୟାଳୟରେ ଅଗ୍ନି ସଂଯୋଗ କରି ଦେଇଥିଲେ ଏବଂ ବ୍ରିଟିଶ୍ କର୍ମଚାରୀମାନେ ସ୍ଥାନୀୟ ରେଳ ଷ୍ଟେସନରେ ଆଶ୍ରୟ ନେଲେ, ସେଟିକୁ ଘେରଉ କଲେ । କେଇ ଦିନ ପର୍ଯ୍ୟନ୍ତ ପଥଯୁଦ୍ଧ ଚାଲିଥିଲା । ଅଚିରେ ସହରଟି ଆସି ଯାଇଥିଲା ବିପ୍ଳବୀ ପରିଷଦର (ସୋଭିଏତ୍) ନିୟନ୍ତ୍ରଣକୁ । ମେ ମାସ ୧୬ ତାରିଖ ଦିନ ଅଭ୍ୟୁତ୍‌ଥାନର ନେତାମାନେ ଗିରଫ୍ ହେଲା ପରେ ଯାଇ ଅଭ୍ୟୁତ୍‌ଥାନକୁ ଦମନ କରାଯାଇଥିଲା ।

ପେଶଓ୍ୱାର ଓ ଚଟ୍ଟଗ୍ରାମ ସହିତ ଏଠାକାର ଅଭ୍ୟୁତ୍‌ଥାନର ବ୍ୟତିକ୍ରମିକ ବୈଶିଷ୍ଟ୍ୟଟିକୁ ଲକ୍ଷ୍ୟ କରିବାର କଥା । ପୂର୍ବୋକ୍ତ କ୍ଷେତ୍ର ଦୁଇଟିରେ ଅଭ୍ୟୁତ୍‌ଥାନର ମୂଳ ଅଂଶଗ୍ରହଣକାରୀ ଥିଲେ ପେଟି-ବୁର୍ଜୁଆ ଯୁବକମାନେ, କିନ୍ତୁ ଶୋଲାପୁର ଅଭ୍ୟୁତ୍‌ଥାନକୁ ନେତୃତ୍ୱ ଦେଇଥିଲେ ଶ୍ରମିକ ଶ୍ରେଣୀ ।

ଏହିସବୁ ଅଭ୍ୟୁତ୍‌ଥାନକୁ ଦମନ କରାଗଲେ ମଧ୍ୟ (ସ୍ଥାନୀୟ ଓ ସ୍ୱତଃସ୍ଫୂର୍ତ୍ତ ବୈଶିଷ୍ଟ୍ୟର ଫଳ ହିସାବରେ ଏବଂ ବ୍ରିଟିଶ୍ ସୈନ୍ୟବାହିନୀର ସଂଖ୍ୟାଧିକ୍ୟ ପାଇଁ) ଜନସାଧାରଣଙ୍କ ବୈପ୍ଳବିକ ଉଦ୍ଦୀପନାର ଉନ୍ମେଷ ଘଟେଇ ଏସବୁ ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତିକୁ ଯଥେଷ୍ଟ ପ୍ରଭାବିତ କରିଥିଲା ।

୧୯୩୦-୧୯୩୧ ଖ୍ରୀଷ୍ଟାବ୍ଦରେ ବମ୍ବେ, କଲିକତା, ମାଡ୍ରାଜ, ଦିଲ୍ଲୀ ଓ କରାଚି ପ୍ରଭୃତି ବଡ଼ ବଡ଼ ସହରରେ ବହୁ ରାଜନୈତିକ ଧର୍ମଘଟ ସଂଗଠିତ ହୋଇଥିଲା ।

ଏହା ପରେ ବୈପ୍ଳବିକ ଆନ୍ଦୋଳନ ଗ୍ରାମଗ୍ରାମାନ୍ତରକୁ ଓ ଦେଶୀୟ ରାଜ୍ୟଗୁଡ଼ିକୁ ବ୍ୟାପୀ ଯାଇଥିଲା ।

## କୃଷକ ଆନ୍ଦୋଳନ । ଦେଶୀୟ ରାଜ୍ୟଗୁଡ଼ିକରେ ଅଭ୍ୟୁତ୍‌ଥାନ

ବରଦୋଲି ସତ୍ୟାଗ୍ରହ ଥିଲା ଗ୍ରାମାଞ୍ଚଳରେ ଜାତୀୟ କଂଗ୍ରେସର ପରବର୍ତ୍ତୀ କାର୍ଯ୍ୟକଳାପ ପରିଚାଳନାର ଶୁଭାରମ୍ଭ ସ୍ୱରୂପ । ୧୯୨୯ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ସଂଗଠନଗୁଡ଼ିକ ଅନେକ ଅଞ୍ଚଳରେ, ବିଶେଷତଃ ଯୁକ୍ତ ପ୍ରଦେଶରେ, କୃଷକ ସମିତି ଗଠନ ଆରମ୍ଭ କରିଥିଲେ । କୃଷକମାନଙ୍କୁ ଆଇନ୍ ଅମାନ୍ୟ ଆନ୍ଦୋଳନ ମଧ୍ୟକୁ ଟାଣି ଆଣିବା ଥିଲା ସେସବୁର ମୂଳ ଲକ୍ଷ୍ୟ । ସଂଗଠକମାନେ କୃଷକମାନଙ୍କ ସଂଗ୍ରାମକୁ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନ ମଧ୍ୟରେ ସୀମିତ ରଖିବାକୁ ଚାହୁଁଥିଲେ । ଶ୍ରେଣୀ ସଂଗ୍ରାମ ଠାରୁ ଏବଂ ଗ୍ରାମର ସାମନ୍ତ ଭୂସ୍ୱାମୀମାନଙ୍କ ବିରୋଧିତା କରିବାରୁ କୃଷକମାନଙ୍କୁ ବିରତ ରଖିବାକୁ ଚେଷ୍ଟା କରୁଥିଲେ ।

ଅଯୋଧ୍ୟାରେ ଜାତୀୟ କଂଗ୍ରେସ ବିରାଟ ସାଫଲ୍ୟ ଅର୍ଜନ କରିଥିଲା । ସେଠାରେ ଜବାହାରଲାଲ ନେହରୁଙ୍କ ନେତୃତ୍ୱରେ ସରକାରକୁ ପ୍ରଦେୟ ଜମିଦାରମାନଙ୍କ ଭୂମିରାଜସ୍ୱ ଓ ଭୂମିକର କମାଇବା ଆନ୍ଦୋଳନ ସଫଳ ହୋଇଥିଲା ।

କିନ୍ତୁ ଯୁକ୍ତ ପ୍ରଦେଶରେ ସକ୍ରିୟ କଂଗ୍ରେସ କର୍ମୀମାନଙ୍କ ଭଳି ସେଠାରେ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନେ ମଧ୍ୟ କୃଷକମାନଙ୍କ ମଧ୍ୟରେ କାର୍ଯ୍ୟାରମ୍ଭ କରିଥିଲେ ।

୧୯୩୧-୧୯୩୩ ଖ୍ରୀଷ୍ଟାବ୍ଦରେ ଯୁକ୍ତ ପ୍ରଦେଶ, ପଞ୍ଜାବ, ବିହାର, ବଙ୍ଗଳା, କର୍ଣ୍ଣାଟକ ଓ ଆନ୍ଧ୍ର କୃଷକ ସଭାର ନେତୃତ୍ୱରେ ସଂଗଠିତ କୃଷକ ଆନ୍ଦୋଳନ ମୂଳତଃ ପ୍ରସ୍ତରାଭିଯାନର ରୂପ ଲାଭ କରିଥିଲା । ଏହା ମାଧ୍ୟମରେ ସ୍ଥାନୀୟ ଜନସାଧାରଣଙ୍କୁ ଖଜଣା ନଦେବା ପାଇଁ ଆହ୍ୱାନ ଦିଆଯାଉଥିଲା । ଯୁକ୍ତ ପ୍ରଦେଶରେ ସବୁଠାରୁ ଶକ୍ତିଶାଳୀ କୃଷକ ଆନ୍ଦୋଳନ ଗଢ଼ି ଉଠିଥିଲା । ସେଠାରେ, ବିଶେଷତଃ ଏଲାହାବାଦ ଜିଲ୍ଲାର ଗ୍ରାମାଞ୍ଚଳରେ ଅସହଯୋଗ ଆନ୍ଦୋଳନ କୃଷକମାନଙ୍କର ସଶସ୍ତ୍ର ଅଭ୍ୟୁତ୍‌ଥାନ ସ୍ତରକୁ ଉନ୍ନୀତ ହୋଇଥିଲା ।

ପ୍ରଥମ ପର୍ଯ୍ୟାୟ ଅପେକ୍ଷା ୧୯୨୯-୧୯୩୩ ଖ୍ରୀଷ୍ଟାବ୍ଦ ମଧ୍ୟରେ କୃଷକ ଆନ୍ଦୋଳନ ଅଧିକ ସଂଗଠିତ ହୋଇ ଉଠିଥିଲା । ଅଧିକାଂଶ ପ୍ରଦେଶରେ ସେତେବେଳେ ସ୍ଥାନୀୟ କୃଷକ ସମିତି ଗଠିତ ହୋଇଥିଲା ଏବଂ ଏସବୁଥିରେ ପ୍ରଧାନତଃ କୃଷକମାନଙ୍କର ଧନିକ ଓ ମଧ୍ୟ ସ୍ତରଟି ଯୋଗ ଦେଇଥିଲେ । ଅନେକ ଜିଲ୍ଲାରେ, ବିଶେଷତଃ ଯୁକ୍ତ ପ୍ରଦେଶ ଓ ବିହାରର ବିଭିନ୍ନ ଏଲାକାରେ, କୃଷକ ସମିତିଗୁଡ଼ିକ ପ୍ରଧାନତଃ କମ୍ୟୁନିଷ୍ଟ ଓ ପେଟି-ବୁର୍ଜୁଆ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ନେତୃତ୍ୱାଧୀନ ଥିଲା । ଏହି ଭାବେ ସେମାନେ କୃଷକ ଆନ୍ଦୋଳନର ନେତୃତ୍ୱ ଲାଭ ପାଇଁ କଂଗ୍ରେସର ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିଥିଲେ ।

ବ୍ରିଟିଶ୍ ଭାରତରେ ଜାତୀୟ-ମୁକ୍ତି ଆନ୍ଦୋଳନର ବିକାଶ ଦେଶୀୟ ରାଜ୍ୟଗୁଡ଼ିକର ଆଭ୍ୟନ୍ତରୀଣ ପରିସ୍ଥିତିକୁ ପ୍ରଭାବିତ କରିଥିଲା । ୧୯୩୧-୧୯୩୩ ଖ୍ରୀଷ୍ଟାବ୍ଦରେ ଏହିସବୁ ରାଜ୍ୟ ମଧ୍ୟରୁ କେତେକରେ ସଂଗଠିତ ମୁକ୍ତି ଆନ୍ଦୋଳନ ଶେଷକୁ ସଶସ୍ତ୍ର ଅଭ୍ୟୁତ୍‌ଥାନର ରୂପ ଲାଭ କରିଥିଲା ।

କାଶ୍ମୀରର ଘଟଣାବଳୀ ବିଶେଷ ଭାବେ ଗୁରୁତର ହୋଇ ଉଠିଥିଲା । ଏହି ରାଜ୍ୟର ପ୍ରଜାମାନଙ୍କ ମଧ୍ୟରୁ ଅଧିକାଂଶ ମୁସଲମାନ ହେଲେ ମଧ୍ୟ ସେଠାକାର କ୍ଷମତା କେନ୍ଦ୍ରୀଭୂତ ଥିଲା ସେଠାକାର ରାଜପୁତ ଜାତିର ରାଜା ଏବଂ ତାଙ୍କର ଅନୁଚରମାନଙ୍କ ହାତରେ । ଜାତୀୟତା ଦିଗରୁ ସେମାନେ ଥିଲେ ଡୋଗ୍ରା ଏବଂ ଧର୍ମରେ ହିନ୍ଦୁ । କାଶ୍ମୀରରେ ସାମନ୍ତବାଦୀ ନିର୍ଯ୍ୟାତନକୁ ସେଠାରେ ଅନୁସୃତ ଧର୍ମୀୟ, ଜାତିଗତ ଓ ବର୍ଣ୍ଣଗତ ବୈଷମ୍ୟ ଦ୍ୱାରା ଅତୀବ ତିକ୍ତ କରି ଦିଆଯାଇଥିଲା । ବ୍ରିଟିଶ୍ ଔପନିବେଶିକ ସରକାରର ପ୍ରତିନିଧି ହିସାବରେ ସେଠାକାର ବ୍ରିଟିଶ୍ ପ୍ରତିନିଧି କାଶ୍ମୀରର ରାଜାଙ୍କ ଚୂଡ଼ାନ୍ତ କ୍ଷମତା ଏବଂ ଡୋଗ୍ରା ସାମନ୍ତ ଭୂସ୍ୱାମୀମାନଙ୍କ ସ୍ୱେଚ୍ଛାଚାରିତାକୁ ଉତ୍ସାହ ଯୋଗାଉଥିଲେ ।

ଫଳରେ କୃଷକ ଓ କାରିଗରମାନଙ୍କର ବ୍ୟାପକ ସ୍ତର ସାମନ୍ତ ଶାସକ ଚକ୍ର ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ ଏବଂ କାଶ୍ମୀରୀ ବୁର୍ଜୁଆ ଓ ବୁଦ୍ଧିଜୀବୀମାନେ ମଧ୍ୟ ସେମାନଙ୍କ ସହିତ ଯୋଗ ଦେଇଥିଲେ ।

୧୯୩୧ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ କାଶ୍ମୀରରେ କୃଷକମାନଙ୍କ ସାମନ୍ତବିରୋଧୀ ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ ଆରମ୍ଭ ହୋଇଥିଲା । କୃଷକମାନେ ସୈନ୍ୟଦଳ ଗଢ଼ି ତୋଳିଥିଲେ ଏବଂ ରାଜ୍ୟର ରାଜଧାନୀ ଶ୍ରୀନଗରକୁ ଅବରୋଧ କରିଥିଲେ । ଏଥି ସାଥେ ସାଥେ ଖୋଦ୍ ସହରରେ କାରିଗର ଓ ବ୍ୟବସାୟୀମାନଙ୍କର ସରକାରବିରୋଧୀ ଆନ୍ଦୋଳନ ଦେଖା ଦେଇଥିଲା ।

ବ୍ୟବସାୟୀ ଏବଂ କ୍ଷୁଦ୍ର ଶିଳ୍ପ ସଂସ୍ଥାର ମାଲିକମାନଙ୍କୁ ନେଇ ଗଠିତ ସ୍ଥାନୀୟ ଜାତୀୟ ବୁର୍ଜୁଆମାନେ ଜନସାଧାରଣଙ୍କୁ ସଚେତନ କରିବା ଉଦ୍ଦେଶ୍ୟରେ ରିଡର୍ସ ପାର୍ଟି ନାମରେ ଏକ ଶିକ୍ଷାଦାୟୀ ସଂଗଠନ ପ୍ରତିଷ୍ଠା କରିଥିଲେ । ସେଇ ବର୍ଷ ଅଗଷ୍ଟ ମାସରେ ଏହି ପାର୍ଟି

ଜାତିଗତ ଓ ଧର୍ମୀୟ କାରଣରୁ ଅନୁସୃତ ଯାବତୀୟ ବୈଷମ୍ୟର ବିଲୋପ ଏବଂ କେତେକ ବୁର୍ଜୁଆ-ଗଣତାନ୍ତ୍ରିକ ଅଧିକାର ପ୍ରବର୍ତ୍ତନର ଦାବି ଜଣେଇ ଏକ ଇସ୍ତାହାର ପ୍ରକାଶ କରିଥିଲେ ।

ବ୍ରିଟିଶ୍‌ମାନେ କାଶ୍ମୀରକୁ ସୈନ୍ୟବାହିନୀ ପଠାଇଥିଲେ ଏବଂ ହିନ୍ଦୁ ମୁସଲମାନ ଦଙ୍ଗା ଲଗାଇ ଦେବାକୁ ସକ୍ଷମ ହୋଇଥିଲେ । କାଶ୍ମୀରରେ ଏହି ଦୁଇ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ସଂଘାତ ଫଳରେ ସମଗ୍ର ଭାରତରେ ହିନ୍ଦୁ ମୁସଲିମ୍ ସଂପର୍କ ଉପରେ ବିରୂପ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ।

କିନ୍ତୁ ବ୍ରିଟିଶ୍‌ମାନେ ସଂପୂର୍ଣ୍ଣ ରୂପେ କୃଷକ ଆନ୍ଦୋଳନକୁ ଦମନ କରି ପାରି ନଥିଲେ । ସେମାନେ ବାଧ୍ୟ ହୋଇ ପରିସ୍ଥିତି ତଦନ୍ତ କରିବା ପାଇଁ ଏକ ବିଶେଷ କମିସନ ଗଠନ କରିଥିଲେ । କମିସନ ରାଜ୍ୟ ପ୍ରଶାସକମାନଙ୍କ ନିକଟରେ ରିଡର୍ସ ପାର୍ଟିର ଯାବତୀୟ ଦାବି ମଞ୍ଜୁର କରିବାକୁ ସୁପାରିସ୍ ଜଣାଇଥିଲା ।

କମିସନର ସୁପାରିସ୍‌ଗୁଡ଼ିକୁ ବାସ୍ତବାୟିତ କରିବାକୁ କାଶ୍ମୀରର ମହାରାଜା ଅସ୍ୱୀକାର କରିବାରୁ ୧୯୩୨ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ପରିସ୍ଥିତି ପୁଣି ସାଙ୍ଘାତିକ ହୋଇ ଉଠିଥିଲା । ଏହା ପରେ ରିଡର୍ସ ପାର୍ଟିକୁ ଭିତ୍ତି କରି ଏବଂ ଏହା ତୁଳନାରେ ଅଧିକ ଗଣତାନ୍ତ୍ରିକ ଏକ ସଂସ୍ଥା, "ଜାମ୍ମୁ ଓ କାଶ୍ମୀର ରାଜନୈତିକ ସମ୍ମିଳନୀ" ପ୍ରତିଷ୍ଠିତ ହେଲା । ପୂର୍ବତନ ଦାବିଗୁଡ଼ିକ ସହିତ ମହାରାଜାଙ୍କର ସାର୍ବଭୌମ କ୍ଷମତା ହ୍ରାସ, ଭୂମିରାଜସ୍ୱ ହ୍ରାସ ଓ ବାକିଆ କର ବାତିଲ ଆଦି ଅନେକ ନୂତନ ଦାବି ସମେତ ଏକ କର୍ମସୂଚୀ ସମ୍ମେଳନ ପ୍ରକାଶ କରିଥିଲା ।

ସ୍ଥାନୀୟ ଜନସାଧାରଣଙ୍କୁ କର ନଦେବା ପାଇଁ ଆହ୍ୱାନ ଜଣେଇ ସମ୍ମିଳନୀ ତା'ର ପ୍ରଚାରାଭିଯାନ ଆରମ୍ଭ କଲା । କିନ୍ତୁ ବ୍ରିଟିଶ୍ ସୈନ୍ୟମାନଙ୍କ ସାହାଯ୍ୟରେ ୧୯୩୨ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଏହି ଆନ୍ଦୋଳନଟିକୁ ଦମନ କରି ଦିଆଯାଇଥିଲା । ୧୯୩୪ ଖ୍ରୀଷ୍ଟାବ୍ଦରେ ରାଜା ଆଇନ୍ ସଭା ଆହ୍ୱାନ କରିଥିଲେ ଏବଂ ସ୍ଥାନୀୟ ବୁର୍ଜୁଆମାନଙ୍କ ମଧ୍ୟରୁ କେତେକ ସୁବିଧା ଦେବାକୁ ବାଧ୍ୟ ହୋଇଥିଲେ ।

୧୯୩୨ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ବେଳକୁ ରାଜପୁତାନାର ଆଲୱାର ରାଜ୍ୟରେ ଏକ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ସେଠାରେ କାଶ୍ମୀର ଭଳି ସାମନ୍ତବିରୋଧୀ ସଂଗ୍ରାମ ଧର୍ମୀୟ ଓ ସାଂପ୍ରଦାୟିକ ରୂପ ଲାଭ କରିଥିଲା । ରାଜ୍ୟର ରାଜା, ଜମିମାଲିକ ଓ ରାଜ୍ୟର ଦକ୍ଷିଣାଂଶର କୃଷକମାନେ ଥିଲେ ହିନ୍ଦୁ, ଏବଂ ଉତ୍ତର ଆଲୱାରର କୃଷକମାନେ ଥିଲେ ମୁସଲମାନ । ଶେଷୋକ୍ତମାନେ କେବଳ ସାମନ୍ତବାଦୀ ଶୋଷଣ ନୁହେଁ, ଧର୍ମୀୟ କାରଣରୁ ବୈଷମ୍ୟମୂଳକ ଆଚରଣର ବିଲୋପ ପାଇଁ ଦାବି ଜଣାଉଥିଲେ । ମୁସଲମାନ ବୁଦ୍ଧିଜୀବୀ ଓ ଛୋଟ ଛୋଟ ମୁସଲମାନ ସାମନ୍ତ ଭୂସ୍ୱାମୀମାନେ ଏହାକୁ ସମର୍ଥନ ଦେଇଥିଲେ ଏବଂ ସେମାନେ ଆନ୍ଦୋଳନଟିକୁ ଧର୍ମୀୟ ଚରିତ୍ର ଦେବାକୁ ସଫଳ ହୋଇଥିଲେ ।

୧୯୩୨ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ କୃଷକମାନେ ୩୦ ହଜାର ସୈନ୍ୟ ବିଶିଷ୍ଟ ଏକ ବାହିନୀ ଗଢ଼ି ତୋଳିଥିଲେ । ଉତ୍ତରାଞ୍ଚଳର କେତେକ ସହର ଦଖଲ କଲା ପରେ ସେମାନେ ଆଲୱାର ସହର ଆଡ଼କୁ ଅଗ୍ରସର ହୋଇଥିଲେ । କ୍ରମଶଃ କୃଷକ ଆନ୍ଦୋଳନଟିରେ ନିଜ ଶ୍ରେଣୀ ସ୍ୱାର୍ଥ ରକ୍ଷାର ଦୃଢ଼ତା ସ୍ପଷ୍ଟ ହୋଇ ଉଠିଥିଲା । ବିଦ୍ରୋହୀମାନେ ମୁସଲମାନ ସାମନ୍ତ ଭୂସ୍ୱାମୀମାନଙ୍କ ଉପରେ ମଧ୍ୟ ଚଢ଼ଉ ଆରମ୍ଭ କରିଥିଲେ । ଏଭଳି ଅବସ୍ଥାରେ ମୁସଲିମ୍ ଲୀଗ୍ "ଆଲୱାର ମୁସଲମାନମାନଙ୍କୁ ରକ୍ଷା କରିବା ପାଇଁ" ସେଠାକୁ ବ୍ରିଟିଶ୍ ସୈନ୍ୟମାନଙ୍କୁ ପଠାଇବାକୁ ଦାବି କରିଥିଲା । ହିନ୍ଦୁ ମହାସଭା ମଧ୍ୟ

ବ୍ରିଟିଶ୍ ହସ୍ତକ୍ଷେପର ପକ୍ଷପାତୀ ଥିଲା । ତେବେ, ତାହା "ସେଇ ରାଜ୍ୟର ହିନ୍ଦୁମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ" । ଏହାର ଉଦ୍ୟୋଗରେ ସାରା ଦେଶରେ ଉଦ୍‌ଯାପିତ "ଆଲୋୟାର ଦିବସ" ଏହି ଦୁଇ ପ୍ରଧାନ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ତିକ୍ତତାକୁ ଆଉରି ବଢ଼େଇ ଦେଇଥିଲା ।

ବିଦ୍ରୋହୀମାନଙ୍କର ବୀରତ୍ୱପୂର୍ଣ୍ଣ ପ୍ରତିରୋଧ ସତ୍ତ୍ୱେ ୧୯୩୩ ଖ୍ରୀଷ୍ଟାବ୍ଦ ଶେଷରେ ସେମାନଙ୍କର ପରାଜୟ ଘଟିଥିଲା ।

ପୂର୍ବତ୍ତ ଉପଜାତି ଅଧ୍ୟୁଷିତ ପୁଇରା ଓ ଦିର୍ ରାଜ୍ୟରେ ମଧ୍ୟ ୧୯୩୨-୧୯୩୩ ଖ୍ରୀଷ୍ଟାବ୍ଦରେ ସାମନ୍ତବିରୋଧୀ ଆନ୍ଦୋଳନ ଦେଖା ଦେଇଥିଲା ।

ଦେଶୀୟ ରାଜ୍ୟଗୁଡ଼ିକରେ ସଂଘଟିତ ଏହିସବୁ ଅଭ୍ୟୁତ୍‌ଥାନ ଥିଲା ସମଗ୍ର ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନ ବିସ୍ତାରର ପ୍ରତ୍ୟକ୍ଷ ଫଳ ।

## ବ୍ରିଟିଶ୍ ନୀତି ଏବଂ କଂଗ୍ରେସର ଅନୁସୃତ ଅବସ୍ଥାନରେ ପରିବର୍ତ୍ତନ

ଜାତୀୟ ଆନ୍ଦୋଳନକୁ ପ୍ରତ୍ୟକ୍ଷ ଭାବେ ଦମନ କରିବା ଛଡ଼ା ବ୍ରିଟିଶ୍ ଔପନିବେଶିକମାନେ ସେମାନଙ୍କ ବିରୋଧୀମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବା ପାଇଁ ରାଜନୈତିକ କୌଶଳ ମଧ୍ୟ ପ୍ରୟୋଗ କରୁଥିଲେ ।

୧୯୩୦ ଖ୍ରୀଷ୍ଟାବ୍ଦ, ଜୁନ୍ ମାସରେ ଭାରତର ଭାବୀ ସଂବିଧାନର ଏକ ରୂପରେଖା ସୁପାରିସ୍ କରିବା ସଙ୍ଗେ ସଙ୍ଗେ ସାଇମନ୍ କମିସନ୍‌ଙ୍କ ରିପୋର୍ଟଟି ପ୍ରକାଶ ପାଇଲା । ଏଥିରେ ଭାରତୀୟ ଜାତୀୟ ଆନ୍ଦୋଳନ ଦ୍ୱାରା ଉତ୍‌ଥାପିତ ଦାବିଗୁଡ଼ିକର କୌଣସି ସ୍ଥାନ ନଥିଲା । ପକ୍ଷାନ୍ତରେ, ବଡ଼ଲାଟ୍‌ଙ୍କ କ୍ଷମତା ପୂରାପୂରି ଅକ୍ଷୁଣ୍ଣ ରହି ଯାଇଥିଲା । ନିର୍ବାଚନୀ ଏଲକାର ଭୋଟଦାତାମାନଙ୍କୁ ଆଉରି ଭାଗଭାଗ କରି ଅସ୍ପୃଶ୍ୟମାନଙ୍କ ପାଇଁ ପୃଥକ୍ ନିର୍ବାଚନ ବ୍ୟବସ୍ଥା କରାଯାଇଥିଲା । କେନ୍ଦ୍ରୀୟ ଆଇନ୍ ସଭାରେ ରାଜନ୍ୟବର୍ଗଙ୍କ ପ୍ରତିନିଧିମାନଙ୍କ ପ୍ରଭାବକୁ ଆଉରି ବୃଦ୍ଧି କରିବାର ବ୍ୟବସ୍ଥା ମଧ୍ୟ ଥିଲା । ସ୍ପଷ୍ଟତଃ, ଔପନିବେଶିକମାନେ ପୁନର୍ବାର ଧର୍ମ ଓ ବର୍ଣ୍ଣ ଭିତ୍ତିରେ ଜାତୀୟ ଶକ୍ତିଗୁଡ଼ିକର ବିଭକ୍ତିକରଣ ଏବଂ ରକ୍ଷଣଶୀଳ ଓ ସାମନ୍ତବାଦୀ ଗୋଷ୍ଠୀଗୁଡ଼ିକର କ୍ଷମତାକୁ ଦୃଢ଼ କରିବା ଉପରେ ସେମାନଙ୍କ ଆଶା ନ୍ୟସ୍ତ କରିଥିଲେ ।

ଇତିମଧ୍ୟରେ ଭାରତୀୟ ଧନିକ ଗୋଷ୍ଠୀଙ୍କୁ କେତେକ ସୁବିଧା ପ୍ରଦାନ କରାଯାଇଥିଲା : ଭୋଟଦାତାମାନଙ୍କ ପରିସର ବୃଦ୍ଧି ସମେତ ସରକାର ମୁସଲିମ୍ ଲୀଗ୍‌ର ଦାବି ଅନୁଯାୟୀ ସିନ୍ଧୁକୁ ସ୍ୱତନ୍ତ୍ର ଏକ ପ୍ରଦେଶ ରୂପେ ଘୋଷଣା କରିଥିଲା । ଏକ କୃଷକ ଅଭ୍ୟୁତ୍‌ଥାନ ଚାଲିଥିଲା ବେଳେ ବ୍ରହ୍ମ ଦେଶକୁ ଭାରତ ଠାରୁ ପୃଥକ୍ କରି ଦିଆଗଲା । ବ୍ରହ୍ମ ଦେଶର ଜାତୀୟ ଆନ୍ଦୋଳନକୁ ଭାରତର ଏହି ଆନ୍ଦୋଳନ ଠାରୁ ପୃଥକ୍ କରିବା ହିଁ ଥିଲା ଔପନିବେଶିକମାନଙ୍କର ଲକ୍ଷ୍ୟ ।

୧୯୨୯ ଖ୍ରୀଷ୍ଟାବ୍ଦରେ ପ୍ରାରମ୍ଭରେ ବ୍ରିଟିଶ୍ ସରକାର ସାଇମନ୍ କମିସନ୍‌ର ରିପୋର୍ଟ ଉପରେ ବିଚାର କରିବା ପାଇଁ ଭାରତର ରାଜନୈତିକ ଦଳଗୁଡ଼ିକୁ "ଏକ ଗୋଲ ଟେବୁଲ" ବୈଠକକୁ ଆମନ୍ତ୍ରଣ ଜଣାଇଥିଲେ । ସାଇମନ୍ କମିସନ ରିପୋର୍ଟ ସଂପର୍କରେ ପ୍ରତିକୂଳ ମନୋଭାବ ପୋଷଣ ହେତୁ ଜାତୀୟ କଂଗ୍ରେସ ପ୍ରସ୍ତାବଟିକୁ ଗ୍ରହଣ କରି ନଥିଲା । ୧୯୩୦ ଖ୍ରୀଷ୍ଟାବ୍ଦ, ନଭେମ୍ବର ୧୨

ତାରିଖ ଦିନ ଲଣ୍ଡନରେ ପ୍ରଥମ "ଗୋଲ୍ ଟେବୁଲ" ବୈଠକ ଅନୁଷ୍ଠିତ ହେଲା ଏବଂ ଏଥିରେ ଭାରତର ପ୍ରତିନିଧିତ୍ୱ କରିଥିଲେ ବିଭିନ୍ନ ଦେଶୀୟ ରାଜା, ମୁସଲିମ୍ ଲୀଗ୍, ହିନ୍ଦୁ ମହାସଭା, ଲିବରାଲ ଫେଡେରେସନ୍ ଓ ଭୀମରାଓ ଆମ୍ବେଦକରଙ୍କ ଦ୍ୱାରା ପ୍ରତିଷ୍ଠିତ "ଅସ୍ପୃଶ୍ୟ ଫେଡେରେସନ" ।

ବ୍ରିଟିଶ୍ କର୍ତ୍ତୃକ ଭାରତର ବିଭିନ୍ନ ଧର୍ମୀୟ ସଂପ୍ରଦାୟର ପ୍ରତିନିଧିମାନଙ୍କ ମଧ୍ୟରେ ଉତ୍ତେଜନା ବୃଦ୍ଧି କରିବାର କୌଶଳ ଅବଲମ୍ବନ ଫଳରେ ବୈଠକରେ କାର୍ଯ୍ୟତଃ ଅଚଳାବସ୍ଥା ଦେଖା ଦେଇଥିଲା ।

ଏଥି ସଙ୍ଗେ ସଙ୍ଗେ ଜାତୀୟ ବୁର୍ଜୁଆମାନଙ୍କ ସହିତ ଆପୋଷର ଭଙ୍ଗି ଦେଖାଇ ବ୍ରିଟିଶ୍ ପ୍ରଶାସନ ଶୃଙ୍ଖଳ ନୀତିର କେତେକ ପରିବର୍ତ୍ତନ କରିଦେଲା । ଇତିମଧ୍ୟରେ ଗାନ୍ଧୀ ଜେଲରେ ବନ୍ଦୀ ଅବସ୍ଥାରେ ଥିଲେ । ତାଙ୍କ ସହିତ ସରକାର ପକ୍ଷରୁ ଯୋଗାଯୋଗ ପ୍ରତିଷ୍ଠା କରାଗଲା ଏବଂ ୧୯୩୧ ଖ୍ରୀଷ୍ଟାବ୍ଦରେ ସେ ଜେଲରୁ ଖଲାସ୍ ହେଲେ ।

୧୯୩୧ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ୫ ତାରିଖ ଦିନ ଜାତୀୟ କଂଗ୍ରେସର ନେତୃବୃନ୍ଦ ଓ ବଡ଼ଲାଟ୍‌ଙ୍କ ପ୍ରଶାସକମାନଙ୍କ ମଧ୍ୟରେ ଏକ ଚୁକ୍ତିରେ ପହଞ୍ଚିବା (ଗାନ୍ଧୀ—ଇରଉଇନ ଚୁକ୍ତି) ସମ୍ଭବ ହୋଇଥିଲା । ଏହି ଚୁକ୍ତି ଅନୁଯାୟୀ ବ୍ରିଟିଶ୍ ସରକାର ଦମନମୂଳକ ବ୍ୟବସ୍ଥା ପ୍ରତ୍ୟାହାର କରି ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତି (ଯେଉଁମାନେ ହିଂସାତ୍ମକ କାର୍ଯ୍ୟରେ ଅଭିଯୁକ୍ତ ନଥିଲେ) ଦେଲେ। କଂଗ୍ରେସ ପ୍ରକାଶ୍ୟରେ ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ ରଖିଲା ଏବଂ ଗାନ୍ଧୀ ଦ୍ୱିତୀୟ "ଗୋଲ ଟେବୁଲ" ବୈଠକରେ ଯୋଗ ଦେବାକୁ ସମ୍ମତ ହେଲେ ।

ଗାନ୍ଧୀ—ଇରଉଇନ ଚୁକ୍ତି କେବଳ କଂଗ୍ରେସର ବାମପନ୍ଥୀମାନଙ୍କ ମଧ୍ୟରେ ନୁହେଁ, ଏହାର ବାହାରେ ମଧ୍ୟ ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଥିଲା । କେତେକ ପ୍ରାଦେଶିକ କଂଗ୍ରେସ କମିଟି (ଯଥା, ବଙ୍ଗଳା ଓ ପଞ୍ଜାବ) ଏହାକୁ ସମର୍ଥନ ଦେବାକୁ ଅସ୍ୱୀକାର କରିଥିଲେ ।

କିନ୍ତୁ କରାଚିରେ ଅନୁଷ୍ଠିତ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ (ମାର୍ଚ୍ଚ, ୧୯୩୧) ଗାନ୍ଧୀଙ୍କ ପଦକ୍ଷେପ ଅନୁମୋଦନ ଲାଭ କରିଥିଲା । ଔପନିବେଶିକ ସରକାର ଓ ଜାତୀୟ ଆନ୍ଦୋଳନର ନେତୃବୃନ୍ଦଙ୍କ ମଧ୍ୟରେ ଏକ ଅସ୍ଥାୟୀ ଚୁକ୍ତି ସଂପାଦିତ ହେଲା ।

ପ୍ରଧାନ ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ସହିତ ଆଲୋଚନା ପାଇଁ ପ୍ରସ୍ତୁତ ହେବା ସାଥେ ସାଥେ ଜାତୀୟ ବୁର୍ଜୁଆମାନେ କରାଚିରେ "ନେହରୁ ସଂବିଧାନ" ଠାରୁ ଆଉରି ବେଶି ଦାବି ସଂକଳିତ ଏକ ଅର୍ଥନୈତିକ ଓ ରାଜନୈତିକ କର୍ମସୂଚୀ ଗ୍ରହଣ କରିଥିଲେ । ଏଥିରେ "ପୂର୍ଣ୍ଣ ସ୍ୱରାଜକୁ" ("କଂଗ୍ରେସୀୟ ସ୍ୱାଧୀନତା") ପୁନର୍ବାର ସେମାନଙ୍କ ସଂଗ୍ରାମର ପ୍ରଧାନ ଲକ୍ଷ୍ୟ ରୂପେ ଘୋଷଣା କରିଥିଲେ । ଅବଶ୍ୟ, ଏହି ଶବ୍ଦସମଷ୍ଟିର ବିଭିନ୍ନ ବ୍ୟାଖ୍ୟା—ପୂର୍ଣ୍ଣ ସ୍ୱାଧୀନତାରୁ ଡୋମିନିଅନ ମର୍ଯ୍ୟାଦା ପର୍ଯ୍ୟନ୍ତ ବହୁବିଧ ଅର୍ଥ କରିବାର ଅବକାଶ ଥିଲା । "ଗୋଲ ଟେବୁଲ" ବୈଠକର ଆଲୋଚନାକୁ ଭିତ୍ତି କରି ଏକ ପ୍ରସ୍ତାବ ମାଧ୍ୟମରେ କଂଗ୍ରେସକୁ ପ୍ରତିରକ୍ଷା ଓ ବୈଦେଶିକ ନୀତି ନିୟନ୍ତ୍ରଣ କରିବାର ଦାୟିତ୍ୱ ଦେବା ପାଇଁ ଦାବି କରାଯାଇଥିଲା ।

ଏହି ଅଧିବେଶନରେ ଅନୁମୋଦିତ ଭାରତରେ ବୁର୍ଜୁଆ-ଗଣତାନ୍ତ୍ରିକ ଅଧିକାର ପ୍ରବର୍ତ୍ତନର ପ୍ରସ୍ତାବ ସମ୍ବଳିତ "ଭାରତୀୟ ନାଗରିକମାନଙ୍କର ମୌଳିକ ଅଧିକାର ଓ ଅର୍ଥନୈତିକ କର୍ମସୂଚୀ" ନାମକ ଦଲିଲରେ ଥିଲା : "ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ସମାନାଧିକାର, ଦେଶରେ ଭାଷାଭିତ୍ତିକ ପ୍ରଦେଶ ପୁନର୍ଗଠନ, ଆଦି । ପରିକଳ୍ପନା ଅନୁଯାୟୀ ସର୍ବନିମ୍ନ ମଜୁରି, ଖଜଣା ସୀମିତକରଣ ଓ କର ହ୍ରାସର ସର୍ତ୍ତଗୁଡ଼ିକ ମଧ୍ୟ ଥିଲା ।

କଂଗ୍ରେସ ନୂତନ କର୍ମସୂଚୀଭିତ୍ତିକ ଆନୁଷ୍ଠାନିକ ଦଲିଲ ତିଆରି କଲା ବେଳେ ପ୍ରଥମ କରି ଶ୍ରମଜୀବୀମାନଙ୍କର କେତୋଟି ପ୍ରଧାନ ଦାବି ସଂପର୍କରେ ବିବେଚନା କରାଯାଇଥିଲା । ଦଲିଲର ଆଉ କେତେକ ସ୍ଥାନରେ ମଧ୍ୟ କଂଗ୍ରେସର ବାମପନ୍ଥୀମାନଙ୍କ ପ୍ରଭାବ ପ୍ରକଟିତ ହୋଇଥିଲା : ଦେଶର ପ୍ରଧାନ ଶିଳ୍ପ ଶାଖାଗୁଡ଼ିକର ଜାତୀୟକରଣର ପ୍ରୟୋଜନୀୟତାକୁ ସ୍ୱୀକାର କରି ନିଆଯାଇଥିଲା । ବହୁ ଭାରତୀୟ ଶିଳ୍ପୋଦ୍ୟୋଗୀମାନଙ୍କର ସ୍ୱାର୍ଥାନୁକୂଲ୍ୟରେ ସଂରକ୍ଷଣମୂଳକ ଶୁଳ୍କ ନୀତି ପ୍ରବର୍ତ୍ତନର ପ୍ରସ୍ତାବ ମଧ୍ୟ ଉପସ୍ଥାପିତ କରାଯାଇଥିଲା ।

କରାଚି ସମ୍ମେଳନରେ ଗୃହୀତ କଂଗ୍ରେସ କର୍ମସୂଚୀର କେତେକ ଦୁର୍ବଳତା ସତ୍ତ୍ୱେ ଏଥିରେ ପାର୍ଟିର କାର୍ଯ୍ୟକଳାପର ଆମୂଳ ପରିବର୍ତ୍ତନ ଓ ଜନ ଭିତ୍ତି ସଂପ୍ରସାରଣରେ ଏକ ଗୁରୁତ୍ୱପୂର୍ଣ୍ଣ ଅଗ୍ରପଦକ୍ଷେପ ସୂଚିତ ହୋଇଥିଲା ।

କଂଗ୍ରେସର ଅଧିବେଶନର ପ୍ରାୟ ସମକାଳରେ ଅନୁଷ୍ଠିତ ନିଖିଳ ଭାରତ ଶ୍ରମିକ ଓ କୃଷକ ପାର୍ଟିର ଦ୍ୱିତୀୟ ସମ୍ମିଳନୀଟି କଂଗ୍ରେସର କର୍ମସୂଚୀର ବିକଳ୍ପ ହିସାବରେ ଏକ ସାମାଜିକ-ଅର୍ଥନୈତିକ କର୍ମସୂଚୀ ଉପସ୍ଥାପିତ କରିଥିଲା ।

ଏହି ସମ୍ମିଳନୀରେ ଗୃହୀତ ବିଭିନ୍ନ ଦାବି ସମ୍ବଳିତ ପ୍ରସ୍ତାବଗୁଡ଼ିକ ମଧ୍ୟରେ ଉଲ୍ଲେଖଯୋଗ୍ୟ ହେଲା : ଆଠଘଣ୍ଟା ବିଶିଷ୍ଟ କାର୍ଯ୍ୟ ଦିନ, ସବେତନ ଛୁଟି, ଶ୍ରମିକମାନଙ୍କୁ ଧର୍ମଘଟ ଏବଂ ଶ୍ରେଣୀଭିତ୍ତିକ ଟ୍ରେଡ୍‌ୟୁନିଅନ୍ ଗଠନର ଅଧିକାର; କୃଷକମାନଙ୍କର ଆଶା ଆକାଂକ୍ଷା ହିସାବରେ ଜମିଦାରି ଉଚ୍ଛେଦ, ଆୟକର ପ୍ରବର୍ତ୍ତନ, ବେଗାରି ପ୍ରଥା ଉଚ୍ଛେଦ, ଖଜଣା ହ୍ରାସ ଓ ଆପଦକାଳରେ କର, ବାକିଆ କର ଓ ଖଜଣା ଆଦାୟ ବନ୍ଦ, ବର୍ଣ୍ଣ ବୈଷମ୍ୟ ନୀତିର ଉଚ୍ଛେଦ । ଏଥିରେ ପୂର୍ଣ୍ଣ ସ୍ୱାଧୀନତା ଲାଭ ଏବଂ ସୁଦୂର ପ୍ରସାରୀ ସାମାଜିକ-ଅର୍ଥନୈତିକ ସଂସ୍କାର ସାଧନ ହିଁ ମୁକ୍ତି ସଂଗ୍ରାମର ଶେଷ ଲକ୍ଷ୍ୟ ହିସାବରେ ଚିହ୍ନିତ ହୋଇଥିଲା ।

ଏହି ପର୍ଯ୍ୟାୟରେ "ନଓଜୋଆନ ଭାରତ ସଭା" ନାମକ ଯୁବ ସଂଗଠନର ମଧ୍ୟ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ଏହାର ସଦସ୍ୟମାନେ ଶ୍ରମିକ ଓ କୃଷକମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ସଂଗ୍ରାମ ଭିତ୍ତିକ ଏକ କର୍ମସୂଚୀ ଗ୍ରହଣ ସମେତ ଜମିଦାରି ଉଚ୍ଛେଦ ପ୍ରଭୃତି ଦାବି କରିଥିଲେ । ଏହି କଂଗ୍ରେସ କମିଣ୍ଟର୍ଣ୍ଣକୁ ଏକ ଅଭିନନ୍ଦନ ବାଣୀ ପ୍ରେରଣ କରିଥିଲା ।

ଏହି ଉଭୟ ସଭା ମାଧ୍ୟମରେ ଦେଶରେ ବାମପନ୍ଥୀ, ବୈପ୍ଳବିକ ଶକ୍ତିଗୁଡ଼ିକର କ୍ରମବର୍ଦ୍ଧମାନ ପ୍ରଭାବର ପରିଚୟ ସୁସ୍ପଷ୍ଟ ହୋଇ ଉଠିଥିଲା । ଏହି ଦୁଇଟି ସଭାରେ "ଦିଲ୍ଲୀ ଚୁକ୍ତି" ଏବଂ ଦ୍ୱିତୀୟ "ଗୋଲ ଟେବୁଲ" ବୈଠକରେ କଂଗ୍ରେସର ଯୋଗଦାନ ବିରୁଦ୍ଧରେ ପ୍ରତିବାଦ କରାଯାଇଥିଲା ।

କିନ୍ତୁ ବାମପନ୍ଥୀ ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗି ଗ୍ରହଣ ହେତୁ କମ୍ୟୁନିଷ୍ଟମାନେ ଏହି ପର୍ଯ୍ୟାୟରେ ଗଣ ସଂଗଠନ ପ୍ରତିଷ୍ଠା ମାଧ୍ୟମରେ ଇତିମଧ୍ୟରେ ଅର୍ଜିତ ସାଫଲ୍ୟଗୁଡ଼ିକର ବିକାଶ ସାଧନ କରିବାରେ ବ୍ୟର୍ଥ ହୋଇଥିଲେ । ଏଥି ପାଇଁ ପ୍ରଧାନତଃ ୧୯୩୧ ଖ୍ରୀଷ୍ଟାବ୍ଦ ପରେ ଶ୍ରମିକ ଓ କୃଷକ ପାର୍ଟିର କାର୍ଯ୍ୟକଳାପ ଦ୍ରୁତ ହ୍ରାସ ପାଇଥିଲା । କିନ୍ତୁ ଶ୍ରେଣୀ ଶକ୍ତିଗୁଡ଼ିକର ଆଉରି ମେରୁବର୍ତ୍ତିତା ଏବଂ ସ୍ୱକୀୟ ରାଜନୀତିର ଭିତ୍ତିରେ ଶ୍ରମିକ ଆନ୍ଦୋଳନର ବିକାଶର ପରିପ୍ରେକ୍ଷିତରେ କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଜନସାଧାରଣଙ୍କ ମଧ୍ୟରେ ପାର୍ଟିର ସମର୍ଥନ ମଜବୁତ୍ ଲକ୍ଷ୍ୟରେ ସେମାନଙ୍କ ଉଦ୍ୟୋଗକୁ କେନ୍ଦ୍ର କରିବା ପାଇଁ ସିଦ୍ଧାନ୍ତରେ ପହଞ୍ଚିଥିଲେ ।

## ତୃତୀୟ ଅସହଯୋଗ ଆନ୍ଦୋଳନ ।

## ହିନ୍ଦୁ ସଂପ୍ରଦାୟ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ସଂଗ୍ରାମ

୧୯୩୧ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ଗାନ୍ଧୀଜୀ ଦ୍ୱିତୀୟ "ଗୋଲ ଟେବୁଲ" ବୈଠକରେ ଯୋଗଦାନ ଉଦ୍ଦେଶ୍ୟରେ ଲଣ୍ଡନ ଯାତ୍ରା କରିଥିଲେ । ସେଇ ବର୍ଷ ଅନୁଷ୍ଠିତ ପୂର୍ବବର୍ତ୍ତୀ ବୈଠକର ଅଂଶଗ୍ରହଣକାରୀମାନେ ମଧ୍ୟ ଉପସ୍ଥିତ ଥିଲେ ।

ଏହି ଆଲୋଚନା ବେଳେ ବ୍ରିଟିଶ୍‌ମାନେ ଆଗ ଭଳି ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଅବାଧରେ ଧର୍ମୀୟ ଅସନ୍ତୋଷ ସୃଷ୍ଟି କରିବାର ଅଭିନ୍ନ କୌଶଳ ମଧ୍ୟ ଅନୁସରଣ କରିଥିଲେ । ଏ କ୍ଷେତ୍ରରେ ପ୍ରଗତିଶୀଳ ମତାବଲମ୍ବୀ ଗାନ୍ଧୀ ହିନ୍ଦୁ ମୁସଲମାନ୍ ସଂପ୍ରଦାୟର ସଂପର୍କ ନିୟନ୍ତ୍ରଣର ମୂଳ ସର୍ତ୍ତ ହିସାବରେ ଭାରତକୁ ସ୍ୱାଧୀନତା ଦାନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ।

ବୈଠକରେ ସାଂପ୍ରଦାୟିକ ସମସ୍ୟା କ୍ଷେତ୍ରରେ ଦୁଇଟି ବିଭିନ୍ନ ଦୃଷ୍ଟିଭଙ୍ଗିର ଉନ୍ମେଷ ଘଟିଥିଲା । ଜାତୀୟ କଂଗ୍ରେସର ମତାନୁଯାୟୀ ଦୁଇ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ବିତର୍କମୂଳକ ପ୍ରଶ୍ନଟି ଭାରତୀୟମାନଙ୍କର ନିଜସ୍ୱ ମୀମାଂସାର ବିଷୟ ଏବଂ ଏହାର ସମାଧାନ କେବଳ ଭାରତର ସ୍ୱାୟତ୍ତଶାସନ (ଏହା ଡୋମିନିଅନ ମର୍ଯ୍ୟାଦା ନା ପୂର୍ଣ୍ଣ ସ୍ୱାଧୀନତା, ତାହା ଉଲ୍ଲେଖ ନଥିଲା) ଭଳ ଭିତ୍ତିରେ ସମ୍ଭବପର । କିନ୍ତୁ ମୁସଲିମ୍ ଲୀଗ୍ ସମର୍ଥିତ ବ୍ରିଟିଶ୍ ଦୃଷ୍ଟିଭଙ୍ଗି ନିମ୍ନ ପ୍ରକାରରେ ଥିଲା : କୌଣସି ଚୁକ୍ତିରେ ପହଞ୍ଚିବାକୁ ହେଲେ ଭାରତୀୟ ପ୍ରତିନିଧିମାନଙ୍କୁ ଏହି ବ୍ୟର୍ଥତାର ପରିପ୍ରେକ୍ଷିତରେ ଏବେ ବୈଧାନିକ ପ୍ରଣାଳୀ ଅନୁଯାୟୀ ସମସ୍ୟାଟିର ସମାଧାନ ପାଇଁ ସରକାରକୁ ଉପଦେଶ ଦେବା ଉଚିତ ।

ବୈଠକକୁ ବ୍ୟର୍ଥତାରେ ପର୍ଯ୍ୟବସିତ କରିବା ପାଇଁ ବ୍ରିଟିଶ୍ ସରକାର ଗାନ୍ଧୀ ଏବଂ କଂଗ୍ରେସକୁ ଦାୟୀ କରିବାକୁ ଚେଷ୍ଟା କରିଥିଲା ।

କିନ୍ତୁ ୧୯୩୧, ଡିସେମ୍ବର ମାସରେ ବୈଠକ ଶେଷରେ ଗାନ୍ଧୀ ଦେଶକୁ ଫେରି ଆସିଲା ପରେ ଦେଖାଗଲା ଯେ, ସାରା ଦେଶରେ, କିମ୍ବା କଂଗ୍ରେସ ମଧ୍ୟରେ ତାଙ୍କର ପ୍ରଭାବ ମୋଟେ ହ୍ରାସ ପାଇ ନାହିଁ । ଇତିମଧ୍ୟରେ ଭାରତରେ ବୈପ୍ଳବିକ ପରିସ୍ଥିତି ପକ୍ଷରେ ଅପରିହାର୍ଯ୍ୟ ଉପାଦାନଗୁଡ଼ିକର ଉଦ୍‌ଭବ ଘଟିଥିଲା : ଅନେକ ପ୍ରଦେଶରେ ସେତେବେଳେ କୃଷକମାନେ ସକ୍ରିୟ ଥିଲେ ଏବଂ କାଶ୍ମୀରୀ ଆଉ ଆଲୋୟାର ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ବ୍ରିଟିଶ୍‌ମାନେ ଦିଲ୍ଲୀ ଚୁକ୍ତି ଅମାନ୍ୟ କରି କଂଗ୍ରେସ ଅନୁମୋଦିତ ଗଣ ସଂଗଠନଗୁଡ଼ିକର କାର୍ଯ୍ୟକଳାପ ବନ୍ଦ କରିବା ପାଇଁ ଦମନମୂଳକ ବ୍ୟବସ୍ଥା ଅନୁସରଣ କରି ଚାଲିଥିଲେ ।

ଏଭଳି ଏକ ଅବସ୍ଥାରେ ଦମନ ବନ୍ଦ କରିବା ପାଇଁ ବଡ଼ଲାଟ୍‌ଙ୍କ ସହିତ ଗାନ୍ଧୀଙ୍କ ଆଲୋଚନା ବ୍ୟର୍ଥ ହେଲା ପରେ ସେ ୧୯୩୨, ଜାନୁଆରୀ ମାସରେ ଏକ ନୂତନ ଅସହଯୋଗ ଆନ୍ଦୋଳନ ଘୋଷଣା କରିଥିଲେ । କିନ୍ତୁ ଏଥର ସଂଗ୍ରାମର ପଦ୍ଧତି ଥିଲା ବ୍ୟକ୍ତିଗତ ସତ୍ୟାଗ୍ରହ ଭିତ୍ତିକ । ସେଇ ସମୟରେ ଦିଲ୍ଲୀ ଅଧିବେଶନରେ ଉପସ୍ଥିତ ଗାନ୍ଧୀଙ୍କ ସମେତ ସମସ୍ତ ସଦସ୍ୟଙ୍କୁ ତତ୍‌କ୍ଷଣାତ୍ ଗିରଫ୍ କରାଗଲା ଏବଂ ସତ୍ୟାଗ୍ରହର କାର୍ଯ୍ୟକାରିତା ଖୁବ୍ ଦୁର୍ବଳ ହୋଇ ପଡ଼ିଲା ।

ନୂତନ ଦମନ ଚଲେଇବା ସାଥେ ସାଥେ ବ୍ରିଟିଶ୍ ସରକାର ଏକ ନୂତନ ଭାରତ ଆଇନ୍

ପ୍ରଣୟନର ପ୍ରାଥମିକ କାର୍ଯ୍ୟ ଦ୍ରୁତ ସଂପନ୍ନ କରିବାକୁ ଉଦ୍ୟୋଗୀ ହୋଇଥିଲ । ଜାତୀୟ ଆନ୍ଦୋଳନର ବିଭିନ୍ନ ଧାରା ମଧ୍ୟରେ ପାର୍ଥକ୍ୟ ବୃଦ୍ଧି କରିବା ଦିଗରେ ସେମାନେ ଉତ୍ସାହ ଦେଇଥିଲେ । ତଥାକଥିତ ଧର୍ମୀୟ ଓ ଅନ୍ୟାନ୍ୟ ସଂଖ୍ୟାଲଘୁମାନଙ୍କ ସମସ୍ୟା ସମାଧାନର ଦାୟିତ୍ୱପ୍ରାପ୍ତ "ଗୋଲ ଟେବୁଲ" ବୈଠକରେ ଗଠିତ ତିନୋଟି ସବ୍‌କମିଟିର ସଦସ୍ୟମାନେ ସେତେବେଳକୁ ଭାରତରେ ପହଞ୍ଚିଥିଲେ ।

ବିଭିନ୍ନ ସଂପ୍ରଦାୟର ପ୍ରତିନିଧିମାନଙ୍କ ସହିତ ଆଲୋଚନା ପରେ ୧୯୩୨ ଖ୍ରୀଷ୍ଟାବ୍ଦରେ ଭାରତର ଆଇନ୍ ସଭାଗୁଡ଼ିକରେ ବିଭିନ୍ନ ସଂପ୍ରଦାୟର ପ୍ରତିନିଧିତ୍ୱର ନିଷ୍ପତ୍ତି ଘୋଷଣା କରାଗଲ ।

ମୁସଲିମ୍ ଲୀଗ୍ ସହିତ ଚୁକ୍ତିର କୌଣସି ସମ୍ଭାବନା ନଦେଖି ଗାନ୍ଧୀ ସବର୍ଣ୍ଣ ହିନ୍ଦୁମାନଙ୍କ ସହିତ ଅସ୍ପୃଶ୍ୟମାନଙ୍କର ସଂଘାତ ସୃଷ୍ଟି କରିବା ଦିଗରେ ବ୍ରିଟିଶ୍ ଉଦ୍ୟମକୁ ବ୍ୟର୍ଥ କରିବା ନିମିତ୍ତ ଉଦ୍ୟୋଗୀ ହୋଇଥିଲେ । କଂଗ୍ରେସ ଏବଂ ଗାନ୍ଧୀଙ୍କର ନିଜସ୍ୱ ଦୃଢ଼ ଉଦ୍ୟୋଗ ଫଳରେ ଅସ୍ପୃଶ୍ୟ ଫେଡେରେସନ ଓ ହିନ୍ଦୁ ମହାସଭାର ନେତାମାନଙ୍କ ମଧ୍ୟରେ ଏକ ବୁଝାମଣାରେ ପହଞ୍ଚିବା ସମ୍ଭବ ହେଲ । ଏହା ଫଳରେ, ଆଇନ୍ ସଭାଗୁଡ଼ିକରେ ଅସ୍ପୃଶ୍ୟମାନେ ନିର୍ଦ୍ଦିଷ୍ଟ ସଂଖ୍ୟକ ସଂରକ୍ଷିତ ଆସନ ଲଭର ସୁଯୋଗ ପାଇଥିଲେ । ଏହି ଭାବେ ବ୍ରିଟିଶ୍ ଅନୁମୋଦନ ମୁତାବକ ଅସ୍ପୃଶ୍ୟମାନଙ୍କ ନିମିତ୍ତ ବିଶେଷ ନିର୍ବାଚନୀ ଏଲକା ଗଠନର ଭିତ୍ତିରେ ନିର୍ବାଚନ ପରିଚାଳନାର ସମ୍ଭାବନା ବାତିଲ ହୋଇ ଯାଇଥିଲ ।

ଅକ୍ଟୋବର ମାସରେ ହିନ୍ଦୁ ମୁସଲିମ୍ ସଂପ୍ରଦାୟର ସଂଗଠନଗୁଡ଼ିକ ମଧ୍ୟରେ ଆରମ୍ଭ ହୋଇଥିବା ବୁଝାମଣାର ଆଲୋଚନାଟି ଶେଷକୁ ବ୍ୟର୍ଥତାରେ ପରିଣତ ହେଲ ।

ସବର୍ଣ୍ଣ ହିନ୍ଦୁ ଓ ଅସ୍ପୃଶ୍ୟ ସଂପ୍ରଦାୟର ସଂଗଠନଗୁଡ଼ିକ ମଧ୍ୟରେ ଚୁକ୍ତିଗୁଡ଼ିକୁ ମଜବୁତ୍ କରିବା ନିମିତ୍ତ ୧୯୩୨, ଡିସେମ୍ବର ମାସରେ ଓ ୧୯୩୩ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଗାନ୍ଧୀ ସମଗ୍ର ଦେଶରେ ଅସ୍ପୃଶ୍ୟତା ବିରୋଧୀ ପ୍ରଚାରାଭିଯାନ ଆରମ୍ଭ କରିଥିଲେ । ସେ ଅସ୍ପୃଶ୍ୟମାନଙ୍କୁ "ହରିଜନ" (ଭଗବାନଙ୍କ ସନ୍ତାନ) ଆଖ୍ୟା ଦେଇଥିଲେ । ଏହି ନାମରେ ପ୍ରକାଶିତ ଗାନ୍ଧୀଙ୍କର ଏକ ପତ୍ରିକା ଅବିଳମ୍ବେ ସମଗ୍ର ଦେଶରେ ବ୍ୟାପକ ଜନପ୍ରିୟତା ଲଭ କରିଥିଲ ।

୧୯୩୨ ଖ୍ରୀଷ୍ଟାବ୍ଦ ଶରତ କାଳରେ ଲଣ୍ଡନରେ ଅନୁଷ୍ଠିତ ତୃତୀୟ "ଗୋଲ ଟେବୁଲ" ବୈଠକରେ କଂଗ୍ରେସ ପ୍ରଥମ ଥର ପରି ଅନୁପସ୍ଥିତ ଥିଲ । ଏହି ବୈଠକରେ ଭାରତର ସମ୍ବିଧାନକୁ ଚୂଡ଼ାନ୍ତ ରୂପ ଦିଆଯାଇଥିଲ ।

ଗଣ ଆନ୍ଦୋଳନକୁ ସ୍ତବ୍ଧ କରିବା ପାଇଁ ବ୍ରିଟିଶ୍ ପ୍ରଶାସନ ବ୍ୟାପକ ଉଦ୍ୟମ କଲ ବେଳେ, ଦେଶୀୟ ରାଜ୍ୟମାନଙ୍କରେ ସଂଘଟିତ ଅଭ୍ୟୁତ୍ଥାନସମୂହକୁ ଦମନ କରାଯାଉଥିଲ ବେଳେ ଏବଂ ସତ୍ୟାଗ୍ରହ ଆନ୍ଦୋଳନ କ୍ରମଶଃ ହୋଇ ପଡ଼ୁଥିଲ ବେଳେ ୧୯୩୩ ଖ୍ରୀଷ୍ଟାବ୍ଦ, ମେ ମାସରେ ଗାନ୍ଧୀ ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ ରଖିଥିଲେ ।

ଏହି ଭାବେ ଭାରତୀୟ ଜାତୀୟ ବିପ୍ଳବକୁ ଦ୍ୱିତୀୟ ଥର ପାଇଁ ପଶ୍ଚାଦ୍‌ପସରଣ କରିବାକୁ ପଡ଼ିଥିଲ ।

# ଜାତୀୟ ଆନ୍ଦୋଳନରେ ବାମପନ୍ଥୀମାନଙ୍କର ଦୃଢ଼ତର ଅବସ୍ଥାନ ଲାଭ ଏବଂ ନେତୃତ୍ୱ ଦଖଲ ପାଇଁ ତୀବ୍ର ସଂଗ୍ରାମ

## ତିରିଶ ଦଶକର ମଧ୍ୟ ଭାଗରେ ଭାରତର ଅର୍ଥନୈତିକ ପରିସ୍ଥିତି

୧୯୨୯-୧୯୩୩ ଖ୍ରୀଷ୍ଟାବ୍ଦର ଅର୍ଥନୈତିକ ସଂକଟ ପରେ ଏକ ଦୀର୍ଘସ୍ଥାୟୀ ଅର୍ଥନୈତିକ (ତଥାକଥିତ ମହା ମାନ୍ଦାବସ୍ଥା) ମାନ୍ଦାବସ୍ଥା ଲାଗି ରହିଥିଲା । ଏହା ପରେ ୧୯୩୭ ଖ୍ରୀଷ୍ଟାବ୍ଦରେ ଏକ ନୂତନ ବିଶ୍ୱ ଅର୍ଥନୈତିକ ସଂକଟ ଦେଖାଦେଲା । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଲାଗିଯିବା ଫଳରେ ଏହି ଘଟଣାବଳୀର ଅନୁକ୍ରମ ବ୍ୟାହତ ହୋଇଥିଲା ।

ଏହି ସମୟରେ ସହର ଓ ଗ୍ରାମର ଶ୍ରମଜୀବୀମାନଙ୍କ ଅବସ୍ଥା ଖୁବ୍ ମାରାତ୍ମକ ହୋଇ ଉଠିଥିଲା । ସଂକଟ କାଳରେ କୃଷକ ଏବଂ କାରିଗରମାନଙ୍କର ବ୍ୟାପକ ଦାରିଦ୍ର୍ୟ ସଂରକ୍ଷିତ ଶ୍ରମିକ ବାହିନୀର ଆୟତନକୁ ଆଉରି ଯଥେଷ୍ଟ ବଢ଼େଇ ଦେଲା ଏବଂ, ମୂଳତଃ, ତାହା ଗ୍ରାମୀଣ ଜନାଧିକ୍ୟର ଛଦ୍ମବେଶରେ ପ୍ରକଟିତ ହୋଇଥିଲା । ବେକାର ବାହିନୀର ନିରବଚ୍ଛିନ୍ନ ସଂଖ୍ୟାଟି ସେତେବେଳେ ପହଞ୍ଚିଥିଲା ବହୁ ଲକ୍ଷରେ ।

କୃଷି ଏଲାକାରେ କ୍ରମବର୍ଦ୍ଧମାନ ଜନସଂଖ୍ୟା ବୃଦ୍ଧି ପାଇବା ଫଳରେ ଉଡ଼ାକରା ପ୍ରତ୍ୟେକ ଖଣ୍ଡ ଜମି ପାଇଁ କୃଷକମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ପ୍ରବଳ ହୋଇ ଉଠିଥିଲା । ଏଭଳି ଅବସ୍ଥାରେ ଜମିଦାର, ତାଲୁକଦାର ଓ ଧନୀ ଚାଷୀମାନେ ଖଜଣା ବଢ଼ାଇ ଦେବାର ଅବାଧ ସୁଯୋଗ ଲାଭ କରିଥିଲେ ।

ଅର୍ଥନୈତିକ ସଂକଟ ପର୍ଯ୍ୟାୟରେ ଏବଂ ସଂକଟୋତ୍ତର କାଳରେ ବିପୁଳ ସଂଖ୍ୟକ କୃଷକ ଚରମ ଦାରିଦ୍ର୍ୟାବସ୍ଥାରେ ପଡ଼ିବା ଫଳରେ ସାଧାରଣ କୃଷକମାନଙ୍କ ମଧ୍ୟରେ ସ୍ତରାୟନ ଓ ଶ୍ରେଣୀ ବିଭେଦ ପୂର୍ବାପେକ୍ଷା ଅଧିକ ପରିମାଣରେ ଦୃଢ଼ ହୋଇଥିଲା । ଏକ ଦିଗରେ, ଏଭଳି ଏକ ଅବସ୍ଥାରେ ସାମାନ୍ୟ ଜମିର ମାଲିକ ବା ଭୂମିହୀନ ହୋଇ ପଡ଼ିଥିବା କୃଷକ, କ୍ଷୁଦ୍ର ଚାଷୀମାନଙ୍କ ସଂଖ୍ୟା ଯେମିତି ବୃଦ୍ଧି ପାଉଥିଲା, ସେଇମିତି ଅନ୍ୟ ଦିଗରେ, ରୟତଓ୍ୱାରି ଏଲାକାରେ ଜମିମାଲିକ କୃଷକ ଓ ଜମିଦାରି ଏଲାକାରେ ସୁବିଧାଭୋଗୀ ରଇତ ଚାଷୀମାନଙ୍କ ଭଳି ଧନୀ କୃଷକମାନେ ନିଜର ଅଧିକାରରାଜିକୁ ଅଧିକତର ପ୍ରତିଷ୍ଠିତ କରିବାରେ ଲାଗିଥିଲେ ।

ପଣ୍ୟ-ବନାମ-ମୁଦ୍ରା ସଂପର୍କର ବିସ୍ତାର ଓ ଆଭ୍ୟନ୍ତରୀଣ ବଜାର କୃଷି ଉତ୍ପାଦନ କ୍ଷେତ୍ରରେ ନୂଆ ପୁଞ୍ଜିବାଦୀ ସଂପର୍କକୁ ଦ୍ରୁତ ମଜବୁତ୍ କରି ଚାଲିଥିଲା । ଏଥି ସଙ୍ଗେ ସଙ୍ଗେ ଔପନିବେଶିକମାନଙ୍କ ଦ୍ୱାରା ସମର୍ଥିତ କୃଷି କ୍ଷେତ୍ରରେ ସାମନ୍ତତାନ୍ତ୍ରିକ ପ୍ରଭାବର ନିରବଚ୍ଛିନ୍ନ ପ୍ରାଧାନ୍ୟ ଫଳରେ (ବଡ଼ ବଡ଼ ଜମିଦାରି ଏବଂ ବ୍ୟବସାୟିକ ଓ ମହାଜନୀ ପୁଞ୍ଜିର ଅସ୍ତିତ୍ୱ) କୃଷିରେ ଅଚଳାବସ୍ଥା ଏବଂ ଅବକ୍ଷୟ ଦେଖା ଦେଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଏହାର ପ୍ରତିଫଳନ ସ୍ୱରୂପ, ଦେଶରେ ଖାଦ୍ୟ ପରିସ୍ଥିତିର ଅବନତି ଓ ଭାରତର ରପ୍ତାନି ହ୍ରାସର ଘଟଣାବଳୀ ଉଲ୍ଲେଖଯୋଗ୍ୟ । ଭାରତର ଗ୍ରାମୀଣ

ଜୀବନରେ ପୁଞ୍ଜିବାଦୀ ଉପାଦାନସମୂହର ଦୃଢ଼ୀକରଣ ଫଳରେ ଦେଶର ସାମାଜିକ ବିକାଶର ଅନ୍ତର୍ନିହିତ ଦ୍ୱନ୍ଦ୍ୱସମୂହର ଉଦ୍‌ଭବ ଏବଂ ଜଟିଳତା ବୃଦ୍ଧି ପାଇଥିଲା ।

ଗ୍ରାମଗୁଡ଼ିକରେ ପ୍ରଧାନ ପ୍ରଧାନ ଶ୍ରେଣୀ ଏବଂ ଶ୍ରେଣୀ ସ୍ତରଗୁଡ଼ିକ ମଧ୍ୟରେ ଦ୍ୱନ୍ଦ୍ୱ ଗଭୀର ହେବାରେ ଲାଗିଥିଲା ଏବଂ ସାମାଜିକ ଉତ୍ତେଜନା ସ୍ପଷ୍ଟତଃ ବୃଦ୍ଧି ପାଉଥିଲା ।

ସହରର ସାମାନ୍ୟ ପଣ୍ୟୋତ୍ପାଦକ, ହସ୍ତଶିଳ୍ପ ସଂସ୍ଥା ଓ କ୍ଷୁଦ୍ର କାରଖାନାଗୁଡ଼ିକ ପାଇଁ ଏହି ବିଧ୍ୱଂସୀ ସଂକଟ ଏକାସାଙ୍ଗରେ ପୁଞ୍ଜିର ଠୂଳୀକରଣ ଓ ଘନୀଭବନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରୁଥିଲା । ତିରିଶ ଦଶକରେ ପ୍ରଥମ କରି ଭାରତୀୟ ଏକଚାଟିଆ ସଂସ୍ଥାଗୁଡ଼ିକର ପ୍ରତିଷ୍ଠା ଆରମ୍ଭ ହୋଇଥିଲା । ଏ କ୍ଷେତ୍ରରେ ସିମେଣ୍ଟ ଶିଳ୍ପ (୧୯୩୬ ଖ୍ରୀଷ୍ଟାବ୍ଦରେ ("ଆସୋସିଏଟେଡ୍ ସିଣ୍ଡିକେଟ" ଓ ୧୯୩୭ ଖ୍ରୀଷ୍ଟାବ୍ଦରେ ଶକ୍ତିଶାଳୀ "ଡାଲମିଆ – ଜୈନ" ଗୋଷ୍ଠୀ ଗଠିତ ହୋଇଥିଲେ) ଏବଂ ଚିନି ଶିଳ୍ପର (୧୯୩୭ ମସିହାରେ ୧୦୮ଟି କାରଖାନାକୁ ନେଇ ଗଠିତ "ଇଣ୍ଡିଆନ ସୁଗାର ସିଣ୍ଡିକେଟ୍" ନାମକ କାର୍ଟେଲ) ଦୃଷ୍ଟାନ୍ତସମୂହ ଉଲ୍ଲେଖଯୋଗ୍ୟ ।

ଭାରତୀୟ ଶିଳ୍ପ, ବିଶେଷତଃ, ବୃହତ୍ କାରଖାନାଗୁଡ଼ିକ କ୍ରମଶଃ ଆଭ୍ୟନ୍ତରୀଣ ବଜାରରେ ମୁଖ୍ୟ ଭୂମିକା ଲାଭ କରିଥିଲେ । ଏହା ଫଳରେ ୧୯୨୭ ଓ ୧୯୩୭ ମଧ୍ୟରେ ସୂତାବସ୍ତ୍ର ଉତ୍ପାଦନ ଯଥାକ୍ରମେ ୪୧ରୁ ୬୨ ଶତାଂଶକୁ ଏବଂ ୧୯୨୭ ଓ ୧୯୩୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଧାତୁ ଉତ୍ପାଦନରେ ଭାରତୀୟ ସଂସ୍ଥାର (ଟାଟା) ଅଂଶ ଯଥାକ୍ରମେ ୩୦ରୁ ୭୨ ଶତାଂଶକୁ ବୃଦ୍ଧି ପାଇଥିଲା ।

ଭାରତର ଶିଳ୍ପ ଓ ବାଣିଜ୍ୟ ପୁଞ୍ଜିର ସଂପ୍ରସାରଣ ଆରମ୍ଭ ହେଲା ପରେ ଋଣ କ୍ଷେତ୍ରରେ ମଧ୍ୟ କେନ୍ଦ୍ରୀଭବନ ଓ ଘନୀଭବନର ସ୍ୱକୀୟ ଅସ୍ତିତ୍ୱ ଅନୁଭୂତ ହେବାକୁ ଲାଗିଥିଲା । ୧୯୧୮ ଓ ୧୯୩୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତରେ କର୍ମରତ ବ୍ୟାଙ୍କର ଶାଖା ସଂଖ୍ୟା ଚାରି ଗୁଣ ଓ ୧୯୧୮ ଓ ୧୯୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ତପ୍‌ସିଲ ବ୍ୟାଙ୍କଗୁଡ଼ିକର ପରିଶୋଧ ପୁଞ୍ଜି ଓ ଜମା ଯଥାକ୍ରମେ ଏକତୃତୀୟାଂଶ ଏବଂ ୬୦ ଶତାଂଶ ବୃଦ୍ଧି ପାଇଥିଲା ।

ଏଥି ସଙ୍ଗେ ସଙ୍ଗେ ବ୍ୟାଙ୍କିଙ୍ଗ୍ ଓ ଶିଳ୍ପ ବ୍ୟବସାୟିକ ଓ ମହାଜନୀ ପୁଞ୍ଜିର ସ୍ଥାନାନ୍ତର କ୍ରମାଗତ ବୃଦ୍ଧି ପାଇଥିଲା ।

ଶକ୍ତିଶାଳୀ ଭାରତୀୟ ବୁର୍ଜୁଆ ଗୋଷ୍ଠୀର ଟାଟା, ଡାଲମିଆ, ଜୈନ, ଓୟାଲଚାନ୍ଦ, ବିରଳା, ସିଂହାଣିଆ ପ୍ରଭୃତି କୋଟିପତି ପରିବାରଗୁଡ଼ିକ ଇତିମଧ୍ୟରେ ଭାରତୀୟ ଶିଳ୍ପପତିମାନଙ୍କ ମଧ୍ୟରେ ମୁଖ୍ୟ ସ୍ଥାନ ଅଧିକାର କରି ନେଇଥିଲେ ।

ପୁଞ୍ଜିବାଦୀ ବିକାଶର ନିମ୍ନ ପର୍ଯ୍ୟାୟର ଲକ୍ଷଣଯୁକ୍ତ ଏବଂ ପ୍ରାକ୍‌ପୁଞ୍ଜିବାଦୀ ଓ ଆଦି ପୁଞ୍ଜିବାଦୀ ମାଲିକାନାର ପ୍ରାଧାନ୍ୟ ଥିବା ପରିସ୍ଥିତିରେ ଭାରତୀୟ ଏକଚାଟିଆଗୁଡ଼ିକ ବାଣିଜ୍ୟିକ ତଥା ମହାଜନୀ ପୁଞ୍ଜି ଉପରେ ଏକ ଉପରି ଗଢ଼ଣ (ସୁପରଷ୍ଟ୍ରକଚର) ହିସାବରେ ଗଢ଼ି ଉଠିଥିଲେ । ଏଥି ପାଇଁ ବାଣିଜ୍ୟ ଓ ମହାଜନୀରୁ ବଡ଼ ବଡ଼ ବୁର୍ଜୁଆମାନେ ସେମାନଙ୍କ ଆୟର ଏକ ପ୍ରଧାନ ଅଂଶ ସଂଗ୍ରହ କରୁଥିଲେ ।

କେବଳ ସାମନ୍ତ ଶ୍ରେଣୀ ସହିତ ନୁହେଁ, ବ୍ରିଟିଶ୍ ଔପନିବେଶିକ ସରକାରର ପୂରା ସାମାଜିକ-ଅର୍ଥନୈତିକ ଏବଂ ରାଜନୈତିକ ବ୍ୟବସ୍ଥା ସହିତ ଭାରତୀୟ ବୁର୍ଜୁଆମାନଙ୍କର ଉର୍ଦ୍ଧ୍ୱତନ ସ୍ତରର କିଛି ଯୋଗସୂତ୍ର ଥିଲା । କିନ୍ତୁ ବ୍ୟାପକ ଆକାରର ଭାରତୀୟ ବ୍ୟବସାୟ ଉଦ୍ୟୋଗରେ ଏକଚାଟିଆ

ପ୍ରବଣତାସମୂହ ସନ୍ଦେହାତୀତ ଭାବେ ଜାତୀୟ ପୁଞ୍ଜିବାଦର ବିକାଶ ଓ ସାମ୍ରାଜ୍ୟବାଦବିରୋଧୀ ପ୍ରବଣତାଗୁଡ଼ିକର ଘନୀଭବନକୁ ପ୍ରକଟିତ କରୁଥିଲା ।

ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଭାରତୀୟ ବୁର୍ଜୁଆମାନଙ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବାରେ ଖୁବ୍ ସଚେଷ୍ଟ ଥିଲେ । ଏହି ଉଦ୍ଦେଶ୍ୟରେ ୧୯୩୫ ଖ୍ରୀଷ୍ଟାବ୍ଦରେ "ଭାରତୀୟ ରିଜର୍ଭ ବ୍ୟାଙ୍କ୍" ପ୍ରତିଷ୍ଠିତ ହୋଇଥିଲା । କେନ୍ଦ୍ରୀୟ ସରକାରୀ ବ୍ୟାଙ୍କ୍‌ର ଭୂମିକାରେ ଥିବା ଏହି ବ୍ୟାଙ୍କ୍‌ର ନୋଟ୍ ପ୍ରଦାନ କରିବାର କ୍ଷମତା ଥିଲା । ଏହା ରାଷ୍ଟ୍ରୀୟ ଅର୍ଥ ବ୍ୟବସ୍ଥା ନିୟନ୍ତ୍ରଣ ସଙ୍ଗେ ସଙ୍ଗେ ଭାରତୀୟ ବ୍ୟାଙ୍କ୍ ପୁଞ୍ଜି ଏବଂ ବଡ଼ ବଡ଼ ଋଣଦାନ ସଂସ୍ଥାଗୁଡ଼ିକୁ ମଧ୍ୟ ନିୟନ୍ତ୍ରଣ କରୁଥିଲା । ୧୯୩୬ ଖ୍ରୀଷ୍ଟାବ୍ଦରେ "ମ୍ୟାନେଜିଂ ଏଜେନ୍‌ସି ଆଇନ୍" ପାସ୍ ମାଧ୍ୟମରେ ଭାରତୀୟ ଅର୍ଥନୀତି ଉପରେ ବ୍ରିଟିଶ୍ ଏକଚ୍ଛତିଆମାନଙ୍କର ନିୟନ୍ତ୍ରଣକୁ କାଏମ କରାଗଲା । ଏହିସବୁ ବ୍ୟବସ୍ଥା ଫଳରେ ଭାରତୀୟ ଓ ବ୍ରିଟିଶ୍ ବୁର୍ଜୁଆମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱରାଜି ଆଉରି ବୃଦ୍ଧି ପାଇଥିଲା ।

ତିରିଶ ଦଶକରେ ଭାରତର ଅର୍ଥନୈତିକ ଓ ସାମାଜିକ ବିକାଶ ଜାତୀୟ ଓ ଶ୍ରେଣୀଗତ ଦ୍ୱନ୍ଦ୍ୱଗୁଡ଼ିକୁ (ଭାରତୀୟ ସମାଜର ନିର୍ଦ୍ଦିଷ୍ଟ ଶ୍ରେଣୀ ଅନୁଯାୟୀ ବିଭିନ୍ନ ଭିତ୍ତିରେ ଓ ବିଭିନ୍ନ ମାତ୍ରାରେ) ଗଭୀରତର କରି ଦେଇଥିଲା ।

କିନ୍ତୁ ଯୁଦ୍ଧପୂର୍ବ ପର୍ଯ୍ୟାୟରେ ଭାରତର ରାଜନୈତିକ ଘଟଣାବଳୀର ଗତିଧାରାରେ ୧୯୩୬-୧୯୩୯ ଖ୍ରୀଷ୍ଟାବ୍ଦର ଜାତୀୟ-ମୁକ୍ତି ଆନ୍ଦୋଳନରେ ଯେଉଁ ନୂତନ ଜୁଆର ଦେଖା ଦେଇଥିଲା, ତାହାକୁ କେବଳ ଅର୍ଥନୈତିକ ଉପାଦାନଗୁଡ଼ିକ ଦ୍ୱାରା ବ୍ୟାଖ୍ୟା କରି ହେବ ନାହିଁ ।

କ୍ରମବର୍ଦ୍ଧମାନ ବୈପ୍ଳବିକ କାର୍ଯ୍ୟକଳାପ ଭରା ଏହିସବୁ ବର୍ଷଗୁଡ଼ିକରେ (୧୯୨୯-୧୯୩୩) ଦେଶର ରାଜନୈତିକ ଜୀବନରେ ଅନେକଗୁଡ଼ିଏ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା । ଏସବୁ ମଧ୍ୟରେ ଚୂଡ଼ାନ୍ତ ଗୁରୁତ୍ୱପୂର୍ଣ୍ଣ ଦୁଇଟି ଘଟଣା ହେଲା : ପ୍ରଥମତଃ, ଭାରତର କମ୍ୟୁନିଷ୍ଟ, ଶ୍ରମିକ ଓ କୃଷକ ପାର୍ଟିସମୂହ ଏବଂ ଲାଲ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଦ୍ୱାରା ସ୍ୱାଧୀନ ରାଜନୈତିକ ଶକ୍ତି ହିସାବରେ ଶ୍ରମିକ ଶ୍ରେଣୀର ଅଭ୍ୟୁଦୟ । ଦ୍ୱିତୀୟତଃ, କୃଷକମାନଙ୍କ ଶ୍ରେଣୀ ସଂଗଠନ ପ୍ରତିଷ୍ଠା ଭାରତର ରାଜନୈତିକ ଜୀବନରେ ସ୍ୱାଧୀନ ଉପାଦାନ ହିସାବରେ ତା'ର ଭୂମିକାରେ ଅବତୀର୍ଣ୍ଣ ହେବାର ପୂର୍ବସର୍ତ୍ତର ଉନ୍ମେଷ ଭଳି ଥିଲା ।

## ୧୯୩୪-୧୯୩୯ ଖ୍ରୀଷ୍ଟାବ୍ଦରେ ଶ୍ରମିକ ଶ୍ରେଣୀର ସଂଗ୍ରାମ

### ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ପୁଣି ଐକ୍ୟ ପ୍ରତିଷ୍ଠା

୧୯୩୪-୧୯୩୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ଓ ରାଜନୈତିକ ସଂଗ୍ରାମର ଚରିତ୍ର ହିସାବରେ ସଂଗଠିତ ଶ୍ରମିକ ଆନ୍ଦୋଳନ ମଧ୍ୟରେ ଟ୍ରେଡ୍‌ୟୁନିଅନ୍ ଐକ୍ୟ ପ୍ରତିଷ୍ଠା ଦିଗରେ ଉଦ୍ୟୋଗୀ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ବୃଦ୍ଧି ପାଇଥିଲା ।

ଏହି ପ୍ରକ୍ରିୟାଟିର ଦୁଇଟି ପର୍ଯ୍ୟାୟ ଥିଲା । ପ୍ରଥମତଃ, ବିଭିନ୍ନ ଧର୍ମଘଟ ମାଧ୍ୟମରେ

ନିମ୍ନ ପର୍ଯ୍ୟାୟରୁ ଐକ୍ୟ ପ୍ରତିଷ୍ଠାର ଚେଷ୍ଟା (୧୯୩୪-୧୯୩୫) ଆରମ୍ଭ ହୋଇଥିଲା । ଜାତୀୟତାବାଦୀ ଦକ୍ଷିଣପନ୍ଥୀ ସଂସ୍କାରବାଦୀମାନଙ୍କର ବିରୋଧିତାକୁ ଏଡ଼ାଇବା ପାଇଁ ମଧ୍ୟ ଉଦ୍ୟମ ହୋଇଥିଲା ।

୧୯୩୪ ଖ୍ରୀଷ୍ଟାବ୍ଦର ସୂତାକଳ ଶ୍ରମିକମାନଙ୍କର ୩ ମାସବ୍ୟାପୀ ଧର୍ମଘଟଟି ଶ୍ରମିକ ଆନ୍ଦୋଳନରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଥିଲା । ଏହା ଥିଲା ଗୋଟିଏ ସଂପୂର୍ଣ୍ଣ ଶିଳ୍ପ ଶାଖାରେ ଧର୍ମଘଟ ହେବାର ପ୍ରଥମ ଘଟଣା । ଏହି ଧର୍ମଘଟ ସମୟରେ ତିନୋଟି ପୃଥକ୍ ଟ୍ରେଡ୍‌ୟୁନିଅନ୍‌ର ବିଭିନ୍ନ ଶାଖାକୁ ଐକ୍ୟବଦ୍ଧ ସଂଗ୍ରାମରେ ଏକତ୍ର କରିବା ସମ୍ଭବ ହୋଇଥିଲା ।

ଏହି ଧର୍ମଘଟରେ କମ୍ୟୁନିଷ୍ଟ ଏବଂ ସେମାନଙ୍କ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ନିଷ୍ପତ୍ତିମୂଳକ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ହେତୁ ପ୍ରତିକ୍ରିୟାଶୀଳ ଶକ୍ତିଗୁଡ଼ିକ ଏତେ ଭୀତ ହୋଇ ପଡ଼ିଥିଲେ ଯେ, ଔପନିବେଶିକ କର୍ତ୍ତୃପକ୍ଷ ୧୯୩୪ ଖ୍ରୀଷ୍ଟାବ୍ଦରେ କମ୍ୟୁନିଷ୍ଟ ପାର୍ଟି ଓ ତା'ର ପ୍ରଭାବାଧୀନ କେତେକ ଟ୍ରେଡ୍‌ୟୁନିଅନ୍‌କୁ ବେଆଇନ୍ ଘୋଷଣା କରିଥିଲା । ଏହା ଫଳରେ ବାମପନ୍ଥୀ ଶକ୍ତିମାନଙ୍କର ଅଗ୍ରବାହିନୀର କାର୍ଯ୍ୟକଳାପରେ ଦାରୁଣ ପ୍ରତିବନ୍ଧକ ଦେଖା ଦେଇଥିଲା ।

୧୯୩୫ ଖ୍ରୀଷ୍ଟାବ୍ଦରେ ବିଭିନ୍ନ ଟ୍ରେଡ୍‌ୟୁନିଅନ୍‌ର ଯୌଥ ଉଦ୍ୟୋଗରେ ଡକ୍‌କର୍ମୀ ଓ ରେଳ ଶ୍ରମିକମାନଙ୍କର ଏକ ବ୍ୟାପକ ଧର୍ମଘଟ ସଂଘଟିତ ହୋଇଥିଲା ।

ଲାଲ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତୃବୃନ୍ଦଙ୍କ ଆହ୍ୱାନ କ୍ରମେ ଏହି ସଂଗଠନଟି ୧୯୩୫ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ନିମ୍ନୋକ୍ତ ମୂଳନୀତିର ଭିତ୍ତିରେ ପୁନର୍ବାର ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସରେ ଯୋଗଦାନ କଲା । ଏହି ନୀତିଗୁଡ଼ିକ ମଧ୍ୟରେ ଥିଲା : ଶ୍ରେଣୀ ସଂଗ୍ରାମର ନୀତିସମୂହର ସ୍ୱୀକାର, ପ୍ରତ୍ୟେକ ଶିଳ୍ପରେ ଗୋଟିଏ ମାତ୍ର ଟ୍ରେଡ୍‌ୟୁନିଅନ୍ ଗଠନ, ଆନ୍ତର୍ଜାତିକ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ନିୟନ୍ତ୍ରଣରୁ ମୁକ୍ତ ରହିବା, ପରସ୍ପର ପ୍ରତି ଆକ୍ରମଣ ନକରି ପ୍ରଚାର କାର୍ଯ୍ୟ ଚଳନାର ଅଧିକାର, ସଂଖ୍ୟାଗରିଷ୍ଠଙ୍କ ନିକଟରେ ସଂଖ୍ୟାଲଘୁର ଆନୁଗତ୍ୟ (ଏହି ଶେଷ ନୀତିଟି ଥିଲା କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ପ୍ରତିପକ୍ଷଙ୍କୁ ପ୍ରଦତ୍ତ ବିଶେଷ ସୁବିଧା ସ୍ୱରୂପ । ମିଳିତ ହେବା ପୂର୍ବରୁ ଲାଲ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଏବଂ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସଦସ୍ୟ ସଂଖ୍ୟା ଯଥାକ୍ରମେ ଥିଲା ୧୦ ହଜାର ଓ ୮୦ ହଜାର) ।

କେତେକ ଦକ୍ଷିଣପନ୍ଥୀ ଟ୍ରେଡ୍‌ୟୁନିଅନ୍ ନେତାମାନଙ୍କ ଅନ୍ତର୍ଘାତ ସତ୍ତ୍ୱେ ଶିଳ୍ପ ଓ ପେଶା ଅନୁଯାୟୀ ବିଭିନ୍ନ ୟୁନିଅନ୍‌କୁ ଗୋଟିଏ ଲେଖାଏଁ ସଂଗଠନ ଭୁକ୍ତ କରିବାର ପ୍ରଚେଷ୍ଟା ୧୯୩୬ ଖ୍ରୀଷ୍ଟାବ୍ଦରେ ଆଶାନୁରୂପ ସାଫଲ୍ୟ ଲାଭ କରିଥିଲା । କ୍ରମବର୍ଦ୍ଧମାନ ସଂଖ୍ୟକ ଧର୍ମଘଟରେ ଆଂଶିକ ବା ଆଶାନୁରୂପ ସାଫଲ୍ୟ ଲାଭ (୧୯୩୬ ଖ୍ରୀଷ୍ଟାବ୍ଦରେ ସଂଘଟିତ ମୋଟ ଧର୍ମଘଟର ୪୬ ଶତାଂଶ) ଥିଲା ଏହି ନୂତନ ଐକ୍ୟର ପ୍ରଥମ ଫଳ ସ୍ୱରୂପ । ଏହା ପରେ ସଂଘଟିତ ଧର୍ମଘଟଗୁଡ଼ିକ ଦୀର୍ଘସ୍ଥାୟୀ ଓ ଦୃଢ଼ ହୋଇଥିଲା ।

ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟରେ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନକୁ ଐକ୍ୟବଦ୍ଧ କରିବା ସମୟରେ (୧୯୩୬-୧୯୩୯) ଶ୍ରମିକ ଶ୍ରେଣୀ କ୍ରମେ କ୍ରମେ ତିରିଶ ଦଶକର ପ୍ରାରମ୍ଭର ଆତ୍ମରକ୍ଷାମୂଳକ ଅବସ୍ଥାନ ବଦଳରେ ଉଚ୍ଚତର ମଜୁରି ସମେତ ଟ୍ରେଡ୍‌ୟୁନିଅନ୍‌କୁ ସ୍ୱୀକୃତି ଦେବା ପାଇଁ ଶିଳ୍ପୋଦ୍ୟୋଗୀ ଓ କର୍ତ୍ତୃପକ୍ଷଙ୍କ ନିକଟରେ ଦାବି ଜଣାଇବାକୁ ଆରମ୍ଭ କରିଥିଲେ । ଏହି ସମୟରେ ଧର୍ମଘଟ ଓ ଧର୍ମଘଟୀମାନଙ୍କ ସଂଖ୍ୟା ବୃଦ୍ଧିର ହିସାବଟି ନିମ୍ନ ସାରଣୀଟିରୁ ସହଜରେ ଲକ୍ଷ୍ୟ କରାଯାଏ :

| ବର୍ଷ | ଧର୍ମଘଟର ସଂଖ୍ୟା | ଧର୍ମଘଟରେ ଯୋଗଦାନକାରୀଙ୍କ ସଂଖ୍ୟା |
|---|---|---|
| ୧୯୩୪-୧୯୩୫ | ୧୫୦ | ୨ ଲକ୍ଷ |
| ୧୯୩୬-୧୯୩୯ | ୪୦୦ | ୫ ଲକ୍ଷ |

ଦୁଇଟି ଟ୍ରେଡ୍‌ୟୁନିଅନ୍ ସଂଗଠନର ଶ୍ରମିକ ଏବଂ ଐକ୍ୟବଦ୍ଧ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତୃବର୍ଗଙ୍କ କର୍ତ୍ତୃକ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପ୍ରସ୍ତାବିତ କେତେକ ନୀତିକୁ ସମର୍ଥନ କରିବା ଫଳରେ ଶ୍ରମିକ ଶ୍ରେଣୀର ରାଜନୈତିକ କାର୍ଯ୍ୟକଳାପର ଗୁରୁତ୍ୱ ବୃଦ୍ଧି ପାଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୯୩୫ ଓ ୧୯୩୬ ଖ୍ରୀଷ୍ଟାବ୍ଦରେ ମେ ଦିବସ ପାଳନ ମଧ୍ୟରେ ଏହାର ପ୍ରତିଫଳନ ଘଟିଥିଲା । ୧୯୩୬ ଖୀଷ୍ଟାବ୍ଦରେ ଉଦ୍‌ଯାପିତ ବିଶେଷ ଶ୍ରମିକ ସପ୍ତାହରେ ସାମ୍ରାଜ୍ୟବାଦବିରୋଧୀ ସ୍ଲୋଗାନ ଦିଆଯାଇଥିଲା । ଏହି ବର୍ଷ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ତା'ର ୧୫ତମ ସମ୍ମେଳନରେ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନରେ ଶ୍ରମିକ ଶ୍ରେଣୀର ବ୍ୟାପକ ଅଂଶଗ୍ରହଣର ସମ୍ଭାବନା ଓ ମୁକ୍ତି ସଂଗ୍ରାମରେ ଅନୁସୃତ ପଦ୍ଧତି ନେଇ ଆଲୋଚନା ଏବଂ ରାଜନୈତିକ ଧର୍ମଘଟକୁ ଏହି ସଂଗ୍ରାମର ଅପରିହାର୍ଯ୍ୟ ଉପାଦାନ କରିବାର କଥା ଘୋଷଣା କରିଥିଲା ।

ଏହି ଦୁଇଟି ଟ୍ରେଡ୍‌ୟୁନିଅନ୍ ସଂଗଠନର ମିଳନ ପ୍ରକୃତରେ ସଂଗଠିତ ଶ୍ରମିକ ଆନ୍ଦୋଳନର ଅଗ୍ରଗତିରେ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ବିସ୍ତାର କରିଥିଲା । ୧୯୩୬-୧୯୩୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଟ୍ରେଡ୍‌ୟୁନିଅନ୍ ସଂଖ୍ୟା ଦ୍ୱିଗୁଣିତ ହୋଇଯାଇଥିଲା । ମେହନତୀ ଜନସାଧାରଣଙ୍କ ଉପରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ପ୍ରଭାବ ଯଥେଷ୍ଟ ବୃଦ୍ଧି ପାଇଥିଲା । ଏହା ଫଳରେ ଭାରତୀୟ ଟ୍ରେଡ୍‌ୟୁନିଅନ୍ ଫେଡେରେସନରେ ଦକ୍ଷିଣପନ୍ଥୀ ସଂସ୍କାରବାଦୀ ନେତାମାନଙ୍କ ଅବସ୍ଥାନ ଯଥେଷ୍ଟ ପରିମାଣରେ ଦୁର୍ବଳ ହୋଇ ପଡ଼ିଥିଲା ।

୧୯୩୭ ଖ୍ରୀଷ୍ଟାବ୍ଦର ସାଧାରଣ ଧର୍ମଘଟଟି ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମର ବିକାଶରେ ଏକ ନିଷ୍ପତ୍ତିମୂଳକ ଭୂମିକା ପାଳନ କରିଥିଲା । ଏହାର ଅନ୍ତର୍ଭୁକ୍ତ ଥିଲା : କାନ୍‌ପୁରର ସୂତାକଳ ଶ୍ରମିକମାନଙ୍କର ଧର୍ମଘଟ, ବେଙ୍ଗଲ-ନାଗପୁର ରେଳ ଶ୍ରମିକମାନଙ୍କର ଧର୍ମଘଟ ଏବଂ ବେଙ୍ଗଲ ଝୋଟକଳ ଶ୍ରମିକମାନଙ୍କ ଧର୍ମଘଟ । ଏହିସବୁ ଧର୍ମଘଟ ସର୍ବହରାର ଅପେକ୍ଷାକୃତ ନିଷ୍କ୍ରିୟ ସ୍ତରଗୁଡ଼ିକୁ ସକ୍ରିୟ କରି ତୋଳିଥିଲା ।

ଶ୍ରମିକ ଶ୍ରେଣୀ ମଧ୍ୟରେ ନିଜର ପ୍ରଭାବକୁ ଅକ୍ଷୁଣ୍ଣ ରଖିବା ପାଇଁ ଭାରତୀୟ ଟ୍ରେଡ୍‌ୟୁନିଅନ୍ ଫେଡେରେସନର ନେତୃବୃନ୍ଦ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ସହିତ ଯୁକ୍ତ ହେବାକୁ ଇଚ୍ଛା ପ୍ରକାଶ କରିଥିଲେ । ୧୯୩୮ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ନାଗପୁରରେ ଅନୁଷ୍ଠିତ ଏକ ଯୌଥ ସମ୍ମିଳନୀ ମାଧ୍ୟମରେ ଫେଡେରେସନ କିଛି ଆଦର୍ଶଗତ ସୁବିଧା ପାଇଥିଲା, ଯାହା କି ଶ୍ରମିକ ଓ ଶିଳ୍ପୋଦ୍ୟୋଗୀମାନଙ୍କ ମଧ୍ୟରେ ବୁଝାମଣାର ଅନୁକୂଳ୍ୟ ପରିସ୍ଥିତି ସୃଷ୍ଟି କରିଥିଲା । ନବସଂଯୁକ୍ତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତୃପଦଗୁଡ଼ିକ କଂଗ୍ରେସ ସଦସ୍ୟଙ୍କ ହାତରେ ଥିଲା ।

୧୯୩୮-୧୯୩୯ ଖ୍ରୀଷ୍ଟାବ୍ଦରେ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ରାଜନୈତିକ କ୍ରିୟାକଳାପରେ କିଛି ପରିମାଣରେ ଭଟା ଦେଖା ଦେଲେ ମଧ୍ୟ ଭାରତୀୟ ଟ୍ରେଡ୍‌ୟୁନିଅନ୍ ସଂଗଠନଗୁଡ଼ିକର ମିଳନ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ଉପରେ ଅନୁକୂଳ ପ୍ରଭାବ ବିସ୍ତାର କରିଥିଲା । ଏହି ସମୟରେ ଭାରତର ଅନୁନ୍ନତ ଅଞ୍ଚଳ, ଦେଶୀୟ ରାଜ୍ୟଗୁଡ଼ିକରେ ଧର୍ମଘଟ ଆନ୍ଦୋଳନ ଖେଳି ଯାଇଥିଲା ।

୧୯୩୯ ଖ୍ରୀଷ୍ଟାବ୍ଦରେ ରେଳ ଶ୍ରମିକ, ନାବିକ ଓ ଡକ ଶ୍ରମିକ ଏବଂ ସୂତାକଳ ଶ୍ରମିକମାନଙ୍କର ୟୁନିଅନ୍‌ଗୁଡ଼ିକର ମିଳନ ମଧ୍ୟ ମୋଟାମୋଟି ସଂପୂର୍ଣ୍ଣ ହୋଇ ଯାଇଥିଲା । ନବସଂଯୁକ୍ତ କେତେକ ୟୁନିଅନ୍‌ର (ଯଥା, ରେଳବାଇ ଓ ସୂତାକଳ ଶ୍ରମିକମାନଙ୍କର ୟୁନିଅନ୍) ଉଦ୍ୟୋଗରେ ୧୯୩୮-୧୯୩୯ ଖ୍ରୀଷ୍ଟାବ୍ଦରେ କେତେକ ନିର୍ଦ୍ଦିଷ୍ଟ ଶିଳ୍ପଶାଖାର ସମସ୍ତ ଶ୍ରମିକମାନଙ୍କୁ ନେଇ ଯୌଥ ସମ୍ମେଳନ ଅନୁଷ୍ଠିତ ହୋଇଥିଲା ଏବଂ ତାହା ସ୍ଥାନୀୟ ପର୍ଯ୍ୟାୟରେ ପୃଥକ୍ ସଂସ୍ଥାର ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ଉପରେ ଅନୁକୂଳ ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ସାମ୍ରାଜ୍ୟବାଦୀ ଓ ବୁର୍ଜୁଆମାନଙ୍କର ବିରୁଦ୍ଧରେ ନିରନ୍ତର ସଂଗ୍ରାମ ମାଧ୍ୟମରେ ଯେଉଁ ଶ୍ରମିକ ଶ୍ରେଣୀ ତା'ର ନିଜସ୍ୱ ପାର୍ଟି ଓ ଶ୍ରେଣୀ ଭିତ୍ତିକ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ଗଢ଼ି ତୋଳିଥିଲା, ଏହା ପରେ ସେ ଜାତୀୟ ଆନ୍ଦୋଳନର ନେତୃତ୍ୱ ଲାଭ ପାଇଁ ଜାତୀୟ ବୁର୍ଜୁଆ ବିରୁଦ୍ଧରେ ସଂଗ୍ରାମରେ ଅବତୀର୍ଣ୍ଣ ହେଲା । ତିରିଶ ଦଶକର ଶେଷାର୍ଦ୍ଧରେ ସାମ୍ରାଜ୍ୟବାଦବିରୋଧୀ ଚକ୍ର ମଧ୍ୟରେ ଘଟଣାବଳୀର ଧାରା ଏହି ଉପାଦାନଟି ଦ୍ୱାରା ନିର୍ଦ୍ଧାରିତ ହୋଇଥିଲା ।

ଏହି ସଂଗ୍ରାମ ଦୁଇଟି କ୍ଷେତ୍ରରେ କେନ୍ଦ୍ରୀଭୂତ ଥିଲା : କୃଷକ ଆନ୍ଦୋଳନର ନେତୃତ୍ୱ ଲାଭର ଲଢ଼େଇ ଏବଂ ସାମ୍ରାଜ୍ୟବାଦବିରୋଧୀ ଏକ ଯୁକ୍ତ ସାମ୍ମୁଖ୍ୟ ଗଠନର ସଂଗ୍ରାମ ।

## କୃଷକ ଆନ୍ଦୋଳନ । ନିଖିଳ ଭାରତ କୃଷକ ସଭା ପ୍ରତିଷ୍ଠା

୧୯୩୪-୧୯୩୫ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ କୃଷକ ସଭାର ସଂଗଠନଗୁଡ଼ିକ କୃଷକମାନଙ୍କର ମୂଳ ଦାବି – ଖଜଣା ହ୍ରାସ, କର ହ୍ରାସ ଆଦି ସୁବିଧା ଆଦାୟ ପାଇଁ ସେମାନଙ୍କ ସଂଗ୍ରାମ ଚଳାଇ ଯାଉଥିଲେ । ଏହି ଆନ୍ଦୋଳନର ସଦସ୍ୟମାନଙ୍କ ଦ୍ୱାରା ଅନୁସୃତ କ୍ରିୟାକଳାପର ମୂଳ ଧାରଣ ଥିଲା : ଗ୍ରାମ, ତହସିଲ ଓ ଜିଲ୍ଲା ପର୍ଯ୍ୟାୟରେ ସଭା, ଶୋଭାଯାତ୍ରା ଓ ସମ୍ମେଳନ ଅନୁଷ୍ଠିତ କରିବା । କୃଷକ ସଭା ମୂଳତଃ ବିହାର, ପଞ୍ଜାବ ଓ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଉତ୍ତରାଞ୍ଚଳରେ (ଆନ୍ଧ୍ର ଅଞ୍ଚଳ) କେବଳ ଜିଲ୍ଲା ନୁହେଁ, ପ୍ରାଦେଶିକ ପର୍ଯ୍ୟାୟରେ ବିଶେଷ ସକ୍ରିୟ ଥିଲା ।

କୃଷକ ସଭାର ଅଧିକାଂଶ ଥିଲା କମ୍ୟୁନିଷ୍ଟ ଓ କୃଷିଜୀବୀ ଗଣତନ୍ତ୍ରବାଦୀମାନଙ୍କର ପ୍ରଭାବାଧୀନ । ସଂଗଠିତ କୃଷକ ଆନ୍ଦୋଳନକୁ ନିୟନ୍ତ୍ରଣ କରିବା ପାଇଁ ଜାତୀୟ କଂଗ୍ରେସର ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ଏହି ପର୍ଯ୍ୟାୟରେ ଏନ୍.ଜି.ରଙ୍ଗା, ଭି.ଭି. ଗିରିଙ୍କ ସମେତ ଜାତୀୟତାବାଦୀ ସଂସ୍କାରପନ୍ଥୀମାନଙ୍କର ଏକ ଗୋଷ୍ଠୀ ଜାତୀୟ କଂଗ୍ରେସର ପ୍ରଭାବାଧୀନ ଏକ ନିଖିଳ ଭାରତ କୃଷକ ସଂଗଠନ ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ୧୯୩୫ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ପ୍ରସ୍ତୁତି ସମ୍ମିଳନୀରେ ରଙ୍ଗାଙ୍କ ଗୋଷ୍ଠୀ ହିଁ ସର୍ବାଧିକ ସମର୍ଥନ ଲାଭ କରିଥିଲା । କିନ୍ତୁ ଐକ୍ୟକାମୀ ଏହି କୃଷକ ସଭାର ପ୍ରାଦେଶିକ ନେତୃତ୍ୱ ଯେ

ବାମପନ୍ଥୀମାନଙ୍କ ଦଖଲରେ ରହିବ, ଏହା ଏହି ନୂତନ ସଂଗଠନର ପ୍ରଥମ ସମ୍ମେଳନରେ ସ୍ପଷ୍ଟ ହୋଇ ଉଠିଥିଲା ।

୧୯୩୬ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଲକ୍ଷ୍ନୌରେ ନିଖିଳ ଭାରତ କୃଷକ ସଭାର ଉଦ୍‌ବୋଧନୀ ଅଧିବେଶନଟି ଅନୁଷ୍ଠିତ ହୋଇଥିଲା ଜାତୀୟ କଂଗ୍ରେସର ଅଧିବେଶନ ଚାଲିଥିଲା ବେଳେ (ଦୁଇଟି ସଂଗଠନର ଲକ୍ଷ୍ୟଗତ ଘନିଷ୍ଠତାକୁ ପ୍ରକଟିତ କରିବା ଉଦ୍ଦେଶ୍ୟରେ) । ଏଥିରେ ଜାତୀୟତାବାଦୀ-ସଂସ୍କାରପନ୍ଥୀମାନେ ନିଖିଳ ଭାରତ କୃଷକ ସଭାର ପ୍ରଧାନ ସଂସ୍ଥା, କେନ୍ଦ୍ରୀୟ କୃଷକ ପରିଷଦରେ ସଂଖ୍ୟାଗରିଷ୍ଠତା ଲାଭ କରି ପାରି ନଥିଲେ ।

ଏହି ବର୍ଷ ଅଗଷ୍ଟ ମାସରେ ପରିଷଦ ଅଧିବେଶନରେ ଗୃହୀତ କୃଷକମାନଙ୍କର ଦାବି ସମ୍ବଳିତ ସନନ୍ଦଟି ନିଖିଳ ଭାରତ କୃଷକ ସଭାର ମୂଳ ଦଲିଲ ହୋଇ ଉଠିଥିଲା । ଏଥିରେ ଥିଲା – ଜମିଦାରି ଉଚ୍ଛେଦ, ରୟତଓ୍ୱାରି ଏଲାକାରେ ରାଜସ୍ୱ ନୀତି ସଂସ୍କାର, ଖଜଣା ହ୍ରାସ ଆଦି । ଅର୍ଥାତ୍, ସନନ୍ଦଟି ଭାରତୀୟ କୃଷକମାନଙ୍କର ସାମ୍ରାଜ୍ୟବାଦବିରୋଧୀ, ସାମନ୍ତବିରୋଧୀ ସଂଗ୍ରାମର ଉଦ୍ୟୋଗକୁ ଜାତୀୟ ଶକ୍ତିଗୁଡ଼ିକର ସମ୍ଭାବ୍ୟ ବୃହତ୍ତମ ସାମୂଖ୍ୟର ପରିସର ମଧ୍ୟରେ ଘନୀଭୂତ କରିଥିଲା ଏବଂ ଏଥିରେ ଗ୍ରାମୀଣ ବୁର୍ଜୁଆ ସମେତ, ଏପରିକି ରୟତଓ୍ୱାରୀ ଏଲାକାର ଜମିଦାରମାନେ ବି ଅନ୍ତର୍ଭୁକ୍ତ ହୋଇଥିଲେ ।

ସାମନ୍ତ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ କୃଷକମାନଙ୍କ ସଂଗ୍ରାମ ସହିତ ଜାତୀୟ-ମୁକ୍ତି ଆନ୍ଦୋଳନର ଘଟଣାବଳୀକୁ ଏକତ୍ର କରିବା ମଧ୍ୟରେ ଏହି ସନନ୍ଦର ତାତ୍ପର୍ଯ୍ୟ ନିହିତ ଥିଲା । ସ୍ଥାନୀୟ କୃଷକ ସଭା ମାଧ୍ୟମରେ ସନନ୍ଦଭୁକ୍ତ ନୀତିସମୂହର ପ୍ରଚାର କୃଷକମାନଙ୍କର ଶ୍ରେଣୀ ସ୍ୱାର୍ଥ ଚେତନା ଏବଂ ଜାତୀୟ ଓ ଗଣତାନ୍ତ୍ରିକ ସମସ୍ୟାଦି ସଂପର୍କରେ ସେମାନଙ୍କ ଉତ୍ସାହ ବୃଦ୍ଧି ଦିଗରେ ସହାୟତା କରିଥିଲା ।

ଡିସେମ୍ବର ମାସରେ ଅନୁଷ୍ଠିତ ନିଖିଳ ଭାରତ କୃଷକ ସଭାର ପରବର୍ତ୍ତୀ ଅଧିବେଶନରେ ବାମପନ୍ଥୀମାନେ ସେମାନଙ୍କ ଅବସ୍ଥାନକୁ ଆଉରି ଦୃଢ଼ କରି ନେଇ ପାରିଥିଲେ । ଏହା ମଧ୍ୟ ଆଗ ଭଳି ଜାତୀୟ କଂଗ୍ରେସ ଅଧିବେଶନ ସମୟରେ ଏବଂ ଏକେଇ ସ୍ଥାନରେ ଅନୁଷ୍ଠିତ ହୋଇଥିଲା (ଏଥର ମହାରାଷ୍ଟ୍ରର ଏକ ଛୋଟ ସହର ଫଏଜ୍‌ପୁରରେ) । କୃଷକ ସଭା କୃଷକମାନଙ୍କର ଦାବି ସମ୍ବଳିତ ସନନ୍ଦଟିକୁ ଅନୁମୋଦନ ପ୍ରଦାନ କରିଥିଲା ଏବଂ ରଙ୍ଗାଙ୍କ ଗୋଷ୍ଠୀ ସହିତ ଯଥେଷ୍ଟ ଲଢ଼େଇ ପରେ କଂଗ୍ରେସ ପତାକା ବଦଳରେ ଦାଆ – ହାତୁଡ଼ି ଶୋଭିତ କମ୍ୟୁନିଷ୍ଟ ପାର୍ଟିର ରକ୍ତ ପତାକାକୁ ସଂଗଠନର ପ୍ରତୀକ ରୂପେ ଗ୍ରହଣ କରିଥିଲା । ବିହାରର ଅନ୍ୟତମ କୃଷକ ନେତା, ଜନୈକ ବିପ୍ଳବୀ ଗଣତନ୍ତ୍ରବାଦୀ ଏସ୍.ଏସ୍. ସରସ୍ୱତୀ ସଂଗଠନର ସାଧାରଣ ସଂପାଦକ ନିର୍ବାଚିତ ହୋଇଥିଲେ ।

ନିଖିଳ ଭାରତ କୃଷକ ସଭାର ପ୍ରତିଷ୍ଠା ଭାରତର କୃଷକ ଆନ୍ଦୋଳନର ଇତିହାସରେ ଏକ ସ୍ମରଣୀୟ ଘଟଣା । ଏଇଠିରୁ ଜାତୀୟ-ମୁକ୍ତି ଆନ୍ଦୋଳନରେ ଭାରତୀୟ ସମାଜର ଏହି ବୃହତ୍ତମ ଅଂଶ ତା'ର ସ୍ୱାଧୀନ ଭୂମିକା ପାଳନ କରିବାକୁ ଆରମ୍ଭ କରିଥିଲା ।

ଶ୍ରମିକ ଓ କୃଷକମାନଙ୍କର ସଂଗଠନଗୁଡ଼ିକର ନେତୃତ୍ୱ ଲାଭ କରିବା ସଂଗ୍ରାମରେ ନାନା ପ୍ରକାରଭେଦ ଦେଖା ଦେଇଥିଲା ଏବଂ ତାହା ବହୁ ପରିମାଣରେ ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତି ଓ ଖୋଦ୍ ଜାତୀୟ କଂଗ୍ରେସର ଆଭ୍ୟନ୍ତରୀଣ ବିବର୍ତ୍ତନ ଉପରେ ନିର୍ଭରଶୀଳ ଥିଲା ।

# ଐକ୍ୟବଦ୍ଧ ଜାତୀୟ ସାମ୍ମୁଖ୍ୟ ଗଠନର ଅଗ୍ରଗତି । କଂଗ୍ରେସର ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ

## କଂଗ୍ରେସ-ସମାଜବାଦୀ ପାର୍ଟି ପ୍ରତିଷ୍ଠା

୧୯୩୪ ଖ୍ରୀଷ୍ଟାବ୍ଦରେ, କେନ୍ଦ୍ରୀୟ ଆଇନ୍ ସଭା ଗଠନର ପୂର୍ବାହ୍ନରେ ଜାତୀୟ କଂଗ୍ରେସର ଦକ୍ଷିଣପନ୍ଥୀମାନେ ନିର୍ବାଚନରେ ଅଂଶଗ୍ରହଣ ପାଇଁ କଂଗ୍ରେସ ସଂସ୍ଥା ହିସାବରେ ସ୍ୱରାଜ ଦଳକୁ ପୁନରୁଜ୍ଜୀବିତ କରିଥିଲେ । କିନ୍ତୁ ଏହି ପର୍ଯ୍ୟାୟରେ କଂଗ୍ରେସର ଆଭ୍ୟନ୍ତରୀଣ ରକ୍ଷଣଶୀଳମାନଙ୍କର ପ୍ରଭାବ ଯଥେଷ୍ଟ ହ୍ରାସ ପାଇଥିଲା । ସାଂପ୍ରତିକ ବାମପନ୍ଥୀ ଶକ୍ତିସମୂହର ଦେଶବ୍ୟାପୀ ସଂହତି, ମେହନତୀ ଜନସାଧାରଣଙ୍କର ଗଣ ସଂଗଠନଗୁଡ଼ିକର ମୁଖ୍ୟ ସଂସ୍ଥାମାନଙ୍କରେ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କର ଦୃଢ଼ ଅବସ୍ଥାନ ଲାଭ ହେତୁ କଂଗ୍ରେସ ନେତୃବୃନ୍ଦ ପାର୍ଟିର ଗଣ ଭିତ୍ତିର ସଂପ୍ରସାରଣ ପାଇଁ ବିବିଧ ସାଂଗଠନିକ ପରିବର୍ତ୍ତନ ଘଟାଇବାକୁ ବାଧ୍ୟ ହୋଇଥିଲେ ।

ଜାତୀୟ କ୍ଷେତ୍ରରେ କଂଗ୍ରେସର ଏକାଧିପତ୍ୟ ଅବ୍ୟାହତ ରହିଥିଲା ଏବଂ ୧୯୧୮-୧୯୨୦ ଖ୍ରୀଷ୍ଟାବ୍ଦରେ ଏହାର ଉଲ୍ଲେଖଯୋଗ୍ୟ ପୁନର୍ଗଠନର ପରବର୍ତ୍ତୀ ୧୫ ବର୍ଷମାନଙ୍କରେ କ୍ରମଶଃ ବୁର୍ଜୁଆ-ଜମିଦାରମାନଙ୍କ ପାର୍ଟିରୁ ଏହା ଯଥେଷ୍ଟ ବ୍ୟାପକ ଶ୍ରେଣୀ ପରିସରର ପ୍ରତିନିଧି ସ୍ୱରୂପ ବୁର୍ଜୁଆ ଓ ପେଟି-ବୁର୍ଜୁଆ ଜାତୀୟତାବାଦୀମାନଙ୍କର ବିଭିନ୍ନ ପ୍ରବଣତା ଓ ଗୋଷ୍ଠୀର ସଂଗଠନ ହୋଇ ଉଠିଥିଲା, ଯଦିଓ ଜାତୀୟ ବୁର୍ଜୁଆମାନେ ଏହାର ନେତୃତ୍ୱରେ ଥିଲେ । କଂଗ୍ରେସର ଆଭ୍ୟନ୍ତରୀଣ ଚିନ୍ତାଧାରାର ବ୍ୟାପକ ପରିସର ମଧ୍ୟରେ ଏହା ଦ୍ୱାରା ଦୁଇଟି ପ୍ରବଣତା ପ୍ରକଟିତ ହେଉଥିଲା : ପ୍ରଧାନ ଭୂମିକାରେ ଥିବା ଗାନ୍ଧୀଙ୍କ ଦ୍ୱାରା ସମର୍ଥିତ ଦକ୍ଷିଣପନ୍ଥୀ-ସଂସ୍କାରବାଦୀ ଏବଂ ବାମପନ୍ଥୀ । ଏହି ବାମପନ୍ଥୀ ଦଳରେ କେବଳ ସୁଭାଷଚନ୍ଦ୍ର ବସୁ ଓ ଜବାହାରଲାଲ ନେହରୁଙ୍କ ସମର୍ଥକ ତରୁଣ ସଦସ୍ୟମାନେ ନୁହନ୍ତି, ଭାରତରେ ସମାଜବାଦୀ ସମାଜ ଗଠନର ସମର୍ଥକ ଗୋଷ୍ଠୀମାନେ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ଏହି ଶେଷୋକ୍ତ ଗୋଷ୍ଠୀମାନଙ୍କରେ ବୈଜ୍ଞାନିକ ସମାଜବାଦ ଓ କମ୍ୟୁନିଷ୍ଟମାନଙ୍କ ସହିତ ସହଯୋଗିତାର ସପକ୍ଷରେ ସମର୍ଥନ କ୍ରମଶଃ ବୃଦ୍ଧି ପାଉଥିଲା ।

ଏହି ପ୍ରବଣତାକୁ ରୋକିବା ପାଇଁ ଜୟପ୍ରକାଶ ନାରାୟଣ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ଅଶୋକ ମେହ୍‌ତାଙ୍କ ନେତୃତ୍ୱରେ ଦଳେ ସୋସାଲିଷ୍ଟ ବା ସମାଜବାଦୀ ୧୯୩୪ ଖ୍ରୀଷ୍ଟାବ୍ଦରେ କଂଗ୍ରେସ-ସମାଜବାଦୀ ପାର୍ଟି ଗଠନ କରିଥିଲେ ଏବଂ ଏହା କଂଗ୍ରେସ ମଧ୍ୟରେ କାର୍ଯ୍ୟ କରିବାକୁ ଲାଗିଲା । ଏହି ବର୍ଷ ଅକ୍ଟୋବର ମାସରେ ବମ୍ବେରେ ପାର୍ଟିର ଆନୁଷ୍ଠାନିକ ଉଦ୍‌ବୋଧନୀ ସଭା ଅନୁଷ୍ଠିତ ହୋଇଥିଲା । ଭାବାଦର୍ଶ ଓ ରାଜନୀତି ଦିଗରୁ ଏହି ପାର୍ଟି ପଶ୍ଚିମ-ୟୁରୋପୀୟ ସୋସାଇ-ଡେମୋକ୍ରାଟ୍‌ମାନଙ୍କ ସହିତ ଯଥେଷ୍ଟ ଘନିଷ୍ଠ ଥିଲା ।

ଶ୍ରମଜୀବୀମାନଙ୍କର ଗଣ ଆନ୍ଦୋଳନ ସଂଗଠନ ଏବଂ ଶ୍ରମିକ ଓ କୃଷକମାନଙ୍କ ମଧ୍ୟରେ କଂଗ୍ରେସର ଦୃଢ଼ ଭିତ୍ତି ପ୍ରତିଷ୍ଠା କରିବା ଥିଲା କଂଗ୍ରେସଭୁକ୍ତ ଅନ୍ୟାନ୍ୟ ବାମପନ୍ଥୀ ଗୋଷ୍ଠୀଗୁଡ଼ିକ ଭଳି ଏହି କଂଗ୍ରେସ-ସମାଜବାଦୀମାନଙ୍କର କାର୍ଯ୍ୟ ।

ବାମପନ୍ଥୀ ଗୋଷ୍ଠୀଗୁଡ଼ିକ ମଧ୍ୟରେ ଅବିଳମ୍ବେ କାର୍ଯ୍ୟ ପଦ୍ଧତି କ୍ଷେତ୍ରରେ ଦୁଇଟି ପ୍ରଧାନ ଦୃଷ୍ଟିଭଙ୍ଗି ସ୍ପଷ୍ଟ ହୋଇ ଉଠିଥିଲା । ସଂସ୍କାରବାଦୀମାନେ ରାଜନୈତିକ ପ୍ରଶ୍ନର କ୍ଷେତ୍ରରେ କଂଗ୍ରେସର ଏକଚ୍ଛତ୍ରିଆ ଅଧିକାରକୁ ଅକ୍ଷୁଣ୍ଣ ରଖି କେବଳ ଅର୍ଥନୈତିକ ସଂଗ୍ରାମ ଚଳେଇବାକୁ ଯଥେଷ୍ଟ ମନେ କରୁଥିଲେ । ଅନ୍ୟ ଦିଗରେ, ବିପ୍ଳବୀମାନେ ବ୍ୟାପକ ଅର୍ଥନୈତିକ ଓ ରାଜନୈତିକ ସଂଗ୍ରାମକୁ ଏକତ୍ର ପରିଚାଳନା କରିବାକୁ ଚାହୁଁଥିଲେ । ତା ସତ୍ତ୍ୱେ ଗଣ ଆନ୍ଦୋଳନରେ କଂଗ୍ରେସର ନେତୃତ୍ୱ ଅବିଭକ୍ତ ରଖିବା ପକ୍ଷରେ ଉକ୍ତ ବାମପନ୍ଥୀମାନଙ୍କର ଅଭିନ୍ନ ମତ ଥିଲା । ପ୍ରସଙ୍ଗତଃ, ସ୍ମରଣୀୟ ଯେ, କଂଗ୍ରେସ-ସମାଜବାଦୀ ପାର୍ଟିର ସଂବିଧାନ ଅନୁସାରେ କେବଳ କଂଗ୍ରେସ ସଦସ୍ୟମାନେ ଏଥିରେ ଯୋଗ ଦେଇ ପାରୁଥିଲେ ।

କଂଗ୍ରେସ ମଧ୍ୟରେ ବାମପନ୍ଥୀମାନଙ୍କର ଦ୍ରୁତ ଶକ୍ତି ବୃଦ୍ଧିର ପଟ୍ଟଭୂମିରେ କଂଗ୍ରେସ ଉପରେ ନିଜର ଓ ସେମାନଙ୍କ ସମର୍ଥକମାନଙ୍କର ନିୟନ୍ତ୍ରଣ ନିଶ୍ଚିତ କରିବା ପାଇଁ ଗାନ୍ଧୀ କଂଗ୍ରେସ ମଧ୍ୟରେ ଥିବା ବିଭିନ୍ନ ସଂସ୍ଥାର କେତେକ ସାଂଗଠନିକ ପରିବର୍ତ୍ତନ ସାଧନ କରିବା ଉଦ୍ଦେଶ୍ୟରେ ପଦକ୍ଷେପ ନେବାକୁ ବାଧ୍ୟ ହୋଇଥିଲେ । ୧୯୩୪ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ବମ୍ବେରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ କଂଗ୍ରେସର ସଂବିଧାନରେ ଏକ ପରିବର୍ତ୍ତନ ଆଣିବାକୁ ପ୍ରସ୍ତାବ ଆସିଥିଲା : କଂଗ୍ରେସର କାର୍ଯ୍ୟନିର୍ବାହୀ କମିଟି (ରାଜନୈତିକ ସଂସ୍ଥା) ନିଖିଳ ଭାରତ କଂଗ୍ରେସ କମିଟି (ଦୁଇଟି ଅଧିବେଶନର ଅନ୍ତର୍ବର୍ତ୍ତୀକାଳୀନ ସର୍ବୋଚ୍ଚ ସଂସ୍ଥା) ଦ୍ୱାରା ନିର୍ବାଚିତ ହେବା ପରିବର୍ତ୍ତେ ପ୍ରତି ବର୍ଷ ନିର୍ବାଚିତ କଂଗ୍ରେସ ସଭାପତିଙ୍କ ଦ୍ୱାରା ମନୋନୀତ ହେବେ । ବମ୍ବେ ଅଧିବେଶନ ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ ରଖିବା ସଂପର୍କରେ ଗାନ୍ଧୀଙ୍କ ପ୍ରସ୍ତାବଟିକୁ ଅନୁମୋଦନ କରିବା ସାଥେ ସାଥେ କେନ୍ଦ୍ରୀୟ ଆଇନ୍ ସଭାର ନିର୍ବାଚନରେ କଂଗ୍ରେସ ଅଂଶଗ୍ରହଣ କରିବାର ପ୍ରସ୍ତାବଟିକୁ ଅନୁମୋଦନ କରିଥିଲା ।

ଏହି ପର୍ଯ୍ୟାୟରେ ଗାନ୍ଧୀ ଆନୁଷ୍ଠାନିକ ଭାବେ କଂଗ୍ରେସ ତ୍ୟାଗ କରିଥିଲେ । ଏହା ଦ୍ୱାରା ସେ ସର୍ବସାଧାରଣଙ୍କ ମଧ୍ୟରେ ତାଙ୍କ ଲୋକପ୍ରିୟତା ଏବଂ ଦଳଗତ ରାଜନୀତି ଊର୍ଦ୍ଧ୍ୱରେ ଜାତୀୟ ନେତା ରୂପେ ତାଙ୍କ ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖି ପାରିଥିଲେ । ଏହି ଭାବେ ସେତେବେଳେ ତାଙ୍କ ପକ୍ଷରେ କଂଗ୍ରେସ ମଧ୍ୟରେ ଚାଲିଥିବା ଗୁରୁତ୍ୱପୂର୍ଣ୍ଣ କ୍ରିୟାକଳାପ ପାଇଁ ଦାୟୀ ହେଲେ ନାହିଁ ଏବଂ ରଣକୌଶଳଗତ କାରଣରୁ ପଶ୍ଚାଦ୍‌ପସରଣର ଏହି ପର୍ଯ୍ୟାୟରେ ଔପନିବେଶିକମାନଙ୍କ ସହିତ ଆଂଶିକ ବୁଝାମଣାର ଦାୟିତ୍ୱ ଏଡ଼ାଇ ପାରିଥିଲେ । ଏହି ସମୟରେ ସେ ପୁନର୍ବାର ତାଙ୍କ ଗଠନମୂଳକ କର୍ମସୂଚୀରେ (ହିନ୍ଦୁ ମୁସଲମାନ ଐକ୍ୟ, ଅସ୍ପୃଶ୍ୟତା ବିରୁଦ୍ଧରେ ସଂଗ୍ରାମ, ଖଦି ଓ ସୂତା କଟା ପ୍ରତି ଉତ୍ସାହ ଦାନ ଓ କ୍ଷୁଦ୍ର ଶିଳ୍ପ ଉନ୍ନୟନ) ଆତ୍ମନିୟୋଗ କରିଥିଲେ । ନୂତନ ଭାବେ ଏହି କାର୍ଯ୍ୟକଳାପ ଫଳରେ ସହର ଓ ଗ୍ରାମ୍ୟ କାରିଗର, କ୍ଷୁଦ୍ର ଉତ୍ପାଦକ ଓ ବ୍ୟବସାୟୀ ଏବଂ ସହରର ଦରିଦ୍ର ଲୋକେ, ଅର୍ଥାତ୍, ଅସହଯୋଗ ଆନ୍ଦୋଳନର ମୂଳ ଚାଳିକା ଶକ୍ତି ମଧ୍ୟରେ ତାଙ୍କ ପ୍ରଭାବ ଆଉରି ବୃଦ୍ଧି ପାଇଥିଲା ।

# "୧୯୩୫ ଖ୍ରୀଷ୍ଟାବ୍ଦର ସଂବିଧାନ" ଏବଂ ଆଇନ୍ ସଭାର ନୂଆ ନିର୍ବାଚନ

ଭାରତୀୟ ଧନିକ ସମାଜରେ କଂଗ୍ରେସର ପ୍ରଭାବ ଅକ୍ଷୁଣ୍ଣ ରହିଥିଲା ଏବଂ ଏଥିପାଇଁ ୧୯୩୪ ଖ୍ରୀଷ୍ଟାବ୍ଦ ନଭେମ୍ବର ନିର୍ବାଚନରେ (ଭୋଟଦାତାମାନଙ୍କ ସଂଖ୍ୟା ୬ ଲକ୍ଷ ୫୦ ହଜାର) କେନ୍ଦ୍ରୀୟ ଆଇନ୍ ସଭାରେ ସେ ଅର୍ଦ୍ଧେକ ଭୋଟ ଓ ଅର୍ଦ୍ଧେକ ଆସନ ଲାଭ କରିଥିଲା ।

ଏହି ନୂତନ କେନ୍ଦ୍ରୀୟ ଆଇନ୍ ସଭାରେ କୌଣସି ପାର୍ଟି ସାଇମନ୍ କମିସନର ରିପୋର୍ଟ ଓ "ଗୋଲ ଟେବୁଲ" ବୈଠକର ସୁପାରିଶ୍ ଅନୁସାରେ ପ୍ରସ୍ତୁତ ନୂତନ ଭାରତୀୟ ଆଇନ୍‌କୁ ସମର୍ଥନ ଦେଲେ ନାହିଁ । କିନ୍ତୁ ବ୍ରିଟିଶ୍ ପାର୍ଲିଆମେଣ୍ଟ ୧୯୩୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ଏହି ନୂତନ "ସଂବିଧାନକୁ" ଅନୁମୋଦନ କରିଥିଲା ।

ନୂତନ ଆଇନ୍ ଭାରତୀୟ ପୁଞ୍ଜିପତି ଓ ଜମିଦାରମାନଙ୍କୁ ସୁବିଧା ସୁଯୋଗ ଦେଇଥିଲା । ପ୍ରାପ୍ତ ବୟସ୍କ ଜନସଂଖ୍ୟାର ୧୨ ଶତାଂଶକୁ ଭୋଟାଧିକାର ଦେଇ ନିର୍ବାଚନୀ ଏଲାକାକୁ ପ୍ରସାରିତ କରାଯାଇଥିଲା । ଅର୍ଥାତ୍, ସଂପଦ ସୀମା ଓ ଅନ୍ୟାନ୍ୟ ଯୋଗ୍ୟତା ହ୍ରାସ କରିବା ଫଳରେ ଧନିକ ଶ୍ରେଣୀର ଅଧସ୍ତନ ସ୍ତରଗୁଡ଼ିକର ଏବଂ ଶ୍ରମଜୀବୀମାନଙ୍କର କେତେକ ବର୍ଗ (ଧନୀ କୃଷକ ଏବଂ ଶ୍ରମିକମାନଙ୍କର ନିର୍ବାଚନୀ ଏଲାକାର ପ୍ରତିନିଧି ନିର୍ବାଚନରେ ଭୋଟଦାତା ନିର୍ଦ୍ଦିଷ୍ଟ ବର୍ଗର ଶ୍ରମିକ) ଭୋଟଦାନର ଅଧିକାର ପାଇଥିଲେ । ପ୍ରାଦେଶିକ ଆଇନ୍ ସଭାଗୁଡ଼ିକର କ୍ଷମତା ମଧ୍ୟ କିଛି ପରିମାଣରେ ବୃଦ୍ଧି ପାଇଥିଲା : ପ୍ରାଦେଶିକ ମନ୍ତ୍ରୀସଭା (ପୁନର୍ଗଠିତ କାର୍ଯ୍ୟକାରୀ ପରିଷଦଗୁଡ଼ିକ ବଡ଼ଲାଟ୍‌ଙ୍କ ନିୟନ୍ତ୍ରଣାଧୀନ ଥିଲା) ଏବେ ଏସବୁ ନିକଟରେ ଦାୟୀ ରହିଲା ।

ପ୍ରକୃତରେ କିନ୍ତୁ ଏହି ଆଇନ୍ ଦ୍ୱୈତ ଶାସନର ନୀତି ଅନୁସରଣ କରୁଥିଲା ଏବଂ ବସ୍ତୁତଃ ବ୍ରିଟିଶ୍ ଔପନିବେଶିକ ପ୍ରଶାସନ ହାତରେ ପୂର୍ଣ୍ଣ କ୍ଷମତା କେନ୍ଦ୍ରୀଭୂତ ହୋଇଥିଲା ।

ତା'ଛଡ଼ା ଆଇନ୍‌ଟି ନିର୍ବାଚନୀ ଏଲାକା ବ୍ୟବସ୍ଥାର ମଧ୍ୟ ବ୍ୟାପକ ପ୍ରୟୋଗକୁ ସମ୍ଭବ କରିଥିଲା ଏବଂ ଫଳତଃ, ଜାତୀୟ ଆନ୍ଦୋଳନରେ ବିଭେଦ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ରକ୍ଷଣଶୀଳମାନଙ୍କର ଶକ୍ତି ବୃଦ୍ଧି ପାଇଥିଲା । ହିନ୍ଦୁ-ମୁସଲମାନ ସଂପର୍କକୁ ଜଟିଳତର କରିବା ପାଇଁ ଏବଂ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ମଧ୍ୟରେ ସମ୍ଭାବ୍ୟ ବୁଝାମଣାକୁ ରୋକିବା ପାଇଁ ମୁସଲମାନ ଓ ଅନ୍ୟାନ୍ୟ "ସଂଖ୍ୟାଲଘୁମାନଙ୍କୁ" କେତେକ ସୁବିଧା ଦିଆଯାଇଥିଲା । ଅସ୍ପୃଶ୍ୟମାନଙ୍କ ସହ ହିନ୍ଦୁମାନେ ଶତକଡ଼ା ୭୦ ଭାଗ ଭୋଟର ଅଧିକାରୀ ହେଲେ ମଧ୍ୟ ସେମାନଙ୍କ ଆସନ ସଂଖ୍ୟା ଥିଲା ୫୫ ଶତାଂଶ । ଏହି ସମୟରେ ଦେଶୀୟ ରାଜାମାନଙ୍କର କ୍ଷମତାକୁ ମଧ୍ୟ ବୃଦ୍ଧି କରାଯାଇଥିଲା ଏବଂ କେନ୍ଦ୍ରୀୟ ଆଇନ୍ ସଭା ଓ ସଂଶ୍ଳିଷ୍ଟ ପ୍ରାଦେଶିକ ପରିଷଦରେ ସେମାନଙ୍କ ପ୍ରତିନିଧି ଥିଲେ ଯଥାକ୍ରମେ ଏକ ତୃତୀୟାଂଶ ଓ ଦୁଇ ପଞ୍ଚମାଂଶ ।

ଭବିଷ୍ୟତରେ ଦେଶକୁ ବିଭକ୍ତ କରିବାର ସମ୍ଭାବନା ଏହି ଆଇନ୍‌ର ଅନ୍ତର୍ଗତ ଥିଲେ ମଧ୍ୟ ଦେଶର ମର୍ଯ୍ୟାଦା ସଂପର୍କରେ ଏଥିରେ କିଛି ଉଲ୍ଲେଖ ନଥିଲା । ଏଥିରେ ତଥାକଥିତ "ଫେଡେରାଲ ପରିକଳ୍ପନାର" ବ୍ୟବସ୍ଥା ଥିଲା ଏବଂ ତଦନୁଯାୟୀ ଦେଶୀୟ ରାଜନ୍ୟବର୍ଗଙ୍କୁ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ରହିବାକୁ ବା ତା ସହିତ ସ୍ୱାଧୀନ ସଂପର୍କ ପ୍ରତିଷ୍ଠାର ସୁଯୋଗ ଦିଆଯାଇଥିଲା । "ଫେଡେରାଲ ପରିକଳ୍ପନା" ଦେଶରେ ପ୍ରବଳ ଘୃଣା ସୃଷ୍ଟି କରିଥିଲା ଏବଂ କୌଣସି ଦିନ ବାସ୍ତବାୟିତ ହୋଇ ନଥିଲା ।

ଭାରତର ଏହି ନୂତନ ସଂବିଧାନ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସମଗ୍ର ଦେଶରେ ପ୍ରବଳ ବିକ୍ଷୋଭ ଦେଖା ଦେଲା ଏବଂ ଏହାକୁ "ଦାସ ସମ୍ବିଧାନ" ବୋଲି ନାମିତ କରାଯାଇଥିଲା ।

୧୯୩୭ ଖ୍ରୀଷ୍ଟାବ୍ଦରେ କେନ୍ଦ୍ରୀୟ ଓ ପ୍ରାଦେଶିକ ଆଇନ୍ ସଭାଗୁଡ଼ିକରେ ନିର୍ବାଚନ ଅନୁଷ୍ଠାନର ପରିକଳ୍ପନା ଅନୁଯାୟୀ, ଏକ ଦିଗରେ, ଯେପରି ଏଥିପାଇଁ ବ୍ୟାପକ ଆୟୋଜନ ଆରମ୍ଭ ହୋଇଥିଲା, ପକ୍ଷାନ୍ତରେ, ବ୍ରିଟିଶ୍ ଔପନିବେଶିକ ନୀତିର ସମାଲୋଚନା ମଧ୍ୟ ତୀବ୍ର ହୋଇ ଉଠିଥିଲା ।

ଏହି ପ୍ରସ୍ତୁତି ପର୍ବରେ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନେ (ସେତେବେଳେ ସେମାନଙ୍କ ଐକ୍ୟ ଅକ୍ଷୁଣ୍ଣ ଥିଲା) ଏକ ଐକ୍ୟବଦ୍ଧ ସାମ୍ରାଜ୍ୟବାଦବିରୋଧୀ ସାମ୍ମୁଖ୍ୟ ପାଇଁ ବ୍ୟାପକ ଲଢ଼େଇ ଆରମ୍ଭ କରିଥିଲେ । ସପ୍ତମ କମିଣ୍ଟର୍ଣ୍ଣ କଂଗ୍ରେସରେ ଗୃହୀତ ସିଦ୍ଧାନ୍ତସମୂହ ଭାରତୀୟ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଅନୁସୃତ ନୀତି ଉପରେ ଚୂଡ଼ାନ୍ତ ପ୍ରଭାବ ବିସ୍ତାର କରିଥିଲା । ଏକ ଖୋଲା ଚିଠିରେ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ, ରଜନୀ ପାମ ଦତ୍ତ ଏବଂ ବେନ ବ୍ର୍ୟାଡ୍‌ଲି ଭାରତୀୟ କମ୍ୟୁନିଷ୍ଟମାନଙ୍କୁ କେତେକ ସୁସ୍ପଷ୍ଟ ପରାମର୍ଶ ଦେଇଥିଲେ ।

ଭାରତର କମ୍ୟୁନିଷ୍ଟ ପାର୍ଟି ତା'ର ସଦସ୍ୟମାନଙ୍କୁ ସେତେବେଳେ କଂଗ୍ରେସରେ ଯୋଗଦାନ କରିବା ପାଇଁ ଅନୁମୋଦନ କରି ଏକ ପ୍ରସ୍ତାବ ଗ୍ରହଣ କରିଥିଲା । ୧୯୩୬ ଖ୍ରୀଷ୍ଟାବ୍ଦର ମେ ମାସରେ କଂଗ୍ରେସର ଏକ ଗୋଷ୍ଠୀ ହିସାବରେ ଯୋଗଦାନର ପ୍ରସ୍ତାବ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସରେ ଗୃହୀତ ହୋଇଥିଲା ଏବଂ ନିଖିଳ ଭାରତ କୃଷକ ସଭା ମଧ୍ୟ ଅନୁରୂପ ପ୍ରସ୍ତାବ ଗ୍ରହଣ କରିଥିଲା । କିନ୍ତୁ ଏହା ଦ୍ୱାରା କଂଗ୍ରେସରେ କାଳେ କମ୍ୟୁନିଷ୍ଟମାନଙ୍କର ଏକ ଉପଦଳ ଗଠିତ ହୋଇଯିବ, ଏହି ଭୟରେ କଂଗ୍ରେସର ନେତୃବୃନ୍ଦ ଏଥି ପ୍ରତି ନାସ୍ତିବାଚକ ଦୃଷ୍ଟିଭଙ୍ଗି ପ୍ରଦର୍ଶନ କରିଥିଲେ । ସେସବୁ ସତ୍ତ୍ୱେ ଶେଷକୁ ବହୁ ସଂଖ୍ୟକ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀ କଂଗ୍ରେସକୁ ସାମ୍ରାଜ୍ୟବାଦବିରୋଧୀ ଐକ୍ୟ ସାମ୍ମୁଖ୍ୟ ରୂପେ ଗଢ଼ି ତୋଳିବାର ଆଶାରେ ବ୍ୟକ୍ତିଗତ ଭାବେ କଂଗ୍ରେସରେ ଯୋଗ ଦେଲେ ।

ଏହିସବୁ କାର୍ଯ୍ୟକଳାପ ଫଳରେ କଂଗ୍ରେସ ମଧ୍ୟରେ ଏକ ଶକ୍ତିଶାଳୀ ବାମପନ୍ଥୀ ଅଂଶର ଉନ୍ମେଷ ଘଟିଥିଲା । ୧୯୩୬ ଖ୍ରୀଷ୍ଟାବ୍ଦ ମେ ମାସରେ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ଜବାହାରଲାଲ ନେହରୁ ସଭାପତି ନିର୍ବାଚିତ ହେବା ମଧ୍ୟରେ ଏହାର ପ୍ରତିଫଳନ ଘଟିଥିଲା । ଏହା ପରେ ସେ ଯେଉଁ କାର୍ଯ୍ୟକାରୀ କମିଟି ଗଠନ କରିଥିଲେ, ସେଥିରେ ଏକ ତୃତୀୟାଂଶ ସଦସ୍ୟ ଥିଲେ ବାମପନ୍ଥୀମାନଙ୍କ ପ୍ରତିନିଧି ।

ତିରିଶ ଦଶକରେ ଜବାହାରଲାଲ ନେହରୁଙ୍କ ଦ୍ୱାରା ଅନୁସୃତ ରାଜନୈତିକ ପଦକ୍ଷେପଗୁଡ଼ିକ ଥିଲା କିଛି ପରିମାଣରେ ସ୍ୱବିରୋଧୀ ଓ ଦୋଦୁଲ୍ୟମାନ । ଏହି ପର୍ଯ୍ୟାୟରେ ତାଙ୍କ ସାମାଜିକ-ରାଜନୈତିକ ଓ ଦାର୍ଶନିକ ଦୃଷ୍ଟିଭଙ୍ଗି ମୋଟାମୋଟି ଭାବେ ପରିପକ୍ୱତା ଲାଭ କରିଥିଲା ଏବଂ ଆଂଶିକ ଭାବେ ବୈଜ୍ଞାନିକ ସମାଜବାଦ ଦ୍ୱାରା ପ୍ରଭାବିତ ହୋଇଥିଲା । ତା ସତ୍ତ୍ୱେ ନେହରୁଙ୍କ ସମାଜବାଦୀ ଧାରଣାଗୁଡ଼ିକ କେତେକ ଦାର୍ଶନିକ ରୀତି ସହିତ, ବିଶେଷତଃ, ରାଜନୈତିକ ସିଦ୍ଧାନ୍ତଗୁଡ଼ିକର ବାସ୍ତବ ପ୍ରୟୋଗ କ୍ଷେତ୍ରରେ, ସାରଗ୍ରାହୀ ଭାବେ ମିଶି ଯାଇଥିଲା ଏବଂ ଏ କ୍ଷେତ୍ରରେ ସେ ଥିଲେ ଗାନ୍ଧୀଙ୍କ ଅନୁଗାମୀ ।

ସୁଭାଷଚନ୍ଦ୍ର ବସୁଙ୍କ ସମେତ ବହୁ ବାମପନ୍ଥୀ କଂଗ୍ରେସ ନେତାଙ୍କ ଭଳି ନେହରୁ ମଧ୍ୟ ସୋଭିଏତ୍ ୟୁନିଅନ୍‌ରେ ଅର୍ଜିତ ସମାଜବାଦୀ ନିର୍ମାଣର ସାଫଲ୍ୟ ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ ।

ସେମାନେ ପ୍ରକାଶ୍ୟରେ ସୋଭିଏତ୍ ୟୁନିଅନ୍ ପାଇଁ ସେମାନଙ୍କ ସହାନୁଭୂତି ପ୍ରକାଶ କରୁଥିଲେ ଏବଂ ସ୍ପେନ୍‌ର ବୀର ଜନସାଧାରଣଙ୍କୁ, ଚୀନ୍ ଓ ଆବିସିନିଆର ସ୍ୱାଧୀନତାକାମୀ ଯୋଦ୍ଧାମାନଙ୍କୁ ସମର୍ଥନ ଜଣାଉଥିଲେ ।

କଂଗ୍ରେସର ବାମପନ୍ଥୀ ଅଂଶର ଦୁଇ ପ୍ରଧାନ ନେତାଙ୍କର ସେଇ ବିଂଶ ଦଶକର ଶେଷ ଓ ତିରିଶ ଦଶକର ପ୍ରାରମ୍ଭର ମତାନୈକ୍ୟ ସେପର୍ଯ୍ୟନ୍ତ ଅତୁଟ ରହିଥିଲା । ସୁଭାଷଚନ୍ଦ୍ର ବସୁ ବଙ୍ଗଳାର ପ୍ରାଦେଶିକ ସଂଗଠନକୁ କେନ୍ଦ୍ର କରି କଂଗ୍ରେସ ମଧ୍ୟରେ ତାଙ୍କ ବ୍ୟକ୍ତିଗତ ପ୍ରଭାବ ବୃଦ୍ଧି ପାଇଁ ଯଥେଷ୍ଟ ମନୋଯୋଗ ଦେଉଥିଲେ ଏବଂ ଫଳରେ, ନେତୃତ୍ୱ ଗଠନକୁ ଓ ପାର୍ଟି ନୀତିକୁ ବଦଳାଇ ପାରୁଥିଲେ । ନେହରୁ ମୁଖ୍ୟତଃ ଅନୁସରଣ କରୁଥିଲେ ଗାନ୍ଧୀଙ୍କ ଦ୍ୱାରା ପ୍ରଣୀତ ପାର୍ଟି ନୀତି । ତାଙ୍କର ଏହି କାର୍ଯ୍ୟ ପଦ୍ଧତି ଫଳରେ ସେ କଂଗ୍ରେସ ନେତାମାନଙ୍କର ଦୃଢ଼ ସମର୍ଥନ ସଂପର୍କରେ ନିଶ୍ଚିତ ହେଉଥିଲେ । ତିରିଶ ଦଶକର ମଧ୍ୟ ଏବଂ ଶେଷ ଭାଗରେ ତାଙ୍କ ବିଦେଶ ଭ୍ରମଣ କାଳରେ କଂଗ୍ରେସ ଓ ବିଭିନ୍ନ ପ୍ରଗତିଶୀଳ ଆନ୍ଦୋଳନ ଓ ସଂଗଠନ ମଧ୍ୟରେ ଆନ୍ତର୍ଜାତିକ ବୁଝାମଣା ବିସ୍ତାର କରିବା ଥିଲା ନେହରୁଙ୍କ କ୍ରିୟାକଳାପର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ନେହରୁ ଭାରତୀୟ ଜାତୀୟତାବାଦୀମାନଙ୍କ ପକ୍ଷରୁ ବୈଦେଶିକ ଯୋଗାଯୋଗ ସଂପ୍ରସାରଣକୁ ଜାତୀୟ-ମୁକ୍ତି ଆନ୍ଦୋଳନର ବିକାଶ ପକ୍ଷରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭାବୁଥିଲେ ।

ନିର୍ବାଚନ ପ୍ରଶ୍ନର ମାଧ୍ୟମରେ "ଦାସ ସମ୍ବିଧାନ" ବିରୁଦ୍ଧରେ ପ୍ରତିବାଦ କରିବାର ସୁଯୋଗ ଗ୍ରହଣ କରିବା ପାଇଁ କଂଗ୍ରେସକୁ ନିର୍ବାଚନରେ ଅଂଶଗ୍ରହଣ ନିମିତ୍ତ ଅନୁମତି ଦେଇ ଲକ୍ଷ୍ନୌ ଅଧିବେଶନରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

ସେଇ ବର୍ଷ ଡିସେମ୍ବର ମାସରେ କଂଗ୍ରେସର ଫୈଜପୁର ଅଧିବେଶନରେ କୃଷକମାନଙ୍କ ଦାବି ସମ୍ବଳିତ ସନନ୍ଦର ବିକଳ୍ପ ହିସାବରେ "କୃଷି ସଂକ୍ରାନ୍ତ ପ୍ରଶ୍ନ ସହିତ ସଂଶ୍ଳିଷ୍ଟ ପ୍ରାଥମିକ ଦାବିଗୁଡ଼ିକ" ଉପସ୍ଥାପିତ ହୋଇଥିଲା । ପ୍ରସ୍ତାବଟିରେ କଂଗ୍ରେସର ନେତୃତ୍ୱରେ ଖଜଣା, ମହାଜନମାନଙ୍କୁ ଦେୟ ଋଣର ସୁଧ ଓ ଭୂମି କର କମାଇବାକୁ ଭିତ୍ତି କରି କୃଷକ ଆନ୍ଦୋଳନକୁ ବ୍ୟାପକ କରିବାର ପ୍ରଶ୍ନଟି ବିବେଚିତ ହୋଇଥିଲା । କୃଷକ ସଭାର ନେତୃତ୍ୱ ଲାଭ ପାଇଁ କଂଗ୍ରେସ ପକ୍ଷରେ କମ୍ୟୁନିଷ୍ଟମାନଙ୍କ ସହିତ ପ୍ରତିଯୋଗିତା କରିବାର ଦୃଢ଼ ସଂକଳ୍ପ ଏହି ଦଲିଲଟି ଅନୁମୋଦନ କରିବା ଦ୍ୱାରା ସ୍ପଷ୍ଟ ହୋଇ ଉଠିଥିଲା ।

ଇତି ମଧ୍ୟରେ କ୍ରମଶଃ ସମାଜର ବିଭିନ୍ନ ସ୍ତର ଓ ବର୍ଗର ଲୋକେ ସାଧାରଣ ଗଣତାନ୍ତ୍ରିକ ଆନ୍ଦୋଳନରେ ଯୋଗ ଦେବାକୁ ଆରମ୍ଭ କରିଥିଲେ । ୧୯୩୬ ଖ୍ରୀଷ୍ଟାବ୍ଦରେ "ନିଖିଳ ଭାରତ ଛାତ୍ର ସଂଘ", "ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମେଳନ" ଓ "ନିଖିଳ ଭାରତ ପ୍ରଗତିଶୀଳ ଲେଖକ ସଂଘ" ଗଠିତ ହୋଇଥିଲା । ଏହିସବୁ ସଂଗଠନରେ କଂଗ୍ରେସର ସଦସ୍ୟବୃନ୍ଦଙ୍କ ସମେତ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନେ ମଧ୍ୟ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସାମ୍ରାଜ୍ୟବାଦବିରୋଧୀ ଜାତୀୟ ସାମ୍ମୁଖ୍ୟ ଗଠନ ଦିଗରେ ଅନୁକୂଳ ପରିସ୍ଥିତି ସୃଷ୍ଟି ପାଇଁ ସେମାନେ ସହାୟକ ହୋଇଥିଲେ । ନିର୍ବାଚନରେ ଶ୍ରମିକମାନଙ୍କର ନିର୍ବାଚନୀ ଏଲାକାରେ (ମୋଟ ଆସନର ଶତକଡ଼ା ତିନି ଭାଗ) ନିଜର ପ୍ରାର୍ଥୀମାନଙ୍କୁ ମନୋନୟନ କରିବାରେ ସୀମିତ ରଖି କମ୍ୟୁନିଷ୍ଟମାନେ ସେତେବେଳେ କଂଗ୍ରେସକୁ ସମର୍ଥନ ଦେଇଥିଲେ ।

ତିରିଶ ଦଶକର ମଧ୍ୟଭାଗରେ ଭାରତର ପାର୍ଟିଗତ-ରାଜନୈତିକ ଗଢ଼ଣ ପାଞ୍ଚ ବର୍ଷ ଆଗ ତୁଳନାରେ ଅନେକ ଜଟିଳ ହୋଇ ଉଠିଥିଲା । କଂଗ୍ରେସ, ଲୀଗ୍ ଏବଂ ହିନ୍ଦୁ ସଂପ୍ରଦାୟର ପ୍ରତିନିଧି ରୂପେ ହିନ୍ଦୁ ମହାସଭା ଛଡ଼ା ସେତେବେଳେ କେତେକ ପ୍ରଦେଶରେ ସ୍ଥାନୀୟ ବୁର୍ଜୁଆ ଓ ପେଟି-ବୁର୍ଜୁଆ ପାର୍ଟିସମୂହ ମଧ୍ୟ ସକ୍ରିୟ ହୋଇ ଉଠିଥିଲେ ଏବଂ କଂଗ୍ରେସର ବିରୋଧିତା କରୁଥିଲେ । ଏସବୁ ମଧ୍ୟରେ ଉଲ୍ଲେଖଯୋଗ୍ୟ ଥିଲେ : ପଞ୍ଜାବର ୟୁନିଅନ୍ ପାର୍ଟି, ବଙ୍ଗଳାର ପ୍ରଜା କୃଷକ ସମିତି, ଯୁକ୍ତ ପ୍ରଦେଶର ଜାତୀୟ କୃଷକ ପାର୍ଟି, ବମ୍ବେ ଆଉ ମଧ୍ୟ ପ୍ରଦେଶରେ ସ୍ୱାଧୀନ ଶ୍ରମିକ ପାର୍ଟି, ମାଡ୍ରାଜର ଜଷ୍ଟିସ୍ ପାର୍ଟି ଓ ଓଡ଼ିଶାର ଆଡ୍‌ଭାନସ ପାର୍ଟି ।

ଏହିସବୁ ପାର୍ଟିରେ କେବଳ ପେଟି-ବୁର୍ଜୁଆ ଗୋଷ୍ଠୀଗୁଡ଼ିକ ନୁହନ୍ତି, ସାମନ୍ତ ଭୂସ୍ୱାମୀ ଏବଂ ଜମିଦାରମାନଙ୍କର ଚରମ ପ୍ରତିକ୍ରିୟାଶୀଳ ସ୍ତରଗୁଡ଼ିକ ମଧ୍ୟ ଯୋଗ ଦେଇଥିଲେ । ଏମାନଙ୍କ ମଧ୍ୟରୁ କେତେକଙ୍କର କାର୍ଯ୍ୟକଳାପ ଥିଲା ଅତ୍ୟନ୍ତ ସାଂପ୍ରଦାୟିକ ।

ଏସବୁର ପ୍ରଭାବ, ଅବଶ୍ୟ, ଖୁବ୍ ସୀମିତ ଥିଲା ଏବଂ ହିନ୍ଦୁ ମହାସଭା ଓ ମୁସଲିମ୍ ଲୀଗ୍ ଥିଲେ କଂଗ୍ରେସର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ।

ମୁସଲିମ୍ ଲୀଗ୍ ମଧ୍ୟରେ ମହମ୍ମଦ୍ ଅଲୀ ଜିନ୍ନାଙ୍କ ନେତୃତ୍ୱରେ ଅଧିକତର ପ୍ରଗତିଶୀଳ ଏକ ଅଂଶ ଗଢ଼ି ଉଠିଥିଲା । ଇତିପୂର୍ବରୁ ସାମ୍ରାଜ୍ୟବାଦବିରୋଧୀ ବ୍ୟାପକ ଗଣ ଆନ୍ଦୋଳନକୁ ପ୍ରୋତ୍ସାହିତ କରିବାରେ ଅନାଗ୍ରହୀ ଏହି ଲୀଗ୍ ୧୯୩୭ ଖ୍ରୀଷ୍ଟାବ୍ଦର ଲକ୍ଷ୍ନୌ ଅଧିବେଶନରେ ଭାରତର ପୂର୍ଣ୍ଣ ସ୍ୱାଧୀନତାକୁ ନିଜର ଲକ୍ଷ୍ୟ ରୂପେ ଘୋଷଣା କରିଥିଲା । କିନ୍ତୁ ସ୍ୱାଧୀନତା ଲାଭ ପରେ ଦେଶରେ ସ୍ୱାଧୀନ ଗଣତାନ୍ତ୍ରିକ ରାଜ୍ୟସମୂହକୁ ନେଇ ଏକ ଫେଡେରେସନ ଗଠନ କରିବାର ପକ୍ଷପାତୀ ଥିଲା ଏହି ଲୀଗ୍ । ମୁସଲିମ୍ ଲୀଗ୍‌ର ଏହି ନୂତନ କର୍ମସୂଚୀ ପୂର୍ବତନ କଂଗ୍ରେସ ସମର୍ଥକ ବହୁ ମୁସଲମାନମାନଙ୍କ ସମର୍ଥନ ଲାଭ କରିଥିଲା । ସ୍ୱାଧୀନ ଭାରତର ସଂଘତାନ୍ତ୍ରିକ ଗଢ଼ଣ ପକ୍ଷରେ ଏହି ଓକାଲତି କରିବାଟି ଲୀଗ୍‌ର ଧର୍ମୀୟ, ସାଂପ୍ରଦାୟିକ କ୍ରିୟାକଳାପ ସହିତ ସାମଞ୍ଜସ୍ୟପୂର୍ଣ୍ଣ ଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଲୀଗ୍ ନିଜକୁ ଭାରତର ମୁସଲମାନମାନଙ୍କ ସ୍ୱାର୍ଥର ଏକମାତ୍ର ଦାବିଦାର ବୋଲି ମନେ କରୁଥିଲା ଏବଂ ସେତେବେଳେ ଭ୍ରୂଣ ଅବସ୍ଥାରେ ଥିବା ପାକିସ୍ତାନ ନାମକ ସ୍ୱାଧୀନ ରାଷ୍ଟ୍ର ଗଠନର ଭାବୀ ଦାବି ଉତ୍‌ଥାପନ କରିବାକୁ ସ୍ୱପ୍ନ ଦେଖୁଥିଲା ।

## ପ୍ରାଦେଶିକ ସରକାରଗୁଡ଼ିକରେ କଂଗ୍ରେସ ଓ ଲୀଗ୍ । ରାଜନୈତିକ ସଂଗ୍ରାମରେ ନୂତନ ତୀବ୍ରତା

ନିର୍ବାଚନରେ ଭାରତୀୟ କଂଗ୍ରେସ ଦଶଟି ପଦେଶ (ପଞ୍ଜାବ ଓ ବଙ୍ଗଳା ଛଡ଼ା) ମଧ୍ୟରୁ ଆଠଟିରେ ଜୟ ଲାଭ କରି ସେସବୁରେ ସରକାର ଗଠନ କରିଥିଲା । ୧୯୩୮ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ଉଦ୍ୟୋଗରେ ଯଥାକ୍ରମେ ଆସାମ ଓ ସିନ୍ଧୁ ପ୍ରଦେଶରେ ମିଳିତ ସରକାର ଗଠିତ ହୋଇଥିଲା ।

କଂଗ୍ରେସ ସରକାରଗୁଡ଼ିକ ସୁବିଧାଭୋଗୀ ରଇତ ଚାଷୀମାନଙ୍କ ସଂଖ୍ୟା ବୃଦ୍ଧି ପାଇଁ ନୂତନ କୃଷି ଆଇନ୍ ଚାଲୁ କରିବାକୁ ଉଦ୍ୟୋଗ ନେଇଥିଲେ, ଖଜଣା ହାରର ସୀମା ନିର୍ଦ୍ଧାରଣ ସମେତ

ମହାଜନମାନଙ୍କ ଋଣ ଶୋଧକୁ ସ୍ଥଗିତ ରଖିବା ଆଦି ବ୍ୟବସ୍ଥା ଗ୍ରହଣ କରିଥିଲେ । ଏହିସବୁ ବ୍ୟବସ୍ଥା କେବଳ ଶ୍ରମଜୀବୀ କୃଷକମାନଙ୍କ ପାଇଁ ନୁହେଁ, ଗ୍ରାମାଞ୍ଚଳର ବୁର୍ଜୁଆମାନଙ୍କ ସ୍ୱାର୍ଥାନୁକୂଳ ଥିଲା ।

ଏହି ସମୟରେ କଂଗ୍ରେସ ସରକାର "ବମ୍ବେରେ ଶିଳ୍ପ ବିରୋଧ ଆଇନ୍" ସମେତ ବିପ୍ଳବୀ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ଅଧିକାର ସଂକୋଚକ, ଆଦି ଅନେକ ଶ୍ରମ ଆଇନ୍ ତିଆରି କରିଥିଲେ ।

ଶ୍ରମିକ ଶ୍ରେଣୀ ସଙ୍ଗେ ସଙ୍ଗେ ଧର୍ମଘଟ ଓ ବିକ୍ଷୋଭ ମାଧ୍ୟମରେ କଂଗ୍ରେସର ଏହି ଶ୍ରମବିରୋଧୀ ନୀତି ବିରୁଦ୍ଧରେ ପ୍ରତିବାଦ ଜଣାଇଥିଲା ।

ଶ୍ରମିକ ଶ୍ରେଣୀର ସଂଗଠିତ କାର୍ଯ୍ୟକଳାପ ଏହା ପରେ କ୍ରମଶଃ ରାଜନୈତିକ ଚରିତ୍ର ଲାଭ କରିଥିଲା । ୧୯୩୮ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ମିରଟ କେଶର ବାର୍ଷିକୀ ଉଦ୍‌ଯାପନ ଉପଲକ୍ଷେ "ଭାରତର କମ୍ୟୁନିଷ୍ଟ ପାର୍ଟି ଦିବସ" ପାଳିତ ହୋଇଥିଲା । ମେ ମାସରେ "ଶୋଲାପୁର ବନ୍ଦୀ ମୁକ୍ତି ଦିବସ" (୧୯୩୦ ଖ୍ରୀଷ୍ଟାବ୍ଦରେ ଶୋଲାପୁର ଅଭ୍ୟୁତ୍‌ଥାନ ପାଇଁ କାରାଦଣ୍ଡ ଭୋଗ କରୁଥିବା) ପାଳନ କରାଯାଇଥିଲା । ସର୍ବହରାମାନଙ୍କ ପକ୍ଷରୁ ଏହିସବୁ ବୈପ୍ଳବିକ କାର୍ଯ୍ୟାନୁଷ୍ଠାନ ଥିଲା ଶ୍ରମିକ ଶ୍ରେଣୀର ବର୍ଦ୍ଧମାନ ରାଜନୈତିକ ସଚେତନତାର ଏକ ଗୁରୁତ୍ୱପୂର୍ଣ୍ଣ ପରିପ୍ରକାଶ । ୧୯୩୯ ଖ୍ରୀଷ୍ଟାବ୍ଦରେ ସାମ୍ରାଜ୍ୟବାଦବିରୋଧୀ ଧ୍ୱନି ସହ ମେ ଦିବସ ଉଦ୍‌ଯାପିତ ହୋଇଥିଲା ଏବଂ ଦେଶ ସାରା ଏକ ମିଳିତ ସାମ୍ମୁଖ୍ୟ ଗଠନ ପାଇଁ ଦାବି କରାଯାଇଥିଲା । ସେତେବେଳର ମେ ଦିବସର ସଭା ଓ ଶୋଭାଯାତ୍ରା ମଧ୍ୟରେ ସ୍ପଷ୍ଟ ହୋଇ ଉଠିଥିଲା ଭାରତୀୟ ଶ୍ରମିକମାନଙ୍କର ବିକଶିତ ଶ୍ରେଣୀ ସଂହତିର ପରିଚୟ । ବ୍ରିଟିଶ୍ ଶାସିତ ଭାରତର ସମସ୍ତ ଶିଳ୍ପ କେନ୍ଦ୍ର ଓ ଦେଶୀୟ ରାଜ୍ୟଗୁଡ଼ିକର କେତେକ ସହରରେ ଅନୁରୂପ ସଭା ଓ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥିଲା ।

୧୯୩୭ ମସିହାର ନିର୍ବାଚନ ପରେ ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତିର ପରିବର୍ତ୍ତନ ତତ୍କାଳୀନ କୃଷକ ଆନ୍ଦୋଳନ ରୂପେ ପ୍ରକଟିତ ହୋଇଥିଲା । କୃଷକମାନଙ୍କ କ୍ରିୟାକଳାପର ପ୍ରଧାନ ଧରଣ ଥିଲା କୃଷକ ସଭା ଉଦ୍ୟୋଗରେ ସଂଘଟିତ ବ୍ୟାପକ ପ୍ରଚାରାଭିଯାନ । ଏସବୁ ମାଧ୍ୟମରେ କର୍ମୀମାନେ ସଭାର ନୀତି ବ୍ୟାଖ୍ୟା କରୁଥିଲେ, ତା'ର ଭିତ୍ତିକୁ ପ୍ରସାର କରିବା ପାଇଁ ଉଦ୍ୟମ କରୁଥିଲେ, କୃଷି ସଂସ୍କାର (ପ୍ରଜା ସ୍ୱତ୍ୱ ଆଇନ୍ ପରିବର୍ତ୍ତନ) ପାଇଁ ସ୍ୱାକ୍ଷର ସଂଗ୍ରହ କରୁଥିଲେ ଏବଂ ଶେଷରେ ଏହି ଦରଖାସ୍ତ ପ୍ରାଦେଶିକ ସରକାରର କଂଗ୍ରେସୀ ମନ୍ତ୍ରୀମାନଙ୍କ ନିକଟରେ ପେଶ୍ କରାଯାଉଥିଲା । ୧୯୩୭-୧୯୩୮ ଖୀଷ୍ଟାବ୍ଦରେ ଯୁକ୍ତ ପ୍ରଦେଶ, ବିହାର, ଆନ୍ଧ୍ର ଓ ଦେଶର ଅନ୍ୟାନ୍ୟ ଅଞ୍ଚଳରେ, ବସ୍ତୁତଃ ନିଖିଳ ଭାରତ କୃଷକ ସଭାର ସକ୍ରିୟ ଶାଖାଗୁଡ଼ିକର ପ୍ରଭାବାଧୀନ ଜିଲ୍ଲାଗୁଡ଼ିକରେ ବ୍ୟାପକ ଶୋଭାଯାତ୍ରା ଓ କୃଷକ ସମାବେଶ ଅନୁଷ୍ଠିତ ହୋଇଥିଲା ।

କୃଷକ ସଭାର ପ୍ରଭାବ ଦ୍ରୁତ ବୃଦ୍ଧି ପାଉଥିଲା । ୧୯୩୮ ଓ ୧୯୩୯ ଖ୍ରୀଷ୍ଟାବ୍ଦରେ ଏହାର ସଦସ୍ୟ ସଂଖ୍ୟା ଯଥାକ୍ରମେ ୬ ଲକ୍ଷ ଓ ୮ ଲକ୍ଷରେ ପହଞ୍ଚିଥିଲା ।

କଂଗ୍ରେସ ମନ୍ତ୍ରୀ ଏବଂ ଆଇନ୍ ସଭା ଉପରେ ସଂଗଠିତ କୃଷକ ଆନ୍ଦୋଳନର ଚାପ ଫଳରେ ପୂର୍ବୋକ୍ତ କୃଷି ଆଇନ୍‌ଗୁଡ଼ିକ ପ୍ରବର୍ତ୍ତିତ ହୋଇଥିଲା ।

ଶ୍ରମିକ ଏବଂ କୃଷକ ସଂଗଠନଗୁଡ଼ିକର ସଫଳ ବିକାଶ ଫଳରେ ଶ୍ରମିକ ଏବଂ କୃଷକ ସଂହତି ପକ୍ଷରେ ଅନୁକୂଳ ପରିସ୍ଥିତି ଦେଖା ଦେଇଥିଲା । ୧୯୩୭ ଓ ୧୯୩୮ ଖ୍ରୀଷ୍ଟାବ୍ଦରେ ବଙ୍ଗଳା ଏବଂ

ମାନ୍ଦ୍ରାଜର କୃଷକ ସଂଗଠନଗୁଡ଼ିକର ଉଦ୍ୟୋଗରେ ଧର୍ମଘଟକାରୀ ଶ୍ରମିକମାନଙ୍କ ସପକ୍ଷରେ ସଭା ଓ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥିଲା । ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ କୃଷକମାନଙ୍କ ପ୍ରତିନିଧିଦଳଗୁଡ଼ିକୁ ପ୍ରାଦେଶିକ ରାଜଧାନୀ ପର୍ଯ୍ୟନ୍ତ ପଦଯାତ୍ରା କରି ଆସିବାରେ ସହାୟତା ଦେଇଥିଲେ ।

ଶ୍ରମିକ ଏବଂ କୃଷକ ସଂଗଠନଗୁଡ଼ିକର କାର୍ଯ୍ୟକଳାପ ସମନ୍ୱୟର ବ୍ୟବସ୍ଥା ଦେଶ ସାରା କ୍ରମଶଃ ଦୃଢ଼ ହୋଇ ଉଠିଥିଲା । ୧୯୩୮ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ଦିଲ୍ଲୀରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଅଧିବେଶନରେ ଶ୍ରମିକମାନଙ୍କ ଦାବି ସନନ୍ଦରେ କୃଷି ସମସ୍ୟାର ପ୍ରଶ୍ନ ମଧ୍ୟ ଅନ୍ତର୍ଭୁକ୍ତ ହୋଇଥିଲା । ୧୯୩୮ ଖ୍ରୀଷ୍ଟାବ୍ଦରେ ଓ ୧୯୩୯ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅନ୍ୟତମ ନେତା, କମ୍ୟୁନିଷ୍ଟ ମୀରାଜକର କୃଷକ ସଭାର ନେତା ଏସ୍. ଏସ୍. ସରସ୍ୱତୀଙ୍କ ସହିତ ଏକତ୍ର ମହାରାଷ୍ଟ୍ର ମଧ୍ୟ ଦେଇ ଏକ ପ୍ରଚାରାଭିଯାନ ପରିଚାଳନା କରିଥିଲେ ଏବଂ ଶ୍ରମିକ ଓ କୃଷକ ସଭାରେ ଭାଷଣ ଦେଇଥିଲେ । ଶେଷକୁ ୧୯୩୯, ଜୁଲାଇ ମାସରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଓ ନିଖିଳ ଭାରତ କୃଷକ ସଭାର ପ୍ରତିନିଧିମାନଙ୍କୁ ନେଇ ଏକ ସମନ୍ୱୟ କମିଟି ଗଠିତ ହୋଇଥିଲା । ଭାରତର ଶ୍ରମିକ ଶ୍ରେଣୀ ଓ କୃଷକ ସମାଜର ସଂହତି ଏହି ଭାବେ ଏକ ରାଜନୈତିକ ବାସ୍ତବତାର ରୂପ ଗ୍ରହଣ କରିଥିଲା ।

ଯୁଦ୍ଧ ପୂର୍ବ ବର୍ଷଗୁଡ଼ିକରେ ଭାରତର କମ୍ୟୁନିଷ୍ଟ ପାର୍ଟିର ଅବସ୍ଥାନ ଯଥେଷ୍ଟ ଶକ୍ତିଶାଳୀ ହୋଇ ଉଠିଥିଲା ଏବଂ ଆତ୍ମଗୋପନ ପରିସ୍ଥିତିରେ ନିର୍ମମ ନିର୍ଯ୍ୟାତନ ମଧ୍ୟରେ ପାର୍ଟିକୁ ସେତେବେଳେ କଠିଣ ସଂଗ୍ରାମ ଚଳେଇବାକୁ ପଡ଼ିଥିଲା । ବୈଜ୍ଞାନିକ ସମାଜବାଦର ଧାରଣାବଳୀ ଓ ଏଥି ସଙ୍ଗେ ସଙ୍ଗେ ପାର୍ଟିର ନୀତିକୁ ଜନପ୍ରିୟ କରିବାରେ କମ୍ୟୁନିଷ୍ଟ ସଂବାଦପତ୍ରଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ଏହି ସମୟରେ କମ୍ୟୁନିଷ୍ଟ ପୁସ୍ତିକା ଓ ପ୍ରଚାରପତ୍ର ବେଆଇନ୍ ଭାବେ ପ୍ରକାଶିତ ହେଉଥିଲା । କମ୍ୟୁନିଷ୍ଟମାନେ ଆଇନସମ୍ମତ ପତ୍ରପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ । ଏ କ୍ଷେତ୍ରରେ ୧୯୩୮-୧୯୩୯ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ସାପ୍ତାହିକ "ନେସନାଲ ଫ୍ରଣ୍ଟ" ଖୁବ୍ ଫଳପ୍ରସୂ ହୋଇଥିଲା । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ଟ୍ରେଡ୍‌ୟୁନିଅନ୍ ଓ କୃଷକ ସଂଗଠନଗୁଡ଼ିକ ମଧ୍ୟରେ ନିଜର ଅବସ୍ଥାନକୁ ଦୃଢ଼ କରିଥିଲା ଏବଂ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ସହିତ ସଫଳ ବୁଝାମଣା ବଜାଏ ରଖିଥିଲା । ଏହି ସହଯୋଗିତାର ଦୃଷ୍ଟାନ୍ତ ହିସାବରେ ଇନ୍ଦୁଲାଲ ଯାଜ୍ଞିକ ଏବଂ ଏସ୍. ଏସ୍. ସରସ୍ୱତୀଙ୍କ କାର୍ଯ୍ୟକଳାପ ଉଲ୍ଲେଖଯୋଗ୍ୟ । ଏହି ସମୟରେ କମ୍ୟୁନିଷ୍ଟ ନେତୃତ୍ୱର କୋଷ କେନ୍ଦ୍ରଟି ଗଢ଼ି ଉଠିଥିଲା ଏବଂ ଏଥିରେ ଥିଲେ ଗଙ୍ଗାଧର ଅଧିକାରୀ, ଘାଟେ, ମୀରାଜକର, ଡାଙ୍ଗେ, ମୁଜଫ୍‌ଫର ଆହ୍ମଦ ଓ ଯୋଶୀଙ୍କ ଭଳି ବ୍ୟକ୍ତିମାନେ । ଗାନ୍ଧୀବାଦ ବିରୁଦ୍ଧରେ, କଂଗ୍ରେସ ସମାଜବାଦୀମାନଙ୍କର ଦକ୍ଷିଣପନ୍ଥୀମାନଙ୍କ ସମାଜବାଦୀ ତତ୍ତ୍ୱ ବିରୁଦ୍ଧରେ ଓ ମାନବେନ୍ଦ୍ରନାଥ ରାୟଙ୍କ ପେଟି-ବୁର୍ଜୁଆ ସଂକୀର୍ଣ୍ଣତାବାଦୀ ଭାବାଦର୍ଶ ବିରୁଦ୍ଧରେ ସଂଗ୍ରାମ ମଧ୍ୟ ଦେଇ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନ ଶକ୍ତିଶାଳୀ ହୋଇ ଉଠିଥିଲା ।

ଏହି ଘଟଣା ପ୍ରବାହ ଜାତୀୟ କଂଗ୍ରେସ ନେତୃବୃନ୍ଦଙ୍କ ମଧ୍ୟରେ ଯଥେଷ୍ଟ ଆଶଙ୍କା ସଞ୍ଚାର କରିଥିଲା । କେତେକ ସ୍ଥାନରେ (ଯଥା, ବିହାର) କଂଗ୍ରେସର ରାଜନୈତିକ କର୍ମୀମାନେ କୃଷକ ଆନ୍ଦୋଳନରେ ବିଭେଦ ସୃଷ୍ଟି କରିବାକୁ ପ୍ରୟାସ କରିଥିଲେ ଏବଂ ଅନ୍ୟତ୍ର (ଯଥା, ଯୁକ୍ତ ପ୍ରଦେଶ) କୃଷକ ସଭାର ବିକଳ୍ପ ସଂଗଠନ ଗଢ଼ିବାକୁ ଚେଷ୍ଟା କରିଥିଲେ । ୧୯୩୮ ଖ୍ରୀଷ୍ଟାବ୍ଦର ଜାନୁଆରୀ

ମାସରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବିହାର ପାର୍ଟି ସଂଗଠନ କର୍ତ୍ତୃକ କଂଗ୍ରେସ ସଦସ୍ୟମାନଙ୍କ ପକ୍ଷରେ କୃଷକ ସଭାରେ ଯୋଗଦାନ ବନ୍ଦ କରିବା ନିମିତ୍ତ ପ୍ରସ୍ତାବଟିକୁ ଅନୁମୋଦନ କରିଥିଲେ । କିନ୍ତୁ ଜନମତ ଚାପରେ ଶେଷକୁ ଫେବୃଆରୀ ଅଧିବେଶନରେ କଂଗ୍ରେସ ଏହି ସିଦ୍ଧାନ୍ତଟିକୁ ପ୍ରତ୍ୟାହାର କରି ନେଇଥିଲେ ।

କଂଗ୍ରେସକୁ ଏକ ସାମ୍ମୁଖ୍ୟ ରୂପେ ଗଢ଼ି ତୋଳିବା ଉଦ୍ଦେଶ୍ୟରେ କମ୍ୟୁନିଷ୍ଟ ଓ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କର ସମସ୍ତ ଚେଷ୍ଟା କଂଗ୍ରେସ ନେତାମାନଙ୍କ ପକ୍ଷରୁ ପ୍ରବଳ ବାଧାର ସମ୍ମୁଖୀନ ହୋଇଥିଲା । କାରଣ ଏହି ନେତାମାନେ ସ୍ୱାଧୀନତା ଆନ୍ଦୋଳନ ଉପରେ ସେମାନଙ୍କର ଏକଚାଟିଆ ଅଧିକାର ବଜାଏ ରକ୍ଷିବାକୁ ଦୃଢ଼ ପ୍ରତିଜ୍ଞ ଥିଲେ ।*

ଗୋଟିଏ ଦିଗରେ, କଂଗ୍ରେସ ବାହାରେ କ୍ରମାଗତ ବାମପନ୍ଥୀମାନଙ୍କର ଶକ୍ତି ବୃଦ୍ଧି ଏବଂ ସଂଗଠିତ ଶ୍ରମିକ ଓ କୃଷକ ଆନ୍ଦୋଳନର ଅଧିକତର ଫଳପ୍ରଦ ସଂଗ୍ରାମ ଏବଂ, ଅନ୍ୟ ଦିଗରେ, ପ୍ରାଦେଶିକ ସରକାର ଓ ଆଇନ୍ ସଭା ମାଧ୍ୟମରେ ଔପନିବେଶିକ ପ୍ରଶାସନରେ କଂଗ୍ରେସ ସଦସ୍ୟମାନଙ୍କର ଅଂଶଗ୍ରହଣ କଂଗ୍ରେସ ମଧ୍ୟରେ ରାଜନୈତିକ ବିଭେଦ ସୃଷ୍ଟି କରିବାର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରୁଥିଲା ।

## ଜାତୀୟ କଂଗ୍ରେସରେ ମତାନୈକ୍ୟ ବୃଦ୍ଧି

ମୁକ୍ତି ସଂଗ୍ରାମର କାର୍ଯ୍ୟକଳାପର ବ୍ୟାପକ ଭାବେ ବିସ୍ତାର ଏବଂ ତା'ର ଗଭୀର ଦୃଢ଼ୀକରଣ ଆରମ୍ଭ ହେବା ଫଳରେ କଂଗ୍ରେସ ମଧ୍ୟରେ କେବଳ ବିବିଧ ଧରଣର ସାମାଜିକ ଓ ଶ୍ରେଣୀଗତ ଆଧେୟସଂପନ୍ନ ସାମାଜିକ-ରାଜନୈତିକ ଶକ୍ତି ନୁହେଁ, ବିଭିନ୍ନ ପ୍ରକାରର ସ୍ଥାନୀୟ ସ୍ୱାର୍ଥକୁ ପ୍ରକାଶ କରୁଥିବା ସଂଗଠନସମୂହ ମଧ୍ୟ ଆତ୍ମପ୍ରକାଶ କରିଥିଲା । ଜାତୀୟ ଆନ୍ଦୋଳନ ଶକ୍ତିଶାଳୀ ହୋଇ ଉଠିବା ସଙ୍ଗେ ସଙ୍ଗେ ତିରିଶ ଦଶକର ଶେଷ ବେଳକୁ କଂଗ୍ରେସର ଆଭ୍ୟନ୍ତରୀଣ ରାଜନୀତିରେ ସ୍ଥାନୀୟ ତଥା ଆଞ୍ଚଳିକ ପ୍ରବଣତାସମୂହ ସ୍ପଷ୍ଟ ହୋଇ ଉଠିଥିଲା । ଲକ୍ଷ୍ୟ କରିବାର କଥା ଯେ, ଏହିସବୁ ଘଟଣା ମଧ୍ୟରେ ଭାରତରେ ଜାତିସତ୍ତାର ଉନ୍ମେଷ ପ୍ରତିଫଳିତ ହେଉଥିଲା । ଆନ୍ଧ୍ର ଓ କର୍ଣ୍ଣାଟକ ପ୍ରଦେଶରେ ଏହି ଆନ୍ଦୋଳନ ଶୀର୍ଷଦେଶରେ ପହଞ୍ଚିଥିଲା ଏବଂ ସେଠାରେ ବୁର୍ଜୁଆ ଜାତୀୟ ସଂଗଠନ—"ଆନ୍ଧ୍ର ମହାସଭା" ଓ "ସଂଯୁକ୍ତ କର୍ଣ୍ଣାଟକ ଲୀଗ୍"** ସକ୍ରିୟ ଥିଲା । ଓଡ଼ିଶା ଏବଂ କାଶ୍ମୀରରେ ଜାତୀୟ ଆତ୍ମନିୟନ୍ତ୍ରଣ ଲଢ଼ର ଆନ୍ଦୋଳନ ମଧ୍ୟ ଆରମ୍ଭ ହୋଇଥିଲା ।

ତିରିଶ ଦଶକର ଶେଷ ଆଡ଼କୁ ୬୦୦ଟି ଦେଶୀୟ ରାଜ୍ୟ ମଧ୍ୟରୁ ପ୍ରତ୍ୟେକଟିରେ କଂଗ୍ରେସ ନେତୃତ୍ୱରେ ଦେଖା ଦେଇଥିଲା ଗଣତାନ୍ତ୍ରିକ ଆନ୍ଦୋଳନ । ୧୯୩୮ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ୬୦ଟି

---

* ନେହରୁ ନୀତିଗତ ଭାବେ ଏହି ଯୌଥ ନେତୃତ୍ୱର ସମର୍ଥକ ଥିଲେ, ତେବେ କଂଗ୍ରେସ ନିକଟରେ କମ୍ୟୁନିଷ୍ଟ ପାର୍ଟିର ଆଦର୍ଶଗତ ପୂର୍ଣ୍ଣ ଆତ୍ମସମର୍ପଣ ସର୍ତ୍ତରେ ।

** ପ୍ରଶାସନିକ ଦୃଷ୍ଟିରୁ କନ୍ନଡ଼ା ଭାଷାଭାଷୀ ଅଞ୍ଚଳସମୂହକୁ ବମ୍ବେ ପ୍ରଦେଶ ଏବଂ ହାୟଦରାବାଦ ଓ ମହୀଶୂର ରାଜ୍ୟ ମଧ୍ୟରେ ବିଭକ୍ତ କରି ଦିଆଯାଇଥିଲା ।

ଦେଶୀୟ ରାଜ୍ୟରେ "ପ୍ରଜା ମଣ୍ଡଳ", "ପ୍ରଜା ପରିଷଦ" ନାମକ ରାଜନୈତିକ ସଂଗଠନ ପ୍ରତିଷ୍ଠିତ ହୋଇଥିଲା ।

୧୯୩୭-୧୯୩୮ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ବୁର୍ଜୁଆ ଜାତୀୟ ସଂଗଠନଗୁଡ଼ିକ କେତେକ ପ୍ରଦେଶରେ, ଯଥା, ମହୀଶୂର, ତ୍ରିଭାଙ୍କୁର, ରାଜକୋଟ (ଗୁଜରାଟ) ଓ ଅନ୍ୟାନ୍ୟ କେତେକ ରାଜାଙ୍କର ସ୍ୱେଚ୍ଛାଗରୀ କ୍ଷମତା ହ୍ରାସକରଣ ଦାବି କରି ହରତାଳ ପାଳନ କରିଥିଲେ । ଅଧିକାଂଶ ଦେଶୀୟ ରାଜ୍ୟ ଶାସନରେ ଅଂଶଗ୍ରହଣ ପାଇଁ ବ୍ୟଗ୍ର ବୁର୍ଜୁଆ ଓ ଜମିଦାର ଶ୍ରେଣୀର ଲୋକମାନଙ୍କ ନେତୃତ୍ୱରେ ଏହିସବୁ ସଂଗ୍ରାମ ପରିଚାଳିତ ହୋଇଥିଲା । କିନ୍ତୁ କାଶ୍ମୀର ଏବଂ ତ୍ରିଭାଙ୍କୁରରେ ଏହି ଆନ୍ଦୋଳନ ସାମନ୍ତବିରୋଧୀ ଏବଂ ଗାଙ୍ଗପୁର (ଓଡ଼ିଶା) ଓ ରାମଦୁର୍ଗ (ବମ୍ବେ ପ୍ରଦେଶ) ଭଳି ଛୋଟ ଛୋଟ ରାଜ୍ୟରେ କୃଷକ ଆନ୍ଦୋଳନ ଅବିଳମ୍ବେ ଅଭ୍ୟୁତ୍‌ଥାନର ଆକାର ଧାରଣ କରିଥିଲା ।

ଦେଶବ୍ୟାପୀ ଜାତୀୟ ଆନ୍ଦୋଳନରେ ଦେଶୀୟ ରାଜ୍ୟଗୁଡ଼ିକର ଯୋଗଦାନ ଫଳରେ କେବଳ ଆନ୍ଦୋଳନ ନୁହେଁ, ଜାତୀୟ କଂଗ୍ରେସ ମଧ୍ୟ ଶକ୍ତିଶାଳୀ ହୋଇଥିଲା । ଏଥି ସଙ୍ଗେ ସଙ୍ଗେ ଆନ୍ଦୋଳନରେ ଏହି ନୂତନ ଉପାଦାନର ଅନୁପ୍ରବେଶ କଂଗ୍ରେସର ଆଭ୍ୟନ୍ତରୀଣ ପରିସ୍ଥିତିକୁ ଜଟିଳ କରି ତୋଳିଥିଲା ।

କଂଗ୍ରେସର ହରିପୁର (ବଙ୍ଗଳା) ଅଧିବେଶନରେ ବାମପନ୍ଥୀ ଓ ଦକ୍ଷିଣପନ୍ଥୀମାନଙ୍କ ମଧ୍ୟରେ ପ୍ରକାଶ୍ୟ ସଂଘର୍ଷ ଆରମ୍ଭ ହୋଇ ଯାଇଥିଲା ଏବଂ ଗାନ୍ଧୀଙ୍କ ମତାମତକୁ ଅସ୍ୱୀକାର କରି ସଂପ୍ରତି ନିର୍ବାଚିତ ସଭାପତି ସୁଭାଷଚନ୍ଦ୍ର ବସୁଙ୍କ ସମର୍ଥକମାନେ ପୂର୍ଣ୍ଣ ସ୍ୱରାଜ ପାଇଁ ଏକ ସଂଗ୍ରାମୀ କର୍ମସୂଚୀ ଗ୍ରହଣ କରିଥିଲେ ।

ନିଖିଳ ଭାରତ କଂଗ୍ରେସ କମିଟିରେ ଏକ ବାମପନ୍ଥୀ ଅଂଶର ଉନ୍ମେଷ ଏବଂ ପରବର୍ତ୍ତୀ ଅଧିବେଶନରେ ଯୋଗଦାନ ପାଇଁ ନିର୍ବାଚିତ ପ୍ରାଦେଶିକ ସଂଗଠନର ସଦସ୍ୟମାନଙ୍କ ମଧ୍ୟରୁ ପ୍ରାୟ ୪୦ ଶତାଂଶ ବାମପନ୍ଥୀ ହେବା ଫଳରେ ବସୁଙ୍କ ଅବସ୍ଥାନ ଦୃଢ଼ ହୋଇଥିଲା ।

ଏଇ ପରିସ୍ଥିତିରେ ପଟ୍ଟାଭି ସୀତାରାମାୟାଙ୍କ ଦ୍ୱାରା ପରିଚାଳିତ ଏବଂ ଗାନ୍ଧୀଙ୍କ ଦ୍ୱାରା ସକ୍ରିୟ ଭାବେ ସମର୍ଥିତ କଂଗ୍ରେସର ଦକ୍ଷିଣପନ୍ଥୀ ଅଂଶ କଂଗ୍ରେସ ସଭାପତିଙ୍କ ବିରୁଦ୍ଧରେ ଖୋଲାଖୋଲି ଆକ୍ରମଣ ଆରମ୍ଭ କରିଦେଲେ । କାର୍ଯ୍ୟକାରୀ କମିଟିରୁ ବସୁଙ୍କ ବିରୋଧୀମାନେ ଗାନ୍ଧୀଙ୍କ ଉପରେ ପଦତ୍ୟାଗ କଲେ । ତା ସତ୍ତ୍ୱେ ନିଖିଳ ଭାରତ କଂଗ୍ରେସ କମିଟିର ଜାନୁଆରୀ ଅଧିବେଶନରେ ସୁଭାଷଚନ୍ଦ୍ର ବସୁ ପୁଣି ସଭାପତି ନିର୍ବାଚିତ ହେଲେ ।

୧୯୩୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ କଂଗ୍ରେସର ତ୍ରିପୁରୀ ଅଧିବେଶନରେ ଅତି ଉତ୍ତେଜନାକର ପରିସ୍ଥିତି ଦେଖା ଦେଲା । ଦଳ ମଧ୍ୟରେ ପ୍ରବଳ ସଂଘାତ ପରେ ଦକ୍ଷିଣ-ମଧ୍ୟପନ୍ଥୀମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପ୍ରତିନିଧି ଓ ଗାନ୍ଧୀଙ୍କ ମତାନୁଗାମୀ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ଚେଷ୍ଟାରେ ଗାନ୍ଧୀଙ୍କୁ ନୂତନ କାର୍ଯ୍ୟକାରୀ କମିଟି ମନୋନୟନକୁ ନିୟନ୍ତ୍ରଣ କରିବାର ସର୍ବମୟ କ୍ଷମତା ପ୍ରଦାନ କରିବାର ପ୍ରସ୍ତାବଟି ପାଶ୍ ହୋଇଗଲା ।

୧୯୩୯, ଏପ୍ରିଲ ମାସରେ ସଭାପତି ସୁଭାଷଚନ୍ଦ୍ର ବସୁ ପଦତ୍ୟାଗ କରିବା ଫଳରେ ବିହାରର କଂଗ୍ରେସ ନେତା ଏବଂ ଗାନ୍ଧୀଙ୍କ ପୁରୁଣା ସହକର୍ମୀ ରାଜେନ୍ଦ୍ର ପ୍ରସାଦ ତାଙ୍କ ସ୍ଥାନ ଗ୍ରହଣ କଲେ ।

ଅବିଳମ୍ବେ ସୁଭାଷଚନ୍ଦ୍ର ବସୁ ତାଙ୍କ ସମର୍ଥକମାନଙ୍କର ଏକ ବଡ଼ ଗୋଷ୍ଠୀ ସହ କଂଗ୍ରେସ ତ୍ୟାଗ

କରି "ଫରଓ୍ୱାର୍ଡ ବ୍ଳକ୍" ନାମରେ ଏକ ନୂତନ ପାର୍ଟି ଗଠନ କଲେ । ଏହି ପାର୍ଟିର ପ୍ରଭାବ ମୂଳତଃ ବଙ୍ଗଳାରେ କେନ୍ଦ୍ରୀଭୂତ ଥିଲା ।

କଂଗ୍ରେସର ଏହି ବିଭାଜନ ଫଳରେ ବାମପନ୍ଥୀମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦ୍ରୁତ ବୃଦ୍ଧି ପାଇଥିଲା । ନେହରୁ ଯେତେବେଳେ ଗାନ୍ଧୀଙ୍କ ପଥ ଓ କଂଗ୍ରେସ ନେତୃତ୍ୱରେ ତାଙ୍କ ଗୋଷ୍ଠୀକୁ ସମର୍ଥନ କରୁଥିଲେ, ସେତେବେଳେ କଂଗ୍ରେସ ସମାଜବାଦୀମାନଙ୍କର ବାମପନ୍ଥୀ ଗୋଷ୍ଠୀଗୁଡ଼ିକ (ବିଶେଷତଃ, କେରଳ, ଆନ୍ଧ୍ର ଓ ଯୁକ୍ତ ପ୍ରଦେଶରେ) ୧୯୩୯-୧୯୪୦ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ପରିତ୍ୟାଗ କରି ସ୍ଥାନୀୟ କମ୍ୟୁନିଷ୍ଟ ପାର୍ଟି ସଂଗଠନଗୁଡ଼ିକର କୋଷକେନ୍ଦ୍ର ଗଠନ କରିଥିଲେ ।

କିନ୍ତୁ ଏହି ପର୍ଯ୍ୟାୟରେ ଆରମ୍ଭ ହେଉଥିବା ବୈପ୍ଳବିକ କାର୍ଯ୍ୟକଳାପର ନୂତନ ଜୁଆର ଏବଂ ଦେଶର ଅଭ୍ୟନ୍ତରରେ ରାଜନୈତିକ ଶକ୍ତିର ପୁନର୍ବଣ୍ଟନ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଆରମ୍ଭ ହୋଇଯିବା ଫଳରେ ବାଧାପ୍ରାପ୍ତ ହୋଇଥିଲା ।

# ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଭାରତବର୍ଷ

## ଯୁଦ୍ଧର ପ୍ରାରମ୍ଭିକ ବର୍ଷଗୁଡ଼ିକରେ (୧୯୩୯-୧୯୪୧) ରାଜନୈତିକ ଦଳଗୁଡ଼ିକର ଅବସ୍ଥାନ ଏବଂ ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନ

### ଭାରତବର୍ଷକୁ ଯୁଦ୍ଧପକ୍ଷ ବୋଲି ଘୋଷଣା । ରାଜନୈତିକ ଦଳଗୁଡ଼ିକର ଅବସ୍ଥାନ

ୟୁରୋପର ଯୁଦ୍ଧରେ ବ୍ରିଟେନ୍‌ର ଯୋଗଦାନ ପରେ ଭାରତର ବଡ଼ଲାଟ୍ ଲର୍ଡ ଲିନ୍‌ଲିଥ୍‌ଗୋ ଭାରତକୁ ଯୁଦ୍ଧ ପକ୍ଷ ବୋଲି ଘୋଷଣା କରିଦେଲେ । ଭାରତୀୟ ରାଜନୈତିକ ଦଳଗୁଡ଼ିକ ସହିତ ପ୍ରାଥମିକ ଆଲୋଚନା ନକରି ସରକାର ଏହି ପଦକ୍ଷେପ ନେବା ଫଳରେ ବ୍ୟାପକ ଗଣ ବିକ୍ଷୋଭ ଦେଖା ଦେଇଥିଲା । ୧୯୩୯ ଖ୍ରୀଷ୍ଟାବ୍ଦରେ ଶରତ କାଳରେ ସାରା ଦେଶ ବିକ୍ଷୋଭ ଆଉ ପ୍ରତିବାଦମୂଳକ ଶୋଭାଯାତ୍ରାର ଢେଉରେ ଉଚ୍ଛୁଳି ପଡ଼ିଲା । ଏକମାତ୍ର ଭାରତରେ (ନାଜି ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣାକାରୀ ଦେଶଗୁଡ଼ିକ ମଧ୍ୟରେ) ଯୁଦ୍ଧବିରୋଧୀ ଆନ୍ଦୋଳନ ବ୍ୟାପକ ଗଣ ସମର୍ଥନ ଲାଭ କରିଥିଲା ।

ବଡ଼ଲାଟ୍‌ଙ୍କର ଏତାଦୃଶ କାର୍ଯ୍ୟର ପ୍ରତିବାଦରେ କେନ୍ଦ୍ରୀୟ ଆଇନ୍ ସଭାର କଂଗ୍ରେସ ସଦସ୍ୟମାନେ ଅଧିବେଶନ ବର୍ଜନ କଲେ । କିନ୍ତୁ ବଡ଼ଲାଟ୍ ତାଙ୍କର ବିଶେଷ କ୍ଷମତା ବଳରେ ଭାରତ ସଂବିଧାନର ସଂଶୋଧନୀ ଆଇନ୍ ସମେତ ଭାରତ ରକ୍ଷା ଆଇନ୍ ଜାରିକଲେ । ଆଇନ୍‌ଟି ମାଧ୍ୟମରେ ଔପନିବେଶିକ ପ୍ରଶାସନ ଗଣତାନ୍ତ୍ରିକ ସ୍ୱାଧୀନତାକୁ (ସମାବେଶ, ସଂବାଦପତ୍ର ଆଦି) ଦମନ କରିବାର ଅବ୍ୟାହତ, କାର୍ଯ୍ୟତଃ ପୂର୍ଣ୍ଣ ଅଧିକାର ଲାଭକଲା । ତା'ଛଡ଼ା ଆନୁଷଙ୍ଗିକ ନିବର୍ତ୍ତନମୂଳକ ଅଟକ ଆଇନ୍ ଜାରି କରି ବ୍ରିଟିଶ୍ ଲାଟ୍‌ମାନଙ୍କୁ ପ୍ରାଦେଶିକ ସରକାରକୁ (ଆଇନ୍ ସଭା ନିକଟରେ ଦାୟୀ) ଭାଙ୍ଗି ଦେବାର କ୍ଷମତା ଦିଆଗଲା ।

୧୮୩୯ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ୧୪ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ଯୁଦ୍ଧ ସଂପର୍କରେ ନିଜସ୍ୱ ଦୃଷ୍ଟିଭଙ୍ଗିର ଖସଡ଼ା ସମେତ ଏକ ବିଶେଷ ଘୋଷଣା ଅନୁମୋଦନ କରିଥିଲା । ଏଥିରେ ବ୍ରିଟିଶ୍‌ମାନଙ୍କ ଯୁଦ୍ଧୋଦ୍ୟୋଗକୁ କଂଗ୍ରେସର ସମର୍ଥନ ଦାନ କ୍ଷେତ୍ରରେ ନିମ୍ନୋକ୍ତ ସର୍ତ୍ତାବଳୀ ଆରୋପିତ ହୋଇଥିଲା : ବ୍ରିଟିଶ୍ ସରକାର କର୍ତ୍ତୃକ ଭାରତର ସ୍ୱାଧୀନତା ଲାଭର ଅଧିକାର ସ୍ୱୀକାର ; ସଂବିଧାନ ସଭା ଆହ୍ୱାନ ; ଆଗାମୀ କୌଣସି ଏକ ସମୟରେ ଭାରତର ରାଜନୈତିକ କ୍ଷମତା ଗ୍ରହଣ କରିବାରେ ଭାରତୀୟ ରାଜନୈତିକ ଦଳଗୁଡ଼ିକର ଅଧିକାର ସ୍ୱୀକାର ; ଅବିଳମ୍ବେ ବଡ଼ଲାଟ୍‌ଙ୍କ ନେତୃତ୍ୱରେ କେନ୍ଦ୍ରୀୟ ଆଇନ୍ ସଭା ନିକଟରେ ଦାୟୀ ଏକ ସରକାର ଗଠନ ।

ମୁସଲିମ୍ ଲୀଗ୍ ମଧ୍ୟ ଆଇନ୍ ସଭାଗୁଡ଼ିକରେ ମୁସଲମାନମାନଙ୍କୁ ଅଧିକ ସଂଖ୍ୟକ ପ୍ରତିନିଧିତ୍ୱ ସର୍ତ୍ତରେ କେବଳ ବ୍ରିଟିଶ୍ ଯୁଦ୍ଧୋଦ୍ୟୋଗକୁ ସମର୍ଥନ ଦେବାକୁ ଚାହିଁଥିଲା ।

ଦେଶୀୟ ରାଜନ୍ୟବର୍ଗ, ସାମନ୍ତ ଭୂସ୍ୱାମୀ ଓ ସହଯୋଗୀ ନିର୍ଭରଶୀଳ ବୁର୍ଜୁଆମାନଙ୍କର ପ୍ରତିକ୍ରିୟା ଗୋଷ୍ଠୀଗୁଡ଼ିକ କେବଳ ଔପନିବେଶିକ ବ୍ରିଟିଶ୍ ସରକାରକୁ ସର୍ତ୍ତହୀନ ସମର୍ଥନ ଦେବାର ନିଶ୍ଚୟତା ଦାନ କରିଥିଲେ ।

ଭାରତୀୟ ରାଜନୈତିକ ଦଳଗୁଡ଼ିକର ବିଭିନ୍ନ ଅବସ୍ଥାନ ମଧ୍ୟରେ ଯୁଦ୍ଧରେ ଭାରତର ଯୋଗଦାନ ସଂପର୍କରେ ଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ଦ୍ୱୈର୍ଥକ ଦୃଷ୍ଟିଭଙ୍ଗିର ପ୍ରତିଫଳନ ଘଟିଥିଲା । ଏହାର ଗୋଟିଏ ଦିଗରେ ଥିଲା ବିଭିନ୍ନ ସାମରିକ ବରାଦରୁ ଉତ୍ପାଦନ ଓ ମୁନାଫା ବୃଦ୍ଧିର ସୁଯୋଗ ଏବଂ ଅନ୍ୟ ଦିଗରେ – ଜଟିଳ ସାମରିକ ଓ ରାଜନୈତିକ ପରିସ୍ଥିତିର ସମ୍ମୁଖୀନ ବ୍ରିଟିଶ୍‌ମାନଙ୍କ ନିକଟରୁ ବିଶେଷ ରାଜନୈତିକ ସୁବିଧା ଆଦାୟର ନୂଆ ସମ୍ଭାବନା ।

ସାମରିକ ବରାଦ ବଣ୍ଟନ ପାଇଁ ଭାରତୀୟ ପୁଞ୍ଜିପତିମାନେ ଅର୍ଥନୈତିକ ସଂପଦ ପରିଷଦ, ସରବରାହ ବିଭାଗ ଆଦି ସଂସ୍ଥା ଗଠନ କାର୍ଯ୍ୟରେ ଔପନିବେଶିକ ସରକାରକୁ ସାହାଯ୍ୟ ଦାନରେ ସକ୍ରିୟ ଭୂମିକା ପାଳନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ରାଜନୈତିକ ପ୍ରତିନିଧିମାନେ ବ୍ରିଟିଶ୍ ସରକାର ଓ ଭାରତସ୍ଥ ତା'ର ପ୍ରତିନିଧି, ବଡ଼ଲାଟ୍‌ଙ୍କ ସହିତ ଜଟିଳ ଦର କଷାକଷି ଚଳେଇ ଯାଉଥିଲେ ।

ଯୁଦ୍ଧ ସଂପର୍କରେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ପ୍ରସ୍ତାବସମୂହକୁ ଭାରତୀୟ ବୁର୍ଜୁଆ ଜାତୀୟତାବାଦୀମାନଙ୍କର ମତାମତର ଅଭିବ୍ୟକ୍ତି ବୋଲି ଧରି ନେଇ ବ୍ରିଟିଶ୍ ସରକାର ୧୯୩୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୭ ତାରିଖରେ ଯୁଦ୍ଧର ଲକ୍ଷ୍ୟ ସଂପର୍କିତ ରୂପରେଖା ସମେତ ଏକ "ଶ୍ୱେତ ପତ୍ର" ପ୍ରକାଶ କରିଥିଲା । ନିଖିଳ ଭାରତ କଂଗ୍ରେସ କମିଟିର ପୂର୍ବୋକ୍ତ ଘୋଷଣାରେ ଉଲ୍ଲିଖିତ ଦାବିସମୂହର ପ୍ରତ୍ୟକ୍ଷ ଭାବେ ଉତ୍ତର ନଦେଇ ବ୍ରିଟିଶ୍ ସରକାରର ଏହି "ଶ୍ୱେତ ପତ୍ରରେ" ଯୁଦ୍ଧ ପରେ ଭାରତୀୟ ରାଜନୈତିକ ଦଳଗୁଡ଼ିକ ସହିତ ପରାମର୍ଶ କରି ଏକ ସମ୍ବିଧାନ ରଚନା କରିବା କଥା ଘୋଷଣା କରାଯାଇଥିଲା । ତା'ଛଡ଼ା ବଡ଼ଲାଟ୍‌ଙ୍କ ଅଧୀନସ୍ଥ କାର୍ଯ୍ୟକାରୀ ସଂସଦରେ ଅଧିକ ସଂଖ୍ୟକ ଭାରତୀୟ ପ୍ରତିନିଧି ଗ୍ରହଣ ଏବଂ ସମସ୍ତ ରାଜନୈତିକ ଦଳ ଓ ଦେଶୀୟ ରାଜନ୍ୟବର୍ଗଙ୍କର ପ୍ରତିନିଧିଙ୍କ ସହିତ ଏହି ସଂସଦ ଦ୍ୱାରା ଅନୁମୋଦିତ ଏକ ମନ୍ତ୍ରଣା ପରିଷଦ ଗଠନ କରାଯିବ ବୋଲି ମଧ୍ୟ ଆଶ୍ୱାସନା ଦିଆଯାଇଥିଲା ।

ବିରୋଧୀମାନଙ୍କ ପକ୍ଷରୁ ଦିଆଯାଇଥିବା ପ୍ରସ୍ତାବ ଦିଗରୁ "ଶ୍ୱେତ ପତ୍ରଟି" ଥିଲା ପୂରାପୂରି ଏକ ନାସ୍ତିବାଚକ ଉତ୍ତର ।

ବ୍ରିଟିଶ୍ ଶାସକମାନଙ୍କ ଦ୍ୱାରା ଅନୁସୃତ ଏହି ଉଦ୍ୟୋଗର ପ୍ରତିବାଦ ହିସାବରେ ଆଠଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମାନେ ପଦତ୍ୟାଗ କରିଥିଲେ । ଏହି ସଂକଟର ମୁକାବିଲା କରିବା ପାଇଁ ଲାଟମାନେ ଇତିମଧ୍ୟରେ ପ୍ରକାଶିତ ସଂବିଧାନର ସଂଶୋଧନୀ ଅନୁଯାୟୀ ନୂତନ କାର୍ଯ୍ୟକାରୀ ସଂସ୍ଥା ଗଠନ କରିବା ଦିଗରେ ଉଦ୍ୟୋଗୀ ହୋଇଥିଲେ ।

ଅକ୍ଟୋବର ୨୩ ତାରିଖରେ କଂଗ୍ରେସ ନେତୃବୃନ୍ଦ "ଶ୍ୱେତ ପତ୍ରର" ଅନ୍ତର୍ଗତ ପ୍ରସ୍ତାବସମୂହର ଯେଉଁ ଉତ୍ତର ଦେଇଥିଲେ, ତା'ର ସାରମର୍ମ ଥିଲା ନିମ୍ନ ମୁତାବକ : (୧) ଅବିଳମ୍ବେ ଭାରତରେ ଦାୟିତ୍ୱଶୀଳ ସରକାର ଗଠନ କରିବାକୁ ହେବ; (୨) ସମ୍ବିଧାନ ସଭାର ମାଧ୍ୟମରେ ଏକ ନୂତନ

ସମ୍ବିଧାନ ତିଆରି କରିବାକୁ ହେବ ; (ଘ) ଜାତୀୟ କଂଗ୍ରେସର ଦାବୀ ପ୍ରତ୍ୟାଖ୍ୟାନ ହେଲେ ଶେଷକୁ ଆଉରି ଏକ ଆଇନ୍ ଅମାନ୍ୟ ଆନ୍ଦୋଳନ ଅନିବାର୍ଯ୍ୟ ହୋଇ ଉଠିବ ।

ଏହି ପରିସ୍ଥିତିରେ ମୁସଲିମ୍ ଲୀଗ୍‌ର ନେତୃବୃନ୍ଦ, ସେମାନଙ୍କ ମୂଳ ପ୍ରତିଦ୍ୱନ୍ଦ୍ୱୀ ଜାତୀୟ କଂଗ୍ରେସକୁ ଅସୁବିଧାରେ ପକାଇ ନିଜର ଅବସ୍ଥାନକୁ ଶକ୍ତ କରିବାକୁ ଚେଷ୍ଟା କରିଥିଲେ । ୧୯୩୯ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ "କଂଗ୍ରେସ ଦାସତ୍ୱରୁ ମୁକ୍ତି ଲାଭ" (ପ୍ରାଦେଶିକ କଂଗ୍ରେସ ସରକାରଗୁଡ଼ିକର ପଦତ୍ୟାଗ ପରେ) ଉପଲକ୍ଷେ ଲୀଗ୍ ସମଗ୍ର ଦେଶରେ ପରିତ୍ରାଣ ଦିବସ ପାଳନ କରିଥିଲା । କିନ୍ତୁ ଏହି ଆନ୍ଦୋଳନ ବ୍ୟାପକତା ଲାଭ କରିବାକୁ ବ୍ୟର୍ଥ ହୋଇଥିଲା । ଆସାମ, ସିନ୍ଧୁ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ସରକାରରେ ଥିବା ମୁସଲିମ୍ ଲୀଗ୍ ସଦସ୍ୟମାନେ ଔପନିବେଶିକ ସରକାର ସହିତ ସହଯୋଗିତା କରି ଯାଇଥିଲେ ।

ମୁସଲିମ୍ ଲୀଗ୍‌ର ନେତାମାନଙ୍କ ବିଚ୍ଛିନ୍ନତାବାଦୀ ଓ ମୂଳତଃ ସଂକୀର୍ଣ୍ଣତାମୂଳକ ଏହି ପଦକ୍ଷେପ ଦେଶର ରାଜନୈତିକ ସଂଗ୍ରାମର ପରବର୍ତ୍ତୀ ଘଟଣାବଳୀକୁ ଅନେକ ପରିମାଣରେ ପ୍ରଭାବିତ କରିଥିଲା । ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସଂଘାତ ସୃଷ୍ଟି କରିବାର ସାଫଲ୍ୟ ଉପରେ ଯେଉଁ ବ୍ରିଟିଶ୍ ସରକାର ତା'ର ସମସ୍ତ ଆଶା ନ୍ୟସ୍ତ କରିଥିଲା, ମୁସଲିମ୍ ଲୀଗ୍‌ର ନୀତି ଶେଷକୁ ତା'ରି ଉପରରେ ପଡ଼ିଲା । ଜାତୀୟ କଂଗ୍ରେସ ତୁଳନାରେ କିନ୍ତୁ ମୁସଲିମ୍ ଲୀଗ୍‌ର ରାଜନୈତିକ ପ୍ରଭାବ ଯେ ଅନେକ ଦୁର୍ବଳ ଥିଲା ଏବଂ ଏପରିକି ମୁସଲମାନମାନଙ୍କ ଉପରେ ମଧ୍ୟ କଂଗ୍ରେସର ଯେ ପ୍ରଭାବ ରହିଥିଲା, ଔପନିବେଶିକ ସରକାର ଏକଥା ଲକ୍ଷ୍ୟ କରିବାକୁ ଭୁଲି ଯାଇ ନଥିଲା । କଂଗ୍ରେସ ନେତୃବୃନ୍ଦଙ୍କର ଦୃଢ଼ ପଦକ୍ଷେପ ସେତେବେଳେ ଜାଗି ଉଠୁଥିବା ସାମ୍ରାଜ୍ୟବାଦବିରୋଧୀ ଗଣ ଆନ୍ଦୋଳନରେ ନୂତନ ଅନୁପ୍ରେରଣା ଯୋଗାଇଥିଲା । ଏହା ଫଳରେ ବ୍ରିଟିଶ୍ ସରକାର ଜାତୀୟ ଆନ୍ଦୋଳନର ନେତୃବୃନ୍ଦଙ୍କ ନିକଟରେ ନୂତନ ପ୍ରସ୍ତାବ ଉପସ୍ଥାପନ କରିବାକୁ ବାଧ୍ୟ ହୋଇଥିଲା । ୧୯୪୦ ଖ୍ରୀଷ୍ଟାବ୍ଦର ଜାନୁଆରୀ ୧୦ ତାରିଖରେ ବମ୍ବେର "ଓରିଏଣ୍ଟାଲ କ୍ଲବ୍‌ରେ" ଏକ ପ୍ରସଙ୍ଗରେ ବଡ଼ଲାଟ୍ ଘୋଷଣା କଲେ ଯେ, ରାଜନ୍ୟବର୍ଗ ଓ ସଂଖ୍ୟାଲଘୁମାନଙ୍କ ସ୍ୱାର୍ଥ ସମେତ ଅନ୍ୟାନ୍ୟ ବିଷୟାଦି ବିଚାର କରି ଯୁଦ୍ଧ ପରେ ଭାରତକୁ ଡୋମିନିଅନ ମର୍ଯ୍ୟାଦା ଦିଆଯିବ ଏବଂ ଆଉରି ତିରିଶ ବର୍ଷ ପାଇଁ ଦେଶ ରକ୍ଷାର ବ୍ୟବସ୍ଥା ବ୍ରିଟେନ୍‌ର ହାତରେ ରହିବ ।

କିନ୍ତୁ ବ୍ରିଟିଶ୍‌ମାନଙ୍କର ଏହି ନୂତନ ପ୍ରସ୍ତାବସମୂହ ଜାତୀୟ କଂଗ୍ରେସ ନିକଟରେ ଗ୍ରହଣଯୋଗ୍ୟ ହେଲା ନାହିଁ । ଏହାର କାରଣ ହେଲା, ଅଚିରେ ଭାରତରେ ବଡ଼ଲାଟ୍‌ଙ୍କ ନେତୃତ୍ୱରେ ଦାୟିତ୍ୱଶୀଳ ସରକାର ଗଠନ ସଂପର୍କିତ ଜାତୀୟତାବାଦୀ ମୂଳ ଦାବିର କୌଣସି ସୁସ୍ପଷ୍ଟ ଉତ୍ତର ଏହି ପ୍ରସ୍ତାବରେ ନଥିଲା ।

## ୧୯୩୯-୧୯୪୦ ଖ୍ରୀଷ୍ଟାବ୍ଦର ଗଣ ଆନ୍ଦୋଳନ । ଜାତୀୟ ଆନ୍ଦୋଳନର ଅନ୍ତର୍ନିହିତ ଦ୍ୱନ୍ଦ୍ୱ

ସେଇ ୧୯୩୯ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ କମ୍ୟୁନିଷ୍ଟ ଓ କଂଗ୍ରେସ-ସମାଜବାଦୀମାନେ ଯୁଦ୍ଧବିରୋଧୀ ବିକ୍ଷୋଭ ଆରମ୍ଭ କରି ଦେଇଥିଲେ । ଏସବୁ ମଧ୍ୟରେ ସର୍ବବୃହତ୍ ବିକ୍ଷୋଭ ଅନୁଷ୍ଠିତ

ହୋଇଥିଲା ମାତ୍ରାରେ । ଏହି ବର୍ଷ ଅକ୍ଟୋବର ଓ ନଭେମ୍ବର ମାସରେ ବମ୍ବେ, କାନ୍‌ପୁର, ପାଟନା, ଝରିଆ ଓ ଅନ୍ୟାନ୍ୟ କେତେକ ଶିଳ୍ପ କେନ୍ଦ୍ରରେ ଯୁଦ୍ଧବିରୋଧୀ ଧର୍ମଘଟ ଅନୁଷ୍ଠିତ ହୋଇଥିଲା । ୧୯୩୯ ଖ୍ରୀଷ୍ଟାବ୍ଦ ଶେଷରେ ମୋଟ ୧୧୦ଟି ଧର୍ମଘଟରେ ୧ ଲକ୍ଷ ୭୦ ହଜାର ଲୋକ ଯୋଗ ଦେଇଥିଲେ । ଏହି ବର୍ଷ ଶେଷ ବେଳକୁ ଶ୍ରମଜୀବୀମାନଙ୍କର ଅନ୍ୟାନ୍ୟ ସ୍ତରର ଲୋକେ ଯୁଦ୍ଧର ପ୍ରଥମ ଅର୍ଥନୈତିକ ଫଳ ହିସାବରେ ନିତ୍ୟବ୍ୟବହାର୍ଯ୍ୟ ପଣ୍ୟଦ୍ରବ୍ୟର ଉଚ୍ଚ ମୂଲ୍ୟ ଓ ଫଟକାବାଜି ଆଦି ବିରୁଦ୍ଧରେ ଏକ ବ୍ୟାପକ ଆନ୍ଦୋଳନ ଗଢ଼ି ତୋଳିଥିଲେ ।

ଜାତୀୟ ଆନ୍ଦୋଳନରେ ବାମପନ୍ଥୀମାନଙ୍କ କାର୍ଯ୍ୟକଳାପକୁ ସମନ୍ୱୟ କରିବା କ୍ଷେତ୍ରରେ ୧୯୩୯ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ନାଗପୁରରେ ଅନୁଷ୍ଠିତ ଶ୍ରମିକ, କୃଷକ ଓ ଛାତ୍ର ସଂଗଠନଗୁଡ଼ିକର ନିଖିଳ ଭାରତ ସାମ୍ରାଜ୍ୟବାଦବିରୋଧୀ ସମ୍ମିଳନୀଟି ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏଥିରେ ଭାରତର କମ୍ୟୁନିଷ୍ଟ ପାର୍ଟି, କଂଗ୍ରେସ ସମାଜବାଦୀ ଓ "ଫରୱାର୍ଡ ବ୍ଲକ" ଦଳ ଯୋଗ ଦେଇଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜାତୀୟ-ମୁକ୍ତି ଆନ୍ଦୋଳନର ବାମପନ୍ଥୀମାନଙ୍କର ଆପୋଷହୀନ ପଦକ୍ଷେପ ଏହି ସମ୍ମିଳନୀରେ ଗୃହୀତ ପ୍ରସ୍ତାବଗୁଡ଼ିକରେ ଅନ୍ତର୍ଭୁକ୍ତ ହୋଇଥିଲା । ଭାରତୀୟ କମ୍ୟୁନିଷ୍ଟମାନେ ଏବଂ ଏହି ପ୍ରସଙ୍ଗରେ ବାମପନ୍ଥୀ ଜାତୀୟତାବାଦୀମାନେ ଏହି ଯୁଦ୍ଧକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ହିସାବରେ ଚିହ୍ନିତ କରିଥିଲେ ଏବଂ ଏଥି ସହିତ ସେମାନେ ଭାରତବର୍ଷ ଯୁଦ୍ଧରେ ଯୋଗ ଦେବାର ବିରୋଧିତା କରୁଥିଲେ ।

ବାମପନ୍ଥୀ ସଂଗଠନଗୁଡ଼ିକର ଓ ସମ୍ମିଳନୀରେ ଅଂଶଗ୍ରହଣକାରୀମାନଙ୍କର ଆହ୍ୱାନ କ୍ରମେ ପଞ୍ଜାବ, ଯୁକ୍ତ ପ୍ରଦେଶ, ଆନ୍ଧ୍ର ଓ ମାଲାବାରରେ ବିକ୍ଷୋଭ ଏବଂ ସମାବେଶ ଅନୁଷ୍ଠିତ ହୋଇଥିଲା । ଭାରତରେ ପୁନର୍ବାର ସାମ୍ରାଜ୍ୟବାଦବିରୋଧୀ ଶକ୍ତିଗୁଡ଼ିକର ଏକ ସାମ୍ମୁଖ୍ୟ ଗଠନର ପରିସ୍ଥିତି ପରିପକ୍ୱ ହୋଇ ଉଠିଥିଲା । କିନ୍ତୁ ଦେଶର ଦୁଇଟି ପ୍ରଧାନ ରାଜନୈତିକ ଦଳ – ଜାତୀୟ କଂଗ୍ରେସ ଏବଂ ମୁସଲିମ୍ ଲୀଗ୍‌ର ନେତୃବୃନ୍ଦଙ୍କ ପଦକ୍ଷେପ ହେତୁ ଏହି ଉଦ୍ୟୋଗ ବାଧାପ୍ରାପ୍ତ ହୋଇଥିଲା ।

କଂଗ୍ରେସ ସେତେବେଳେ ବାମପନ୍ଥୀ ଶକ୍ତିଗୁଡ଼ିକର ଗଣ ଆନ୍ଦୋଳନ ସଂପର୍କରେ ନେତିବାଚକ ଦୃଷ୍ଟିଭଙ୍ଗି ପୋଷଣ କରୁଥିଲା ଏବଂ ଶ୍ରମିକ ଶ୍ରେଣୀର ଧର୍ମଘଟ ବା କୃଷକ ଆନ୍ଦୋଳନକୁ ସମର୍ଥନ କରୁ ନଥିଲା । ଲକ୍ଷ୍ୟ କରିବାର କଥା ଯେ, ଏପରିକି ବ୍ୟାପକ ବ୍ରିଟିଶ୍‌ବିରୋଧୀ ପ୍ରଚାରାଭିଯାନ ଚଳାଇଲା ବେଳେ ଜାତୀୟ ଆନ୍ଦୋଳନ ଉପରେ କଂଗ୍ରେସର ନେତୃତ୍ୱକୁ ଅତୁଟ ରଖିବା ପାଇଁ ଏହା ଚେଷ୍ଟା କରୁଥିଲା । ୧୯୪୦ ଖ୍ରୀଷ୍ଟାବ୍ଦର କଂଗ୍ରେସ ଅଧିବେଶନରେ ଯଥାରୀତି ବ୍ୟାପକ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ଆହ୍ୱାନ ଜଣାଇ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ଆନ୍ଦୋଳନ ଆରମ୍ଭ କରିବାର ତାରିଖ ଓ ପଦ୍ଧତି ନିର୍ଦ୍ଧାରଣ ପାଇଁ ଗାନ୍ଧୀଙ୍କୁ ପୁଣି ସର୍ବମୟ କର୍ତ୍ତୃତ୍ୱ ଦିଆଗଲା ଏବଂ ସେ ସତ୍ୟାଗ୍ରହର ସର୍ବାଧିନାୟକ ରୂପେ ନିଯୁକ୍ତ ହେଲେ ।

ତ୍ରିପୁରୀ ଅଧିବେଶନ (୧୯୩୯) ପରେ ପାର୍ଟି ନେତାମାନଙ୍କ ଅନୁମୋଦନ କ୍ରମେ ଜାତୀୟ କଂଗ୍ରେସର ଅଭ୍ୟନ୍ତରରେ ବାମପନ୍ଥୀମାନଙ୍କ ବିରୁଦ୍ଧରେ ସଂଗ୍ରାମ ପରିଚାଳନା ଫଳରେ ସଂଗଠନର ଐକ୍ୟରେ ବାଧା ପଡ଼ିଥିଲା । ୧୯୪୦, ମାର୍ଚ୍ଚ ମାସରେ ବିହାରର ରାମଗଡ଼ରେ ଅନୁଷ୍ଠିତ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ କଂଗ୍ରେସର ଅନ୍ୟତମ ବୃହତ୍ତମ ପ୍ରାଦେଶିକ ସଂଗଠନ, ବଙ୍ଗଳାର କୌଣସି ପ୍ରତିନିଧି ଯୋଗ ଦେଇ ନଥିଲେ । ବଙ୍ଗଳା କଂଗ୍ରେସର ସଂଖ୍ୟାଗରିଷ୍ଠ ଅଂଶ ସୁଭାଷଚନ୍ଦ୍ର ବସୁଙ୍କୁ

ସମର୍ଥନ କରୁଥିବାରୁ ସେମାନଙ୍କ ନେତାଙ୍କ ବିରୁଦ୍ଧରେ କଂଗ୍ରେସର ନେତୃବୃନ୍ଦଙ୍କ କର୍ତ୍ତୃକ ଶାସ୍ତିମୂଳକ ବ୍ୟବସ୍ଥା ଗ୍ରହଣର ପ୍ରତିବାଦରେ ସେମାନେ ସମ୍ମେଳନ ବର୍ଜନ କରିଥିଲେ (ତ୍ରିପୁରୀ ଅଧିବେଶନ ପରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନୁମତି ବିନା ବିଭିନ୍ନ ସମାବେଶରେ ବକ୍ତୃତା ଦେବା ପାଇଁ ତାଙ୍କୁ କଂଗ୍ରେସର ନେତୃପଦ ଉପରେ ଅଧିକାରରୁ ବଞ୍ଚିତ କରାଯାଇଥିଲା) ।

ସୁଭାଷଚନ୍ଦ୍ର ବସୁଙ୍କ ସମର୍ଥକମାନେ ସେମାନଙ୍କ ନିଜସ୍ୱ "ଆପୋଷବିରୋଧୀ ସମ୍ମିଳନୀ" ଆହ୍ୱାନ କରିଥିଲେ ଏବଂ ସେଠାରେ ଗାନ୍ଧୀଙ୍କ ସମେତ ଜାତୀୟ କଂଗ୍ରେସ ନେତାମାନଙ୍କୁ କଠୋର ଭାବେ ସମାଲୋଚନା କରାଯାଇଥିଲା । କଂଗ୍ରେସରେ ଥିବା ବାମପନ୍ଥୀମାନଙ୍କ ସହିତ ସହଯୋଗିତା କରିବାକୁ ଆଗ୍ରହୀ ହେଲେ ମଧ୍ୟ ଭାରତର କମ୍ୟୁନିଷ୍ଟ ପାର୍ଟି ଏହି ସମ୍ମିଳନୀରେ ଯୋଗ ଦେଇ ନଥିଲେ । ସେମାନଙ୍କ ମତରେ, ସମ୍ମେଳନଟି ଥିଲା ସାମ୍ରାଜ୍ୟବାଦବିରୋଧୀ ଐକ୍ୟ ପକ୍ଷରେ ଏକ ମାରାତ୍ମକ ଆଘାତ ।

କଂଗ୍ରେସ ଅଧିବେଶନ ଏବଂ ବସୁଙ୍କ ସମ୍ମେଳନ ଚାଲିଥିବା ବେଳେ ୧୯୪୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଲାହୋରରେ ମୁସଲିମ୍ ଲୀଗ୍‌ର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେଠାରେ ଗୃହୀତ ଏକ ପ୍ରସ୍ତାବ ଭାରତର ଜାତୀୟ ଆନ୍ଦୋଳନର ପରବର୍ତ୍ତୀ ଇତିହାସରେ ଏକ ନିୟତି ନିର୍ଦ୍ଦିଷ୍ଟ ଭୂମିକା ପାଳନ କରିଥିଲା : ସେଥିରେ ଭାରତୀୟ ମୁସଲମାନମାନଙ୍କ ପାଇଁ ପାକିସ୍ତାନ ନାମକ ଏକ ପୃଥକ୍ ରାଷ୍ଟ୍ର ଗଠନ କରିବାକୁ ମୁସଲିମ୍ ଲୀଗ୍‌ର ଶେଷ ଲକ୍ଷ୍ୟ ବୋଲି ଘୋଷିତ ହୋଇଥିଲା ।

ଗାନ୍ଧୀ ଏବଂ ଜାତୀୟ କଂଗ୍ରେସର ନେତୃବୃନ୍ଦ ମୁସଲିମ୍ ଲୀଗ୍‌ର ଏହି ପ୍ରସ୍ତାବର ତୀବ୍ର ନିନ୍ଦା କରିଥିଲେ । ତତ୍କାଳୀନ ପରିସ୍ଥିତିରେ ହିନ୍ଦୁ ମୁସଲମାନ ଐକ୍ୟର ସୂଚକ ହିସାବରେ ଜାତୀୟତାବାଦୀ ମୁସଲମାନମାନଙ୍କର ଅନ୍ୟତମ ପ୍ରଧାନ ନେତା ମୌଲାନା ଆବୁଲ କାଲାମ ଆଜାଦଙ୍କୁ କଂଗ୍ରେସର ସଭାପତି ନିର୍ବାଚିତ କରାଯାଇଥିଲା ।

ଭାରତର ଜାତୀୟ ଆନ୍ଦୋଳନ ଅନ୍ତର୍ଗତ ବିଭିନ୍ନ ରାଜନୈତିକ ପ୍ରବଣତାଗୁଡ଼ିକ ମଧ୍ୟରେ କ୍ରମବର୍ଦ୍ଧମାନ ମତାନୈକ୍ୟ ହେତୁ ଐକ୍ୟବଦ୍ଧ ମୁକ୍ତି ସାମ୍ମୁଖ୍ୟ ଗଠନର ସମ୍ଭାବନାକୁ ରୋଧ କରିବାକୁ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ପକ୍ଷରେ ସହଜତର ହୋଇଥିଲା । ଏସବୁ, ଅବଶ୍ୟ, ଦେଶରେ ଶ୍ରେଣୀ ସଂଗ୍ରାମର ବିକାଶକୁ ରୋଧ କରିବା ଦିଗରେ ଯଥେଷ୍ଟ ଫଳବତୀ ହୋଇ ନଥିଲା ।

୧୯୪୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୬ ତାରିଖ ଦିନ ପାରମ୍ପରିକ ସ୍ୱାଧୀନତା ଦିବସ ଉଦ୍‌ଯାପନ ହଠାତ୍ ବ୍ରିଟିଶ୍‌ବିରୋଧୀ ଏକ ବ୍ୟାପକ ବିକ୍ଷୋଭ ଓ ଧର୍ମଘଟର ଆକାର ଧାରଣ କରିଥିଲା । ୧୯୪୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ-ଏପ୍ରିଲ ମାସରେ "ଗିର୍‌ନି କାମଗର" ବିପ୍ଳବୀ ଟ୍ରେଡ୍‌ୟୁନିଅନ୍ ନେତୃତ୍ୱରେ ବମ୍ବେର ସୂତାକଳ ଶ୍ରମିକମାନେ ସାଧାରଣ ଧର୍ମଘଟ ପାଳନ କରିଥିଲେ । ବମ୍ବେର ଏହି ଶ୍ରମିକମାନଙ୍କ ସହିତ ସଂହତି ସ୍ଥାପନ କରି ବମ୍ବେ ପ୍ରଦେଶର ଅନ୍ୟାନ୍ୟ ଶିଳ୍ପ କେନ୍ଦ୍ରମାନଙ୍କରେ ଦିନକିଆ ଧର୍ମଘଟ ପାଳିତ ହୋଇଥିଲା ।

୧୯୩୯-୧୯୪୦ ଖ୍ରୀଷ୍ଟାବ୍ଦରେ ଧର୍ମଘଟରେ ଯୋଗଦାନକାରୀ ଶ୍ରମିକମାନଙ୍କର ସଂଖ୍ୟା ୪ ଲକ୍ଷ ୯ ହଜାର–୪ଲକ୍ଷ ୫୦ ହଜାର ଓ ନଷ୍ଟ ହୋଇଥିବା ମୋଟ କର୍ମଦିବସର ସଂଖ୍ୟା (୫୦ ଲକ୍ଷ–୭୫ ଲକ୍ଷ) ବୃଦ୍ଧି ପାଇଥିଲା ।

୧୯୪୦ ଖ୍ରୀଷ୍ଟାବ୍ଦରେ ମୋଟ ଧର୍ମଘଟ ସଂଖ୍ୟା ହ୍ରାସ ପାଇବା ସତ୍ତ୍ୱେ (୪୦୬ରୁ ୩୨୨କୁ)

ଧର୍ମଘଟରେ ଅଂଶଗ୍ରହଣକାରୀ ଓ ନଷ୍ଟ କର୍ମଦିବସ ସଂଖ୍ୟା ବୃଦ୍ଧି ମଧ୍ୟରେ ସେତେବେଳେ ଧର୍ମଘଟ ଅଧିକତର ସଂଗଠିତ ହେବାର ଏବଂ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ଦୃଢ଼ ହୋଇ ଉଠୁଥିବାର ପ୍ରମାଣ ମିଳିଥିଲା ।

ଏହିସବୁ ଗଣ ଆନ୍ଦୋଳନ ଉପରେ ଔପନିବେଶିକ ପ୍ରଶାସନ ତା'ର ଚିରାଚରିତ ଢଙ୍ଗରେ ଦମନ ଆଉ ନିର୍ଯ୍ୟାତନ ଚଳାଇଥିଲା । ଇତିପୂର୍ବରୁ ଆଇନସଙ୍ଗତ ଭାବେ ପ୍ରକାଶିତ କମ୍ୟୁନିଷ୍ଟ ସମ୍ବାଦପତ୍ରଗୁଡ଼ିକୁ ଏହା ପରେ ବନ୍ଦ କରି ଦିଆଗଲା ଏବଂ ଟ୍ରେଡ୍‌ୟୁନିଅନ୍ ଓ କୃଷକସଭାର ସାମୟିକୀ ପତ୍ରିକାଗୁଡ଼ିକ କ୍ଷେତ୍ରରେ ମଧ୍ୟ ଏହାର ପୁନରାବୃତ୍ତି ଘଟିଥିଲା । ଏହା ଛଡ଼ା ଶ୍ରମିକ ଏବଂ କୃଷକ ନେତାମାନଙ୍କୁ ଗିରଫ କରାଗଲା । କିନ୍ତୁ ସଂଗଠିତ ଶ୍ରମିକ ଆନ୍ଦୋଳନର ଅଗ୍ରଗତିକୁ ରୋକିବାରେ ଏହିସବୁ ପଦକ୍ଷେପ ବ୍ୟର୍ଥ ହୋଇଥିଲା ।

୧୯୪୦ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ପରବର୍ତ୍ତୀ ଅଧିବେଶନରେ ଦେଶର ବିଭିନ୍ନ ଅଂଶର ଟ୍ରେଡ୍‌ୟୁନିଅନ୍ କେନ୍ଦ୍ରଗୁଡ଼ିକ ମଧ୍ୟରେ ସହଯୋଗିତା ବୃଦ୍ଧି ପାଇଁ ଆନୁଷ୍ଠାନିକ ଭାବେ ଆହ୍ୱାନ ଦିଆଯାଇଥିଲା । କଂଗ୍ରେସ ଅନ୍ତର୍ଭୁକ୍ତ ୧୯୫ଟି ଟ୍ରେଡ୍‌ୟୁନିଅନ୍‌ର ମୋଟ ସଦସ୍ୟ ସଂଖ୍ୟା ଥିଲା ସାଧାରଣ ଶ୍ରମିକ ଓ ଅଫିସ୍ କର୍ମଚାରୀମାନଙ୍କ ସମେତ ୩ ଲକ୍ଷ ୭୪ ହଜାର । ଅଧିକାଂଶ ମଜୁରି ଶ୍ରମିକ ସେତେବେଳେ ସଂଗଠିତ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ବାହାରେ ଥିଲେ ମଧ୍ୟ ଏଥିରେ ଇତିପୂର୍ବରୁ ବିଦ୍ୟମାନ ବିଭାଜନକୁ ଦୂର କରିବା ଥିଲା ଭାରତୀୟ ଶ୍ରମିକ ଆନ୍ଦୋଳନ ଇତିହାସରେ ଏକ ସ୍ମରଣୀୟ ଘଟଣା ।

ଏହି ସମୟରେ କେବଳ ଶ୍ରମିକ ଆନ୍ଦୋଳନର ଅଗ୍ରଗତି ନୁହେଁ, ଭାରତର ଭାଷାଭିତ୍ତିକ ଅଞ୍ଚଳ ଗଠନ, ତଥାକଥିତ ଭାଷାଭିତ୍ତିକ ପ୍ରଦେଶ—ମହାରାଷ୍ଟ୍ର, କର୍ଣ୍ଣାଟକ, ଆନ୍ଧ୍ର ଓ କେରଳ (ବିଭିନ୍ନ ପ୍ରଦେଶ ଓ ଦେଶୀୟ ରାଜ୍ୟର ଅନ୍ତର୍ଭୁକ୍ତ ଅଞ୍ଚଳଗୁଡ଼ିକୁ ଭାଷାଭାଷୀ ଅନୁଯାୟୀ ଏକତ୍ରିତ କରିଥିଲା) ପୁନର୍ଗଠନ ଲକ୍ଷ୍ୟରେ ସାଧାରଣ ଗଣତାନ୍ତ୍ରିକ ଆନ୍ଦୋଳନ ମଧ୍ୟ ତା'ର ଉଦ୍ୟୋଗକୁ ତୀବ୍ରତର କରିଥିଲା । ଆସାମ ଓ ବିହାର ପ୍ରଦେଶର ଅନ୍ତର୍ଭୁକ୍ତ ବଙ୍ଗଳା ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ବଙ୍ଗଳା ଅନ୍ତର୍ଗତ କରିବା ପାଇଁ ଏକ ଆନ୍ଦୋଳନ ସେଠାରେ ଆରମ୍ଭ ହୋଇ ଯାଇଥିଲା ।

ଏହିସବୁ ଆନ୍ଦୋଳନ ମଧ୍ୟରେ ଭାରତର ବୃହତ୍ ଭାଷାଭାଷୀ ଗୋଷ୍ଠୀଗୁଡ଼ିକର ଜାତୀୟ ଚେତନା ସ୍ପଷ୍ଟ ହୋଇ ଉଠିଥିଲା । ଏହା ଥିଲା ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରାରମ୍ଭର ଜାତୀୟ ସଂହତିମୂଳକ ଅର୍ଥନୈତିକ ଓ ସାମାଜିକ-ସାଂସ୍କୃତିକ ପ୍ରତିକ୍ରିୟାଗୁଡ଼ିକର ବିକାଶର ଫଳ ସ୍ୱରୂପ ।

୧୯୪୦ ଖ୍ରୀଷ୍ଟାବ୍ଦର ବସନ୍ତ ଓ ଗ୍ରୀଷ୍ମ ଋତୁରେ ପଶ୍ଚିମ ସୀମାନ୍ତରେ ଜର୍ମାନୀର ସାମରିକ ସାଫଲ୍ୟ ବ୍ରିଟିଶ୍ ରାଜନୈତିକ ଓ ସାମରିକ ଅବସ୍ଥାନକୁ ଦୁର୍ବଳ କରିଦେଲା । ଏହି ଅବସ୍ଥା ମଧ୍ୟ ପ୍ରଭାବିତ କରିଥିଲା ଭାରତର ପରିସ୍ଥିତିକୁ ।

୧୯୪୦ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ନିଖିଳ ଭାରତ କଂଗ୍ରେସ କମିଟି ତା'ର ପୁନା ଅଧିବେଶନରେ ବ୍ରିଟିଶ୍ ଯୁଦ୍ଧୋଦ୍ୟୋଗକୁ ସମର୍ଥନ ଦେବାର ସର୍ତ୍ତଗୁଡ଼ିକୁ ପୁନର୍ଘୋଷିତ କରିଥିଲା : (୧) ଯୁଦ୍ଧ ଶେଷରେ ଭାରତକୁ ସ୍ୱାଧୀନତା ଦାନ ସଂପର୍କିତ ବ୍ରିଟିଶ୍ ସରକାରଙ୍କ ଘୋଷଣା; (୨) ଏକ ଦାୟିତ୍ୱଶୀଳ ସରକାର ଗଠନ ।

ଅଗଷ୍ଟ ମାସରେ ଏହି ପ୍ରସ୍ତାବଗୁଡ଼ିକୁ ବଡ଼ଲାଟ୍‌ଙ୍କୁ ଜଣାଇ ଦିଆଯାଇଥିଲା ।

ବ୍ରିଟିଶ୍‌ମାନଙ୍କର ସାମରିକ ବ୍ୟର୍ଥତାର ସର୍ବାଧିକ ସୁଯୋଗ ନେଇ ଜାତୀୟ କଂଗ୍ରେସ ନେତୃବୃନ୍ଦ କେତେକ ସୁବିଧା ପାଇବା ଆଶାରେ ବ୍ରିଟିଶ୍ ସରକାର ଉପରେ ନୂତନ ଚାପ ସୃଷ୍ଟି କରି ଯାଇଥିଲେ । କିନ୍ତୁ ଔପନିବେଶିକ ସରକାର ଜାତୀୟ ଆନ୍ଦୋଳନ ଉପରେ ସର୍ବାତ୍ମକ ଆଘାତ ହାଣିବାର ଏକ ଉପଯୁକ୍ତ ମୁହୂର୍ତ୍ତର ଅପେକ୍ଷାରେ କାଳ କ୍ଷୟ କରୁଥିଲା ।

୧୯୪୦ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ଗାନ୍ଧୀ ଆଇନ୍ ଅମାନ୍ୟ ଆନ୍ଦୋଳନ ଘୋଷଣା କରିଥିଲେ । ଏହା ଥିଲା "ବ୍ୟକ୍ତିଗତ ସତ୍ୟାଗ୍ରହ ଭିତ୍ତିକ" : ଜନସମକ୍ଷରେ ଯୁଦ୍ଧବିରୋଧୀ ବକ୍ତୃତା ଅଥବା ଶାନ୍ତି ସପକ୍ଷରେ ସ୍ଲୋଗାନ ଦେବା ପାଇଁ ଗାନ୍ଧୀ ଜାତୀୟ କଂଗ୍ରେସ ନେତାମାନଙ୍କୁ ବିଶେଷ ଭାବେ ନିଯୁକ୍ତ କରିଥିଲେ । ଏହା ଦ୍ୱାରା ନିଯୁକ୍ତ ସକ୍ରିୟ କଂଗ୍ରେସ କର୍ମୀମାନଙ୍କର ତାଲିକାଟି ପୁଲିସ୍‌ର ହସ୍ତଗତ ହୋଇଥିଲା ଏବଂ ସେମାନେ ସମ୍ଭାବ୍ୟ ସତ୍ୟାଗ୍ରହୀମାନଙ୍କୁ କ୍ରମାନ୍ୱୟରେ ଗିରଫ୍ କରି ନେଇଥିଲେ । ଏହି ଭାବେ ପ୍ରାୟ ୨୦ ହଜାର କଂଗ୍ରେସ କର୍ମୀ କାରାବରଣ କରିଥିଲେ । ଏହା ପରେ ୧୯୪୧ ଖ୍ରୀଷ୍ଟାବ୍ଦର ଶେଷ ପର୍ଯ୍ୟାୟ ପୂର୍ବରୁ ପାର୍ଟି ପକ୍ଷରେ ଆଉ କୌଣସି ଫଳପ୍ରସୂ କାର୍ଯ୍ୟ ପରିଚାଳନା କରିବା ସମ୍ଭବ ହେଲା ନାହିଁ ।

ବ୍ରିଟିଶ୍ ଶାସନକୁ କେବଳ ଭାରତର ଆଭ୍ୟନ୍ତରୀଣ ବିପ୍ଳବୀ ଶକ୍ତି ସାହାଯ୍ୟରେ ଉତ୍ଖାତ କରିବାର ସମ୍ଭାବନା ସଂପର୍କରେ ହତାଶ ଏବଂ ବ୍ରିଟିଶ୍‌ମାନଙ୍କର ଆଶୁ ଚୂଡ଼ାନ୍ତ ସାମରିକ ପରାଜୟ ସଂପର୍କରେ ନିଶ୍ଚିତ ସୁଭାଷଚନ୍ଦ୍ର ବସୁ ସେତେବେଳେ ନାଜି ଜର୍ମାନୀ ଓ ତା'ର ମିତ୍ର ଶକ୍ତି ଉପରେ ସ୍ୱୀୟ ଆଶା ନ୍ୟସ୍ତ କରିଥିଲେ । ୧୯୪୧ ଖ୍ରୀଷ୍ଟାବ୍ଦ ବସନ୍ତ କାଳରେ ସେ ବେଆଇନ୍ ଭାବେ ଭାରତ ଆଫ୍‌ଗାନ ସୀମାନ୍ତ ପାରି ହୋଇ ପ୍ରଥମେ ବର୍ଲିନ୍‌ରେ ଏବଂ ପରେ ଜାପାନ୍‌ରେ ପହଞ୍ଚିଥିଲେ । ବ୍ରିଟିଶ୍‌ମାନଙ୍କ ଶତ୍ରୁ ପକ୍ଷ ଭାରତକୁ ବିଦେଶୀ ଆଧିପତ୍ୟରୁ ମୁକ୍ତ କରିବେ, ସେ ଏହିଭଳି ଏକ ସରଳ ବିଶ୍ୱାସର ବଶବର୍ତ୍ତୀ ହୋଇଥିଲେ ।

# ୧୯୪୨ ଖ୍ରୀଷ୍ଟାବ୍ଦ "ଅଗଷ୍ଟ ବିପ୍ଳବ" ଓ ବ୍ରିଟିଶ୍ ଔପନିବେଶିକ ଶାସନ

## ୧୯୪୨ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମ କାଳରେ ଦେଶର ପରିସ୍ଥିତି । କ୍ରିପ୍‌ସ ମିଶନ

୧୯୪୧ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ନାଜି ଜର୍ମାନୀ କର୍ତ୍ତୃକ ସୋଭିଏତ୍ ୟୁନିଅନ୍ ଆକ୍ରାନ୍ତ ହେବା ଏବଂ ଯୁଦ୍ଧରେ ସୋଭିଏତ୍ ୟୁନିଅନ୍ ଯୋଗ ଦେବା ଫଳରେ ଯୁଦ୍ଧର ଚରିତ୍ରରେ ମୌଳିକ ପରିବର୍ତ୍ତନ ଘଟିଥିଲା । ଏହିସବୁ ଘଟଣାବଳୀ ଭାରତର କମ୍ୟୁନିଷ୍ଟ ପାର୍ଟିର ଅନୁସୃତ ପଦକ୍ଷେପକୁ ମଧ୍ୟ ପ୍ରଭାବିତ କରିଥିଲା । ସ୍ୱାଧୀନତା ପାଇଁ ସଂଗ୍ରାମ କରିବା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟ ପାର୍ଟି ସେତେବେଳେ ଫାସିଷ୍ଟ ଅକ୍ଷ ଶକ୍ତି ବିରୁଦ୍ଧରେ ପରିଚାଳିତ ଯୁଦ୍ଧକୁ ଗଣଯୁଦ୍ଧରେ ପରିଣତ କରିବାକୁ ଆହ୍ୱାନ ଦେଲା ।

ଫଳରେ ସେମାନେ ଅସ୍ତ୍ରଶସ୍ତ୍ର ଉତ୍ପାଦନରେ ବାଧା ସୃଷ୍ଟି କରିବାର ବିରୋଧିତା କରିଥିଲେ । ଏଭଳି ଏକ ଅବସ୍ଥାରେ କମ୍ୟୁନିଷ୍ଟ ଓ କଂଗ୍ରେସ ସଦସ୍ୟ ଏବଂ କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ବାମପନ୍ଥୀ ଗୋଷ୍ଠୀ, ବିଶେଷତଃ, ଟ୍ରଟ୍‌ସ୍କିପନ୍ଥୀମାନଙ୍କ ମଧ୍ୟରେ ତୀବ୍ର ଭାବାଦର୍ଶଗତ ସଂଗ୍ରାମ ଆରମ୍ଭ ହୋଇ ଯାଇଥିଲା ।

୧୯୪୨ ଖ୍ରୀଷ୍ଟାବ୍ଦ ଫେବୃଆରୀ ମାସରେ କାନ୍‌ପୁରରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ୍‌ର ଊନବିଂଶ ଅଧିବେଶନରେ ଯୁଦ୍ଧର ଚରିତ୍ର ମୂଲ୍ୟାୟନ ଓ ବ୍ରିଟିଶ୍ ଯୁଦ୍ଧୋଦ୍ୟୋଗ ପ୍ରତି କି ଦୃଷ୍ଟିକୋଣ ଗ୍ରହଣ କରାଯିବ, ତା'ର ବ୍ୟାଖ୍ୟା ନେଇ ମତପାର୍ଥକ୍ୟ ଦେଖା ଦେଇଥିଲା । ଫଳରେ ମାନବେନ୍ଦ୍ରନାଥ ରାୟ, ଭି.ବି. କାର୍ଣ୍ଣିକ ପ୍ରମୁଖଙ୍କ ନେତୃତ୍ୱାଧୀନ ବଙ୍ଗାଳୀମାନଙ୍କୁ ନେଇ ବାମପନ୍ଥୀ-ର୍‍ୟାଡିକାଲ ଅଂଶଟି ଏହି ସଂଗଠନ ପରିତ୍ୟାଗ କରିଥିଲେ । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ପରିତ୍ୟାଗ କରିଥିବା ଏହିସବୁ ନେତାମାନେ "ଭାରତୀୟ ଶ୍ରମିକ ଫେଡେରେସନ" ନାମକ ଏକ ନିଜସ୍ୱ ସଂଗଠନ ପ୍ରତିଷ୍ଠା କରିଥିଲେ । ଏହା ଥିଲା ଦେଶର ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ଆଉ ଏକ ବିଭାଜନ ମାତ୍ର ।

ଜାତୀୟ ଆନ୍ଦୋଳନରେ ବର୍ତ୍ତମାନ ଭାବାଦର୍ଶଗତ ଓ ରାଜନୈତିକ ମତବୈଷମ୍ୟ, ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ବିଭାଜନ ଏବଂ ଜାତୀୟ ଆନ୍ଦୋଳନର ବହୁ ସଂଖ୍ୟକ ନେତାମାନଙ୍କୁ ଗିରଫ୍ ଜାରି– ଏସବୁ ଶ୍ରମିକ ଶ୍ରେଣୀର ବ୍ୟାପକ ଆନ୍ଦୋଳନ ଉପରେ ନାସ୍ତିବାଚକ ପ୍ରଭାବ ବିସ୍ତାର କରିଥିଲା । ଫଳରେ, ପୂର୍ବ ବର୍ଷ ତୁଳନାରେ ୧୯୪୧ ମସିହାର ଧର୍ମଘଟ ଆନ୍ଦୋଳନର ସାଫଲ୍ୟ ଯଥେଷ୍ଟ ହ୍ରାସ ପାଇଥିଲା ।

୧୯୪୧ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଜାପାନ୍‌ର ଯୁଦ୍ଧବାଦୀ ସରକାର ଯୁଦ୍ଧରେ ଯୋଗଦାନ କରିବା ଫଳରେ ବ୍ରିଟେନ୍‌ର ଏସୀୟ ଉପନିବେଶଗୁଡ଼ିକ ଆକ୍ରାନ୍ତ ହେବାର ନୂତନ ସମ୍ଭାବନା ଦେଖା ଦେଲା । ଏସିଆର ରଣନୀତିଗତ ପରିସ୍ଥିତିରେ ଏହି ପରିବର୍ତ୍ତନ ଏବଂ ବିଦେଶରୁ ବ୍ରିଟିଶ୍ ସରକାର ଉପରେ ପ୍ରତ୍ୟକ୍ଷ ଚାପ ସୃଷ୍ଟି ଫଳରେ ଉପନିବେଶିକମାନେ ଭାରତରେ ପୁନର୍ବାର ରାଜନୈତିକ କୌଶଳପୂର୍ଣ୍ଣ ଉଦ୍ୟମ ନେବାକୁ ବାଧ୍ୟ ହୋଇଥିଲେ ।

୧୯୪୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ସତ୍ୟାଗ୍ରହ ଆନ୍ଦୋଳନର ଅଧିକାଂଶ ବନ୍ଦୀଙ୍କୁ ମୁକ୍ତ କରି ଦିଆଗଲା, ପରବର୍ଷ ମାର୍ଚ୍ଚ ମାସରେ କଂଗ୍ରେସ ନେତାମାନଙ୍କ ନିକଟରେ ନୂତନ ବ୍ରିଟିଶ୍ ପ୍ରସ୍ତାବ ସମେତ ସାର୍ ଷ୍ଟାଫୋର୍ଡ କ୍ରିପ୍‌ସ ବିଶେଷ ଦୂତ ରୂପେ ଭାରତ ଆସିଥିଲେ । ଏହି ପ୍ରସ୍ତାବର ନିର୍ଯାସ ଥିଲା : (୧) ଯୁଦ୍ଧ କାଳରେ ଭାରତରେ ସ୍ଥିତାବସ୍ଥା ବଜାଏ ରହିବ, କିନ୍ତୁ ଯୁଦ୍ଧ ଶେଷରେ ଏହା ଡୋମିନିଅନ ହେବ; (୨) ଯୁଦ୍ଧ ଶେଷ ହେବା ସଙ୍ଗେ ସଙ୍ଗେ ନିର୍ବାଚନ ମାଧ୍ୟମରେ ଏକ ସଂବିଧାନ ସଭା ଗଠନ କରାଯିବ ଏବଂ ଏଥିରେ ରାଜନ୍ୟବର୍ଗଙ୍କ ଦ୍ୱାରା ମନୋନୀତ ପ୍ରତିନିଧିମାନେ ବିଧାନ ସଭାକୁ ନିର୍ବାଚିତ ହେବେ ଏବଂ ଏହି ପରିଷଦ ଡୋମିନିଅନ ପାଇଁ ଏକ ସମ୍ବିଧାନ ରଚନା କରିବ; (୩) କେତେକ ପ୍ରଦେଶ ଓ ରାଜ୍ୟ ସ୍ୱାଧୀନ ଡୋମିନିଅନ ହିସାବରେ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ରହିବେ ।

ବ୍ରିଟିଶ୍ ଶାସକ ଚକ୍ରଙ୍କ ଦ୍ୱାରା ଭାରତୀୟ ଉପମହାଦେଶକୁ ଖଣ୍ଡବିଖଣ୍ଡ କରିବାର ପ୍ରୟାସ ପ୍ରଥମେ ଏହି ଦଲିଲଟିରେ ସୂତ୍ରବଦ୍ଧ ହୋଇଥିଲା ।

କଂଗ୍ରେସ ନେତାମାନଙ୍କ ଉପରେ କ୍ରିପ୍‌ସଙ୍କ ଦ୍ୱାରା ଯଥା ସମ୍ଭବ ଚାପ ସୃଷ୍ଟି ସତ୍ତ୍ୱେ (ଅନ୍ୟାନ୍ୟ ରାଜନୈତିକ ଦଳର, ବିଶେଷତଃ, ସାଂପ୍ରଦାୟିକ ସଂଗଠନର ନେତାମାନଙ୍କ ଜରିଆରେ) କଂଗ୍ରେସ ଏହିସବୁ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲା ଏବଂ କ୍ରିପ୍‌ସ ମିଶନ ବ୍ୟର୍ଥ ହୋଇଥିଲା ।

## ୧୯୪୨ ଖ୍ରୀଷ୍ଟାବ୍ଦର ବସନ୍ତ ଏବଂ ଗ୍ରୀଷ୍ମ କାଳରେ ବ୍ରିଟିଶ୍‌ବିରୋଧୀ ସଂଗ୍ରାମ ବୃଦ୍ଧି

୧୯୪୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଜାପାନ୍ ବର୍ମା ଆକ୍ରମଣ କରି ଏହାକୁ ଦ୍ରୁତ ଦଖଲ କରି ନେବା ଫଳରେ ଯୁଦ୍ଧ ଭାରତର ଦ୍ୱାରଦେଶକୁ ଆସି ଯାଇଥିଲା । ବର୍ମାରେ ବ୍ରିଟିଶ୍ ସୈନ୍ୟମାନଙ୍କର ପରାଜୟ, ସେଠାରେ ଇଂରେଜ-ଭାରତୀୟ କେତେକ ବାହିନୀର ଆତ୍ମସମର୍ପଣ ଏବଂ ଭାରତରେ ବ୍ରିଟିଶ୍‌ମାନଙ୍କର ସଶଷ୍ତ ପଶ୍ଚାଦ୍‌ପସରଣ ଜାପାନୀ ଆକ୍ରମଣ ଆଗରେ ଔପନିବେଶିକ ଶାସନ ଯନ୍ତ୍ରର ପ୍ରସ୍ତୁତିର ଦୁର୍ବଳତାକୁ ସ୍ପଷ୍ଟ କରି ଦେଇଥିଲା । ତତ୍ ସଙ୍ଗେ ସଙ୍ଗେ ଏହା ବିଦ୍ୟମାନ ରାଜନୈତିକ ଉତ୍ତେଜନାକୁ ବୃଦ୍ଧି କରିଥିଲା ।

ଏହି ପର୍ଯ୍ୟାୟରେ ଜାତୀୟ କଂଗ୍ରେସ ସକ୍ରିୟ ସଂଗ୍ରାମରେ ତା'ର କୌଶଳ ପରିବର୍ତ୍ତନ କରିଥିଲା । ୧୯୪୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ "ହରିଜନ" ନାମକ ସାପ୍ତାହିକ ପତ୍ରିକାରେ ଲିଖିତ ଏକ ପ୍ରବନ୍ଧରେ ଗାନ୍ଧୀ ପ୍ରଥମ କରି "ଭାରତ ଛାଡ଼!" ଧ୍ୱନି ଦେଇଥିଲେ । ଏହି ଧ୍ୱନିଟି ଥିଲା ଭାରତକୁ ଆଶୁ ସ୍ୱାଧୀନତା ଦାନର ଆହ୍ୱାନ । ଜୁଲାଇ ୬ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଓୟାର୍ଦ୍ଧା (ବମ୍ବେ ପ୍ରଦେଶ) ବୈଠକରେ ବ୍ରିଟିଶ୍ ସୈନ୍ୟବାହିନୀ କର୍ତ୍ତୃକ ଭାରତକୁ ରକ୍ଷା କରିବାକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ "ଭାରତ ଛାଡ଼!" ଦାବି ଅନୁମୋଦିତ ହୋଇଥିଲା ।

ଏହି ପ୍ରସ୍ତାବ ଅନୁଯାୟୀ ଗାନ୍ଧୀ କଂଗ୍ରେସର ଦାବିକୁ ବାସ୍ତବାୟିତ କରିବା ପାଇଁ ବ୍ୟାପକ ଆଇନ୍ ଅମାନ୍ୟ ଆନ୍ଦୋଳନର ସମ୍ଭାବନା କଥା ଘୋଷଣା କରିଥିଲେ ଯଦ୍ୱାରା ଅହିଂସାର ସୀମା ଅତିକ୍ରମ କରିଯିବା ମଧ୍ୟ ବୈଧ ବୋଲି ବିବେଚିତ ହୋଇଥିଲା । ଏହି ଘୋଷଣାଟି ଥିଲା ବ୍ରିଟିଶ୍ ସରକାର ବିରୁଦ୍ଧରେ ପ୍ରତ୍ୟକ୍ଷ ଧମକ ସ୍ୱରୂପ ।

ଏହି ବର୍ଷ ଅଗଷ୍ଟ ୭ ତାରିଖ ଦିନ ନିଖିଳ ଭାରତ କଂଗ୍ରେସ କମିଟି ବମ୍ବେ ଅଧିବେଶନରେ ଏକ ନୂତନ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ସିଦ୍ଧାନ୍ତ ଗ୍ରହଣ କଲା । କିନ୍ତୁ ବଳପୂର୍ବକ ଔପନିବେଶିକ ସରକାରକୁ ଉତ୍‌ଖାତ କରିବାର ଏକ ଷଡ଼ଯନ୍ତ୍ରର ଆଳରେ ପରବର୍ତ୍ତୀ ଦୁଇ ଦିନ ମଧ୍ୟରେ ଗାନ୍ଧୀଙ୍କ ସମେତ ସମସ୍ତ କେନ୍ଦ୍ରୀୟ ଓ ପ୍ରାଦେଶିକ ନେତାମାନଙ୍କୁ ଗିରଫ୍ କରାଗଲା । ଅଭିଯୋଗଟି ଥିଲା ମିଥ୍ୟା, ପୁଲିସ୍ ଉପରେ ନିର୍ଭରଶୀଳ ଏକ ମନଗଢ଼ା ବ୍ୟାପାର । ଏହା ପରେ ସରକାରୀ ଭାବେ କଂଗ୍ରେସର ଯାବତୀୟ କାର୍ଯ୍ୟକଳାପ ବେଆଇନ୍ ଘୋଷିତ ହୋଇଥିଲା ।

ଜାପାନୀ ଆକ୍ରମଣର ଆଶଙ୍କା ବେଳେ ଜାତୀୟ କଂଗ୍ରେସର ନେତାମାନଙ୍କ ଗିରଫ୍ ହେତୁ ଦେଶ ସାରା ସ୍ୱତଃସ୍ଫୂର୍ତ୍ତ ବ୍ରିଟିଶ୍‌ବିରୋଧୀ ଗଣବିକ୍ଷୋଭ ଦେଖା ଦେଇଥିଲା । ଅଗଷ୍ଟ ଓ ସେପ୍‌ଟେମ୍ବର ମାସର ପ୍ରାରମ୍ଭରେ ଦେଶର ବିଭିନ୍ନ ସ୍ଥାନରେ ଅସଂଖ୍ୟ ବିକ୍ଷୋଭ ଓ ପ୍ରତିବାଦ ଧର୍ମଘଟ (ବା ହରତାଳ) ପାଳିତ ହୋଇଥିଲା । ସାଧାରଣତଃ କମ୍ୟୁନିଷ୍ଟ ଓ କଂଗ୍ରେସୀ ବାମପନ୍ଥୀମାନଙ୍କ ନେତୃତ୍ୱରେ ଯୁବକମାନେ ଏହି ସମୟରେ ଶହ ଶହ ରେଳ ଷ୍ଟେସନ, ପୋଷ୍ଟ ଅଫିସ୍ ଓ ଥାନା ଉପରେ ଆକ୍ରମଣ କରିଥିଲେ । ସେମାନେ ଯୋଗାଯୋଗ ବ୍ୟବସ୍ଥା ଧ୍ୱଂସ କରିଦେଲେ ଏବଂ ସଡ଼କ ଆଉ ରେଳ ପୋଲ

ଉଡ଼େଇ ଦେଲେ । ବିହାର, ଯୁକ୍ତ ପ୍ରଦେଶର ପୂର୍ବାଞ୍ଚଳ ଓ ବମ୍ବେ ପ୍ରଦେଶ ସାତାରା ଜିଲ୍ଲାରେ ବ୍ୟାପକ ଆକାରରେ ଏହି ଧରଣର କ୍ରିୟାକଳାପ ଅନୁଷ୍ଠିତ ହୋଇଥିଲା । ବଲିଆ ଆଉ ଆଜମଗଡ଼ ଜିଲ୍ଲାରେ (ଯୁକ୍ତ ପ୍ରଦେଶ) ଔପନିବେଶିକ ପ୍ରଶାସନର ପିଟୁଣି ବାହିନୀ ବିରୁଦ୍ଧରେ ଦେଶପ୍ରେମିକମାନେ ରୀତିମତ ଗରିଲା ଯୁଦ୍ଧ ଚଳେଇଥିଲେ ।

କିନ୍ତୁ ଏହିସବୁ କ୍ରିୟାକଳାପ ଥିଲା ସ୍ୱତଃସ୍ଫୂର୍ତ୍ତ ଧରଣର, ସମନ୍ୱୟହୀନ ଏବଂ କେନ୍ଦ୍ରୀୟ ନିୟନ୍ତ୍ରଣହୀନ । ସାମାନ୍ୟ ଅସ୍ତ୍ରସଜ୍ଜିତ ବିଦ୍ରୋହୀମାନଙ୍କ ପକ୍ଷରେ ଔପନିବେଶିକ ସରକାରର ସୈନ୍ୟ ଓ ପୋଲିସ୍ ବାହିନୀର ଆକ୍ରମଣକୁ ମୁକାବିଲା କରିବା ସମ୍ଭବ ନଥିଲା । ବ୍ରିଟିଶ୍ କର୍ତ୍ତୃପକ୍ଷ ଆନ୍ଦୋଳନକାରୀମାନଙ୍କ ବିରୁଦ୍ଧରେ ନିଷ୍ଠୁର ପ୍ରତିହିଂସା ନେଇଥିଲେ—ଏଥିରେ ୨ ହଜାରରୁ ବେଶି ଲୋକ ନିହତ ହୋଇଥିଲେ ଏବଂ ୬୦ ହଜାରରୁ ଅଧିକ ଲୋକ ଗିରଫ୍ ହୋଇଥିଲେ । ସରକାର ବହୁ ସ୍ଥାନରେ ବନ୍ଦୀ ଶିବିର ସ୍ଥାପନ କରି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅଟକ ରଖିଥିଲା ।

୧୯୪୨ ଖ୍ରୀଷ୍ଟାବ୍ଦ "ଅଗଷ୍ଟ ବିପ୍ଳବ" ଶେଷକୁ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । କିନ୍ତୁ ଏଥିରେ ସୂଚିତ ହୋଇଥିଲା ଏକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ—ଏହାର ସଦସ୍ୟମାନେ ଗାନ୍ଧୀଙ୍କ ଅହିଂସାମନ୍ତ୍ରରେ ଦୀକ୍ଷିତ ହେଲେ ମଧ୍ୟ ସ୍ୱାଧୀନତା ପାଇଁ ସଶସ୍ତ୍ର ସଂଗ୍ରାମ ପରିଚାଳନାର ଅପରିହାର୍ଯ୍ୟତାକୁ ଉପଲବ୍ଧି କରିଥିଲେ ।

ଏହି କ୍ରାନ୍ତି ଲଗ୍ନରେ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ମଧ୍ୟ ଯେ ତୀବ୍ରତର ହୋଇ ଉଠିଥିଲା, ତାହା ନିମ୍ନୋକ୍ତ ପରିସଂଖ୍ୟାନରୁ ସହଜରେ ଲକ୍ଷ୍ୟ କରାଯାଏ । ୧୯୪୨ ମସିହାରେ ଧର୍ମଘଟ ସଂଖ୍ୟା ୬୯୪ (୧୯୪୧ ଖ୍ରୀଷ୍ଟାବ୍ଦରେ ୩୫୯), ଧର୍ମଘଟକାରୀମାନଙ୍କ ସଂଖ୍ୟା ୭ ଲକ୍ଷ ୭୨ ହଜାର (୧୯୪୧ ଖ୍ରୀଷ୍ଟାବ୍ଦରେ ୨ ଲକ୍ଷ ୯୧ ହଜାର) ଏବଂ ବିନଷ୍ଟ କର୍ମଦିବସ ୫୭ ଲକ୍ଷ (୧୯୪୧ ଖ୍ରୀଷ୍ଟାବ୍ଦରେ ୩୦ ଲକ୍ଷ) ।

ଯୁକ୍ତ ପ୍ରଦେଶ, ବିହାର, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ବଙ୍ଗଳା ଓ ଓଡ଼ିଶାରେ ସେତେବେଳେ ଜମିଦାରବିରୋଧୀ କୃଷକ ଆନ୍ଦୋଳନ ମଧ୍ୟ ଯଥେଷ୍ଟ ବୃଦ୍ଧି ପାଇଥିଲା ।

ଦେଶର ଅର୍ଥନୈତିକ ଅବସ୍ଥାର କ୍ରମବର୍ଦ୍ଧମାନ ଅବନତିର ପରିସ୍ଥିତିରେ ଶ୍ରମିକ ଶ୍ରେଣୀର ବ୍ୟାପକ ସଂଗ୍ରାମ ଆଗେଇ ଚାଲିଥିଲା ।

## ଯୁଦ୍ଧର ଶେଷ ପର୍ବରେ (୧୯୪୩-୧୯୪୫) ଭାରତର ଅର୍ଥନୈତିକ ଓ ରାଜନୈତିକ ଅବସ୍ଥା

### ପୂର୍ବ ଭାରତରେ ଦୁର୍ଭିକ୍ଷ । କୃଷକ ଆନ୍ଦୋଳନ

୧୯୪୩ ଓ ୧୯୪୪ ଖ୍ରୀଷ୍ଟାବ୍ଦରେ ଭାରତର ଅନେକ ଅଞ୍ଚଳରେ ଫସଲ ହାନି ହେତୁ ଖାଦ୍ୟାଭାବ ଏବଂ ବ୍ୟାପକ ଦୁର୍ଭିକ୍ଷ ଦେଖା ଦେଇଥିଲା । ବଙ୍ଗଳା, ବିହାର ଓ ଓଡ଼ିଶାର କେତେକ ଅଞ୍ଚଳରେ ଏହି ଅବସ୍ଥା ମାରାତ୍ମକ ରୂପ ଧାରଣ କରିଥିଲା । ୧୯୪୩-୧୯୪୪ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ପାଇଁ ସ୍ଥାନୀୟ

ଫସଲ ହାନି ଅପେକ୍ଷା ବ୍ରିଟିଶ୍ ପ୍ରଶାସନର ଦୁର୍ବଳ ବଣ୍ଟନ ବ୍ୟବସ୍ଥା ଓ ଭାରତ ବାହାରକୁ ଅବ୍ୟାହତ ଶସ୍ୟ ରପ୍ତାନି ଅଧିକ ଦାୟୀ । ଏହି ସମୟରେ ଭାରତର ୪୦ ଲକ୍ଷ ଟନ୍ ଶସ୍ୟ ନଥିଣ୍ଟ ସତ୍ତ୍ୱେ ଦେଶରୁ ୧୦ ଲକ୍ଷ ଟନ୍ ଶସ୍ୟ ରପ୍ତାନି କରାଯାଇଥିଲା ।

ଶସ୍ୟର ଦର ଏତେ ବୃଦ୍ଧି ପାଇଥିଲା ଯେ , ୧୯୪୩ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ବେଳକୁ ଯୁଦ୍ଧପୂର୍ବ ଅପେକ୍ଷା ଦଶ ଗୁଣ ବୃଦ୍ଧି ପାଇଥିଲା । ଏହି ଦର ବୃଦ୍ଧିର ପ୍ରଥମ ଶିକାର ହୋଇଥିଲେ ଗ୍ରାମର ଗରିବ ଜନସାଧାରଣଙ୍କ ସହ ଭାରତୀୟ ସମାଜର ଦରିଦ୍ର ଲୋକେ । ଗ୍ରାମାଞ୍ଚଳରେ କୃଷକମାନଙ୍କର ବ୍ୟାପକ ଦାରିଦ୍ର୍ୟ ଥିଲା ମହାଜନମାନଙ୍କ ପାଖରେ ବ୍ୟାପକ ପରିମାଣରେ ଋଣ ଗ୍ରସ୍ତତା ଏବଂ ମହାଜନ ତଥା ଜମିଦାରମାନଙ୍କ ଦ୍ୱାରା ଜମି ହସ୍ତଗତ ହେବାର ଫଳ ସ୍ୱରୂପ ।

ଏହି ଦୁର୍ଭିକ୍ଷରେ ୫୦ ଲକ୍ଷାଧିକ ଲୋକେ ପ୍ରାଣ ହରେଇଥିଲେ । ଯୁକ୍ତ ପ୍ରଦେଶ ଓ ପୂର୍ବ ଭାରତର ଏକ ବୃହତ୍ ଅଞ୍ଚଳ ମାରାତ୍ମକ ଦୁର୍ଭିକ୍ଷର କବଳଗ୍ରସ୍ତ ହେବା ହେତୁ ଏହି ଅଞ୍ଚଳରେ ସେତେବେଳେ କୃଷକ ଆନ୍ଦୋଳନରେ ଭଟା ଦେଖା ଦେଇଥିଲା । ଦେଶର ଦକ୍ଷିଣାଞ୍ଚଳ , ତାମିଲନାଡୁ ଓ କେରଳ ଏହି ସମୟରେ କୃଷକ ଆନ୍ଦୋଳନର ସକ୍ରିୟ କେନ୍ଦ୍ର ହୋଇ ଉଠିଥିଲା । ସେଠାରେ ଏବଂ ପରବର୍ତ୍ତୀ କାଳରେ ବଙ୍ଗଳାରେ କୃଷକ ଆନ୍ଦୋଳନ ନୂତନ ପଥରେ ଅଗ୍ରସର ହୋଇଥିଲା । କୃଷକମାନେ ଜମିଦାରମାନଙ୍କ ପତିତ ଜମି ଚାଷ କରିବାକୁ ଆରମ୍ଭ କରିଥିଲେ ଏବଂ ସେମାନଙ୍କ ଶସ୍ୟ ଗୋଲା ଦଖଲ କରି ନେଇଥିଲେ ।

ଭାରତର କମ୍ୟୁନିଷ୍ଟ ପାର୍ଟିକୁ ଆଇନ୍‌ସଙ୍ଗତ କରିବାର ଆନୁଷଙ୍ଗିକ ଘଟଣାବଳୀ ଦ୍ୱାରା ଏହି ଗଣ ଆନ୍ଦୋଳନର ବିକାଶ ବିଶେଷ ଭାବେ ପ୍ରଭାବିତ ହୋଇଥିଲା ।

## ଭାରତର କମ୍ୟୁନିଷ୍ଟ ପାର୍ଟି (୧୯୪୨-୧୯୪୫)

୧୯୪୨ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ବ୍ରିଟିଶ୍ ଔପନିବେଶିକ କର୍ତ୍ତୃପକ୍ଷ ଭାରତର କମ୍ୟୁନିଷ୍ଟ ପାର୍ଟିକୁ ଆଇନସମ୍ମତ କରିଥିଲେ । ୧୯୪୧ ଖ୍ରୀଷ୍ଟାବ୍ଦର ଶରତ କାଳ ପରେ ଯୁଦ୍ଧ ପ୍ରତି ଭାରତର କମ୍ୟୁନିଷ୍ଟ ପାର୍ଟିର ଅନୁସୃତ ଦୃଷ୍ଟିଭଙ୍ଗି ଫଳରେ ଏହି ପରିବର୍ତ୍ତନଟି ଘଟିଥିଲା । ପରିବର୍ତ୍ତିତ ପରିସ୍ଥିତିରେ ଭାରତୀୟ କମ୍ୟୁନିଷ୍ଟମାନଙ୍କ କର୍ତ୍ତୃକ "ଗଣଯୁଦ୍ଧର ଧ୍ୱନି" ଦେବା ଏବଂ ଦେଶ ସାରା ଅପୋତ୍ପାଦନ ବୃଦ୍ଧି ପ୍ରତି ସହାୟତା ଦାନର ପରିପ୍ରେକ୍ଷିତରେ ଏହି ପାର୍ଟିର କାର୍ଯ୍ୟକଳାପକୁ ଆଇନସମ୍ମତ କରାଗଲା ଫଳରେ ୧୯୪୨ ଖ୍ରୀଷ୍ଟାବ୍ଦର ଅନ୍ଧକାରତମ ଯୁଦ୍ଧ ବର୍ଷରେ ମିତ୍ର ବାହିନୀର ଏସୀୟ ପଶ୍ଚାଦ୍‌ଭୂମିର ଅବସ୍ଥାନ ଯଥେଷ୍ଟ ଦୃଢ଼ ହୋଇଥିଲା । ବ୍ରିଟିଶ୍ ଶାସକଚକ୍ର ଦ୍ୱାରା ଅନୁସୃତ ଏହି ପଦକ୍ଷେପର ଆନ୍ତର୍ଜାତିକ ତାତ୍ପର୍ଯ୍ୟ ହେଲା , ଏଥିରେ ସୋଭିଏତ୍ ୟୁନିଅନ୍ ପ୍ରତି ଅନୁକୂଳ ମନୋଭାବ ପ୍ରଦର୍ଶିତ ହୋଇଥିଲା ।

ଭାରତର କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକଳାପକୁ ଆଇନସମ୍ମତ କରିବା ସଙ୍ଗେ ସଙ୍ଗେ ଔପନିବେଶିକ କର୍ତ୍ତୃପକ୍ଷ ଏହାର ଫଳ ସ୍ୱରୂପ ଜାତୀୟ ଆନ୍ଦୋଳନରେ ବିଭେଦ ସୃଷ୍ଟି କରିବାକୁ , ନବ ପର୍ଯ୍ୟାୟରେ ଆଇନସମ୍ମତ ଘୋଷିତ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ ଜାତୀୟ କଂଗ୍ରେସ ବିରୁଦ୍ଧରେ କାର୍ଯ୍ୟରେ

ଇଗାଇବାକୁ ଆଶା ପୋଷଣ କରିଥିଲେ । ଏହି ଭାବେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ବସ୍ତୁତଃ ଏକ କଠିନ ଅବସ୍ଥାର ସମ୍ମୁଖୀନ ହୋଇଥିଲା । ଏକ ଦିଗରେ, ଫାସିଷ୍ଟ ମେଣ୍ଟ ବିରୁଦ୍ଧରେ ସଂଗ୍ରାମରେ ସଂଘବଦ୍ଧ ଜାତିଗୁଡ଼ିକର ସ୍ୱାର୍ଥ ରକ୍ଷା କରିବା ସଙ୍ଗେ ସଙ୍ଗେ, ଅନ୍ୟ ଦିଗରେ, ବ୍ରିଟିଶ୍ ଔପନିବେଶିକତା ବିରୁଦ୍ଧରେ ସଂଗ୍ରାମରେ ଭାରତୀୟ ଜନସାଧାରଣଙ୍କ ପକ୍ଷ ସମର୍ଥନର ଅନୁକୂଳରେ ଏକ ବିଚକ୍ଷଣ କର୍ମନୀତି ଉଦ୍‌ଭାବନ କରିବାରେ ଏହା ସଚେଷ୍ଟ ହୋଇଥିଲା ।

କଂଗ୍ରେସର ବ୍ୟତିକ୍ରମ ହିସାବରେ ଭାରତର କମ୍ୟୁନିଷ୍ଟ ପାର୍ଟି ବ୍ରିଟିଶ୍ ଯୁଦ୍ଧୋଦ୍ୟମକୁ ତା'ର ସମର୍ଥନ ଦାନ ପାଇଁ ଦାୟିତ୍ୱଶୀଳ ସରକାର ଗଠନ ଓ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ସୁବିଧାଦାନ କରିବା ନିମିତ୍ତ କୌଣସି ସର୍ତ୍ତ ଉପସ୍ଥାପିତ କରି ନଥିଲା । ଏହି ପାର୍ଟି, ଅବଶ୍ୟ, ସେତେବେଳେ ସମଗ୍ର ଜାତିର ପ୍ରଧାନ ଦାବି, ବିଶେଷତଃ, ଜାତୀୟ ସରକାର ଗଠନର ଦାବି ସପକ୍ଷରେ ତା'ର ପୂର୍ଣ୍ଣ ସମର୍ଥନ ଦେଇଥିଲା । ଫାସିବାଦ ଓ ଜାପାନୀ ଯୁଦ୍ଧବାଦ ବିରୁଦ୍ଧରେ ସଂଗ୍ରାମରେ ଏହି ବ୍ୟବସ୍ଥା ଯେ ଭାରତରେ ବିଦ୍ୟମାନ ସଂବଳର ପୂର୍ଣ୍ଣତର ସଦ୍‌ବ୍ୟବହାର କରିବାର ପୂର୍ବସର୍ତ୍ତ ସ୍ୱରୂପ – ପାର୍ଟି ତାହା ସ୍ପଷ୍ଟ ଭାବେ ଦେଖାଇଥିଲା ।

ସାମ୍ରାଜ୍ୟବାଦ ବିରୁଦ୍ଧରେ ସାଫଲ୍ୟ ଅର୍ଜନ କରିବାକୁ ହେଲେ ଜାତୀୟ ଆନ୍ଦୋଳନ ଭୁକ୍ତ ବିଭିନ୍ନ ଶକ୍ତି ମଧ୍ୟରେ ଐକ୍ୟ ଯେ ଅପରିହାର୍ଯ୍ୟ, ସେ ସଂପର୍କରେ ଭାରତର କମ୍ୟୁନିଷ୍ଟ ପାର୍ଟି ସର୍ବଦା ଅନୁକୂଳ ମତ ଦେଇଥିଲା । ଏହି ଦୃଷ୍ଟିକୋଣରୁ ଭାରତୀୟ କମ୍ୟୁନିଷ୍ଟମାନେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ମଧ୍ୟରେ ବୁଝାମଣାର ପ୍ରୟୋଜନୀୟତାକୁ ଉପଲବ୍ଧି କରିଥିଲେ ।

ଏହି ବିଶେଷ ପର୍ଯ୍ୟାୟରେ, ପାର୍ଟିର ରାଜନୈତିକ ମଞ୍ଚ ଓ ଅନୁସୃତ କର୍ମନୀତିରେ କେତେକ ତ୍ରୁଟି ଘଟିଥିଲା (ପରବର୍ତ୍ତୀ କାଳରେ ଭାରତର କମ୍ୟୁନିଷ୍ଟ ପାର୍ଟି କର୍ତ୍ତୃକ ସ୍ୱୀକୃତ), ଯାହାକି ସାମ୍ରାଜ୍ୟବାଦବିରୋଧୀ ଶକ୍ତିଗୁଡ଼ିକର ଐକ୍ୟ ସ୍ଥାପନ କରିବା ପରିବର୍ତ୍ତେ ତାକୁ କ୍ଷତିଗ୍ରସ୍ତ କରିଥିଲା । ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି "ଅଗଷ୍ଟ ବିପ୍ଳବ" ସଂପର୍କରେ ନାସ୍ତିବାଚକ ଦୃଷ୍ଟିଭଙ୍ଗି ସମେତ ଭାରତର ମୁସଲମାନ୍ ପ୍ରଧାନ ଅଞ୍ଚଳଗୁଡ଼ିକରେ ସାର୍ବଭୌମ ରାଷ୍ଟ୍ର ଗଠନ ପାଇଁ ଲାହୋରର ମୁସଲିମ୍ ଲୀଗ୍‌ର ପ୍ରସ୍ତାବକୁ ସମର୍ଥନ ଦେଇଥିଲା । ୧୯୪୨ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି କର୍ତ୍ତୃକ ଗୃହୀତ ଏକ ପ୍ରସ୍ତାବରେ ଗାନ୍ଧୀଙ୍କ ସମେତ ସମସ୍ତ ନେତାଙ୍କର ମୁକ୍ତିଦାନ, ନିର୍ଯ୍ୟାତନମୂଳକ କାର୍ଯ୍ୟକଳାପ ବନ୍ଦ, ଜାତୀୟ କଂଗ୍ରେସକୁ ଆଇନସମ୍ମତ କରିବା ଓ ଅନ୍ତର୍ବର୍ତ୍ତୀକାଳୀନ ଜାତୀୟ ସରକାର ପ୍ରତିଷ୍ଠା କରିବାର ଦାବୀଗୁଡ଼ିକୁ ଉପସ୍ଥାପିତ କରିବା ସତ୍ତ୍ୱେ ଭାରତର କମ୍ୟୁନିଷ୍ଟ ପାର୍ଟିର ସଦସ୍ୟବର୍ଗ ଓ କଂଗ୍ରେସ ନେତାମାନଙ୍କ ମଧ୍ୟରେ ପାରସ୍ପରିକ ସଂପର୍କ କ୍ଷେତ୍ରରେ କ୍ରମାବନତି ଘଟିଥିଲା । ୧୯୪୨-୧୯୪୫ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ଗଣ ସଂଗଠନଗୁଡ଼ିକରେ ଭାରତର କମ୍ୟୁନିଷ୍ଟ ପାର୍ଟିର ପ୍ରଭାବ ଯଥେଷ୍ଟ ସଂହତ ଓ ବିସ୍ତୃତ ହେବା ପଛରେ ଏହି ଘଟଣାବଳୀ ଆଂଶିକ ଭାବେ ଦାୟୀ ।

ଭାରତର କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକଳାପକୁ ବୈଧ କରିବାର ପ୍ରଥମ ମାସଗୁଡ଼ିକରେ ପାର୍ଟି ସଦସ୍ୟମାନେ କଠିନ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ସେତେବେଳେ କେନ୍ଦ୍ରୀୟ କମିଟିର ବହୁ ସଦସ୍ୟ ଜେଲରେ ଥିଲେ । ଔପନିବେଶିକ ସରକାର ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ସଂପର୍କରେ ଭାରତର କମ୍ୟୁନିଷ୍ଟ ପାର୍ଟିର ସୁସ୍ପଷ୍ଟ ଦୃଷ୍ଟିଭଙ୍ଗି ସତ୍ତ୍ୱେ ୧୯୪୨ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମ କାଳରେ ଦେଶର ବିଭିନ୍ନ ଅଂଶରେ

ଅଗଷ୍ଟ ଆନ୍ଦୋଳନରେ ଅନ୍ତ ବହୁତ ଅଂଶ ଗ୍ରହଣ ପାଇଁ ବହୁ ପାର୍ଟି ସକ୍ରିୟ ସଦସ୍ୟମାନଙ୍କୁ ଗିରଫ୍ କରାଯାଇଥିଲା । ତା ସତ୍ତ୍ୱେ ବୈଧକରଣ ଫଳରେ ପାର୍ଟିରେ କ୍ରିୟାକଳାପ କ୍ଷେତ୍ରରେ ପରିସ୍ଥିତିଗତ ମୌଳିକ ପରିବର୍ତ୍ତନ ଦେଖା ଦେଇଥିଲା । ସେଇ ଅବସ୍ଥାରେ ପାର୍ଟିର ପତ୍ରିକାଗୁଡ଼ିକୁ ନିୟମିତ ପ୍ରକାଶ କରିବା ସମ୍ଭବ ହୋଇଥିଲା ।

୧୯୪୨ ଖ୍ରୀଷ୍ଟାବ୍ଦରେ ଜୁଲାଇ ମାସ ପରେ ପାର୍ଟି, "ପିପୁଲ୍ସ୍ ଓ୍ୱାର" ("ଗଣଯୁଦ୍ଧ") ନାମରେ ଏକ ଇଂରେଜୀ ସାପ୍ତାହିକ, ପରେ ୧୨ଟି ଭାରତୀୟ ଭାଷାରେ, ପ୍ରକାଶ କରିଥିଲା । ଏହା ଥିଲା ବସ୍ତୁତଃ ପାର୍ଟିର ଯୌଥ କାର୍ଯ୍ୟକଳାପକୁ ସମନ୍ୱିତ କରିବାର ହତିଆର । ବମ୍ବେ ପାର୍ଟି କେନ୍ଦ୍ରର ପ୍ରକାଶନା ସଂସ୍ଥା ସେତେବେଳେ ବହୁ ପ୍ରଗ୍ରର ପୁସ୍ତିକା ଏବଂ ଅନ୍ୟାନ୍ୟ ପୁସ୍ତକ ପ୍ରକାଶ କରୁଥିଲା । ଔପନିବେଶିକ ପ୍ରଶାସନର ନିଷେଧାଜ୍ଞା ସତ୍ତ୍ୱେ ଏହି ସମ୍ବାଦପତ୍ରର ପୃଷ୍ଠାରେ ସମଗ୍ର ଦେଶର ଶ୍ରମିକ, କୃଷକ ଓ ଗଣତାନ୍ତ୍ରିକ ଆନ୍ଦୋଳନର ବିସ୍ତାରିତ ସମ୍ବାଦ ପ୍ରକାଶ ପାଉଥିଲା । ତା'ପରେ ପତ୍ରିକାଟି ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟର ବିଭିନ୍ନ ରଣାଙ୍ଗନର ପରିସ୍ଥିତି ଏବଂ ଫାସିଷ୍ଟ ଆକ୍ରମଣକାରୀଙ୍କ ବିରୁଦ୍ଧରେ "ଲାଲ ଫୌଜର" ବୀରୋଚିତ ସଂଗ୍ରାମର ସମ୍ବାଦାଦି ପାଠକମାନଙ୍କ ନିକଟରେ ଉପସ୍ଥାପିତ କରୁଥିଲା । ପତ୍ରିକାଟି ଆତ୍ମପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହା ଔପନିବେଶିକ ପ୍ରଶାସନର କୋପଦୃଷ୍ଟିରେ ପଡ଼ିଥିଲା : ଜୋରିମାନା, କପି ବାଜ୍ୟାପ୍ତି, ଛାପାଖାନା ଓ ସଂପାଦକୀୟ ଦପ୍ତର ଖାନତଲାସ, ପାର୍ଟି ପତ୍ରପତ୍ରିକା ବାଣ୍ଟୁଥିବା ଲୋକଙ୍କୁ ଗିରଫ୍ ଆଦି ଘଟଣା ନିତ୍ୟନୈମିତ୍ତିକ ହୋଇ ପଡ଼ିଥିଲା । ପ୍ରତିକ୍ରିୟାଶୀଳ ଦଳଗୁଡ଼ିକ ପାର୍ଟି ଛାପାଖାନା ଉପରେ ଚଢ଼ଉ କରି ଏହାକୁ ପୋଡ଼ି ଦେବାକୁ ଚେଷ୍ଟା କରିଥିଲେ । କିନ୍ତୁ ଏହିସବୁ ଚେଷ୍ଟା ସତ୍ତ୍ୱେ "ପିପୁଲ୍ସ୍ ଓ୍ୱାର" ପତ୍ରିକା ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରେ ବୈଜ୍ଞାନିକ କମ୍ୟୁନିଜମ୍‌ର ଧାରଣାବଳୀର ପ୍ରଗ୍ରର ଚଳେଇ ଯାଇଥିଲେ ।

୧୯୪୩ ଖ୍ରୀଷ୍ଟାବ୍ଦ ମେ ମାସ ୨୩ ତାରିଖରେ ବମ୍ବେରେ ଭାରତର କମ୍ୟୁନିଷ୍ଟ ପାର୍ଟିର ପ୍ରଥମ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ଏହି କଂଗ୍ରେସରେ ପାର୍ଟିର ରାଜନୈତିକ କର୍ମନୀତି ସୂତ୍ରବଦ୍ଧ ହେବା ସାଥେ ସାଥେ ପୂରଣଚନ୍ଦ୍ର ଯୋଶୀଙ୍କ ନେତୃତ୍ୱରେ ଏକ କେନ୍ଦ୍ରୀୟ କମିଟି ନିର୍ବାଚିତ ହୋଇଥିଲା । ପାର୍ଟିର ବୈଧ କାର୍ଯ୍ୟକଳାପର ପ୍ରଥମ ବର୍ଷରେ ପାର୍ଟିର ସଦସ୍ୟ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଥିଲା (୧୯୪୨ ଖ୍ରୀଷ୍ଟାବ୍ଦରେ ୪ ହଜାରରୁ ୧୯୪୩ ଖ୍ରୀଷ୍ଟାବ୍ଦ ମେ ମାସ ମଧ୍ୟରେ ୧୬ ହଜାର) । ପରବର୍ତ୍ତୀ ବର୍ଷଗୁଡ଼ିକରେ ସଦସ୍ୟ ସଂଖ୍ୟା ଓ ପାର୍ଟିର ପ୍ରଭାବ ବୃଦ୍ଧି ପାଇବାରେ ଲାଗିଥିଲା । ୧୯୪୪ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରୁ ୧୯୪୬ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ପାର୍ଟିର ସଦସ୍ୟ ସଂଖ୍ୟା ଯଥାକ୍ରମେ ୩୦ ହଜାରରୁ ୫୩ ହଜାରରେ ପହଞ୍ଚିଥିଲା ।

## ୧୯୪୩-୧୯୪୫ ଖ୍ରୀଷ୍ଟାବ୍ଦର ଗଣଆନ୍ଦୋଳନ

ଏହା ପରେ ନିଜର ଗଣ ସମର୍ଥନ ବୃଦ୍ଧି କରିବା ପାର୍ଟିର ପ୍ରଧାନ ଲକ୍ଷ୍ୟ ହୋଇ ଉଠିଥିଲା । ଟ୍ରେଡ୍‌ୟୁନିଅନ୍, କୃଷକ ଓ ଅନ୍ୟାନ୍ୟ ଗଣ ସଂଗଠନରେ ସେମାନଙ୍କ ପ୍ରଭାବ, ଅବଶ୍ୟ, କଂଗ୍ରେସ ଏବଂ ସର୍ବୋପରି କଂଗ୍ରେସ ସମାଜବାଦୀମାନଙ୍କ ସହିତ ତଥା ଅନ୍ୟାନ୍ୟ ରାଜନୈତିକ ଦଳ ସହିତ ଦ୍ୱନ୍ଦ୍ୱର ପୃଷ୍ଠଭୂମିରେ ବୃଦ୍ଧି ପାଇଥିଲା ।

ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ୨୦ତମ ସମ୍ମିଳନୀରେ (୧୯୪୩ ଖ୍ରୀଷ୍ଟାବ୍ଦ ମେ ମାସରେ, ନାଗପୁରରେ) ଜାତୀୟ କଂଗ୍ରେସର ସମର୍ଥକ ଓ କମ୍ୟୁନିଷ୍ଟ , କାହାରି ଦ୍ୱାରା ଉତ୍‌ଥାପିତ ପ୍ରସ୍ତାବ ସଂଗଠନର ସନନ୍ଦ ଅନୁଯାୟୀ ସଂଖ୍ୟାଗରିଷ୍ଠ ଭୋଟ ଲାଭ କରି ନଥିଲା । ଏହି ଘଟଣା ମଧ୍ୟରେ ଜନସାଧାରଣଙ୍କ ଉପରେ ପ୍ରଭାବ ବିସ୍ତାର କ୍ଷେତ୍ରରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ପ୍ରଧାନ ଦଳଗୁଡ଼ିକ ମଧ୍ୟରେ ଏକ ନୂତନ "ଶକ୍ତିର ଭାରସାମ୍ୟର" ବହିଃପ୍ରକାଶ ଘଟିଥିଲା । ତାଙ୍କେ ସଂଗଠନର ସଭାପତି ଏବଂ କମ୍ୟୁନିଷ୍ଟ ସମର୍ଥକ , ଗଣତନ୍ତ୍ରବାଦୀ ଏନ୍. ଏମ୍. ଯୋଶୀ ପାର୍ଟିର ସାଧାରଣ ସଂପାଦକ ନିର୍ବାଚିତ ହେବା ଦ୍ୱାରା କମ୍ୟୁନିଷ୍ଟମାନଙ୍କ ଅବସ୍ଥାନ ମଜବୁତ୍ ହେବାର ଇଙ୍ଗିତ ସ୍ପଷ୍ଟ ହୋଇ ଉଠିଥିଲା ।

ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଆଭ୍ୟନ୍ତରୀଣ ଦଳୀୟ କନ୍ଦଳ ଏବଂ ୧୯୪୧ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ଭାରତୀୟ ଶ୍ରମିକ ଫେଡେରେସନର ଭିନ୍ନମୁଖୀ ପଦକ୍ଷେପ ଗ୍ରହଣ ଫଳରେ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ କ୍ଷତିଗ୍ରସ୍ତ ହୋଇଥିଲା : ୧୯୪୧-୧୯୪୨ ଖ୍ରୀଷ୍ଟାବ୍ଦ ତୁଳନାରେ ୧୯୪୩ ଓ ୧୯୪୪ ଖ୍ରୀଷ୍ଟାବ୍ଦରେ ବିନଷ୍ଟ କର୍ମ ଦିବସର ସଂଖ୍ୟା ହ୍ରାସ ପାଇ ଯଥାକ୍ରମେ ୨୩ ଲକ୍ଷ ଓ ୩୪ ଲକ୍ଷରେ ପହଞ୍ଚିଥିଲା । ଏହି ଦୁଇ ବର୍ଷ ମଧ୍ୟରେ ଧର୍ମଘଟରେ ୫ ଲକ୍ଷରୁ ସାମାନ୍ୟ କିଛି ବେଶି ଶ୍ରମିକ ଓ ଅଫିସ୍ କର୍ମଚାରୀ ଯୋଗ ଦେଇଥିଲେ ।

ଏହି ଦୁଇ ବର୍ଷ ମଧ୍ୟରେ ଅନୁଷ୍ଠିତ ଧର୍ମଘଟର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଲା ସ୍ୱଳ୍ପ ସ୍ଥାୟିତ୍ୱ । ଶ୍ରମିକମାନଙ୍କ ପାଇଁ ୧୯୪୩-୧୯୪୪ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ପ୍ରପୀଡ଼ିତ ବର୍ଷଗୁଡ଼ିକର କଠିନ ପରିସ୍ଥିତି ଏବଂ ଔପନିବେଶିକମାନଙ୍କ ଦ୍ୱାରା ଅନୁସୃତ ଶ୍ରମିକ ବିରୋଧୀ ନୀତି ପାଇଁ ଏହା ଅଂଶତଃ ଘଟିଥିଲା । ୧୯୪୨ ଓ ୧୯୪୩ ଖ୍ରୀଷ୍ଟାବ୍ଦରେ ଭାରତ ରକ୍ଷା ଆଇନ୍‌ର ଏକ ସଂଶୋଧନୀ ଦ୍ୱାରା ଧର୍ମଘଟ କାର୍ଯ୍ୟତଃ ବେଆଇନୀ ହୋଇ ଉଠିଥିଲା । ଆନ୍ତର୍ଜାତିକ ଶ୍ରମିକ ସଂଗଠନର ସୁପାରିସ୍ ଅନୁଯାୟୀ ଶ୍ରମିକ ଆନ୍ଦୋଳନର ବିଭିନ୍ନ ଦିଗ , ବିଶେଷତଃ , ଶ୍ରମ ଆଇନ୍ ସଂକ୍ରାନ୍ତ ଆଲୋଚନା କ୍ଷେତ୍ରରେ ବିଶେଷ ବ୍ୟବସ୍ଥା ଅନୁସୃତ ହୋଇଥିଲା : କର୍ତ୍ତୃପକ୍ଷଙ୍କ ପକ୍ଷରୁ ୧୦ଜଣ ଏବଂ ମାଲିକଙ୍କ ପକ୍ଷରୁ ୫ଜଣ ଓ ଟ୍ରେଡ୍‌ୟୁନିଅନ୍‌ର ୫ଜଣ ପ୍ରତିନିଧିଙ୍କ ସମେତ ଏଥିରେ ୨୦ଜଣଙ୍କ ଅଂଶଗ୍ରହଣ କରିଥାରେ ତ୍ରିପକ୍ଷୀୟ ଶ୍ରମିକ ସମ୍ମେଳନ ଅନୁଷ୍ଠାନର ବ୍ୟବସ୍ଥା ଥିଲା ।

କିନ୍ତୁ ସରକାରର ସିଧାସଳଖ ନିଷେଧାଜ୍ଞା ସତ୍ତ୍ୱେ ଧର୍ମଘଟ ଚାଲିଥିଲା ଏବଂ ଯୁଦ୍ଧର ଶେଷ ବେଳକୁ ଧର୍ମଘଟ ଆନ୍ଦୋଳନରେ ନୂତନ ଉଦ୍ଦୀପନା ସଞ୍ଚାରିତ ହୋଇଥିଲା । ଫଟକା ବଜାରମାନଙ୍କର କ୍ରିୟାକଳାପ ନିୟନ୍ତ୍ରଣ ଓ ମୂଲ୍ୟ ବୃଦ୍ଧିର ପରିପ୍ରେକ୍ଷିତରେ ଶ୍ରମିକମାନଙ୍କ ପାଇଁ ବୋନସର ଦାବି ସମ୍ବଳିତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନାଗପୁର ଅଧିବେଶନର ପ୍ରସ୍ତାବକୁ କେନ୍ଦ୍ର କରି ଶ୍ରମିକ ଶ୍ରେଣୀ ଅର୍ଥନୈତିକ ସଂଗ୍ରାମ ଚଳେଇଥିଲା । ଏହି ସମୟରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅବସ୍ଥାରେ ଯଥେଷ୍ଟ ଉନ୍ନତି ଘଟିଥିଲା : ୧୯୪୩ ଖ୍ରୀଷ୍ଟାବ୍ଦର ମେ ମାସରୁ ୧୯୪୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଅନୁମୋଦନ ପ୍ରାପ୍ତ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ସଂଖ୍ୟା ୨୫୯ରୁ ୫୭୫କୁ ଏବଂ ଏସବୁର ସଦସ୍ୟ ସଂଖ୍ୟା ୩ ଲକ୍ଷ ୩୨ ହଜାରରୁ ୫ ଲକ୍ଷ ୯ ହଜାରକୁ ବୃଦ୍ଧି ପାଇଥିଲା ।

ଇତିମଧ୍ୟରେ ନିଖିଳ ଭାରତ କୃଷକ ସଭା ଦ୍ୱାରା ଅନୁମୋଦିତ କୃଷକ ସମିତିଗୁଡ଼ିକରେ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ମଧ୍ୟ ବୃଦ୍ଧି ପାଇଥିଲା । ୧୯୪୧-୧୯୪୨ ଖ୍ରୀଷ୍ଟାବ୍ଦରେ ପ୍ରଥମେ ସମାଜବାଦୀ

ଓ "ଫରଓ୍ୱାର୍ଡ ବ୍ଲକ" ସଦସ୍ୟମାନେ କୃଷକ ସଭା ପରିତ୍ୟାଗ କରିଥିଲେ ଏବଂ ଶେଷରେ ଏନ୍.ଜି. ରଙ୍ଗାଙ୍କ ନେତୃତ୍ୱାଧୀନ ଏହାର ଦକ୍ଷିଣପନ୍ଥୀ ଗୋଷ୍ଠୀ ମଧ୍ୟ ପୂର୍ବୋକ୍ତମାନଙ୍କୁ ଅନୁସରଣ କରିଥିଲେ । ଏହି ବିଭାଜନ ଫଳରେ କୃଷକ ସଭାର ସଦସ୍ୟ ସଂଖ୍ୟା ବ୍ୟାପକ ଭାବେ ହ୍ରାସ ପାଇଥିଲା – ଯୁଦ୍ଧର ଅବ୍ୟବହିତ ପୂର୍ବରୁ ୮ ଲକ୍ଷରୁ ୧୯୪୨ ଖ୍ରୀଷ୍ଟାବ୍ଦର ସଂଖ୍ୟାଟି ୨ ଲକ୍ଷ ୨୫ ହଜାରକୁ କମି ଆସିଥିଲା । କିନ୍ତୁ କମ୍ୟୁନିଷ୍ଟ ଏବଂ ଅନ୍ୟ କୌଣସି ପାର୍ଟି ସହିତ ସଂଶ୍ଳିଷ୍ଟ ନଥିବା, ଅଥଚ କମ୍ୟୁନିଷ୍ଟମାନଙ୍କ ସହିତ ସହଯୋଗିତା ପାଇଁ ଇଚ୍ଛୁକ ଗଣତନ୍ତ୍ରବାଦୀମାନଙ୍କର (ଇନ୍ଦୁଲାଲ ଯାଜ୍ଞିକ, ଏସ୍. ଏସ୍. ସରସ୍ୱତୀ ଓ କାର୍ଯ୍ୟାନନ୍ଦ ଶର୍ମାଙ୍କ ଭଳି ବିଜ୍ଞ କୃଷକ ନେତାମାନଙ୍କ ପରିଚାଳନାଧୀନ) ଅନମନୀୟ ସାଂଗଠନିକ କ୍ରିୟାକଳାପ ଫଳରେ କୃଷକ ସମିତିର ପ୍ରଭାବ ଯଥେଷ୍ଟ ବୃଦ୍ଧି ପାଇଥିଲା । କୃଷକମାନଙ୍କର ବ୍ୟାପକ ସ୍ତର, ବିଶେଷତଃ, କ୍ଷୁଦ୍ରଚାଷୀ ବା ଭଗଚାଷୀମାନଙ୍କର ଅର୍ଥନୈତିକ ସ୍ୱାର୍ଥ ରକ୍ଷା କରିବାରେ କୃଷକ ସଭାର ସକ୍ରିୟ ଉଦ୍ୟୋଗ ପାଇଁ, ଅଂଶତଃ, ଏପରି ଘଟିଥିଲା । ଅବିଳମ୍ବେ ପୁଣି କୃଷକ ସଭାର ସଦସ୍ୟ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା : ୧୯୪୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଏହା ୮ ଲକ୍ଷ ୨୫ ହଜାରରେ ପହଞ୍ଚିଥିଲା । ୧୯୪୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ନେତ୍ରକୋଣାରେ (ବଙ୍ଗଳା ଦେଶର ମୟମନସିଂହ ଜିଲ୍ଲାରେ) ଅନୁଷ୍ଠିତ ପରବର୍ତ୍ତୀ ସମ୍ମିଳନୀରେ ଅନ୍ୟତମ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ମୁଜଫ୍‌ଫର ଆହ୍ମଦ କୃଷକ ସଭାର ସଭାପତି ନିର୍ବାଚିତ ହୋଇଥିଲେ ।

୧୯୪୩-୧୯୪୪ ଖ୍ରୀଷ୍ଟାବ୍ଦ ମଧ୍ୟରେ କୃଷକ ଆନ୍ଦୋଳନ ବିଶେଷ ଭାବେ ସକ୍ରିୟ ଥିଲା – ବଙ୍ଗଳା, ବିହାର, ପଞ୍ଜାବ, ମାନ୍ଦ୍ରାଜର ତାଞ୍ଜୋର, ଉତ୍ତର ମାନ୍ଦ୍ରାଜର ତେଲେଗୁ ଭାଷାଭାଷୀ ଆନ୍ଧ୍ର ଅଞ୍ଚଳ, ମାଲୟାଲୀ ଅଧ୍ୟୁଷିତ ମାଲବାର ଉପକୂଳରେ । ଏହିସବୁ ସଂଗ୍ରାମର ସକ୍ରିୟତମ ଅଂଶଗ୍ରହଣକାରୀ ଥିଲେ ଭଗଚାଷୀମାନେ । ସେମାନେ କେବଳ ଅସୁବିଧାଜନକ ଭୋଗ ଦଖଲର ସର୍ତ୍ତ ପରିବର୍ତ୍ତନ ପାଇଁ ଦାବି କରୁ ନଥିଲେ, ଖୋଲାଖୋଲି ଭାବେ ଚାଷଯୋଗ୍ୟ ଜମି ଦଖଲ କରିବାକୁ ଆରମ୍ଭ କରି ଦେଇଥିଲେ ।

ଶ୍ରମିକ ଶ୍ରେଣୀ ଓ କୃଷକମାନଙ୍କ ଗଣ ଆନ୍ଦୋଳନ ମଧ୍ୟ ଦେଇ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଓ କୃଷକ ସଭାର ସକ୍ରିୟ ଉଦ୍ୟୋଗ ଏବଂ ତତୋଧିକ କମ୍ୟୁନିଷ୍ଟ ପରିଚାଳିତ ଯୁବ (ଛାତ୍ର) ଓ ମହିଳା ସଂଗଠନର ବ୍ୟାପକ କାର୍ଯ୍ୟକଳାପ ଫଳରେ କଂଗ୍ରେସ ସମାଜବାଦୀମାନଙ୍କ ବହୁ ସଂଖ୍ୟକ ବାମପନ୍ଥୀ କର୍ମୀ କ୍ରମଶଃ ବୈଜ୍ଞାନିକ ସମାଜବାଦୀ ନୀତି ଗ୍ରହଣ କରିବାକୁ ସମ୍ମତ ହୋଇଥିଲେ ଏବଂ ଭାରତର କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ଯୁଦ୍ଧକାଳୀନ ବର୍ଷଗୁଡ଼ିକରେ ବିଶେଷ ଭାବେ ଆନ୍ଧ୍ର, କେରଳ ଏବଂ ଯୁକ୍ତ ପ୍ରଦେଶରେ ଏହି ପରିସ୍ଥିତିର ଉଦ୍‌ଭବ ଘଟିଥିଲା ।

## ଯୁଦ୍ଧ ଶେଷରେ ଦେଶର ରାଜନୈତିକ ପରିସ୍ଥିତି

ଦମନମୂଳକ ବ୍ୟବସ୍ଥା ସତ୍ତ୍ୱେ ଗଣ ଆନ୍ଦୋଳନର ଅବ୍ୟାହତ କ୍ରିୟାକଳାପ ଏବଂ ଗଣ ସଂଗଠନରେ ବାମପନ୍ଥୀମାନଙ୍କର ଅବସ୍ଥାନ ମଜବୁତ୍ ହେବା ଫଳରେ ଯୁଦ୍ଧ ଶେଷରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ନୂତନ ରାଜନୈତିକ କୌଶଳ ଗ୍ରହଣ କରିଥିଲେ । ସମସ୍ତଙ୍କର ଅପ୍ରିୟ ବଡ଼ଲାଟ୍ ଲର୍ଡ ଲିନ୍‌ଲିଥ୍‌ଗୋଙ୍କ ସ୍ଥାନରେ ୧୯୪୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ଓ୍ୱାଭେଲ୍ ବଡ଼ଲାଟ୍ ନିର୍ବାଚିତ

ହେଲେ । ୧୯୪୪ ଖ୍ରୀଷ୍ଟାବ୍ଦ ମେ ମାସ ୬ ତାରିଖରେ ଗାନ୍ଧୀଙ୍କ ସମେତ କଂଗ୍ରେସ ନେତାମାନଙ୍କୁ ମୁକ୍ତି ଦିଆଗଲା ।

ରାଜନୈତିକ ଉଦ୍ୟୋଗକୁ ନିଜ ହାତରେ ରଖିବା ପାଇଁ ବ୍ରିଟିଶ୍ ସରକାର ଭାରତର ଯୁଦ୍ଧ ପରବର୍ତ୍ତୀ ବୁଝାମଣା ସର୍ତ୍ତାଦି ନିର୍ଦ୍ଧାରଣ କରିବା ପାଇଁ ଓୟାଭେଲଙ୍କ ମାଧ୍ୟମରେ ଗାନ୍ଧୀ ଓ ଜିନ୍ନାଙ୍କ ମଧ୍ୟରେ ଏକ ଆଲୋଚନା ପାଇଁ ବ୍ୟବସ୍ଥା କଲେ । ଏହି ଆଲୋଚନା ଚାଲିଥିଲା ବେଳେ ବ୍ରିଟିଶ୍‌ମାନେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ମଧ୍ୟରେ ଆଉରି ପାର୍ଥକ୍ୟ ସୃଷ୍ଟି କରିବାକୁ ସଫଳ ହୋଇଥିଲେ ।

ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ମଧ୍ୟରେ ବୁଝାମଣା ସୃଷ୍ଟି ପାଇଁ ଜନମତ ଚାପ ଫଳରେ ୧୯୪୪ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ଦୁଇ ସଂଗଠନର ନେତୃବୃନ୍ଦଙ୍କ ମଧ୍ୟରେ ଆଉରି ଥରେ ବୈଠକର ବ୍ୟବସ୍ଥା କରାଗଲା । ଲିବରାଲ ଫେଡେରେସନର ନେତା ତେଜ ବାହାଦୂର ସପ୍ରୁଙ୍କ ନାମାଙ୍କିତ ତଥାକଥିତ "ସପ୍ରୁ କମିଟି" ଏଥର ଦୁଇ ଦଳ ମଧ୍ୟରେ ମଧ୍ୟସ୍ଥ ଭାବେ କାର୍ଯ୍ୟ କରିଥିଲେ ।

କଂଗ୍ରେସର ଅନ୍ୟତମ ନେତା ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ସେତେବେଳେ ଜିନ୍ନାଙ୍କୁ ଯେଉଁସବୁ ପ୍ରସ୍ତାବ ପଠାଇଥିଲେ, ସେସବୁର ନିର୍ଯ୍ୟାସ ହେଲା : (୧) କେବଳ ସ୍ୱାଧୀନତା ଲାଭ ପରେ ଜାତୀୟ କଂଗ୍ରେସ ପାକିସ୍ତାନ ପ୍ରତିଷ୍ଠା କରିବାକୁ ସମ୍ମତ ହେବ; (୨) ପାକିସ୍ତାନ ପ୍ରତିଷ୍ଠା ପ୍ରଶ୍ନଟି ଗଣ ଭୋଟ ମାଧ୍ୟମରେ ନିର୍ଦ୍ଧାରିତ ହେବ; (୩) ଦେଶର ଚୂଡ଼ାନ୍ତ ରାଜନୈତିକ ମୀମାଂସା ନହେଲା ପର୍ଯ୍ୟନ୍ତ ଗଠିତ ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ମୁସଲିମ୍ ଲୀଗ୍‌କୁ, ଅବଶ୍ୟ, ଯୋଗ ଦେବାକୁ ହେବ ।

୧୯୪୪ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ କରାଚିରେ ଅନୁଷ୍ଠିତ ମୁସଲିମ୍ ଲୀଗ୍‌ର କାଉନ୍‌ସିଲ ଅଧିବେଶନର ଏକ ପ୍ରସ୍ତାବରେ ଗାନ୍ଧୀଙ୍କ ସହିତ ଆଲୋଚନା ପାଇଁ ଜିନ୍ନାଙ୍କୁ କ୍ଷମତା ପ୍ରଦାନ କରାଗଲା । ଦୁଇ ନେତାଙ୍କ ମଧ୍ୟରେ ପତ୍ର ମାଧ୍ୟମରେ ଆଲୋଚନା ଚାଲିଲା (୧୯୪୪ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ୨୧-୨୭ ପର୍ଯ୍ୟନ୍ତ) । ସ୍ୱାଧୀନତା ଲାଭ ପୂର୍ବରୁ ରାଜନୈତିକ ମୀମାଂସାର ଅନ୍ୟତମ ସର୍ତ୍ତ ହିସାବରେ ପାକିସ୍ତାନ ସୂତ୍ରଟି ଗ୍ରହଣ କରିବାର ଦାବି ଉପରେ ଜିନ୍ନା ଅଟଳ ରହିବାରୁ ଆଲୋଚନା ବ୍ୟର୍ଥ ହୋଇଗଲା ।

କିନ୍ତୁ କଂଗ୍ରେସ ଆଉ ମୁସଲିମ୍ ଲୀଗ୍‌ର ଅଧସ୍ତନ ସଂଗଠନଗୁଡ଼ିକରେ ବୁଝାମଣାର ଦାବି କ୍ରମଶଃ ତୀବ୍ର ହୋଇ ଉଠିବାରୁ ମୁସଲିମ୍ ଲୀଗ୍‌ର ସାଧାରଣ ସଂପାଦକ ଲିୟାକତ ଅଲୀ ଖାଁ ଏବଂ କେନ୍ଦ୍ରୀୟ ଆଇନ୍ ସଭାର କଂଗ୍ରେସ ଦଳର ନେତା ଭୋଲାଭାଇ ଦେଶାଇଙ୍କ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଏଥିରେ ଭାରତର ଭାବୀ ସରକାର ଗଠନର ଆନୁଷଙ୍ଗିକ ନିମ୍ନୋକ୍ତ ସର୍ତ୍ତାବଳୀ ଉଲ୍ଲିଖିତ ଥିଲା : (୧) ଉଭୟ ଦଳର ଆସନ ସଂଖ୍ୟା ଶତକଡ଼ା ୪୦ ହେବ; (୨) ଅବଶିଷ୍ଟ ଆସନଗୁଡ଼ିକ "ଧର୍ମୀୟ ସଂଖ୍ୟାଲଘୁମାନଙ୍କ" (ଖ୍ରୀଷ୍ଟିଆନ୍, ହରିଜନ, ଶିଖ୍ ଓ ପାରସୀ) ପାଇଁ ନିର୍ଦ୍ଦିଷ୍ଟ ରହିବ; (୩) ଜଣେ ବ୍ରିଟିଶ୍ ସେନାପତି ଦେଶର ସୈନ୍ୟବାହିନୀର ପ୍ରଧାନ ହୋଇ ରହିବେ; (୪) ଦେଶର ରାଜନୈତିକ ମର୍ଯ୍ୟାଦା ସ୍ଥାୟୀ ଭାବେ ନିର୍ଦ୍ଧାରିତ ହେଲା ପରେ ଭାରତ ବିଭାଗ ଓ ଅଲଗା ରାଷ୍ଟ୍ର ହିସାବରେ ପାକିସ୍ତାନ ପ୍ରତିଷ୍ଠା ବିଷୟଟି ମୀମାଂସିତ ହେବ ।

ବ୍ରିଟିଶ୍ ଔପନିବେଶିକ ସରକାର ସହିତ ନୂତନ ଓ ଚୂଡ଼ାନ୍ତ ଏକ ସଂଗ୍ରାମର ସମ୍ମୁଖରେ ଏହି ଉଦ୍ୟୋଗ ଫଳରେ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତିଗୁଡ଼ିକଙ୍କର ସଂହତି ଯଥେଷ୍ଟ ବୃଦ୍ଧି ପାଇଥିଲା ।

# ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟ (୧୯୪୫-୧୯୪୭)

## ୧୯୪୫-୧୯୪୬ ଖ୍ରୀଷ୍ଟାବ୍ଦର ଗଣ ଆନ୍ଦୋଳନ ଏବଂ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ରାଜନୈତିକ କୌଶଳ

ଯୁଦ୍ଧର ଅବସାନ ପରେ ବହୁ ଆନ୍ତର୍ଜାତିକ କାରଣ ଭାରତର ଘଟଣାବଳୀକୁ ବିଶେଷ ଭାବେ ପ୍ରଭାବିତ କରିଥିଲା : ଯଥା , ନାଜି ଏବଂ ସେମାନଙ୍କ ସହଯୋଗୀମାନଙ୍କ ପରାଜୟ , ଫାସିବାଦୀ ଆକ୍ରମଣକାରୀମାନଙ୍କୁ ଉତ୍ଖାତ କରିବାରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକାର ଅଧିକାରୀ ସୋଭିଏତ୍ ୟୁନିଅନ୍‌ର ଆନ୍ତର୍ଜାତିକ କ୍ଷେତ୍ରରେ କ୍ଷମତା ବୃଦ୍ଧି , ସୋଭିଏତ୍ ସୈନ୍ୟବାହିନୀ କର୍ତ୍ତୃକ ମୁକ୍ତ ମଧ୍ୟ ଓ ଦକ୍ଷିଣ-ପୂର୍ବ ୟୁରୋପୀୟ ଦେଶସମୂହରେ ଦେଖା ଦେଇଥିବା ବୈପ୍ଳବିକ ପରିବର୍ତ୍ତନ ଏବଂ ପଶ୍ଚିମ-ୟୁରୋପୀୟ ଦେଶଗୁଡ଼ିକରେ ଗଣତାନ୍ତ୍ରିକ ଶକ୍ତିମାନଙ୍କର ଶକ୍ତିବୃଦ୍ଧି । ଯୁଦ୍ଧ କାଳରେ ଆଫ୍ରିକା ଓ ଏସିଆରେ ଔପନିବେଶିକ ଶକ୍ତିସମୂହର ଦୁର୍ବଳତା ପୂରା ସାମ୍ରାଜ୍ୟବାଦୀ ଔପନିବେଶିକ ବ୍ୟବସ୍ଥାର ବ୍ୟାପକ ସଂକଟକୁ ପ୍ରତିଫଳିତ କରିଥିଲା ।

ଜାପାନୀ ଆକ୍ରମଣକାରୀମାନଙ୍କୁ ଉତ୍ଖାତ କରିବାର ସଂଗ୍ରାମ ଏବଂ ଦକ୍ଷିଣ-ପୂର୍ବ ଏସିଆରେ ବ୍ରିଟିଶ୍ , ଫରାସି ଓ ଓଲନ୍ଦାଜ ବୁର୍ଜୁଆମାନଙ୍କର ଔପନିବେଶିକ ଶାସନ ପୁନଃପ୍ରତିଷ୍ଠାର ପ୍ରତିରୋଧ ଖୋଦ୍ ଭାରତର ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତିରେ ଆମୂଳ ପରିବର୍ତ୍ତନର ବେଗ ସଞ୍ଚାରିତ କରିଥିଲା ।

ଦେଶରେ ବର୍ତ୍ତମାନ ଶ୍ରେଣୀଗତ ଏବଂ ଜାତୀୟ ଦ୍ୱନ୍ଦ୍ୱସମୂହ ଯୁଦ୍ଧ କାଳରେ ସଂଘଟିତ ଅର୍ଥନୈତିକ ପରିବର୍ତ୍ତନ ସହିତ ଜଡ଼ିତ ଥିଲା ।

### ଜାତୀୟ ବୁର୍ଜୁଆଙ୍କ ଶକ୍ତି ବୃଦ୍ଧି

ଯୁଦ୍ଧୋପକରଣର ଉତ୍ପାଦନର ସଂପ୍ରସାରଣ ଭାରତୀୟ ଶିଳ୍ପ ଉପରେ ଶୁଭ ପ୍ରଭାବ ବିସ୍ତାର କରିଥିଲା । ଯୁଦ୍ଧ ପୂର୍ବ ଉତ୍ପାଦନ ତୁଳନାରେ ୧୯୪୩ ଖ୍ରୀଷ୍ଟାବ୍ଦରେ ମୋଟ ଶିଳ୍ପୋତ୍ପାଦନ ଶତକଡ଼ା ୨୫ ଭାଗ ବୃଦ୍ଧି ପାଇଥିଲା । ଯଦିଓ ସାମରିକ ବରାଦ ସହିତ ଯୁକ୍ତ ଶିଳ୍ପଗୁଡ଼ିକ (ଧାତୁଶିଳ୍ପ , ତୁଳା ଓ ରାସାୟନିକ ଶିଳ୍ପ) ସିଧାସଳଖ ବିଶେଷ ସୁବିଧାଜନକ ଅବସ୍ଥାନରେ ଥିଲେ , ତେବେ ଭାରତରେ ଅବସ୍ଥାନରତ ୫ ଲକ୍ଷ ସୈନ୍ୟ ବିଶିଷ୍ଟ ବ୍ରିଟିଶ୍ ବାହିନୀର ଚାହିଦା ସହିତ ସଂପୃକ୍ତ ଶିଳ୍ପ ଶାଖାଗୁଡ଼ିକର

(ଯେଥା, ଖାଦ୍ୟ ସରବରାହ) କ୍ଷେତ୍ରରେ ଯୁଦ୍ଧ ଶୁଭ ଫଳ ପ୍ରଦାନ କରିଥିଲା । ତା'ଛଡ଼ା ଯୁଦ୍ଧ ବିଭାଗରୁ ଫରମାସ ପାଉଥିବା ବଡ଼ ବଡ଼ କାରଖାନା, ମାନୁଫାକ୍‌ଚରିଂ ଏବଂ କୁଟୀର ଶିଳ୍ପଗୁଡ଼ିକ ମଧ୍ୟ ଯଥେଷ୍ଟ ସଂପ୍ରସାରିତ ହୋଇଥିଲା ।

ସାମରିକ ଫରମାସ୍‌ର କଲ୍ୟାଣରୁ ଭାରତର ବୁର୍ଜୁଆମାନେ ବିପୁଳ ପରିମାଣର ମୁନାଫା ସଞ୍ଚୟ କରିଥିଲେ । ଭାରତର ଜଏଣ୍ଟ ଷ୍ଟକ୍ ବ୍ୟାଙ୍କ୍‌ଗୁଡ଼ିକରେ ସେମାନଙ୍କର ମୋଟ ସଞ୍ଚୟ ଯୁଦ୍ଧ ଆରମ୍ଭ ହେଲା ପରେ କେଇ ଗୁଣ ବଢ଼ି ଯାଇଥିଲା । ଏହି ସମୟରେ ବ୍ୟବସାୟୀ ଏବଂ ମହାଜନମାନଙ୍କ ପାଇଁ କୃଷକ, କ୍ଷୁଦ୍ର ଉତ୍ପାଦକ, କାରିଗର ଓ କୁଟୀର ଶିଳ୍ପୀମାନଙ୍କର ଶୋଷଣ ମାଧ୍ୟମରେ ଯଥେଷ୍ଟ ପୁଞ୍ଜି ସଞ୍ଚୟର ସୁଯୋଗ ସୃଷ୍ଟି ହୋଇଥିଲା ।

ନିଜର ଅର୍ଥ ସଂପଦ ବୃଦ୍ଧି କଲା ପରେ ଭାରତୀୟ ବ୍ୟବସାୟୀମାନେ ସେୟାର କ୍ରୟ ମାଧ୍ୟମରେ ଚା ବଗିଚା, ଝୋଟ କଳ ଆଦି ଏକଦା ବ୍ରିଟିଶ୍ ପୁଞ୍ଜିର ଏକାଧିପତ୍ୟ ଥିବା କ୍ଷେତ୍ରଗୁଡ଼ିକରେ ଅନୁପ୍ରବେଶ କରିଥିଲେ । ରାସାୟନିକ ଶିଳ୍ପ, ମୋଟର ଶିଳ୍ପ ଭଳି ପ୍ରଧାନ ଶିଳ୍ପଗୁଡ଼ିକରେ ଭାରତୀୟ ବ୍ୟବସାୟର ପ୍ରଭାବଶାଳୀ ଗୋଷ୍ଠୀଗୁଡ଼ିକର ଉଦ୍ୟୋଗରେ କ୍ରମାଗତ ଅଧିକ ସଂଖ୍ୟକ ମିଳିତ କଂପାନି ଗଠିତ ହୋଇଥିଲା । ଟାଟା, ବିରଳା, ଡାଲ୍‌ମିଆ-ଜୈନ ଓ ଅନ୍ୟାନ୍ୟ ଭାରତୀୟ ଏକଚାଟିଆ ଗୋଷ୍ଠୀଗୁଡ଼ିକ—ବ୍ରିଟିଶ୍ ଏକଚାଟିଆମାନଙ୍କର ଅଂଶୀଦାର ହୋଇ ଉଠିଥିଲେ । ବଡ଼ ବଡ଼ ଭାରତୀୟ ବୁର୍ଜୁଆମାନେ ଦେଶୀୟ ରାଜ୍ୟଗୁଡ଼ିକରେ (ବରୋଦା, ଗୋଆଲିଅର, ମହୀଶୂର, ଜୟପୁର) ସକ୍ରିୟ ଅନୁପ୍ରବେଶର ଉଦ୍ୟୋଗ ସହିତ ସେଇସବୁ ରାଜ୍ୟର ରାଜାମାନଙ୍କୁ ସେଠାରେ ପ୍ରତିଷ୍ଠିତ ଶିଳ୍ପର ଅଂଶୀଦାର ରୂପେ ଗ୍ରହଣ କରିଥିଲେ ।

## ବ୍ରିଟିଶ୍ ବୁର୍ଜୁଆମାନଙ୍କର ଅର୍ଥନୈତିକ ଅବସ୍ଥାନର ଦୁର୍ବଳତା ବୃଦ୍ଧି ଏବଂ ଭାରତରେ ବ୍ରିଟିଶ୍ ଓ ଆମେରିକାନ୍ ସ୍ୱାର୍ଥ ମଧ୍ୟରେ ଦ୍ୱନ୍ଦ୍ୱ

ଭାରତରେ ବ୍ରିଟିଶ୍ ପୁଞ୍ଜିର ଅବସ୍ଥାନ କିଛି ପରିମାଣରେ ଦୁର୍ବଳ ହୋଇ ଉଠିବା ଫଳରେ ଭାରତୀୟ ବ୍ୟବସାୟୀ ଓ ଶିଳ୍ପପତିମାନଙ୍କର ବାଣିଜ୍ୟିକ କ୍ରିୟାକଳାପ ବୃଦ୍ଧି ପାଇଥିଲା ଏବଂ ବ୍ରିଟିଶ୍ ଶାସିତ ପ୍ରଦେଶ ଓ ଦେଶୀୟ ରାଜ୍ୟ ଉଭୟରେ ଭାରତୀୟ ବୁର୍ଜୁଆମାନଙ୍କ ଅବସ୍ଥାନ ମଜବୁତ୍ ହୋଇଥିଲା । ଯୁଦ୍ଧ କାଳରେ ବ୍ରିଟିଶ୍ ପୁଞ୍ଜିର ସ୍ୱଦେଶକୁ ସ୍ଥାନାନ୍ତରଣ ତ୍ୱରାନ୍ୱିତ ହୋଇ ଉଠିଥିଲା ଏବଂ ବାଣିଜ୍ୟ ଓ ଶିଳ୍ପର କେତେକ କ୍ଷେତ୍ରରେ ତାହା ଏକଚାଟିଆ ଆଧିପତ୍ୟ ମଧ୍ୟ ହରେଇଥିଲା ।

ଭାରତ ଏବଂ ବ୍ରିଟେନ୍ ମଧ୍ୟରେ ଆର୍ଥିକ ବୁଝାମଣା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା । ୧୯୩୯ ଖ୍ରୀଷ୍ଟାବ୍ଦରେ ଭାରତୀୟ ସାମରିକ ଉପକରଣ ଫରମାସର ଅର୍ଥଶୋଧ ସଂପର୍କରେ ଏକ ବିଶେଷ ଇଂରେଜ-ଭାରତୀୟ ଚୁକ୍ତି ସଂପାଦନ ଦ୍ୱାରା ବ୍ୟାଙ୍କ୍ ଅଫ୍ ଇଂଲଣ୍ଡର ବିଶେଷ ହିସାବରେ ନଥିଭୁକ୍ତ କରି ବ୍ରିଟିଶ୍ ସରକାରକୁ ଏସବୁ ଋଣ ହିସାବରେ ଦିଆଯାଇଥିଲା । ଏହି ଭାବେ ବ୍ରିଟେନ୍‌ର ବଜେଟ ଉପରେ ଅଧିକ ଭାର ବୃଦ୍ଧି ନକରି ବ୍ରିଟିଶ୍ ବୁର୍ଜୁଆମାନେ ଯୁଦ୍ଧ କାଳରେ ଭାରତର ଜନ ଶକ୍ତି ଓ ସଂବଳର ସର୍ବାଧିକ ବ୍ୟବହାରକୁ ସୁନିଶ୍ଚିତ କରିଥିଲେ । ଏଥି ସଙ୍ଗେ ସଙ୍ଗେ ବ୍ରିଟେନ୍ ନିକଟରେ

ଭାରତ ସରକାରର ଊନବିଂଶ ଶତାବ୍ଦୀର "ଋଣ"କୁ ଭାରତର ଷ୍ଟର୍ଲିଂ ସଞ୍ଚୟର ଅଂଶ ହିସାବରେ ବିକ୍ଷେପ କରାଯାଇଥିଲା । ଏହି ଋଣ ମଧ୍ୟରେ ଔପନିବେଶିକ ଯୁଦ୍ଧବ୍ୟୟ ଆଦି ଅନ୍ତର୍ଭୁକ୍ତ ଥିଲା ଏବଂ ବ୍ରିଟିଶ୍ ସରକାର ଏସବୁକୁ ଭାରତର ଖର୍ଚ୍ଚ ହିସାବରେ ଧରିଥିଲା । ୧୯୪୫ ଖ୍ରୀଷ୍ଟାବ୍ଦରେ ଜମା ପଡ଼ିଥିବା ଷ୍ଟର୍ଲିଂ ସଞ୍ଚୟ ୧୦୦ କୋଟି ପାଉଣ୍ଡରେ ପହଞ୍ଚିଥିଲା । ତାହା ଯୁଦ୍ଧୋତ୍ତର ଭାରତର ଅର୍ଥନୈତିକ ବିକାଶର ଧାରାକୁ ପ୍ରଭାବିତ କରିବାରେ ବ୍ୟବହୃତ ହୋଇ ପାରିଥାନ୍ତା । ସେ ଯାହା ହେଉ, ବିପୁଳ ପରିମାଣର ସଞ୍ଚିତ ବିଦେଶୀ ମୁଦ୍ରା ଏବଂ "ଋଣ" ବାତିଲ ଅନିବାର୍ଯ୍ୟ ଭାବେ ଭାରତୀୟ ବୁର୍ଜୁଆମାନଙ୍କ ଅର୍ଥନୈତିକ ଅବସ୍ଥାନକୁ ମଜବୁତ୍ କରିଥିଲା ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧ ବେଳେ ଆମେରିକାନ୍ ପୁଞ୍ଜିପତିମାନେ ବ୍ରିଟେନ୍‌ର ତତ୍କାଳୀନ ଅର୍ଥନୈତିକ, ସାମରିକ ଓ ରାଜନୈତିକ ସମସ୍ୟାବଳୀକୁ ସେମାନଙ୍କ ସ୍ୱାର୍ଥାନୁକୂଳରେ ବ୍ୟବହାର ଓ ଜାପାନୀ ପ୍ରତିଯୋଗିତାର ଅନୁପସ୍ଥିତି ହେତୁ ସମ୍ଭାବନାପୂର୍ଣ୍ଣ ଭାରତୀୟ ବଜାରର ସର୍ବତ୍ର ଅନୁପ୍ରବେଶ କରିବା ପାଇଁ ଉଦ୍ୟୋଗ ନେଇଥିଲେ । ଯୁଦ୍ଧକାଳରେ ଭାରତକୁ ପ୍ରେରିତ ଆମେରିକାନ୍ ଅର୍ଥନୈତିକ ଓ ଟେକ୍‌ନିକାଲ ମିଶନ ମାଧ୍ୟମରେ ଓ ଲ୍ୟାଣ୍ଡ୍‌ଲିଜ୍ ସରବରାହ ଓ ଅନ୍ୟାନ୍ୟ ସୂତ୍ରରେ ଆମେରିକାନ୍ ବୁର୍ଜୁଆମାନେ ଏହି ଦେଶର ଅର୍ଥନୀତିର ଏକ ସଂପୂର୍ଣ୍ଣ ନିରୀକ୍ଷା ସମେତ ଭାରତୀୟ ଶିଳ୍ପପତି ଓ ବଣିକମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ଯୁଦ୍ଧ ଶେଷରେ ଭାରତୀୟ ରପ୍ତାନି ଓ ଆମଦାନିରେ ଆମେରିକାନ୍ ଭାଗ ଯଥାକ୍ରମେ ୮ରୁ ୨୧ ଶତାଂଶ ଓ ୬ରୁ ୨୫ ଶତାଂଶରେ ପହଞ୍ଚିଥିଲା । ଭାରତୀୟ ବଜାରରେ ବ୍ରିଟେନ୍ ଓ ଆମେରିକାର ବର୍ଦ୍ଧମାନ ପ୍ରତିଦ୍ୱନ୍ଦ୍ୱିତା ବ୍ରିଟିଶ୍ ଏକଚାଟିଆମାନଙ୍କର ବିପରୀତରେ ଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ଶକ୍ତିକୁ ବୃଦ୍ଧି କରିଥିଲା ।

ସାମରିକ ଉପକରଣର ଫରମାସର କଲ୍ୟାଣରୁ ଧନୀ ହୋଇ ଉଠିଥିବା ଭାରତୀୟ ବୁର୍ଜୁଆମାନେ (ବିଶେଷ ଭାବେ ଊର୍ଦ୍ଧ୍ୱତନ ସ୍ତରଗୁଡ଼ିକ) ଔପନିବେଶିକ ସରକାରର ଅନ୍ତର୍ନିହିତ ଦମନମୂଳକ ବିଧି ନିଷେଧ ସଂପର୍କରେ ଖୁବ୍ ସଚେତନ ଥିଲେ । ଏଥି ପାଇଁ ସେମାନଙ୍କ ପକ୍ଷରେ ଇତିମଧ୍ୟରେ ସଞ୍ଚିତ ପୁଞ୍ଜି ଖଟେଇବା ଅସମ୍ଭବ ହୋଇ ଉଠିଥିଲା ଏବଂ ତାହା ଭାରତୀୟ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକର ଅବାଧ ବିକାଶ ପଥରେ ବାଧା ସୃଷ୍ଟି କରିଥିଲା । ୧୯୪୪ ଖ୍ରୀଷ୍ଟାବ୍ଦରେ ଶିଳ୍ପୋତ୍ପାଦନରେ ମନ୍ଥରତା ସୃଷ୍ଟି ହେବା ଦ୍ୱାରା ଏହି ଦ୍ୱନ୍ଦ୍ୱ ଅଧିକ ପ୍ରକଟିତ ହେଲା ।

## କ୍ରମବର୍ଦ୍ଧମାନ ଶ୍ରେଣୀଗତ ଦ୍ୱନ୍ଦ୍ୱ

ସାମରିକ ଉପକରଣର ଫରମାସ ବନ୍ଦ ହୋଇଯିବା ଫଳରେ ଉତ୍ପାଦନରେ ମନ୍ଥରତା ଦେଖାଦେଲା, ବହୁ କଳକାରଖାନା ବନ୍ଦ ହୋଇଗଲା ଏବଂ ବ୍ୟାପକ ଛଟେଇ ଆରମ୍ଭ ହେଲା । ଶିଳ୍ପୋଦ୍ୟୋଗୀମାନେ ମୂଲ୍ୟ ବୃଦ୍ଧି ହେତୁ ବୋନସ ଏବଂ ମହଙ୍ଗିଭତ୍ତା ଦେବାକୁ ଅସ୍ୱୀକାର କଲେ ଏବଂ ସେମାନଙ୍କର କ୍ଷତିର ବୋଝକୁ ଶ୍ରମିକ ଶ୍ରେଣୀ ଉପରେ ଚପେଇ ଦେବାକୁ ଲାଗିଲେ । ବଜାରର ଅବସ୍ଥା ଖରାପ ହେବାରୁ କ୍ଷୁଦ୍ରାୟତ ଉତ୍ପାଦନ ବିଶେଷ ଭାବେ କ୍ଷତିଗ୍ରସ୍ତ ହେବା ଫଳରେ କାରିଗର ଓ ହସ୍ତଶିଳ୍ପ ସଂସ୍ଥାର ଶ୍ରମିକମାନେ ଅସୁବିଧାର ସମ୍ମୁଖୀନ ହେଲେ । ୧୯୪୩-୧୯୪୪ ଖ୍ରୀଷ୍ଟାବ୍ଦରେ ବ୍ୟାପକ

ସଂଖ୍ୟକ ଗ୍ରାମତ୍ୟାଗୀ ବୁଭୁକ୍ଷୁ ମଣିଷ ସହରର ବେକାର ସଂଖ୍ୟା ବୃଦ୍ଧି କରିବା ଫଳରେ ମଜୁରି ଶ୍ରମିକମାନଙ୍କ ଅବସ୍ଥା ଉପରେ ପ୍ରତିକୂଳ ପ୍ରଭାବ ପଡ଼ିଥିଲା ।

୧୯୪୪-୧୯୪୫ ଖ୍ରୀଷ୍ଟାବ୍ଦର କୃଷି ବର୍ଷରେ ଖାଦ୍ୟଶସ୍ୟ ଓ ବାଣିଜ୍ୟିକ ଫସଲର ଉତ୍ପାଦନ ହ୍ରାସ ହେତୁ କେତେକ କଞ୍ଚାମାଲର ଅଭାବ ଦେଖା ଦେଇଥିଲା । କର୍ତ୍ତୃପକ୍ଷ ସେତେବେଳେ ୧୦ କୋଟି ଲୋକ ବାସ କରୁଥିବା ଅଞ୍ଚଳରେ ଆସନ୍ନ ଦୁର୍ଭିକ୍ଷର କଥା ସ୍ୱୀକାର କରିଥିଲେ । ଖାଦ୍ୟ ଓ ଅନ୍ୟାନ୍ୟ ଭୋଗ୍ୟ ପଣ୍ୟର ଅଭାବ ହେତୁ ମୂଲ୍ୟ ଏବଂ ଫଟକାବାଜି ବୃଦ୍ଧି ଫଳରେ ସହର ଓ ଗ୍ରାମର ଶ୍ରମିକ, କିରାଣୀ ଓ ଶ୍ରମଜୀବୀମାନଙ୍କର ଅନ୍ୟାନ୍ୟ ଅଂଶଗୁଡ଼ିକ କ୍ରମଶଃ ଅଧିକତର ଆର୍ଥିକ ଅନଟନ ଭୋଗ କରୁଥିଲେ ।

ଜନସାଧାରଣଙ୍କ ବୃହତ୍ତମ ଅଂଶର ଅର୍ଥନୈତିକ ଅବସ୍ଥାର ଅବନତି ଶ୍ରେଣୀ ସଂଘର୍ଷକୁ ବୃଦ୍ଧି କରି ଦେଲା । ବ୍ୟାପକ ଗଣ ଅସନ୍ତୋଷ ମଧ୍ୟରେ ଗଣ ସଂଗଠନଗୁଡ଼ିକର କ୍ରମବର୍ଦ୍ଧମାନ ତତ୍ପରତା ଦେଶରେ ଶ୍ରେଣୀ ସଂଗ୍ରାମକୁ ତୀବ୍ରତର କରିଥିଲା ।

ଏହା ପରେ ଔପନିବେଶିକ ଶାସନର ବିଲୋପର ପ୍ରୟୋଜନୀୟତା ସଂପର୍କରେ ଭାରତୀୟ ସମାଜର ସମସ୍ତ ସ୍ତରର ସମର୍ଥନ ଦ୍ରୁତ ବୃଦ୍ଧି ପାଇବାକୁ ଲାଗିଲା । ଏଇଥି ପାଇଁ ଦେଶର ଶ୍ରେଣୀ ସଂଗ୍ରାମ କ୍ରମଶଃ ସାମ୍ରାଜ୍ୟବାଦବିରୋଧୀ ବୈଶିଷ୍ଟ୍ୟ ଅର୍ଜନ କରିଥିଲା । ଏହି ସମୟରେ ସାମନ୍ତ ଭୂସ୍ୱାମୀ, ରାଜନ୍ୟବର୍ଗ ଓ ସହଯୋଗୀ ବୁର୍ଜୁଆମାନଙ୍କ ବ୍ୟତୀତ ଭାରତରେ ବ୍ରିଟିଶ୍ ଔପନିବେଶିକ ସରକାରର ଆଉ କୌଣସି ସମର୍ଥକ ନଥିଲେ ।

## ଭାରତରେ ବ୍ରିଟିଶ୍ ନୀତି – ୧୯୪୫

ଭାରତରେ ନିଜର ଔପନିବେଶିକ ଶାସନ ବଜାଏ ରଖିବା ପାଇଁ ବ୍ରିଟିଶ୍ ଶାସନ ଚକ୍ର ଦେଶର ଦୁଇଟି ପ୍ରଧାନ ରାଜନୈତିକ ଦଳ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ମତାନୈକ୍ୟ ଉପରେ ସେମାନଙ୍କ ଆଶା ନ୍ୟସ୍ତ କରିଥିଲେ । ଲଣ୍ଡନରୁ ଫେରିଲା ପରେ ଓ୍ୱାଭେଲ ୧୯୪୫ ଖ୍ରୀଷ୍ଟାବ୍ଦ ମେ ମାସରେ ଭାରତୀୟ ରାଜନୈତିକ ଦଳର ସଦସ୍ୟମାନଙ୍କୁ ନେଇ ବଡ଼ଲାଟ୍‌ଙ୍କ ଅଧୀନରେ ଏକ କାର୍ଯ୍ୟକାରୀ ପରିଷଦ ଗଠନର ପରିକଳ୍ପନା କଥା ଘୋଷଣା କରିଥିଲେ । ଜୁନ୍ ମାସରେ ତାଙ୍କ ଗ୍ରୀଷ୍ମାବାସ ସିମଳାରେ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ପ୍ରତିନିଧିମାନଙ୍କର ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଇତିପୂର୍ବରୁ ଜେଲରୁ ଜବାହାରଲାଲ ନେହରୁ, ବଲ୍ଲଭଭାଇ ପଟେଲ ଓ ମୌଲାନା ଆବୁଲ କାଲାମ ଆଜାଦଙ୍କୁ ମୁକ୍ତି ଦିଆଯାଇଥିଲା ଏବଂ ସେମାନେ ଗାନ୍ଧୀଙ୍କ ସହିତ ଏହି ବୈଠକରେ ଯୋଗ ଦେଇଥିଲେ ।

ବୈଠକରେ ଓ୍ୱାଭେଲଙ୍କ କାର୍ଯ୍ୟକାରୀ ପରିଷଦ ଗଠନର ପ୍ରସ୍ତାବଟି ଥିଲା ଦେଶାଇ – ଲିୟାକତ୍ ଅଲୀ ଖାଁ ଚୁକ୍ତି ସୂତ୍ରର ପ୍ରାୟ ଅନୁରୂପ । ତେବେ ଓ୍ୱାଭେଲଙ୍କ ଏହି ପରିକଳ୍ପନା ଅନୁସାରେ କାର୍ଯ୍ୟକାରୀ ପରିଷଦର ସଦସ୍ୟମାନଙ୍କର ଆସନଗୁଡ଼ିକ ରାଜନୈତିକ ଦଳ ପରିବର୍ତ୍ତେ ଧର୍ମୀୟ ସଂପ୍ରଦାୟ ପାଇଁ ନିର୍ଦ୍ଦିଷ୍ଟ ରଖିବାର ପ୍ରସ୍ତାବ ଥିଲା । ଉଭୟ ଦଳ ପକ୍ଷରେ ଏହା ଗ୍ରହଣୀୟ ହେଲା ନାହିଁ । ଜାତୀୟ

କଂଗ୍ରେସ ନିଜକୁ ହିନ୍ଦୁ ସଂଗଠନ ପରିବର୍ତ୍ତେ ସାରା ଦେଶର ଏକ ଧର୍ମ ନିରପେକ୍ଷ ଦଳ ହିସାବରେ ଦେଖୁଥିଲା । ଅନ୍ୟ ପକ୍ଷରେ, ମୁସଲିମ୍ ଲୀଗ୍ ନିଜକୁ ଭାରତୀୟ ମୁସଲମାନମାନଙ୍କର ଏକମାତ୍ର ସଂଗଠନ ବୋଲି ଦାବି କରିବା ଫଳରେ ତା'ର ପରିଷଦରେ କଂଗ୍ରେସର କୌଣସି ମୁସଲମାନ ସଦସ୍ୟଙ୍କୁ ଗ୍ରହଣ କରୁ ନଥିଲା । ତା'ଛଡ଼ା, ପ୍ରସ୍ତାବିତ ଏହି କାର୍ଯ୍ୟକାରୀ ପରିଷଦ କେବଳ ବ୍ରିଟିଶ୍ ସମ୍ରାଟ ଓ ବ୍ରିଟିଶ୍ ପାର୍ଲିଆମେଣ୍ଟ ନିକଟରେ ଦାୟୀ ରହିବାର ଥିଲା ।

ସିମଲା ବୈଠକ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ଔପନିବେଶିକ ସରକାର ଆଲୋଚନାରେ ଅଂଶଗ୍ରହଣକାରୀ ରାଜନୈତିକ ଦଳଗୁଡ଼ିକୁ ଏଥି ପାଇଁ ଦାୟୀ କଲା । ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ କଂଗ୍ରେସ ଓ ମୁସଲିମ୍ ଲୀଗ୍ ମଧ୍ୟରେ ମତବୈଷମ୍ୟ ବୃଦ୍ଧି ଏବଂ ହିନ୍ଦୁ ମୁସଲିମ୍ ସଂପ୍ରଦାୟ ମଧ୍ୟରେ ସଂପର୍କର ଅବନତିର ପରିପ୍ରେକ୍ଷୀରେ ଏ ଦେଶରେ ଔପନିବେଶିକ ଶାସନ ବଜାଏ ରଖିବାର ପରିକଳ୍ପନା କରୁଥିଲା ।

ଯୁଦ୍ଧୋତ୍ତର ପ୍ରଥମ ନିର୍ବାଚନରେ ୧୯୪୫ ଖ୍ରୀଷ୍ଟାବ୍ଦରେ ବ୍ରିଟେନ୍‌ର ଲେବର ପାର୍ଟିର ଜୟ ଲାଭ ପରେ ପରେ ଭାରତରେ ବ୍ରିଟିଶ୍ ନୀତିର କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟି ନଥିଲା । ଏହି ବର୍ଷ ଜୁଲାଇ ମାସରେ ଓୟାଭେଲଙ୍କୁ ଲଣ୍ଡନକୁ ଡକାଯାଇଥିଲା ଏବଂ ସେ ଫେରି ଆସିଲା ପରେ ଅଟଲୀ ସରକାର ଏକାବେଳକେ ଲଣ୍ଡନ ଆଉ ଦିଲ୍ଲୀରେ (୧୯୪୫, ସେପ୍ଟେମ୍ବର ୧୯) ତାଙ୍କ ଭାରତ ନୀତି ଘୋଷଣା କରିଥିଲେ । ଏଥିରେ କୁହାଯାଇଥିଲା : ଲେବର ସରକାର ୧୯୪୨ ମସିହାର କ୍ରିପ୍ସ ପ୍ରସ୍ତାବର ଅନ୍ତର୍ଭୁକ୍ତ ବ୍ୟବସ୍ଥାବଳୀକୁ କାର୍ଯ୍ୟକାରୀ କରିବେ ଏବଂ ଏଥି ସଙ୍ଗେ ସଙ୍ଗେ ୧୯୪୫-୧୯୪୬ ଖ୍ରୀଷ୍ଟାବ୍ଦର ଶୀତ କାଳରେ କେନ୍ଦ୍ରୀୟ ଓ ପ୍ରାଦେଶିକ ଆଇନ୍ ସଭାଗୁଡ଼ିକର ନିର୍ବାଚନ ଅନୁଷ୍ଠିତ ହେବ । କିନ୍ତୁ ଔପନିବେଶିକତା ବିରୋଧୀ ବ୍ୟାପକ ଗଣ ଆନ୍ଦୋଳନ ଫଳରେ ଅବିଳମ୍ବେ ବ୍ରିଟିଶ୍ ସରକାର ତା'ର ମୂଳ ପରିକଳ୍ପନାରେ ବ୍ୟାପକ ପରିବର୍ତ୍ତନ ଆଣିବାକୁ ବାଧ୍ୟ ହୋଇଥିଲା ।

## ୧୯୪୫ ଖ୍ରୀଷ୍ଟାବ୍ଦର ଶରତ କାଳର ଏବଂ ୧୯୪୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭର ଗଣ ଆନ୍ଦୋଳନ

୧୯୪୫ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ବେଳକୁ ଧର୍ମଘଟ ଆନ୍ଦୋଳନରେ ପୁଣି ପ୍ରାଣସଞ୍ଚାର ଘଟିଥିଲା । ତତ୍କାଳୀନ ବ୍ୟାପକ ଶ୍ରମିକ ଆନ୍ଦୋଳନର ଏକ ବୈଶିଷ୍ଟ୍ୟ ହିସାବରେ ଏସବୁରେ କ୍ରମଶଃ ଅଧିକରୁ ଅଧିକ ରାଜନୈତିକ ଚରିତ୍ର ପ୍ରକାଶ ପାଇଥିଲା । ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ସେତେବେଳେ ଛାତ୍ର ଓ ଶ୍ରମଜୀବୀମାନଙ୍କର ଅନ୍ୟାନ୍ୟ ସ୍ତରର ରାଜନୈତିକ ସଂଗ୍ରାମ ସହିତ ସମନ୍ୱିତ ହୋଇଥିଲା । ୧୯୪୫ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ମାନ୍ଦ୍ରାଜରେ ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ୨୧ତମ କଂଗ୍ରେସ କର୍ତ୍ତୃକ ଗୃହୀତ ପ୍ରସ୍ତାବଗୁଡ଼ିକ ପଛରେ ଥିଲା ଶ୍ରମିକ ଆନ୍ଦୋଳନର କ୍ରିୟାକଳାପର ଏହି ପ୍ରବଣତାଟି । ଏଥିରେ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ଅନ୍ୟତମ ପ୍ରଖ୍ୟାତ ନେତା, କଂଗ୍ରେସର ସଦସ୍ୟ ଭି.ଭି. ଗିରି ରାଜନୈତିକ ପରିସ୍ଥିତି ସଂକ୍ରାନ୍ତରେ ଏକ ପ୍ରସ୍ତାବ ପେଶ୍ କରିଥିଲେ । ଏହି ପ୍ରସ୍ତାବରେ ଭାରତକୁ ଅବିଳମ୍ବେ ସ୍ୱାଧୀନତା ଦାନର ଦାବିଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହି ସମୟରେ ଜାତୀୟ-ମୁକ୍ତି ଆନ୍ଦୋଳନରେ ବ୍ୟାପକ କାର୍ଯ୍ୟକଳାପ ଆରମ୍ଭ ହୋଇଯିବା ଫଳରେ ଟ୍ରେଡ୍‌ୟୁନିଅନ୍

କଂଗ୍ରେସ କେବଳ ଦେଶ ସାରା ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମ ପରିଗ୍ଳନାରେ ନୁହେଁ, ଔପନିବେଶିକ ସରକାର ବିରୁଦ୍ଧରେ ବ୍ୟାପକ ଗଣତାନ୍ତ୍ରିକ ଆନ୍ଦୋଳନର ନିର୍ଦ୍ଧାରିତ ପଥରେ ତା'ର ଗତିକୁ ପରିବର୍ତ୍ତନ କରିଥିଲା । ଏହି ସଂଗ୍ରାମ ମଧ୍ୟ ଦେଇ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ ଅନ୍ତର୍ଗତ ବିଭିନ୍ନ ରାଜନୈତିକ ଗୋଷ୍ଠୀସମୂହ ମଧ୍ୟରେ ସହଯୋଗିତା ବୃଦ୍ଧି ଅପରିହାର୍ଯ୍ୟ ହୋଇ ଉଠିଥିଲା । ଏହି ଐକ୍ୟ ପ୍ରତିଷ୍ଠା ସଂଗ୍ରାମରେ କମ୍ୟୁନିଷ୍ଟ ପାର୍ଟି ଥିଲା ସମସ୍ତଙ୍କର ଅଗ୍ରଣୀ ଏବଂ ସଂଗଠିତ ଶ୍ରମିକ ଆନ୍ଦୋଳନରେ ସେମାନଙ୍କ ପ୍ରଭାବ ଆଉରି ବୃଦ୍ଧି ପାଇଥିଲା ।

୧୯୪୫ ମସିହାର ଦ୍ୱିତୀୟାର୍ଦ୍ଧରେ ଅନୁଷ୍ଠିତ ଧର୍ମଘଟ ଓ ବିକ୍ଷୋଭଗୁଡ଼ିକ ପ୍ରାୟ ସୈନ୍ୟବାହିନୀ ଓ ପୁଲିସ୍ ସହିତ ସଶସ୍ତ୍ର ସଂଘର୍ଷର ରୂପ ଗ୍ରହଣ କରିଥିଲା । ପୁଲିସ୍ ସହିତ ଏହି ଧରଣର ପ୍ରଥମ ବଡ଼ ସଂଘର୍ଷ ଘଟିଥିଲା ଅଗଷ୍ଟ ମାସରେ ବାରାଣସୀରେ । ଏହା ପରେ ଏହାର ପୁନରାବୃତ୍ତି ଘଟିଥିଲା ବମ୍ବେରେ । କିନ୍ତୁ ଏଠାରେ ଔପନିବେଶିକ ପ୍ରଶାସନର ଦଲାଲମାନଙ୍କ ପ୍ରରୋଚନାରେ ସଂଘର୍ଷଟି କେଇ ଦିନ ପର୍ଯ୍ୟନ୍ତ ଏକ ହିନ୍ଦୁ ମୁସଲମାନ ଦଙ୍ଗାରେ ପରିଣତ ହୋଇଥିଲା । ଯୁଦ୍ଧୋତ୍ତର କାଳରେ ଏହା ଥିଲା ଦୁଇ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ପ୍ରଥମ ବଡ଼ ଧରଣର ସଂଘର୍ଷ । ପ୍ରଥମତଃ, ବ୍ରିଟିଶ୍ ଔପନିବେଶିକମାନେ ଏଥିରେ ଇନ୍ଧନ ଯୋଗେଇ ସାମ୍ରାଜ୍ୟବାଦବିରୋଧୀ ସାମ୍ନୁଖ୍ୟରେ ସଂପ୍ରତି ଗଢ଼ି ଉଠିଥିବା ହିନ୍ଦୁ-ମୁସଲମାନ ଐକ୍ୟକୁ ଭାଙ୍ଗିବାକୁ ଚେଷ୍ଟା କରିଥିଲେ ।

୧୯୪୫ ଖ୍ରୀଷ୍ଟାବ୍ଦରେ ଦୁଇଟି ଘଟଣା ଫଳରେ ଆଭ୍ୟନ୍ତରୀଣ ଉତ୍ତେଜନା ବୃଦ୍ଧି ପାଇଥିଲା ଏବଂ ତାହା ଔପନିବେଶିକତା ବିରୋଧୀ ଗଣ ଆନ୍ଦୋଳନର ବିକାଶ ପ୍ରତି ସହାୟତା ଯୋଗାଇଥିଲା । ଜାତୀୟ କଂଗ୍ରେସ, ମୁସଲିମ୍ ଲୀଗ୍, କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟାନ୍ୟ ଗଣ ସଂଗଠନର ଏକାଠି ଆନ୍ଦୋଳନ ଫଳରେ ଦକ୍ଷିଣ-ପୂର୍ବ ଏସିଆରେ ଜାତୀୟ-ମୁକ୍ତି ଆନ୍ଦୋଳନକୁ ଦମନ କରିବା ପାଇଁ ବ୍ରିଟିଶ୍ ସରକାର କର୍ତ୍ତୃକ ଫରାସୀ ଓ ଓଲନ୍ଦାଜମାନଙ୍କ ପକ୍ଷରେ ଇଂରେଜ-ଭାରତୀୟ ସୈନ୍ୟ ନିୟୋଗର ସିଦ୍ଧାନ୍ତର ପ୍ରତିବାଦ କରି ସାରା ଦେଶରେ ସଭା ଓ ଶୋଭାଯାତ୍ରା ଅନୁଷ୍ଠିତ ହୋଇଥିଲା । ଅକ୍ଟୋବର ୨୫ ତାରିଖରେ ଦେଶ ସାରା ରାଜନୈତିକ କାର୍ଯ୍ୟକଳାପ ମାଧ୍ୟମରେ ପାଳିତ ହୋଇଥିଲା "ଇନ୍ଦୋନେସିଆ ଦିବସ" – ଏହିସବୁ ଦେଶକୁ ଯାଉଥିବା ଜାହାଜରେ ସାମରିକ ମାଲ ବୋଝେଇ କରିବାକୁ ବନ୍ଦରର ଡକ୍ କର୍ମୀମାନେ ମନା କରି ଦେଇଥିଲେ ।

ନଭେମ୍ବର ମାସରେ ଦିଲ୍ଲୀରେ "ଆଜାଦ୍ ହିନ୍ଦ୍ ଫୌଜର" ଦଳେ ଅଫିସରଙ୍କ ବିଗ୍ରର ଆରମ୍ଭ ହୋଇଥିଲା । ବର୍ମାରେ ବନ୍ଦୀ ହୋଇଥିବା ଇଂରେଜ-ଭାରତୀୟ ସୈନ୍ୟମାନଙ୍କୁ ନେଇ ସୁଭାଷଚନ୍ଦ୍ର ବସୁ ଏହି ସେନାଦଳଟିର ନେତୃତ୍ୱ ନେଇଥିଲେ । ସୁଭାଷଚନ୍ଦ୍ର ବସୁ ନିଜେ ୧୯୪୫ ମସିହାର ବର୍ମାରୁ ଜାପାନ୍ ଯିବା ପଥରେ ବିମାନ ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲେ । ସୁଭାଷଚନ୍ଦ୍ର ଏବଂ ତାଙ୍କ କର୍ମୀମାନେ ଔପନିବେଶିକ ସରକାର ବିରୁଦ୍ଧରେ ଅସ୍ତ୍ର ଧାରଣ କରିବା ଫଳରେ ଭାରତୀୟ ଜନସାଧାରଣ ସେମାନଙ୍କୁ ସ୍ୱାଧୀନତାର ଅଗ୍ରଦୂତ ବୋଲି ମନେ କରୁଥିଲେ । ସୁଭାଷଚନ୍ଦ୍ର ବଙ୍ଗଳାରେ ବିଶେଷ ଭାବେ ଜନପ୍ରିୟ ଥିଲେ ଏବଂ ତାଙ୍କ ଦ୍ୱାରା ସଂଗଠିତ "ଫରଓ୍ୱାର୍ଡ ବ୍ଲକ" ସେତେବେଳେ ସେଠାରେ ସକ୍ରିୟ ଥିଲା । ସେ ଦେଶ ସାରା "ନେତାଜୀ" ବୋଲି ଖ୍ୟାତ ହୋଇଥିଲେ ।

ବ୍ରିଟିଶ୍ ଟ୍ରିବ୍ୟୁନାଲ କର୍ତ୍ତୃକ "ଆଜାଦ୍ ହିନ୍ଦ୍ ଫୌଜର" ସେନାଧ୍ୟକ୍ଷ ଶାହ୍ ନଓ୍ୱାଜ ଖାଁ ଦୀର୍ଘମିଆଦୀ କାରାଦଣ୍ଡରେ ଦଣ୍ଡିତ ହେବାରୁ ଦେଶ ସାରା ବିକ୍ଷୋଭର ପ୍ରବଳ ଝଡ଼ ବହିଗଲା । ଏହି

ସମୟରେ କଲିକତାରେ ଅନୁଷ୍ଠିତ ଗଣ ବିକ୍ଷୋଭ ଏକ ସାଧାରଣ ଧର୍ମଘଟର ରୂପ ଧାରଣ କରିଥିଲା ଏବଂ ଏହି ବିକ୍ଷୋଭରେ ଶ୍ରମିକ, ଛାତ୍ର, ବ୍ୟବସାୟୀ କାରିଗରମାନଙ୍କ ସମେତ ସମାଜର ସମସ୍ତ ସ୍ତରର ଦେଶପ୍ରେମୀ ଜନସାଧାରଣ ବ୍ୟାପକ ଭାବେ ଅଂଶଗ୍ରହଣ କରିଥିଲେ । ସାରା କଲିକତାରେ ସେତେବେଳେ ଅସଂଖ୍ୟ ବ୍ୟାରିକେଡ୍ ଗଢ଼ି ଉଠିଥିଲା । ପରିବହନ ଓ ମିଉନିସିପାଲ କର୍ମୀମାନେ ଧର୍ମଘଟରେ ଯୋଗ ଦେବା ଫଳରେ ସହରର ଜଳ ଓ ବିଦ୍ୟୁତ୍ ସରବରାହ ବନ୍ଦ ହୋଇଗଲା । ନଭେମ୍ବର ମାସ ୨୨ ତାରିଖରୁ ୨୫ ତାରିଖ ପର୍ଯ୍ୟନ୍ତ ପୁଲିସ୍ ଏବଂ ସୈନ୍ୟବାହିନୀ ସହିତ ଅନେକ ସଂଘର୍ଷରେ ବହୁ ବିକ୍ଷୋଭକାରୀ ନିହତ ଏବଂ କେଇ ଶହ ଆହତ ହୋଇଥିଲେ । ଶରତଚନ୍ଦ୍ର ବସୁଙ୍କ (ନେତାଜୀଙ୍କ ଭାଇ) ସମେତ କଂଗ୍ରେସ ନେତାମାନଙ୍କ ଆବେଦନ ଫଳରେ ଶେଷକୁ ଧର୍ମଘଟ ପ୍ରତ୍ୟାହୃତ ହୋଇଥିଲା । ଏହି ପ୍ରତିବାଦ କଲିକତାରୁ ବମ୍ବେ ତଥା ଭାରତର ଅନ୍ୟାନ୍ୟ ସହରକୁ ଖେଳି ଯାଇଥିଲା ।

କିନ୍ତୁ ଔପନିବେଶିକ ସରକାର "ଆଜାଦ୍ ହିନ୍ଦ୍ ଫୌଜର" ଅଫିସରମାନଙ୍କ ବିଗ୍ଭର ଚଳେଇ ଯାଇଥିଲେ । ୧୯୪୬, ଫେବୃଆରୀ ମାସରେ ଜଣେକ ମୁସଲିମ୍ ଅଫିସର ଦୀର୍ଘମିଆଦୀ କାରାଦଣ୍ଡରେ ଦଣ୍ଡିତ ହେଲେ କଲିକତାରେ ପୂର୍ବବର୍ତ୍ତୀ ନଭେମ୍ବର ମାସର ଘଟଣାବଳୀର ବ୍ୟାପକ ପୁନରାବୃତ୍ତି ଘଟିଥିଲା । ବଙ୍ଗାଳୀ ଛାତ୍ରମାନଙ୍କ କର୍ତ୍ତୃକ ୧୧ ଫେବୃଆରୀରେ ଆହୂତ ହରତାଳରୁ ଏକ ନୂତନ ସାଧାରଣ ଧର୍ମଘଟର ସୂଚନା ଦେଖା ଦେଲା । ପୁଲିସ୍ ସହିତ ବହୁ ସଂଘର୍ଷ ଭିତରେ ୧୫ ଫେବୃଆରୀ ପର୍ଯ୍ୟନ୍ତ ଏହା ଅବ୍ୟାହତ ରହିଥିଲା । ଏଥର ମଧ୍ୟ ରାସ୍ତା ଘାଟରେ ତିଆରି ହୋଇଥିଲା ବ୍ୟାରିକେଡ୍ । ଏହା ପରେ ଏହି ଆନ୍ଦୋଳନ କଲିକତାରୁ ବମ୍ବେ ସମେତ ଉତ୍ତର-ପଶ୍ଚିମ ଭାରତର ବହୁ ସହରକୁ ବ୍ୟାପି ଯାଇଥିଲା । ବ୍ରିଟିଶ୍‌ମାନେ ଭୀତ ତ୍ରସ୍ତ ହୋଇ ସରକାରବିରୋଧୀ ବିକ୍ଷୋଭ ଓ ସମାବେଶକୁ ବନ୍ଦ କରିବା ପାଇଁ ବଡ଼ ବଡ଼ ସୈନ୍ୟ ଦଳ ପଠାଇଥିଲେ ।

"ଆଜାଦ୍ ହିନ୍ଦ୍ ଫୌଜ" ସପକ୍ଷରେ ଏହି ଆନ୍ଦୋଳନରେ କେବଳ ଜାତୀୟ କଂଗ୍ରେସ ନୁହେଁ, ମୁସଲିମ୍ ଲୀଗ୍ ମଧ୍ୟ ସମର୍ଥନ ଯୋଗାଇଥିଲା । ହିନ୍ଦୁ ମୁସଲିମ୍ ଦଙ୍ଗା ଲଗାଇ ଦେବାର ସମସ୍ତ ଚେଷ୍ଟା କିନ୍ତୁ ଏଥର ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା ।

ଅର୍ଥନୈତିକ ପରିସ୍ଥିତିର କ୍ରମାବନତି ଫଳରେ ୧୯୪୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଧର୍ମଘଟର ଆଉରି ଏକ ନୂତନ ଜୁଆର ଦେଖାଦେଲା । ଏଥର ଦେଶୀୟ ରାଜ୍ୟଗୁଡ଼ିକର ଶ୍ରମିକମାନେ ମଧ୍ୟ ଧର୍ମଘଟରେ ଯୋଗ ଦେଲେ । ମହୀଶୂରର ସୁନାଖଣି ଓ ଗୋଆଲିଅର ବସ୍ତ୍ର କଳର ଶ୍ରମିକମାନେ ଏହି ଧର୍ମଘଟରେ ଯୋଗ ଦେଇଥିଲେ ।

ଆନ୍ଦୋଳନର ବିକାଶ କିପରି ଘଟିଥିଲା ନିମ୍ନୋକ୍ତ ସାରଣୀରୁ ତାହା ସହଜରେ ବୁଝି ହୁଏ :

| ବର୍ଷ | ଧର୍ମଘଟର ସଂଖ୍ୟା | ଧର୍ମଘଟକାରୀମାନଙ୍କ ସଂଖ୍ୟା (ହଜାର) | ବିନଷ୍ଟ କର୍ମଦିନର ସଂଖ୍ୟା |
|---|---|---|---|
| ୧୯୪୫ | ୮୫୦ | ୮୦୦ | ୩.୮ |
| ୧୯୪୬ (ପ୍ରଥମ ତିନି ମାସ) | ୪୨୬ | ୫୮୦ | ୩.୦ |

ଗ୍ରାମାଞ୍ଚଳରେ ମଧ୍ୟ ରାଜନୈତିକ ଅସନ୍ତୋଷ ଦେଖା ଦେଇଥିଲା । ସେ ୧୯୪୫ ଖ୍ରୀଷ୍ଟାବ୍ଦର ଶରତ କାଳରେ ଔପନିବେଶିକ ସରକାର ବିରୁଦ୍ଧରେ ଗଣ ସଂଗ୍ରାମ ଚରମ ଅବସ୍ଥାକୁ ଉଠି ସଶସ୍ତ୍ର ସଂଗ୍ରାମର ରୂପ ଧାରଣ କରିଥିଲା । ୧୯୪୬ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ସୈନ୍ୟବାହିନୀର କେତେକ ଅଂଶ ଆନ୍ଦୋଳନରେ ଯୋଗଦାନ ଦେଲା ପରେ ରାଜନୈତିକ ଉତ୍ତେଜନା ଶୀର୍ଷଦେଶରେ ପହଞ୍ଚିଥିଲା ।

## ନୌବିଦ୍ରୋହ—ଭାରତରେ ବୈପ୍ଳବିକ ପରିସ୍ଥିତି

୧୯୪୬ ଖ୍ରୀଷ୍ଟାବ୍ଦରେ "ତଲୱାର" ନାମକ ଏକ ପ୍ରଶିକ୍ଷଣ ଜାହାଜର ନାବିକମାନଙ୍କ ମଧ୍ୟରେ ସ୍ୱତଃସ୍ଫୂର୍ତ୍ତ ବିଦ୍ରୋହ ଦେଖା ଦେଇଥିଲା । ଇତିପୂର୍ବରୁ ଖରାପ ଖାଦ୍ୟ (ବାଲିମିଶା ଭାତ) ସରବରାହ ପାଇଁ ସେମାନେ ଅଭିଯୋଗ କରିଥିଲେ । ଅଭିଯୋଗକାରୀମାନଙ୍କ ବିରୁଦ୍ଧରେ ଅଫିସରମାନେ ପ୍ରତିଶୋଧ ନେବାକୁ ଉଦ୍ୟୋଗୀ ହେଲେ ଫେବୃଆରୀ ୧୮ ତାରିଖରେ ନାବିକମାନେ ଏକାବେଳକେ ଧର୍ମଘଟ ଆରମ୍ଭ କରିଦେଲେ । ତା ପରଦିନ ସେଠାରେ ନଙ୍ଗର ପକାଇଥିବା ୨୦ଟି ଯୁଦ୍ଧ ଜାହାଜର ସମସ୍ତ ନାବିକ ଏଥିରେ ଯୋଗ ଦେଇଥିଲେ । ଧର୍ମଘଟକାରୀ ନାବିକମାନଙ୍କର ଦାବୀ ଥିଲା—ନୌବାହିନୀରୁ ସମସ୍ତ ବୈଷମ୍ୟର ଅବସାନ, ଭାରତୀୟ ନାବିକମାନଙ୍କ ପାଇଁ ବ୍ରିଟିଶ୍ ସହକର୍ମୀମାନଙ୍କ ଭଳି ଚାକିରି ସର୍ତ୍ତ ପ୍ରବର୍ତ୍ତନ ଏବଂ ଶେଷରେ ଜାହାଜରେ ଅବସ୍ଥାନକାଳୀନ ଜୀବନ ଯାତ୍ରାର, ବିଶେଷତଃ, ଖାଦ୍ୟାବସ୍ଥାର ଉନ୍ନତି ସାଧନ । ସେମାନେ ଭାରତୀୟ ନାବିକମାନଙ୍କ ସହିତ ବ୍ରିଟିଶ୍ ଅଫିସରମାନଙ୍କର ଅପମାନଜନକ ଆଚରଣ ବିରୁଦ୍ଧରେ ମଧ୍ୟ ପ୍ରତିବାଦ ଜଣାଇଥିଲେ ।

ନାବିକମାନେ ଏକ ଧର୍ମଘଟ କମିଟି ନିର୍ବାଚନ କଲାପରେ ଫେବୃଆରୀ ୧୯ ତାରିଖରେ ବମ୍ବେରେ ବିକ୍ଷୋଭର ଆୟୋଜନ ହୋଇଥିଲା । ନୌବାହିନୀର ଭାରତୀୟ କର୍ମୀମାନଙ୍କର ଏହି କାର୍ଯ୍ୟକଳାପ କ୍ରମଶଃ ରାଜନୈତିକ ଚରିତ୍ର ଲାଭ କରିଥିଲା : ଚାକିରି ସର୍ତ୍ତରେ ପୂର୍ବୋକ୍ତ ଉନ୍ନତି ଛଡ଼ା ଧର୍ମଘଟକାରୀମାନେ ସମସ୍ତ ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଓ ଇନ୍ଦୋନେସିଆରୁ ଇଂରେଜ-ଭାରତୀୟ ସେନାବାହିନୀ ଅପସାରଣର ଦାବି ଜଣାଇଥିଲେ ।

ସାମ୍ରାଜ୍ୟବାଦବିରୋଧୀ ଏହି ବିକ୍ଷୋଭରେ ତିନୋଟି ପତାକା ବ୍ୟବହୃତ ହୋଇଥିଲା । ଏଥିରେ ଥିଲା : ଜାତୀୟ କଂଗ୍ରେସ, ମୁସଲିମ୍ ଲୀଗ୍ ଓ କମ୍ୟୁନିଷ୍ଟ ପାର୍ଟିର ପତାକା । ଏହି ଭାବେ ସାମ୍ରାଜ୍ୟବାଦବିରୋଧୀ ତିନୋଟି ଶକ୍ତିକୁ ଐକ୍ୟବଦ୍ଧ କରିବାର ଉଦ୍ୟୋଗ ପ୍ରକଟିତ ହୋଇଥିଲା ।

ଫେବୃଆରୀ ମାସର ୨୦ ତାରିଖ ଦିନ ବିଦ୍ରୋହ ଦମନ ପାଇଁ ବମ୍ବେକୁ ସେନାବାହିନୀ ଡକାଯାଇଥିଲା । ବିଦ୍ରୋହୀ ଜାହାଜର ନାବିକମାନେ ସେମାନଙ୍କ କ୍ରିୟାକଳାପ ସମନ୍ୱୟ କରିବା ପାଇଁ ୫ଜଣ ସଦସ୍ୟ ବିଶିଷ୍ଟ ଏକ କାର୍ଯ୍ୟକାରୀ କମିଟି ଗଠନ କରିଥିଲେ ।

ଏହାର ପରଦିନ ବ୍ରିଟିଶ୍ ସୈନ୍ୟଦଳ ଆକ୍ରମଣ ଚଳେଇଥିଲେ । ଦୁଇ ପକ୍ଷ ମଧ୍ୟରେ ଦିନ ସାରା ଗୁଳି ଚାଲିଥିଲା ଏବଂ କମାଣଯୁଦ୍ଧ ଆରମ୍ଭ ହୋଇଗଲା । ଯୁଦ୍ଧରେ କୌଣସି ପକ୍ଷ ବିଶେଷ ସୁବିଧା ଲାଭ କରିବାକୁ ବ୍ୟର୍ଥ ହେବାରୁ ଅପରାହ୍ନ ୪ଟାରେ ଯୁଦ୍ଧ ବିରତି ଘୋଷିତ ହେଲା ।

ଏହି ବିଦ୍ରୋହର ଖବର ଅବିଳମ୍ବେ ପ୍ରଘଟ ହୋଇଗଲା ଦେଶ ସାରା । କରାଚି, କଲିକତା,

ମାନ୍ଦ୍ରାଜ ଓ ଭିଜାଗାପଟ୍ଟମ୍‌ରେ ନାବିକମାନେ ଏବଂ ଦିଲ୍ଲୀ, ଥାନେ ଓ ପୁନାର ଉପକୂଳ ରକ୍ଷୀମାନେ ଧର୍ମଘଟକାରୀମାନଙ୍କୁ ସମର୍ଥନ ଜଣାଇଥିଲେ । ଏହା ପରେ ରୟାଲ ଇଣ୍ଡିଆନ ନୌବାହିନୀର ସର୍ବତ୍ର ବିଦ୍ରୋହ ଘଟାଇବାର ସମ୍ଭାବନା ସ୍ପଷ୍ଟ ହୋଇ ଉଠିଥିଲା ।

ବର୍ଣ୍ଣବୈଷମ୍ୟ ଓ ଦ୍ରୁତ ସୈନ୍ୟଦଳ ଭାଙ୍ଗି ଦେବାର ପ୍ରତିବାଦରେ ଫେବୃଆରୀ ମାସର ପ୍ରାରମ୍ଭରୁ ବମ୍ବେର ବିମାନବାହିନୀର ବୈମାନିକ ଓ ବିମାନ ଘାଟିର କର୍ମଚାରୀମାନଙ୍କ ଧର୍ମଘଟ ଅବ୍ୟାହତ ରହିବାରୁ ପରିସ୍ଥିତି ଆଉରି ଜଟିଳ ହୋଇ ଉଠିଥିଲା । କଲିକତା ଏବଂ ଅନ୍ୟ କେତେକ ବିମାନ ଘାଟିର ବୈମାନିକମାନେ ମଧ୍ୟ ଏମାନଙ୍କ ସହିତ ଯୋଗ ଦେଇଥିଲେ ।

ଇଂରେଜ-ଭାରତୀୟ ସୈନ୍ୟ ଓ ନୌବାହିନୀର ଏହି କାର୍ଯ୍ୟକଳାପ ଦେଶର ଗଣତାନ୍ତ୍ରିକ ଶକ୍ତିମାନଙ୍କର ଆନ୍ତରିକ ସମର୍ଥନ ଲାଭ କରିଥିଲା । କମ୍ୟୁନିଷ୍ଟ ପାର୍ଟିର ଆହ୍ୱାନ କ୍ରମେ ଫେବୃଆରୀ ୨୨ରୁ ଦେଶର ସାଧାରଣ ଧର୍ମଘଟ, ବିକ୍ଷୋଭ ଓ ଜନସଭା ଆରମ୍ଭ ହୋଇ ଯାଇଥିଲା । ବମ୍ବେର ଶ୍ରମଜୀବୀ ଜନସାଧାରଣଙ୍କର ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ସତ୍ତ୍ୱେ ସେମାନଙ୍କ ବିରୁଦ୍ଧରେ ଏକ ବିଶାଳ ସୈନ୍ୟ ଓ ପୁଲିସ୍‌ବାହିନୀ ପଠାଯାଇଥିଲା, ସେମାନେ ବିକ୍ଷୋଭକାରୀମାନଙ୍କ ଉପରେ ନିଷ୍ଠୁର ଆକ୍ରମଣ ଚଳେଇଥିଲେ । ଏଥିରେ ପ୍ରାୟ ୩୦୦ଜଣ ନିହତ ଓ ୧୭୦୦ଜଣ ଆହତ ହୋଇଥିଲେ ।

ସୈନ୍ୟବାହିନୀର ସଶସ୍ତ୍ର ପ୍ରତିରୋଧ ଏବଂ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ଭୂମିକା ପାଇଁ କେବଳ ଔପନିବେଶିକ ପ୍ରଶାସନ ନୁହେଁ, ଜାତୀୟ ସଂଗଠନଗୁଡ଼ିକ ମଧ୍ୟରେ ଥିବା ବୁର୍ଜୁଆ ଜମିଦାର ପ୍ରଭାବିତ ଗୋଷ୍ଠୀଗୁଡ଼ିକର ନେତାମାନେ ମଧ୍ୟ ଆତଙ୍କିତ ହୋଇ ପଡ଼ିଥିଲେ । ବିଦ୍ରୋହୀ ନାବିକମାନଙ୍କର ମୂଳ ଦାବୀଗୁଡ଼ିକ ପ୍ରତି ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ନେତୃବୃନ୍ଦ ସହାନୁଭୂତି ଓ ସମର୍ଥନ ଜ୍ଞାପନ କରିଲେ ମଧ୍ୟ ଶେଷକୁ ସେମାନେ ନାବିକମାନଙ୍କର ଧର୍ମଘଟ ଓ ପ୍ରତିରୋଧ ପ୍ରତ୍ୟାହାର କରିବାକୁ ଆହ୍ୱାନ ଜଣାଇଥିଲେ । କଂଗ୍ରେସର ପ୍ରତିନିଧି ହିସାବରେ ପଟେଲ ନାବିକମାନଙ୍କର କାର୍ଯ୍ୟକାରୀ ପରିଷଦ ସହିତ ଆଲୋଚନା କରିବାକୁ ବମ୍ବେ ଆସିଥିଲେ ।

କଂଗ୍ରେସ ଓ ଲୀଗ୍ ନେତାମାନଙ୍କ ଚାପରେ ଫେବୃଆରୀ ୨୩ ତାରିଖରେ ଧର୍ମଘଟକାରୀମାନେ ଆତ୍ମସମର୍ପଣ କଲେ । ଦେଶର କେତେକ ଅଂଶରେ କିନ୍ତୁ ସୈନ୍ୟ ଓ ନାବିକମାନଙ୍କର ଧର୍ମଘଟ ଆଉରି କିଛି ଦିନ ପାଇଁ ଚାଲିଥିଲା ।

ଭାରତୀୟ ସୈନ୍ୟବାହିନୀର ଏହି କାର୍ଯ୍ୟକଳାପ ମଧ୍ୟରେ ଭାରତରେ ଏକ ବୈପ୍ଲବିକ ପରିସ୍ଥିତି ଯେ ସୃଷ୍ଟି ହେଉଥିଲା, ତା'ର ଆଭାସ ଏଥିରେ ସ୍ପଷ୍ଟ ହୋଇ ଉଠିଥିଲା ।

## ଭାରତ ସଂପର୍କରେ ଲେବର ପାର୍ଟିର ନୀତି । ଦେଶ ବିଭାଗର ଉଦ୍ୟମ

ଭାରତରେ ସଂଘଟିତ ଏହିସବୁ ଘଟଣାର ଗୁରୁତ୍ୱକୁ ଅବଜ୍ଞା କରିବାକୁ ଅକ୍ଷମ ହୋଇ ବ୍ରିଟେନ୍‌ର ଲେବର ପାର୍ଟିର ସରକାର ଭାରତର ମୁକ୍ତି ଆନ୍ଦୋଳନକୁ ସୁବିଧା ଦେବାକୁ ବାଧ୍ୟ ହୋଇଥିଲା । ଫେବୃଆରୀ ମାସରେ ଭାରତ ଉଦ୍ଦେଶ୍ୟରେ ଏକ କ୍ୟାବିନେଟ ମିଶନ ଆସିଥିଲେ । ଏଥିରେ ଥିଲେ ଭାରତ ସଚିବ ପେଥିକଲରେନ୍‌ସ, ନୌବାହିନୀର ପ୍ରଧାନ ଲର୍ଡ ଆଲେକଜାଣ୍ଡାର ଓ ଚତ୍‌କାଲୀନ

ବାଣିଜ୍ୟ ବୋର୍ଡର ସଭାପତି କ୍ରିପ୍‌ସ । ୧୯୪୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୫ ତାରିଖରେ ଭାରତ ସଂପର୍କିତ ଲେବର ପାର୍ଟିର ଦ୍ୱିତୀୟ ଘୋଷଣାରେ ଭାରତକୁ ଡୋମିନିଅନ ମର୍ଯ୍ୟାଦା ଦେବା କଥା ସ୍ୱୀକାର କରାଯାଇଥିଲା । କମନସ୍ ସଭାରେ ଉପସ୍ଥାପିତ ହୋଇଥିବା ଏହି ଘୋଷଣାରେ ଅଟଲୀ ଦେଶବ୍ୟାପୀ ଆନ୍ଦୋଳନ ଓ ଏଥିରେ ସୈନ୍ୟବାହିନୀ ଜଡ଼ିତ ହୋଇ ପଡ଼ିଥିବାର କଥା ଉଲ୍ଲେଖ କରିଥିଲେ ।

ମାର୍ଚ୍ଚ ମାସରେ କ୍ୟାବିନେଟ ମିଶନ ଭାରତରେ ପହଞ୍ଚିଥିଲେ । ତା'ପରେ ଏପ୍ରିଲ ମାସ ସାରା ଜାତୀୟ କଂଗ୍ରେସ ଓ ମୁସଲିମ୍ ଲୀଗ୍ ନେତାମାନଙ୍କ ସହିତ ଏହି ମିଶନର ଦୀର୍ଘ ଆଲୋଚନା ଚାଲିଥିଲା । ୧୯୪୬ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସର ପ୍ରାରମ୍ଭରେ ଅନୁଷ୍ଠିତ ପ୍ରାଦେଶିକ ନିର୍ବାଚନର ଫଳାଫଳ ଦ୍ୱାରା ଉଭୟ ପାର୍ଟିର ଅବସ୍ଥାନଟି ପ୍ରଭାବିତ ହୋଇଥିଲା ।

ଏହି ନିର୍ବାଚନରେ ଶତକଡ଼ା ୧୩ ଭାଗରୁ କମ୍ ଲୋକ ଅଂଶଗ୍ରହଣ କରିଥିଲେ ଏବଂ ଧର୍ମୀୟ ସଂପ୍ରଦାୟଗୁଡ଼ିକର ସଂପର୍କ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ଲକ୍ଷ୍ୟରେ ଗଠିତ ନିର୍ବାଚନ ଅଞ୍ଚଳର ଭିତ୍ତିରେ ଏହା ଅନୁଷ୍ଠିତ ହୋଇଥିଲା । ଜାତୀୟ କଂଗ୍ରେସ ସମସ୍ତ ପ୍ରଦେଶର ସାଧାରଣ ନିର୍ବାଚନୀ ଅଞ୍ଚଳରେ (ହିନ୍ଦୁ) ଏବଂ ଏକମାତ୍ର ମୁସଲମାନ ସଂଖ୍ୟାଗରିଷ୍ଠ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ କରିଥିଲା । ମୁସଲିମ୍ ଲୀଗ୍ ପୁଣି ହିନ୍ଦୁ ପ୍ରଧାନ ସମସ୍ତ ପ୍ରଦେଶର ମୁସଲିମ୍ ନିର୍ବାଚନୀ ଅଞ୍ଚଳରେ ଓ ମୁସଲିମ୍ ପ୍ରଧାନ ବଙ୍ଗଳାରେ ଅଧିକାଂଶ ଆସନ ଲାଭ କରିଥିଲା । ପଞ୍ଜାବ ଓ ସିନ୍ଧୁ ଭଳି ମୁସଲମାନ ପ୍ରଧାନ ଦୁଇଟି ପ୍ରଦେଶରେ ମୁସଲିମ୍ ନିର୍ବାଚନୀ ଅଞ୍ଚଳର ଭୋଟ ମୁସଲିମ୍ ଲୀଗ୍ ଓ ଏହାର ବିରୋଧୀ ସ୍ଥାନୀୟ ପାର୍ଟିଗୁଡ଼ିକ ମଧ୍ୟରେ ବିଭକ୍ତ ହୋଇଥିଲା ।

ନିର୍ବାଚନର ଫଳାଫଳରୁ ପ୍ରମାଣିତ ହେଲା ଯେ, (୧) ଦେଶର ବିପୁଳ ସଂଖ୍ୟାଗରିଷ୍ଠ ଲୋକ ଅବିଭକ୍ତ ଭାରତର ପକ୍ଷପାତୀ; (୨) ଅମୁସଲମାନ ପ୍ରଧାନ ପ୍ରଦେଶଗୁଡ଼ିକର ବ୍ୟାପକ ସଂଖ୍ୟକ ମୁସଲିମ୍ ଜନତା ମୁସଲିମ୍ ଲୀଗ ଦ୍ୱାରା ଉପସ୍ଥାପିତ ପାକିସ୍ତାନ ଗଠନ ପ୍ରସ୍ତାବର ସମର୍ଥକ; (୩) ମୁସଲିମ୍ ଲୀଗ୍ ସମଗ୍ର ଦେଶର ମୁସଲମାନ ସଂପ୍ରଦାୟର ପ୍ରତିନିଧି ।

ପ୍ରାଦେଶିକ ବିଧାନ ସଭାଗୁଡ଼ିକରେ ଯଥାକ୍ରମେ କଂଗ୍ରେସ ଓ ମୁସଲିମ୍ ଲୀଗ୍‌ର ମୋଟ ସଦସ୍ୟ ସଂଖ୍ୟା ଥିଲା ୯୮୧ ଓ ୪୨୫ । କିନ୍ତୁ ବଙ୍ଗଳା ବ୍ୟତୀତ ଆଉ କେଉଁଠି ମୁସଲିମ୍ ଲୀଗ୍ ପକ୍ଷରେ ଏକକ ଭାବେ ପ୍ରାଦେଶିକ ସରକାର ଗଠନ ସମ୍ଭବ ନଥିଲା ।

ଭାରତୀୟ ଜନସାଧାରଣଙ୍କର ଏକ ଅତି କ୍ଷୁଦ୍ରାଂଶ ଭୋଟଦାନର ଅଧିକାରୀ ହେଲେ ମଧ୍ୟ ଏହିମାନେ ହିଁ ଥିଲେ ଜନସାଧାରଣଙ୍କ ମଧ୍ୟରେ ରାଜନୈତିକ ଭାବେ ସର୍ବାଧିକ ସଚେତନ ଅଂଶ ଏବଂ ସେମାନେ ଜନମତ ଗଠନ କ୍ଷେତ୍ରରେ ପ୍ରଭାବ ବିସ୍ତାର କରୁଥିଲେ ।

ଭାରତର କମ୍ୟୁନିଷ୍ଟ ପାର୍ଟି ପ୍ରଥମ କରି ଏଥର ନିର୍ବାଚନରେ ଅଂଶଗ୍ରହଣ କରିଥିଲା । ଏହି ପାର୍ଟି ଦ୍ୱାରା ମନୋନୀତ ୧୦୮ଜଣ ପ୍ରାର୍ଥୀଙ୍କ ମଧ୍ୟରୁ ୯ଜଣ ଜୟୀ ହୋଇଥିଲେ ଏବଂ ପାର୍ଟି ସର୍ବମୋଟ ୬ ଲକ୍ଷ ଭୋଟ ପାଇଥିଲା । କମ୍ୟୁନିଷ୍ଟ ପାର୍ଟି ତା'ର ନିର୍ବାଚନୀ ଇସ୍ତାହାରରେ ସାମାଜିକ ପରିବର୍ତ୍ତନର ଏକ ବିସ୍ତୃତ କର୍ମସୂଚୀ ଉପସ୍ଥାପିତ କରିଥିଲା । ଏଥିରେ ଥିଲା : ଜମିଦାରି ଉଚ୍ଛେଦ, ପ୍ରଧାନ ଶିଳ୍ପ ଶାଖାଗୁଡ଼ିକର ଜାତୀୟକରଣ, ବଡ଼ ବଡ଼ କାରଖାନାଗୁଡ଼ିକରେ ଶ୍ରମିକମାନଙ୍କ ନିୟନ୍ତ୍ରଣ ପ୍ରତିଷ୍ଠା, ଆଦି । ପ୍ରତ୍ୟେକଟି ଜାତିର ଆତ୍ମନିୟନ୍ତ୍ରଣ ଅଧିକାରକୁ ସ୍ୱୀକାର କରି ଜାତି ସଂକ୍ରାନ୍ତ

ସମସ୍ୟାର ସମାଧାନ ଓ ସଂବିଧାନ ସଭା ଗଠନ ପାଇଁ ଗଣତାନ୍ତ୍ରିକ ନିର୍ବାଚନ ଅନୁଷ୍ଠାନର ଦାବି ମଧ୍ୟ ଏଥିରେ ଉଲ୍ଲେଖ ଥିଲା । ଭାରତର ପୂର୍ଣ୍ଣ ସ୍ୱାଧୀନତାକୁ ଏହି ସଂଗ୍ରାମର ଶେଷ ଲକ୍ଷ୍ୟ ବୋଲି ଘୋଷଣା କରାଯାଇଥିଲା । କମ୍ୟୁନିଷ୍ଟ ପାର୍ଟିର ଅବସ୍ଥା ସେତେବେଳେ ଦୁର୍ବଳ ଥିଲେ ମଧ୍ୟ ଭାରତୀୟ ଜନସାଧାରଣଙ୍କ ବିପୁଳ ଅଂଶ ମଧ୍ୟରେ କମ୍ୟୁନିଷ୍ଟ ନୀତି ଓ ପଦ୍ଧତି ପ୍ରଚାରର ସୁଯୋଗ ମିଳିଥିଲା ।

ନିର୍ବାଚନର ଫଳାଫଳ ଜାତୀୟ କଂଗ୍ରେସର ନେତାମାନଙ୍କୁ ଦେଶର ଅଖଣ୍ଡତା ରକ୍ଷା ପାଇଁ ଯେପରି ଦୃଢ଼ ପ୍ରତିଜ୍ଞ କରିଥିଲା, ସେଇପରି ଏକା କାରଣରୁ ମୁସଲିମ୍ ଲୀଗ୍ର ନେତାମାନେ ମଧ୍ୟ ପାକିସ୍ତାନ ସୃଷ୍ଟି ପାଇଁ ଚାପ ସୃଷ୍ଟି କରିବାର ଅଟଳ ନୀତି ଅନୁସରଣ କରି ଚାଲିଥିଲେ ।

ଆଲୋଚନା ସମୟରେ ବ୍ରିଟିଶ୍ ମିଶନ ଦକ୍ଷତାର ସହିତ କଂଗ୍ରେସ ଆଉ ଲୀଗ୍ ମଧ୍ୟରେ ଥିବା ଦ୍ୱନ୍ଦ୍ୱର ସୁଯୋଗ ଗ୍ରହଣ କରିବା ଫଳରେ ତାହା ଶେଷକୁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ୧୯୪୬ ଖ୍ରୀଷ୍ଟାବ୍ଦ, ମେ ୧୬ ତାରିଖରେ ବ୍ରିଟିଶ୍ ସରକାର ଏକ ଘୋଷଣାରେ ଭାରତ ବିଭାଗର ଧାରଣା ଆନୁଷ୍ଠାନିକ ଭାବେ ପ୍ରତ୍ୟାଖ୍ୟାତ ହେଲେ ମଧ୍ୟ ତାହା ଅବିଭକ୍ତ ଦେଶରେ ହିନ୍ଦୁ ସଂଖ୍ୟାଗରିଷ୍ଠଙ୍କ କର୍ତ୍ତୃକ ମୁସଲମାନ ସଂଖ୍ୟାଲଘୁଙ୍କୁ ଗ୍ରାସ କରିବାର ସମ୍ଭାବ୍ୟ ଆଶଙ୍କାକୁ ବ୍ୟକ୍ତ କରିଥିଲା । ଏଭଳି ଅବସ୍ଥାରେ ବ୍ରିଟିଶ୍ ସରକାର ନିମ୍ନୋକ୍ତ "ଆପୋଷ ପରିକଳ୍ପନା" ଉପସ୍ଥାପିତ କରିଥିଲେ :

(୧) ଭାରତ ଡୋମିନିଅନ ସର୍ବାଧିକ ସମ୍ଭାବ୍ୟ ସ୍ୱାୟତ୍ତଶାସିତ ପ୍ରଦେଶ ଓ ଦେଶୀୟ ରାଜ୍ୟମାନଙ୍କୁ ନେଇ ଗଠିତ ହେବ । କେବଳ ପ୍ରତିରକ୍ଷା, ବୈଦେଶିକ ନୀତି ଓ ଯୋଗାଯୋଗର ଦାୟିତ୍ୱ କେନ୍ଦ୍ର ସରକାର ଉପରେ ନ୍ୟସ୍ତ ରହିବ ।

(୨) ବ୍ରିଟିଶ୍ ଶାସିତ ଭାରତର ପ୍ରଦେଶଗୁଡ଼ିକ ତିନୋଟି ଅଞ୍ଚଳକୁ ନେଇ ଗଠିତ ହେବ – ହିନ୍ଦୁ ପ୍ରଧାନ ଉତ୍ତର, ମଧ୍ୟ ଓ ଦକ୍ଷିଣ ଭାରତର ପ୍ରଦେଶସମୂହ; ଦ୍ୱିତୀୟ ଅଞ୍ଚଳ – ପଶ୍ଚିମ ଭାରତର ମୁସଲମାନ ପ୍ରଧାନ ପଞ୍ଜାବ, ସିନ୍ଧୁ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ; ତୃତୀୟ ଅଞ୍ଚଳ – ପୂର୍ବ, ମୁସଲମାନ ପ୍ରଧାନ ବଙ୍ଗଳା ଓ ଆସାମ । ପ୍ରତ୍ୟେକ ଅଞ୍ଚଳରେ ଗୋଟିଏ ଲେଖାଏଁ ଆଞ୍ଚଳିକ ସରକାର ରହିବ ।

(୩) ପ୍ରାଦେଶିକ ବିଧାନ ସଭାସମୂହ ଦ୍ୱାରା ନିର୍ବାଚିତ ଓ ଦେଶୀୟ ରାଜନ୍ୟବର୍ଗଙ୍କ ଦ୍ୱାରା ମନୋନୀତ ପ୍ରତିନିଧିମାନଙ୍କୁ ଘେନି ଗଠିତ ସମ୍ବିଧାନ ସଭା ସମଗ୍ର ଦେଶର ସମ୍ବିଧାନ ରଚନା କରିବେ । ସମ୍ବିଧାନ ସଭାଭୁକ୍ତ ସଂଶ୍ଳିଷ୍ଟ ପ୍ରଦେଶଗୁଡ଼ିକର ପ୍ରତିନିଧିମାନେ ତିନୋଟି ଅଞ୍ଚଳର ସମ୍ବିଧାନ ରଚନା କରିବେ ;

(୪) ହିନ୍ଦୁ, ମୁସଲମାନ ଓ ଶିଖ ଏହି ତିନି ଧର୍ମକୁ ଭିତ୍ତି କରି ନିର୍ବାଚନୀ ଅଞ୍ଚଳ ଅନୁସାରେ ସମ୍ବିଧାନ ସଭାର ନିର୍ବାଚନ ଅନୁଷ୍ଠିତ ହେବ (୧୦ ଲକ୍ଷରେ ଜଣେ ପ୍ରତିନିଧି) । ଖସଡ଼ା ସମ୍ବିଧାନର ପ୍ରତିଟି ଧାରା ସମ୍ବିଧାନ ସଭାର ପୂର୍ଣ୍ଣାଙ୍ଗ ଅଧିବେଶନରେ ନିରଙ୍କୁଶ ସଂଖ୍ୟାଗରିଷ୍ଠ ଭୋଟରେ କେବଳ ଗୃହୀତ ହେବ ନାହିଁ, ଏଥିପାଇଁ ଅଧିକାଂଶ ହିନ୍ଦୁ ଓ ମୁସଲମାନ ପ୍ରତିନିଧିମାନଙ୍କର ସମର୍ଥନ ଦରକାର ହେବ ।

ବ୍ରିଟିଶ୍ ପ୍ରସ୍ତାବରେ ସମ୍ବିଧାନ ସଭା ଗଠନ ପାଇଁ ଏଭଳି ଏକ କାର୍ଯ୍ୟକର ପରିସ୍ଥିତି ସୃଷ୍ଟି କରାଯାଇଥିଲା, ଯାହାକି କଂଗ୍ରେସ ଓ ଲୀଗ୍ ମଧ୍ୟରେ କୌଣସି ଚୁକ୍ତି ସଂପାଦନରେ ବାଧା ସୃଷ୍ଟି କରିଥାନ୍ତା ଏବଂ ଶେଷକୁ ତାହା ଅସମ୍ଭବ ହୋଇ ପଡ଼ିଥାନ୍ତା । ଏହିସବୁ ସର୍ତ୍ତାବଳୀ ସତ୍ତ୍ୱେ ଦେଶ ବିଭାଗ ଏବଂ ପାକିସ୍ତାନ ପ୍ରତିଷ୍ଠା ସଂପର୍କିତ ମୁସଲିମ୍ ଲୀଗ୍ର ଦାବି ପ୍ରତି ବ୍ରିଟିଶ୍ ଶାସକ ଚକ୍ର

ପ୍ରଚ୍ଛନ୍ନ ସହାନୁଭୂତି ପ୍ରଦର୍ଶନ କରୁଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କ ସ୍ୱାର୍ଥ ସହିତ ମୁସଲିମ୍ ଲୀଗ୍ କର୍ମସୂଚୀ ଥିଲା ସଙ୍ଗତିଶୀଳ । ବ୍ରିଟିଶ୍‌ମାନଙ୍କ ପକ୍ଷରେ ଭାରତରେ ଔପନିବେଶିକ ଶାସନ ଚଳେଇଯିବା ଅସମ୍ଭବ ହେତୁ ସେମାନେ ଏଭଳି ଏକ ରାଜନୈତିକ "ସମାଧାନ" ଖୋଜୁଥିଲେ, ଯଦ୍ୱାରା ଦେଶଟି ଅର୍ଥନୈତିକ ଓ ସାମରିକ ଦିଗରୁ ସାଙ୍ଘାତିକ ଭାବେ ଦୁର୍ବଳ ହୋଇ ପଡ଼ିଥାନ୍ତା ଏବଂ ବ୍ରିଟିଶ୍ ସରକାର ଉପରେ ଭାରତର ନିର୍ଭରତା ଦୀର୍ଘ କାଳ ଅତୁଟ ରହିଥାନ୍ତା ।

ଇତିମଧ୍ୟରେ ଔପନିବେଶିକ ସରକାର ଭାରତର ଭାବୀ ମର୍ଯ୍ୟାଦା ବିଷୟଟି ଅନ୍ୟ ଭାବେ ସମାଧାନର ସମସ୍ତ ପଥ ବନ୍ଦ କରିଦେବା ସାଥେ ସାଥେ "କ୍ଷମତା ହସ୍ତାନ୍ତରକୁ" ଯେତେ ଦୂର ସମ୍ଭବ, ବିଳମ୍ବିତ କରିବାକୁ ଚେଷ୍ଟା କରିଥିଲା ।

# ସ୍ୱାଧୀନତା ଲାଭ ପଥରେ

## ଅନ୍ତର୍ବର୍ତ୍ତୀକାଳୀନ ସରକାର ଗଠନ ଓ ଉତ୍ତେଜନାକର ଆଭ୍ୟନ୍ତରୀଣ ପରିସ୍ଥିତି

କ୍ୟାବିନେଟ ମିଶନର ପ୍ରସ୍ତାବ ସଂପର୍କରେ କଂଗ୍ରେସ ଓ ଲୀଗ୍ ମଧ୍ୟରେ ସଂପୂର୍ଣ୍ଣ ଭିନ୍ନ ଧରଣର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ମୁସଲିମ୍ ଲୀଗ୍ ନେତାମାନେ କେବଳ ବ୍ରିଟିଶ୍ ପରିକଳ୍ପନାକୁ ଗ୍ରହଣ କରି ନଥିଲେ, ମେ ୧୬ ତାରିଖରେ ଓ୍ୱାଭେଲ ଘୋଷିତ ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ଯୋଗ ଦେବାକୁ ସେମାନେ ରାଜି ହୋଇଥିଲେ । ଅନ୍ତର୍ବର୍ତ୍ତୀକାଳୀନ ସରକାର ସାଂପ୍ରଦାୟିକ ନିର୍ବାଚନୀ ଅଞ୍ଚଳଗୁଡ଼ିକର ଭିତ୍ତିରେ (ମୁସଲିମ ନିର୍ବାଚନୀ ଅଞ୍ଚଳରେ କେବଳ ମୁସଲିମ୍ ଲୀଗ୍ ଏବଂ ହିନ୍ଦୁ ନିର୍ବାଚନୀ ଅଞ୍ଚଳରେ କେବଳ କଂଗ୍ରେସ ନିଜ ନିଜ ପ୍ରତିନିଧି ମନୋନୟନ କରିବେ) ଗଠିତ ହେବା ପାଇଁ ମୁସଲିମ୍ ଲୀଗ୍ ଏଥି ପ୍ରତି ଆକୃଷ୍ଟ ହୋଇଥିଲା ।

କିନ୍ତୁ ଧର୍ମ ନିରପେକ୍ଷ ସଂଗଠନ ହେତୁ କଂଗ୍ରେସ ଏହି ଶେଷ ସର୍ତ୍ତଟିକୁ ପ୍ରତ୍ୟାଖ୍ୟାନ କରିଥିଲା । ବ୍ରିଟିଶ୍ ପ୍ରସ୍ତାବଗୁଡ଼ିକୁ କିଛି ପରିମାଣରେ ସଂଶୋଧନ କରିବା ଉଦ୍ଦେଶ୍ୟରେ କଂଗ୍ରେସ ନେତାମାନେ ଆଉ ଥରେ କ୍ୟାବିନେଟ ମିଶନ ଓ ବଡ଼ଲାଟ୍‌ଙ୍କ ସହିତ ବୈଠକରେ ମିଳିତ ହୋଇଥିଲେ । କିନ୍ତୁ ସେମାନଙ୍କୁ ଯେତେବେଳେ କୁହାଗଲା ଯେ, ମିଶନର ପରିକଳ୍ପନା ପୂରାପୂରି ଗ୍ରହଣ କରିବାକୁ ହେବ ବା ବର୍ଜନ କରିବାକୁ ହେବ, ସେତେବେଳେ କଂଗ୍ରେସ ନେତାମାନେ ବାଧ୍ୟ ହୋଇ ସଂବିଧାନର ଖସଡ଼ା ତିଆରି ପାଇଁ ବ୍ରିଟିଶ୍ ପ୍ରସ୍ତାବଗୁଡ଼ିକୁ ଗ୍ରହଣ କରିଥିଲେ ।

ସଂବିଧାନ ସଭା ନିକଟରେ ଦାୟୀ ନରହି ବଡ଼ଲାଟ୍‌ଙ୍କ ନେତୃତ୍ୱରେ କାର୍ଯ୍ୟକାରୀ ପରିଷଦ ହିସାବରେ ଗଠିତ ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ଯୋଗଦାନ କରିବାକୁ କଂଗ୍ରେସ ସ୍ୱୀକାର କରି ନଥିଲା । କିନ୍ତୁ ଲୀଗ୍ ଏଥିରେ ଯୋଗ ଦେବାକୁ ଇଚ୍ଛା ପ୍ରକାଶ କରିଥିଲା । ବଡ଼ଲାଟ୍, ଅବଶ୍ୟ, ଲୀଗର ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କେବଳ ସରକାରୀ କର୍ମଚାରୀମାନଙ୍କୁ ନେଇ ଏହି କାର୍ଯ୍ୟକାରୀ ପରିଷଦ ଗଠନ କରିଥିଲେ ।

ଏଭଳି ଅବସ୍ଥାରେ ମୁସଲିମ୍ ଲୀଗ୍ କେବଳ ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ନୁହେଁ,

ସଂବିଧାନ ସଭା କାର୍ଯ୍ୟରେ ଅଂଶଗ୍ରହଣ କରିବାକୁ ଅସ୍ୱୀକାର କଲା । ଏହା ପରେ ଲୀଗ୍ ପାକିସ୍ତାନ ପ୍ରତିଷ୍ଠା ପାଇଁ ପ୍ରତ୍ୟକ୍ଷ ସଂଗ୍ରାମ କଥା ଘୋଷଣା କରିଥିଲା ।

ଜୁନ୍ ମାସରେ ସଂବିଧାନ ସଭାର ନିର୍ବାଚନ ଅନୁଷ୍ଠିତ ହେଲେ ଏହାର ଦୁଇଟି ବୃହତ୍ତମ ଅଂଶୀଦାର ଲୀଗ୍ ଓ ଶିଖମାନେ ଏହାକୁ ବର୍ଜନ କରିଥିଲେ । ଏହି ଘଟଣାଟି ବ୍ରିଟିଶ୍‌ମାନଙ୍କ ପକ୍ଷରେ ସହାୟକ ହୋଇଥିଲା । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଆସାମର ଅଧିକାଂଶ ସଦସ୍ୟ ଧର୍ମୀୟ ଭିତ୍ତିରେ ଦେଶ ବିଭାଗର ବିରୋଧିତା କରିବା ଫଳରେ ପୂର୍ବ ଓ ପଶ୍ଚିମରେ ମୁସଲିମ୍ ଅଞ୍ଚଳ ଗଠନ କରିବାରେ ଜଟିଳତା ଦେଖାଦେଲା ।

ଜୁନ୍ ମାସରେ ଜବାହାରଲାଲ ନେହରୁ ମୌଲାନା ଆବୁଲ କାଲାମ ଆଜାଦଙ୍କ ସ୍ଥାନରେ ସଭାପତି ନିର୍ବାଚିତ ହେଲେ । ବଡ଼ଲାଟ୍ ନିଜକୁ ସରକାରର ପ୍ରଧାନ ଓ ନେହରୁଙ୍କୁ ଉପପ୍ରଧାନମନ୍ତ୍ରୀ କରି କାର୍ଯ୍ୟକାରୀ ପରିଷଦ ରୂପେ ଅନ୍ତର୍ବର୍ତ୍ତୀକାଳୀନ ସରକାର ଗଠନ କରିବା ପାଇଁ ତାଙ୍କୁ ଆମନ୍ତ୍ରଣ ଜଣାଇଥିଲେ । ପ୍ରସ୍ତାବଟି ଗୃହୀତ ହୋଇଥିଲା ଏବଂ ଅଗଷ୍ଟ ୨୪ ତାରିଖ ଦିନ ନୂତନ କାର୍ଯ୍ୟକାରୀ ପରିଷଦର ସଦସ୍ୟମାନଙ୍କ ନାମ ଘୋଷଣା କରାଗଲା । ଏଥିରେ ଉପପ୍ରଧାନମନ୍ତ୍ରୀ ରୂପେ ନେହରୁଙ୍କ ସହ ପ୍ରଖ୍ୟାତ କଂଗ୍ରେସ ନେତା ବଲ୍ଲଭଭାଇ ପଟେଲ, ରାଜେନ୍ଦ୍ର ପ୍ରସାଦ ଏବଂ ଖ୍ରୀଷ୍ଟିଆନ୍, ଶିଖ ଓ ପାରସୀ ସଂପ୍ରଦାୟର ନେତାମାନେ ଥିଲେ ।

ଅନ୍ତର୍ବର୍ତ୍ତୀକାଳୀନ ସରକାରର ସୀମିତ କ୍ଷମତା ସତ୍ତ୍ୱେ ଏହାର ପ୍ରଥମ ପଦକ୍ଷେପ, ବିଶେଷତଃ, ବୈଦେଶିକ ନୀତି କ୍ଷେତ୍ରରେ ଏହି ସରକାର ସହିତ ଔପନିବେଶିକ ସରକାରର ପାର୍ଥକ୍ୟ ସ୍ପଷ୍ଟ ହୋଇ ଉଠିଥିଲା ।

ଏହି ସରକାର ଗଠନ ସଂପର୍କରେ ଲୀଗ୍ ଚରମ ଏବଂ ପ୍ରଚଣ୍ଡ ପ୍ରତିକ୍ରିୟା ଦେଖାଇଥିଲା । ଜିନ୍ନାଙ୍କ ମତରେ, ଏହା ହେଲା ମୁସଲମାନମାନଙ୍କ ବିରୁଦ୍ଧରେ ବ୍ରିଟିଶ୍‌ମାନଙ୍କ ବିଶ୍ୱାସଘାତକତା ଏବଂ ସେ ଅଗଷ୍ଟ ୧୬କୁ ପାକିସ୍ତାନ ପ୍ରତିଷ୍ଠା ପାଇଁ ପ୍ରତ୍ୟକ୍ଷ ସଂଗ୍ରାମ ଦିବସ ରୂପେ ଘୋଷଣା କରିଥିଲେ । ଫଳରେ କଲିକତାରେ ହିନ୍ଦୁ ମୁସଲମାନ ଦଙ୍ଗା ଲାଗିଗଲା ଏବଂ ଅବିଳମ୍ବେ ତାହା ବଙ୍ଗଳାର ଅନ୍ୟାନ୍ୟ ଅଂଶ, ପାର୍ଶ୍ୱବର୍ତ୍ତୀ ବିହାର ଓ ବମ୍ବେକୁ ବ୍ୟାପି ଯାଇଥିଲା ।

ଗାନ୍ଧୀ ଏହି ସାଂପ୍ରଦାୟିକ ଦଙ୍ଗାର ଘୋର ନିନ୍ଦା କରିଥିଲେ ଏବଂ ଦଙ୍ଗା ବିଧ୍ୱସ୍ତ ଅଞ୍ଚଳଗୁଡ଼ିକ ପରିଦର୍ଶନରେ ଯାଇଥିଲେ । ସେ କମ୍ୟୁନିଷ୍ଟ ଏବଂ ଅନ୍ୟାନ୍ୟ ଗଣତନ୍ତ୍ରବାଦୀମାନଙ୍କ ଉଦ୍ୟୋଗରେ ରକ୍ଷୀଦଳ ଗଠନ କରିବାକୁ ପ୍ରୋତ୍ସାହନ ଦେଇଥିଲେ ।

ସେପ୍ଟେମ୍ବର ମାସରେ ଲୀଗ୍ ଅନ୍ତର୍ବର୍ତ୍ତୀକାଳୀନ ସରକାରରେ ଯୋଗ ଦେଲା, କିନ୍ତୁ ସମ୍ବିଧାନ ସଭାରେ ଯୋଗ ଦେଲା ନାହିଁ । ଅବସ୍ଥାର ପରିବର୍ତ୍ତନ ହେତୁ ବ୍ରିଟିଶ୍ ସରକାର ଭାବୀ ସମ୍ବିଧାନର ଧାରା ଅନୁମୋଦନ କ୍ଷେତ୍ରରେ ଭୋଟଦାନର ଧାରା ବଦଳାଇବାକୁ ସୁପାରିଶ କରିଥିଲେ : ଯେଉଁସବୁ ପ୍ରଦେଶରେ ଅଧିକାଂଶ ପ୍ରତିନିଧି ଏଥିରେ ନଥିଲେ, ସେଠାରେ ଏହାର ପ୍ରୟୋଗ ସ୍ଥଗିତ ରହିଥିଲା । ଏହା ଦ୍ୱାରା ମୁସଲିମ୍ ଲୀଗ୍ ସମ୍ବିଧାନ ସଭାରେ ଅବିଭକ୍ତ ଭାରତ ସଂପର୍କରେ ନେହରୁଙ୍କ ଦୃଢ଼ ଦାବିଟି ଗୃହୀତ ହେବାରେ ବାଧା ଦେଲା ।

୧୯୪୬ ମସିହା ଅକ୍ଟୋବର ମାସରେ ଜାତୀୟ କଂଗ୍ରେସର ପ୍ରଥମ ଯୁଦ୍ଧୋତ୍ତର ଅଧିବେଶନ ଅନୁଷ୍ଠିତ ହେଲା ମିରଟରେ । ଏଥିରେ ଆଚାର୍ଯ୍ୟ କୃପାଳନୀ ସଭାପତି ନିର୍ବାଚିତ ହେଲେ । ଏହି

ଅଧିବେଶନରେ କଂଗ୍ରେସ ଦ୍ୱାରା ଅନୁସୃତ ରାଜନୈତିକ କାର୍ଯ୍ୟ ପ୍ରଣାଳୀ ଅନୁମୋଦିତ ହୋଇଥିଲା ଏବଂ ଭାରତର ସ୍ୱାଧୀନତା ଲାଭ ସପକ୍ଷରେ ମତ ପ୍ରକାଶ କରାଯାଇଥିଲା ।

୧୯୪୬ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ସନ୍ନିଧାନ ସଭାର ଏକ ଅଧିବେଶନରେ ନେହରୁ ଦେଶୀୟ ରାଜ୍ୟଗୁଡ଼ିକ ସର୍ତ୍ତ ସମ୍ବଳିତ ଭାବେ ଭାରତୀୟ ୟୁନିଅନ୍‌ର ଅନ୍ତର୍ଭୁକ୍ତ ହେଲେ ସେସବୁରେ ରାଜତନ୍ତ୍ର ଅଟୁଟ ରହିବା କଥା ଘୋଷଣା କରିଥିଲେ ।

## ୧୯୪୬ ଓ ୧୯୪୭ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଗଣ ଆନ୍ଦୋଳନ ବୃଦ୍ଧି

ଜାତୀୟ ଦଳସମୂହର ରାଜନୈତିକ କୌଶଳଗତ କ୍ରିୟାକଳାପ ହେତୁ ନହେଲେ ମଧ୍ୟ ଶ୍ରମଜୀବୀ ଜନଗଣଙ୍କ ବ୍ୟାପକ ଆନ୍ଦୋଳନ ଫଳରେ ଔପନିବେଶିକ ସରକାର ଶେଷକୁ ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ ହୋଇଥିଲା । ୧୯୪୬ ଓ ୧୯୪୭ ଖ୍ରୀଷ୍ଟାବ୍ଦରେ ଭାରତର କ୍ରମାଗତ ଅବନତ ଅର୍ଥନୈତିକ ପରିସ୍ଥିତି ସହର ଓ ଗ୍ରାମାଞ୍ଚଳର ଗଣ ଆନ୍ଦୋଳନ ପ୍ରତି ଉଦ୍ଦୀପନା ଯୋଗାଇଥିଲା ।

୧୯୪୬ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ ଓ ଶରତ କାଳରେ ଦକ୍ଷିଣ-ଭାରତୀୟ ରେଳପଥ ଓ ଉତ୍ତର-ପଶ୍ଚିମ ରେଳପଥ ସମେତ ବଙ୍ଗଳା, ମାଦ୍ରାଜ, ନାଗପୁର, କୋୟାମ୍ବାଟୋର ଓ ଅନ୍ୟାନ୍ୟ ଶିଳ୍ପାଞ୍ଚଳର କଳକାରଖାନାରେ କେତେକ ବଡ଼ ବଡ଼ ରେଲ ଧର୍ମଘଟ ସଂଘଟିତ ହୋଇଥିଲା । ଏହି ବର୍ଷ ସେପ୍‌ଟେମ୍ବର ଓ ନଭେମ୍ବର ମାସ ମଧ୍ୟରେ ତ୍ରିଭାଙ୍କୁର ଓ କୋଚିନରେ ନଡ଼ିଆ ପ୍ରସେସିଂ ଶିଳ୍ପରେ ସାଧାରଣ ଧର୍ମଘଟ ଲାଗିଥିଲା ବେଳେ ପୁନ୍ନାପ୍ରା ଓ ଭୋଲାରରେ ପୁଲିସ୍ ସହିତ ସଶସ୍ତ୍ର ସଂଘର୍ଷ ଘଟିଥିଲା । ଏହା ପରେ ଧର୍ମଘଟ ଅନ୍ୟାନ୍ୟ ଦେଶୀୟ ରାଜ୍ୟରେ ମଧ୍ୟ ବ୍ୟାପୀ ଯାଇଥିଲା ଏବଂ ମହୀଶୂର ଓ ହାୟଦରାବାଦରେ ଏହା ବ୍ୟାପକ ଆକାର ଧାରଣ କରିଥିଲା ।

୧୯୪୬ ଖ୍ରୀଷ୍ଟାବ୍ଦରେ ସଂଘଟିତ ୨ ହଜାରରୁ ବେଶି ଧର୍ମଘଟରେ ପ୍ରାୟ ୨୦ ଲକ୍ଷ ଶ୍ରମିକ ଯୋଗ ଦେଇଥିଲେ । ଏଥିରେ ବିନଷ୍ଟ କର୍ମ ଦିବସର ସଂଖ୍ୟା ଥିଲା ୧ କୋଟି ୩୦ ଲକ୍ଷ । ୧୯୪୭ ଖ୍ରୀଷ୍ଟାବ୍ଦର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ କାନ୍‌ପୁର ଓ କଲିକତାରେ ଧର୍ମଘଟ ଆନ୍ଦୋଳନ ଅବ୍ୟାହତ ରହିଥିଲା । ଧର୍ମଘଟରେ ସେତେବେଳେ ବହୁ ନାଟକୀୟ ଘଟଣା ଘଟିଥିଲା ; ଧର୍ମଘଟକାରୀମାନଙ୍କ ଉପରେ ପୁଲିସ ଗୁଳି ଚଳେଇଥିଲା, ଦୁଇଟି ସହରରେ ହରତାଳ ପାଳିତ ହୋଇଥିଲା ।

୧୯୪୬ ଖ୍ରୀଷ୍ଟାବ୍ଦରେ ଗାମ୍ୟ ଜନସାଧାରଣ ମଧ୍ୟ ସଂଗ୍ରାମରେ ଯୋଗ ଦେଇଥିଲେ । ସମସ୍ତ ପ୍ରଦେଶରେ ସ୍ୱତଃସ୍ଫୂର୍ତ୍ତ କୃଷକ ଆନ୍ଦୋଳନ ଆରମ୍ଭ ହୋଇଥିଲା । କେତେକ ଜିଲାରେ ଏହା ଜମିଦାର ଓ ପୁଲିସ୍ ସହିତ ସଶସ୍ତ୍ର ସଂଘର୍ଷର ରୂପ ଧାରଣ କରିଥିଲା । ଯୁକ୍ତ ପ୍ରଦେଶର ବାସ୍ତି ଓ ବଲିଆରେ ଆନ୍ଦୋଳନ ପ୍ରବଳ ହୋଇ ଉଠିଥିଲା : ସମ୍ଭାବ୍ୟ କୃଷି ସଂସ୍କାର ଭୟରେ ଜମିଦାରମାନେ ସେଠାରେ ରଇତ ଚାଷୀମାନଙ୍କୁ ଉତ୍‌ଖାତ କରିବାକୁ ଆରମ୍ଭ କରିଦେଲେ ଏହି ସଂଘର୍ଷ ଆରମ୍ଭ ହୋଇ ଯାଇଥିଲା । ୧୯୪୬ ମସିହାରେ ତାହା ଥିଲା ଏହି ସଂସ୍କାରର ପ୍ରସ୍ତୁତିପର୍ବ ।

ବଙ୍ଗଳାର ଗ୍ରାମାଞ୍ଚଳରେ ସେତେବେଳେ ତେଭାଗା ଆନ୍ଦୋଳନ ନିଆଁ ଭଳି ବ୍ୟାପୀ ଯାଇଥିଲା । ଉତ୍ପନ୍ନ ଫସଲର ଏକ ତୃତୀୟାଂଶକୁ ଖଜଣାର ପରିମାଣ କମେଇ ଆଣିବା ପାଇଁ ଭାଗଚାଷୀମାନେ (ବର୍ଗାଦାର ଓ ଅଧିଆର) ଆନ୍ଦୋଳନ କରିଥିଲେ । ତେଭାଗାର ଦାବି ପ୍ରଦେଶର ୧୧ଟି ଜିଲ୍ଲାରେ

ଖେଳି ଯାଇଥିଲା ଏବଂ ପିଟୁଣି ପୁଲିସ୍ ଓ ଜମିଦାରମାନଙ୍କ ଭଡ଼ାଟିଆ ଦଲାଲ ବା ଗୁଣ୍ଡାମାନଙ୍କର ବିରୁଦ୍ଧରେ ଏହା ରୀତିମତ ଗରିଲା ଯୁଦ୍ଧର ଆକାର ଧାରଣ କରିଥିଲା । ଅବିଳମ୍ବେ ଏହି ଆନ୍ଦୋଳନକାରୀଙ୍କ ସଂଖ୍ୟା ୫୦ ଲକ୍ଷରେ ପହଞ୍ଚିଥିଲା । ୧୯୪୬ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ବିଧାନ ସଭା ଭାଗଚାଷୀମାନଙ୍କ ସ୍ୱାର୍ଥାନୁକୂଳରେ ଆଇନ୍ ପାଶ୍ କଲା ପରେ ଯାଇ ଆନ୍ଦୋଳନଟି ଶେଷ ହୋଇଥିଲା ।

ପଞ୍ଜାବର ଲୟାଲପୁର ଜିଲାଟି ଥିଲା କୃଷକ ଆନ୍ଦୋଳନର ଏକ କେନ୍ଦ୍ର । ସେଠାରେ କୃଷକ ସଭାର ନେତୃତ୍ୱରେ ଲାଇତ ଚାଷୀମାନେ ଖଜଣା ହ୍ରାସ ଓ ବାକିଆ ଋଣ ଛାଡ଼ ପାଇଁ ଦାବି କରି ସଂଗ୍ରାମ ଚଳେଇଥିଲେ । ବମ୍ବେ ପ୍ରଦେଶରେ ଓୟାର୍ଲି ଉପଜାତି ମହାଜନମାନଙ୍କ ବିରୁଦ୍ଧରେ ଆଉରି ଏକ ଆନ୍ଦୋଳନ ଚଳେଇଥିଲେ ଏବଂ ଫଳରେ ପ୍ରାୟ ଏକ ହଜାର ଓୟାର୍ଲି ସ୍ଥାନୀୟ ମହାଜନ ବା ସାହୁକାରମାନଙ୍କର ଋଣରୁ ମୁକ୍ତି ଲାଭ କରିଥିଲେ ।

ଏହି ସମୟର କୃଷକମାନଙ୍କ ପକ୍ଷରୁ ଅବିଚଳ ପ୍ରତିରୋଧ ପ୍ରଦର୍ଶିତ ହୋଇଥିଲା ହାୟଦରାବାଦର ତେଲେଗୁ ଭାଷାଭାଷୀ ଅଞ୍ଚଳ ତେଲେଙ୍ଗାନାରେ । ସେଠାରେ ସାମନ୍ତବାଦୀ ନିର୍ଯ୍ୟାତନ ସହିତ ଯୁକ୍ତ ଥିଲା ଧର୍ମୀୟ ଓ ବର୍ଣ୍ଣଗତ ବୈଷମ୍ୟମୂଳକ ଆଚରଣ ।

ସୂର୍ଯ୍ୟପାତ ଗାଁର ସ୍ୱତଃସ୍ଫୂର୍ତ୍ତ କୃଷକ ଅଭ୍ୟୁତ୍ଥାନରୁ ତେଲେଙ୍ଗାନା ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହା ଅବିଳମ୍ବେ ଏକ ବିଶାଳ ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ଜନସାଧାରଣ ସେଠାରେ ହାୟଦରାବାଦର ନିଜାମଙ୍କ କର୍ମଚାରୀମାନଙ୍କୁ ବିତାଡ଼ନ କରି ଗଣ ଶାସନ ସଂସ୍ଥା ବା ପଞ୍ଚାୟତ ପ୍ରତିଷ୍ଠା କରିଥିଲେ । ଜନୈକ କୃଷକ ନେତାଙ୍କ ଶେଷକୃତ୍ୟ ଅନୁଷ୍ଠାନ ଉପଲକ୍ଷେ ଆୟୋଜିତ ଏକ କୃଷକ ବିକ୍ଷୋଭ ଉପରେ ଗୁଳି ଚାଳନା ମଧ୍ୟରୁ ଏହା ସୂତ୍ରପାତ ହୋଇଥିଲା । ବିକ୍ଷୋଭକାରୀମାନେ ନିଜର ରକ୍ଷୀଦଳ ମଧ୍ୟ ଗଢ଼ି ତୋଳିଥିଲେ ।

ହାୟଦରାବାଦର ଘଟଣାବଳୀ ଛଡ଼ା ୧୯୪୬ ଖ୍ରୀଷ୍ଟାବ୍ଦରେ କାଶ୍ମୀରରେ ସାମନ୍ତ ଶାସକମାନଙ୍କ ବିରୁଦ୍ଧରେ ବ୍ୟାପକ କୃଷକ ଅଭ୍ୟୁତ୍ଥାନ ଦେଖା ଦେଇଥିଲା । ଏହି ଦେଶୀୟ ରାଜ୍ୟରେ "ଜମ୍ମୁ ଓ କାଶ୍ମୀର ନେସନାଲ କନ୍‌ଫରେନ୍‌ସ" ଦ୍ୱାରା ଆୟୋଜିତ ବିକ୍ଷୋଭରେ ରାଜ ଶାସନ ଅବସାନ ପାଇଁ ଦାବି କରିଥିଲା । ଅବିଳମ୍ବେ କାଶ୍ମୀରର ଗ୍ରାମାଞ୍ଚଳରେ "କାଶ୍ମୀର ଛାଡ଼ !" ଧ୍ୱନିଟି ଜନପ୍ରିୟ ହୋଇ ଉଠିଥିଲା ଏବଂ ଖଜଣା ବନ୍ଦ ଆନ୍ଦୋଳନ କୃଷକମାନଙ୍କ ମଧ୍ୟରେ ଉତ୍ସାହ ସଞ୍ଚାର କରିଥିଲା ।

କିନ୍ତୁ ଶାସକମାନେ ଏହା ଉପରେ ନିଷ୍ଠୁର ଆକ୍ରମଣ ଚଳେଇଥିଲେ । "କନ୍‌ଫରେନ୍‌ସ" ଆତ୍ମଗୋପନ କରିବାକୁ ବାଧ୍ୟ ହୋଇଥିଲା ଏବଂ ଏହାର ନେତା ଶେଖ୍ ଆବ୍‌ଦୁଲ୍ଲା ଗିରଫ୍ ହୋଇଥିଲେ ।

କାଶ୍ମୀରର ରାଜା ଏବଂ ରାଜାଙ୍କ ଶାସନ ଚକ୍ରର ପ୍ରଧାନମାନେ ହିନ୍ଦୁ ଏବଂ ଏମାନଙ୍କ ବିରୋଧୀ ପକ୍ଷ ମୁସଲମାନ ହୋଇଥିବାରୁ କାଶ୍ମୀରରେ କ୍ରମବର୍ଦ୍ଧମାନ ଉତ୍ତେଜନାକର ପରିସ୍ଥିତି ଦେଖା ଦେଇଥିଲା । ଏଥିରେ ନିହିତ ଥିଲା ଭାରତର ଅବଶିଷ୍ଟ ଅଂଶ ଉପରେ ହିନ୍ଦୁ ମୁସଲମାନ ସଂପର୍କ କ୍ଷେତ୍ରରେ ବିରୂପ ପ୍ରତିକ୍ରିୟା ସୃଷ୍ଟିର ସମ୍ଭାବନା । ଏହି ଅବସ୍ଥାର ପରିପ୍ରେକ୍ଷିତରେ ନେହରୁ ନିଜେ ୧୯୪୬ ଖ୍ରୀଷ୍ଟାବ୍ଦର ଜୁନ୍ ମାସରେ କାଶ୍ମୀର ଯାଇଥିଲେ ଏବଂ ସେଠାକାର ରାଜାଙ୍କ ନିର୍ଦ୍ଦେଶରେ ପୁଲିସ୍ ଦ୍ୱାରା ସଙ୍ଗେ ସଙ୍ଗେ ଗିରଫ୍ ହେଲେ । ଏହାର ପ୍ରତିବାଦରେ ସମଗ୍ର କାଶ୍ମୀରରେ ହରତାଳ ପାଳିତ ହୋଇଥିଲା ।

ଶେଷକୁ ନେହରୁ ମୁକ୍ତ ହେଲେ ଏବଂ ଆଇନ୍ ଶୃଙ୍ଖଳାରେ କିଛି ପରିମାଣରେ ଉନ୍ନତି ଘଟାଇବା ପାଇଁ ସେଠାରେ ବଡ଼ଲାଟ୍‌ଙ୍କ ହସ୍ତକ୍ଷେପର ପ୍ରୟୋଜନ ଦେଖା ଦେଇଥିଲା ।

କାଶ୍ମୀର ଏବଂ ହାୟଦରାବାଦ ବ୍ୟତୀତ ରାଜପୁତାନା ଓ ମଧ୍ୟ ଭାରତର ବହୁ ଦେଶୀୟ ରାଜ୍ୟରେ ମଧ୍ୟ (ସୀମିତ ପରିସରରେ) ସାମନ୍ତବିରୋଧୀ ଆନ୍ଦୋଳନ ଗଢ଼ି ଉଠିଥିଲା ।

ଏହି ଘଟଣାବଳୀର ପରିପ୍ରେକ୍ଷିତରେ ସଂବିଧାନ ସଭାରେ ଦେଶୀୟ ରାଜ୍ୟଗୁଡ଼ିକର ପ୍ରତିନିଧିତ୍ୱର ସମସ୍ୟା ଆଲୋଚନା ପାଇଁ କଂଗ୍ରେସ ୧୯୪୭ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ଏକ କମିଟି ଗଠନ କରିଥିଲା । ଏହା ନିର୍ଦ୍ଧାରଣ କଲା, ପ୍ରତିନିଧିମାନଙ୍କ ମଧ୍ୟରୁ ଅର୍ଦ୍ଧେକ ନିର୍ବାଚିତ ଓ ଅର୍ଦ୍ଧେକ ରାଜାଙ୍କ ଦ୍ୱାରା ମନୋନିତ ହେବେ । ୧୯୪୭ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଅନୁଷ୍ଠିତ ପ୍ରଜା ପରିଷଦର ଗୋଆଲିଅର ସମ୍ମେଳନରେ ସାଧାରଣ ଗଣତାନ୍ତ୍ରିକ ଆନ୍ଦୋଳନରେ ଦେଶୀୟ ରାଜ୍ୟଗୁଡ଼ିକର ଜନସାଧାରଣଙ୍କର ସକ୍ରିୟ ଅଂଶଗ୍ରହଣ କରିବାର ବାସ୍ତବତା ସ୍ପଷ୍ଟ ହୋଇ ଉଠିଥିଲା ।

## ମାଉଣ୍ଟବ୍ୟାଟେନ ପରିକଳ୍ପନା ଓ ଭାରତ ବିଭାଗ — ଦୁଇଟି ଦେଶ ଗଠନ

ଇତିମଧ୍ୟରେ ଦେଶରେ ଏକ ବୈପ୍ଳବିକ ପରିସ୍ଥିତି ପରିପକ୍ୱ ହୋଇ ଉଠିଥିଲା । ଭାରତୀୟ ବୁର୍ଜୁଆ ଓ ସାମନ୍ତ ଭୂସ୍ୱାମୀମାନଙ୍କ ପ୍ରତିନିଧିମାନଙ୍କୁ କ୍ଷମତା ହସ୍ତାନ୍ତର କରିବାରେ ଆଉ ବେଶି ବିଳମ୍ବ କଲେ, ଜନସାଧାରଣଙ୍କ ସଶସ୍ତ୍ର ସଂଗ୍ରାମ ଫଳରେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତିଷ୍ଠିତ ରାଜନୈତିକ ବ୍ୟବସ୍ଥା ଯେ ସଂପୂର୍ଣ୍ଣ ଭାଙ୍ଗି ପଡ଼ିବ, ଏଥିରେ ସନ୍ଦେହର ଅବକାଶ ନଥିଲା ।

୧୯୪୭ ଖ୍ରୀଷ୍ଟାବ୍ଦ ଫେବୃଆରୀ ୨୦ ତାରିଖର ଭାରତ ସଂପର୍କିତ ନୀତି ସଂପର୍କରେ ଅଟଲୀ ତାଙ୍କ ଲେବର ସରକାରର ତୃତୀୟ ଘୋଷଣାଟି ପ୍ରକାଶ କରିଥିଲେ । ଏଥିରେ କୁହାଯାଇଥିଲା, ବ୍ରିଟିଶ୍ ୧୯୪୮ ମସିହା ଜୁଲାଇ ମାସ ପୂର୍ବରୁ ଭାରତ ତ୍ୟାଗ କରିବେ ଏବଂ ଇତିମଧ୍ୟରେ ଏକ କେନ୍ଦ୍ରୀୟ ସରକାର ଗଠିତ ନହେଲେ, ବିଭିନ୍ନ ପ୍ରାଦେଶିକ ସରକାରକୁ କ୍ଷମତା ହସ୍ତାନ୍ତର କରାଯିବ । ପରିକଳ୍ପନାଟିକୁ ବାସ୍ତବାୟିତ କରିବା ପାଇଁ ମାଉଣ୍ଟବ୍ୟାଟେନ ନୂତନ ବଡ଼ଲାଟ୍ ନିର୍ବାଚିତ ହେଲେ ।

ଘୋଷଣାଟି କଂଗ୍ରେସ ଓ ମୁସଲିମ୍ ଲୀଗ୍ ଉଭୟର ଅନୁମୋଦନ ଲାଭ କରିଥିଲା । ଏହି ଦୁଇ ପାର୍ଟି ମଧ୍ୟରେ ସଂପର୍କକୁ ଜଟିଳତର କରିବା ପାଇଁ ବ୍ରିଟିଶ୍‌ମାନେ ହିନ୍ଦୁ ମୁସଲମାନ ଦଙ୍ଗା ପାଇଁ ପ୍ରରୋଚନା ଯୋଗାଇଥିଲେ । ଏହି ଦଙ୍ଗା ପଞ୍ଜାବରେ ବିଶେଷ ଭାବେ ମାରାତ୍ମକ ଆକାର ଧାରଣ କରିଥିଲା । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ସଂଯୁକ୍ତ ଭାରତର ସମର୍ଥକ ତତ୍କାଳୀନ ପଞ୍ଜାବ ସରକାର ବିରୁଦ୍ଧରେ ମୁସଲିମ୍ ଲୀଗ୍ ଉଦ୍ୟୋଗରେ ବ୍ୟାପକ ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା ।

ଭାରତ ତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ ଏ ଦେଶରେ ନିଜର ଅଧିକାରକୁ ବଜାଏ ରଖିବାର ଶେଷ ଚେଷ୍ଟା କରିବାକୁ ଯାଇ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଦେଶ ବିଭାଗ ଉପରେ ସେମାନଙ୍କ ଶେଷ ଆଶା ନ୍ୟସ୍ତ କରିଥିଲେ । ଏପ୍ରିଲ ମାସରେ ମାଉଣ୍ଟବ୍ୟାଟେନ ଭାରତରେ ପହଞ୍ଚିଥିଲେ ଏବଂ ଜୁଲାଇ ୩ ତାରିଖରେ ମାଉଣ୍ଟବ୍ୟାଟେନଙ୍କ ପରିକଳ୍ପନା ପ୍ରକାଶ ପାଇଥିଲା । ଭାରତକୁ ଦୁଇଟି ଦେଶରେ ବିଭକ୍ତ କରିବାର ଏହି ପରିକଳ୍ପନାଟିର ସାରମର୍ମ ହେଉଛି ନିମ୍ନ ମୁତାବକ :

(୧) ଏହି ଉପମହାଦେଶରେ ଦୁଇଟି ଡୋମିନିଅନ – ଭାରତୀୟ ପ୍ରଜାତନ୍ତ୍ର ଓ ପାକିସ୍ତାନ ପ୍ରତିଷ୍ଠିତ ହେବ ;

(୨) ପଞ୍ଜାବ ଓ ବଙ୍ଗଳାକୁ ଧର୍ମୀୟ ଭିତ୍ତିରେ ବିଭାଗ କରିବାର ବିଷୟଟି ବ୍ୟାପକ ସଂଖ୍ୟକ ହିନ୍ଦୁ ଓ ମୁସଲମାନ ବାସିନ୍ଦାଙ୍କ ଦୃଷ୍ଟିରୁ ସଂଶ୍ଲିଷ୍ଟ ପ୍ରଦେଶମାନଙ୍କ ସଦସ୍ୟମାନେ ଅଲଗା ଭୋଟ ମାଧ୍ୟମରେ ନିର୍ଦ୍ଧାରଣ କରିବେ ;

(୩) ମୁସଲମାନ ସଂଖ୍ୟାଗରିଷ୍ଠ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଆସାମର ଶ୍ରୀହଟ ଜିଲ୍ଲାରେ ଗଣଭୋଟ ଅନୁଷ୍ଠିତ ହେବ ;

(୪) ପ୍ରାଦେଶିକ ବିଧାନ ସଭା ଭୋଟ ମାଧ୍ୟମରେ ସିନ୍ଧୁ ପ୍ରଦେଶର ଭବିଷ୍ୟତ ନିର୍ଦ୍ଧାରଣ କରିବ ;

(୫) ଦୁଇଟି ଡୋମିନିଅନ ମଧ୍ୟରୁ ଯେକୌଣସି ଗୋଟିକରେ ଦେଶୀୟ ରାଜ୍ୟଗୁଡ଼ିକର ଯୋଗଦାନ ବିଷୟଟି ସଂଶ୍ଳିଷ୍ଟ ଦେଶୀୟ ରାଜ୍ୟର ଅକ୍ତିଆର ଭୁକ୍ତ ରହିବ ;

(୬) ସମ୍ବିଧାନ ସଭା ଦୁଇଟି ଡୋମିନିଅନର ଗୋଟିଏ କରି ସଂସଦକୁ ନେଇ ଗଠିତ ହେବ । ଏମାନେ ଦୁଇ ଦେଶର ଭବିଷ୍ୟତ ମର୍ଯ୍ୟାଦାର ପ୍ରଶ୍ନ ଉପରେ ଆଲୋଚନା କରିବେ ।

ମୁସଲିମ୍ ଲୀଗ୍‌ର ସମର୍ଥନ ପ୍ରାପ୍ତ ବ୍ରିଟିଶ୍ ସରକାର ଯେକୌଣସି ମୂଲ୍ୟରେ ଦେଶବିଭାଗ କରିବାକୁ ଯେ ବଦ୍ଧପରିକର, ଏହା ବୁଝିବା ପରେ କଂଗ୍ରେସ ଅତିରିକ୍ତ ରକ୍ତପାତ ଏଡ଼ାଇବା ପାଇଁ ମାଉଣ୍ଟବ୍ୟାଟେନଙ୍କ ପରିକଳ୍ପନାକୁ ଗ୍ରହଣ କରିନେଲା ।

୧୯୪୭ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ନିଖିଳ ଭାରତ କଂଗ୍ରେସ କମିଟିରେ ୧୫୭ ବନାମ ୬୧ ଭୋଟରେ ବ୍ରିଟିଶ୍ ପ୍ରସ୍ତାବଟି ଗୃହୀତ ହେଲା ।

ଏଥି ସହିତ ମୁସଲିମ୍ ଲୀଗ୍ ବଙ୍ଗଳା ଓ ପଞ୍ଜାବକୁ ଅଖଣ୍ଡ ଅବସ୍ଥାରେ ପାକିସ୍ତାନ ଭୁକ୍ତ କରିବା ପାଇଁ ଦାବି କଲା ।

ପଞ୍ଜାବ ଓ ବଙ୍ଗଳାରେ ଭୋଟ ଗ୍ରହଣ ବେଳେ "ହିନ୍ଦୁ" ଏଲାକାର ସଦସ୍ୟମାନେ କଂଗ୍ରେସର ସିଦ୍ଧାନ୍ତ ଅନୁଯାୟୀ ଏହି ଦୁଇଟି ପ୍ରଦେଶ ବିଭାଗର ସପକ୍ଷରେ ଏବଂ "ମୁସଲମାନ" ଜିଲ୍ଲାଗୁଡ଼ିକର ସଦସ୍ୟମାନେ ବଙ୍ଗଳା ଓ ପଞ୍ଜାବ ବିଭାଗ ବିରୁଦ୍ଧରେ ଭୋଟ ଦେଲେ ।

ସିନ୍ଧୁ ପ୍ରଦେଶ ପରିଷଦର ଭୋଟ ଏବଂ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଶ୍ରୀହଟ ଜିଲ୍ଲାର ଗଣ ଭୋଟର ଫଳ ଏହିସବୁ ଏଲାକାର ପାକିସ୍ତାନ ମଧ୍ୟରେ ଅନ୍ତର୍ଭୁକ୍ତିର ସପକ୍ଷରେ ଯାଇଥିଲା । ଏଥି ସହିତ ଲାଲକୁର୍ତ୍ତା ନେତା ଆବ୍‌ଦୁଲ ଗଫ୍‌ଫର ଖାଁଙ୍କ ଦ୍ୱାରା ଉତ୍‌ଥାପିତ ସ୍ୱାଧୀନ ପୁଶ୍‌ତୁନିସ୍ତାନ ଗଠନ ପାଇଁ ଗଣ ଭୋଟ ଅନୁଷ୍ଠାନର ଦାବିଟିକୁ ମାଉଣ୍ଟବ୍ୟାଟେନ ପ୍ରତ୍ୟାଖ୍ୟାନ କରିଥିଲେ । ମୋଟ ଜନସଂଖ୍ୟାର ଶତକଡ଼ା ୧୫ ଭାଗ ଭୋଟାଧିକାରୀମାନଙ୍କର ବ୍ୟାପକ ସଂଖ୍ୟାଗରିଷ୍ଠ ଅଂଶ ଏହି ଗଣ ଭୋଟର ସପକ୍ଷରେ ଥିଲେ ।

୧୯୪୭ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ବ୍ରିଟିଶ୍ ପାର୍ଲିଆମେଣ୍ଟ "ମାଉଣ୍ଟବ୍ୟାଟେନ ପରିକଳ୍ପନାକୁ" ଭାରତର ସ୍ୱାଧୀନତାର ଆଇନ୍ ହିସାବରେ ଅନୁମୋଦନ ପ୍ରଦାନ କରିଥିଲେ ଏବଂ ପରିକଳ୍ପନାଟି ସେହି ବର୍ଷ ଅଗଷ୍ଟ ୧୫ ତାରିଖରେ ଆଇନ୍‌ରେ ପରିଣତ ହୋଇଥିଲା ।

ସେଇ ଦିନ ଦିଲ୍ଲୀର ଐତିହାସିକ ଲାଲ କିଲ୍ଲାରେ ଜବାହାରଲାଲ ନେହରୁ ପ୍ରଥମ ଥର ପାଇଁ ଭାରତର ଜାତୀୟ ପତାକା ଉତ୍ତୋଳନ କଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କର ବହୁ ପୁରୁଷ ଧରି ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଅବଶେଷରେ ବିଜୟ ମଣ୍ଡିତ ହେଲା । ଜାତୀୟ ବିପ୍ଳବର ଏହି ସାଫଲ୍ୟ ଠାରୁ ଭାରତବର୍ଷର ଇତିହାସରେ ନୂଆ ଏକ ଯୁଗର – ସ୍ୱାଧୀନ ବିକାଶ ପର୍ଯ୍ୟାୟର ସୂତ୍ରପାତ ହେଲା ।

# ଭାରତୀୟ ଡୋମିନିଅନ

## ସ୍ୱାଧୀନତା ପଥରେ ପ୍ରଥମ ପଦକ୍ଷେପ

ଭାରତକୁ ଏକ ଡୋମିନିଅନ ଘୋଷଣା କରିବା ଫଳରେ ଦେଶର ରାଷ୍ଟ୍ରୀୟ-ଆଇନଗତ ମର୍ଯ୍ୟାଦା କ୍ଷେତ୍ରରେ ମୌଳିକ ପରିବର୍ତ୍ତନ ଘଟିଥିଲା । ଫେଡେରାଲ ବା ସଂଘୀୟ ଭିତ୍ତିରେ ମିଳିତ ପୂର୍ବତନ ବ୍ରିଟିଶ୍ ଶାସିତ ଭାରତର ପ୍ରଦେଶ ଓ ଦେଶୀୟ ରାଜ୍ୟଗୁଡ଼ିକୁ ନେଇ ଗଠିତ ବର୍ତ୍ତମାନ ଭାରତ ସଂଘର ସମଗ୍ର ଭୂଖଣ୍ଡରୁ ବ୍ରିଟିଶ୍ ପାର୍ଲିଆମେଣ୍ଟ କର୍ତ୍ତୃକ ପ୍ରବର୍ତ୍ତିତ ଆଇନ୍‌ସମୂହର ଅପସାରଣ ଆରମ୍ଭ ହୋଇଗଲା । କଂଗ୍ରେସର ଅନ୍ୟତମ ନେତା ଓ ଗାନ୍ଧୀଙ୍କ ସହକର୍ମୀ, ନୂତନ ସଭାପତି ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ସଂବିଧାନ ସଭାର କାର୍ଯ୍ୟ ଆଗେଇ ଚାଲିଥିଲା ।

ସ୍ୱାଧୀନ ଭାରତର ପ୍ରଥମ ସରକାରର ନେତୃତ୍ୱ ଗ୍ରହଣ କରିଥିଲେ ଜବାହାରଲାଲ ନେହରୁ ଏବଂ ସେ ଏକାସାଙ୍ଗରେ ବୈଦେଶିକ ଓ ପ୍ରତିରକ୍ଷା ମନ୍ତ୍ରଣାଳୟର ଦାୟିତ୍ୱ ଗ୍ରହଣ କରିଥିଲେ । ତଦାନିନ୍ତନ ମନ୍ତ୍ରୀ ପରିଷଦର ଅଧିକାଂଶ ସଦସ୍ୟ ଥିଲେ କଂଗ୍ରେସ ଦଳର । ତା'ଛଡ଼ା ଏଥିରେ ତଫ୍‌ସିଲ ଜାତି ସଂଘର ନେତା ଆମ୍ବେଦକର ଆଇନ୍ ଏବଂ ହିନ୍ଦୁ ମହାସଭାର ନେତା ଶ୍ୟାମା ପ୍ରସାଦ ମୁଖାର୍ଜୀ ଶିଳ୍ପ ଓ ଯୋଗାଣ ବିଭାଗର ମନ୍ତ୍ରୀ ରୂପେ ଯୋଗ ଦେଇଥିଲେ ।

"ଜାତୀୟ ସଂହତିମୂଳକ" ଏହି ସରକାର ମଧ୍ୟରେ ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟର ପ୍ରାରମ୍ଭିକ ବର୍ଷମାନଙ୍କରେ ଦେଶରେ ଗଢ଼ି ଉଠିଥିବା ସାମାଜିକ-ଅର୍ଥନୈତିକ ଶକ୍ତିସମୂହର ଭାରସାମ୍ୟ ପ୍ରତିଫଳିତ ହୋଇଥିଲା । ନେହରୁ ପ୍ରଧାନମନ୍ତ୍ରୀ ଏବଂ ତାଙ୍କ ପରି ସେତେବେଳେ କଂଗ୍ରେସର ବାମପନ୍ଥୀମାନଙ୍କର ସମର୍ଥନ ଅକ୍ଷୁଣ୍ଣ ରହିଥିଲେ ମଧ୍ୟ ଏହି ସରକାର ପ୍ରଧାନତଃ ମଧ୍ୟପନ୍ଥୀ ରକ୍ଷଣଶୀଳ ଶକ୍ତିଗୁଡ଼ିକ ଦ୍ୱାରା ପ୍ରଭାବିତ ଥିଲା । ତତ୍କାଳୀନ ମନ୍ତ୍ରୀମଣ୍ଡଳର ଘରୋଇ ବିଭାଗର ମନ୍ତ୍ରୀ ଓ ଉପପ୍ରଧାନମନ୍ତ୍ରୀ ବଲ୍ଲଭଭାଇ ପଟେଲ ସେ ପର୍ଯ୍ୟନ୍ତ କଂଗ୍ରେସର ଦକ୍ଷିଣପନ୍ଥୀମାନଙ୍କର ସ୍ୱୀକୃତ ନେତା ହିସାବରେ ପ୍ରତିଷ୍ଠିତ ଥିଲେ । ଅର୍ଥନୀତିର ମୂଳ ବିଭାଗଗୁଡ଼ିକର ଦାୟିତ୍ୱ ଲାଭ କରିଥିବା ମନ୍ତ୍ରୀଦ୍ୱୟ — ଚିନ୍ତାମନ ଦେଶମୁଖ (ଅର୍ଥ) ଓ ଟି.ଟି. କୃଷ୍ଣମାଚ୍ଚରୀ (ବାଣିଜ୍ୟ) ଶକ୍ତିଶାଳୀ ଭାରତୀୟ ପୁଞ୍ଜିପତିମାନଙ୍କ ସହିତ ସଂପୃକ୍ତ ଥିଲେ ।

୧୯୪୬ ଖ୍ରୀଷ୍ଟାବ୍ଦରେ ନିର୍ବାଚିତ ପ୍ରାଦେଶିକ ବିଧାନ ସଭା ଏବଂ ତା'ର ଅଧୀନସ୍ଥ ପ୍ରାଦେଶିକ ସରକାରଗୁଡ଼ିକରେ ମଧ୍ୟ ଦେଶର କ୍ଷମତାରେ ଥିବା ବୁର୍ଜୁଆ ଓ ଜମିଦାରମାନଙ୍କ ସ୍ୱାର୍ଥ ପ୍ରତିଫଳିତ ହୋଇଥିଲା ।

ସରକାର ପକ୍ଷରେ ପ୍ରଶାସନ ଯନ୍ତ୍ର ଓ ସୈନ୍ୟବାହିନୀର ଭାରତୀୟକରଣ ଖୁବ୍ ଜରୁରୀ ହୋଇ ପଡ଼ିଥିଲା । ସ୍ୱାଧୀନ ଭାରତର ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି ଉପରେ ବ୍ରିଟିଶ୍ ପ୍ରଭାବକୁ ସୀମିତ କରିବା ପାଇଁ ଏହା ଥିଲା ଅପରିହାର୍ଯ୍ୟ । ୧୯୪୮, ଫେବୃଆରୀ ମାସ ମଧ୍ୟରେ ବ୍ରିଟିଶ୍ ସୈନ୍ୟମାନଙ୍କର ଶେଷ ଦଳଟି ଭାରତ ତ୍ୟାଗ କରିଥିଲେ । "ନେଶନାଲ ହେରାଲଡ" ମତରେ ୧୯୪୯ ଖ୍ରୀଷ୍ଟାବ୍ଦରେ କେନ୍ଦ୍ରୀୟ ସରକାରର ବିଭିନ୍ନ ବିଭାଗରେ ପ୍ରାୟ ଏକ ହଜାର ବ୍ରିଟିଶ୍ ଅଫିସର କର୍ମରତ ଥିଲେ ।

ସମ୍ଭାବ୍ୟ ଯେକୌଣସି ପନ୍ଥାରେ ଭାରତରେ ନିଜର ଅବସ୍ଥାନକୁ ବଜାଏ ରଖିବାକୁ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ଶାସନ ଯନ୍ତ୍ର ମଧ୍ୟରେ ସେମାନଙ୍କ ଘନିଷ୍ଠତମ ଦଲାଲମାନଙ୍କର ସାହାଯ୍ୟ ଲାଭ କରିବାକୁ ଯେ କେବଳ ଚେଷ୍ଟା କରିଥିଲେ, ତା ନୁହେଁ, ଦେଶୀୟ ରାଜ୍ୟଗୁଡ଼ିକରେ ମଧ୍ୟ ସେମାନେ ପ୍ରବଳ ଉଦ୍ୟମ କରିଥିଲେ ଏହିସବୁ ରାଜ୍ୟରେ ସ୍ୱାଧୀନତା ପରେ ଶାସନଭାର ସ୍ଥାନୀୟ ଶାସକମାନଙ୍କ ଉପରେ ନ୍ୟସ୍ତ ରଖିବାକୁ । ଏହିଭଳି ଏକ ପରିପ୍ରେକ୍ଷିତରେ ଦେଶୀୟ ରାଜ୍ୟଗୁଡ଼ିକର ଭାରତରେ ଦ୍ରୁତ ମିଶ୍ରଣ ଜାତୀୟ ସରକାର ପକ୍ଷରେ ପ୍ରଧାନ କର୍ତ୍ତବ୍ୟ ହୋଇ ପଡ଼ିଥିଲା ।

## ଦେଶୀୟ ରାଜ୍ୟସମୂହର ଭାରତରେ ମିଶ୍ରଣ । ପ୍ରଥମ ପ୍ରଶାସନିକ-ଆଞ୍ଚଳିକ ପୁନର୍ଗଠନ

୧୯୪୭ ଖ୍ରୀଷ୍ଟାବ୍ଦରେ ଘରୋଇ ମନ୍ତ୍ରୀ ବଲ୍ଲଭଭାଇ ପଟେଲଙ୍କ ଅଧୀନରେ ଦେଶୀୟ ରାଜ୍ୟଗୁଡ଼ିକ ପାଇଁ ଏକ ବିଶେଷ ମନ୍ତ୍ରଣାଳୟ ପ୍ରତିଷ୍ଠିତ ହୋଇଥିଲା । ରାଜନ୍ୟବର୍ଗଙ୍କ ସହିତ ଦୀର୍ଘ ଆଲୋଚନା ପରେ ଏହିସବୁ ରାଜ୍ୟର ଭାରତ ସହିତ ମିଶ୍ରଣ ପାଇଁ ଏକ ସୂତ୍ର ପ୍ରସ୍ତୁତ ହୋଇଥିଲା । ଏହି ସୂତ୍ରାନୁଯାୟୀ ସଂଶ୍ଳିଷ୍ଟ ପ୍ରତ୍ୟେକ ରାଜ୍ୟର ରାଜା ଏକ ମିଶ୍ରଣ ଚୁକ୍ତିରେ ସହି କରିଥିଲେ ଏବଂ ସେ ଚୁକ୍ତି ପତ୍ରଟି ସରକାରୀ ମହାଫିଜ୍‌ଖାନାରେ ଜମା ରହିଥିଲା ।

ଏହି ଚୁକ୍ତି ଅନୁଯାୟୀ ନିଜ ନିଜ ରାଜ୍ୟରେ ରାଜନ୍ୟବର୍ଗଙ୍କ ସ୍ଥାବର ଓ ଅସ୍ଥାବର ସଂପତ୍ତି ଉପରେ ମାଲିକାନା ଅକ୍ଷୁଣ୍ଣ ରହିଲା । ସଂପୃକ୍ତ ରାଜ୍ୟମାନଙ୍କର ଭାରତ ସହିତ ମିଶ୍ରଣ ସଂକ୍ରାନ୍ତ ଚୁକ୍ତି କାର୍ଯ୍ୟକର ନହେଲା ପର୍ଯ୍ୟନ୍ତ ରାଜନ୍ୟବର୍ଗଙ୍କୁ ସେମାନଙ୍କର ସମସ୍ତ କୃତ କର୍ମର ଦାୟିତ୍ୱରୁ ମୁକ୍ତି ଦିଆଗଲା । ରାଜାମାନେ ସରକାରୀ ଭତ୍ତା (ବାର୍ଷିକ ମୋଟ ୫.୬. କୋଟି ଟଙ୍କା) ପାଇଲେ । ଦେଶୀୟ ରାଜ୍ୟର ସରକାରୀ କର୍ମଚାରୀମାନେ ମଧ୍ୟ କେତେକ ନିଶ୍ଚୟତା (ଚାକିରିର ନିଶ୍ଚୟତା, ଭତ୍ତା ଆଦି) ଲାଭ କରିଥିଲେ ।

ଏଥି ସାଥେ ସାଥେ ରାଜନ୍ୟବର୍ଗ ନିଜସ୍ୱ ରାଜନୈତିକ କ୍ଷମତା ହରେଇଲେ । ସେମାନଙ୍କ ସୈନ୍ୟଦଳକୁ ଭାଙ୍ଗି ଦିଆଗଲା ବା ଭାରତର ନିୟମିତ ସୈନ୍ୟବାହିନୀର ଅନ୍ତର୍ଭୁକ୍ତ କରାଗଲା । ଇତିପୂର୍ବରୁ ଦେଶୀୟ ରାଜାମାନଙ୍କ ଅଧୀନସ୍ଥ ଏଲାକାଗୁଡ଼ିକ ଏଥର ଭାରତର ଅଂଶ ହିସାବରେ ଏହାର ଅଧିକାରଭୁକ୍ତ ହେଲା ।

ଭାରତର ସ୍ୱାଧୀନତା ଆଇନ୍ (୧୯୪୭) ଅନୁଯାୟୀ ଦେଶୀୟ ରାଜ୍ୟଗୁଡ଼ିକର ଭାରତ ସହିତ

ମିଶ୍ରଣ ପ୍ରଶ୍ନଟି (ବା ପାକିସ୍ତାନ ସହିତ ଅନ୍ତର୍ଭୁକ୍ତି) ରାଜନ୍ୟବର୍ଗଙ୍କ ଇଚ୍ଛାଧୀନ ହୋଇଥିବାରୁ ସେମାନେ ଶୀଘ୍ର ଉଦ୍ଦେଶ୍ୟ ଜ୍ଞାପନ କରିବାକୁ ତତ୍ପର ହୋଇ ନଥିଲେ । କାରଣ, ସେମାନେ ପୂର୍ବ ଭଳି ବ୍ରିଟିଶ୍ ସମ୍ରାଟଙ୍କ ସହିତ ସିଧାସଳଖ ସଂପର୍କ ରଖିବାକୁ ଇଚ୍ଛୁକ ଥିଲେ । ବ୍ରିଟିଶ୍ ସରକାର, ବିଶେଷତଃ, ମାଉଣ୍ଟବ୍ୟାଟେନ (୧୯୪୮ ଖ୍ରୀଷ୍ଟାବ୍ଦ ଜୁନ୍ ପର୍ଯ୍ୟନ୍ତ ଭାରତ ଡୋମିନିଅନର ଗଭର୍ଣ୍ଣର ଜେନେରାଲ) ରାଜନ୍ୟବର୍ଗଙ୍କର ଏହି ବିରୋଧିତା ସମର୍ଥନ କରିଥିଲେ । କିନ୍ତୁ ଏ କ୍ଷେତ୍ରରେ ଭାରତ ସରକାରଙ୍କ ଦ୍ୱାରା ଅନୁସୃତ ସୁସ୍ପଷ୍ଟ ନୀତି (ଭାରତ ସହିତ ମିଶ୍ରଣ ପାଇଁ ରାଜନ୍ୟବର୍ଗଙ୍କୁ ଅତୀବ ଅନୁକୂଳ ସୁଯୋଗ ଦେଇଥିଲେ) ଏବଂ ଦେଶୀୟ ରାଜ୍ୟଗୁଡ଼ିକରେ (ବିଶେଷତଃ, ହାୟଦରାବାଦ, କାଶ୍ମୀର, ତ୍ରିଭାଙ୍କୁର, ଭୂପାଳ ଓ ଓଡ଼ିଶା) କ୍ରମବର୍ଦ୍ଧମାନ ସାମନ୍ତବିରୋଧୀ ଆନ୍ଦୋଳନର ଜୁଆର—ଏହି ଉଭୟ କାରଣରୁ ରାଜନ୍ୟବର୍ଗ ଦ୍ରୁତ ଭାରତ ସହିତ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିଥିଲେ ।

୧୯୪୭-୧୯୪୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ୬୦୧ ଦେଶୀୟ ରାଜ୍ୟ ମଧ୍ୟରୁ ୫୫୫ଟି ଭାରତ ସହିତ ମିଶିଯାଇଥିଲେ ଏବଂ ଅନ୍ୟମାନେ ପାକିସ୍ତାନରେ ଯୋଗ ଦେଇଥିଲେ । ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକର ଭାରତ ସହିତ ମିଶ୍ରଣ ତିନି ପ୍ରକାରରେ ସଂପନ୍ନ ହୋଇଥିଲା : ୨୧୬ଟି କ୍ଷୁଦ୍ର ଦେଶୀୟ ରାଜ୍ୟ ପାର୍ଶ୍ୱବର୍ତ୍ତୀ ପ୍ରଦେଶର (ବମ୍ବେ, ମଧ୍ୟ ପ୍ରଦେଶ, ଓଡ଼ିଶା ପ୍ରଭୃତି) ପୃଥକ୍ ଜିଲ୍ଲା ହିସାବରେ, ୬୦ଟି ଦେଶୀୟ ରାଜ୍ୟ ଏକକ ଭାବେ (ଭୂପାଳ, ମଣିପୁର, ତ୍ରିପୁରା), ଅଥବା ରାଜ୍ୟ ସମଷ୍ଟି ଆକାରରେ (ହିମାଚଳ ପ୍ରଦେଶ, କଚ୍ଛ, ବିନ୍ଧ୍ୟ ପ୍ରଦେଶ) କେନ୍ଦ୍ରଶାସିତ ଏଲକା ହିସାବରେ ଏବଂ ୨୬୯ଟି ଫେଡେରାଲ ୟୁନିଟ ଓ ରାଜ୍ୟ 'ୟୁନିଅନ୍ ହିସାବରେ (ପେପ୍‌ସୁ—ପାଟିଆଲା ଓ ପୂର୍ବ ପଞ୍ଜାବ ରାଜ୍ୟ ୟୁନିଅନ୍, ରାଜସ୍ଥାନ, ସୌରାଷ୍ଟ୍ର, ମଧ୍ୟ ଭାରତ, ତ୍ରିଭାଙ୍କୁର-କୋଚିନ), ଅଥବା ପୂର୍ବତନ ସୀମା ମଧ୍ୟରେ ଫେଡେରାଲ ବା ସଂଘ ରାଷ୍ଟ୍ର ହିସାବରେ (ହାୟଦରାବାଦ, ମହୀଶୂର, ଜମ୍ମୁ ଓ କାଶ୍ମୀର) ।

ଦେଶୀୟ ରାଜ୍ୟ ୟୁନିଅନ୍ ଓ ପୃଥକ୍ ପୂର୍ବତନ ଦେଶୀୟ ରାଜ୍ୟ—ଏହି ଉଭୟ ଧରଣର ପ୍ରଦେଶରେ ବିଧାନ ସଭାର ନିର୍ବାଚନ ସଂପନ୍ନ ହେବା ପରେ, ଏହି ସଭା ନିକଟରେ ଦାୟୀ ସରକାର ଗଠନ କରାଯାଇଥିଲା । କେନ୍ଦ୍ରୀୟ ସରକାରର ପ୍ରତିନିଧି ହିସାବରେ ପୂର୍ବତନ ରାଜାମାନେ ଏସବୁର ବଡ଼ଲାଟ୍ ବା ରାଜପ୍ରମୁଖ ରୂପେ ନିଯୁକ୍ତ ହେଲେ ।

ଏହି ଭାବେ ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକର ଭାରତ ସହିତ ମିଶ୍ରଣ ଘଟିଥିଲା ବେଳେ ଦେଶରେ ପ୍ରଥମ ବ୍ୟାପକ ଭିତ୍ତିକ ଆଞ୍ଚଳିକ ଓ ପ୍ରଶାସନିକ ସଂସ୍କାର ବାସ୍ତବାୟିତ ହୋଇଥିଲା । ଏଥି ସଙ୍ଗେ ସଙ୍ଗେ ନୂତନ ଜରିପ୍ ଓ ବନ୍ଦୋବସ୍ତ ସମେତ ରୟତଓ୍ୱାରି ଅଞ୍ଚଳ ଭଳି ଏକ ଭୂମିରାଜସ୍ୱ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ଏହି ସମୟରେ କେତେକ ଦେଶୀୟ ରାଜ୍ୟରେ ଭୂମିରାଜସ୍ୱ କିଛି ପରିମାଣରେ ହ୍ରାସ ପାଇଥିଲା ।

ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକର ଭାରତ ସହିତ ମିଶ୍ରଣ ଏବଂ ପୂର୍ବୋକ୍ତ ଶାସନ ଓ ରାଜସ୍ୱ ବ୍ୟବସ୍ଥାର ସଂସ୍କାର ଫଳରେ ରାଷ୍ଟ୍ରୀୟ ବ୍ୟବସ୍ଥା ଦୃଢ଼ ହୋଇଥିଲା ଏବଂ ସାମନ୍ତବାଦୀ ଶକ୍ତିଗୁଡ଼ିକ ଯଥେଷ୍ଟ ଦୁର୍ବଳ ହୋଇ ପଡ଼ିଥିଲେ । କିନ୍ତୁ ଆପୋଷ ରଫା ଫଳରେ ରାଜନ୍ୟବର୍ଗ ଜମିଦାରିର ଏକ ବଡ଼ ଅଂଶ, ପ୍ରାସାଦ ଓ ଧନଦୌଲତ୍‌ର ମାଲିକାନା ସମେତ ବିପୁଳ ପରିମାଣର ପେନ୍‌ସନ (ହାୟଦରାବାଦ ନିଜାମ୍‌ଙ୍କୁ ବର୍ଷକୁ ୫୦ ଲକ୍ଷ ଟଙ୍କା, ମହୀଶୂରର ମହାରାଜାଙ୍କୁ ୨୬ ଲକ୍ଷ ଟଙ୍କା

ଆଦି) , ବିଭିନ୍ନ ସୁଯୋଗ ସୁବିଧା ଓ ଅନେକଙ୍କ ପାଇଁ ରାଜ ପ୍ରମୁଖ ପଦ ମିଳିଥିଲା । ଏହା ଫଳରେ ସେମାନଙ୍କ ପକ୍ଷରେ ପୂର୍ବତନ ରାଜ୍ୟଗୁଡ଼ିକର ଅର୍ଥନୀତି , ରାଜନୀତି ଓ ସଂସ୍କୃତିର କେତେକ କ୍ଷେତ୍ରରେ ନିଜର ପ୍ରଭାବ ଅବ୍ୟାହତ ରଖିବା ସମ୍ଭବ ହୋଇଥିଲା ।

୧୯୪୭-୧୯୪୯ ଖ୍ରୀଷ୍ଟାବ୍ଦରେ ଦେଶୀୟ ରାଜ୍ୟଗୁଡ଼ିକର ଏହି ମିଶ୍ରଣ ପ୍ରକ୍ରିୟା ତିନୋଟି ବ୍ୟତିକ୍ରମ – ଜୁନାଗଡ଼ (କାଥିଆବାଡ଼ ଉପଦ୍ୱୀପ) , ହାଇଦରାବାଦ ଓ କାଶ୍ମୀର – ବ୍ୟତୀତ ନିର୍ବିଘ୍ନରେ ସଂପନ୍ନ ହୋଇଥିଲା । ଏହିସବୁ ଦେଶୀୟ ରାଜ୍ୟରେ ବ୍ୟାପକ ଅସନ୍ତୋଷ ଦେଖା ଦେଇଥିଲା ।

ଜୁନାଗଡ଼ର ବାସିନ୍ଦାମାନଙ୍କ ମଧ୍ୟରୁ ଅର୍ଦ୍ଧେକରୁ ବେଶି ହିନ୍ଦୁ ହେଲେ ମଧ୍ୟ ଏହି ରାଜ୍ୟର ମୁସଲମାନ ଶାସକ ପାକିସ୍ତାନରେ ଯୋଗ ଦେବାକୁ ସିଦ୍ଧାନ୍ତ ନେଇଥିଲେ । ଫଳରେ ସେଠାରେ ପ୍ରବଳ ଗଣ ବିକ୍ଷୋଭ ଦେଖାଦେଲା ଏବଂ ଭାରତ ସରକାର ଜୁନାଗଡ଼କୁ ସୈନ୍ୟ ପଠାଇଥିଲେ । ୧୯୪୮ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ରାଜ୍ୟରେ ଗଣ ଭୋଟ ଅନୁଷ୍ଠିତ ହେଲା । ବିପୁଳ ଭୋଟାଧିକ୍ୟରେ ଭାରତ ସହିତ ରାଜ୍ୟଟିର ମିଶ୍ରଣ ସମର୍ଥିତ ହେଲା ଏବଂ ନବାବ ପାକିସ୍ତାନକୁ ପଳାୟନ କଲେ ।

ବିଶାଳ ଦେଶୀୟ ରାଜ୍ୟ ହାଇଦରାବାଦର ପରିସ୍ଥିତି ଥିଲା ଜଟିଳତର । ସେଠାକାର ନିଜାମ୍ ଥିଲେ ମୁସଲମାନ । ବ୍ରିଟିଶ୍ ସମ୍ବାଦପତ୍ରଗୁଡ଼ିକରେ ହାଇଦରାବାଦର ବିଶେଷ ମର୍ଯ୍ୟାଦା ଏବଂ ବ୍ରିଟେନ୍ ସାଙ୍ଗରେ ଏହି ରାଜ୍ୟର ପ୍ରତ୍ୟକ୍ଷ ସଂପର୍କ ରଖିବାର ଅନୁକୂଳରେ ଏକ ପ୍ରଶ୍ନର ଗଢ଼ିଥିଲା । ତେଣୁ ବ୍ରିଟେନ୍ ପ୍ରତି ଆସକ୍ତି ବଶତଃରୁ ନିଜାମ୍ ତାଙ୍କ ରାଜ୍ୟ ମିଶ୍ରଣଟିକୁ ବିଳମ୍ବିତ କରୁଥିଲେ । ଏଭଳି ଅବସ୍ଥାରେ ୧୯୪୭ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ଭାରତ ସରକାର ନିଜାମ୍‌ଙ୍କ ସହିତ ଏହି ସ୍ଥିତାବସ୍ଥା ବଜାଏ ରଖିବା ପାଇଁ ଏକ ବର୍ଷ ପାଇଁ ଏକ ଚୁକ୍ତି ସଂପାଦନ କରି ପକାଇଲେ । ତଦନୁଯାୟୀ ନିଜାମ୍‌ଙ୍କୁ ତାଙ୍କ ସୈନ୍ୟବୃଦ୍ଧି ଏବଂ ବାହାରର ସାମରିକ ସାହାଯ୍ୟ ଗ୍ରହଣ ଆଦିରୁ ବିରତ ରହିବାକୁ କୁହାଗଲା ।

କିନ୍ତୁ ନିଜାମ୍ ଅବିଳମ୍ବେ ଏହି ଚୁକ୍ତି ଭଙ୍ଗ କଲେ । ୧୯୪୮ ଖ୍ରୀଷ୍ଟାବ୍ଦରେ ପାକିସ୍ତାନରୁ ବହୁ ପରିମାଣର ଅସ୍ତ୍ରଶସ୍ତ୍ର ଆସି ଏଠାରେ ପହଞ୍ଚିଲା । ସ୍ୱାଧୀନ ଭାରତର ମଧ୍ୟ ଭାଗରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନଙ୍କର ଏକ ସାମରିକ ତଥା ରାଜନୈତିକ ଘାଟି ପ୍ରତିଷ୍ଠାର ଆୟୋଜନ ବିଷୟଟି କ୍ରମଶଃ ସ୍ପଷ୍ଟ ହୋଇ ଉଠିଲା । ଏଥି ସାଥେ ସାଥେ ଏହି ରାଜ୍ୟର ଆଭ୍ୟନ୍ତରୀଣ ଅବସ୍ଥା ମଧ୍ୟ ଜଟିଳ ହୋଇ ଉଠିଥିଲା । ୧୯୪୬ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିବା ନିଜାମ୍ ବିରୋଧୀ ଗଣ ଆନ୍ଦୋଳନ କୃଷକ ବିଦ୍ରୋହର ରୂପ ଧାରଣ କଲା ଏବଂ ତାହା ରାଜ୍ୟର ସମଗ୍ର ପୂର୍ବାଞ୍ଚଳକୁ (ତେଲେଙ୍ଗାନା) ବ୍ୟାପୀ ଯାଇଥିଲା । ଅଭ୍ୟୁତ୍ଥାନ ଦମନ ପାଇଁ ପ୍ରଶାସନ ଓ ସାମନ୍ତ ଭୂସ୍ୱାମୀମାନେ ରାଜାକାର ନାମକ ଏକ ସଶସ୍ତ୍ର ବାହିନୀ ନିଯୁକ୍ତ କରିଥିଲେ ଏବଂ ସେମାନଙ୍କ ଆକ୍ରମଣ ଫଳରେ ହାଇଦରବାଦର ଅମୁସଲମାନ ଜନସାଧାରଣଙ୍କ ଜୀବନ ଅତିଷ୍ଠ ହୋଇ ଉଠିଥିଲା ।

ତେଲେଙ୍ଗାନାର କୃଷକ ଆନ୍ଦୋଳନର ପ୍ରଭାବ ମାନ୍ଦ୍ରାଜ ପ୍ରଦେଶର ଉତ୍ତରାଞ୍ଚଳୀୟ ଜିଲ୍ଲାଗୁଡ଼ିକର ତେଲେଗୁ ଭାଷାଭାଷୀ ଜନସାଧାରଣଙ୍କ ମଧ୍ୟରେ ବ୍ୟାପୀ ଯିବାକୁ ଲାଗିଥିଲା । ଏମନ୍ତ ପରିସ୍ଥିତିରେ ହାଇଦରାବାଦର ଭାରତ ତ୍ୟାଗ କରିବାର ଉଦ୍ୟମ ଏବଂ ଆନ୍ଧ୍ର ଅଞ୍ଚଳରେ କୃଷକ ଆନ୍ଦୋଳନ ଦ୍ୱାରା ଉଦ୍‌ବିଗ୍ନ ଭାରତ ସରକାର ୧୯୪୮ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସରେ ନିଜାମ୍‌ଙ୍କୁ ଏକ ଚରମ ପତ୍ର ଦେଇଥିଲେ । ଏଥିରେ ଅନ୍ୟାନ୍ୟଙ୍କ ସହିତ ରାଜାକାର ବାହିନୀକୁ ଭାଙ୍ଗି ଦେବାକୁ ଦାବି

କରାଯାଇଥିଲା । ସେପ୍ଟେମ୍ବର ୧୩ ତାରିଖରେ ଭାରତୀୟ ସୈନ୍ୟବାହିନୀ ହାଇଦରାବାଦରେ ପ୍ରବେଶ କରିଥିଲେ ଏବଂ ପାଞ୍ଚ ଦିନ ମଧ୍ୟରେ ରାଜ୍ୟଟି ସେମାନଙ୍କ ଦଖଲକୁ ଆସି ଯାଇଥିଲା । ନିୟମିତ ଭାରତୀୟ ବାହିନୀ କେବଳ ରାଜାକାରମାନଙ୍କୁ ଉତ୍ଖାତ କରି ନଥିଲା, ତେଲେଙ୍ଗାନାର ସଂଗ୍ରାମୀ କୃଷକମାନଙ୍କ ଉପରେ ମଧ୍ୟ ଆକ୍ରମଣ କରିଥିଲା । ୧୯୪୯ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ନିଜାମ୍ ତାଙ୍କୁ ଏହି ପ୍ରଦେଶର ରାଜପ୍ରମୁଖ ପଦରେ ବହାଲ ରଖିବାର ସର୍ତ୍ତରେ ଭାରତ ସହିତ ମିଶ୍ରଣର ଦଲିଲରେ ସ୍ୱାକ୍ଷର କରିଥିଲେ ।

## କାଶ୍ମୀର ଘେନି ଭାରତ ଓ ପାକିସ୍ତାନ ମଧ୍ୟରେ ସଂଘର୍ଷର ସୂତ୍ରପାତ

ଜାମ୍ମୁ ଏବଂ କାଶ୍ମୀରରେ ଏହି ସମୟରେ ନେସନାଲ କନ୍‌ଫରେନ୍ସର ନେତୃତ୍ୱରେ ସ୍ଥାନୀୟ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ ହେତୁ ସର୍ବାପେକ୍ଷା ଉତ୍ତେଜନାକର ଏକ ପରିସ୍ଥିତି ସୃଷ୍ଟି ହୋଇଥିଲା । ୧୯୪୭ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ କାଶ୍ମୀର ପରିଦର୍ଶନ ସମୟରେ ମାଉଣ୍ଟବ୍ୟାଟେନ ସେଠାକାର ରାଜାଙ୍କୁ ଗଣଭୋଟ କରାଇବା ପାଇଁ ପରାମର୍ଶ ଦେଇଥିଲେ । ସେ ଆଶା କରିଥିଲେ, ଏହି ରାଜ୍ୟର ଅଧିକାଂଶ ଲୋକ ମୁସଲମାନ ହୋଇଥିବାରୁ ଏହା ପାକିସ୍ତାନ ସହିତ ମିଶିଯିବ ।

ଭାରତ ଓ ପାକିସ୍ତାନ ମଧ୍ୟରେ ଦୀର୍ଘ ସ୍ଥାୟୀ ସଂଘର୍ଷ ସୃଷ୍ଟି କରିବା ଥିଲା ହାଇଦରାବାଦ ଓ କାଶ୍ମୀରରେ ଅନୁସୃତ ବ୍ରିଟିଶ୍ ନୀତିର ଲକ୍ଷ୍ୟ ।

କିନ୍ତୁ ୧୯୪୭ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସରେ ଗାନ୍ଧୀ କାଶ୍ମୀରରେ ପହଞ୍ଚି ଶେଖ୍ ଅବ୍ଦୁଲ୍ଲାଙ୍କୁ ମୁକ୍ତ କରାଇବା ସଙ୍ଗେ ସଙ୍ଗେ ନେସନାଲ କନ୍‌ଫରେନ୍ସ ଓ କାଶ୍ମୀର ମହାରାଜାଙ୍କ ମଧ୍ୟରେ ଏକ ଚୁକ୍ତି ସଂପାଦନ କରେଇ ବ୍ରିଟିଶ୍ ପରିକଳ୍ପନାଟିକୁ ବ୍ୟର୍ଥ କରିଥିଲେ । ଏହା ପରେ ଭାରତ ଓ ପାକିସ୍ତାନ ମଧ୍ୟରେ ପ୍ରତ୍ୟକ୍ଷ ଯୁଦ୍ଧ ଲଗେଇ ଦେବାଟା ହେଲା ସାମ୍ରାଜ୍ୟବାଦୀମାନଙ୍କର ପରବର୍ତ୍ତୀ ଲକ୍ଷ୍ୟ । ୧୯୪୭ ଖ୍ରୀଷ୍ଟାବ୍ଦର ଅକ୍ଟୋବର ୨୨ ତାରିଖର ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପଠାଣ ଉପଜାତିମାନେ କାଶ୍ମୀର ଆକ୍ରମଣ କଲେ ଏବଂ ଅକ୍ଟୋବର ୨୬ ତାରିଖ ମଧ୍ୟରେ ଶ୍ରୀନଗର ଉପକଣ୍ଠରେ ପହଞ୍ଚିଗଲେ ।

ମହାରାଜାଙ୍କ ପ୍ରଶାସନ ବ୍ୟବସ୍ଥା ଭାଙ୍ଗି ପଡ଼ିଲା ଏବଂ ସେ ନିଜେ ଶ୍ରୀନଗରରୁ ପଳାଇ ଯାଇଥିଲେ । ଏହି ପରିସ୍ଥିତିରେ ନେସନାଲ କନ୍‌ଫରେନ୍ସର ଗଣତାନ୍ତ୍ରିକ ଅଂଶ ଓ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ସଂଗଠିତ ଜନ ଶକ୍ତି ସହର ରକ୍ଷାର ଦାୟିତ୍ୱ ଗ୍ରହଣ କରିଥିଲେ ।

ମାଉଣ୍ଟବ୍ୟାଟେନଙ୍କ ବିରୋଧିତା ସତ୍ତ୍ୱେ ଅକ୍ଟୋବର ୨୭ ତାରିଖରେ ଭାରତୀୟ ଛତ୍ରୀବାହିନୀକୁ ଶ୍ରୀନଗର ପଠାଗଲା ଏବଂ ପରଦିନ ପଠାଣ ଉପଜାତିର ସେନାରଙ୍କ ପଛେ ପଛେ ଆସୁଥିବା ନିୟମିତ ପାକିସ୍ତାନୀ ସୈନ୍ୟବାହିନୀ ସହିତ ସେମାନଙ୍କର ଯୁଦ୍ଧ ଲାଗିଥିଲା । ଏହି ଭାବେ ଆରମ୍ଭ ହୋଇ ଗଲା ଏକ ଦୀର୍ଘସ୍ଥାୟୀ ଯୁଦ୍ଧ ଏବଂ ଦୁଇ ଦେଶର ବ୍ରିଟିଶ୍ ସେନାପତିମାନେ ଯୁଦ୍ଧର ତଦାରଖି କଲେ (ଅକ୍ଟୋବର ଶେଷ ପର୍ଯ୍ୟନ୍ତ ଜେନେରାଲ ଓକିନଲେକ ଦୁଇ ଦେଶର ପ୍ରଧାନ ସେନାପତି ଥିଲେ !) । ପାକିସ୍ତାନ ସେନାବାହିନୀର ଅଧିକୃତ କାଶ୍ମୀରରେ "ଆଜାଦ କାଶ୍ମୀର" ନାମକ ଏକ ସରକାର ଗଠନ କରାଗଲା ।

୧୯୪୭ ଖ୍ରୀଷ୍ଟାବ୍ଦ ଡିସେମ୍ବର ୩୧ରେ ଭାରତ ଜାତି ସଂଘର ନିରାପତ୍ତା ପରିଷଦରେ କାଶ୍ମୀର ପ୍ରସଙ୍ଗ ଉତ୍‌ଥାପନ କଲା ଏବଂ ଜାତି ସଂଘ ତରଫରୁ କାଶ୍ମୀର କମିସନଟି ଗଠିତ ହେଲା । ଏହି ସଂସ୍ଥାରେ ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟିଶ୍ ପ୍ରତିନିଧିମାନେ ଭାରତ ପାକିସ୍ତାନ ମଧ୍ୟରେ ସଂଘର୍ଷ ସୃଷ୍ଟି କରିବାକୁ ସଚେଷ୍ଟ ରହିଥିଲେ । ୧୯୪୮ ଖ୍ରୀଷ୍ଟାବ୍ଦର ବସନ୍ତ କାଳରେ ସଶସ୍ତ୍ର ସଂଘର୍ଷର ଅବସାନ ଘଟିଲା ଏବଂ ୧୯୪୯ ଖ୍ରୀଷ୍ଟାବ୍ଦର ଜାନୁଆରୀ ୧ରୁ ଯୁଦ୍ଧ ବିରତି କାର୍ଯ୍ୟକାରୀ ହେଲା ।

୧୯୪୭ ଖ୍ରୀଷ୍ଟାବ୍ଦର ଶରତ କାଳରେ ମହାରାଜା ସିଂହାସନ ତ୍ୟାଗ କଲେ ତାଙ୍କ ଉତ୍ତରାଧିକାରୀ, ଯିଏକି ଏହି ରାଜ୍ୟର ସରକାରର ମୁଖ୍ୟ ହୋଇଥିଲେ, ଜାମ୍ମୁ ଓ କାଶ୍ମୀରର ଭାରତ ସହିତ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିଥିଲେ । ଏଥି ସଙ୍ଗେ ସଙ୍ଗେ ନୂତନ ପ୍ରଦେଶଟିକୁ ବିଶେଷ ସ୍ୱାୟତ୍ତଶାସନ ଦିଆଗଲା ଏବଂ ଭବିଷ୍ୟତରେ ମୀମାଂସାର ପଥଟି ଉନ୍ମୁକ୍ତ ରହିଲା ।

କାଶ୍ମୀର ଓ ହାୟଦରାବାଦର ଘଟଣାବଳୀ ଏହି ଉପମହାଦେଶର ଦୁଇ ପ୍ରଧାନ ସଂପ୍ରଦାୟ– ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ବିଦ୍ୟମାନ ଉତ୍ତେଜନାକର ସଂପର୍କରେ ଇନ୍ଧନ ଯୋଗାଇଥିଲା ।

## ହିନ୍ଦୁ-ମୁସଲମାନ ଦଙ୍ଗା – ଗାନ୍ଧୀଙ୍କୁ ହତ୍ୟା

ଭାରତ ବିଭାଗ ଫଳରେ ଦୁଇଟି ଦେଶ ସୃଷ୍ଟି ହେଲା ଏବଂ ନୂତନ ସୀମାନ୍ତ ଗଢ଼ି ଉଠିବା ହେତୁ ପାକିସ୍ତାନରୁ ଭାରତକୁ ହିନ୍ଦୁ ଓ ଶିଖ ଏବଂ ଭାରତରୁ ପାକିସ୍ତାନକୁ ମୁସଲମାନ ଉଦ୍‌ବାସ୍ତୁମାନଙ୍କର ବ୍ୟାପକ ପରିମାଣରେ ଆସିବା ଆରମ୍ଭ ହୋଇଗଲା । ଏହି ବ୍ୟାପକ ଆଗମନ ଫଳରେ ଦୁଇଟି ଦେଶରେ, ବିଶେଷ କରି ସୀମାନ୍ତ ଅଞ୍ଚଳଗୁଡ଼ିକରେ ସଂକଟ ଦେଖାଦେଲା । ଭାରତରୁ ବ୍ୟବସାୟୀ, ଶିଳ୍ପପତିମାନଙ୍କର ସମୃଦ୍ଧ ଉର୍ଦ୍ଧ୍ୱତନ ସ୍ତରଗୁଡ଼ିକର ପ୍ରତିନିଧିମାନେ ହିଁ ମୁଖ୍ୟତଃ ପାକିସ୍ତାନକୁ ଚାଲି ଯାଇଥିଲେ । ହିନ୍ଦୁ ଓ ମୁସଲମାନମାନଙ୍କର ବ୍ୟାପକ ଦେଶାନ୍ତରଣ ଫଳରେ ଉଭୟ ଦେଶରେ ଏହି ଦୁଇ ସଂପ୍ରଦାୟର ପାରସ୍ପରିକ ସଂପର୍କର ମାରାତ୍ମକ ଅବନତି ଘଟିଥିଲା : ଦେଶାନ୍ତର ଯାତ୍ରୀ ଉଦ୍‌ବାସ୍ତୁମାନଙ୍କ ଉପରେ ଆକ୍ରମଣ, ଲୁଣ୍ଠନ ଓ ବ୍ୟାପକ ହତ୍ୟା ନିତ୍ୟନୈମିତ୍ତିକ ଘଟଣା ହୋଇ ପଡ଼ିଲା । ପଶ୍ଚିମ ପଞ୍ଜାବରେ ହିନ୍ଦୁ ଓ ଶିଖ୍‌ମାନଙ୍କ ଉପରେ ଧର୍ମାନ୍ଧମାନଙ୍କ ଦ୍ୱାରା ଅନୁଷ୍ଠିତ ବ୍ୟାପକ ନୃଶଂସତାର ଫଳ ସ୍ୱରୂପ ରାଜସ୍ଥାନ, ବିହାର, ଦିଲ୍ଲୀ ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ମୁସଲମାନମାନଙ୍କ ଉପରେ ଏହାର ପୁନରାବୃତ୍ତି ଘଟିଥିଲା ।

ହିନ୍ଦୁ ମୁସଲମାନ ଐକ୍ୟର ଅଗ୍ରଦୂତ ମହାତ୍ମା ଗାନ୍ଧୀ ଏହିସବୁ ଘଟଣାବଳୀ ଫଳରେ ମର୍ମାହତ ହୋଇଥିଲେ । ମୁସଲମାନମାନଙ୍କ ହତ୍ୟା ବିରୁଦ୍ଧରେ ସେ ଅନଶନ ଆରମ୍ଭ କରିଥିଲେ । ଗାନ୍ଧୀଙ୍କର ଏହି ଅନଶନ ଫଳରେ ହିନ୍ଦୁ ମହାସଭା ଓ ତା ସହିତ ସଂଶ୍ଳିଷ୍ଟ ଅର୍ଦ୍ଧ ସାମରିକ ବାହିନୀ "ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର" ଅନୁଗାମୀ ଉଗ୍ରଜାତୀୟତାବାଦୀ ହିନ୍ଦୁମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ଦେଖା ଦେଇଥିଲା । ପ୍ରତିକ୍ରିୟାଶୀଳ ଚକ୍ର କେବଳ ହିନ୍ଦୁ-ମୁସଲମାନ୍ ସଂପର୍କ କ୍ଷେତ୍ରରେ ଗାନ୍ଧୀଙ୍କର ଏହି ଉଦ୍ୟୋଗ ପାଇଁ ନୁହେଁ, ଚାଳିଶ ଦଶକରୁ ତାଙ୍କର ସାମାଜିକ ଓ ରାଜନୈତିକ କେତେକ ଦୃଷ୍ଟିଭଙ୍ଗିରେ ଆମୂଳ ପରିବର୍ତ୍ତନ ଲକ୍ଷ୍ୟ କରି ଅସନ୍ତୁଷ୍ଟ ହୋଇଥିଲା । ବ୍ୟାପକ ଉଗ୍ରଜାତୀୟତାବାଦୀ

ଧର୍ମୀୟ ପ୍ରଗ୍ରର ଗ୍ଲଲିଥିଲା ବେଳେ ହିନ୍ଦୁ ମହାସଭାର ଏକ ସଦସ୍ୟ ୧୯୪୮ ଖ୍ରୀଷ୍ଟାବ୍ଦ ଜାନୁଆରୀ ୩୦ ତାରିଖରେ ଗାନ୍ଧୀଙ୍କୁ ଗୁଳି କରିବା ଫଳରେ ଗାନ୍ଧୀ ନିହତ ହେଲେ ।

ଗାନ୍ଧୀଙ୍କ ହତ୍ୟା ଫଳରେ ସମଗ୍ର ଭାରତବର୍ଷରେ ବିକ୍ଷୋଭର ଝଡ଼ ବହିଗଲା ଏବଂ ଜନସାଧାରଣ ହିନ୍ଦୁ ମହାସଭା ଭଳି ସାଂପ୍ରଦାୟିକ ସଂଗଠନଗୁଡ଼ିକୁ ନିଷିଦ୍ଧ କରିବା ପାଇଁ ଦାବି ଜଣାଇଲେ । କେତେକ ସ୍ଥାନରେ ଏହି ସଂଗଠନର ସଦସ୍ୟମାନଙ୍କୁ ହତ୍ୟା କରାଯାଇଥିଲା । ସରକାର "ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘକୁ" ବେଆଇନୀ ଘୋଷଣା କଲେ ଏବଂ ହିନ୍ଦୁ ମହାସଭା ତା'ର ଯାବତୀୟ ରାଜନୈତିକ କ୍ରିୟାକଳାପ ପ୍ରତ୍ୟାହାର କରି ସଂସ୍କୃତି ଓ ଶିକ୍ଷା କ୍ଷେତ୍ରରେ ନିଜକୁ ସୀମିତ ରଖିବାକୁ ବାଧ୍ୟ ହେଲା । ୧୯୪୮ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ବେଦନାଦାୟକ ଘଟଣାବଳୀର ଫଳ ହିସାବରେ "ଜାତୀୟ ପିତାଙ୍କର" ଏହି ମୃତ୍ୟୁ ସାଂପ୍ରଦାୟିକ ହିନ୍ଦୁ ନେତାମାନଙ୍କର ଆଶା ଓ ଆକାଂକ୍ଷାକୁ ବିଧ୍ୱସ୍ତ କରି ଦେଇଥିଲା ।

ନୂତନ ରାଷ୍ଟ୍ରର ସାର୍ବଭୌମତ୍ୱ ଦୃଢ଼ ହେବା ପରେ ଦେଶ ବିଭାଗ ହେତୁ ଦେଶରେ ଦେଖା ଦେଇଥିବା ଅର୍ଥନୈତିକ ଫଳାଫଳସମୂହକୁ ମୁକାବିଲା କରିବା କାର୍ଯ୍ୟଟି ପ୍ରଧାନ ଲକ୍ଷ୍ୟ ହୋଇ ପଡ଼ିଲା ।

## ଦେଶ ବିଭାଗର ଅର୍ଥନୈତିକ ଫଳାଫଳ

ଫସଲ ହାନି, ଯୁଦ୍ଧକାଳୀନ ଉତ୍ପାଦନ ହ୍ରାସ, କେତେକ ଧରଣର କଞ୍ଚାମାଲ ଓ ଶିଳ୍ପ ଦ୍ରବ୍ୟର ଅଭାବ ହେତୁ ସୃଷ୍ଟି ହୋଇଥିବା ଯୁଦ୍ଧୋତ୍ତର ଅସୁବିଧାରାଜି ଦେଶ ବିଭାଗ ଫଳରେ ଆଉରି ତୀବ୍ରତର ହୋଇ ଉଠିଥିଲା ।

ପାକିସ୍ତାନ ଅନ୍ତର୍ଗତ କୃଷି ଅଞ୍ଚଳରେ ଇତିପୂର୍ବରୁ ଦେଶର ଶତକଡ଼ା ୪୦ ଭାଗ ତୁଳା, ୮୫ ଭାଗ ଝୋଟ, ୪୦ ଭାଗ ଗହମ ଉତ୍ପନ୍ନ ହେଉଥିଲା । ଫଳରେ, ଭାରତରେ ଅବିଳମ୍ବେ ତା'ର ଶିଳ୍ପ ଶାଖା ବସ୍ତ୍ରଶିଳ୍ପ କ୍ଷେତ୍ରରେ କଞ୍ଚାମାଲର ଅଭାବ ସହ ଖାଦ୍ୟାଭାବ ଦେଖା ଦେଇଥିଲା ।

୧୯୪୭-୧୯୪୮ ଖ୍ରୀଷ୍ଟାବ୍ଦର ଯୁଦ୍ଧ ପରେ ଭାରତ ପାକିସ୍ତାନ ମଧ୍ୟରେ ୧୯୪୯-୧୯୫୦ ଖ୍ରୀଷ୍ଟାବ୍ଦରେ ଏକ ବାଣିଜ୍ୟ ଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା । ଏହା ଫଳରେ ଔପନିବେଶିକ ଯୁଗରେ ଗଢ଼ି ଉଠିଥିବା ଆନ୍ତଃଆଞ୍ଚଳିକ ଅର୍ଥନୈତିକ ସଂପର୍କ ଭୟଙ୍କର ଭାବେ କ୍ଷତିଗ୍ରସ୍ତ ହୋଇଥିଲା । ଏଭଳି ଏକ ଅବସ୍ଥାରେ ଭାରତ ଝୋଟ ଓ ତୁଳା ଉତ୍ପାଦନର ଏବଂ ପାକିସ୍ତାନ ନିଜସ୍ୱ ବସ୍ତ୍ରଶିଳ୍ପ ନିର୍ମାଣର ଉଦ୍ୟୋଗ ଗ୍ରହଣ କରିଥିଲା । ଉଦ୍‌ବାସ୍ତୁ ସଂପତ୍ତିର ସ୍ୱତ୍ୱ, ସୀମାନ୍ତ ଆର ପାରିରେ ଆର୍ଥିକ ଦାବି, ଅର୍ଥଭଣ୍ଡାରର ବିଭାଗ ଆଦି ଅର୍ଥନୈତିକ ସମସ୍ୟାବଳୀ ସମାଧାନରେ ସେମାନଙ୍କ ବ୍ୟର୍ଥତା ମଧ୍ୟ ଏହି ଦୁଇ ଦେଶର ବାଣିଜ୍ୟିକ ସଂପର୍କକୁ ଜଟିଳତର କରି ପକାଇଥିଲା ।

ସାଧାରଣ ଜଳସେଚନ ବ୍ୟବସ୍ଥା ଏବଂ ପରିବହନ ପ୍ରଣାଳୀ ଏହା ପରେ ଭାଙ୍ଗି ପଡ଼ିଥିଲା । ଏପରି ଅବସ୍ଥାରେ ଦୀର୍ଘ କାଳ ଧରି ଆସାମ ସହିତ ଭାରତର ଅନ୍ୟାନ୍ୟ ଅଂଶ କେବଳ ବିମାନପଥ ଦ୍ୱାରା ଯୁକ୍ତ ଥିଲା ।

ବସ୍ତ୍ରଶିଳ୍ପର ସରବରାହ ହ୍ରାସ ଏବଂ ଏଥି ପାଇଁ ବଜାର ସଂକୀର୍ଣ୍ଣ ହୋଇ ଉଠିବା ଫଳରେ କେତେକ ସୂତାକଳ ବନ୍ଦ ହୋଇ ଯାଇଥିଲା ଏବଂ ବାକିଗୁଡ଼ିକରେ ସାପ୍ତାହିକ କାର୍ଯ୍ୟ ଦିନ କମେଇ

ଦିଆଯାଉଥିଲା । କଞ୍ଚାମାଲର ଅଭାବ ଓ ହଠାତ୍ ବଜାର ଛୋଟ ହୋଇଯିବା ଫଳରେ କ୍ଷୁଦ୍ର ଉତ୍ପାଦକ ଏବଂ ତନ୍ତୁବାୟମାନେ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହୋଇଥିଲେ ।

୧୯୪୯ ଖ୍ରୀଷ୍ଟାବ୍ଦ ଶରତ କାଳରେ ପ୍ରଧାନ ଶିଳ୍ପ ଶାଖାଗୁଡ଼ିକରେ ଉତ୍ପାଦନର ପରିମାଣ ଦ୍ୱିତୀୟ ବିଶ୍ୱ ଯୁଦ୍ଧକାଳୀନ ଉତ୍ପାଦନ ମାତ୍ରାରେ ଶତକଡ଼ା ୬୦-୭୦ ଭାଗକୁ ହ୍ରାସ ପାଇଥିଲା । କଞ୍ଚାମାଲର ଅଭାବ ଓ ବ୍ୟବହାରଯୋଗ୍ୟ ପଣ୍ୟ ବଜାରର ଅଭାବ ହେତୁ କେବଳ ଏହି ମାନ୍ଦା ଘଟି ନଥିଲା । ପ୍ରଧାନ ଯନ୍ତ୍ରପାତିର ଅବକ୍ଷୟ ମଧ୍ୟ ଏଥି ପାଇଁ ଦାୟୀ ଥିଲା । ପରିବହନ ବ୍ୟବସ୍ଥାର ଅବସ୍ଥା ମଧ୍ୟ ଅନୁରୂପ ଥିଲା : ଦେଶର ଶତକଡ଼ା ୬୦ ଭାଗ ରେଳ ଇଂଜିନ୍ ଓ ଡବାକୁ ବଦଳାଇବା ଜରୁରୀ ହୋଇ ପଡ଼ିଥିଲା ।

ଉତ୍ପାଦନ ହ୍ରାସର ଅନିବାର୍ଯ୍ୟ ଫଳ ହିସାବରେ ସାମାଜିକ କ୍ଷେତ୍ରରେ ମାରାତ୍ମକ ସମସ୍ୟା ଦେଖା ଦେଇଥିଲା । ଅନେକ ଅଞ୍ଚଳରେ କାରଖାନା ଶ୍ରମିକ ଓ ଗୃହ ଶିଳ୍ପର କାରିଗରମାନଙ୍କ ମଧ୍ୟରେ ବ୍ୟାପକ ବେକାରି ସୃଷ୍ଟି ହୋଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ପୂର୍ବ ପଞ୍ଜାବରେ ୧୯୪୬-୪୭ ଏବଂ ୧୯୪୭-୧୯୪୮ ମଧ୍ୟରେ ଶିଳ୍ପ ଶ୍ରମିକଙ୍କ ସଂଖ୍ୟା ଏକ ତୃତୀୟାଂଶ ହ୍ରାସ ପାଇଥିଲା । ଉଦ୍‌ବାସ୍ତୁମାନେ ଆସିଯିବା ଫଳରେ ପରିସ୍ଥିତି ଜଟିଳତର ହୋଇଥିଲା ଏବଂ ଏମାନଙ୍କ ସଂଖ୍ୟା ୭୦ ଲକ୍ଷକୁ ଟପି ଯାଇଥିଲା ।

ଏହି ସମୟରେ ଶିଳ୍ପଜାତ ଭୋଗ୍ୟପଣ୍ୟ ହ୍ରାସ ପାଇବା ସଙ୍ଗେ ସଙ୍ଗେ ଖାଦ୍ୟାଭାବ ଦେଖା ଦେଲା : ସ୍ୱାଧୀନତାର ପ୍ରଥମ ବର୍ଷଗୁଡ଼ିକରେ ଯୁଦ୍ଧ ପୂର୍ବ ଉତ୍ପାଦନର ଶତକଡ଼ା ୯୦ ଭାଗ ଫସଲ ଉତ୍ପନ୍ନ ହୋଇଥିଲା ।

ଅର୍ଥନୀତିର ଔପନିବେଶିକ ବ୍ୟବସ୍ଥା ମଧ୍ୟରୁ ଜାତ ଭାରତୀୟ ଅର୍ଥନୀତିର ଅନ୍ତର୍ନିହିତ ଦ୍ୱନ୍ଦ୍ୱକୁ ଦେଶ ବିଭାଗ ଆଉରି ବୃଦ୍ଧି କରିଥିଲା । ସ୍ୱାଧୀନତାର ପରବର୍ତ୍ତୀ କେଇ ବର୍ଷ ପାଇଁ ଭାରତ ଏକ ଅନୁନ୍ନତ କୃଷିପ୍ରଧାନ ଦେଶ ହୋଇ ରହି ଯାଇଥିଲା ଏବଂ ତା'ର ଅର୍ଥନୈତିକ ବ୍ୟବସ୍ଥା ମଧ୍ୟରେ ପ୍ରାକ୍ ପୁଞ୍ଜିବାଦୀ ଧରଣ ହିଁ ପ୍ରାଧାନ୍ୟ ଲାଭ କରିଥିଲା । ୧୯୪୮-୧୮୪୯ ଖ୍ରୀଷ୍ଟାବ୍ଦର ଜାତୀୟ ଆୟର ପରିମାଣରୁ ଏହା ସହଜରେ ଲକ୍ଷ୍ୟ କରାଯାଏ : କୃଷିରୁ ଶତକଡ଼ା ୪୮.୧ ଭାଗ, କୁଟୀର ଶିଳ୍ପ ଓ କାରିଗରିରୁ ଶତକଡ଼ା ୧୧.୫ ଭାଗ ଏବଂ ବୃହଦାକାର ଉତ୍ପାଦନରୁ ୮.୩ ଭାଗ । ଜମିର ମାଲିକାନା ଓ ଜମିର ବ୍ୟବହାର ପ୍ରଣାଳୀରେ ସାମନ୍ତବାଦୀ ପ୍ରଭାବର ପ୍ରାଧାନ୍ୟ ଏବଂ କୃଷି ଯନ୍ତ୍ରପାତିର ମଧ୍ୟଯୁଗୀୟ ସ୍ତର ମଧ୍ୟରେ ଏ ଦେଶରେ ଶ୍ରମର ଉତ୍ପାଦନଶୀଳତାର ସ୍ତର (ପୃଥିବୀରେ ନିମ୍ନତମ ମଧ୍ୟରୁ ଅନ୍ୟତମ) ସ୍ପଷ୍ଟ ହୋଇ ଉଠିଥିଲା । ସେତେବେଳେ ଭାରତରେ ମୁଣ୍ଡ ପିଛା ଆୟର ପରିମାଣ ଥିଲା ବିଶ୍ୱର ନିମ୍ନତମ ମଧ୍ୟରୁ ବି ଅନ୍ୟତମ : ୧୯୪୮ ଖ୍ରୀଷ୍ଟାବ୍ଦରେ ୨୪୬ ଟଙ୍କା, ଅର୍ଥାତ୍, ବ୍ରିଟେନ୍ ଓ ଆମେରିକା ଯୁକ୍ତ ରାଷ୍ଟ୍ରର ମୁଣ୍ଡ ପିଛା ଜାତୀୟ ଆୟର ଯଥା କ୍ରମେ ୧୦ ଓ ୫ ଶତାଂଶ ।

ଅର୍ଥନୀତିର ପ୍ରଧାନ ଶାଖାଗୁଡ଼ିକରେ ବିଦେଶୀ, ମୂଳତଃ, ବ୍ରିଟେନ୍‌ର ମୁଖ୍ୟ ଅବସ୍ଥାନ ହେତୁ ଅର୍ଥନୀତି କ୍ଷେତ୍ରରେ ଭାରତୀୟ ବୁର୍ଜୁଆମାନଙ୍କର କେତେକ କୌଶଳ ଗ୍ରହଣର ପରିସର ଥିଲା ଖୁବ୍ ସୀମିତ । ଭାରତରେ ବିଦେଶୀ ପୁଞ୍ଜି ଲଗ୍ନିର ପ୍ରଥମ ସମୀକ୍ଷାରୁ ଦେଖାଯାଏ ଯେ, ୧୯୪୮ ଖ୍ରୀଷ୍ଟାବ୍ଦର ଜୁନ୍ ମାସ ପର୍ଯ୍ୟନ୍ତ ଏ ଦେଶରେ ଅନୁରୂପ ବିନିଯୋଗର ମୋଟ ୩୨୦ କୋଟି ଟଙ୍କା ମଧ୍ୟରୁ ବିଟେନ୍‌ର ଅଂଶ ଥିଲା ଶତକଡ଼ା ୭୨ ଭାଗ । ବିଭିନ୍ନ ଶିଳ୍ପରେ ବିଦେଶୀ ଲଗ୍ନିର ହିସାବଟି ଥିଲା

ନିମ୍ନମତେ (ଶତକଡ଼ା ହାରରେ) : ତୈଳ ନିଷ୍କାସନ ଓ ବିଶୋଧନର—୯୭, ରବରର ୯୩, ସଂକୀର୍ଣ୍ଣ ପାଟି ରେଳ ପଥର—୯୦, ଝୋଟଶିଳ୍ପର—୮୯, ଚା ବଗିଚା—୮୬ ଓ ଖଣି ଶିଳ୍ପର—୭୩ ଥାଦି ।

ବିଦେଶୀ ଏକଚାଟିଆମାନେ ଭାରତରେ ଲଗି୍ନକୃତ ପୁଞ୍ଜିରୁ ବାର୍ଷିକ ହାରାହାରି ୧୨୦ କୋଟିରୁ ୧୫୦ କୋଟି ଡଲାର ପର୍ଯ୍ୟନ୍ତ ମୁନାଫା ଅର୍ଜନ କରିଥିଲେ ।

ଭାରତୀୟ ଅର୍ଥନୀତିର ଔପନିବେଶିକ ବ୍ୟବସ୍ଥା ଏବଂ ବିଦେଶୀ ପୁଞ୍ଜିର ପ୍ରାଧାନ୍ୟ ଆନ୍ତର୍ଜାତିକ ଶ୍ରମ ବିଭାଗ ପ୍ରଣାଳୀ ମଧ୍ୟରେ ଭାରତର ଅବସ୍ଥାନ ନିର୍ଦ୍ଧାରଣ କରିଥିଲା । ପୂର୍ବ ଭଳି ଭାରତବର୍ଷ ଏବେ ଶିଳ୍ପପ୍ରଧାନ ପୁଞ୍ଜିବାଦୀ ଦେଶଗୁଡ଼ିକର, ବିଶେଷତଃ, ବ୍ରିଟେନ୍‌ର କଞ୍ଚାମାଲ ଯୋଗାଣକାରୀ ଉପାଙ୍ଗର କାର୍ଯ୍ୟ କରୁଥିଲା । ୧୯୪୬-୧୯୪୭ ଖ୍ରୀଷ୍ଟାବ୍ଦରେ ଭାରତର ମୋଟ ଆମଦାନିର ଶତକଡ଼ା ୬୦ ଭାଗ ଥିଲା ଶସ୍ୟ ଓ ବ୍ୟବହାରଯୋଗ୍ୟ ପଣ୍ୟ ଏବଂ ରପ୍ତାନିର ଶତକଡ଼ା ୫୨ ଭାଗ ଥିଲା କଞ୍ଚାମାଲ ଓ ଖାଦ୍ୟଦ୍ରବ୍ୟ ।

ଏହି ଭାବେ ନବସ୍ୱାଧୀନ ଭାରତ ଶହ ଶହ ବର୍ଷର ଅନଗ୍ରସରତାକୁ ଅତିକ୍ରମ କରି ବହୁମୁଖୀ ଆଧୁନିକ ଅର୍ଥନୀତି ଗଠନର ଏକ ଦୁଃସାଧ୍ୟ କର୍ତ୍ତବ୍ୟ ଆଗରେ ଦଣ୍ଡାୟମାନ ହୋଇଥିଲା ।

## ଅର୍ଥନୈତିକ କର୍ମନୀତି : "ମିଶ୍ର ଅର୍ଥନୀତି"

ସ୍ୱାଧୀନତାର ପ୍ରଥମ ବର୍ଷଗୁଡ଼ିକରେ ଦେଶ ବିଭାଗ ହେତୁ ସୃଷ୍ଟ ଅସୁବିଧାଗୁଡ଼ିକୁ ଦୂର କରିବା ଦିଗରେ ସରକାରର ଉଦ୍ୟମ ପ୍ରଧାନତଃ ଅର୍ଥନୈତିକ କ୍ଷେତ୍ରରେ କେନ୍ଦ୍ରୀଭୂତ ହୋଇଥିଲା ।

ସରକାର କ୍ରମଶଃ ଝୋଟ ଓ ତୁଳା ଚାଷର ଅଞ୍ଚଳକୁ ପ୍ରସାରିତ କରିବା (ଯଥାକ୍ରମେ ୬୦-୭୦ ଏବଂ ୨୦-୨୫ ଶତାଂଶ) ସଙ୍ଗେ ସଙ୍ଗେ ନୂତନ ଜଳସେଚନ ପ୍ରକଳ୍ପ ନିର୍ମାଣ କରିଥିଲା । ୧୯୪୭ ଖ୍ରୀଷ୍ଟାବ୍ଦରେ ଅନାବାଦୀ ଜମି ଚାଷ ପରିକଳ୍ପନା ସହିତ ସହଯୋଗିତା କରିବା ନିମିତ୍ତ ଏକ ସରକାରୀ ଟ୍ରାକ୍ଟର ସଂସ୍ଥା ଗଠିତ ହୋଇଥିଲା ।

ତା ସତ୍ତ୍ୱେ ଖାଦ୍ୟ ଉତ୍ପାଦନରେ ପ୍ରାୟ କୌଣସି ଉନ୍ନତି ଘଟିଲା ନାହିଁ । ସ୍ଥାୟୀ ଖାଦ୍ୟାଭାବ ହେତୁ ୧୯୪୭-୧୯୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତ ୧ କୋଟି ଟନ୍‌ରୁ ବେଶି ଗହମ ଆମଦାନି କରିବାକୁ ବାଧ୍ୟ ହୋଇଥିଲା ।

ବିଭିନ୍ନ ବ୍ୟବସ୍ଥା ଗ୍ରହଣ ସତ୍ତ୍ୱେ ମୁଣ୍ଡ ପିଛା ମୁଖ୍ୟ ଖାଦ୍ୟର ପରିମାଣ ହ୍ରାସ ପାଇବାକୁ ଲାଗିଥିଲା । ୧୯୪୮ ଖ୍ରୀଷ୍ଟାବ୍ଦରେ ସହରଗୁଡ଼ିକରେ ମୁଖ୍ୟ ଖାଦ୍ୟ ସାମଗ୍ରୀର ରେସନିଂ ଚାଲୁ ହୋଇଥିଲା । ଖାଦ୍ୟ ସାମଗ୍ରୀ ଓ ଜରୁରୀ ଭୋଗ୍ୟପଣ୍ୟ ଘେନି ଅବାଧ ଫଟକାବାଜି ଶ୍ରମିକ, କାରିଗର, ଅଫିସ୍ କର୍ମଚାରୀମାନଙ୍କର ଅଧସ୍ତନ ଓ ମଧ୍ୟ ସ୍ତରଗୁଡ଼ିକ ଏବଂ ଶିଳ୍ପୋଦ୍ୟୋଗୀମାନଙ୍କ ନିମ୍ନସ୍ତରଗୁଡ଼ିକର ପାରିବାରିକ ସଂସ୍ଥାନ ଉପରେ କଠୋର ଆଘାତ ହାଣିଥିଲା । ଏଥି ସହିତ ଫଟକା କାରବାର ମାଧ୍ୟମରେ ବିପୁଳ ଅର୍ଥ ସଞ୍ଚୟ ଚାଲିଥିଲା, ପ୍ରାଥମିକ ସଞ୍ଚୟ ପ୍ରକ୍ରିୟାରେ ତୀବ୍ରତା ଦେଖା ଦେଇଥିଲା ।

୧୯୪୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଅର୍ଥନୈତିକ ପରିସ୍ଥିତିରେ କିଛି ପରିମାଣରେ ସୁଅବସ୍ଥା ଦେଖା ଦେଲେ ନିଜ ସଞ୍ଚୟକୁ ଶିଳ୍ପରେ ଲଗି୍ନ କରିବା ପାଇଁ ଦେଶର ବିତ୍ତଶାଳୀ ସଂପ୍ରଦାୟ ଉତ୍ସାହୀ ହୋଇ ଉଠିଥିଲେ ।

ବସ୍ତ୍ର ଶିଳ୍ପର ଉତ୍ପାଦନରେ ଅବ୍ୟାହତ ନଅଣ୍ଟ ସତ୍ତ୍ୱେ ଏହି ସମୟରେ ଭାରୀ ଶିଳ୍ପର କେତେକ କ୍ଷେତ୍ରରେ (ସିମେଣ୍ଟ, ରାସାୟନିକ ଓ ଇସ୍ପାତ ଶିଳ୍ପ) ଉନ୍ନତି ଦେଖା ଦେଇଥିଲା । ଶିଳ୍ପ ଏବଂ ବେସାମରିକ ନିର୍ମାଣରେ ନୂତନ ଉଦ୍ଦୀପନା ସଞ୍ଚାର ହେତୁ ଏହା ଘଟିଥିଲା ।

ରେଳପଥ ପାଇଁ ନୂତନ ଇଂଜିନ୍ ସରବରାହ ଆରମ୍ଭ ହେବା ସାଥେ ସାଥେ ମୁଖ୍ୟ ଯନ୍ତ୍ରପାତି ଆମଦାନି ବୃଦ୍ଧି ହେତୁ କାରଖାନାସମୂହ ପାଇଁ ଅଧିକ ଯନ୍ତ୍ରପାତି ଯୋଗାଇ ଦେବା ସମ୍ଭବ ହୋଇଥିଲା ।

ସ୍ୱାଧୀନତାର ପ୍ରାରମ୍ଭିକ ବର୍ଷଗୁଡ଼ିକରେ ଯୁଦ୍ଧ ସମୟରେ ସଞ୍ଚିତ ଷ୍ଟର୍ଲିଂ ଭଣ୍ଡାରରୁ (୧୯୪୭ ଖ୍ରୀଷ୍ଟାବ୍ଦରେ ମୋଟ ୧୫୦୦ କୋଟି ଟଙ୍କା) ପ୍ରଧାନତଃ ଭାରତ ତା'ର ଯନ୍ତ୍ରପାତି ଆମଦାନି ବ୍ୟୟ ମେଣ୍ଟାଇଥିଲା । ୧୯୪୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ସ୍ୱାକ୍ଷରିତ ଇଂରେଜ-ଭାରତୀୟ ଅର୍ଥ ଚୁକ୍ତି ଅନୁଯାୟୀ ସାମରିକ ସାଜସରଞ୍ଜାମ, ବ୍ରିଟିଶ୍ କର୍ମଚାରୀମାନଙ୍କର ପେନ୍‌ସନ୍ ଆଦି ପାଇଁ ୫୦୦ କୋଟି ଟଙ୍କା ଏବଂ ଅବଶିଷ୍ଟ ୧୦୦୦ କୋଟି ଟଙ୍କା ଭାରତର ଶିଳ୍ପ ସାମର୍ଥ୍ୟ ବୃଦ୍ଧି ଓ ଆଧୁନିକୀକରଣ ମାଧ୍ୟମରେ ଏଠାରେ ବ୍ରିଟିଶ୍ ଶିଳ୍ପର ମୂଳ ଯନ୍ତ୍ରପାତିର ଏକ ବଜାର ସୃଷ୍ଟି କରିବା ଦିଗରେ ବ୍ୟୟିତ ହୋଇଥିଲା ।

ଦୁଇ ଦେଶ ମଧ୍ୟରେ ଏହି ଚୁକ୍ତି ବଳରେ ଭାରତର ଶିଳ୍ପ ବିକାଶ ଧାରାରେ କିଛି କାଳ ପର୍ଯ୍ୟନ୍ତ ବ୍ରିଟିଶ୍ ଏକଚାଟିଆମାନଙ୍କର ପ୍ରଭାବ ଅବ୍ୟାହତ ରଖିବା ସମ୍ଭବ ହୋଇଥିଲା । କିନ୍ତୁ ତାହା ଭାରତରେ ବିଦେଶୀ ଏକଚାଟିଆମାନଙ୍କର ଅନ୍ୟାନ୍ୟ ପ୍ରତିଦ୍ୱନ୍ଦ୍ୱୀମାନଙ୍କର (ଆମେରିକା ଯୁକ୍ତ ରାଷ୍ଟ୍ର, ଜାପାନ୍, ପଶ୍ଚିମ ଜର୍ମାନୀ) ଅନୁପ୍ରବେଶ ବା ଭାରତୀୟ ବୁର୍ଜୁଆମାନଙ୍କର ଶକ୍ତି ବୃଦ୍ଧିକୁ ରୋକି ପାରି ନଥିଲା । ଆର୍ଥିକ ଭାବେ ଦୁର୍ବଳ ଏବଂ କାରୁକୌଶଳଗତ ସାଜସରଞ୍ଜାମ ଓ କାରିଗରୀଜ୍ଞାନ ଦିଗରୁ ବିଶେଷ ଅନଗ୍ରସର ଭାରତୀୟ ବୁର୍ଜୁଆମାନେ ସାଧାରଣତଃ ବିଦେଶୀ ପୁଞ୍ଜିପତିମାନଙ୍କ ସହିତ ଚୁକ୍ତିକୁ ଭିତ୍ତି କରି ନୂତନ ଶିଳ୍ପ ଶାଖା ନିର୍ମାଣ ପାଇଁ ମିଶ୍ର କଂପାନି ଗଠନ କରିଥିଲେ । ସ୍ୱାଧୀନତା ଲାଭର ପ୍ରଥମ ତିନି ବର୍ଷରେ ମୋଟର ଗାଡ଼ି ଓ ଟ୍ରାକ୍ଟର ସଂଯୋଜନ, ସାଇକେଲ ନିର୍ମାଣ ଓ ଉତ୍ପାଦନର ଅନ୍ୟାନ୍ୟ କ୍ଷେତ୍ରରେ ୮୮ଟି ମିଶ୍ର କଂପାନି ଗଠିତ ହୋଇଥିଲା ।

ସରକାର ରକ୍ଷାମୂଳକ ଶୁଳ୍କ ନୀତି ପ୍ରବର୍ତ୍ତନ ଏବଂ ବ୍ୟକ୍ତିଗତ ବିଦେଶୀ ପୁଞ୍ଜିର କାର୍ଯ୍ୟକଳାପ ଉପରେ କେତେକ ନିୟନ୍ତ୍ରଣ ଆରୋପ କରି ବ୍ୟକ୍ତିଗତ ସଂସ୍ଥା ଗଠନ ଦିଗରେ ଉତ୍ସାହ ଯୋଗାଇଥିଲା । ଶିଳ୍ପ ନିର୍ମାଣ ପାଇଁ ୧୯୪୮ ଖ୍ରୀଷ୍ଟାବ୍ଦରେ ୧୦ କୋଟି ଟଙ୍କାର ମୂଳଧନ ସହ ରାଷ୍ଟ୍ରୀୟ ଶିଳ୍ପ ଅର୍ଥ ନିଗମ ଗଠିତ ହୋଇଥିଲା ।

୧୯୪୮ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ ସଂବିଧାନ ସଭାରେ ପଠିତ ଜବାହାରଲାଲ ନେହରୁଙ୍କ ଶିଳ୍ପନୀତି ସଂକ୍ରାନ୍ତ ପ୍ରସ୍ତାବର ଭିତ୍ତିରେ, ବିଶେଷତଃ, ଭାରତର ଅର୍ଥନୈତିକ କର୍ମନୀତିର ଧାରାଗୁଡ଼ିକ ସୂତ୍ରବଦ୍ଧ ହୋଇଥିଲା । ଏହି ଗୁରୁତ୍ୱପୂର୍ଣ୍ଣ ଦଲିଲଟି ତଥାକଥିତ ମିଶ୍ର ଅର୍ଥନୀତି ଉନ୍ନୟନର ଧାରା ପ୍ରତିଷ୍ଠା କରିଥିଲା, ଯଦ୍ୱାରା ବିଶେଷ କେତେକ ଶିଳ୍ପ କ୍ଷେତ୍ରରେ ରାଷ୍ଟ୍ରର ଏକଚାଟିଆ ଅଧିକାର ସୁରକ୍ଷିତ ହେଲା । ଅସ୍ତ୍ରନିର୍ମାଣ, ପାରମାଣବିକ ଶକ୍ତି ଉତ୍ପାଦନ ଓ ରେଳପଥରେ ରାଷ୍ଟ୍ରର ଏକଚାଟିଆ ଅଧିକାର ପ୍ରତିଷ୍ଠିତ ହୋଇଥିଲା । ଲୌହସଂପୃକ୍ତ ଧାତୁ ଶିଳ୍ପ, କୋଇଲା ଓ ତୈଳ ଶିଳ୍ପ, ବିମାନ ନିର୍ମାଣ, କେତେକ ଧରଣର କାରିଗରୀ ଇଂଜିନିୟରିଂ ସମେତ ଭାରୀ ଶିଳ୍ପର କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ

ନୂତନ ସଂସ୍ଥା ଗଠନର ଅଧିକାର କେବଳ ରାଷ୍ଟ୍ରର ଅଧିକାରାଧୀନ ଥିଲା । ତା'ଛଡ଼ା ଭାରୀ ଓ ଲଘୁ ଶିଳ୍ପର ଆଉରି ୧୭ଟି ଗୁରୁତ୍ୱପୂର୍ଣ୍ଣ ଶାଖା ସରକାରୀ ପରିକଳ୍ପନା ଓ ନିୟନ୍ତ୍ରଣକୁ ଆସିଥିଲା ।

୧୯୪୮ ଖ୍ରୀଷ୍ଟାବ୍ଦର ଜୁଲାଇ ୧ରେ ଭାରତୀୟ ରିଜର୍ଭ ବ୍ୟାଙ୍କ୍‌ର ଜାତୀୟକରଣ ଏବଂ ୧୯୪୯ ଖ୍ରୀଷ୍ଟାବ୍ଦରେ ବ୍ୟାଙ୍କିଙ୍ଗ୍ କଂପାନି ନିୟମ ପ୍ରଣୟନ ମାଧ୍ୟମରେ ବ୍ୟକ୍ତିଗତ ଇନ୍‌ଭେଷ୍ଟର୍ ବ୍ୟାଙ୍କ୍‌ଗୁଡ଼ିକ ଉପରେ ସରକାରୀ ନିୟନ୍ତ୍ରଣ ଜାରି କରିବା ଫଳରେ ରାଷ୍ଟ୍ରାୟତ୍ତ ପୁଞ୍ଜିବାଦର ନୂତନ ଗତିପଥ ପରିଷ୍କାର ହୋଇ ଉଠିଥିଲା ।

ପୂର୍ବତନ ଔପନିବେଶିକ ସରକାରୀ ସଂପତ୍ତିର (ପ୍ରଧାନ ଅସ୍ତ୍ରନିର୍ମାଣ କାରଖାନା, ରେଳପଥ ଓ ବିଦ୍ୟୁତ୍ ଷ୍ଟେସନସମୂହ) ଭିତ୍ତିରେ ନିର୍ମିତ ରାଷ୍ଟ୍ରୀୟ କ୍ଷେତ୍ରରେ ୧୯୪୮ ଖ୍ରୀଷ୍ଟାବ୍ଦରେ ମୋଟ ଶିଳ୍ପୋତ୍ପାଦନର ମାତ୍ର ଶତକଡ଼ା ୬ ଭାଗ ଉତ୍ପନ୍ନ ହୋଇଥିଲା ।

ନେହରୁ ସରକାରଙ୍କ କର୍ତ୍ତୃକ ରାଷ୍ଟ୍ରାୟତ୍ତ ପୁଞ୍ଜିବାଦ ପ୍ରତିଷ୍ଠାର ଏହି ପ୍ରାଥମିକ ଉଦ୍ୟୋଗର ସୀମାବଦ୍ଧତା ସତ୍ତ୍ୱେ ଏକଥା ସ୍ମରଣୀୟ ଯେ, ତାଙ୍କ ଅର୍ଥନୈତିକ କର୍ମନୀତି ଥିଲା ଔପନିବେଶିକ ସରକାରର ପ୍ରଚେଷ୍ଟା ଠାରୁ ମୌଳିକ ଭାବେ ଭିନ୍ନ ।

## ଡୋମିନିଅନ ସରକାରର ବୈଦେଶିକ ନୀତି

ଡୋମିନିଅନ ସରକାରର ବୈଦେଶିକ ନୀତି ମଧ୍ୟରେ ଜାତୀୟ ସାର୍ବଭୌମତ୍ୱର ନୀତି ସ୍ପଷ୍ଟ ହୋଇ ଉଠିଥିଲା । ସେଇ ୧୯୪୬ ମସିହାର ସେପ୍‌ଟେମ୍ବର ୭ ତାରିଖରେ ଔପନିବେଶିକ ଭାରତର ଅନ୍ତର୍ବର୍ତ୍ତୀକାଳୀନ ସରକାର ନିରପେକ୍ଷ ନୀତି ପ୍ରତି ସମର୍ଥନ ଦେବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାରର ସାମରିକ ମେଣ୍ଟରେ ଯୋଗ ଦେବାକୁ ଅସ୍ୱୀକାର କରିଥିଲା । ସ୍ୱାଧୀନତା ଲାଭ ପରେ ଶାନ୍ତି ଓ ସକ୍ରିୟ ନିରପେକ୍ଷତାର ନୀତିକୁ ସଂପ୍ରସାରିତ ଓ ବିକଶିତ କରିବା ଦିଗରେ ପୂର୍ଣ୍ଣ ସୁଯୋଗ ଦିଆଯାଇଥିଲା । ଭାରତକୁ କୂଟନୈତିକ ବିଚ୍ଛିନ୍ନତାର କୌଣସି ପର୍ଯ୍ୟାୟକୁ ଅତିକ୍ରମ କରିବାକୁ ହୋଇ ନଥିଲା ଏବଂ ତେଣୁ ସକ୍ରିୟ ବୈଦେଶିକ ନୀତି ଅନୁସରଣ ପକ୍ଷରେ ତା'ର ଅବସ୍ଥାନ ଥିଲା ଖୁବ୍ ଅନୁକୂଳ : ୧୯୫୦ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ୩୯ଟି ରାଷ୍ଟ୍ର ସହିତ ସେ କୂଟନୈତିକ ସଂପର୍କ ସ୍ଥାପନ କରିଥିଲା ।

୧୯୪୮ ଖ୍ରୀଷ୍ଟାବ୍ଦରେ ଶାସକ ଦଳ କଂଗ୍ରେସର ଜୟପୁର ଅଧିବେଶନରେ ଏକ ବିଶେଷ ପ୍ରସ୍ତାବରେ ଭାରତର ବୈଦେଶିକ ନୀତି ବ୍ୟାଖ୍ୟାୟିତ ହୋଇଥିଲା । ଏହା ଥିଲା ଔପନିବେଶିକତା ବିରୋଧୀ ଏବଂ ଶାନ୍ତି, ନିରପେକ୍ଷତା ଓ ମେଣ୍ଟବହିର୍ଭୂତ ନୀତି ।

ଜାତି ସଂଘରେ ଭାରତୀୟ ପ୍ରତିନିଧି ଜାତିସଂଘର ଅନୁମୋଦନ କ୍ରମେ ପରରାଷ୍ଟ୍ର ଶାସିତ ଦେଶଗୁଡ଼ିକୁ ଜାତି ସଂଘର ଟ୍ରଷ୍ଟିସିପ୍ ଅଧୀନରେ ରଖିବାକୁ ଆହ୍ୱାନ ଦେଇଥିଲେ । ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟବାଦ ବିରୁଦ୍ଧରେ ସଂଗ୍ରାମ ପାଇଁ ଗଠିତ ଜାତିସଂଘର ବିଭିନ୍ନ କମିଟିରେ ଭାରତୀୟ ପ୍ରତିନିଧିମାନଙ୍କର କ୍ରିୟାକଳାପ ମଧ୍ୟରେ ଭାରତର ବୈଦେଶିକ ନୀତିର ଔପନିବେଶିକତା ବିରୋଧୀ ଦିଗଗୁଡ଼ିକ ପ୍ରକଟିତ ହୋଇଥିଲା ।

୧୯୪୭ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରେ "ଏସିଆରେ ପାରସ୍ପରିକ ସଂପର୍କ ସଂକ୍ରାନ୍ତ ସମ୍ମିଳନୀ" ଅନୁଷ୍ଠିତ ହୋଇଥିଲା । ସେଠାରେ ୩୨ଟି ରାଷ୍ଟ୍ରର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଏହି ସମ୍ମିଳନୀର ଆହ୍ୱାନରେ ଭାରତ ଏସୀୟ ଦେଶଗୁଡ଼ିକ ସହିତ ବ୍ୟାପକ ସଂଯୋଗ ପ୍ରତିଷ୍ଠାର ପ୍ରଥମ ଉଦ୍ୟୋଗ ଗ୍ରହଣ କରିଥିଲା । କିନ୍ତୁ ସାଧାରଣ ରାଜନୈତିକ ଲକ୍ଷ୍ୟ ନଥିବାରୁ ଏହା ଦ୍ୱାରା କାର୍ଯ୍ୟକର ଫଳ ଲାଭର ସମ୍ଭାବନା ଥିଲା ଖୁବ୍ ସୀମିତ ।

ନେହରୁ ସରକାର ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସମାଜବାଦୀ ଦେଶ ସହିତ ଗୁରୁତ୍ୱପୂର୍ଣ୍ଣ ସଂପର୍କ ପ୍ରତିଷ୍ଠା କରିଥିଲେ । ଭାରତ ଥିଲା ଚୀନ୍ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରକୁ ସ୍ୱୀକୃତିଦାତାମାନଙ୍କ ମଧ୍ୟରେ ଅନ୍ୟତମ ପ୍ରଥମ ଦେଶ ।

ତେବେ ଏହି ସମୟରେ ଭାରତର ବୈଦେଶିକ ନୀତିରେ କେତେକ ଦୋଦୁଲ୍ୟମାନତା ଓ ଅସଙ୍ଗତି ଦେଖା ଦେଇଥିଲା । ଏହା ଅବଶ୍ୟ ସ୍ୱଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଏବଂ, ବିଶେଷତଃ, ବ୍ରିଟେନ୍‌ର ଚାପ ହେତୁ ଘଟିଥିଲା । ପ୍ରସଙ୍ଗତଃ, ସ୍ମରଣୀୟ ଯେ, ଭାରତର ଅର୍ଥନୀତି ଏବଂ ରାଜନୀତିରେ ସେତେବେଳେ ବ୍ରିଟେନ୍‌ର ପର୍ଯ୍ୟାପ୍ତ ପ୍ରଭାବ ବିଦ୍ୟମାନ ଥିଲା । ଏହିସବୁ ଅସଙ୍ଗତିର ଅନ୍ୟତମ ଦୃଷ୍ଟାନ୍ତ ହେଲା : ଭାରତ ସରକାର ହୋ ଚି ମିନ ସରକାରକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ମାଳୟରେ ବ୍ରିଟିଶ୍ ନୀତିକୁ ମଧ୍ୟ ସମର୍ଥନ କରୁଥିଲେ । ୧୯୪୯ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରେ ଇଣ୍ଡୋନେସିଆ ସମସ୍ୟା ଆଲୋଚନା ପାଇଁ ଆହୂତ ଆନ୍ତର୍ଜାତିକ ସମ୍ମେଳନରେ ଭାରତ ଜାତି ସଂଘରେ ଗୃହୀତ ଆନୁଷଙ୍ଗିକ ପ୍ରସ୍ତାବଟିକୁ (ଯେଉଁ ପ୍ରସ୍ତାବରେ ଔପନିବେଶିକତା ବିରୁଦ୍ଧରେ ସଂଗ୍ରାମକୁ କାର୍ଯ୍ୟତଃ କୌଣସି ସାହାଯ୍ୟ ଦିଆଯାଇ ନଥିଲା) ଅନୁମୋଦନ କରିବା ଛଡ଼ା ଅଧିକ କିଛି କରି ନଥିଲା ।

ଏହି କାଳ ପର୍ଯ୍ୟାୟରେ ଭାରତ ତା'ର ଶିଳ୍ପାୟନରେ ଆମେରିକା ଯୁକ୍ତ ରାଷ୍ଟ୍ରର ଅର୍ଥ ଓ କାରୁକୌଶଳଗତ ସାହାଯ୍ୟ ଲାଭ କରିବା ଆଶାରେ ଆମେରିକା ଯୁକ୍ତ ରାଷ୍ଟ୍ର ଆଡ଼କୁ ଡ଼ଳିଥିଲା । ଭାରତ ଆମେରିକା ମଧ୍ୟରେ ସଂପର୍କକୁ ସଂପ୍ରସାରଣ କରି ନେହରୁ ଭାରତ ଉପରେ ବ୍ରିଟେନ୍‌ର ଚାପକୁ କମାଇବା ପାଇଁ ଚେଷ୍ଟା କରିଥିଲେ । ୧୯୪୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୧ ତାରିଖରୁ ନଭେମ୍ବର ୭ ତାରିଖ ପର୍ଯ୍ୟନ୍ତ ନେହରୁ ଆମେରିକା ଯୁକ୍ତ ରାଷ୍ଟ୍ର ଭ୍ରମଣ କରିଥିଲେ । ଏହା ଦ୍ୱାରା ଦୁଇ ଦେଶ ରାଜନୈତିକ ଭାବେ ନିକଟତର ହେବାରେ ସଫଳତା ଅର୍ଜିତ ନହେଲେ ମଧ୍ୟ ପରବର୍ତ୍ତୀ ବର୍ଷଗୁଡ଼ିକରେ ସେମାନଙ୍କ ମଧ୍ୟରେ ବ୍ୟାପକ ଅର୍ଥନୈତିକ ସହଯୋଗିତାର ପଥ ପ୍ରଶସ୍ତ ହୋଇଥିଲା । ଏହା ଭାରତରେ ଆମେରିକା ଯୁକ୍ତ ରାଷ୍ଟ୍ରର ପୁଞ୍ଜି ପ୍ରବେଶ କରିବାକୁ ଉତ୍ସାହ ଯୋଗାଇଥିଲା ।

ଭାରତୀୟ ବୈଦେଶିକ ନୀତି କ୍ଷେତ୍ରରେ କାଶ୍ମୀର ସମସ୍ୟା ହେତୁ ପାକିସ୍ତାନ ସହିତ ଭାରତର ସଂପର୍କ ଖୁବ୍ ଉତ୍ତେଜନାପୂର୍ଣ୍ଣ ଥିଲା । କାଶ୍ମୀର ସମସ୍ୟା ଜାତି ସଂଘରେ ଉତ୍‌ଥାପିତ ହେବାରୁ ବ୍ରିଟିଶ୍– ଆମେରିକାନ୍ ମେଣ୍ଟ ପକ୍ଷରେ ମଧ୍ୟସ୍ଥ ହିସାବରେ କାଶ୍ମୀର ସଂପର୍କିତ ଜାତିସଂଘ କମିସନକୁ ଉଭୟ ଡୋମିନିଅନର ଆଭ୍ୟନ୍ତରୀଣ କ୍ଷେତ୍ରରେ ହସ୍ତକ୍ଷେପ ଯନ୍ତ୍ର ରୂପେ ବ୍ୟବହାର କରିବାର ସୁଯୋଗ ଦେଖା ଦେଇଥିଲା । କାଶ୍ମୀରରେ ଗଣଭୋଟ ଅନୁଷ୍ଠାନର ଜାତି ସଂଘ ପ୍ରସ୍ତାବକୁ ବାରମ୍ବାର ପ୍ରତ୍ୟାଖ୍ୟାନ କରି ଭାରତ ଯେଉଁ ଦୃଢ଼ ପଦକ୍ଷେପ ନେଇଥିଲା, ତାହା ସୋଭିଏତ୍ ୟୁନିଅନ୍, ଚୀନ୍, ଭାରତ, ପାକିସ୍ତାନ ଓ ଆଫ୍‌ଗାନିସ୍ତାନର ସୀମାନ୍ତବର୍ତ୍ତୀ ବିଶ୍ୱର ଅନ୍ୟତମ ଅତି ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ କାଶ୍ମୀରକୁ ନ୍ୟାଟୋର ଏକ ଘାଟିରେ ପରିଣତ କରିବାର ଅପଚେଷ୍ଟାକୁ ବ୍ୟର୍ଥ କରି ଦେଇଥିଲା ।

# ଶ୍ରେଣୀ ସଂଗ୍ରାମର ତୀବ୍ରତା ବୃଦ୍ଧି

ଭାରତର ରାଜନୈତିକ ସ୍ୱାଧୀନତା ଲାଭ ଥିଲା ଦେଶର ଅର୍ଥନୈତିକ ଓ ସାମାଜିକ ପ୍ରଗତିର ଏକ ଗୁରୁତ୍ୱପୂର୍ଣ୍ଣ ପୂର୍ବସର୍ତ୍ତ । କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ ବର୍ଷଗୁଡ଼ିକରେ ଭାରତୀୟ ସମାଜର ବିଭଶାଳୀ ସଂପ୍ରଦାୟ ହିଁ କେବଳ ଏହି ପ୍ରଗତିର ଫଳ ଭୋଗ କରିବାର ସୁଯୋଗ ଲାଭ କରିଥିଲେ । ୧୯୪୭-୧୯୪୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନସାଧାରଣଙ୍କ ଜୀବନଯାତ୍ରାର ମାନ ଯଥେଷ୍ଟ ତଳକୁ ନଇଁ ଆସିଥିଲା ଏବଂ ଫଳରେ, ଦେଶରେ ସାମାଜିକ ଉତ୍ତେଜନା ଓ ଶ୍ରେଣୀ ସଂଗ୍ରାମର ତୀବ୍ରତା ବୃଦ୍ଧି ପାଇଥିଲା ।

## ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସ – କମ୍ୟୁନିଷ୍ଟ ଆନ୍ଦୋଳନର ବାମପନ୍ଥୀ ବିଚ୍ୟୁତି

୧୯୪୮ ଖ୍ରୀଷ୍ଟାବ୍ଦ ଫେବୃଆରୀ ଶେଷ ଓ ମାର୍ଚ୍ଚର ପ୍ରାରମ୍ଭରେ କଲିକତାରେ ଅନୁଷ୍ଠିତ ଭାରତର କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସର ପ୍ରସ୍ତାବଗୁଡ଼ିକ ୧୯୪୮-୧୯୪୯ ଖ୍ରୀଷ୍ଟାବ୍ଦର ସଂଗଠିତ ଶ୍ରମିକ କୃଷକ ଆନ୍ଦୋଳନ ଉପରେ ଗଭୀର ପ୍ରଭାବ ପକାଇଥିଲା । କଂଗ୍ରେସରେ ଉପସ୍ଥିତ ପ୍ରତିନିଧିମାନେ ପାର୍ଟିର ୮୯ ହଜାର ସଦସ୍ୟମାନଙ୍କର ପ୍ରତିନିଧିତ୍ୱ କରିଥିଲେ ଏବଂ ପାର୍ଟିର ସଦସ୍ୟମାନଙ୍କର ଏହି ସଂଖ୍ୟାଟି ପାର୍ଟିର ଉଲ୍ଲେଖନୀୟ ଅଭିବୃଦ୍ଧିର ସୂଚନା ଦେଇଥିଲା । ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ପୂରଣଚାନ୍ଦ ଯୋଶୀଙ୍କ ରିପୋର୍ଟଟି ଏହି କଂଗ୍ରେସରେ କଠୋର ସମାଲୋଚନାର ସମ୍ମୁଖୀନ ହୋଇଥିଲା । ଯୋଶୀଙ୍କ ସମେତ ପାର୍ଟିର ନେତୃବୃନ୍ଦ ଦକ୍ଷିଣପନ୍ଥୀ ସୁବିଧାବାଦୀ ଓ ଜାତୀୟତାବାଦୀ ବିଚ୍ୟୁତିର ଅଭିଯୋଗ ଦ୍ୱାରା ଅଭିଯୁକ୍ତ ହୋଇଥିଲେ ।

ଏକ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ କରିବାକୁ ଏହି କଂଗ୍ରେସ ବିପ୍ଳବୀ ଶକ୍ତିମାନଙ୍କର ପ୍ରଧାନ କାର୍ଯ୍ୟ ରୂପେ ଦର୍ଶାଇଥିଲା ଏବଂ ଏହି କର୍ମସୂଚୀରେ କୁହାଯାଇଥିଲା : ସୁଦୂର ପ୍ରସାରୀ ସାମାଜିକ ପରିବର୍ତ୍ତନର ସୂଚକ ରୂପେ ବିନା କ୍ଷତିପୂରଣରେ ଜମିଦାରି ଉଚ୍ଛେଦ ; ସମସ୍ତ ବ୍ରିଟିଶ୍ ଶିଳ୍ପ ସଂସ୍ଥା ସମେତ ପ୍ରଧାନ ଶିଳ୍ପ ଶାଖା ଓ ବ୍ୟାଙ୍କ୍ର ଜାତୀୟକରଣ ; ନିମ୍ନତମ ମଜୁରି ଓ ୮ ଘଣ୍ଟିଆ କର୍ମ ଦିବସ ପ୍ରବର୍ତ୍ତନ ; କାରଖାନାରେ ଶ୍ରମିକମାନଙ୍କର ନିୟନ୍ତ୍ରଣ ପ୍ରତିଷ୍ଠା ; ଦେଶୀୟ ରାଜ୍ୟଗୁଡ଼ିକର ବିଲୋପ ଓ ଜାତୀୟ କର୍ମନୀତି ଅନୁଯାୟୀ ସେସବୁର ପ୍ରଶାସନିକ ପୁନର୍ଗଠନ ; ଭାରତର ସମସ୍ତ ଜାତିସତ୍ତାର ଆତ୍ମନିୟନ୍ତ୍ରଣ ଅଧିକାର ଘୋଷଣା ; ଜାତିଗତ ଓ ଅନ୍ୟାନ୍ୟ ସମସ୍ତ ବୈଷମ୍ୟମୂଳକ ବ୍ୟବସ୍ଥାର ଉତ୍ଖାତ ଆଦି । ଏହି କଂଗ୍ରେସ ଭାରତ ବିଭାଗକୁ ଏକ ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ର ହିସାବରେ ନିନ୍ଦା କରିଥିଲା ଏବଂ ବ୍ରିଟିଶ ସାମ୍ରାଜ୍ୟବାଦ ସହିତ ସଂପର୍କକୁ ସଂପୂର୍ଣ୍ଣ ଛେଦ କରିବାକୁ ଦାବି ଜଣାଇଥିଲା ।

ଗଣତାନ୍ତ୍ରିକ ଐକ୍ୟର ଏହି କର୍ମକୌଶଳ ଘୋଷଣା ସତ୍ତ୍ୱେ ଜାତୀୟ ଶକ୍ତିମାନଙ୍କ ପ୍ରତି ଅଧିକାଂଶ ପ୍ରତିନିଧି ବାମପନ୍ଥୀ ସଂକୀର୍ଣ୍ଣତାବାଦକୁ ସମର୍ଥନ କରିଥିଲେ । ନେହରୁ ସରକାର ସାମ୍ରାଜ୍ୟବାଦୀମାନଙ୍କ ପକ୍ଷକୁ ଗ୍ଲଳି ଯାଇଥିବାର ଅଭିଯୋଗ କରାଯାଇଥିଲା । ବି.ଟି. ରଣଦିଭେଙ୍କ ନେତୃତ୍ୱରେ ନବନିର୍ବାଚିତ ନେତୃମଣ୍ଡଳୀ କାର୍ଯ୍ୟତଃ ସଶସ୍ତ୍ର ସଂଗ୍ରାମ ଜରିଆରେ କଂଗ୍ରେସ ସରକାରକୁ ଉତ୍ଖାତ କରିବାକୁ ଆହ୍ୱାନ ଦେଇଥିଲେ ।

ଭାରତର କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦଙ୍କ ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ବିଚ୍ୟୁତି ଫଳରେ ଦେଶ ସାରା କମ୍ୟୁନିଷ୍ଟ ଆନ୍ଦୋଳନ ଭୟଙ୍କର ଭାବେ କ୍ଷତିଗ୍ରସ୍ତ ହେଲା । କେତେକ ଅଞ୍ଚଳରେ ପାର୍ଟି ଧ୍ୱଂସ ପାଇ ଯାଇଥିଲା ଏବଂ ଜନସାଧାରଣଙ୍କ ମଧ୍ୟରୁ ରାଜନୈତିକ ଭାବେ ସଚେତନ ଅଂଶର କେତେକ ଗୋଷ୍ଠୀଙ୍କର ସମର୍ଥନ ହରେଇଥିଲା ।

ଦେଶର ଦକ୍ଷିଣପନ୍ଥୀ ଶକ୍ତିମାନେ ସେତେବେଳେ କମ୍ୟୁନିଷ୍ଟମାନଙ୍କ ଉପରେ ନିର୍ବିଘ୍ନରେ ଆକ୍ରମଣ ଚଳେଇବାକୁ ଲାଗିଲେ । ଏଭଳି ଅବସ୍ଥାରେ କମ୍ୟୁନିଷ୍ଟ ପାର୍ଟି ଓ ତା'ର ନେତୃତ୍ୱାଧୀନ ଗଣ ସଂଗଠନଗୁଡ଼ିକ ଆତ୍ମଗୋପନ କରିବାକୁ ବାଧ୍ୟ ହୋଇଥିଲେ । କେତେକ ରାଜ୍ୟରେ (ମାନ୍ଦ୍ରାଜ, ପଶ୍ଚିମ ବଙ୍ଗ, ତ୍ରିଭାଙ୍କୁର-କୋଚିନ) ସରକାର ପାର୍ଟିକୁ ବେଆଇନ୍ ଘୋଷଣା କରିଥିଲା ଏବଂ କମ୍ୟୁନିଷ୍ଟ ସଂଗଠନଗୁଡ଼ିକର ସକ୍ରିୟ କର୍ମୀମାନଙ୍କ ବିରୁଦ୍ଧରେ ବ୍ୟାପକ ନିର୍ଯାତନ ଆରମ୍ଭ ହୋଇ ଯାଇଥିଲା । ଅବିଳମ୍ବେ ପାର୍ଟିର ପଲିଟ ବ୍ୟୁରୋ ସଦସ୍ୟବୃନ୍ଦ, ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଓ କୃଷକ ସଭାର ବହୁ ସଦସ୍ୟ ପୁଲିସ୍ ଦ୍ୱାରା ଗିରଫ୍ ହୋଇଥିଲେ ।

ଆତ୍ମଗୋପନ ଅବସ୍ଥାରେ ସଂଗ୍ରାମ ପରିଗ୍ଳନାର କଠୋର ପରିସ୍ଥିତିରେ ପାର୍ଟିର ସୁଦୃଢ଼ କୋଷ କେନ୍ଦ୍ରଟି ଇସ୍‌ପାତ ଭଳି କଠିନ ହୋଇ ଉଠିଲେ ମଧ୍ୟ ଗଣ ସଂଗଠନଗୁଡ଼ିକର କ୍ରିୟାକଳାପ ମାରାତ୍ମକ ଭାବେ ବ୍ୟାହତ ହୋଇଥିଲା ।

## ଶ୍ରମିକ ଓ କୃଷକ ଆନ୍ଦୋଳନ

କମ୍ୟୁନିଷ୍ଟ ପାର୍ଟି ଓ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ବିରୁଦ୍ଧରେ ଅନୁସୃତ ଦମନମୂଳକ ବ୍ୟବସ୍ଥା ହେତୁ ଭାରତର ଶ୍ରମିକ ଶ୍ରେଣୀ ସଭା ଓ ଧର୍ମଘଟ ମାଧ୍ୟମରେ ପ୍ରତିବାଦ ଜଣାଇବାକୁ ଲାଗିଲା । କିନ୍ତୁ ଏହି ସମୟରେ ଧର୍ମଘଟ ଆନ୍ଦୋଳନର ମାତ୍ରା କମିଯିବାର ଲକ୍ଷ୍ୟ କରାଯାଏ : ୧୯୪୮ ଖ୍ରୀଷ୍ଟାବ୍ଦରେ ୧୦ ଲକ୍ଷ ୫୦ ହଜାର ଶ୍ରମିକ ଧର୍ମଘଟରେ ଯୋଗ ଦେଇଥିଲେ ଏବଂ ୭୮ ଲକ୍ଷ କର୍ମ ଦିବସ ନଷ୍ଟ ହୋଇଥିଲା । କିନ୍ତୁ, ୧୯୪୯ ଖ୍ରୀଷ୍ଟାବ୍ଦରେ ୬ ଲକ୍ଷ ୮୫ ହଜାର ଶ୍ରମିକ ଧର୍ମଘଟରେ ଯୋଗ ଦେଇଥିଲେ ଏବଂ ୬୭ ଲକ୍ଷ କର୍ମଦିବସ ନଷ୍ଟ ହୋଇଥିଲା । ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସଂଗ୍ରାମର ଏହି ମାନ୍ଦାବସ୍ଥା କେବଳ ଶ୍ରେଣୀଗତ କ୍ଳାନ୍ତି, କର୍ତ୍ତୃପକ୍ଷଙ୍କ ନିଷ୍ଠୁର ଅବଦମନ ଓ କମ୍ୟୁନିଷ୍ଟ ଆନ୍ଦୋଳନର ଆଭ୍ୟନ୍ତରୀଣ ପରିସ୍ଥିତି ପାଇଁ ଘଟି ନଥିଲା, ଘଟିଥିଲା ଖୋଦ୍ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ବିଭାଜନ ହେତୁ ।

୧୯୪୭ ଖ୍ରୀଷ୍ଟାବ୍ଦ ମେ ମାସରେ ଜାତୀୟ କଂଗ୍ରେସର ଉଦ୍ୟୋଗରେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଗଠିତ ହୋଇଥିଲା ଏବଂ ଏହାର ନେତୃବୃନ୍ଦ ୧୯୪୮ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ କଂଗ୍ରେସ କାର୍ଯକାରୀ କମିଟିର ସିଦ୍ଧାନ୍ତ (ଶିଳ୍ପରେ ଶାନ୍ତି ରକ୍ଷା ପାଇଁ ଶ୍ରମିକମାନଙ୍କୁ ନିବେଦନ) ପ୍ରତି ଅକୁଣ୍ଠ ସମର୍ଥନ ଦେଇଥିଲେ । ୧୯୪୮ ଖ୍ରୀଷ୍ଟାବ୍ଦରେ ବିଭିନ୍ନ ସମାଜବାଦୀ ଦଳର ପ୍ରଭାବାଧୀନ "ହିନ୍ଦ୍ ମଜଦୁର ସଭା" ଓ ସଂଯୁକ୍ତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ନାମକ ଆଉରି ଦୁଇଟି ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର ଗଠିତ ହୋଇଥିଲା । ଶେଷୋକ୍ତ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ରଟି ପଶ୍ଚିମ ବଂଗର ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକୁ ମୁଖ୍ୟତଃ ଐକ୍ୟବଦ୍ଧ କରିଥିଲା ।

ତିନିଟି ଟ୍ରେଡ୍‌ୟୁନିଅନ୍ ସଂଗଠନ ପ୍ରତିଷ୍ଠିତ ହେଲା ପରେ ମଧ୍ୟ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍

କଂଗ୍ରେସ ସେତେବେଳେ ଭାରତୀୟ ଶ୍ରମଜୀବୀମାନଙ୍କର ବୃହତ୍ତମ ସଂଗଠନ ଥିଲା । ୧୯୪୯ ଖ୍ରୀଷ୍ଟାବ୍ଦରେ ବମ୍ବେରେ ଅନୁଷ୍ଠିତ ଏହାର ଅଧିବେଶନରେ ତାହା ପ୍ରମାଣିତ ହୋଇଥିଲା । ଏହି ସମୟର ବୃହତ୍ତମ ଧର୍ମଘଟଗୁଡ଼ିକ ମଧ୍ୟରେ କୋଏମ୍ବାଟୋରରେ କେଇ ମାସ ଧରି ଚାଲିଥିବା ସୂତାକଳ ଶ୍ରମିକ ଏବଂ କଲିକତା, ବମ୍ବେ ଓ ଅନ୍ୟାନ୍ୟ ଶିଳ୍ପ କେନ୍ଦ୍ରର ଅଫିସ କର୍ମଚାରୀମାନଙ୍କ ଧର୍ମଘଟ ଉଲ୍ଲେଖଯୋଗ୍ୟ । କଠିନ ପରିସ୍ଥିତି ସତ୍ତ୍ୱେ କେତେକ ଧର୍ମଘଟ ସଫଳ ହୋଇଥିଲା । ସାରା ବର୍ଷ ଧରି ଚାଲୁ ରହିଥିବା କେତେକ ସଂସ୍ଥାର କାର୍ଯ୍ୟ ଦିନ ହ୍ରାସ ସମେତ କେତେକରେ ମଜୁରି ବୃଦ୍ଧି ଓ ବର୍ଦ୍ଧମାନ ଦ୍ରବ୍ୟ ମୂଲ୍ୟ ଦୃଷ୍ଟିରୁ ମହଙ୍ଗା ଭତ୍ତା ଆଦାୟ କରାଯାଇଥିଲା ।

୧୯୪୮-୧୯୪୯ ଖ୍ରୀଷ୍ଟାବ୍ଦରେ ଭାରତୀୟ ଶ୍ରମ ଆଇନ୍‌ର ଭିତ୍ତି ସ୍ୱରୂପ ଗୃହୀତ କେତେକ ଆଇନ୍ ଥିଲା ଶ୍ରମିକ ଶ୍ରେଣୀର ସଂଗ୍ରାମର ଗୁରୁତ୍ୱପୂର୍ଣ୍ଣ ଫଳ ସ୍ୱରୂପ । ଏସବୁ ମଧ୍ୟରେ ଥିଲା: ସର୍ବନିମ୍ନ ମଜୁରି ଆଇନ୍, କର୍ମଚାରୀମାନଙ୍କର ରାଷ୍ଟ୍ରୀୟ ବିମା ଆଇନ୍, ଆଠଘଣ୍ଟିଆ କର୍ମଦିବସ ସଂକ୍ରାନ୍ତ ଆଇନ୍, ରାଷ୍ଟ୍ର ତରଫରୁ ମଧ୍ୟସ୍ଥତା, ଶିଳ୍ପ ବିରୋଧ ଆଇନ୍ ।

ଏହା ପରେ ସରକାରୀ ଭାବେ ଗୃହୀତ ଶ୍ରମ ଆଇନ୍‌କୁ ବାସ୍ତବାୟିତ କରିବା ଦିଗରେ ଟ୍ରେଡ୍‌ୟୁନିଅନ୍ ସଂଗଠନମାନେ ଉଦ୍ୟୋଗ କରିଥିଲେ ।

୧୯୪୭-୧୯୪୯ ଖ୍ରୀଷ୍ଟାବ୍ଦରେ ଶ୍ରମିକ ଶ୍ରେଣୀର ସଂଗ୍ରାମ ବ୍ୟତୀତ ସେତେବେଳେ ଦେଶର କେତେକ ଅଞ୍ଚଳରେ ଭାରତୀୟ କୃଷକ ସମାଜର କେତେକ ସ୍ତର ବ୍ୟାପକ ଆନ୍ଦୋଳନ ଆରମ୍ଭ କରିଥିଲେ । ଭଇତ ଚାଷୀମାନଙ୍କର ନିମ୍ନତମ ସ୍ତରର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଏହି ଧରଣର କାର୍ଯ୍ୟକଳାପ ଅତ୍ୟନ୍ତ ବୃଦ୍ଧି ପାଇଥିଲା । ସେମାନେ ଖଜଣା ହ୍ରାସ, ଜିନିଷପତ୍ର ପରିବର୍ତ୍ତେ ଅର୍ଥ ଦ୍ୱାରା ଖଜଣା ଦାନ, ଭୂମିସ୍ୱତ୍ୱ ଉପରେ ବଂଶାନୁକ୍ରମିକ ଅଧିକାର ଆଦି ଦାବି କରିଥିଲେ । ଏହି ଲକ୍ଷ୍ୟରେ ପଶ୍ଚିମ ବଂଗ, ବିହାର, ବମ୍ବେ, ପଞ୍ଜାବ ଓ ଅନ୍ୟାନ୍ୟ ପ୍ରଦେଶର ଭାଗ ଚାଷୀମାନେ ଲଢ଼େଇ ଆରମ୍ଭ କରି ଦେଇଥିଲେ । ବଡ଼ ବଡ଼ ଜମିଦାର ଓ ଧନୀ କୃଷକମାନଙ୍କ ଦ୍ୱାରା ଘନ ଘନ ପ୍ରଜାମାନଙ୍କୁ ଉଚ୍ଛେଦ କରିବା ଘଟଣାବଳୀ ପ୍ରଧାନତଃ ଭଇତ ଚାଷୀମାନଙ୍କର ଏହି ଆନ୍ଦୋଳନକୁ ଇନ୍ଧନ ଯୋଗାଇଥିଲା ।

ପ୍ରାଦେଶିକ ସରକାରମାନଙ୍କ କର୍ତ୍ତୃକ ବିଧାନ ସଭାରେ ଉପସ୍ଥାପିତ ଜମିଦାରି ଉଚ୍ଛେଦର ଚିଠା ଆଇନ୍‌ଟିକୁ ଦ୍ରୁତ କାର୍ଯ୍ୟକାରୀ କରିବାକୁ ଦାବି କରି ଭଇତ ଚାଷୀମାନେ ଧନୀ ଅଂଶ ସମେତ କୃଷକମାନଙ୍କର ବ୍ୟାପକ ସ୍ତର ଆନ୍ଦୋଳନ ଆରମ୍ଭ କରିଥିଲେ । ଯୁକ୍ତ ପ୍ରଦେଶର କେତୋଟି ଜିଲ୍ଲା (ବଲିଆ), ପେପ୍‌ସୁ ଓ ଦେଶର ଦକ୍ଷିଣାଂଶରେ କୃଷକମାନଙ୍କ ଉଦ୍ୟୋଗରେ ଜମିଦାରମାନଙ୍କର ଜମି ଦଖଲ ଆରମ୍ଭ ହୋଇଥିଲା ।

ଯେଉଁ ତେଲେଙ୍ଗାନାରେ ୧୯୪୬ ଖ୍ରୀଷ୍ଟାବ୍ଦରୁ କୃଷକ ଅଭ୍ୟୁତ୍ଥାନ ଆରମ୍ଭ ହୋଇ ଚାଲି ଆସିଥିଲା ସେଠାରେ ଏହି ଧରଣର କ୍ରିୟାକଳାପ ଶୀର୍ଷଦେଶରେ ପହଞ୍ଚିଥିଲା । ଏହି ପ୍ରଦେଶର ଯେଉଁସବୁ ଏଲକାରେ ଆନ୍ଦୋଳନ ସଫଳ ହୋଇଥିଲା ସେଠାରେ କୃଷକମାନେ ସେମାନଙ୍କ ଦ୍ୱାରା ଗଠିତ ଗ୍ରାମ ପରିଷଦ ବା ପଞ୍ଚାୟତ ମାଧ୍ୟମରେ କୃଷି ସଂସ୍କାର, ବଡ଼ ବଡ଼ ଜମିଦାରମାନଙ୍କ ଜମିଜମାର ପରିମାଣ ହ୍ରାସ ଏବଂ ଏହା ଦ୍ୱାରା ମିଳୁଥିବା ଜମିକୁ କ୍ଷୁଦ୍ର ଚାଷୀମାନଙ୍କ ମଧ୍ୟରେ ପୁନର୍ବଣ୍ଟନ କରାଯାଇଥିଲା । ୧୯୪୮ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଏହି ଭାବେ ପୁନର୍ବଣ୍ଟିତ ଜମିର ପରିମାଣ ୧୨ ଲକ୍ଷ ଏକରରୁ ଅଧିକ ପରିମାଣରେ ପହଞ୍ଚିଥିଲା ।

୧୯୪୯ ଖ୍ରୀଷ୍ଟାବ୍ଦରେ ଏହି ଅଭ୍ୟୁତ୍ଥାନକୁ ଦମନ କରିବା ପାଇଁ ସରକାର ହାୟଦରାବାଦକୁ ଭାରତୀୟ ସୈନ୍ୟବାହିନୀ ପ୍ରେରଣ କରିଥିଲେ । ଏହା ପରେ ଏହି ଆନ୍ଦୋଳନ ଗରିଲା ଯୁଦ୍ଧର ରୂପ ଲାଭ କରିଥିଲା ଏବଂ ୧୯୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଥିଲା । କିନ୍ତୁ ଆନ୍ଦୋଳନର ଏହି ଦ୍ୱିତୀୟ ପର୍ଯ୍ୟାୟରେ ସଂଗ୍ରାମୀମାନଙ୍କ ମଧ୍ୟରେ ବିଭେଦ ଦେଖା ଦେଇଥିଲା । ୧୯୪୯-୧୯୫୦ ଖ୍ରୀଷ୍ଟାବ୍ଦରେ ପ୍ରବର୍ତ୍ତିତ କୃଷି ସଂସ୍କାର ଫଳରେ ଅପେକ୍ଷାକୃତ ଧନୀ କୃଷକମାନଙ୍କର ଦାବି ପୂରଣ ହୋଇଯିବା ଏବଂ ପଞ୍ଚାୟତମାନଙ୍କରେ ଗରିବମାନଙ୍କ ପ୍ରଭାବ ବୃଦ୍ଧି ପାଇବା ହେତୁ ସେମାନେ ଆନ୍ଦୋଳନ ପରିତ୍ୟାଗ କରିଥିଲେ । ଗରିବ କୃଷକମାନେ ଶେଷକୁ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲେ ।

କୃଷକମାନଙ୍କର ଏହି ସଂଗ୍ରାମ ବୁର୍ଜୁଆ ଜମିଦାର ଶ୍ରେଣୀର ସରକାରକୁ କୃଷି ସଂସ୍କାରର ବ୍ୟାଖ୍ୟା ଏବଂ ଦ୍ରୁତ କାର୍ଯ୍ୟକାରୀ କରିବାକୁ ବାଧ୍ୟ କରିଥିଲା । ୧୯୫୦ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ ଭାରତକୁ ସାର୍ବଭୌମ ପ୍ରଜାତନ୍ତ୍ର ଘୋଷଣା ପରେ କେବଳ ଏହାର ବାସ୍ତବାୟନ ସମ୍ଭବ ହୋଇଥିଲା ।

## ନୂତନ ସମ୍ବିଧାନର ଖସଡ଼ା ପ୍ରଣୟନ ଓ ସଂବିଧାନ ଗ୍ରହଣ

ଏହି ଐତିହାସିକ କାର୍ଯ୍ୟଟିକୁ ସମାଧାନ କରିବା ପୂର୍ବରୁ ଜାତୀୟ ବୁର୍ଜୁଆମାନଙ୍କ ହାତକୁ କ୍ଷମତା ହସ୍ତାନ୍ତର କରିଥିବା ଏହି ସମ୍ବିଧାନଟିକୁ ପ୍ରଣୟନ କରିବାରେ ଯଥେଷ୍ଟ ଶକ୍ତି ବ୍ୟୟ କରିବାକୁ ପଡ଼ିଥିଲା । ସ୍ୱାଧୀନ ଭାରତର ସଂବିଧାନ ପ୍ରଣୟନ ସମୟରେ ଯେଉଁ ଦୁଇଟି କ୍ଷେତ୍ରରେ ତୀବ୍ର ମତାନୈକ୍ୟ ଦେଖା ଦେଇଥିଲା, ତାହା ହେଲା : ଭାରତ ଓ ବ୍ରିଟେନ୍ ମଧ୍ୟରେ ସାମ୍ବିଧାନିକ ସଂପର୍କର ଧରଣ ଏବଂ ଜାତି ସଂକ୍ରାନ୍ତ ସମସ୍ୟା ।

ଭାରତର ଅର୍ଥନୀତିରେ ବ୍ରିଟିଶ୍ ପୁଞ୍ଜିର ସୁବିଧାଜନକ ଅବସ୍ଥାନ ଏବଂ ବ୍ରିଟିଶ୍ ବଜାର ଉପରେ ଭାରତୀୟ ମାଲିକମାନଙ୍କର ଉତ୍ପାଦନର ନିର୍ଭରଶୀଳତା – ଏହି ଦୁଇଟି କାରଣରୁ ସ୍ୱଦେଶୀ ବୁର୍ଜୁଆମାନେ ଭାରତ କମନ୍‌ୱେଲ୍‌ଥରେ ରହିବା ସପକ୍ଷରେ ଥିଲେ । କିନ୍ତୁ ଏଥି ସଙ୍ଗେ ସଙ୍ଗେ ଭାରତର ରାଜନୈତିକ ନେତାମାନେ ଦେଶର ସାର୍ବଭୌମତ୍ୱର କ୍ଷତି ସାଧନ ନକରି ଦେଶକୁ କମନ୍‌ୱେଲ୍‌ଥରେ ରଖିବାର ଏକ ପନ୍ଥା ଉଦ୍‌ଭାବନ ପାଇଁ ବିଶେଷ ଉଦ୍‌ବିଗ୍ନ ଥିଲେ ।

୧୯୪୮ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ଲଣ୍ଡନରେ ଅନୁଷ୍ଠିତ କମନ୍‌ୱେଲ୍‌ଥ ପ୍ରଧାନମନ୍ତ୍ରୀ ସମ୍ମିଳନୀରେ ଏହି ପ୍ରଶ୍ନାବଳୀ ଆଲୋଚିତ ହୋଇଥିଲା । ଏଥିରେ ସ୍ଥିର ହୋଇଥିଲା : ଭାରତ, ପାକିସ୍ତାନ ଓ ଶ୍ରୀଲଙ୍କା ବ୍ରିଟିଶ୍ କମନ୍‌ୱେଲ୍‌ଥର ସଦସ୍ୟ ରହିଲେ ମଧ୍ୟ ସେମାନଙ୍କ ରାଜନୈତିକ ସ୍ୱାଧୀନତା ବ୍ରିଟିଶ୍ ସମ୍ରାଟଙ୍କ ଅଧୀନ ହୋଇ ରହିବ ନାହିଁ ।

୧୯୪୮ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ଜୟପୁରରେ ଅନୁଷ୍ଠିତ କଂଗ୍ରେସର ପରବର୍ତ୍ତୀ ସମ୍ମିଳନୀରେ କେତେକ ପ୍ରତିନିଧି ବ୍ରିଟେନ୍ ସହିତ ସୁସ୍ପଷ୍ଟ ରାଜନୈତିକ ସଂପର୍କ ଛେଦ କରିବାର ଦାବି ଉତ୍ଥାପନ କରିବା ସତ୍ତ୍ୱେ ୧୯୪୮ ଖ୍ରୀଷ୍ଟାବ୍ଦର ଲଣ୍ଡନ କମନ୍‌ୱେଲ୍‌ଥ ସମ୍ମିଳନୀର ସିଦ୍ଧାନ୍ତର ଧାରା ଅନୁଯାୟୀ ସରକାରକୁ ଆଳାପ ଆଲୋଚନା ଚଳେଇବାକୁ ଅନୁମତି ଦିଆଯାଇଥିଲା । ୧୯୪୯ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ ଲଣ୍ଡନରେ ଅନୁଷ୍ଠିତ ପରବର୍ତ୍ତୀ କମନ୍‌ୱେଲ୍‌ଥ ସମ୍ମିଳନୀର ସୂତ୍ରାନୁସାରେ ସାର୍ବଭୌମ ଭାରତ ପ୍ରଜାତନ୍ତ୍ର ବ୍ରିଟିଶ୍ ସମ୍ରାଟଙ୍କ ବ୍ରିଟିଶ୍ କମନ୍‌ୱେଲ୍‌ଥ ଅନ୍ତର୍ଗତ ଜାତିମାନଙ୍କର ପ୍ରତୀକ ରୂପେ

ସ୍ୱୀକାର କରି ନେଇଥିଲା । ୧୯୪୯ ଖ୍ରୀଷ୍ଟାବ୍ଦ ମେ ମାସରେ ନିଖିଳ ଭାରତ କଂଗ୍ରେସ କମିଟି ଓ ସଂବିଧାନ ସଭା ଏହି ସିଦ୍ଧାନ୍ତକୁ ସମର୍ଥନ କରିଥିଲେ । (ବିଶେଷ ଭାବେ ଲକ୍ଷ୍ୟ କରିବାର କଥା ଯେ, ମୂଳ ସମ୍ବିଧାନରେ ଭାରତ ସହିତ ବ୍ରିଟିଶ୍ କମନ୍‌ୱେଲ୍‌ଥର ସଂପର୍କ ଉଲ୍ଲେଖ ନାହିଁ) ।

୧୯୨୮ ଖ୍ରୀଷ୍ଟାବ୍ଦର "ମୋତିଲାଲ ନେହରୁ ସଂବିଧାନ" ଅନୁଯାୟୀ ପ୍ରସ୍ତାବିତ ଭାଷାଭିତ୍ତିକ (ଜାତିସତ୍ତା ଅନୁଯାୟୀ) ପ୍ରଦେଶ ଗଠନ ଘେନି ଜୟପୁର କଂଗ୍ରେସରେ ଅନୁରୂପ ଉତ୍ତେଜନାପୂର୍ଣ୍ଣ ଆଲୋଚନା ଚାଲିଥିଲା । ଇତିମଧ୍ୟରେ ଆନ୍ଧ୍ର, କର୍ଣ୍ଣାଟକ, କେରଳ ଓ ମହାରାଷ୍ଟ୍ର ଗଠନ କରିବାର ସମର୍ଥକମାନଙ୍କ ଚାପରେ ସଂବିଧାନ ରଚନାର ଦାୟିତ୍ୱପ୍ରାପ୍ତ ସନ୍ନିଧାନ ସଭା ଭାଷାଭିତ୍ତିକ ପ୍ରଦେଶ ଗଠନର ସମସ୍ୟା ବିବେଚନା ପାଇଁ ଏକ ବିଶେଷ କମିଟି (ଧର୍ କମିସନ) ଗଠନ କରିଥିଲା । ୧୯୪୮ ଖ୍ରୀଷ୍ଟାବ୍ଦ ଶେଷ ବେଳକୁ ଏହି କମିସନ ଦ୍ୱାରା ପ୍ରଦତ୍ତ ରିପୋର୍ଟରେ ଭାଷାଭିତ୍ତିକ ପ୍ରଦେଶ ଗଠନର କେବଳ ବିରୋଧିତା ନୁହେଁ, ବହୁ ବର୍ଷ ଧରି ଗଢ଼ି ଉଠିଥିବା ପ୍ରଶାସନିକ ଏବଂ ଆଞ୍ଚଳିକ ବିଭାଗଗୁଡ଼ିକର ଯେକୌଣସି ପରିବର୍ତ୍ତନ ବିରୁଦ୍ଧରେ ଆପତ୍ତି ଥିଲା ।

ଧର୍ କମିସନ ରିପୋର୍ଟର ବିବେଚନା ଏବଂ ଚୂଡ଼ାନ୍ତ ସୁପାରିଶ ପ୍ରଦାନ ପାଇଁ କଂଗ୍ରେସର ଜୟପୁର ଅଧିବେଶନରେ ଏକ କମିଟି (ଜବାହାରଲାଲ ନେହରୁ, ବଲ୍ଲଭଭାଇ ପଟେଲ ଓ ପଟ୍ଟାଭି ସୀତାରାମାୟାଙ୍କୁ ନେଇ ଗଠିତ ଏହି କମିଟିକୁ ତିନି ନେତାଙ୍କ ନାମର ଆଦ୍ୟାକ୍ଷର ଚିହ୍ନିତ ଜେବିପି କମିଟି କୁହାଯାଉଥିଲା) ଗଠିତ ହୋଇଥିଲା । ସାଂପ୍ରତିକ ଦେଶ ବିଭାଗ ପରେ ଭାଷାଗତ ଜାତି ସତ୍ତାଗୁଡ଼ିକର ସଂହତି ଶେଷକୁ ଦେଶର ଆଭ୍ୟନ୍ତରୀଣ ନୀତିରେ ବିଚ୍ଛିନ୍ନତାବାଦୀ ପ୍ରବଣତା ସୃଷ୍ଟି କରିବ – ଏହି ଆଳରେ ଜେବିପି କମିଟି ମଧ୍ୟ ଭାଷାଭିତ୍ତିକ ପ୍ରଦେଶ ଗଠନର ନୀତି ପ୍ରତ୍ୟାଖ୍ୟାନ କରିଥିଲେ । ଦେଶୀୟ ରାଜ୍ୟଗୁଡ଼ିକର ସମ୍ଭାବ୍ୟ ସୀମା ପରିବର୍ତ୍ତନ ଫଳରେ ଏକ ଦେଶ ହିସାବରେ ଭାରତର ଐକ୍ୟ କ୍ଷତିଗ୍ରସ୍ତ ହେବାର ଆଶଙ୍କା ପ୍ରକାଶ କରି କମିଟିର ରିପୋର୍ଟରେ ଭାରତର ପ୍ରଶାସନିକ ଓ ଆଞ୍ଚଳିକ ବିଭାଗ ଅବାଞ୍ଛିତ ବୋଲି କୁହାଯାଇଥିଲା ।

ଏହି ଭାବେ ଭାଷାଭିତ୍ତିକ ପ୍ରଦେଶ ଗଠନର ପ୍ରଥମ ଉଦ୍ୟୋଗ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । କିନ୍ତୁ ଏହିସବୁ ରାଜ୍ୟ (କର୍ଣ୍ଣାଟକ, କେରଳ, ଆନ୍ଧ୍ର, ମହାରାଷ୍ଟ୍ର, ମହାଗୁଜରାଟ, ଆଦି) ଗଠନ ଆନ୍ଦୋଳନ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା ।

ଭାରତୀୟ ଜାତୀୟତାର ସଂହତି ଓ ନୂତନ କ୍ଷମତାର କେନ୍ଦ୍ରୀଭବନର ପ୍ରୟାସକୁ ପ୍ରତିଫଳିତ କରୁଥିବା ଭାରତର ଏହି ସମ୍ବିଧାନ ୧୯୪୯ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୬ରେ ସମ୍ବିଧାନ ସଭା କର୍ତ୍ତୃକ ଗୃହୀତ ହୋଇଥିଲା ।

ପ୍ରଭୂତ କ୍ଷମତାସଂପନ୍ନ ଜଣେ ରାଷ୍ଟ୍ରପତିଙ୍କ ଅଧୀନରେ ଭାରତ ସାର୍ବଭୌମ ପ୍ରଜାତନ୍ତ୍ର ଘୋଷିତ ହେଲା । ସେ ହେଲେ ଭାରତୀୟ ସେନାବାହିନୀର ସର୍ବାଧିନାୟକ, ଦେଶର ପ୍ରଧାନମନ୍ତ୍ରୀଙ୍କ ସମେତ ତାଙ୍କ ସୁପାରିଶ ଅନୁଯାୟୀ କେନ୍ଦ୍ରୀୟ ସରକାରର ମନ୍ତ୍ରୀବର୍ଗଙ୍କର ଏବଂ କେନ୍ଦ୍ରୀୟ ପ୍ରଶାସନର ସ୍ଥାନୀୟ ପ୍ରତିନିଧି ସ୍ୱରୂପ ରାଜ୍ୟପାଳମାନଙ୍କର ନିଯୋଗକର୍ତ୍ତା । ତା'ଛଡ଼ା ପାର୍ଲିଆମେଣ୍ଟର ବିରତି କାଳରେ ଅର୍ଡିନାନସ ଜାରି ଏବଂ ପ୍ରୟୋଜନ ଅନୁଯାୟୀ ଜରୁରୀ ଅବସ୍ଥା ଘୋଷଣା ତାଙ୍କ କ୍ଷମତାଧୀନ ହେଲା । କେନ୍ଦ୍ରୀୟ ପାର୍ଲିଆମେଣ୍ଟ ଓ ପ୍ରାଦେଶିକ ବିଧାନ ସଭାରେ ଗୃହୀତ ବିଲ୍‌ଗୁଡ଼ିକର କାର୍ଯ୍ୟକାରିତା ତାଙ୍କ ଅନୁମୋଦନ ଉପରେ ନିର୍ଭର କଲା । ପୁନର୍ବିବେଚନା ଓ ସଂଶୋଧନ ପାଇଁ ଯେକୌଣସି ଆଇନ୍‌କୁ ବିଧାନ ସଭାକୁ ଫେରସ୍ତ ପଠାଇବାର ଅଧିକାର ତାଙ୍କର ରହିଲା ।

ଦେଶର ସର୍ବୋଚ୍ଚ ବୈଧାନିକ ସଂସ୍ଥା କେନ୍ଦ୍ରୀୟ ପାର୍ଲିଆମେଣ୍ଟ ହେଲା ଦ୍ୱିକକ୍ଷ ବିଶିଷ୍ଟ : ଲୋକସଭା ଓ ରାଜ୍ୟସଭା । ଲୋକସଭା ଭଳି ପାଞ୍ଚ ବର୍ଷ ମିଆଦରେ ନିର୍ବାଚିତ ପ୍ରାଦେଶିକ ବିଧାନ ସଭାଗୁଡ଼ିକ ହେଲା ରାଜ୍ୟ ବିଧାନସଭା । ଏସବୁର ନିର୍ବାଚନ ହେଲା ସାର୍ବଜନୀନ, ପ୍ରତ୍ୟକ୍ଷ ଏବଂ ଗୋପନ ଭୋଟଦାନଭିତ୍ତିକ ୨୧ ବର୍ଷରୁ ଉର୍ଦ୍ଧ୍ୱ ସମସ୍ତ ଭାରତୀୟ ନାଗରିକ ଭୋଟଦାନର ଏବଂ ୨୫ ବର୍ଷରୁ ଅଧିକ ବୟସର ଯେକୌଣସି ଭାରତୀୟ ନାଗରିକ ନିର୍ବାଚନ ପ୍ରାର୍ଥୀ (ରାଜ୍ୟସଭା ପାଇଁ ୩୦ ବର୍ଷରୁ ବେଶି) ହେବାର ଅଧିକାରୀ ହେଲେ ।

ପ୍ରାଦେଶିକ ବିଧାନ ସଭାର ସଦସ୍ୟମାନଙ୍କର ନିର୍ବାଚନୀ ଏଲାକାରୁ ରାଜ୍ୟସଭାର ସଦସ୍ୟମାନେ ନିର୍ବାଚିତ ହେବାର ନିୟମ ସ୍ଥିର ହେଲା (ବିଜ୍ଞାନ, ସଂସ୍କୃତି ଓ ଜନସେବା କ୍ଷେତ୍ରରେ ବିଶିଷ୍ଟ ଅବଦାନ ପାଇଁ ରାଜ୍ୟସଭାର ୧୨ ଜଣ ସଦସ୍ୟ ରାଷ୍ଟ୍ରପତିଙ୍କ ଦ୍ୱାରା ମନୋନୀତ) ।

ପାର୍ଲିଆମେଣ୍ଟ ଏବଂ ରାଜ୍ୟ ବିଧାନ ସଭାଗୁଡ଼ିକର ସଦସ୍ୟମାନଙ୍କ ଦ୍ୱାରା ଗଠିତ ବିଶେଷ ନିର୍ବାଚନୀ ଅଞ୍ଚଳ ହେଲା ରାଷ୍ଟ୍ରପତି ନିର୍ବାଚନ କରିବାର ଅଧିକାରୀ ।

ସଂବିଧାନରେ ଆଇନ୍, ପ୍ରଶାସନ ଓ ବିଚାର ବିଭାଗର କ୍ଷମତାକୁ ସୁସ୍ପଷ୍ଟ ଭାବେ ଚିହ୍ନିତ କରିବାର ନୀତି ନିର୍ଦ୍ଧାରିତ ହେଲା । ଭାରତ ସରକାର ଓ ରାଜ୍ୟ ସରକାରଗୁଡ଼ିକ (ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱରେ) କେନ୍ଦ୍ରୀୟ ପାର୍ଲିଆମେଣ୍ଟ ଓ ରାଜ୍ୟ ପରିଷଦ ନିକଟରେ ଦାୟୀ ରହିଲେ ।

ଭାରତର ସୁପ୍ରିମ କୋର୍ଟ ଓ ରାଜ୍ୟର ହାଇ କୋର୍ଟଗୁଡ଼ିକ ଆଇନ୍ ବ୍ୟାଖ୍ୟା କରିବା, "ସଂବିଧାନ ବିରୋଧୀ" ଆଇନ୍‌କୁ ବାତିଲ କରିବାର ଅଧିକାର ଲାଭ କଲେ ।

ସଂବିଧାନରେ କେନ୍ଦ୍ରୀୟ ଓ ରାଜ୍ୟ ସରକାରସମୂହର ରାଜନୈତିକ ଓ ଅର୍ଥନୈତିକ କ୍ରିୟାକଳାପ ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟ ଚିହ୍ନିତ ହେଲା ଏବଂ ସେଥି ପାଇଁ ପୂରା ପ୍ରଶାସନ ବ୍ୟବସ୍ଥାରେ ଅତ୍ୟୁଚ୍ଚ ମାତ୍ରାରେ କେନ୍ଦ୍ରୀଭବନ ସମେତ ସଂଘୀୟବାଦର କେତେକ ଉପାଦାନର ମଧ୍ୟ ମିଶ୍ରଣ ଘଟିଲା ।

ତେଣୁ ସଂବିଧାନରେ ଜାତୀୟ ବିପ୍ଳବ ଜୟ ଲାଭ କରିବାର ପରବର୍ତ୍ତୀ ସାଧାରଣ ଗଣତାନ୍ତ୍ରିକ ଅବସ୍ଥାର ମୂଳ ସାଫଲ୍ୟାଦି ସଂହତ ହୋଇଛି : ଏଥିରେ ରହିଛି ନାଗରିକମାନଙ୍କ ପାଇଁ ବୁର୍ଜୁଆ-ଗଣତାନ୍ତ୍ରିକ ଅଧିକାରସମୂହ ଏବଂ ଜାତି, ବର୍ଣ୍ଣ ଓ ଧର୍ମଗତ ସର୍ବପ୍ରକାର ବୈଷମ୍ୟ ବିରୁଦ୍ଧରେ ନିଷେଧାଜ୍ଞା ।

ସଂବିଧାନର ୩୧ତମ ଧାରାରେ ବ୍ୟକ୍ତିଗତ ସଂପତ୍ତିର ପବିତ୍ରତାର ସ୍ୱୀକୃତି ସମେତ ଜନସାଧାରଣଙ୍କ ସ୍ୱାର୍ଥରେ ତାକୁ ବାଜ୍ୟାପ୍ତ କଲେ ପ୍ରତ୍ୟେକ କ୍ଷେତ୍ରରେ କ୍ଷତିପୂରଣ ଦେବାର ବ୍ୟବସ୍ଥାଦି ଉଲ୍ଲିଖିତ ହୋଇଛି ।

ନୂତନ ସଂବିଧାନରେ ଭାରତରେ ବୁର୍ଜୁଆ ଗଣତନ୍ତ୍ରର ପ୍ରତିଷ୍ଠା ପ୍ରକଟିତ ହୋଇଛି ଏବଂ ତାହା ଜାତୀୟ ପୁଞ୍ଜିବାଦର ବିକାଶର ଆଇନଗତ ନୀତିରାଜି ରଚନା କରିଛି ।

ସଂବିଧାନ ସଭା କର୍ତ୍ତୃକ ନୂତନ ସଂବିଧାନ ଅନୁମୋଦନ ଫଳରେ ଦେଶର ଐତିହାସିକ ଭବିତବ୍ୟ କ୍ଷେତ୍ରରେ ଏକ ମହତ୍ ସନ୍ଧିକ୍ଷଣର ଆଇନଗତ ରୂପ ସୂଚିତ ହୋଇଥିଲା । ସଂବିଧାନ ସଭା ବିନା ପ୍ରତିଦ୍ୱନ୍ଦ୍ୱିତାରେ ପ୍ରବୀଣ ନେତା ଓ ଗାନ୍ଧୀଙ୍କ ସହକର୍ମୀ ରାଜେନ୍ଦ୍ର ପ୍ରସାଦଙ୍କୁ ଭାରତର ପ୍ରଥମ ରାଷ୍ଟ୍ରପତି ଏବଂ ଜବାହାରଲାଲ ନେହରୁଙ୍କୁ ଭାରତୀୟ ପ୍ରଜାତନ୍ତ୍ରର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ମନୋନୀତ କରିଥିଲା ।

୧୯୫୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୬ ତାରିଖ ଦିନ ଭାରତର ସ୍ୱାଧୀନତା ଦିବସର ବାର୍ଷିକୀରେ ସଂବିଧାନ କାର୍ଯ୍ୟକର ହେଲା । ଏହା ପରେ ଜାତୀୟ ଛୁଟି ରୂପେ ଏହି ଦିନଟି ପ୍ରଜାତନ୍ତ୍ର ଦିବସ ରୂପେ ଏପର୍ଯ୍ୟନ୍ତ ପାଳିତ ହେଉଛି ।

# ଭାରତ ପ୍ରଜାତନ୍ତ୍ର – ସ୍ୱାଧୀନତାର ଭିତ୍ତି ପ୍ରତିଷ୍ଠା (୧୯୫୦-୧୯୬୪)

## ପଚାଶ ଦଶକର ପ୍ରାରମ୍ଭରେ ଦେଶର ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତି

ଭାରତୀୟ ପ୍ରଜାତନ୍ତ୍ରକୁ ତା'ର ନିଜସ୍ୱ ସ୍ୱାଧୀନ ବିକାଶର ପ୍ରଥମ ବର୍ଷରେ ସାଙ୍ଘାତିକ ରାଜନୈତିକ ତଥା ଅର୍ଥନୈତିକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଦେଶ ବିଭାଗର ମାରାତ୍ମକ ଫଳଗୁଡ଼ିକୁ ସେପର୍ଯ୍ୟନ୍ତ ଅତିକ୍ରମ କରାଯାଇ ନଥାଏ, ଶିଳ୍ପସମୂହରେ ଯୁଦ୍ଧୋତ୍ତର ମାନ୍ଦାବସ୍ଥା ଚାଲିଥାଏ ଏବଂ କେତେକ ଅଞ୍ଚଳରେ ଫସଲ ହାନି ହେତୁ ଦେଖା ଦେଇଥିବା ଖାଦ୍ୟ ସଂକଟ ଜଟିଳତର ହୋଇ ପଡ଼ିଥାଏ । ଏହି ଭାବେ ସାରା ଦେଶରେ ଦେଖା ଦେଇଥାଏ ଦୁର୍ଭିକ୍ଷର ଆଶଙ୍କା ।

ଏଭଳି ଅବସ୍ଥାରେ ଭାରତ ସରକାର ଖାଦ୍ୟ ସମସ୍ୟା ସମାଧାନ କରିବା ପାଇଁ ଆମେରିକା ଯୁକ୍ତ ରାଷ୍ଟ୍ରର ସାହାଯ୍ୟ ପ୍ରାର୍ଥୀ ହୋଇଥିଲେ । ଋଣ ସର୍ତ୍ତ ଘେନି ବହୁ ଦରକଷାକଷି ଚାଲିଥିଲା ବେଳେ ଆମେରିକାନ୍ ସାମ୍ରାଜ୍ୟବାଦୀମାନେ ଭାରତୀୟ ରାଜନୀତି ଉପରେ ନିଜର ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କରିଥିଲେ । ଶେଷରେ ସୋଭିଏତ୍ ୟୁନିଅନ୍ ଓ ଚୀନ୍ ଗଣ ପ୍ରଜାତନ୍ତ୍ରରୁ ଶସ୍ୟ ସରବରାହ ଆରମ୍ଭ ହେଲେ, ଭାରତୀୟ-ଆମେରିକାନ୍ ଆଲୋଚନା ଦ୍ରୁତ ସିଦ୍ଧାନ୍ତରେ ପହଞ୍ଚିଥିଲା ଏବଂ ୧୯୫୧ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ଆମେରିକା ଯୁକ୍ତ ରାଷ୍ଟ୍ରରୁ ଗହମ କ୍ରୟ ପାଇଁ ଭାରତକୁ ବଡ଼ ଆକାରରେ ଋଣ (୧୯ କୋଟି ଡଲାର) ମଞ୍ଜୁର କରାଯାଇଥିଲା ।

ଏହି ଖାଦ୍ୟାଭାବ ଫଳରେ ବିଶେଷ ଭାବେ ଦକ୍ଷିଣ ଭାରତର ରାଜ୍ୟଗୁଡ଼ିକରେ ସାମାଜିକ ଉତ୍ତେଜନା ବୃଦ୍ଧି ପାଇଥିଲା । ଇତିମଧ୍ୟରେ ଶ୍ରମିକ ଓ କୃଷକ ସଂଗଠନଗୁଡ଼ିକର କାର୍ଯ୍ୟକଳାପ ଦମନ ଦିଗରେ ପଦକ୍ଷେପମାନ ଯଦିଓ ଗୃହୀତ ହୋଇଥିଲା ଏବଂ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ ସେତେବେଳେ ବିଭକ୍ତ ହୋଇ ପଡ଼ିଥିଲା, ତେବେ ସହର ଓ ଗ୍ରାମରେ ଶ୍ରେଣୀ ସଂଗ୍ରାମର ପୂର୍ବତନ ତୀବ୍ରତା ସେପର୍ଯ୍ୟନ୍ତ ଅବ୍ୟାହତ ଥିଲା ।

### କଂଗ୍ରେସର ଅନ୍ତର୍ଦ୍ୱନ୍ଦ୍ୱ – ନୂତନ ବାମପନ୍ଥୀ ବିରୋଧୀ ଦଳ ଗଠନ

ଏକ ଦିଗରେ, ଅବ୍ୟାହତ ଗଣ ଆନ୍ଦୋଳନ, ଜଟିଳ ରାଜନୈତିକ ପରିସ୍ଥିତି, ଅନ୍ୟ ଦିଗରେ, ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟେନ୍ ତରଫରୁ ବାହ୍ୟିକ ଚାପ ଭାରତୀୟ ଜାତୀୟ କଂଗ୍ରେସର ଆଭ୍ୟନ୍ତରୀଣ ଅବସ୍ଥାକୁ ପ୍ରଭାବିତ କରିଥିଲା ।

ରାଜନୈତିକ ସ୍ୱାଧୀନତା ଲାଭ ପରେ ଭାରତ ତା'ର ସାମନ୍ତବାଦୀ ଓ ଔପନିବେଶିକ ଅର୍ଥନୀତି ଓ ସାମାଜିକ ଗଢ଼ଣର ପୁନର୍ଗଠନ ପାଇଁ ସୁଦୂର ପ୍ରସାରୀ ଅର୍ଥନୈତିକ, ସାମାଜିକ-ରାଜନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ସାଧନ ସହିତ ଅର୍ଥନୈତିକ ଓ ସାଂସ୍କୃତିକ ଅନଗ୍ରସରତା ଦୂରୀକରଣ ଏବଂ ସ୍ୱାଧୀନ ବିକାଶର ଭିତ୍ତି ସ୍ୱରୂପ ଏକ ଆଧୁନିକ ବହୁମୁଖୀ ଅର୍ଥନୀତି ଗଠନ ଦିଗରେ ଏକ ବିରାଟ ଐତିହାସିକ କର୍ତ୍ତବ୍ୟର ସମ୍ମୁଖୀନ ହୋଇଥିଲା ।

ଜାତୀୟ କଂଗ୍ରେସର ନେତୃବୃନ୍ଦ ଏହି ସମସ୍ୟାରାଜିର ସମାଧାନ ଦୁଇଟି ବାଟରେ କରିବାକୁ ଚାହୁଁଥିଲେ । ସେଥି ମଧ୍ୟରୁ ଗୋଟିଏ ହେଲା : ଅର୍ଥନୀତିରେ ପ୍ରତ୍ୟକ୍ଷ ବ୍ୟକ୍ତିଗତ ସଂସ୍ଥାର ଅବାଧ ବିକାଶର ଅନୁମୋଦନ, ସାମନ୍ତ ଭୂସ୍ୱାମୀ ଓ ଜମିଦାରମାନଙ୍କ ସହିତ ବୁଝାମଣା, ଶ୍ରମଜୀବୀମାନଙ୍କ ଆନ୍ଦୋଳନକୁ ଦମନ, ବୈଦେଶିକ ନୀତି କ୍ଷେତ୍ରରେ ପାଶ୍ଚାତ୍ୟ ଦେଶମାନଙ୍କର ନେତୃତ୍ୱ ଗ୍ରହଣ । ଏହି ପଥଟି ଥିଲା ସହକାରୀ ପ୍ରଧାନମନ୍ତ୍ରୀ ଓ ସ୍ୱରାଷ୍ଟ୍ର ମନ୍ତ୍ରୀ ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱାଧୀନ ଦକ୍ଷିଣପନ୍ଥୀମାନଙ୍କର କର୍ମନୀତି । ଅନ୍ୟ ପଥଟି ହେଲା : ରାଷ୍ଟ୍ରାୟତ୍ତ କ୍ଷେତ୍ରର ଉନ୍ନୟନରେ ସର୍ବାତ୍ମକ ପ୍ରଚେଷ୍ଟା, ଜାତୀୟ ଅର୍ଥନୀତି ଉନ୍ନୟନରେ ରାଷ୍ଟ୍ରୀୟ ନିୟନ୍ତ୍ରଣ କ୍ଷେତ୍ରରେ ପରିକଳ୍ପନା ନୀତି ପ୍ରବର୍ତ୍ତନ, ସାମନ୍ତବିରୋଧୀ କୃଷି ସଂସ୍କାର ସମେତ କ୍ରମାନ୍ୱୟରେ ଅନ୍ୟାନ୍ୟ ସଂସ୍କାର ପ୍ରବର୍ତ୍ତନ, ଶ୍ରମଜୀବୀମାନଙ୍କ ଜୀବିକାର ମାନୋନ୍ନୟନ, ଇତିମଧ୍ୟରେ ଅନୁସୃତ ନିରପେକ୍ଷ ମୌଳିକ ଭାବେ ଔପନିବେଶିକତା ବିରୋଧୀ ବୈଦେଶିକ ନୀତି ଗ୍ରହଣ । ଜବାହାରଲାଲ ନେହରୁଙ୍କ ଦ୍ୱାରା ପ୍ରବର୍ତ୍ତିତ କର୍ମନୀତିର ସାରମର୍ମ ମଧ୍ୟରେ ଏହି ଦୃଷ୍ଟିଭଙ୍ଗି ପ୍ରକଟିତ ହୋଇଥିଲା । ଶାସକ ଦଳର ମଧ୍ୟପନ୍ଥୀ ଓ ବାମପନ୍ଥୀ ନେତୃବୃନ୍ଦ ଏବଂ କେନ୍ଦ୍ରୀୟ ବୈଧାନିକ ଓ ପ୍ରଶାସନିକ ସଂସ୍ଥାଗୁଡ଼ିକ ଏହି କର୍ମଧାରାକୁ ସମର୍ଥନ କରୁଥିଲେ ।

ଭାରତର ବିକାଶ ସାଧନର ଏହି ଦୁଇଟି ପଥର ସମର୍ଥକମାନଙ୍କ ମଧ୍ୟରେ ପ୍ରକଟିତ ଦ୍ୱନ୍ଦ୍ୱ ଜାତୀୟ କଂଗ୍ରେସର ଆଭ୍ୟନ୍ତରୀଣ ପରିସ୍ଥିତିକୁ ରୂପାୟିତ କରିଥିଲା । ରକ୍ଷଣଶୀଳ ଶକ୍ତିଗୁଡ଼ିକର ବିରୋଧିତା ସତ୍ତ୍ୱେ ବିଶ୍ୱ ଯୁଦ୍ଧର ପରବର୍ତ୍ତୀ ପ୍ରାରମ୍ଭିକ ବର୍ଷମାନଙ୍କରେ ନେହରୁଙ୍କ ପକ୍ଷରେ ପ୍ରଧାନତଃ ତାଙ୍କ ଦ୍ୱାରା ନିର୍ଦ୍ଧାରିତ ପଥ ଅନୁସରଣ କରିବା ସମ୍ଭବ ହୋଇଥିଲା । କିନ୍ତୁ ଶାସକ ଦଳ ଓ ରାଷ୍ଟ୍ର କ୍ଷେତ୍ରରେ ସର୍ବାଧିକ ପ୍ରଭାବଶାଳୀ ଦ୍ୱିତୀୟ ବ୍ୟକ୍ତି ପଟେଲଙ୍କ ରାଜନୈତିକ ମର୍ଯ୍ୟାଦା ଓ ପ୍ରଭାବ କ୍ରମଶଃ ବୃଦ୍ଧି ପାଉଥିଲା । ପ୍ରଶାସନ ଯନ୍ତ୍ରର ଦୃଢ଼ତା ଦେଶର ସଂହତି ଓ ଶିଶୁ ରାଷ୍ଟ୍ରର ରାଷ୍ଟ୍ରସତ୍ତାକୁ ସୁରକ୍ଷିତ କରିବା ଦିଗରେ ତାଙ୍କର ବ୍ୟକ୍ତିଗତ ଭୂମିକା ବଳରେ ପଟେଲଙ୍କ ପକ୍ଷରେ ନିଜର ପ୍ରବଣତାଟିକୁ ବୃଦ୍ଧି କରିବା ସହଜ ହୋଇଥିଲା । ସେ ଥିଲେ ଜମିଦାର ଓ ବୁର୍ଜୁଆ ଶ୍ରେଣୀଗୁଡ଼ିକର ଆଦର୍ଶ । ସେମାନେ ତାଙ୍କୁ ଭାରତ ସରକାରର "ଲୌହ ମାନବ" ଭାବେ ଦେଖୁଥିଲେ । ୧୯୫୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ପ୍ରବର୍ତ୍ତିତ ନୂତନ ସମ୍ବିଧାନ ଅନୁଯାୟୀ ଜନଜୀବନର କିଛି ପରିମାଣରେ ଗଣତନ୍ତ୍ରୀକରଣ ଘଟିଥିଲେ ମଧ୍ୟ ଏହି ବର୍ଷ ଫେବୃଆରୀ ମାସରେ ପଟେଲଙ୍କ ଉଦ୍ୟୋଗରେ ପାର୍ଲିଆମେଣ୍ଟ (ପୁନର୍ଗଠିତ ସମ୍ବିଧାନ ସଭା) ନିବର୍ତ୍ତନମୂଳକ ଅଟକ ଆଇନ୍ ପାଶ୍ କରିଥିଲା । ଏହି ଆଇନ୍‌ରେ ପୁଲିସ୍ ହାତରେ ରାଜନୈତିକ କାରଣରୁ ଯେକୌଣସି ବ୍ୟକ୍ତିକୁ ବିନା ବିଗ୍ଭରରେ କୌଣସି ତଦନ୍ତ ବିନା ଏକ ବର୍ଷ ଅଟକ ରଖିବାର କ୍ଷମତା ପ୍ରଦାନ କରାଯାଇଥିଲା ।

୧୯୫୦ ଖ୍ରୀଷ୍ଟାବ୍ଦର ଶରତ କାଳରେ ନାସିକରେ (ମହାରାଷ୍ଟ୍ର) ଅନୁଷ୍ଠିତ କଂଗ୍ରେସ କମିଟିର

ଅଧିବେଶନରେ ପଟେଲଙ୍କ ସମର୍ଥକ ପୁରୁଷୋତ୍ତମଦାସ ଟଣ୍ଡନ ସଭାପତି ନିର୍ବାଚିତ ହୋଇଥିଲେ । ଏହା ପଟେଲ ଏବଂ ତାଙ୍କ ଅନୁଗାମୀମାନଙ୍କର ବର୍ଦ୍ଧମାନ ପ୍ରଭାବକୁ ପ୍ରକାଶ କରିଥିଲା । ନେତୃବୃନ୍ଦ ଏବଂ ଶାସକ ଦଳର ସ୍ଥାନୀୟ ସଂଗଠନଗୁଡ଼ିକ ଭିତରେ ମଧ୍ୟ କ୍ରମଶଃ ଉତ୍ତେଜନା ବୃଦ୍ଧି ପାଇଥିଲା । ଫଳରେ, ପରବର୍ତ୍ତୀ କାଳରେ କୃଷକ-ଶ୍ରମିକ ପାର୍ଟି (ପଶ୍ଚିମ ବଂଗରେ ବ୍ୟାପକ ଗଣ ସମର୍ଥନ ଲାଭ କରିଥିଲା) ଏବଂ ଜନ କଂଗ୍ରେସର (ବିଶେଷତଃ, ଉତ୍ତର ପ୍ରଦେଶରେ ଖୁବ୍ ଜନପ୍ରିୟ) ସଂଗଠକମାନେ କଂଗ୍ରେସ ତ୍ୟାଗ କରିଥିଲେ । କଂଗ୍ରେସର ଆଭ୍ୟନ୍ତରୀଣ ବାମପନ୍ଥୀ ବିରୋଧୀ ଗୋଷ୍ଠୀଗୁଡ଼ିକ ଗଣତାନ୍ତ୍ରିକ ସାମ୍ମୁଖ୍ୟରେ ଐକ୍ୟବଦ୍ଧ ହେବାକୁ ଲାଗିଥିଲେ । ୧୯୫୧ ଖ୍ରୀଷ୍ଟାବ୍ଦର ଜୁନ୍ ମାସରେ "କୃଷକ ମଜଦୁର ପ୍ରଜା ପାର୍ଟି" ନାମରେ ପେଟି-ବୁର୍ଜୁଆମାନଙ୍କର ଏକ ସର୍ବଭାରତୀୟ ଦଳ ପାଟନାରେ ତା'ର ପ୍ରଥମ ଉଦ୍‌ବୋଧନୀ ଅଧିବେଶନ ଆହ୍ୱାନ କରିଥିଲା । ଏହା ଆଚାର୍ଯ୍ୟ କୃପାଳିନୀ ଓ ରଫି ଆହ୍‌ମେଦ କିଦୋୟାଇଙ୍କ ନେତୃତ୍ୱାଧୀନ ଗଣତାନ୍ତ୍ରିକ ସାମ୍ମୁଖ୍ୟ (ଇତିମଧ୍ୟରେ କଂଗ୍ରେସ ତ୍ୟାଗୀ) କୃଷକ-ଶ୍ରମିକ ପାର୍ଟି ଏବଂ ଜନ କଂଗ୍ରେସ ଅନୁମୋଦିତ କେତେକ ସଂଗଠନକୁ ନେଇ ଗଠିତ ହୋଇଥିଲା ।

ଏକ ଦିଗରେ, କେତେକ ବାମପନ୍ଥୀ ଗୋଷ୍ଠୀଙ୍କର କଂଗ୍ରେସ ତ୍ୟାଗ ଫଳରେ ଏବଂ, ଅନ୍ୟ ଦିଗରେ, ୧୯୫୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ପଟେଲଙ୍କ ମୃତ୍ୟୁ ଘଟିବା ଫଳରେ ପାର୍ଟି ନେତୃତ୍ୱରେ ଚରମ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଉଭୟ ଗୋଷ୍ଠୀ ଦୁର୍ବଳ ହୋଇ ପଡ଼ିଥିଲେ । ଫଳରେ ଏଥି ସହିତ ଜବାହାରଲାଲ ନେହରୁଙ୍କ ନେତୃତ୍ୱାଧୀନ ମଧ୍ୟପନ୍ଥୀମାନଙ୍କ ଶକ୍ତି, ଅବଶ୍ୟ, ବୃଦ୍ଧି ପାଇଥିଲା । କିନ୍ତୁ ଏସବୁ ସତ୍ତ୍ୱେ ଜାତୀୟ କଂଗ୍ରେସର ସଭାପତି ଟଣ୍ଡନଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା ପାର୍ଟିର କେନ୍ଦ୍ରୀୟ ସଂଗଠନଗୁଡ଼ିକରେ ଥିବା ଦକ୍ଷିଣପନ୍ଥୀମାନେ ଯଥେଷ୍ଟ କ୍ଷମତାଶାଳୀ ଥିଲେ । ୧୯୫୧, ସେପ୍‌ଟେମ୍ବର ମାସ ଶେଷରେ ନେହରୁଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟି ସଭାପତି ରୂପେ ନିର୍ବାଚନ କରିବା ପାଇଁ ସୁପାରିଶ୍ କରାଗଲା । ଦେଶର ବିଧାନ ସଭାଗୁଡ଼ିକର ଆସନ୍ନ ସାଧାରଣ ନିର୍ବାଚନକୁ ଦୃଷ୍ଟିରେ ରଖି ଦେଶ ସାରା ନେହରୁଙ୍କ ବିପୁଳ ଜନପ୍ରିୟତା ପାଇଁ ଏପରି କରାଯାଇଥିଲା ।

ଜାତୀୟ କଂଗ୍ରେସ ମଧ୍ୟରେ ଶକ୍ତିର ଏହି ମେରୁବର୍ତ୍ତିତା ଏବଂ ପେଟି-ବୁର୍ଜୁଆମାନଙ୍କର ଏକାଧିକ ନୂତନ ରାଜନୈତିକ ସଂଗଠନ ଗଢ଼ି ଉଠୁଥିଲା ବେଳେ ବାମପନ୍ଥୀ ବିରୋଧୀ ପକ୍ଷରେ ମଧ୍ୟ ବିଭାଜନ ଦେଖା ଦେଇଥିଲା । ୧୯୫୧, ଏପ୍ରିଲ ମାସରେ ଅରୁଣା ଆସଫ ଅଲୀଙ୍କ ନେତୃତ୍ୱରେ ବାମପନ୍ଥୀ ସମାଜବାଦୀମାନଙ୍କର ଗୋଟିଏ ଗୋଷ୍ଠୀ ସମାଜବାଦୀ ଦଳ ତ୍ୟାଗ କରିଥିଲେ । ସେମାନେ ଜୟପ୍ରକାଶ ନାରାୟଣ ଓ ଅନ୍ୟାନ୍ୟ ପାର୍ଟି ନେତାମାନଙ୍କୁ ତୀବ୍ର ନିନ୍ଦା କରି କମ୍ୟୁନିଷ୍ଟମାନଙ୍କ ସହିତ ସହଯୋଗିତା କରିବାକୁ ଆହ୍ୱାନ ଦେଇଥିଲେ । ଏହି ଭାବେ କମ୍ୟୁନିଷ୍ଟ ଓ ପେଟି-ବୁର୍ଜୁଆମାନଙ୍କର ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ଅଂଶ ମଧ୍ୟରେ ସହଯୋଗିତାର ଅନୁକୂଳ ପରିସ୍ଥିତି ଦେଖା ଦେଇଥିଲା । ତା'ଛଡ଼ା ଭାରତର କମ୍ୟୁନିଷ୍ଟ ଆନ୍ଦୋଳନ ମଧ୍ୟରେ ସଂପ୍ରତି ଦେଖା ଦେଇଥିବା ପରିବର୍ତ୍ତନଗୁଡ଼ିକ ମଧ୍ୟ ଏହି ପରିବର୍ତ୍ତିତ ପରିସ୍ଥିତ ସୃଷ୍ଟି କରିବାରେ ଯଥେଷ୍ଟ ଅବଦାନ ଯୋଗାଇଥିଲା ।

## କମ୍ୟୁନିଷ୍ଟ ପାର୍ଟିର ବାମପନ୍ଥୀ ବିଚ୍ୟୁତିର ଅବସାନ । ପଞ୍ଚମ ଦଶକର ପ୍ରାରମ୍ଭରେ ଗଣ ଆନ୍ଦୋଳନ

ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ବିଚ୍ୟୁତି ଓ ପ୍ରଶାସନ ବିଭାଗର ଦମନମୂଳକ କ୍ରିୟାକଳାପ ଦେଶର କମ୍ୟୁନିଷ୍ଟ ଆନ୍ଦୋଳନ ଉପରେ ମାରାତ୍ମକ ଆଘାତ ହାଣିଥିଲା ଏବଂ ଜନସାଧାରଣଙ୍କ ସହିତ

କମ୍ୟୁନିଷ୍ଟମାନଙ୍କର ସଂଯୋଗରେ କ୍ଷତି ସାଧନ କରିଥିଲା । ୧୯୫୧ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ସଂଖ୍ୟା ଦୁଇ ତୃତୀୟାଂଶ ହ୍ରାସ ପାଇ ମାତ୍ର ୨୫ ହଜାରରେ ପହଞ୍ଚିଥିଲା । ପାର୍ଟିର ଦୃଢ଼ମନା ବିଜ୍ଞ କର୍ମୀମାନେ, ଅବଶ୍ୟ, ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ବିଚ୍ୟୁତି ବିରୁଦ୍ଧରେ କଠୋର ସଂଗ୍ରାମ ଚଳାଇ ଯାଇଥିଲେ । ୧୯୫୦ ଖ୍ରୀଷ୍ଟାବ୍ଦର ମେ ମାସରେ ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନ ଡକାଯାଇଥିଲା ଏବଂ ଏକ ନୂତନ, ଅନ୍ତର୍ବର୍ତ୍ତୀକାଳୀନ କେନ୍ଦ୍ରୀୟ କମିଟି ନିର୍ବାଚିତ ହୋଇଥିଲା । ୧୯୫୧ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ କେନ୍ଦ୍ରୀୟ କମିଟିର ନୂତନ ପଲିଟ ବ୍ୟୁରୋ ଜାତୀୟ ବୁର୍ଜୁଆମାନଙ୍କୁ ନେଇ ଶ୍ରମିକ ଶ୍ରେଣୀ ଓ ତା'ର ପାର୍ଟି ନେତୃତ୍ୱରେ ସାମନ୍ତବିରୋଧୀ, ସାମ୍ରାଜ୍ୟବାଦବିରୋଧୀ ବ୍ୟାପକ ସାମ୍ମୁଖ୍ୟ ଗଠନ କରିବାର ଆହ୍ୱାନ ଜଣାଇ ଏକ ଖସଡ଼ା ପାର୍ଟି କର୍ମସୂଚୀ ରଚନା କରିଥିଲା । ଏହି ଖସଡ଼ା କର୍ମସୂଚୀ ପାର୍ଟିର କାର୍ଯ୍ୟକଳାପକୁ ଦେଶରେ ସାମନ୍ତବିରୋଧୀ, ସାମ୍ରାଜ୍ୟବାଦବିରୋଧୀ ସଂସ୍କାରଗୁଡ଼ିକୁ ବାସ୍ତବାୟିତ କରିବା ଲକ୍ଷ୍ୟରେ ପରିଚାଳିତ କରିଥିଲା । ୧୯୫୧, ମେ ମାସରେ ଆହୂତ ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନରେ ଏହି କର୍ମସୂଚୀ ଓ "କର୍ମନୀତି ସଂକ୍ରାନ୍ତ ରିପୋର୍ଟ" ଅନୁମୋଦିତ ହୋଇଥିଲା । ଏହି ଉଭୟ ଦଲିଲ ଭାରତୀୟ କମ୍ୟୁନିଷ୍ଟମାନଙ୍କର କର୍ମନୀତିରେ ଚୂଡ଼ାନ୍ତ ଦିଗ ପରିବର୍ତ୍ତନର ସୂଚନା ଦେଇଥିଲା । ସେଇ ବର୍ଷ ଅକ୍ଟୋବର ମାସରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ନିଖିଳ ଭାରତ ସମ୍ମେଳନରେ ସାମାନ୍ୟ ସଂଶୋଧନ ସମେତ ଏହି କର୍ମସୂଚୀ ଗୃହୀତ ହୋଇଥିଲା । ସମ୍ମେଳନ ପାର୍ଟିର ଆଭ୍ୟନ୍ତରୀଣ ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ବିଚ୍ୟୁତି ବିରୁଦ୍ଧରେ ସଫଳ ସଂଗ୍ରାମୀ ରୂପେ ଖ୍ୟାତ ସାଧାରଣ ସଂପାଦକ ଅଜୟ କୁମାର ଘୋଷ୍‌ଙ୍କ ନେତୃତ୍ୱରେ ଏକ ନୂତନ କେନ୍ଦ୍ରୀୟ କମିଟି ଓ ପଲିଟ ବ୍ୟୁରୋ ନିର୍ବାଚନ କରିଥିଲା ।

ପାର୍ଟି କର୍ମସୂଚୀର ମୂଳ ବିଷୟଗୁଡ଼ିକର ଅସ୍ତିବାଚକ ପରିବର୍ତ୍ତନ ଏବଂ ଭାରତୀୟ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଅନୁସୃତ ସଂଗ୍ରାମ କୌଶଳ ହେତୁ ଦେଶର ଗଣ ଆନ୍ଦୋଳନ ବୃଦ୍ଧି ସମ୍ଭବ ହୋଇଥିଲା । ୧୯୫୦ ଖ୍ରୀଷ୍ଟାବ୍ଦର ମଝାମଝିରେ ନେହରୁ ସରକାର କର୍ତ୍ତୃକ ଆଭ୍ୟନ୍ତରୀଣ ରାଜନୈତିକ ଜନ ଜୀବନରେ ଅଧିକତର ଗଣତନ୍ତ୍ର ପ୍ରତିଷ୍ଠାର ଉଦ୍ୟୋଗ କମ୍ୟୁନିଷ୍ଟ ଓ ଶ୍ରମଜୀବୀମାନଙ୍କ ଗଣ ସଂଗଠନରେ କାର୍ଯ୍ୟରତ କମ୍ୟୁନିଷ୍ଟମାନଙ୍କର ସହଯୋଗୀ ଗଣତନ୍ତ୍ରବାଦୀମାନଙ୍କ କ୍ରିୟାକଳାପକୁ ସହଜତର କରିଥିଲା । ୧୯୫୦ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ କମ୍ୟୁନିଷ୍ଟମାନଙ୍କୁ ମୁକ୍ତି ଦେବା ଆରମ୍ଭ ହୋଇଥିଲା । ସେଇ ବର୍ଷ ଶରତ କାଳରେ ସରକାର ମାନ୍ଦ୍ରାଜ ରାଜ୍ୟରେ କେତେକ ଗଣ ସଂଗଠନ ସହିତ ପାର୍ଟିର କ୍ରିୟାକଳାପକୁ ଆଇନସିଦ୍ଧ କରିଥିଲେ । ପରବର୍ଷ ପଶ୍ଚିମ ବଂଗରେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ଉପରୁ ନିଷେଧାଜ୍ଞା ପ୍ରତ୍ୟାହାର କରାଯାଇଥିଲା ।

ଏହି ସମୟରେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱାଧୀନ କୃଷକ ସମିତିଗୁଡ଼ିକର କାର୍ଯ୍ୟକଳାପ ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ବିଶେଷ ଭାବେ ୧୯୫୧ ମସିହା ଅଗଷ୍ଟ ମାସରେ ନିଖିଳ ଭାରତ କୃଷକ ସଭା ଉପରୁ ନିଷେଧାଜ୍ଞା ପ୍ରତ୍ୟାହାର କରି ନେଲା ପରେ ତା'ର କାର୍ଯ୍ୟକର୍ମରେ ନୂତନ ଉଦ୍ଦୀପନା ଦେଖା ଦେଇଥିଲା । ଅଳ୍ପ କାଳ ମଧ୍ୟରେ କୃଷକ ସଭାର ସଦସ୍ୟ ସଂଖ୍ୟା ୮ ଲକ୍ଷକୁ ଅତିକ୍ରମ କରିଥିଲା ।

କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଚାଳିତ ନିଖିଳ ଭାରତ କୃଷକ ସଭା ବ୍ୟତୀତ ଗ୍ରାମାଞ୍ଚଳରେ ଚାଳିଶ ଦଶକର ଶେଷ ଓ ପଚାଶ ଦଶକର ପ୍ରାରମ୍ଭରେ ଅନ୍ୟାନ୍ୟ କୃଷକ ସଂଗଠନ ମଧ୍ୟ ସକ୍ରିୟ ଥିଲେ ।

ଛଅଟି ରାଜ୍ୟରେ ସମାଜବାଦୀମାନଙ୍କ ନେତୃତ୍ୱରେ କୃଷକ ସଭା ପ୍ରତିଷ୍ଠିତ ହୋଇଥିଲା, କିନ୍ତୁ କେବଳ ବିହାର ଓ ଉତ୍ତର ପ୍ରଦେଶରେ ସେଗୁଡ଼ିକ ଜନପ୍ରିୟତା ଅର୍ଜନ କରିଥିଲେ । ୧୯୪୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ପ୍ରାଦେଶିକ କୃଷକ ସଭାଗୁଡ଼ିକୁ ନେଇ ଏକ ନିଖିଳ ଭାରତୀୟ – ଭାରତୀୟ କୃଷକ ପରିଷଦ (ହିନ୍ଦ୍ କିସାନ ପଞ୍ଚାୟତ) ଗଠିତ ହୋଇଥିଲା । ଅବିଳମ୍ବେ ହିନ୍ଦ୍ କୃଷକ ପଞ୍ଚାୟତ ଏସ୍. ଏସ୍. ସରସ୍ୱତୀ, ଓ୍ୱାଇ. ଶର୍ମା ଓ ଅନ୍ୟାନ୍ୟ କୃଷକ ଗଣତନ୍ତ୍ରବାଦୀମାନଙ୍କର ନେତୃତ୍ୱାଧୀନ କୃଷକ ସଂଗଠନ ସହିତ ଏକାଠି ମିଶି ସଂଯୁକ୍ତ କୃଷକ ସଭା ଗଠନ କରିଥିଲେ । ଏହି ସଂଗଠନ ପ୍ରଧାନତଃ ବିହାର, ଉତ୍ତର ପ୍ରଦେଶ, ପଶ୍ଚିମ ବଙ୍ଗର କେତେକ ଜିଲ୍ଲା ଓ ଅନ୍ୟ କେତେକ ରାଜ୍ୟରେ ଜନପ୍ରିୟତା ଲାଭ କରିଥିଲା ।

ଜାତୀୟ କଂଗ୍ରେସ ଗ୍ରାମାଞ୍ଚଳର କାର୍ଯ୍ୟକର୍ମ ପାଇଁ ସ୍ଥାନୀୟ ପାର୍ଟି ସଂଗଠନ ଏବଂ ଯୁଦ୍ଧକାଳରେ ଏନ୍.ଜି. ରଙ୍ଗାଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ଜାତୀୟ କୃଷକ କଂଗ୍ରେସ (୧୯୫୦ ଖ୍ରୀଷ୍ଟାବ୍ଦରେ ଏହାର ନୂତନ ନାମକରଣ ଭାରତୀୟ କୃଷକ ସମ୍ମେଳନ ହୋଇଥିଲା) ଉପରେ ନିର୍ଭର କରୁଥିଲା । ଏହା କୃଷକମାନଙ୍କର ସମୃଦ୍ଧତର ଅଂଶକୁ ଆକୃଷ୍ଟ କରିଥିଲା ଏବଂ ବିଶେଷ ଭାବେ ଦେଶର ଦକ୍ଷିଣାଂଶରେ ଜନପ୍ରିୟ ହୋଇ-ଥିଲା । ଭାରତୀୟ କୃଷକ ସମ୍ମେଳନ ଜାତୀୟ କଂଗ୍ରେସର କୃଷିନୀତିକୁ ସମର୍ଥନ କରୁଥିଲା ।

ସେଇ ସମୟରେ ରାଜ୍ୟ ବିଧାନ ସଭାଗୁଡ଼ିକରେ ଜମିଦାରି ଉଚ୍ଛେଦ ସଂପର୍କରେ ଆଲୋଚନା ଚାଲିଥିଲା ଏବଂ ତା'ର ବାସ୍ତବାୟନ ଓ ଜମିଦାରି ଉଚ୍ଛେଦ ସଂକ୍ରାନ୍ତ ଆଇନ୍‌ର ମୌଳିକ ପରିବର୍ତ୍ତନର ଦାବିକୁ କେନ୍ଦ୍ର କରି ପ୍ରଧାନତଃ ସଂଗଠିତ କୃଷକ ଆନ୍ଦୋଳନ ପରିଚାଳିତ ହୋଇଥିଲା । କୃଷକ ସଂଗଠନଗୁଡ଼ିକ ସମସ୍ତ ରାଜ୍ୟରେ ବିକ୍ଷୋଭ, ଜନସଭା ଅନୁଷ୍ଠାନ ସମେତ କୃଷକମାନଙ୍କ ଦାବି ସମ୍ବଳିତ ଦରଖାସ୍ତ ପ୍ରସ୍ତୁତ କରି ଏବଂ ବିଧାନ ସଭା ଓ ପ୍ରଶାସନିକ ସଂସ୍ଥାଗୁଡ଼ିକରେ ଏସବୁକୁ ପେଶ୍ କରିଥିଲା । ଏହି ସମୟରେ ପୁଲିସ୍ ସହିତ ସଂଘର୍ଷ ମଧ୍ୟରେ ଆନୁଷଙ୍ଗିକ ସଭାସମିତିର ସମାପ୍ତି ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହୋଇଥିଲା ।

ଜମି ପାଇଁ ସଂଗ୍ରାମ ବ୍ୟତୀତ ଭୂମିସ୍ୱତ୍ୱର ସର୍ତ୍ତାବଳୀ ଉନ୍ନୟନର ଆନ୍ଦୋଳନ ମଧ୍ୟ ସଂଗଠିତ ଓ ସ୍ୱତଃସ୍ଫୂର୍ତ୍ତ କୃଷକ ଆନ୍ଦୋଳନର ପ୍ରଧାନ ବିଷୟ ହୋଇ ଉଠିଥିଲା । କୃଷି ସଂସ୍କାରର ସମ୍ଭାବନାକୁ ଅନୁମାନ କରି ଜମିଦାରମାନେ ଭାଗ ଚାଷୀମାନଙ୍କୁ ଅଧିକ ଜମି ଖଜଣାରେ ଦେବା ପାଇଁ (କୃଷି ସଂସ୍କାର ଏହି ଧରଣର ଜମି ଜମିଦାରଙ୍କ ଦଖଲରେ ରଖିଥିଲା) ବ୍ୟାପକ ହାରରେ ସ୍ଥାୟୀ ରଇତମାନଙ୍କୁ ଉଚ୍ଛେଦ କରିବାକୁ ଆରମ୍ଭ କରିଦେଲେ । କୃଷକମାନଙ୍କ ପ୍ରତିରୋଧ ଅବିଳମ୍ବେ ଜମିଦାରମାନଙ୍କ ସହିତ ମାରାତ୍ମକ ସଂଘର୍ଷର ଆକାର ଧାରଣ କରିଲେ କେତେକ ରାଜ୍ୟର (ଯଥା ଉତ୍ତର ପ୍ରଦେଶ ଓ ମାନ୍ଦ୍ରାଜ) ସରକାର ଜୋରଜବରଦସ୍ତ ରଇତ ଉଚ୍ଛେଦ ବନ୍ଦ ପାଇଁ ବିଶେଷ ଆଇନ୍ ଜାରି କରିବାକୁ ବାଧ୍ୟ ହୋଇଥିଲେ ।

କାର୍ଯ୍ୟତଃ ସମସ୍ତ ଅଧିକାରରୁ ବଞ୍ଚିତ ଏବଂ ନିର୍ମମ ଭାବେ ଶୋଷିତ ଭାଗ ଚାଷୀମାନଙ୍କ ଉପରେ ଅଧିକାଂଶ ରାଜ୍ୟ ଚାଳିଶ ଓ ପଚାଶ ଦଶକର ଆଇନ୍ ଜରିଆରେ ଜମିଦାର – ରଇତ ସଂପର୍କ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିଥିଲେ । ଏହା ଦ୍ୱାରା ଖଜଣାର ସର୍ବୋଚ୍ଚ ପରିମାଣ ନିର୍ଦ୍ଧାରଣ କରିବା ସାଥେ ସାଥେ ପ୍ରଜାମାନଙ୍କୁ ଉଚ୍ଛେଦ କରିବାରେ ଜମିଦାରମାନଙ୍କ ଅଧିକାରକୁ ସୀମିତ କରିବା ଆଦି ଥିଲା । କିନ୍ତୁ ସ୍ଥାନୀୟ ପ୍ରଶାସନ ଓ ରାଜସ୍ୱ କର୍ମଚାରୀମାନଙ୍କ ସହିତ ଜମିଦାରମାନଙ୍କର ଯୋଗାଯୋଗ

ଏବଂ ଭାଗ ଋଷୀମାନଙ୍କର ବ୍ୟାପକ ଅଂଶ ମଧ୍ୟରେ ଶ୍ରେଣୀ ଚେତନାର ଅଭାବ ଓ ଦୁର୍ବଳ ରାଜନୈତିକ ସଂଗଠନ ହେତୁ ଏହି ନୂତନ ଆଇନ୍‌ସବୁ ଯଥାଯଥ ଭାବେ କାର୍ଯ୍ୟକାରୀ ହେଲ ନାହିଁ । ଏହି ପରିସ୍ଥିତିରେ କମ୍ୟୁନିଷ୍ଟମାନଙ୍କର ନେତୃତ୍ୱାଧୀନ କୃଷକ ସଭାଗୁଡ଼ିକ ନୂତନ ପ୍ରଜାସ୍ୱତ୍ୱ ଆଇନ୍‌ର ତାତ୍ପର୍ଯ୍ୟ ବୁଝାଇବା ପାଇଁ ଋଇତ ଋଷୀମାନଙ୍କ ମଧ୍ୟରେ ବ୍ୟାପକ ପ୍ରଋର ସମେତ ଅନ୍ୟାନ୍ୟ କାର୍ଯ୍ୟକଳାପ ଚଳାଇଥିଲେ ଏବଂ ସାମନ୍ତବାଦୀ ଶୋଷଣକୁ ସୀମାବଦ୍ଧ କରିବା ସଂଗ୍ରାମରେ ସେମାନଙ୍କୁ ଐକ୍ୟବଦ୍ଧ କରିଥିଲେ ।

ଦେଶର କେତେକ ଅଞ୍ଚଳରେ (ଉତ୍ତର ପ୍ରଦେଶ, ମାନ୍ଦ୍ରାଜ, ଓଡ଼ିଶା ଓ ପଞ୍ଜାବର କେତେକ ଜିଲ୍ଲ ଏବଂ ଅନ୍ୟତ୍ର) କ୍ଷେତ ମଜୁରିଆମାନଙ୍କର ସଂଗଠିତ ସଂଗ୍ରାମ ଦାନା ବାନ୍ଧି ଉଠିଥିଲ ଏବଂ ବିଶେଷ ଧରଣର ସମିତିରେ ଐକ୍ୟବଦ୍ଧ ହୋଇ ସେମାନେ ଅଧିକ ଦୈନିକ ମଜୁରି ଓ ଉନ୍ନତତର କାର୍ଯ୍ୟ ସର୍ତ୍ତ ଦାବି କରିଥିଲେ । କିନ୍ତୁ ଗ୍ରାମ୍ୟ ସର୍ବହରାର ଏହି ସଂଗ୍ରାମ ଥିଲ ସ୍ଥାନୀୟ, ସୀମିତ ସମ୍ଭାବନାଶୀଳ ଏବଂ ସର୍ବାତ୍ମକ କୃଷକ ଆନ୍ଦୋଳନରେ ଏହା ନଗଣ୍ୟ ଭୂମିକା ପାଳନ କରିଥିଲ ।

ପୁଞ୍ଜିବାଦୀ ପୁନଃସଜ୍ଜୀକରଣ (ଦୀର୍ଘତର କାର୍ଯ୍ୟ ଦିନ, ଉତ୍ପାଦନର ବର୍ଦ୍ଧମାନ ମାତ୍ରା ଆଦି) ବିରୁଦ୍ଧରେ ଋଳିତ ଅର୍ଥନୈତିକ ଅଧିକାର ପାଇଁ ସଂଗ୍ରାମ ଛଡ଼ା ମଜୁରି ବୃଦ୍ଧିର ଦାବି ଏବଂ ୧୯୪୮ ଖ୍ରୀଷ୍ଟାବ୍ଦର ଶ୍ରମ ଆଇନ୍ ଅନୁସରଣରେ ମାଲିକମାନଙ୍କର ବାଧାଦାନ ପାଇଁ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ ପଋଶ ଦଶକର ପ୍ରାରମ୍ଭିକ ବର୍ଷଗୁଡ଼ିକରେ ଶ୍ରମିକ ଆନ୍ଦୋଳନର କ୍ରିୟାକଳାପର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇ ଉଠିଥିଲ । ଟ୍ରେଡ୍‌ୟୁନିଅନ୍‌ମାନେ ମାଲିକମାନଙ୍କ ସହିତ ସେମାନଙ୍କ ସଂପର୍କ ଏବଂ ନୂତନ ଶ୍ରମ ଆଇନ୍ ପ୍ରୟୋଗର ଦାୟିତ୍ୱପ୍ରାପ୍ତ ସରକାରୀ ସଂସ୍ଥାଗୁଡ଼ିକ ପ୍ରତି ଅଧିକ ନଜର ଦେଇଥିଲେ । ୧୯୫୦ ଖ୍ରୀଷ୍ଟାବ୍ଦରେ ରଚିତ ଏକ ଚିଠା ଆଇନ୍ ବସ୍ତୁତଃ ଟ୍ରେଡ୍‌ୟୁନିଅନ୍‌ର କ୍ରିୟାକଳାପକୁ ପୂରାପୂରି ସରକାରୀ ନିୟନ୍ତ୍ରଣକୁ ଆଣିଥିଲ । କିନ୍ତୁ ଶ୍ରମିକ ଶ୍ରେଣୀର ଦୃଢ଼ ଆନ୍ଦୋଳନ ଫଳରେ ଚିଠାଟି ଆଇନ୍‌ରେ ପରିଣତ ହୋଇ ପାରି ନଥିଲ ।

୧୯୫୧-୧୯୫୩ ଖ୍ରୀଷ୍ଟାବ୍ଦର ଖାଦ୍ୟ ସଂକଟ ଏବଂ ମୂଲ୍ୟ ବୃଦ୍ଧି ତତ୍କାଳୀନ ଧର୍ମଘଟ ଆନ୍ଦୋଳନ ଉପରେ ବିରୂପ ପ୍ରତିକ୍ରିୟା ସୃଷ୍ଟି କରିଥିଲ । ପ୍ରକଟିତ ବୈଷୟିକ ଦାରିଦ୍ର୍ୟ ମଧ୍ୟରେ ଶ୍ରମିକମାନଙ୍କ ପକ୍ଷରେ ଦୀର୍ଘ କାଳ ଧର୍ମଘଟ ଚଳେଇ ଯିବା କଠିନ ହୋଇ ଉଠିଥିଲ । ଏଥି ପାଇଁ ୧୯୫୦ ଖ୍ରୀଷ୍ଟାବ୍ଦରେ ବିନଷ୍ଟ ୧ କୋଟି ୩୦ ଲକ୍ଷ କର୍ମଦିବସର ସଂଖ୍ୟା ୧୯୫୧-୧୯୫୪ ଖ୍ରୀଷ୍ଟାବ୍ଦରେ ୩୦-୪୦ ଲକ୍ଷକୁ କମି ଆସିଥିଲ ।

ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ବିଭାଜନ ଏବଂ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଋଳିତ ଟ୍ରେଡ୍‌ୟୁନିଅନ ଉପରେ ବାମପନ୍ଥୀ ସଂକୀର୍ଣ୍ଣତାବାଦୀ ବିଚ୍ୟୁତିର ପ୍ରଭାବ ଫଳରେ ଶ୍ରମିକ ଶ୍ରେଣୀର ଆନ୍ଦୋଳନ ଅନେକ କ୍ଷତିଗ୍ରସ୍ତ ହୋଇଥିଲ ।

## ୧୯୫୧-୧୯୫୨ ଖ୍ରୀଷ୍ଟାବ୍ଦର ପ୍ରଥମ ସାଧାରଣ ନିର୍ବାଚନ

ବସ୍ତୁଗତ ଓ ମନୋଗତ ଉଭୟ ଧରଣର ଗୁରୁତର ସମସ୍ୟା ସତ୍ତ୍ୱେ ଶ୍ରମିକ, କୃଷକ ଓ ସହରରେ ପେଟି-ବୁର୍ଜୁଆମାନଙ୍କର ବ୍ୟାପକ ଆନ୍ଦୋଳନ ପ୍ରଥମ ସାଧାରଣ ନିର୍ବାଚନର ଫଳାଫଳକୁ ପ୍ରଭାବିତ

କରିଥିଲା । ଏହି ନିର୍ବାଚନ ଥିଲା ଭାରତକୁ ପ୍ରଜାତନ୍ତ୍ର ଘୋଷଣାର ପରବର୍ତ୍ତୀ ଆଭ୍ୟନ୍ତରୀଣ ରାଜନୀତି କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଦିକ୍‌ଚିହ୍ନ ସ୍ୱରୂପ ।

ଭାରତ ଭଳି ବିଶାଳ ଏକ ଦେଶରେ ସାଧାରଣ ନିର୍ବାଚନ ପାଇଁ (ପାର୍ଲିଆମେଣ୍ଟ ଓ ରାଜ୍ୟ ବିଧାନ ସଭା), ସର୍ବୋପରି ଏଥି ପାଇଁ ପ୍ରୟୋଜନୀୟ ଯଥେଷ୍ଟ ସଂଖ୍ୟକ ସରକାରୀ କର୍ମଚାରୀ ସଂଗ୍ରହ ସହଜ ନଥିଲା । ବୁର୍ଜୁଆ ପାର୍ଲିଆମେଣ୍ଟର ନିୟମକାନୁନ୍ ସଂପର୍କରେ ଅଜ୍ଞତା ହେତୁ ସାରା ଦେଶରେ ଏକା ସାଙ୍ଗରେ ନିର୍ବାଚନ ଅନୁଷ୍ଠାନ କରିବା ଅସମ୍ଭବ ଥିଲା । ୧୯୫୧ ଖ୍ରୀଷ୍ଟାବ୍ଦର ଅକ୍ଟୋବର ୨୫ରୁ ୧୯୫୨ ଖ୍ରୀଷ୍ଟାବ୍ଦର ଫେବୃଆରୀ ୨୪ ତାରିଖ ପର୍ଯ୍ୟନ୍ତ ଏହି ନିର୍ବାଚନ ଚାଲିଥିଲା ।

୧୯୫୧ ଖ୍ରୀଷ୍ଟାବ୍ଦରେ ଦେଶରେ ଯେଉଁ ନିର୍ବାଚନୀ ପ୍ରଚାର ଚାଲିଥିଲା, ତାହା ଦେଶର ବିଭିନ୍ନ ରାଜନୈତିକ ସଂଗଠନକୁ ମଜ୍‌ବୁତ୍ କରିବାରେ ଏବଂ ଦେଶର ସାମାଜିକ-ରାଜନୈତିକ ଶକ୍ତିଗୁଡ଼ିକର ଭାରସାମ୍ୟକୁ ନିର୍ଣ୍ଣୟ କରିବାରେ ସାହାଯ୍ୟ କରିଥିଲା ।

ଜାତୀୟ କଂଗ୍ରେସ ଜନପ୍ରିୟତା ଦୃଷ୍ଟିରୁ ଅନ୍ୟ ରାଜନୈତିକ ସଂଗଠନମାନଙ୍କ ଠାରୁ ଯେ ଅନେକ ଆଗରେ ଥିଲା (ଏମାନଙ୍କର ବିପୁଳ ସଂଖ୍ୟାଟି ଥିଲା କୃଷକ, କିମ୍ବା ସହରରେ ପେଟି-ବୁର୍ଜୁଆମାନଙ୍କର ବିଭିନ୍ନ ସ୍ତର), ତାହା ନିର୍ବାଚନ ପୂର୍ବରୁ ପରିଷ୍କାର ଜଣା ପଡ଼ୁଥିଲା । ଏହା କେବଳ କଂଗ୍ରେସ ଉପରେ ନ୍ୟସ୍ତ ତତ୍କାଳୀନ ଐତିହାସିକ ଭୂମିକା, ଜାତୀୟ ବିପ୍ଳବକୁ ଜୟଯୁକ୍ତ କରିବା ବା ଶାସକ ଦଳ ହିସାବରେ ତା'ର କାର୍ଯ୍ୟକଳାପ ପାଇଁ ନୁହେଁ, ରାଜନୈତିକ ଗଣ ସଂଗଠନ ହିସାବରେ ତା'ର ବିଶେଷ ମୌଳିକ ଚରିତ୍ର ପାଇଁ ଘଟିଥିଲା । ସେତେବେଳେ ଜାତୀୟ ବୁର୍ଜୁଆମାନଙ୍କର ବୃହତ୍ତମ ଓ ସବୁଠାରୁ ପ୍ରଭାବଶାଳୀ ଅଂଶ ଓ ସହରର ପେଟି-ବୁର୍ଜୁଆମାନଙ୍କର ବ୍ୟାପକ ସ୍ତର ଓ କୃଷକମାନଙ୍କର ସମର୍ଥନ ପୁଷ୍ଟ ଜାତୀୟ କଂଗ୍ରେସର ଥିଲା ଦେଶବ୍ୟାପୀ ସଂଗଠନ । ଏହାର କର୍ମନୀତି ସଂକ୍ରାନ୍ତ ଦଲିଲରେ ଉପରୋକ୍ତ ଶ୍ରେଣୀଗୁଡ଼ିକର ସ୍ୱାର୍ଥ ହିଁ ମୂଳତଃ ପ୍ରତିଫଳିତ ହୋଇଥିଲା । କଂଗ୍ରେସର ନେତୃତ୍ୱ ମଧ୍ୟରେ ପେଟି-ବୁର୍ଜୁଆମାନଙ୍କର ବିଭିନ୍ନ ସ୍ତରଗୁଡ଼ିକ ମଧ୍ୟ ପ୍ରତିନିଧିତ୍ୱ କରୁଥିଲେ । ପାର୍ଟି ହିସାବରେ କଂଗ୍ରେସର ଏହି ସାଂଗଠନିକ ଓ ରାଜନୈତିକ ଗଢ଼ଣର ସ୍ୱକୀୟ ବୈଶିଷ୍ଟ୍ୟ ହିଁ ମୂଳତଃ ତା'ର ଗଣ ସମର୍ଥନକୁ ଅକ୍ଷୁଣ୍ଣ ରଖିବାରେ ସହାୟକ ହୋଇଥିଲା ।

କଂଗ୍ରେସ ମଧ୍ୟରେ ଭାରତୀୟ ରାଜନୀତିର ସଂପୂର୍ଣ୍ଣ ପରିସରଟିର ମଧ୍ୟ ପ୍ରତିଫଳନ ଘଟିଥିଲା । ଏହାର ଦକ୍ଷିଣପନ୍ଥୀ ଅଂଶଟି ସାମନ୍ତ ଓ ସାଂପ୍ରଦାୟିକ ବିଭିନ୍ନ ଦଳକୁ ନେଇ ଗଠିତ ହୋଇଥିଲା । ଏସବୁ ମଧ୍ୟରେ ସର୍ବାଧିକ ପ୍ରଭାବଶାଳୀ ରାମ ରାଜ୍ୟ ପରିଷଦ ଥିଲା ପୂର୍ବତନ ଦେଶୀୟ ରାଜନ୍ୟବର୍ଗ, ପ୍ରାଚୀନତମ ହିନ୍ଦୁ ସାଂପ୍ରଦାୟିକ ସଂଗଠନ ହିନ୍ଦୁ ମହାସଭା ଏବଂ ଅଂଶତଃ ଜନସଂଘକୁ ନେଇ ଗଠିତ । ନିର୍ବାଚନର ପୂର୍ବକ୍ଷଣରେ ଗଠିତ ଏହି ଶେଷୋକ୍ତ ଦଳଟି ହିନ୍ଦୁ ବଣିକ ବୁର୍ଜୁଆ ଏବଂ ସହରର ମଧ୍ୟବିତ୍ତମାନଙ୍କର ଉଗ୍ରଜାତୀୟତାବାଦୀ ଅଂଶର ଉଲ୍ଲେଖଯୋଗ୍ୟ ସମର୍ଥନ ପାଇଥିଲା ।

ଏସବୁ ଏବଂ ଅନ୍ୟାନ୍ୟ ଦକ୍ଷିଣପନ୍ଥୀ ବିରୋଧୀମାନେ ମୂଳତଃ ସାମନ୍ତ ଶାସକ, ଜମିଦାରଙ୍କ ସମେତ ବଣିକ ଓ ମହାଜନମାନଙ୍କର ସ୍ୱାର୍ଥ ରକ୍ଷା କରିବାକୁ ଚେଷ୍ଟା କରିଥିଲେ ।

କଂଗ୍ରେସର ବାମପନ୍ଥୀ ବିରୋଧୀ ଦଳ ମଧ୍ୟରେ ଥିଲେ ସଂପ୍ରତି ପୂର୍ବତନ ମର୍ଯ୍ୟାଦାକୁ ପୁନର୍ବାର ପ୍ରତିଷ୍ଠା କରିଥିବା ଭାରତର କମ୍ୟୁନିଷ୍ଟ ଏବଂ "ଫରଓ୍ୱାର୍ଡ ବ୍ଲକ"—ବିପ୍ଳବୀ-ଗଣତନ୍ତ୍ରବାଦୀ ଦଳଗୁଡ଼ିକ, ବିପ୍ଳବୀ-ସମାଜବାଦୀ, ମହାରାଷ୍ଟ୍ରର ଶ୍ରମିକ ଓ କୃଷକ ପାର୍ଟି ଭଳି କେତେକ ଦଳ । କେତେକ

ରାଜ୍ୟ ମଧ୍ୟରେ ସୀମାବଦ୍ଧ ଏହିସବୁ ବିପ୍ଳବୀ-ଗଣତନ୍ତ୍ରବାଦୀ ଦଳଗୁଡ଼ିକର କୌଣସି ଦେଶବ୍ୟାପୀ ସମର୍ଥନ ନଥିଲା । ଏସବୁର ଭାବାଦର୍ଶ ଥିଲା ମାର୍କସ୍‌ବାଦ, ପେଟି-ବୁର୍ଜୁଆ ସମାଜବାଦ ଏବଂ ଗାନ୍ଧୀବାଦର ମିଶ୍ରଣ ।

ପେଟି-ବୁର୍ଜୁଆମାନଙ୍କ ସମାଜବାଦୀ ଦଳ ଏବଂ କୃଷକ ମଜଦୁର ପ୍ରଜା ପାର୍ଟି ଅନେକ ପରିମାଣରେ "ବାମପନ୍ଥୀ କେନ୍ଦ୍ର" ହିସାବରେ ଗଢ଼ି ଉଠିଥିଲା । ପାଶ୍ଚାତ୍ୟର ସୋସାଲ-ଡେମୋକ୍ରାସିର ସୁସ୍ପଷ୍ଟ ପ୍ରଭାବପୁଷ୍ଟ ଏହିସବୁ ପାର୍ଟି ଥିଲେ କମ୍ୟୁନିଜମ୍‌ବିରୋଧୀ ଏବଂ ସମାଜବାଦୀ ଦେଶମାନଙ୍କ ପ୍ରତି ଶତ୍ରୁ ଭାବାପନ୍ନ ।

ନିର୍ବାଚନ ପୂର୍ବ ପ୍ରଚାରାଭିଯାନରେ ପ୍ରାୟ ୮୦ଟି ରାଜନୈତିକ ଦଳ ଅଂଶଗ୍ରହଣ କରିଥିଲେ । ଭାରତର ଦଳଗତ-ରାଜନୈତିକ ଗଢ଼ଣର ବୈଶିଷ୍ଟ୍ୟ ହେଲା : ଗୋଟିଏ ମାତ୍ର ରାଜ୍ୟ କିମ୍ବା ରାଜ୍ୟର କୌଣସି ଏକ ଅଞ୍ଚଳରେ ଅଧିକାଂଶ ସଂଗଠନର ସୀମିତ ପ୍ରଭାବ; ବିପ୍ଳବୀ-ଗଣତାନ୍ତ୍ରିକ ଏବଂ ବୁର୍ଜୁଆ-ଜାତୀୟତାବାଦୀ ଭାବାଦର୍ଶ ଓ ରାଜନୀତିର ଜଟିଳ ମିଶ୍ରଣ; ବୁର୍ଜୁଆ ଓ ପେଟି-ବୁର୍ଜୁଆ ସ୍ୱାର୍ଥ ମଧ୍ୟରେ ଅସ୍ପଷ୍ଟ ସୀମାରେଖା; ରାଜନୈତିକ ସଂଗଠନଗୁଡ଼ିକ ଗଢ଼ି ଉଠିବା ପଛରେ ଧର୍ମୀୟ, ବର୍ଣ୍ଣଗତ ଓ ଆଞ୍ଚଳିକ ସ୍ୱାର୍ଥର ଉଲ୍ଲେଖଯୋଗ୍ୟ ଭୂମିକା (ଏଥିରେ ପୁଞ୍ଜିବାଦକୁ ଉତ୍ତରଣ ପଥରେ ଭାରତୀୟ ସମାଜର ସାମାଜିକ ଓ ଶ୍ରେଣୀଗତ ଗଢ଼ଣର ନିର୍ଭରଯୋଗ୍ୟ ପ୍ରତିଫଳନ ଘଟିଥିଲା, ପେଟି-ବୁର୍ଜୁଆମାନଙ୍କର ସ୍ତର ଓ ଦଳଗୁଡ଼ିକର ପ୍ରାଧାନ୍ୟ ସହିତ ବର୍ତ୍ତମାନ ବିଲୀନ ସାମନ୍ତ ଶ୍ରେଣୀର ସ୍ୱାର୍ଥ ମଧ୍ୟ ମିଶି ଯାଇଥିଲା) । ଭାରତର ରାଜନୈତିକ ଜୀବନ ସେତେବେଳେ ଉଦୀୟମାନ ଭାରତୀୟ ବୁର୍ଜୁଆମାନଙ୍କର (ଯେଉଁମାନଙ୍କର ପ୍ରଧାନ ଗୋଷ୍ଠୀଗୁଡ଼ିକ ପ୍ରାୟ ସ୍ଥାନୀୟ, ଜାତିଗତ ଓ ଆଞ୍ଚଳିକ ସ୍ୱାର୍ଥର ପ୍ରତିନିଧି ସ୍ୱରୂପ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀମାନଙ୍କୁ ନେଇ ଗଠିତ) ବୈଶିଷ୍ଟ୍ୟ ଏବଂ ବର୍ଣ୍ଣ ଓ ଧର୍ମ ଭଳି ପ୍ରଥାସିଦ୍ଧ ସାମାଜିକ ପରମ୍ପରା ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଥିଲା ।

ନିର୍ବାଚନର ପୂର୍ବକ୍ଷଣରେ ଦକ୍ଷିଣପନ୍ଥୀ ସମାଜବାଦୀ ନେତାମାନେ ଜାତୀୟ କଂଗ୍ରେସର ରାଜନୈତିକ ଏକଚଟିଆ କ୍ଷମତାକୁ ଖର୍ବ କରିବା ସଙ୍ଗେ ସଙ୍ଗେ ଦେଶର କ୍ଷମତାର ଦାବିଦାର ହିସାବରେ ଏକ ଶକ୍ତିଶାଳୀ ବିରୋଧୀ ଦଳ ଗଠନ ସଂପର୍କରେ ଚିନ୍ତା କରିଥିଲେ । କିନ୍ତୁ ବାସ୍ତବତା ସେମାନଙ୍କ ଆଶାକୁ ପଣ୍ଡ କରି ଦେଇଥିଲା । ନିର୍ବାଚନରୁ ଦେଖାଗଲା ଯେ, କଂଗ୍ରେସକୁ ବିପୁଳ ସଂଖ୍ୟକ ଭୋଟଦାତା ସମର୍ଥନ ଦେଇଥିଲେ ଏବଂ କଂଗ୍ରେସ ବିରୋଧୀ ବାମପନ୍ଥୀମାନଙ୍କ ମଧ୍ୟରୁ କେତେକ ବିପ୍ଳବୀ-ଗଣତନ୍ତ୍ରବାଦୀ ଦଳଙ୍କ ସମେତ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ପ୍ରାଧାନ୍ୟ ଲାଭ କରିଥିଲେ । କମ୍ୟୁନିଷ୍ଟମାନେ ପଶ୍ଚିମ ବଂଗ, ବିହାର, ଓଡ଼ିଶା, ମାଦ୍ରାଜ, ତ୍ରିଭାଙ୍କୁର-କୋଚିନ ଭଳି କେତେକ ରାଜ୍ୟରେ ସଂଯୁକ୍ତ ସାମ୍ମୁଖ୍ୟ ଗଠନ କରିବାକୁ ସଫଳ ହୋଇଥିଲେ ।

ଦକ୍ଷିଣପନ୍ଥୀ-ସମାଜବାଦୀ ଦଳ ଏବଂ ପ୍ରତିକ୍ରିୟାଶୀଳ ସାଂପ୍ରଦାୟିକ ଦଳଗୁଡ଼ିକ ମଧ୍ୟ ଚରମ ପରାଜୟ ବରଣ କରିଥିଲେ ।

ପାର୍ଲିଆମେଣ୍ଟ ନିର୍ବାଚନର ଫଳାଫଳ ଥିଲା ନିମ୍ନ ରୂପେ : ଜାତୀୟ କଂଗ୍ରେସ ଶତକଡ଼ା ୪୪.୫ ଭାଗ ଭୋଟ ଓ ୭୪.୩ ଶତାଂଶ ଆସନ (ସଂଖ୍ୟାଗରିଷ୍ଠ ବ୍ୟବସ୍ଥାନୁଯାୟୀ); କମ୍ୟୁନିଷ୍ଟ ଓ ସେମାନଙ୍କ ସହଯୋଗୀ ୬.୭ ଶତାଂଶ ଭୋଟ ଓ ୧୦ ଶତାଂଶ ଭଳି ଆସନ; ଦକ୍ଷିଣପନ୍ଥୀ ସମାଜବାଦୀମାନେ ୧୨.୬ ଶତାଂଶ ଭୋଟ, କିନ୍ତୁ ୫ ଶତାଂଶରୁ କମ୍ ଆସନ,

ପ୍ରତିକ୍ରିୟାଶୀଳ ତିନୋଟି ଦଳ—ହିନ୍ଦୁ ମହାସଭା, ରାମ ରାଜ୍ୟ ପରିଷଦ ଓ ଜନସଂଘ ମାତ୍ର ୪.୮ ଶତାଂଶ ଭୋଟ ଓ ୧୦ ଶତାଂଶ ଆସନ (ମୋଟ ଆସନ ସଂଖ୍ୟା ୪୮୦) ।

ରାଜ୍ୟ ବିଧାନସଭାଗୁଡ଼ିକର ନିର୍ବାଚନୀ ଫଳାଫଳ ଥିଲା : କଂଗ୍ରେସ ମୋଟ ଭୋଟର ୪୨ ଶତାଂଶ ଓ ୬୫.୬ ଶତାଂଶ ଆସନ (ମୋଟ ୨୨୪୮ଟି ଆସନ); କମ୍ୟୁନିଷ୍ଟ ପାର୍ଟି ଓ ତା'ର ସହଯୋଗୀ ଦଳସମୂହ ୨୩୪ଟି ଆସନ, ଦକ୍ଷିଣପନ୍ଥୀ-ସମାଜବାଦୀ ଦଳଗୁଡ଼ିକ ୨୦୪ଟି ଆସନ ଏବଂ ପ୍ରତିକ୍ରିୟାଶୀଳ ତିନୋଟି ଦଳ ୮୭ଟି ଆସନ ।

ନିର୍ବାଚନ ପରେ କଂଗ୍ରେସ କେନ୍ଦ୍ର ଏବଂ ରାଜ୍ୟଗୁଡ଼ିକରେ ଏକଦଳୀୟ ସରକାର ଗଠନ କରିବାର ସୁଯୋଗ ପାଇଥିଲା । ଗାନ୍ଧୀ ଓ ନେହରୁଙ୍କ ପାର୍ଟି ତା'ର ନିର୍ବାଚନୀ ଇସ୍ତାହାରରେ ଘୋଷିତ ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ସାଧନର କର୍ମସୂଚୀଟି ବାସ୍ତବାୟିତ କରିବ, ଏହି ଆଶାରେ ଅଧିକାଂଶ ଭୋଟଦାତା କଂଗ୍ରେସକୁ ଭୋଟ ଦେଇଥିଲେ । ନିର୍ବାଚନରୁ ଭାରତୀୟ ଜନମତରେ ବାମପନ୍ଥୀ ପ୍ରବଣତା ସ୍ପଷ୍ଟ ହୋଇ ଉଠିଥିଲା । ୩୦ ହଜାର ସଦସ୍ୟ ବିଶିଷ୍ଟ କମ୍ୟୁନିଷ୍ଟ ପାର୍ଟି ୬୦ ଲକ୍ଷ ଲୋକଙ୍କର ଭୋଟ ପାଇଥିଲା । ଏହି ପାର୍ଟି ବିଶେଷ କରି ପଶ୍ଚିମ ବଂଗ ଏବଂ ମାନ୍ଦ୍ରାଜ, ହାଇଦରାବାଦ, ତ୍ରିଭାଙ୍କୁର-କୋଚିନ ଭଳି ଦକ୍ଷିଣ ଭାରତୀୟ ରାଜ୍ୟଗୁଡ଼ିକରେ ଦୃଢ଼ ଭିତ୍ତି ପ୍ରତିଷ୍ଠା କରିଥିଲା । ଏହିସବୁ ଏଲାକାରେ କୃଷକ ସଂଗଠନଗୁଡ଼ିକ ଏମାନଙ୍କୁ ସମର୍ଥନ ଦେଇଥିଲେ ।

ନିର୍ବାଚନ ମାଧ୍ୟମରେ ଶାସକ ଦଳ ଦେଶର ଔପନିବେଶିକ ଓ ସାମନ୍ତବାଦୀ ଗଢ଼ଣର ପୁନର୍ଗଠନ ନିମିତ୍ତ ଅନୁକୂଳ ଅର୍ଥନୈତିକ ଓ ସାମାଜିକ କର୍ମସୂଚୀ ବାସ୍ତବାୟନ କରିବାର ପୂର୍ଣ୍ଣ ଅଧିକାର ପାଇଥିଲା ।

# ଅର୍ଥନୈତିକ ଓ ସାମାଜିକ କର୍ମନୀତି

## କୃଷି ସଂସ୍କାର

ଚାଳିଶ ଦଶକର ଶେଷ ଓ ପଚାଶ ଦଶକର ପ୍ରାରମ୍ଭିକ ବର୍ଷଗୁଡ଼ିକରେ କୃଷି ସଂସ୍କାରର ବାସ୍ତବାୟନ ଥିଲା ଔପନିବେଶିକ କାଳଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିବା ଅର୍ଥନୈତିକ ବ୍ୟବସ୍ଥାର ପୁଞ୍ଜିବାଦୀ ରୂପାନ୍ତରର ଆନୁଷଙ୍ଗିକ ଅର୍ଥନୈତିକ କର୍ମନୀତି କ୍ଷେତ୍ରରେ ପ୍ରଥମ ପଦକ୍ଷେପ ।

କଂଗ୍ରେସ ୧୯୪୬ ଖ୍ରୀଷ୍ଟାବ୍ଦର ନିର୍ବାଚନୀ ଇସ୍ତାହାରରେ ଚାଷୀ ଓ ସରକାର ମଧ୍ୟରେ "ମଧ୍ୟବର୍ତ୍ତୀମାନଙ୍କର" ଅସ୍ତିତ୍ୱ ଲୋପକୁ ନିଜର ଲକ୍ଷ୍ୟ ରୂପେ ଘୋଷଣା କରିଥିଲା । କିନ୍ତୁ "ମଧ୍ୟବର୍ତ୍ତୀ" ବୋଇଲେ ଏଠାରେ କେବଳ ଜମିଦାରିଗୁଡ଼ିକୁ ବୁଝାଯାଇଥିଲା, ଜମିର ସାମନ୍ତବାଦୀ ମାଲିକାନାକୁ ଧରାଯାଇ ନଥିଲା । ସାମନ୍ତ ଭୂସ୍ୱାମୀ ଶ୍ରେଣୀଙ୍କର କୋଷ କେନ୍ଦ୍ର ସ୍ୱରୂପ ଏବଂ ଭାରତରେ ବ୍ରିଟିଶ୍ ଶାସନର ଦୃଢ଼ ସମର୍ଥକ ଜମିଦାରମାନେ ଥିଲେ ଜମି ମାଲିକ ଶ୍ରେଣୀର ପ୍ରତିକ୍ରିୟାଶୀଳତମ ଅଂଶର ପ୍ରତିନିଧି । ଅନ୍ୟାନ୍ୟ ଜମିମାଲିକମାନଙ୍କ ତୁଳନାରେ ଭାରତର ଜାତୀୟ ବୁର୍ଜୁଆମାନଙ୍କ ସହିତ ଏମାନଙ୍କର ଯଥେଷ୍ଟ ଯୋଗାଯୋଗ ନଥିଲା । ତେଣୁ ଜମିମାଲିକାନାର ପୂର୍ବତନ ବ୍ୟବସ୍ଥା ପରିବର୍ତ୍ତନ ଲକ୍ଷ୍ୟରେ କୃଷି ସଂକ୍ରାନ୍ତ ଆଇନ୍ ପ୍ରଣୟନ ବେଳେ ଏମାନଙ୍କ ଜମିଦାରିସବୁକୁ ନିୟନ୍ତ୍ରଣ କରିବା ଥିଲା ଏହାର ପ୍ରଥମ

ପଦକ୍ଷେପ । ୧୯୪୭ ଓ ୧୯୫୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରତ୍ୟେକ ରାଜ୍ୟ କୃଷି ସଂସ୍କାର ବିଲ୍ (ଜମିଦାରି ଉଚ୍ଛେଦ ଆଇନ୍ ବୋଲି କହିବା ଉଚିତ) ସେମାନଙ୍କ ଆଇନ୍ ସଭାରେ ପାଶ୍ କରିଥିଲେ ଏବଂ ତାହା ଭାରତର ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କରିଥିଲା । କିନ୍ତୁ ଏହି ସଂସ୍କାର ଫଳରେ ରଯତଓ୍ୱାରି ବ୍ୟବସ୍ଥାଧୀନ ଅଞ୍ଚଳର ଜମିମାଲିକ ଶ୍ରେଣୀ (ଦେଶର ମୋଟ ଚାଷ ଜମିର ୫୭ ଶତାଂଶର ମାଲିକ) ମୋଟେ କ୍ଷତିଗ୍ରସ୍ତ ହୋଇ ନଥିଲେ ।

ଦେଶର ଅବଶିଷ୍ଟ ଅଂଶରେ ଜମିଦାରିସମୂହର ଏକାଂଶ କେବଳ ଉଚ୍ଛେଦ ହୋଇଥିଲା । ଜମିଦାରି ଉଚ୍ଛେଦ ଆଇନ୍‌ରେ "ସିର୍" ଓ ଖୁଦ୍‌କାଶ୍ତ ଜମିଗୁଡ଼ିକର ମାଲିକାନାର କୌଣସି ପରିବର୍ତ୍ତନ ଘଟି ନଥିଲା । ତା'ଛଡ଼ା ଜମିଦାରମାନଙ୍କର ନିଜସ୍ୱ ଖମାର, କୃଷି ଯନ୍ତ୍ରପାତି, ଗୋସଂପଦ ଓ ଅନ୍ୟାନ୍ୟ ସଂପତ୍ତି ସମେତ ଆବାସିକ ଏଲାକାରେ ସେମାନଙ୍କ ମାଲିକାନା ଅତୁଟ ରହିଥିଲା । କହିବା ବାହୁଲ୍ୟ, ଏହିସବୁ ସଂପତ୍ତି କୃଷକମାନଙ୍କ ଉପରେ ଅର୍ଦ୍ଧସାମନ୍ତବାଦୀ ଶୋଷଣ ଫଳରେ ଅର୍ଜିତ ହୋଇଥିଲା ।

ଜମିଦାରି ପ୍ରଥା ଉଚ୍ଛେଦ ପାଇଁ ଉପସ୍ଥାପିତ ଏହିସବୁ ଆଇନ୍‌ର ବୈଶିଷ୍ଟ୍ୟ ହେଲା – ଏହା ଦ୍ୱାରା ଜମିଦାରମାନଙ୍କୁ ମୋଟ ୭୦୦ କୋଟି ଟଙ୍କା କ୍ଷତିପୂରଣ ଦେବାକୁ ପଡ଼ିଥିଲା । ଏହି କ୍ଷତିପୂରଣର ଅର୍ଥ ସଂଗୃହୀତ ହୋଇଥିଲା ପୂର୍ବତନ ଜମିଦାରମାନଙ୍କର ଦଖଲରେ ଥିବା ଜମିରେ ବର୍ତ୍ତମାନ ଚାଷ କରୁଥିବା ରଇତ ଚାଷୀର ଭୂମି ରାଜସ୍ୱରୁ । ଅନେକ ରାଜ୍ୟରେ ଚାଷୀମାନେ ଜମିଦାରମାନଙ୍କ ସ୍ଥଳବର୍ତ୍ତୀ ସରକାରକୁ ପୂର୍ବେ ଯେତିକି ପରିମାଣରେ ଖଜଣା ଦେଉଥିଲେ ସେତିକି ଦେଲେ । ଏଥି ସଙ୍ଗେ ସଙ୍ଗେ ପ୍ରତିବର୍ଷ ଜମିଦାରମାନେ କ୍ଷତିପୂରଣ ହିସାବରେ ମୋଟ ପ୍ରାପ୍ୟର ଯେଉଁ ଅଂଶଟି ପାଉଥିଲେ, ତାହା ଥିଲା ଇତିପୂର୍ବରୁ ସେମାନଙ୍କ ଦ୍ୱାରା ସଂଗୃହୀତ ଭୂମି ରାଜସ୍ୱ ଠାରୁ କମ୍ । ଏହା ଥିଲା ଜାତୀୟ ବୁର୍ଜୁଆମାନଙ୍କ ସ୍ୱାର୍ଥରେ ଭାରତୀୟ ସମାଜର ମୁଖ୍ୟ ଶ୍ରେଣୀଗୁଡ଼ିକ ମଧ୍ୟରେ ଚାଷୀମାନଙ୍କ ଠାରୁ ସଂଗୃହୀତ ଉଦ୍‌ବୃତ୍ତ ଉପଲବ୍ଧିର ସମତୁଲ୍ୟ ଅର୍ଥର ପୁନର୍ବଣ୍ଟନର ନାମାନ୍ତର–ଏହି ଭାବେ ରାଷ୍ଟ୍ରୀୟ ବଜେଟକୁ ଆସୁଥିବା ନୂତନ ପାଣ୍ଠି ଦେଶର ପୁଞ୍ଜିବାଦୀ ଅର୍ଥନୀତିର ବିକାଶକୁ ତ୍ୱରାନ୍ୱିତ କରିବାରେ ବ୍ୟବହୃତ ହୋଇଥିଲା । ଜମିଦାରମାନଙ୍କର ଅଧିକାଂଶ ଜମି ହସ୍ତାନ୍ତରିତ ହୋଇଥିଲା, ଯଥା, ଉତ୍ତର ପ୍ରଦେଶରେ ୮୭ ଶତାଂଶ, ବିହାରରେ ୮୪ ଶତାଂଶ ଏବଂ ଜମିଦାରମାନେ ସେମାନଙ୍କ ମୋଟ ଜମିର ପ୍ରାୟ ୬୦ ଶତାଂଶ ହରେଇଥିଲେ ।

ଅର୍ଥାତ୍, ଜମିଦାରମାନଙ୍କ ମଧ୍ୟରୁ ଅଧିକାଂଶ ସଂସ୍କାର ପ୍ରବର୍ତ୍ତନ ହେବାର ପୂର୍ବ ତୁଳନାରେ ଏବେ ଅର୍ଥନୈତିକ ଭାବେ ଦୁରାବସ୍ଥାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ସେମାନଙ୍କ ଅର୍ଥନୈତିକ ଓ ଫଳତଃ ରାଜନୈତିକ ଅବସ୍ଥାନ ଦୁର୍ବଳ ହେଲେ ମଧ୍ୟ ସେମାନେ ସେତେବେଳେ ଜମିମାଲିକମାନଙ୍କ ଶ୍ରେଣୀର ଅନ୍ତର୍ଭୁକ୍ତ ଥିଲେ ।

ରଇତ ଚାଷୀମାନଙ୍କ ଅବସ୍ଥାକୁ ଏହି କୃଷି ସଂସ୍କାର କେତେ ପରିମାଣରେ ପ୍ରଭାବିତ କରିଥିଲା ? ଜମିଦାର ବା ତାଲୁକଦାରମାନଙ୍କର ପ୍ରତ୍ୟକ୍ଷ ରଇତମାନେ ଏଥର ରଯତଓ୍ୱାରି ଅଞ୍ଚଳରେ ଜମିମାଲିକର ସମମର୍ଯ୍ୟାଦା ଲାଭ କରିଥିଲେ । ଅଧିକାଂଶ ରାଜ୍ୟରେ (ଆସାମ, ପଶ୍ଚିମ ବଙ୍ଗ, ଓଡ଼ିଶା, ବିହାର, ଭୂପାଳ, ରାଜସ୍ଥାନ, ଆଜମିର, ମଧ୍ୟ ପ୍ରଦେଶ, ଆନ୍ଧ୍ର, ମାଡ୍ରାଜ, ପ୍ରଭୃତି) ଏହିସବୁ ରଇତ ଚାଷୀମାନେ ନୂତନ ଜମି ଜରୀପ ଓ ଭୂବନ୍ଦୋବସ୍ତ ପ୍ରବର୍ତ୍ତନ ସାଥେ ସାଥେ ସ୍ୱତଃସ୍ଫୂର୍ତ୍ତ ଭାବେ ଏହି ମର୍ଯ୍ୟାଦା ଲାଭ କରିଥିଲେ । କିନ୍ତୁ ଅନ୍ୟ କେତେକ ରାଜ୍ୟରେ (ଉତ୍ତର ପ୍ରଦେଶ, ବମ୍ବେ, ମହୀଶୂର ଆଦି) କ୍ଷତିପୂରଣ

ହିସାବରେ ଚାଷୀମାନଙ୍କୁ ଅର୍ଥ ଦେବାକୁ ପଡ଼ିଥିଲା (ଉତ୍ତର ପ୍ରଦେଶରେ ରାଜସ୍ୱର ୧୦ ଗୁଣ ଓ ସୌରାଷ୍ଟ୍ରରେ ରାଜସ୍ୱର ୬ ଗୁଣ) ।

ଅଧିକାଂଶ ରାଜ୍ୟରେ ଜମିଦାରମାନଙ୍କର ହସ୍ତଚ୍ୟୁତ ଜମିରେ ଚାଷବାସରତ କୃଷକମାନଙ୍କର ଅବସ୍ଥା ସଂସ୍କାର ପ୍ରବର୍ତ୍ତନ ପରେ ପ୍ରାୟ କିଛି ବଦଳିଲା ନାହିଁ । ଏମାନଙ୍କ ଖଜଣା ହାରର ପରିମାଣ ପୂର୍ବଭଳି ରହି ଯାଇଥିଲା । ଏପରିକି, ଯେଉଁସବୁ ରାଜ୍ୟରେ ଖଜଣାର ହାର ପୂର୍ବ ତୁଳନାରେ କମେଇ ଦିଆଯାଇଥିଲା, ସେଠାରେ ମଧ୍ୟ ଅବସ୍ଥାରେ କେବଳ ସାମାନ୍ୟ ପରିବର୍ତ୍ତନ ଘଟିଥିଲା (ସୌରାଷ୍ଟ୍ରର ଚାଷୀମାନେ ଥିଲେ ଏହାର ବ୍ୟତିକ୍ରମ) ।

ସମସ୍ତ ପୂର୍ବତନ ରଇତ ଚାଷୀମାନେ, ଅବଶ୍ୟ, ଏହା ଦ୍ୱାରା ଉପକୃତ ହୋଇଥିଲେ । କାରଣ, କୃଷି ସଂସ୍କାର ପ୍ରବର୍ତ୍ତନ ହେଲା ପରେ ସମସ୍ତ ପ୍ରକାରର ସାମନ୍ତବାଦୀ ଜବରଦସ୍ତମୂଳକ କ୍ରିୟା ବା ଆଦାୟ ବନ୍ଦ ହୋଇଥିଲା । କିନ୍ତୁ ଗ୍ରାମ୍ୟ ଜନସାଧାରଣଙ୍କ ଉପରେ ପ୍ରତ୍ୟକ୍ଷ କର ବୃଦ୍ଧି ସମେତ ପରୋକ୍ଷ କର ବୃଦ୍ଧି ଫଳରେ ଏହି ସୁବିଧାର କୌଣସି ମୂଲ୍ୟ ରହିଲା ନାହିଁ ।

ଏହି କୃଷି ସଂସ୍କାର କାର୍ଯ୍ୟକାରୀ ହୋଇଥିଲା ତୀବ୍ର ଏକ ରାଜନୈତିକ ସଂଘାତର ପୃଷ୍ଠପଟରେ । କୃଷକମାନେ ସେତେବେଳେ କୃଷି ସମସ୍ୟାର ଆମୂଳ ପରିବର୍ତ୍ତନ ସହ ନିମ୍ନତମ ଓ ଆଶୁ କର୍ତ୍ତବ୍ୟ ହିସାବରେ ଇତିମଧ୍ୟରେ ଗୃହୀତ କୃଷି ଆଇନ୍‌ର ପୂର୍ଣ୍ଣ ବାସ୍ତବାୟନ ଦାବି କରିଥିଲେ । କିନ୍ତୁ ସଂସ୍କାରକମାନେ ଏଥି ସାଥେ ସାଥେ ଜମିମାଲିକ ଏବଂ ରାଜ୍ୟ ସରକାର ଓ ବିଧାନ ସଭାମାନଙ୍କରେ ସେମାନଙ୍କ ସମର୍ଥକମାନଙ୍କର ସାର୍ବିକ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ ।

କୃଷି ସଂସ୍କାରର ବୈଶିଷ୍ଟ୍ୟ ସୀମିତ ହେଲେ ମଧ୍ୟ ଏହାର ଐତିହାସିକ ପରିସରଭୁକ୍ତ ପ୍ରଗତିଶୀଳ ତାତ୍ପର୍ଯ୍ୟଟିକୁ ଅସ୍ୱୀକାର କରି ହେବ ନାହିଁ । ଏହା ଫଳରେ କୃଷକମାନଙ୍କ ଉପରେ ସାମନ୍ତବାଦୀ ଓ ଅର୍ଦ୍ଧସାମନ୍ତବାଦୀ ଶୋଷଣର ପରିସର ସୀମିତ ହୋଇ ପଡ଼ିଥିଲା । ତେବେ ଜମିଦାରି ଉଚ୍ଛେଦ ଆଇନ୍‌ଟି ଜମିଦାରମାନଙ୍କ ଖମାରରେ ପୁଞ୍ଜିବାଦୀ ଧାରାର ଚାଷ ପ୍ରବର୍ତ୍ତନ ଦିଗରେ ସେମାନଙ୍କୁ ଉତ୍ସାହଦାନ ପକ୍ଷରେ ଯଥେଷ୍ଟ ହୋଇ ନଥିଲା ।

କୃଷି ସଂସ୍କାର ପ୍ରବର୍ତ୍ତନ ବେଳେ ଜମିଦାରିର ଅଂଶବିଶେଷକୁ ଅତୁଟ ରଖିବା ପକ୍ଷରେ ଏକ ଅର୍ଥନୈତିକ ଯୁକ୍ତି ପରିକଳ୍ପନାକାରୀମାନଙ୍କ ମନରେ ଥିଲା । ସେମାନେ ଆଶା କରିଥିଲେ, ପୂର୍ବତନ କ୍ଷମତାଶାଳୀ ଜମିଦାରମାନେ ସେମାନଙ୍କ ଅବଶିଷ୍ଟ ଜମିରେ ଏହା ପରେ ବୃହଦାକାର ପୁଞ୍ଜିବାଦୀ ଖମାର ପ୍ରତିଷ୍ଠା କରିବେ ।

ଏହି ଲକ୍ଷ୍ୟରେ ଜମିଦାରି ଉଚ୍ଛେଦ ସମୟରେ ପୁଞ୍ଜିବାଦୀ ଧାରାରେ ଦ୍ରୁତ ଚାଷକାର୍ଯ୍ୟ ଚଳାଇବା ପାଇଁ ଅର୍ଦ୍ଧସାମନ୍ତବାଦୀ ଭୂସ୍ୱାମୀମାନଙ୍କୁ (କେବଳ ଜମିଦାରମାନଙ୍କୁ ନୁହେଁ) ଉତ୍ସାହଦାନ କରିବା ପାଇଁ ବିବିଧ ବିଧିବ୍ୟବସ୍ଥା ଅବଲମ୍ବିତ ହୋଇଥିଲା । ସେଥି ମଧ୍ୟରୁ ଗୋଟିଏ ହେଲା ବ୍ୟକ୍ତିଗତ ଜମିର "ସର୍ବୋଚ୍ଚ ସୀମା" ନିର୍ଦ୍ଧାରଣ ସଂକ୍ରାନ୍ତ (ସିଲିଂ) ଆଇନ୍‌ର ଖସଡ଼ା ପ୍ରଣୟନ । କିନ୍ତୁ ସ୍ୱାଧୀନତା ପରେ ପ୍ରଥମ ଛଅ ବର୍ଷ ଏହି ସମସ୍ୟାଟିକୁ ଚପା ଦିଆଯାଇଥିଲା, ଜମିଦାରି ଉଚ୍ଛେଦ ନାମରେ । ୧୯୫୩ ଖ୍ରୀଷ୍ଟାବ୍ଦରେ ବ୍ୟକ୍ତିଗତ ଜମିର ସର୍ବୋଚ୍ଚ ମାତ୍ରା ନିର୍ଦ୍ଧାରଣର ପ୍ରସଙ୍ଗଟି ନେଇ ବିସ୍ତୃତ ବିବେଚନା ଆରମ୍ଭ ହୋଇଥିଲା । ଭାରତର ସ୍ୱାଧୀନ ଅର୍ଥନୈତିକ ଉନ୍ନୟନର ପ୍ରଥମ ଓ ଦ୍ୱିତୀୟ ପଞ୍ଚବାର୍ଷିକ ପରିକଳ୍ପନା କାଳରେ ବ୍ୟକ୍ତିଗତ ଜମିର ସର୍ବୋଚ୍ଚ ପରିମାଣ ନିର୍ଦ୍ଧାରଣ କୃଷି ନୀତିର ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ହୋଇ ଉଠିଥିଲା ।

ଜମିର ଏହି "ସର୍ବୋଚ୍ଚ ସୀମା" ନିର୍ଦ୍ଧାରଣ ଘେନି ଜାତୀୟ ବୁର୍ଜୁଆମାନଙ୍କର ବିଭିନ୍ନ ଅଂଶ ଏବଂ ଶାସକ ଦଳ ମଧ୍ୟରେ ଭୟଙ୍କର ମତ ବିରୋଧ ଦେଖା ଦେଇଥିଲା । ପ୍ରଥମତଃ, "ସର୍ବୋଚ୍ଚ ସୀମା" ନିର୍ଦ୍ଧାରଣ ଫଳରେ କେବଳ ଜମିଦାରମାନେ ନୁହନ୍ତି, ପୂରା ଜମିମାଲିକ ଶ୍ରେଣୀ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଥିଲା; ଦ୍ୱିତୀୟତଃ, କେବଳ ସାମନ୍ତ ଓ ଅର୍ଦ୍ଧସାମନ୍ତ ଜମିମାଲିକମାନେ ନୁହେଁ, ଯେଉଁମାନେ ପୁଞ୍ଜିବାଦୀ ଧରଣର ଚାଷବାସ କରୁଥିଲେ, ସେମାନଙ୍କ ସହିତ ସମସ୍ତ ବଡ଼ ବଡ଼ ଜମିମାଲିକମାନେ ଏହାର ଅନ୍ତର୍ଗତ ଥିଲେ; ତୃତୀୟତଃ, ଅଧିକାଂଶ ଗ୍ରାମର ସମ୍ପନ୍ନତର ଚାଷୀମାନେ ଏହା ଦ୍ୱାରା କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଦେଖିଥିଲେ ।

ଷାଠିଏ ଦଶକର ମଧ୍ୟ ଭାଗରେ "ସର୍ବୋଚ୍ଚ ସୀମା" ସଂକ୍ରାନ୍ତ ଆଇନ୍ ଅଧିକାଂଶ ରାଜ୍ୟରେ ଗୃହୀତ ହୋଇଥିଲା ଏବଂ ଅନ୍ୟାନ୍ୟ ରାଜ୍ୟର ବିଧାନ ସଭାରେ ଏହି ଆଇନ୍‌ର ଖସଡ଼ା ଉପରେ ଆଲୋଚନା ଚାଲିଥିଲା । ଦେଶର ଶତକଡ଼ା ୬୦ ଭାଗ ଖମାରର ଆୟତନ ୫ ଏକରରୁ କମ୍ ଥିଲା ବେଳେ ବିଭିନ୍ନ ରାଜ୍ୟର ସର୍ବୋଚ୍ଚ ସୀମାର ପରିମାଣ ଏହାର ଅନେକ ଗୁଣ ବେଶି ନିର୍ଦ୍ଧାରିତ ହୋଇଥିଲା (ମହୀଶୂରର ଶୁଷ୍କ ଅଞ୍ଚଳରେ ୪୦ ଗୁଣ ଏବଂ ଆନ୍ଧ୍ର ପ୍ରଦେଶରେ ୬୦ ଗୁଣ) ।

ଏହା ଛଡ଼ା ଅନେକ ରାଜ୍ୟରେ ପାଞ୍ଚ ସଦସ୍ୟାଧିକ ପରିବାରଗୁଡ଼ିକ ନିର୍ଦ୍ଦିଷ୍ଟ ସର୍ବୋଚ୍ଚ ସୀମା ଠାରୁ ଅଧିକ ଜମି ରଖିବାର ଅଧିକାର ଲାଭ କରିଥିଲେ । "ଫଳପ୍ରସୂ ଖମାର", "ସମବାୟୀ ଖମାର" ଓ ଆଉରି କେତେକ ଧରଣର ଖମାରକୁ ଏହି ସର୍ବୋଚ୍ଚ ସୀମା ବାହାରେ ରଖିବାର ବ୍ୟବସ୍ଥା ଆଇନ୍‌ରେ ଥିଲା ।

ଏସବୁ ଫଳରେ ପୂରା ଆଇନ୍‌ଟିକୁ ପ୍ରୟୋଗ କରିବା ସତ୍ତ୍ୱେ ଛୋଟ ଓ ମଧ୍ୟମ ଧରଣର ଖମାରଗୁଡ଼ିକ କ୍ଷତିଗ୍ରସ୍ତ ହୋଇ ନଥିଲେ । ଜଳସେଚିତ ଜମିରେ ୧୫-୩୦ ଏକର ଏବଂ ଶୁଷ୍କ ଜମିରେ ୮୦-୧୦୦ ଏକର "ସର୍ବୋଚ୍ଚ ସୀମା" ନିର୍ଦ୍ଧାରିତ ହେବା ହେତୁ କୃଷି ଖମାରର ଅଧିକାଂଶ (୬୦-୭୦ ଶତାଂଶ) ଆଇନ୍‌ର ଅକ୍ତିଆର ବାହାରେ ରହିଗଲା । ଏହି ଧରଣର ଖମାର ଥିଲା ହାରାହାରି ୫ ଏକର (ଜଳସେଚିତ ଜମି) ଓ ୧୦ ଏକର (ଶୁଷ୍କ ଜମି) ଆୟତନର । "ସର୍ବୋଚ୍ଚ ସୀମା" ପ୍ରବର୍ତ୍ତନ ପରେ ବଙ୍ଗଳା ଏବଂ ହାଇଦରାବାଦରେ "ବଳକା" ଜମି ମୋଟେ ମିଳିଲା ନାହିଁ । ନୂତନ ଆଇନ୍‌ର ଅସଂଖ୍ୟ ଫାଙ୍କ ଦେଇ ଜମିଦାରମାନେ ସହଜରେ ସେମାନଙ୍କ ଉଦ୍ଦେଶ୍ୟ ହାସଲ କରିଥିଲେ । ବଡ଼ ବଡ଼ ଜମିମାଲିକମାନଙ୍କ ଜମିର ପରିମାଣ ୧୦ କୋଟି ଏକର ହେବା ସତ୍ତ୍ୱେ ୧୯୬୭ ଖ୍ରୀଷ୍ଟାବ୍ଦରେ ନିର୍ଦ୍ଧାରିତ ସୀମା ବାହାରେ ୨୩ ଲକ୍ଷ ଏକର ଜମି "ବଳକା" ଘୋଷିତ ହୋଇଥିଲା ।

ଏହି "ବଳକା" ଜମି ଗ୍ରହଣ କରାଯାଇଥିଲା ଜମିଦାରମାନଙ୍କୁ କ୍ଷତିପୂରଣ ଦେଇ । ଜମିଦାରି ଉଚ୍ଛେଦ ଭଳି ଏଠାରେ ମଧ୍ୟ ନିର୍ଦ୍ଦିଷ୍ଟ ମିଆଦରେ ଅର୍ଥ ବା ସରକାରୀ କୋଷାଗାର ଦ୍ୱାରା ପରିଶୋଧ ବଣ୍ଡ ମାଧ୍ୟମରେ ଏହି ଦେୟ ପରିଶୋଧ କରିବାର ବ୍ୟବସ୍ଥା ହୋଇଥିଲା । ଏହାର ପରିମାଣ ଜମିଦାରମାନଙ୍କୁ ଦିଆଯାଇଥିବା ଅର୍ଥର ପରିମାଣକୁ ବଳି ଯାଇଥିଲା ।

"ସର୍ବୋଚ୍ଚ ସୀମା" ଆଇନ୍ ଥିଲା ଦମନମୂଳକ ଏକ ବଳକା ଅର୍ଥନୈତିକ ବ୍ୟବସ୍ଥା । ଏହା ମାଧ୍ୟମରେ ଜାତୀୟ ବୁର୍ଜୁଆମାନେ ଭାରତୀୟ କୃଷିକୁ ପୁଞ୍ଜିବାଦୀ ବିକାଶର ପଥବର୍ତ୍ତୀ କରିବାକୁ ଚେଷ୍ଟା କରିଥିଲେ ।

ଏହିସବୁ ବ୍ୟବସ୍ଥା, ଅବଶ୍ୟ, କୃଷକମାନଙ୍କୁ ସକ୍ରିୟ ଶ୍ରେଣୀ ସଂଗ୍ରାମ ଠାରୁ ବିରତ ରଖିଥିଲା ।

ସେଥି ପାଇଁ ଭାରତୀୟ କୃଷି ପୁଞ୍ଜିବାଦୀ ବିକାଶର ପଥବର୍ତ୍ତୀ ହେବାରୁ ଏବଂ କୃଷକ ଆନ୍ଦୋଳନରେ ମାନ୍ଦାଭାବ ଦେଖା ଦେବାରୁ ଏହି ସମୟକାଳରେ ପୁନର୍ବାର "ସର୍ବୋଚ୍ଚ ସୀମା" ବିଷୟଟି ମୁଲତବି ରହି ଯାଇଥିଲା ।

## "ଭୂଦାନ" ଓ "ଗ୍ରାମଦାନ" ଆନ୍ଦୋଳନ

ଭୂମି ପୁନର୍ବଣ୍ଟନ ପାଇଁ ସଂଗ୍ରାମ ଫଳରେ ତଥାକଥିତ "ଭୂଦାନ" ଆନ୍ଦୋଳନ ଉଦ୍‌ଭବ ହୋଇଥିଲା । ଏହି ଆନ୍ଦୋଳନର ମୂଳ ବୈଶିଷ୍ଟ୍ୟ ହେଲା : ସ୍ୱେଚ୍ଛାରେ ଭୂମିଦାନ ଏବଂ ତା'ପରେ ଅନ୍ତ ଜମିର ମାଲିକ ବା ଭୂମିହୀନମାନଙ୍କ ମଧ୍ୟରେ ସେସବୁକୁ ପୁନର୍ବଣ୍ଟନ କରିବା । ଏହି ଆନ୍ଦୋଳନର ଉଦ୍ୟୋକ୍ତା ଥିଲେ ଗାନ୍ଧୀଙ୍କର ପ୍ରଖ୍ୟାତ ଶିଷ୍ୟ ଆଗ୍ରର୍ଯ୍ୟ ବିନୋବା ଭାବେ । ତେଲେଙ୍ଗାନାରେ ସଂଗ୍ରାମୀ କୃଷକମାନଙ୍କ କର୍ତ୍ତୃକ ବଳପୂର୍ବକ ଜମିଦାରମାନଙ୍କର ଜମି ଦଖଲ ଓ ପୁନର୍ବଣ୍ଟନକୁ ବନ୍ଦ କରିବା ପାଇଁ "ଭୂଦାନ" ଆନ୍ଦୋଳନ ଆରମ୍ଭ ହୋଇଥିଲା । ୧୯୫୧ ମସିହାର ଏପ୍ରିଲ ୧୫ ତାରିଖରେ ସେଇ ଅଞ୍ଚଳରେ ସର୍ବପ୍ରଥମେ ଏହାର ପ୍ରକାଶ୍ୟ କାର୍ଯ୍ୟକଳାପ ଆରମ୍ଭ ହୋଇଥିଲା ।

ଜମିଦାରି ଉଚ୍ଛେଦ ଓ ତା'ର ବାସ୍ତବାୟନର ପ୍ରସ୍ତୁତି ପର୍ବରେ ଏହି ଆନ୍ଦୋଳନରେ ଆପେକ୍ଷିକ ସାଫଲ୍ୟ ଅର୍ଜିତ ହୋଇଥିଲା । ୧୯୫୫ ମସିହା ମଧ୍ୟରେ ଉତ୍ତର ପ୍ରଦେଶ ଓ ବିହାରରେ ଜମିଦାରମାନେ ୪୩ ଲକ୍ଷାଧିକ ଏକର ଜମି ସ୍ୱେଚ୍ଛାରେ ଦାନ କରିଥିଲେ । ଜମିଦାରି ବ୍ୟବସ୍ଥା ଥିବା ଅଞ୍ଚଳରେ ଭୂମିସଂସ୍କାର ପ୍ରବର୍ତ୍ତନ ଫଳରେ କୃଷକମାନଙ୍କର ସଂଗ୍ରାମଶୀଳତା ସାମୟିକ ଭାବେ ହ୍ରାସ ପାଇବାରୁ ଏହି ଆନ୍ଦୋଳନର ମଧ୍ୟ କ୍ରମ ବିଲୁପ୍ତି ଘଟିଥିଲା । ତା'ଛଡ଼ା ଜମିଦାରମାନଙ୍କର ସ୍ୱେଚ୍ଛାରେ ପ୍ରଦତ୍ତ ଜମିସବୁ ଶେଷକୁ ଚାଷ ପାଇଁ ଅଯୋଗ୍ୟ ବୋଲି ପ୍ରମାଣିତ ହୋଇଥିଲା ।

୧୯୫୫ ଖ୍ରୀଷ୍ଟାବ୍ଦରେ ଏହି ଆନ୍ଦୋଳନର ଶେଷ ପର୍ଯ୍ୟାୟରେ "ଗ୍ରାମଦାନ" ଆରମ୍ଭ ହୋଇଥିଲା । ଏହା ଦ୍ୱାରା ଗ୍ରାମର ସମସ୍ତ ଜମି କୌଣସି ବ୍ୟକ୍ତିର ମାଲିକାନାଧୀନ ନହୋଇ "ଈଶ୍ୱରଦତ୍ତ" ଭୂମି ହିସାବରେ ସମଗ୍ର ଗ୍ରାମର ଯୌଥ ମାଲିକାନାରେ ରହୁଥିଲା । କିନ୍ତୁ ଏହି ଧରଣର ଗ୍ରାମର ପ୍ରକୃତ ଶ୍ରେଣୀ ସଂପର୍କ କ୍ଷେତ୍ରରେ ବିଶେଷ କୌଣସି ପରିବର୍ତ୍ତନ ଘଟୁ ନଥିଲା । "ଭୂଦାନ" ଆନ୍ଦୋଳନ ତୁଳନାରେ "ଗ୍ରାମଦାନ ଆନ୍ଦୋଳନରେ" ସାମାନ୍ୟ ସାଫଲ୍ୟ ଅର୍ଜିତ ହୋଇଥିଲା ।

ଜାତୀୟ କଂଗ୍ରେସ ଓ ସରକାର "ଭୂଦାନ" ତଥା "ଗ୍ରାମଦାନ" ଆନ୍ଦୋଳନକୁ ପୂର୍ଣ୍ଣ ସମର୍ଥନ ଦେଇଥିଲେ । ବଡ଼ ବଡ଼ ରାଜ୍ୟରେ ଏହିସବୁ ଜମି ସଂଗ୍ରହ ଓ ପୁନର୍ବଣ୍ଟନକୁ ପ୍ରଶାସନର ଦାୟିତ୍ୱଭୁକ୍ତ କରିବା ନିମିତ୍ତ ଆଇନ୍ ପ୍ରଣୀତ ହୋଇଥିଲା ଏବଂ ଏହି ଆନ୍ଦୋଳନକୁ ସହାୟତା ପ୍ରଦାନ କରିବା ପାଇଁ ସରକାର ବଜେଟରୁ ଅର୍ଥ ବରାଦ କରିଥିଲେ ।

ଆନ୍ଦୋଳନର ପ୍ରାରମ୍ଭରୁ ନିଖିଳ ଭାରତ କୃଷକ ସଭା ଓ କମ୍ୟୁନିଷ୍ଟ ପାର୍ଟି ଏହାକୁ କେତେକ ସମାଲୋଚନା କରିବା ସାଥେ ସାଥେ ଆନ୍ଦୋଳନ ସଂପର୍କରେ ଅନୁକୂଳ ଦୃଷ୍ଟିଭଙ୍ଗି ପୋଷଣ କରିଥିଲେ । "ଭୂଦାନ" ଆନ୍ଦୋଳନ ଫଳରେ ଭାରତୀୟ କୃଷକମାନଙ୍କର ସମସ୍ୟାର ସମାଧାନ ହେବ ନାହିଁ, ଏକଥା ବୁଝାଇବା ସଙ୍ଗେ ସଙ୍ଗେ କୃଷକ ସଭାର ସ୍ଥାନୀୟ କର୍ମୀମାନେ ଏହିସବୁ ଜମିର ପୁନର୍ବଣ୍ଟନକୁ ସମର୍ଥନ କରୁଥିଲେ ଏବଂ ଏହି ଭାବେ ସଂଗୃହୀତ ଜମି କାର୍ଯ୍ୟତଃ ଭୂମିହୀନ, ଭୂମି ପାଇଁ ଆତୁର

କୃଷକ ତଥା ଖେତ ମଜୁରିଆମାନଙ୍କ ମଧ୍ୟରେ ବାଣ୍ଟିବାକୁ ଦାବି କରୁଥିଲେ । ଭୂମି ସଂପର୍କ କ୍ଷେତ୍ରରେ ଏହି ରୂପାନ୍ତର ସୃଷ୍ଟି କରୁଥିବା ପରିସ୍ଥିତି ଭାରତୀୟ କୃଷିରେ ସାମନ୍ତବାଦୀ କ୍ରିୟାକଳାପର ପ୍ରାଧାନ୍ୟକୁ ହ୍ରାସ କରିଥିଲା । କୃଷକମାନଙ୍କ ମଧ୍ୟରେ କ୍ଷୁଦ୍ର ଜୋତ ଭୂମି ବ୍ୟବହାରର ଆଉ ମୂଳ ରୂପ ହୋଇ ନଥିଲା : ୧୯୬୧ ଖ୍ରୀଷ୍ଟାବ୍ଦରେ ରଇତମାନଙ୍କର ଭୂସଂପତ୍ତିର ପରିମାଣ ସମଗ୍ର ଭୂସଂପତ୍ତିର ମୋଟ ପରିମାଣର ଶତକଡ଼ା ୭.୭ ଭାଗ ଏବଂ ମୋଟ ଆବାଦ ଜମିର ୪.୨୨ ଭାଗରେ ପହଞ୍ଚିଥିଲା । ଅଥଚ ଏହି ସମୟରେ ଅର୍ଦ୍ଧରଇତମାନଙ୍କର ଭୂସଂପତ୍ତି ଥିଲା ଭୂସଂପତ୍ତିର ମୋଟ ପରିମାଣର ୧୫,୪୬ ଶତାଂଶ ଏବଂ ମୋଟ ଆବାଦ ଜମିର ୧୮ ବା ୧୯ ଶତାଂଶ । କୃଷି କ୍ଷେତ୍ରରେ କ୍ଷୁଦ୍ରାୟତ ପଣ୍ୟ ଓ ପୁଞ୍ଜିବାଦୀ କ୍ଷେତ୍ର ଗଠନର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥିଲା ଏବଂ ଏସବୁ ପୁଞ୍ଜିବାଦୀ ଶିଳ୍ପାୟନ ପାଇଁ ଅନୁକୂଳ ସର୍ତ୍ତ ସୃଷ୍ଟି କରିଥିଲା ।

## ରାଷ୍ଟ୍ରାୟତ୍ତ ପୁଞ୍ଜିବାଦର ତ୍ୱରାନ୍ୱିତ ବିକାଶ

ଅର୍ଥନୈତିକ କର୍ମନୀତି ସଂକ୍ରାନ୍ତ ପ୍ରଥମ ପ୍ରଧାନ ଦଲିଲଗୁଡ଼ିକରେ (୧୯୪୮ ଖ୍ରୀଷ୍ଟାବ୍ଦର ଶିଳ୍ପନୀତି ସଂକ୍ରାନ୍ତ ପ୍ରସ୍ତାବ ଏବଂ ୧୯୫୦ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ନାସିକ ଅଧିବେଶନରେ ଗୃହୀତ ଅର୍ଥନୈତିକ କର୍ମନୀତି ସଂକ୍ରାନ୍ତ ପ୍ରସ୍ତାବ ପ୍ରଭୃତି) ଏବଂ ସଂବିଧାନରେ ମଧ୍ୟ ଜାତୀୟ ଅର୍ଥନୀତି ଗଠନରେ ରାଷ୍ଟ୍ରର ଚୂଡ଼ାନ୍ତ ଭୂମିକା ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପିତ ହୋଇଥିଲା । ୧୯୫୦ ଖ୍ରୀଷ୍ଟାବ୍ଦରେ ସରକାର ଜବାହାରଲାଲ ନେହରୁଙ୍କ ନେତୃତ୍ୱରେ ଯୋଜନା କମିସନ ଗଠନ କରିଥିଲେ । କମିସନ କର୍ତ୍ତୃକ ପ୍ରଥମ ପଞ୍ଚବାର୍ଷିକ ଯୋଜନାର (୧୯୫୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧ରୁ ୧୯୫୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୩୧, ଅର୍ଥାତ୍ ୧୯୫୧-୧୯୫୨ରୁ ୧୯୫୫-୧୯୫୬ ଅର୍ଥ ବର୍ଷ ପର୍ଯ୍ୟନ୍ତ) ଖସଡ଼ା ପ୍ରଣୀତ ହୋଇଥିଲା । ପ୍ରଥମଟି ଭଳି ପରବର୍ତ୍ତୀ ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ ଶିଳ୍ପ ଓ ଇନ୍‌ଫ୍ରାଷ୍ଟ୍ରକଚର, ଉଭୟର କ୍ଷେତ୍ରରେ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ବିକାଶରେ ପ୍ରଚେଷ୍ଟାକୁ କେନ୍ଦ୍ରୀଭୂତ କରିବା ସଙ୍ଗେ ସଙ୍ଗେ ଶିଳ୍ପ ଓ କୃଷି ଉତ୍ପାଦନର ପ୍ରଧାନ ଶାଖାଗୁଡ଼ିକ ପାଇଁ ଲକ୍ଷ୍ୟ ମାତ୍ରା ନିର୍ଦ୍ଧାରିତ ହୋଇଥିଲା; ଏଥିରେ ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ଉଦ୍ୟୋଗରେ ବିନିଯୋଗର ପରିମାଣ ଓ ପ୍ରଧାନ ପଥସମୂହ ଏବଂ ରାଷ୍ଟ୍ରୀୟ କ୍ଷେତ୍ରରେ ସଞ୍ଚୟର ଉତ୍ସ ଓ ପରିମାଣ ମଧ୍ୟ ପୂର୍ବରୁ ସ୍ଥିର ହୋଇଥିଲା ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ମୁଖ୍ୟତଃ ଶିଳ୍ପ ପୁନର୍ଗଠନର ପଥ ପ୍ରଦର୍ଶନ କରିବାର ପ୍ରୟୋଜନୀୟ ବ୍ୟବସ୍ଥାଦିକୁ ବାସ୍ତବାୟିତ କରିବାକୁ ଲକ୍ଷ୍ୟ ରୂପେ ଗ୍ରହଣ କରାଯାଇଥିଲା ବେଳେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା (୧୯୫୬-୧୯୫୭—୧୯୬୦-୧୯୬୧) ଏବଂ ତୃତୀୟ ଯୋଜନାରେ (୧୯୬୧-୧୯୬୨—୧୯୬୫-୧୯୬୬) ଦେଶର ଶିଳ୍ପାୟନର ବିସ୍ତୃତ କର୍ମସୂଚୀ ରହିଥିଲା ।

ଅର୍ଥନୈତିକ ଉନ୍ନୟନର ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ ଭାରତର ରାଷ୍ଟ୍ରାୟତ୍ତ ପୁଞ୍ଜିବାଦ ଗଠନର ଠୋସ୍‌କୃତ ପ୍ରଚେଷ୍ଟାର ଅଭିବ୍ୟକ୍ତି ପ୍ରକାଶ ପାଇଥିଲା ।

ଏହି ନୀତିର ବାସ୍ତବାୟନ ଏବଂ ରାଷ୍ଟ୍ରାୟତ୍ତ କ୍ଷେତ୍ର ଗଠନ ଦେଶର ଦ୍ରୁତ ଅର୍ଥନୈତିକ ଉନ୍ନୟନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । କିନ୍ତୁ ରାଷ୍ଟ୍ରୀୟ କ୍ଷେତ୍ର ସୃଷ୍ଟି କରିବା ଫଳରେ ଭାରତୀୟ ସମାଜର ସାମାଜିକ-ଅର୍ଥନୈତିକ ଚରିତ୍ରର କୌଣସି ପରିବର୍ତ୍ତନ ଘଟି ନଥିଲା । ପକ୍ଷାନ୍ତରରେ ଏହା

ବ୍ୟକ୍ତିଗତ ପୁଞ୍ଜିବାଦୀ ସଂସ୍ଥା ସଂପ୍ରସାରଣରେ ଉଦ୍ଦୀପନା ଯୋଗାଇଥିଲା । ପରିକଳ୍ପିତ ଅର୍ଥନୀତି ଉନ୍ନୟନର ପ୍ରଥମ ଦଶ ବର୍ଷରେ (୧୯୫୦-୧୯୫୧ – ୧୯୬୦-୧୯୬୧) ବ୍ୟକ୍ତିଗତ ଜଏଣ୍ଟ-ଷ୍ଟକ୍ କଂପାନିଗୁଡ଼ିକର ପରିଶୋଧିତ ପୁଞ୍ଜିର ପରିମାଣ ୫୭.୪ ଶତାଂଶ ପର୍ଯ୍ୟନ୍ତ ବୃଦ୍ଧି ପାଇଥିଲା । ୧୯୬୦-୧୯୬୧ ଖ୍ରୀଷ୍ଟାବ୍ଦରେ ବୃହଦାକାର ଶିଳ୍ପ ଓ ଖଣିର ବାର୍ଷିକ ଉତ୍ପାଦନରେ ରାଷ୍ଟ୍ରାୟତ୍ତ ସଂସ୍ଥାସମୂହର ଅଂଶ ଥିଲା ମାତ୍ର ୧୦ ଶତାଂଶ ।

ସେ ଯାହା ହେଉ, ରାଷ୍ଟ୍ରୀୟ କ୍ଷେତ୍ର ସୃଷ୍ଟି ଓ ଏହାର ବିକାଶ ଫଳରେ ଦେଶର ଅର୍ଥନୈତିକ ଓ ରାଜନୈତିକ ଆବହାଉଆରେ ସ୍ଥାୟୀ ପରିବର୍ତ୍ତନ ଦେଖା ଦେଇଥିଲା । ପ୍ରଥମତଃ, ଭାରତୀୟ ଭାରୀ ଶିଳ୍ପର ମୂଳ ପ୍ରକଳ୍ପଗୁଡ଼ିକୁ, ବିଶେଷତଃ, ଶିଳ୍ପାୟନ ସହିତ ଯୁକ୍ତ ଗୁରୁତ୍ୱପୂର୍ଣ୍ଣ ସଂସ୍ଥାଗୁଡ଼ିକୁ ରାଷ୍ଟ୍ରୀୟ କ୍ଷେତ୍ରରେ କେନ୍ଦ୍ରୀଭୂତ କରାଯାଇଥିଲା । ଦ୍ୱିତୀୟତଃ, ରାଷ୍ଟ୍ରୀୟ କ୍ଷେତ୍ର ବ୍ୟକ୍ତିଗତ କ୍ଷେତ୍ର ଠାରୁ ଦ୍ରୁତ ବୃଦ୍ଧି ପାଇଥିଲା । ବସ୍ତୁତଃ, ୧୯୫୧-୧୯୬୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଷ୍ଟ୍ରୀୟ କ୍ଷେତ୍ରର ପରିଶୋଧିତ ପୁଞ୍ଜିର ପରିମାଣ ୨୬.୩ କୋଟିରୁ ୫୪୫.୨ କୋଟି ଟଙ୍କା ପର୍ଯ୍ୟନ୍ତ (ଅର୍ଥାତ୍, କୋଡ଼ିଏ ଗୁଣରୁ ବେଶି) ବୃଦ୍ଧି ପାଇଥିଲା । କିନ୍ତୁ ବ୍ୟକ୍ତିଗତ କ୍ଷେତ୍ରର ଏହି ଅଙ୍କଟି ସେତେବେଳେ ୭୪୯.୧ କୋଟିରୁ ବୃଦ୍ଧି ପାଇଁ ୧୧୮୯.୪ କୋଟି ଟଙ୍କାରେ ପହଞ୍ଚିଥିଲା (ଶତକଡ଼ା ୫୦ ଭାଗରୁ ବେଶି) । ୧୯୫୧ ଖ୍ରୀଷ୍ଟାବ୍ଦରେ ରାଷ୍ଟ୍ରୀୟ ସଂସ୍ଥାଗୁଡ଼ିକର ପରିଶୋଧିତ ପୁଞ୍ଜିର ପରିମାଣ ଥିଲା ବ୍ୟକ୍ତିଗତ ପୁଞ୍ଜିର ଏହି ଅର୍ଥର ୩.୫ ଶତାଂଶ, ଅଥଚ ୧୯୬୧ ଖ୍ରୀଷ୍ଟାବ୍ଦରେ ଏହା ୪୬ ଶତାଂଶକୁ ବୃଦ୍ଧି ପାଇଥିଲା ।

ରାଷ୍ଟ୍ରାୟତ୍ତ କ୍ଷେତ୍ରର ତର୍କାତୀତ ସାମ୍ରାଜ୍ୟବାଦ ବିରୋଧୀ ବୈଶିଷ୍ଟ୍ୟକୁ ଦେଶର ବିଭିନ୍ନ ରାଜନୈତିକ ଦଳ ବିଭିନ୍ନ ଦୃଷ୍ଟିଭଙ୍ଗି ନେଇ ଦେଖିଥିଲେ । ଗଣତାନ୍ତ୍ରିକ ଶକ୍ତିଗୁଡ଼ିକ ନିକଟରେ ଏହା ଥିଲା ଗଣତାନ୍ତ୍ରିକ ସଂସ୍କାର, ବିଶେଷତଃ, ବ୍ୟକ୍ତିଗତ ପୁଞ୍ଜିବାଦୀ ସଂସ୍ଥାକୁ ନିୟନ୍ତ୍ରଣ କରିବା ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ଉପାୟ । କିନ୍ତୁ ପ୍ରତିକ୍ରିୟାଶୀଳ ଚକ୍ରସମୂହ ଏହାର ପରବର୍ତ୍ତୀ ବିକାଶର ବିରୋଧୀ ଥିଲେ । ସେମାନେ ଏହାକୁ ଭାରତୀୟ ବଡ଼ ବଡ଼ ବୁର୍ଜୁଆ ସ୍ୱାର୍ଥର ଅଧୀନସ୍ଥ କରିବାର ପକ୍ଷପାତୀ ଥିଲେ ।

## ଶିଳ୍ପାୟନର ପ୍ରାରମ୍ଭ ଓ ତା'ର ବିଶେଷ ଲକ୍ଷଣସମୂହ

ଭାରତର ଔପନିବେଶିକ ଓ ସାମନ୍ତବାଦୀ ଅର୍ଥନୈତିକ ଗଢ଼ଣ ପୁନର୍ଗଠିତ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ରର ଭୂମିକା ମଧ୍ୟ କ୍ରମଶଃ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠୁଥିଲା । ରାଷ୍ଟ୍ରାୟତ୍ତ ସଂସ୍ଥା (ଉତ୍ପାଦନ ଓ ସଞ୍ଚାଳନ ଉଭୟ କ୍ଷେତ୍ରରେ) ବ୍ୟତୀତ ଅର୍ଥନୀତିକୁ ନିୟନ୍ତ୍ରଣ କରିବାର ନାନା ଧରଣ ମଧ୍ୟ ରାଷ୍ଟ୍ରାୟତ୍ତ ପୁଞ୍ଜିବାଦର ଅନ୍ତର୍ଭୁକ୍ତ ଥିଲା । ଏସବୁର ଲକ୍ଷ୍ୟ ହେଲା : ଜାତୀୟ ଉତ୍ପାଦନର ସମନ୍ୱୟ ସାଧନ, ବ୍ୟକ୍ତିଗତ କ୍ଷେତ୍ରର କାର୍ଯ୍ୟକଳାପକୁ ନିୟନ୍ତ୍ରଣ, ଅର୍ଥନୀତିର ଏକଦା ଅନ୍ୟ ଶାଖାର (ବ୍ୟକ୍ତିଗତ ଓ ରାଷ୍ଟ୍ରାୟତ୍ତ କ୍ଷେତ୍ରକୁ) ବିକାଶ ପ୍ରତି ଉତ୍ସାହଦାନ (ବା ବ୍ୟାହତକରଣ) ।

ରାଷ୍ଟ୍ରୀୟ ଅର୍ଥନୈତିକ ଓ ଅର୍ଥ ସଂସ୍ଥାଗୁଡ଼ିକ ଏହିସବୁ ନିୟନ୍ତ୍ରକ ଓ ନିୟାମକ ବ୍ୟବସ୍ଥା ପ୍ରୟୋଗ କ୍ଷେତ୍ରରେ କେତେକ ବିଶେଷ ଆଇନ୍ ଉପରେ ନିର୍ଭରଶୀଳ ଥିଲେ, ଯଥା : ପୁଞ୍ଜି ସରବରାହ (ନିୟନ୍ତ୍ରଣ) ଆଇନ୍ (୧୯୪୭), ବୈଦେଶିକ ମୁଦ୍ରା ବିନିମୟ ନିୟନ୍ତ୍ରଣ ଆଇନ୍ (୧୯୪୭), ଆମଦାନି ଓ ରପ୍ତାନି (ନିୟନ୍ତ୍ରଣ) ଆଇନ୍ (୧୯୪୭,) ବ୍ୟାଙ୍କ୍ ଆଇନ୍ (୧୯୪୯), ଶିଳ୍ପ (ଉନ୍ନୟନ ଓ

ନିୟନ୍ତ୍ରଣ) ଆଇନ୍ (୧୯୫୧); ଏହି ଆଇନ୍ ବିଶେଷ ଭାବେ ସଂସ୍ଥାଗୁଡ଼ିକୁ ଚାଲୁ କରିବା ଏବଂ ସେସବୁର ଉତ୍ପାଦନ ସାମର୍ଥ୍ୟ ବୃଦ୍ଧି ପାଇଁ ଲାଇସେନ୍‌ସ ଦାନର ନିୟମକୁ ସର୍ତ୍ତାଧୀନ କରୁଥିଲା; ଅପରିହାର୍ଯ୍ୟ ପଣ୍ୟ ଆଇନ୍ (୧୯୫୫)—ସରକାରକୁ ଦାମ ନିର୍ଦ୍ଧାରଣ କରିବାର କ୍ଷମତା ପ୍ରଦାନ କରିଥିଲା; ୧୯୫୬ ଖ୍ରୀଷ୍ଟାବ୍ଦର ମ୍ୟାନେଜିଂ ଏଜେନ୍‌ସିଗୁଡ଼ିକର କାର୍ଯ୍ୟକଳାପ ନିୟନ୍ତ୍ରଣକାରୀ କଂପାନି ଆଇନ୍ (୧୯୬୦ ଖ୍ରୀଷ୍ଟାବ୍ଦରେ ସଂଶୋଧିତ) ଏବଂ ଅନ୍ୟାନ୍ୟ ।

ବ୍ୟକ୍ତିଗତ ଉଦ୍ୟୋଗର ନିୟନ୍ତ୍ରଣ ଓ ସମନ୍ୱୟ ବ୍ୟତୀତ ରାଷ୍ଟ୍ର ବ୍ୟକ୍ତିଗତ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକୁ ପ୍ରତ୍ୟକ୍ଷ ଉତ୍ସାହ ପ୍ରଦାନ କରୁଥିଲା । ଏଥି ପାଇଁ ମୂଲ୍ୟ ନୀତିର ସୁବିଧା ସମେତ ରକ୍ଷାମୂଳକ ଶୁଳ୍କ ଓ କର ଛାଡ଼ ଆଦି ବିଶେଷ ବ୍ୟବସ୍ଥା ଚାଲୁ କରାଯାଇଥିଲା । ବିଭିନ୍ନ ରାଷ୍ଟ୍ରୀୟ ଓ ଅର୍ଦ୍ଧରାଷ୍ଟ୍ରୀୟ ବିନିଯୋଗ ସଂସ୍ଥା ସେତେବେଳେ ଶିଳ୍ପୋନ୍ନୟନ ପ୍ରତି ଋଣଦାନ କରିଆରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଥିଲେ । ଏହିସବୁ ସଂସ୍ଥା ମଧ୍ୟରେ ଭାରତର ଶିଳ୍ପ ଓ ଫିନାନ୍‌ସ କର୍ପୋରେସନ (୧୯୪୮ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ), ବିବିଧ ରାଷ୍ଟ୍ରୀୟ ଫିନାନ୍‌ସ କର୍ପୋରେସନସମୂହ (୧୯୫୧ ଖ୍ରୀଷ୍ଟାବ୍ଦ ପରେ ପ୍ରତିଷ୍ଠିତ), ଜାତୀୟ ଶିଳ୍ପୋନ୍ନୟନ କର୍ପୋରେସନ (୧୯୫୪ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ) ପ୍ରଭୃତି ଉଲ୍ଲେଖଯୋଗ୍ୟ । ୧୯୫୫ ଖ୍ରୀଷ୍ଟାବ୍ଦରେ ଦେଶର ବୃହତ୍ତମ ବ୍ୟକ୍ତିଗତ ବାଣିଜ୍ୟିକ ବ୍ୟାଙ୍କ୍, ଇମ୍ପିରିଆଲ ବ୍ୟାଙ୍କ୍‌କୁ ଜାତୀୟକରଣ କଲା ପରେ ଏହାକୁ ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ନାମ ଦିଆଯାଇଥିଲା । ୧୯୬୪ ଖ୍ରୀଷ୍ଟାବ୍ଦରେ ଭାରତର ବିଶେଷ ଶିଳ୍ପୋନ୍ନୟନ ରାଷ୍ଟ୍ରୀୟ ବ୍ୟାଙ୍କ୍ ପ୍ରତିଷ୍ଠିତ ହୋଇଥିଲା । ୧୯୫୬-୧୯୬୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଷ୍ଟ୍ର ବ୍ୟକ୍ତିଗତ ସଂସ୍ଥାଗୁଡ଼ିକୁ ମୋଟ ୯୦୦ କୋଟି ଟଙ୍କା ଅର୍ଥ ସାହାଯ୍ୟ ଦେଇଥିଲା ।

କ୍ଷୁଦ୍ରାୟତ ଶିଳ୍ପଗୁଡ଼ିକୁ ସାହାଯ୍ୟ କରିବା ପାଇଁ ବିଶେଷ ଜାତୀୟ କର୍ପୋରେସନ ମଧ୍ୟ ଗଠିତ ହୋଇଥିଲା । ଅର୍ଥ ସାହାଯ୍ୟ ଛଡ଼ା ରାଷ୍ଟ୍ର କ୍ଷୁଦ୍ରାୟତ ଯନ୍ତ୍ରୀକୃତ ଏବଂ କ୍ଷୁଦ୍ରାୟତ ହସ୍ତଶିଳ୍ପିତ ଉତ୍ପାଦନ ସଂସ୍ଥାଗୁଡ଼ିକୁ ଯନ୍ତ୍ରପାତି, କଞ୍ଚାମାଲ ଓ ପଣ୍ୟ ବିକ୍ରୟ ଆଦି ସାହାଯ୍ୟ ସମେତ ଯଥେଷ୍ଟ ସମର୍ଥନ ଯୋଗାଇଥିଲା ।

ରାଷ୍ଟ୍ରୀୟ ସାହାଯ୍ୟ ଫଳରେ ପୁଞ୍ଜିବାଦୀ ଗଢ଼ଣର ଉର୍ଦ୍ଧ୍ୱତନ ଓ ଅଧସ୍ତନ ସ୍ତରଗୁଡ଼ିକରେ ପୁଞ୍ଜି ସଞ୍ଚୟ ସହଜତର ହୋଇଥିଲା ।

ଜାତୀୟ ଉତ୍ପାଦନ ନିୟନ୍ତ୍ରଣ ଓ ଏହାକୁ ଉତ୍ସାହଦାନ ଫଳରେ ପ୍ରବର୍ତ୍ତିତ ସରକାରୀ ବ୍ୟବସ୍ଥାବଳୀ ଫଳରେ ଭାରତୀୟ ଅର୍ଥନୀତିରେ ପୁଞ୍ଜି ଲଗ୍ନିର ପରିସର ଓ ଲକ୍ଷ୍ୟରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖା ଦେଇଥିଲା । ୧୯୪୮-୧୯୬୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶିଳ୍ପ ସଂସ୍ଥାଗୁଡ଼ିକର ମୂଳ ପରିସମ୍ପଦରେ ପୁଞ୍ଜି ଲଗ୍ନିର ପରିମାଣ ୯୧୦ କୋଟିରୁ ୩,୬୦୦ କୋଟି ଟଙ୍କାକୁ (୧୯୪୮ ଖ୍ରୀଷ୍ଟାବ୍ଦରେ ମୂଲ୍ୟ ଅନୁସାରେ) ବୃଦ୍ଧି ପାଇଥିଲା । ନୂତନ ଲଗ୍ନିର ପ୍ରଧାନ ଅଂଶ କେନ୍ଦ୍ରୀଭୂତ ହୋଇଥିଲା ଭାରୀ ଶିଳ୍ପରେ, ଯଥା: ଲୌହ ଓ ଲୌହେତର ଧାତୁଶିଳ୍ପ, ମେକାନିକାଲ ଇଂଜିନିୟରିଂ, ତୈଳ ପ୍ରସେସିଂ, ରାସାୟନିକ ଶିଳ୍ପ, ବିଦ୍ୟୁତ୍ ଇଂଜିନିୟରିଂ ଓ ନିର୍ମାଣ ସାମଗ୍ରୀ ଉତ୍ପାଦନ କ୍ଷେତ୍ରରେ ।

ଭାରୀ ଶିଳ୍ପରେ କ୍ରମବର୍ଦ୍ଧମାନ ଲଗ୍ନି ୧ମ ବିଭାଗ ଓ ୨ୟ ବିଭାଗ ମଧ୍ୟରେ ପାରସ୍ପରିକ ସଂପର୍କ କ୍ଷେତ୍ରରେ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୯୫୧ ଖ୍ରୀଷ୍ଟାବ୍ଦରେ ୧ମ ବିଭାଗର ପ୍ରଧାନ ଚାରୋଟି ଶାଖାରେ (ମେକାନିକାଲ ଇଂଜିନିୟରିଂ ଓ ଧାତୁ ତିଆରି, ଲୌହ ଘଟିତ

ଧାତୁ ଶିଳ୍ପ, ରାସାୟନିକ ଓ ସିମେଣ୍ଟ ଶିଳ୍ପ) ଲଗ୍ନିକୃତ ଅର୍ଥର ପରିମାଣ ଥିଲା ମ୍ୟାନୁଫାକଚରିଂ ଶିଳ୍ପର ମୋଟ ବିନିଯୋଗର ମାତ୍ର ୨୪.୩ ଶତାଂଶ । କିନ୍ତୁ ୧୯୫୫ ଓ ୧୯୬୦ ଖ୍ରୀଷ୍ଟାବ୍ଦରେ ଅଙ୍କଟି ବୃଦ୍ଧି ପାଇ ଯଥାକ୍ରମେ ୩୧.୫ ଓ ୪୮.୯ ଶତାଂଶରେ ପହଞ୍ଚିଥିଲା । ଷାଠିଏ ଦଶକର ମଧ୍ୟ ଭାଗରେ ଶିଳ୍ପର ଉଭୟ ବିଭାଗ ମୂଲ୍ୟ ବିଗ୍ରହରୁ ମୋଟ ଉତ୍ପାଦନର ସମାନ ଭାଗିଦାର ହୋଇଥିଲା ।

ପୁଞ୍ଜି ଲଗ୍ନି ବୃଦ୍ଧି ଫଳରେ ଦେଶର ଦ୍ରୁତ ଶିଳ୍ପାୟନ ସମ୍ଭବ ହୋଇଥିଲା । ୧୯୩୭-୧୯୪୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ବାର୍ଷିକ ଶିଳ୍ପୋତ୍ପାଦନର ବୃଦ୍ଧି ହାର ଥିଲା ୦.୬ ଶତାଂଶ । କିନ୍ତୁ ପରବର୍ତ୍ତୀ କାଳରେ ଏହି ହାର ବୃଦ୍ଧି ପାଇଥିଲା : ୧୯୫୧-୧୯୫୫ – ୬.୫ ଶତାଂଶ, ୧୯୫୬-୧୯୬୦ – ୭.୩ ଶତାଂଶ, ୧୯୬୧-୧୯୬୨ – ୭.୬ ଶତାଂଶ । ତା'ଛଡ଼ା ଭାରୀ ଶିଳ୍ପର ଆଧୁନିକ ଶାଖାଗୁଡ଼ିକରେ ଏହି ବୃଦ୍ଧିର ହାର ସର୍ବୋଚ୍ଚ ଥିଲା ।

୧୯୪୮-୧୯୬୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ସର୍ବମୋଟ ଶିଳ୍ପୋତ୍ପାଦନ ବୃଦ୍ଧି ପାଇଥିଲା ୧୫୦ ଶତାଂଶ ।

ଦେଶର ଶିଳ୍ପାୟନର ପ୍ରାରମ୍ଭିକ ପର୍ଯ୍ୟାୟରେ ପ୍ରଧାନ ନିୟାମକ ଭୂମିକା ପାଳନ କରିଥିଲା ରାଷ୍ଟ୍ର । ବୃହଦାକାର ଶିଳ୍ପ ସଂସ୍ଥାରେ ରାଷ୍ଟ୍ର ଅଂଶଗ୍ରହଣ କରିବା ଫଳରେ ଭାରତରେ ଅନେକ ଶିଳ୍ପ ଶାଖା ସୃଷ୍ଟି ହୋଇଥିଲା ଏବଂ ସ୍ୱାଧୀନ ଜାତୀୟ ଭିତ୍ତିରେ ପୁନରୁତ୍ପାଦନର ତାହା ଭିତ୍ତି ସୃଷ୍ଟି କରିଥିଲା । ଭାରତର ଅର୍ଥନୈତିକ ମଞ୍ଚରେ, ବିଶେଷତଃ, ଯୋଜନା କ୍ଷେତ୍ରରେ ରାଷ୍ଟ୍ରୀୟ ପୁଞ୍ଜିବାଦର ଉନ୍ମେଷ ଫଳରେ ରାଷ୍ଟ୍ରୀୟର କ୍ଷେତ୍ର ପକ୍ଷରେ ଉଚ୍ଚ ବୃଦ୍ଧି ହାର ହାସଲ କରିବା ସମ୍ଭବ ହୋଇଥିଲା । ୧୯୬୬ ଖ୍ରୀଷ୍ଟାବ୍ଦରେ ସମଗ୍ର ଶିଳ୍ପର ମୋଟ ଉତ୍ପାଦନରେ ରାଷ୍ଟ୍ରୀୟର କ୍ଷେତ୍ରର ଅଂଶ ଥିଲା ୧୮ ଶତାଂଶ ।

ଭାରତର ଶିଳ୍ପାୟନ ଦେଶର ଅର୍ଥନୈତିକ ଉନ୍ନୟନରେ କେତେକ ଅସଙ୍ଗତି ମଧ୍ୟ ଦେଖା ଦେଇଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା ଶେଷରେ ଅର୍ଥନୀତି କ୍ଷେତ୍ରରେ ଦେଶ ବିଭାଗ ହେତୁ ମୂଳ ନାସ୍ତିବାଚକ ପରିଣତିଗୁଡ଼ିକୁ ଦୂର କରିବା ପରେ ଯାଇ କେବଳ ରାଷ୍ଟ୍ରୀୟର କ୍ଷେତ୍ରର ଉନ୍ନୟନ ମାଧ୍ୟମରେ ପ୍ରଧାନ ଶିଳ୍ପାୟନ କରିବାର ସିଦ୍ଧାନ୍ତ ଘୋଷିତ ହୋଇଥିଲା । ସରକାରର ନୂତନ "ଶିଳ୍ପାୟନ ନୀତି ସଂକ୍ରାନ୍ତ ପ୍ରସ୍ତାବରେ" (୧୯୫୬, ଏପ୍ରିଲ ୩୦) ୧୯୪୮ ଖ୍ରୀଷ୍ଟାବ୍ଦର ପ୍ରସ୍ତାବଭୁକ୍ତ ଶିଳ୍ପ ଶାଖାଗୁଡ଼ିକର ତାଲିକାଟିକୁ ଦୀର୍ଘତର କରାଯାଇଥିଲା ଏବଂ ରାଷ୍ଟ୍ର ଶିଳ୍ପ ସଂସ୍ଥା କ୍ଷେତ୍ରରେ ନିରଙ୍କୁଶ କ୍ଷମତା ବା ଅଗ୍ରାଧିକାର ପାଇଥିଲା । କିନ୍ତୁ ପଗ୍ଦଶ ଦଶକର ଶେଷରେ ଓ ଷାଠିଏ ଦଶକର ପ୍ରାରମ୍ଭରେ ବଡ଼ ବଡ଼ ବୁର୍ଜୁଆମାନଙ୍କ ଗ୍ରପରେ ଏହି ତାଲିକାରେ ବ୍ୟକ୍ତିଗତ କ୍ଷେତ୍ରରେ ଯଥେଷ୍ଟ ସୁବିଧା ଦିଆଯାଇଥିଲା ।

ଜାତୀୟ ଅର୍ଥନୀତିର କେତେକ ଶାଖାରେ ବ୍ୟକ୍ତିଗତ ପୁଞ୍ଜି ଉପରେ ନିଷେଧାଜ୍ଞା ବିଦ୍ୟମାନ ରହିଥିଲେ ମଧ୍ୟ ସବୁ ମିଶି ଭାରତର ରାଷ୍ଟ୍ରୀୟ ପୁଞ୍ଜିବାଦରେ ବ୍ୟକ୍ତିଗତ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକର ଯଥେଷ୍ଟ ପ୍ରସାର ଘଟିଥିଲା ଏବଂ ଫଳରେ, ତାହା, ବିଶେଷତଃ, ଉପରି ସ୍ତରରେ ପୁଞ୍ଜିର ଠୁଳୀକରଣ ଏବଂ କେନ୍ଦ୍ରୀଭବନକୁ ତ୍ୱରାନ୍ୱିତ କରିଥିଲା । ବଡ଼ ବଡ଼ ବୁର୍ଜୁଆ ଏକଗ୍ଚଟିଆମାନଙ୍କର ଅବସ୍ଥାନ ମଧ୍ୟ ଯଥେଷ୍ଟ ଦୃଢ଼ ହୋଇ ଉଠିଥିଲା । ଲକ୍ଷ୍ୟ କରିବାର କଥା ଯେ, ଦ୍ୱିତୀୟ ଓ ତୃତୀୟ ପଞ୍ଚବାର୍ଷିକୀ ଯୋଜନାରେ (୧୯୫୬-୧୯୬୬) ବ୍ୟକ୍ତିଗତ ଉଦ୍ୟୋଗସମୂହ ପାଇଁ ଅଲଗା ରଖାଯାଇଥିବା ମୋଟ ରାଷ୍ଟ୍ରୀୟ ଅର୍ଥ ସାହାଯ୍ୟର ଅର୍ଦ୍ଧାଂଶ ୬୩ଟି ଅତି ବୃହତ୍ କର୍ପୋରେସନ ପାଇଥିଲେ ।

ଏହି ଭାବେ ଭାରତୀୟ ବଡ଼ ବଡ଼ ବୁର୍ଜୁଆମାନେ ଲଭ କରିଥିବା ବୃହତ୍ତମ କର୍ମ କ୍ଷେତ୍ରର ସୁଯୋଗ ଶେଷକୁ କ୍ଷୁଦ୍ର ଓ ବୃହଦାୟତନ ସଂସ୍ଥାର ବିକାଶ କ୍ଷେତ୍ରରେ ଅସାମଞ୍ଜସ୍ୟ ବୃଦ୍ଧି କରିଥିଲା । ତତ୍କାଳୀନ ଭାରତୀୟ ଅର୍ଥନୀତିର ଏକ ସ୍ୱକୀୟ ବୈଶିଷ୍ଟ୍ୟ ଥିଲା ବହୁବିଧ ଅର୍ଥନୈତିକ ରୂପର ଉପସ୍ଥିତି । ତା'ଛଡ଼ା, ଶ୍ରମଜୀବୀମାନଙ୍କ ମଧ୍ୟରୁ ଅଧିକାଂଶ କୃଷି, ଶିଳ୍ପ ବା ଅନ୍ୟାନ୍ୟ ଅର୍ଥନୈତିକ କ୍ଷେତ୍ର ନିର୍ବିଶେଷରେ ଅଧସ୍ତନ ଅର୍ଥନୈତିକ କ୍ଷେତ୍ରରେ (ଅର୍ଦ୍ଧ ପ୍ରାକୃତିକ, କ୍ଷୁଦ୍ର ପଣ୍ୟୋତ୍ପାଦନ ଓ କ୍ଷୁଦ୍ରାୟତନ ପୁଞ୍ଜିବାଦୀ ଧରଣ) କେନ୍ଦ୍ରୀଭୂତ ହୋଇଥିଲେ । ଷାଠିଏ ଦଶକ ଶେଷରେ ଶିଳ୍ପାୟନରେ କେବଳ ଆଧୁନିକ ଶିଳ୍ପୋଦ୍ୟୋଗ ନିର୍ମାଣ ଅନ୍ତର୍ଭୁକ୍ତ ହେବା ଫଳରେ ପୁଞ୍ଜିବାଦୀ ସଂସ୍ଥାର ଅଧସ୍ତନ ଓ ଊର୍ଦ୍ଧ୍ୱତନ ରୂପ ମଧ୍ୟରେ ପାର୍ଥକ୍ୟ ବଢ଼ିବାରେ ଲଗିଥିଲା । ଷାଠିଏ ଦଶକର ମଧ୍ୟ ଭାଗରେ ଭାରୀ ଶିଳ୍ପର ବୃଦ୍ଧି ହାରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ଅର୍ଜିତ ହେଲେ ମଧ୍ୟ ଭାରୀ ଆଉ ଲଘୁ ଶିଳ୍ପ ମଧ୍ୟରେ ପାର୍ଥକ୍ୟ ମଧ୍ୟ ସେତେବେଳେ ଯଥେଷ୍ଟ ଥିଲା । ଏହା ଫଳରେ ପଣ୍ୟ ବଜାରରେ ସମସ୍ୟା ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଜାତୀୟ ଉତ୍ପାଦନ କ୍ଷମତାର ପୂର୍ଣ୍ଣ ବ୍ୟବହାରରେ ବ୍ୟାହତ ଘଟିଥିଲା ଏବଂ ଶେଷକୁ ଶିଳ୍ପାୟନ ପାଇଁ ଅଧିକତର କାଳକ୍ଷୟ ଓ ଯୋଜନାର ଲକ୍ଷ୍ୟ ମାତ୍ରା ଅର୍ଜନରେ ବ୍ୟର୍ଥତା ଅନିବାର୍ଯ୍ୟ ହୋଇ ପଡ଼ିଥିଲା । କୃଷି ତଥା ଦେଶର ଅର୍ଥନୀତିର ଏହି ପ୍ରଧାନ ଶାଖାର ଅବ୍ୟାହତ ଅନଗ୍ରସରତା ହିଁ ଥିଲା ଭାରତୀୟ ଅର୍ଥନୈତିକ ଗଢ଼ଣର ରୂପାନ୍ତର ସାଧନର ପୂରା ଯୋଜନାଟିର ବାସ୍ତବାୟନର ପ୍ରଧାନ ପ୍ରତିବନ୍ଧକ ।

## କୃଷିରେ ପରିବର୍ତ୍ତନ

ଶିଳ୍ପାୟନ ଏବଂ ସହରରେ ପୁଞ୍ଜିବାଦର ଅଗ୍ରଗତି ଭାରତର ଗ୍ରାମାଞ୍ଚଳ ଉପରେ କ୍ରମବର୍ଦ୍ଧମାନ ପ୍ରଭାବ ପକାଇଥିଲା । କୃଷି ସଂସ୍କାର ମଧ୍ୟ ଭାରତୀୟ କୃଷି ବ୍ୟବସ୍ଥାର ପୁଞ୍ଜିବାଦୀ ରୂପାନ୍ତରଣ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା ।

ଦେଶର ଅର୍ଦ୍ଧାଂଶ (ରୟତଓ୍ୱାରୀ ଏଲକାରେ) କୃଷି ସଂସ୍କାରର ଅନ୍ତର୍ଗତ ନଥିବାରୁ ଏବଂ ପୂର୍ବତନ ଜମିଦାରୀ ଅଞ୍ଚଳର ଭୂମିମାଲିକାନା ହେତୁ, ଏପରିକି ସଂସ୍କାର ପୂର୍ବରୁ ଅଧିକାଂଶ ଜମି ସଂରକ୍ଷିତ ଓ ଦଖଲକାରୀ ଚାଷୀର ଅଧିକାରଭୁକ୍ତ ହେବା ଯୋଗୁଁ ସଂସ୍କାର ପରେ ଭୂମି ସଂସ୍କାରର ଧରଣରେ ଚାଷୀମାନଙ୍କର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଭୂମି ବଣ୍ଟନର ଅସମତା ପ୍ରକଟିତ ହୋଇଥିଲା । ଜମିଦାର ବା ସମୃଦ୍ଧତର କୃଷକମାନଙ୍କ ଜମିରେ କୃଷିକାର୍ଯ୍ୟର କାରୁବିଜ୍ଞାନଗତ ଉନ୍ନତି ଏବଂ ଚାଷ ଜମିର ପରିମାଣ ବୃଦ୍ଧି ଫଳରେ ୧୯୫୧-୧୯୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଦେଶର ମୋଟ କୃଷି ଉତ୍ପାଦନର ପରିମାଣ ୬୫ ଶତାଂଶ ବୃଦ୍ଧି ପାଇଥିଲା ।

କିନ୍ତୁ ମୁଣ୍ଡ ପିଛା ହିସାବରେ କୃଷିର ଏହି ବୃଦ୍ଧି ହାର ନଗଣ୍ୟ ଥିଲା, କାରଣ ଏହି ସମୟରେ ମୋଟ ଜନସଂଖ୍ୟା ପ୍ରାୟ ୨୫ ଶତାଂଶ ବୃଦ୍ଧି ପାଇଥିଲା । ଷାଠିଏ ଦଶକର ମଧ୍ୟ ଭାଗରେ ଦେଶର ଖାଦ୍ୟ ଓ କେତେକ କଞ୍ଚାମାଲର ଚାହିଦା ପୂରାପୂରି ମେଣ୍ଟାଇବାକୁ କୃଷି ବ୍ୟର୍ଥ ହୋଇଥିଲା । ଅଧିକାଂଶ (ଶତକଡ଼ା ୬୦ ଭାଗ ପର୍ଯ୍ୟନ୍ତ) ଖମାର ଅଲଭଜନକ, ଅର୍ଦ୍ଧଗ୍ରାସାଚ୍ଛାଦନ ଓ ଗ୍ରାସାଚ୍ଛାଦନ ସର୍ବସ୍ୱ ଶକ୍ତି ବିଶିଷ୍ଟ ଖଣ୍ଡି ଖଣ୍ଡିକିଆ ଜମିକୁ ନେଇ ଗଠିତ ହେବା ମଧ୍ୟରେ ଭାରତୀୟ ଅର୍ଥନୀତିର ଏହି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଶାଖାର ଅନଗ୍ରସରତାର ମୂଳ ନିହିତ ଥିଲା ।

କଂଗ୍ରେସ ସରକାର ଦ୍ୱାରା ଅନୁସୃତ କୃଷିନୀତି ନିଃସନ୍ଦେହରେ କୃଷିରେ ପୁଞ୍ଜିବାଦର ବିକାଶ ଘଟେଇଥିଲା । ଚାଷାଧୀନ ଜମିର ପରିମାଣ ବୃଦ୍ଧି (୧୯୫୧-୧୯୬୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ୭୫ ଲକ୍ଷ ଏକର ଅନାବାଦୀ ବା ପଡ଼ନ୍ତ ଜମିକୁ ରାଷ୍ଟ୍ରୀୟ ଟ୍ରାକ୍ଟର ସଂସ୍ଥାସମୂହ ଚାଷୋପଯୋଗୀ କରିଥିଲା), ଜଳସେଚନ ବ୍ୟବସ୍ଥା (୧୯୫୧-୧୯୬୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜଳସେଚିତ ଜମିର ପରିମାଣ ଦ୍ୱିଗୁଣିତ ହୋଇଥିଲେ), ସଡ଼କ ନିର୍ମାଣ, ଘରିଆଡ଼େ ପଶୁପ୍ରଜନନ ଓ ବିହନ ଉତ୍ପାଦନ କେନ୍ଦ୍ର ଗଠନ, ଉନ୍ନତ କୃଷି କାରୁକୌଶଳ ଏବଂ ୧୯୫୧ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ରାଷ୍ଟ୍ରୀୟ ଗ୍ରାମୋନ୍ନୟନ ସଂସ୍ଥା ମାଧ୍ୟମରେ ବ୍ୟାପକ ସାମାଜିକ-ସାଂସ୍କୃତିକ ବ୍ୟବସ୍ଥାଦି ପ୍ରବର୍ତ୍ତନ ଫଳରେ (ତଥାକଥିତ ଗ୍ରାମଗୋଷ୍ଠୀ ଯୋଜନା) କୃଷିର ଅବଗଢ଼ଣ ଗଠିତ ହୋଇଥିଲା ।

ସରକାରର ଆର୍ଥିକ ଓ ସାଂଗଠନିକ ସମର୍ଥନପୁଷ୍ଟ ସମବାୟ ସମିତିଗୁଡ଼ିକର (ଋଣଦାନ, ବିକ୍ରୟ ଓ ଭୋକ୍ତା) କାର୍ଯ୍ୟକଳାପର ଉନ୍ନତି ଗ୍ରାମୀଣ ଋଣଦାନ ଓ ବ୍ୟବସାୟକୁ ମହାଜନୀ ଓ ବ୍ୟବସାୟୀ ପୁଞ୍ଜି ଭଳି ପୁଞ୍ଜିର ଅଧସ୍ତନ ରୂପର କବଳରୁ କିଛି ପରିମାଣରେ ମୁକ୍ତ କରିଥିଲା । ୧୯୫୧-୧୯୬୧ ଖ୍ରୀଷ୍ଟାବ୍ଦ ମଧ୍ୟରେ କୃଷି ଋଣ କ୍ଷେତ୍ରରେ ସମବାୟର ଅଂଶ ୫ ଗୁଣରୁ ଅଧିକ ବୃଦ୍ଧି ପାଇଥିଲା । ଏହି ସମୟରେ ଉଦୀୟମାନ ଗ୍ରାମୀଣ ବୁର୍ଜୁଆମାନେ ଭାରତର ପୁଞ୍ଜିପତି ଶ୍ରେଣୀର ନିମ୍ନତମ ସ୍ତରରେ ସର୍ବାଧିକ ସଂଖ୍ୟାଗରିଷ୍ଠ ଗୋଷ୍ଠୀ ହୋଇ ଉଠିଥିଲେ ।

## ଜାତୀୟ ବୁର୍ଜୁଆମାନଙ୍କର ବିଭିନ୍ନ ଦଳର ଅବସ୍ଥାନଗତ ପରିବର୍ତ୍ତନ

ଇତିମଧ୍ୟରେ ସହରରେ ବଣିକ ଓ ଶିଳ୍ପ ବୁର୍ଜୁଆମାନଙ୍କର ବିଭିନ୍ନ ଗୋଷ୍ଠୀର ଅବସ୍ଥାନରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖା ଦେଇଥିଲା । ଭାରତୀୟମାନଙ୍କର ମାଲିକାନାଧୀନ ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ସଂସ୍ଥାର ବିକାଶ ଫଳରେ ଏବଂ ଅର୍ଥନୈତିକ ସଂରକ୍ଷଣମୂଳକ ନୀତିର କଲ୍ୟାଣରୁ ସେତେବେଳେ ବିଦେଶୀ ବୁର୍ଜୁଆମାନଙ୍କର ପ୍ରଭାବ ଲୋପ ପାଉଥିଲା । କିନ୍ତୁ ଭାରତର ଅର୍ଥନୀତିରେ ଏହି ସମୟରେ ବିଦେଶୀ ପୁଞ୍ଜିର ସର୍ବମୋଟ ଅଂଶ ଯଥେଷ୍ଟ କମିଗଲେ ମଧ୍ୟ ବୃହଦାୟତନ ଶିଳ୍ପରେ ତା'ର ଲଗ୍ନିର ଅଂଶ ଖୁବ୍ ଧୀରେ ଧୀରେ କମୁଥିଲା । ମ୍ୟାନୁଫାକ୍‌ଚରିଂ ଶିଳ୍ପରେ ବିଦେଶୀ ଲଗ୍ନି ବ୍ୟକ୍ତିଗତ ଭାରତୀୟ ଲଗ୍ନି ସହିତ ସମାନ ହାରରେ ବୃଦ୍ଧି ପାଇଥିଲା ଏବଂ ୧୯୪୮-୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ତାହା ୨୫୦ ଶତାଂଶ (୭୦ କୋଟିରୁ ୧୮୪ କୋଟି ଟଙ୍କାକୁ) ବୃଦ୍ଧି ପାଇଥିଲା । ନୂତନ ଶିଳ୍ପ ଶାଖାଗୁଡ଼ିକ ମଧ୍ୟରେ ପୁଞ୍ଜିର ସର୍ବାଧିକ ଆଗମନ ଘଟିଥିଲା ତୈଳଶୋଧନ, ରସାୟନ, ମେକାନିକାଲ ଇଂଜିନିୟରିଂ ଏବଂ ବିଦ୍ୟୁତ୍ ଶିଳ୍ପ କ୍ଷେତ୍ରକୁ । ବିନିଯୋଗ କ୍ଷେତ୍ରରେ ସେମାନଙ୍କ ଯଥାର୍ଥ ଅଂଶ ତୁଳନାରେ ବିଦେଶୀ ଏକଚାଟିଆମାନଙ୍କର ପ୍ରଭାବ ଥିଲା ଅନେକ ବେଶି । ଏହାର କାରଣ ହେଲା, ସେତେବେଳେ ଅର୍ଥନୀତିରେ ଅନୁପ୍ରବେଶର (ଯୌଥ କଂପାନି, ଲାଇସେନ୍‌ସର ସର୍ତ୍ତ, କାରୁକୌଶଳଗତ ଚୁକ୍ତି ମାଧ୍ୟମରେ) ନୂତନ ସମ୍ଭାବନା ଦେଖା ଦେଇଥିଲା ଏବଂ ଭାରତରେ ସେମାନଙ୍କ ସ୍ୱାର୍ଥର ପରିସର ମୋଟ ବିନିଯୋଗ ତୁଳନାରେ ଅନେକ ଦ୍ରୁତ ବୃଦ୍ଧି ପାଇଥିଲା । ଏହା ପରେ ଏହି ସିଦ୍ଧାନ୍ତ ଅନିବାର୍ଯ୍ୟ ହୋଇ ପଡ଼ିଥିଲା ଯେ, ବିଦେଶୀ ପୁଞ୍ଜି ପକ୍ଷରେ କୌଣସି କଂପାନିର କ୍ରିୟାକଳାପକୁ ନିୟନ୍ତ୍ରଣ କରିବାର

ମାତ୍ରା ହ୍ରାସ ପାଇଲେ ମଧ୍ୟ ସଂପୂର୍ଣ୍ଣ ପୁନରୁତ୍ପାଦନ ପ୍ରକ୍ରିୟାରେ ବିଦେଶୀ ପୁଞ୍ଜିର ପ୍ରଭାବ ଏବଂ ବ୍ୟକ୍ତିଗତ ଉଦ୍ୟୋଗ କ୍ଷେତ୍ରରେ ଏହାର ସଞ୍ଚିତ ପୁଞ୍ଜିର ଅନୁପ୍ରବେଶ (ଅର୍ଥ ନେଣଦେଣ ଓ କାରୁକୌଶଳ ସାହାଯ୍ୟ ଦ୍ୱାରା) ବୃଦ୍ଧି ପାଇଥିଲା । ଏହା ମଧ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗ କ୍ଷେତ୍ର ପ୍ରତି କିଛି ପରିମାଣରେ ପ୍ରଯୋଜ୍ୟ ।

ଏହି ପରିପ୍ରେକ୍ଷିତରେ ରାଷ୍ଟ୍ରୀୟ ଲଗ୍ନିରୁ ଜାତ ଶିଳ୍ପ ପ୍ରାଚୁର୍ଯ୍ୟ ଏବଂ ସରକାର ଦ୍ୱାରା ପ୍ରବର୍ତ୍ତିତ ସଂରକ୍ଷଣମୂଳକ ବ୍ୟବସ୍ଥା ହେତୁ ଭାରତୀୟ ପୁଞ୍ଜିର ଅର୍ଥନୈତିକ ଶକ୍ତି ଯଥେଷ୍ଟ ବୃଦ୍ଧି ପାଇଥିଲା । ୧୯୪୭-୧୯୬୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ବ୍ୟକ୍ତିଗତ ଜଏଣ୍ଟ-ଷ୍ଟକ୍ କଂପାନିଗୁଡ଼ିକର ପରିଶୋଧିତ ପୁଞ୍ଜି ୪୮୦ କୋଟିରୁ ୧୨୫୦ କୋଟି ଟଙ୍କାକୁ (ପ୍ରାୟ ୩ ଗୁଣ) ବୃଦ୍ଧି ପାଇଥିଲା । ଏଥି ସଙ୍ଗେ ସଙ୍ଗେ ବୃହଦାକାର ପୁଞ୍ଜି ଓ ଏକଚାଟିଆମାନଙ୍କର ଅଂଶ ଦ୍ରୁତତାର ସହିତ ବୃଦ୍ଧି ପାଇବାରେ ଲାଗିଥିଲା । ପୁଞ୍ଜିପତିମାନଙ୍କର ଏହି ଗୋଷ୍ଠୀଟି ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ଗଠନ ମଧ୍ୟରେ ରାଷ୍ଟ୍ରର ସାର୍ବିକ ସମର୍ଥନ ଭୋଗ କରିଥିଲା । ଏହି କାରଣରୁ, ସେମାନଙ୍କ ଦ୍ୱାରା ସଞ୍ଚିତ ପୁଞ୍ଜିକୁ ସେମାନେ ଭାରୀ ଶିଳ୍ପକୁ ସ୍ଥାନାନ୍ତରଣ କରିବାର ସୁଯୋଗ ପାଇଥିଲେ । ବିଦେଶୀ ଏକଚାଟିଆମାନେ ମଧ୍ୟ ଋଣ ଓ ଯନ୍ତ୍ରପାତି ଆକାରରେ ବିରାଟ ପରିମାଣର ସାହାଯ୍ୟ ଦେଇଥିଲେ । ବ୍ୟକ୍ତିଗତ ଶିଳ୍ପୋଦ୍ୟୋଗ କ୍ଷେତ୍ରର ବଡ଼ ବଡ଼ ସଂସ୍ଥାଗୁଡ଼ିକର ୮୦ ଶତାଂଶରୁ ଅଧିକ ବିଦେଶୀ ସଂସ୍ଥାମାନଙ୍କର ସହଯୋଗିତାରେ ନିର୍ମିତ ହୋଇଥିଲା ।

ଅର୍ଥାତ୍, ଭାରତୀୟ ଏକଚାଟିଆମାନଙ୍କ ସହିତ ବିଶେଷ ସଂପର୍କ ଦ୍ୱାରା ସଂଯୁକ୍ତ ଛୋଟ ଏକ ଗୋଷ୍ଠୀ ଶକ୍ତିଶାଳୀ କଂପାନି ସର୍ବାଧିକ ସୁଯୋଗର ଅଧିକାରୀ ହୋଇଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ୧୯୫୬-୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏକ କୋଟି ଟଙ୍କାରୁ ଅଧିକ ପୁଞ୍ଜିର ମାଲିକ କଂପାନିଗୁଡ଼ିକ ୬୮ ଶତାଂଶ ଇସ୍ୟୁକରା ଶେୟାର ପୁଞ୍ଜିର ଅଧିକାରୀ ଥିଲେ । ଅଥଚ ୧୯୬୧ ଓ ୧୯୬୨ ଖ୍ରୀଷ୍ଟାବ୍ଦରେ ଏହି ଅଙ୍କଟି ଯଥାକ୍ରମେ ବୃଦ୍ଧି ପାଇ ୭୦ ଓ ୭୮ ଶତାଂଶରେ ପହଞ୍ଚିଥିଲା । ୧୯୪୭-୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଟାଟା କଂପାନିଗୁଡ଼ିକର ପରିସଂପଦ ୭୦ କୋଟି ଟଙ୍କାରୁ ୪୦୦ କୋଟି ଟଙ୍କାକୁ ଏବଂ ବିରଳା କଂପାନିଗୁଡ଼ିକର ପରିସଂପଦ ୪୦ କୋଟିରୁ ୩୦୦ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ଏହି ଦୁଇଟି ଗୋଷ୍ଠୀ ଛଡ଼ା ଷାଠିଏ ଦଶକର ପ୍ରାରମ୍ଭରେ ୧୦୦ କୋଟିରୁ ଅଧିକ ଟଙ୍କାର ମାଲିକ ଆଉରି ଚାରିଟି କଂପାନିର (ଡାଲ୍‌ମିଆ-ଜୈନ, ମୁଖାର୍ଜୀ, ଏମ୍. ଚେର୍ଣ୍ଣିୟାର ଓ ଓୟାଲଚାନ୍ଦ-କାଚାଚାନ୍ଦ) ଅଭ୍ୟୁଦୟ ଘଟିଥିଲା ।

ବ୍ୟାଙ୍କିଙ୍ଗ୍ କ୍ଷେତ୍ରରେ ମଧ୍ୟ ଠୂଳୀକରଣର ମାତ୍ରା ଖୁବ୍ ବେଶି ଥିଲା : ଷାଠିଏ ଦଶକର ମଝାମଝି ବେଳକୁ ଭାରତୀୟ ଏକଚାଟିଆମାନଙ୍କ ଦ୍ୱାରା ନିୟନ୍ତ୍ରିତ ଓ ମୋଟ ତପ୍‌ସିଲ ବ୍ୟାଙ୍କର ପ୍ରାୟ ୧୦ ଶତାଂଶର ପ୍ରତିନିଧି ସ୍ୱରୂପ ବୃହତ୍ତମ ୭ଟି ବ୍ୟାଙ୍କ୍ ଦେଶର ମୋଟ ବ୍ୟାଙ୍କ୍-ଜମାର ୬୫ ଶତାଂଶର ଅଧିକାରୀ ଥିଲେ ।

ପୂର୍ବ ତୁଳନାରେ ଭାରତୀୟ ବୁର୍ଜୁଆ ଓ ଏଥି ସଙ୍ଗେ ସଙ୍ଗେ ସେମାନଙ୍କ ଅଭିଜାତ ଏକଚାଟିଆମାନେ ଆଉରି ଶକ୍ତିଶାଳୀ ହୋଇ ଉଠିବାରୁ ଏବଂ ଏହି ଚକ୍ର ସହିତ ବିଦେଶୀ ଏକଚାଟିଆମାନଙ୍କର ଘନିଷ୍ଠ ସଂଯୋଗ ଥିବାରୁ ଭାରତର ଅର୍ଥନୈତିକ ଓ ସାମାଜିକ ବିକାଶ ଦିଗରେ ପ୍ରତିକ୍ରିୟାଶୀଳ ପ୍ରବଣତାର ପ୍ରାଧାନ୍ୟ ଦେଖା ଦେଇଥିଲା । ଜାତୀୟ ବୁର୍ଜୁଆମାନଙ୍କ ମଧ୍ୟରେ ଏହା

ପରେ ଦ୍ୱନ୍ଦ୍ୱ ବୃଦ୍ଧି ପାଇଥିଲା ଏବଂ ବାଣିଜ୍ୟ ଓ ଶିଳ୍ପ ବୁର୍ଜୁଆମାନଙ୍କର ଅଧସ୍ତନ ସ୍ତରଗୁଡ଼ିକର ସଂଖ୍ୟା ବୃଦ୍ଧି ମଧ୍ୟରେ ତାହା ସ୍ପଷ୍ଟ ହୋଇ ଉଠୁଥିଲା ।

୧୯୪୭ ଖ୍ରୀଷ୍ଟାବ୍ଦ ପରେ କ୍ଷୁଦ୍ରାୟତ ଶିଳ୍ପରେ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା । ଏହି ପ୍ରକ୍ରିୟାର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଉପାଦାନ ରୂପେ ଲଘୁ ଶିଳ୍ପର ପାରମ୍ପରିକ ଶାଖାର କ୍ଷୁଦ୍ର ପଣ୍ୟୋତ୍ପାଦନ ଓ ମ୍ୟାନୁଫାକ୍ଚରିଂ ସଂସ୍ଥାଗୁଡ଼ିକ ଉତ୍ଖାତକାରୀ ଯନ୍ତ୍ରାୟିତ କ୍ଷୁଦ୍ର ସଂସ୍ଥାଗୁଡ଼ିକର ଦ୍ରୁତ ଅଭିବୃଦ୍ଧି ଏବଂ ସଂପ୍ରତି ଦ୍ରୁତ ପ୍ରସାରମାନ ନୂତନ ଶିଳ୍ପଶାଖାଗୁଡ଼ିକ (ଲଘୁ ଇଂଜିନିୟରିଂ, ଧାତୁ କାର୍ଯ୍ୟ, କ୍ଷୁଦ୍ର ରାସାୟନିକ ଶିଳ୍ପ ଆଦି) ଉଲ୍ଲେଖଯୋଗ୍ୟ । ଏହି ଶେଷୋକ୍ତ ଗୋଷ୍ଠୀର କେତେକ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀ କେତେକ ସହାୟକ ଉତ୍ପାଦନୀ କାର୍ଯ୍ୟ ସଂପାଦନ କରି ବଡ଼ ବଡ଼ ପୁଞ୍ଜିପତିମାନଙ୍କ ସହିତ ସହଯୋଗିତା କରୁଥିଲେ । ଶିଳ୍ପ ବିକାଶର ଅନୁକୂଳ ରାଷ୍ଟ୍ରୀୟ ନୀତି ଫଳରେ ଶିଳ୍ପର ଏହି କ୍ଷେତ୍ରଟିରେ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀମାନଙ୍କର ଯଥେଷ୍ଟ ସଂଖ୍ୟାବୃଦ୍ଧି ଘଟିଥିଲା : ଉତ୍ପାଦନର କେତେକ କ୍ଷେତ୍ର କ୍ଷୁଦ୍ର ଶିଳ୍ପୋଦ୍ୟୋଗୀମାନଙ୍କ ପାଇଁ ସରକାରୀ ଭାବେ ସଂରକ୍ଷିତ ରଖାଯାଇଥିଲା, ସେମାନେ ସରକାରୀ ସାହାଯ୍ୟ (ସବ୍‌ସିଡ଼ି) ସମେତ ନିଶ୍ଚିତ ବଜାର, ଋଣ ସୁବିଧା ଓ କର ଛାଡ଼ ପାଇଥିଲେ । ଯନ୍ତ୍ରୀକୃତ କ୍ଷୁଦ୍ରାୟତ ଶିଳ୍ପର ପ୍ରସାର ବ୍ୟତୀତ ଅନେକଗୁଡ଼ିଏ "ଅସଂଗଠିତ" ଶିଳ୍ପରେ ମଧ୍ୟ (ଯନ୍ତ୍ରୀକୃତ ସଂସ୍ଥାରେ ୧୦, ମ୍ୟାନୁଫାକ୍ଚରିଂ ସଂସ୍ଥାରେ ୨୦ଜଣ ପର୍ଯ୍ୟନ୍ତ ଶ୍ରମିକ କାର୍ଯ୍ୟ କରୁଥିଲେ) ବୃଦ୍ଧି ଘଟିଥିଲା । ଏହିସବୁ ଅସଂଗଠିତ ଶିଳ୍ପର ଅଧିକାଂଶ ଥିଲା ମୂଳତଃ ପାରିବାରିକ ଶ୍ରମଭିତ୍ତିକ । ୧୯୫୨-୧୯୬୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହି କ୍ଷେତ୍ରରେ କର୍ମରତ ଶ୍ରମିକମାନଙ୍କର ସଂଖ୍ୟା ୯୯ ଲକ୍ଷରୁ ୧ କୋଟି ୪୩ ଲକ୍ଷକୁ ବୃଦ୍ଧି ପାଇଥିଲା । ୧୯୬୦ ଖ୍ରୀଷ୍ଟାବ୍ଦରେ ଭାରତର ମୋଟ ଶିଳ୍ପ ସଂସ୍ଥା ମଧ୍ୟରେ କ୍ଷୁଦ୍ରାୟତ ସଂସ୍ଥା ଓ ଛୋଟ ଛୋଟ କାରଖାନାର ସଂଖ୍ୟା ଥିଲା ୯୩ ଶତାଂଶ ।

କ୍ଷୁଦ୍ରାୟତ ଶିଳ୍ପର ସଂରକ୍ଷଣ ଏବଂ ଏପରିକି, ଏସବୁର "ସଂପ୍ରସାରିତ ପୁନରୁତ୍ପାଦନ" ମଧ୍ୟ (ଯଥେଷ୍ଟ କୃତ୍ରିମ ଭାବେ ବିକଶିତ) ଦୁଇଟି ସୁନିର୍ଦ୍ଦିଷ୍ଟ ଫଳ ପ୍ରଦାନ କରିଥିଲା : ଗୋଟିଏ ଦିଗରେ, ଉତ୍ପାଦନରେ ବହୁ ଶ୍ରମିକ ନିୟୋଗ ଓ ଯଥେଷ୍ଟ ପରିମାଣର ନୂତନ ପୁଞ୍ଜି ଲଗ୍ନୀକୃତ ହେବାରୁ ଆଭ୍ୟନ୍ତରୀଣ ବଜାର ସଂପ୍ରସାରିତ ହୋଇଥିଲା; ପକ୍ଷାନ୍ତରରେ ଏହି ପ୍ରକ୍ରିୟା କିନ୍ତୁ ଠୁଳୀକରଣ ଓ ଉତ୍ପାଦନ ବିଶେଷୀକରଣକୁ ମନ୍ଥର କରିଥିଲା ଏବଂ ଦୀର୍ଘ କାଳ ଧରି ଉଚ୍ଚ ମୂଲ୍ୟ ଓ ଉଚ୍ଚ ଉତ୍ପାଦନୀ ବ୍ୟୟ ନିତ୍ୟନୈମିତ୍ତିକ ବ୍ୟାପାର ହୋଇ ଉଠିଥିଲା ।

ଇତିମଧ୍ୟରେ ପ୍ରଧାନତଃ ଲଘୁ ଶିଳ୍ପରେ ପୁଞ୍ଜି ଲଗ୍ନୀକାରୀ ଶିଳ୍ପ ବୁର୍ଜୁଆମାନଙ୍କର ମଧ୍ୟସ୍ତର ଉପର ଓ ନିମ୍ନର ଶିଳ୍ପୋଦ୍ୟୋଗୀ ଦଳଗୁଡ଼ିକ ତୁଳନାରେ ଅପେକ୍ଷାକୃତ ଧୀର ଗତିରେ ବିକଶିତ ହେଉଥିଲା । ଏହା ଥିଲା ପ୍ରଥମତଃ ଓ ପ୍ରଧାନତଃ ସରକାର କର୍ତ୍ତୃକ ଲଘୁ ଶିଳ୍ପ (୨ୟ ବିଭାଗରେ) ଉପରେ ନିୟନ୍ତ୍ରଣ ଆରୋପ ଏବଂ ଏଥି ସଙ୍ଗେ ସଙ୍ଗେ କ୍ଷୁଦ୍ରାୟତ ଓ ଭାରୀ ଶିଳ୍ପକୁ ଉତ୍ସାହ ଦାନର ଫଳ ସ୍ୱରୂପ । ଲକ୍ଷ୍ୟ କରିବାର କଥା ଯେ, ଭାରତର ଜଏଣ୍ଟ-ଷ୍ଟକ୍ କଂପାନିଗୁଡ଼ିକର ପୁଞ୍ଜିର ବିପୁଳ ବୃଦ୍ଧି ଘଟିଥିଲା । ଏସବୁର ମୋଟ ସଂଖ୍ୟା ୧୯୫୦-୧୯୬୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ୨୭, ୫୦୦ରୁ ୨୫, ୫୦୦କୁ କମି ଆସିଥିଲା । ଏହି ଭାବରେ କେବଳ ପୁଞ୍ଜିବାଦୀ ଠୁଳୀକରଣର ତ୍ୱରାନ୍ୱିତକରଣ କେବଳ ପ୍ରକଟିତ ହୋଇନି, ବୁର୍ଜୁଆମାନଙ୍କର ମଧ୍ୟ ସ୍ତରର ପତନମୁଖୀତା ମଧ୍ୟ ସ୍ପଷ୍ଟ ହୋଇ ଉଠିଥିଲା । ଏହିସବୁ ଅର୍ଥନୈତିକ ପ୍ରକ୍ରିୟା ଭାରତୀୟ ବୁର୍ଜୁଆମାନଙ୍କ ମଧ୍ୟରେ ତୀବ୍ର ଦ୍ୱନ୍ଦ୍ୱର ଉନ୍ମେଷ ଘଟାଇଥିଲା ।

ଔପନିବେଶିକ ଅନଗ୍ରସରତାକୁ ଅତିକ୍ରମ କରିବାର ଉଦ୍ୟୋଗ ପଥରେ ପ୍ରଧାନ ବାଧା ଥିଲା ତା'ର ଉତ୍ପାଦନଶୀଳ ପୁଞ୍ଜିର (ସାଜସରଞ୍ଜାମ, ଯନ୍ତ୍ରାଂଶ, ଶିଳ୍ପୋତ୍ପାଦନ, ଜାଳେଣି) ସ୍ୱଳ୍ପତା । ଭାରତ କେବଳ ଉତ୍ପାଦନ ଉପାୟ ଉପକରଣ ଆମଦାନିର କ୍ରମବର୍ଦ୍ଧମାନ ଚାହିଦା ହେତୁ ନୁହେଁ, ଏଥି ପାଇଁ ପ୍ରୟୋଜନୀୟ ବିନିମୟଯୋଗ୍ୟ ମୁଦ୍ରାର ମାରାତ୍ମକ ଅଭାବ ହେତୁ ମଧ୍ୟ ଭୋଗୁଥିଲା । ଅର୍ଥାତ୍, ଶିଳ୍ପାୟନ କର୍ମସୂଚୀ ବାସ୍ତବାୟନ ସମୟରେ ବୈଦେଶିକ ସାହାଯ୍ୟର, ସାଧାରଣତଃ, ବିଦେଶୀ ସରକାରୀ ସାହାଯ୍ୟ ଉପରେ ଭାରତର ନିର୍ଭରଶୀଳତା ବୃଦ୍ଧି ପାଉଥିଲା ।

ଏହି ବୈଦେଶିକ ସାହାଯ୍ୟ ପ୍ରଧାନ ପ୍ରଧାନ ଯନ୍ତ୍ରପାତି ଓ ଦ୍ରବ୍ୟାଦି ଆମଦାନିରେ ଏବଂ ବିଦେଶୀ ବିଶେଷଜ୍ଞମାନଙ୍କର ବେତନର ବ୍ୟୟ ବହନ ଦିଗରେ ଖର୍ଚ୍ଚ ହେଉଥିଲା ।

ରିଜର୍ଭ ବ୍ୟାଙ୍କ୍‌ର ହିସାବ ଅନୁଯାୟୀ ୧୯୬୦ ଖ୍ରୀଷ୍ଟାବ୍ଦର ଶେଷ ଆଡ଼କୁ ଭାରତରେ ବୈଦେଶିକ ବ୍ୟକ୍ତିଗତ ପୁଞ୍ଜି ଲଗ୍ନିର ପରିମାଣ ୫୬୬,୪ କୋଟି ଟଙ୍କାରେ ପହଞ୍ଚିଥିଲା । ଏହି ହିସାବଟି ୧୯୪୮ ଖ୍ରୀଷ୍ଟାବ୍ଦର ଏକେଇ ଲଗ୍ନିର ୨୫୫,୮ କୋଟି ଟଙ୍କା ସହିତ ତୁଳନୀୟ । ୧୯୫୬-୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ବୈଦେଶିକ ବ୍ୟକ୍ତିଗତ ଲଗ୍ନିର ମୋଟ ବାର୍ଷିକ ପରିମାଣ ଥିଲା ୩୪ କୋଟି ୬୨ ଲକ୍ଷ ଟଙ୍କା (ଏହାର ୪୦ ଶତାଂଶ ପୁନର୍ଲଗ୍ନିରେ ବ୍ୟବହୃତ) ଏବଂ ତତ୍କାଳୀନ ବାର୍ଷିକ ହାରାହାରି ନୀଟ୍ ପୁଞ୍ଜି ଆମଦାନିର ପରିମାଣ ୨୧,୯ କୋଟି ଟଙ୍କାରେ ପହଞ୍ଚିଥିଲା । ଏହି ବ୍ୟକ୍ତିଗତ ପୁଞ୍ଜିର ପ୍ରଧାନ ଉତ୍ସ ଥିଲା ବ୍ରିଟେନ୍ (୧୯୬୦ ଖ୍ରୀଷ୍ଟାବ୍ଦରେ ମୋଟ ବୈଦେଶିକ ଲଗ୍ନିରେ ବ୍ରିଟେନ୍‌ର ଅଂଶ ଥିଲା ୭୮.୬ ଶତାଂଶ) ଏବଂ ଏହା ପରେ ଆମେରିକା ଯୁକ୍ତ ରାଷ୍ଟ୍ର (ମୋଟ ବୈଦେଶିକ ଲଗ୍ନିର ୧୪ ଶତାଂଶ) ।

ଭାରତର ବୈଦେଶିକ ଅର୍ଥନୈତିକ ସଂପର୍କ କ୍ଷେତ୍ରରେ ରାଷ୍ଟ୍ରୀୟ ଋଣ ହିସାବରେ ଅର୍ଥନୈତିକ ସାହାଯ୍ୟ ଓ ସବ୍‌ସିଡି ଥିଲା ଆଉରି ଗୁରୁତ୍ୱପୂର୍ଣ୍ଣ । ୧୯୬୫ ଖ୍ରୀଷ୍ଟାବ୍ଦର ଶରତ କାଳ ବେଳକୁ ପୁଞ୍ଜିବାଦୀ ଦେଶଗୁଡ଼ିକରୁ ଭାରତକୁ ମିଳିଥିବା ଅର୍ଥନୈତିକ ସାହାଯ୍ୟର ପରିମାଣ ୩୫୦୦ କୋଟି ଟଙ୍କାରେ ପହଞ୍ଚିଥିଲା (ତନ୍ମଧ୍ୟରୁ ଆମେରିକା ଯୁକ୍ତ ରାଷ୍ଟ୍ରରୁ ୧୪୦୦ କୋଟି ଟଙ୍କା) । ବୈଦେଶିକ ଋଣ ଓ ସବ୍‌ସିଡି ଅର୍ଥ ପ୍ରଧାନତଃ ବିଦ୍ୟୁତ୍ ଉତ୍ପାଦନ ଶିଳ୍ପର ବିଭିନ୍ନ ଶାଖା, ପରିବହନ ବ୍ୟବସ୍ଥା, ମ୍ୟାନୁଫାକ୍‌ଚରିଂ ଓ ନିଷ୍କାଶନମୂଳକ ଶିଳ୍ପର କେତେକ କ୍ଷେତ୍ର ଏବଂ ପ୍ରଚୁର ପରିମାଣର ଖାଦ୍ୟ ଆମଦାନି (ପ୍ରଧାନତଃ, ଆମେରିକା ଯୁକ୍ତ ରାଷ୍ଟ୍ରରୁ ଗହମ) ପାଇଁ ବ୍ୟୟ ହୋଇଥିଲା ।

ଭାରତରେ ବୈଦେଶିକ ବ୍ୟକ୍ତିଗତ ଓ ରାଷ୍ଟ୍ରୀୟ ପୁଞ୍ଜିର ପ୍ରବାହ ନିଃସନ୍ଦେହରେ ଦେଶର ଶିଳ୍ପାୟନରେ ସହାୟକ ହୋଇଥିଲା । କିନ୍ତୁ ସ୍ମରଣ ରଖିବାକୁ ହେବ ଯେ, ଏଥି ସଙ୍ଗେ ସଙ୍ଗେ ଏହା ଏକଚାଟିଆମାନଙ୍କର ଅନୁପ୍ରବେଶ ସମେତ ବିଶ୍ୱ ପୁଞ୍ଜିବାଦୀ ବ୍ୟବସ୍ଥାରେ ଭାରତର ବନ୍ଧନକୁ ଦୃଢ଼ତର କରିଥିଲା ।

ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସମାଜବାଦୀ ଦେଶ ସହିତ ଭାରତର ସଂପର୍କ ତା'ର ବୈଦେଶିକ ଯୋଗସୂତ୍ର କ୍ଷେତ୍ରରେ ଏକ ବିଶେଷ ସ୍ଥାନ ଅଧିକାର କରିଥିଲା । ପ୍ରାଚ୍ୟର ଜନସାଧାରଣଙ୍କ ଜାତୀୟ-ମୁକ୍ତି ସଂଗ୍ରାମ ପ୍ରତି ସହାୟତା ଏବଂ ମୈତ୍ରୀ ଓ ପାରସ୍ପରିକ ସହଯୋଗିତାର ନୀତି ଅନୁଯାୟୀ ସୋଭିଏତ୍ ୟୁନିଅନ୍ ଭାରତକୁ ତା'ର ଅର୍ଥନୈତିକ ସ୍ୱାଧୀନତା ହାସଲ କରିବା ଉଦ୍ୟମରେ

ଯଥେଷ୍ଟ ସାହାଯ୍ୟ କରିଥିଲା । କିଛି ପରିମାଣରେ ରାଷ୍ଟ୍ରୀୟ ଯୋଜନାର ପ୍ରବର୍ତ୍ତନ, ଏକ ଶକ୍ତିଶାଳୀ ରାଷ୍ଟ୍ରାୟତ୍ତ କ୍ଷେତ୍ର ସୃଷ୍ଟି ଓ ଶିଳ୍ପାୟନ କର୍ମସୂଚୀ ଭଳି ଭାରତୀୟ ଅର୍ଥନୈତିକ କର୍ମନୀତିର ପ୍ରଗତିଶୀଳ ଦିଗଗୁଡ଼ିକ ସୋଭିଏତ୍ ୟୁନିଅନ୍‌ର ଜନସାଧାରଣ ଓ ସମଗ୍ର ସମାଜବାଦୀ ଗୋଷ୍ଠୀ କର୍ତ୍ତୃକ ଅଭିନନ୍ଦିତ ହୋଇଥିଲା ।

୧୯୫୫-୧୯୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ସଂପାଦିତ ଅନେକଗୁଡ଼ିଏ ଚୁକ୍ତି ଫଳରେ ସୋଭିଏତ୍ ୟୁନିଅନ୍ ଭାରତକୁ ମୋଟ ୬୦ କୋଟି ରୁବଲରୁ ଅଧିକ ଦୀର୍ଘମିଆଦୀ ଋଣ ଦେଇଥିଲା । ଭାରତରେ ସୋଭିଏତ୍ ଋଣ ମୂଳତଃ ଧାତୁଶିଳ୍ପରେ (ବିଶେଷ ଭାବେ ଲୌହ ସଂପୃକ୍ତ ଧାତୁଶିଳ୍ପରେ) କେନ୍ଦ୍ରୀଭୂତ ହୋଇଥିଲା । ସୋଭିଏତ୍-ଭାରତ ମୈତ୍ରୀର ପ୍ରତୀକ ସ୍ୱରୂପ ସୋଭିଏତ୍ ସାହାଯ୍ୟରେ ନିର୍ମିତ ଭିଲାଇ ଇସ୍‌ପାତ କାରଖାନାରେ ୧୯୬୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତରେ ଉତ୍ପନ୍ନ ମୋଟ ଇସ୍‌ପାତର ପ୍ରାୟ ଏକ ତୃତୀୟାଂଶ ଇସ୍‌ପାତ ନିର୍ମିତ ହେଉଥିଲା । ୧୯୬୭ ଖ୍ରୀଷ୍ଟାବ୍ଦରେ କାରଖାନାଟିର ସଂପ୍ରସାରଣ କାର୍ଯ୍ୟ ଶେଷ ହେଲା ପରେ ଏହାର ଉତ୍ପାଦନ ପ୍ରାରମ୍ଭିକ ପରିକଳ୍ପନା ଠାରୁ ତିନି ଗୁଣ ବୃଦ୍ଧି ପାଇଥିଲା । ଏହି ବର୍ଷ ବୋକାରୋରେ ଏକ ବିରାଟ ଧାତୁ ଶିଳ୍ପ ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ତୈଳଶିଳ୍ପ ଥିଲା ସୋଭିଏତ୍ ସାହାଯ୍ୟ ପ୍ରାପ୍ତ ଭାରତର ଶିଳ୍ପ କ୍ଷେତ୍ର ମଧ୍ୟରେ ଦ୍ୱିତୀୟ ବୃହତ୍ତମ ପ୍ରକଳ୍ପ । ତରଳ ଜାଳେଣି ଭଳି ଅତି ଗୁରୁତ୍ୱପୂର୍ଣ୍ଣ ପ୍ରକଳ୍ପଟିକୁ ଆନ୍ତର୍ଜାତିକ ସାମ୍ରାଜ୍ୟବାଦୀ ଏକଚେଟିଆମାନଙ୍କ ହାତରୁ ମୁକ୍ତ କରିବାରେ ସୋଭିଏତ୍ ୟୁନିଅନ୍ ଭାରତକୁ ଯଥେଷ୍ଟ ସାହାଯ୍ୟ ପ୍ରଦାନ କରିଥିଲା ।

ଲୌହ ଓ ଇସ୍‌ପାତ ଶିଳ୍ପର ପୂର୍ଣ୍ଣ ସମାହାର ଏବଂ ଖଣିଶିଳ୍ପ ଗଠନ ଲକ୍ଷ୍ୟରେ ସୋଭିଏତ୍ ୟୁନିଅନ୍ ଓ ଭାରତର ଅର୍ଥନୈତିକ ସହଯୋଗିତା ପରିକଳ୍ପିତ ହୋଇଥିଲା । ସୋଭିଏତ୍ ୟୁନିଅନ୍ ଭାରତକୁ ରାଞ୍ଚି ଓ ଦୁର୍ଗାପୁରର ଭାରୀ ଇଂଜିନିୟରିଂ କାରଖାନା ନିର୍ମାଣରେ ସାହାଯ୍ୟ କରିଥିଲା । ଉପରୋକ୍ତ କ୍ଷେତ୍ରଗୁଡ଼ିକର ବିକାଶ ସାଧନ କରିବା ଏହି ଶିଳ୍ପଗୁଡ଼ିକର ଲକ୍ଷ୍ୟ ଥିଲା ।

ଭାରତକୁ ପ୍ରଦତ୍ତ ସୋଭିଏତ୍ ଅର୍ଥନୈତିକ ସାହାଯ୍ୟ କର୍ମସୂଚୀରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଥିଲା । ସୋଭିଏତ୍ ୟୁନିଅନ୍ ଭାରତରେ ୧୧ଟି ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କେନ୍ଦ୍ର (ପୂର୍ଣ୍ଣ ବା ଆଂଶିକ) ନିର୍ମାଣ କରିଥିଲା ଏବଂ ଏସବୁର ଉତ୍ପାଦନ ସାମର୍ଥ୍ୟ ଦେଶରେ ଉତ୍ପନ୍ନ ମୋଟ ବିଦ୍ୟୁତ୍‌ଶକ୍ତିର ଶତକଡ଼ା ୨୦ ଭାଗ ଥିଲା । ସୋଭିଏତ୍-ଭାରତୀୟ ଅର୍ଥନୈତିକ ସହଯୋଗିତାର ଉପରୋକ୍ତ ତିନୋଟି ଦିଗ ବ୍ୟତୀତ ଚୁକ୍ତି ଅନୁଯାୟୀ ଭାରତ ଯନ୍ତ୍ରନିର୍ମାଣ, ଔଷଧ ପ୍ରସ୍ତୁତି, କୋଇଲାଶିଳ୍ପ, ମତ୍ସ୍ୟ ଶିକାର, କୃଷି ଓ ବିଶେଷଜ୍ଞ ପ୍ରଶିକ୍ଷଣ ଆଦି କ୍ଷେତ୍ର ସାହାଯ୍ୟ ଲାଭ କରିଥିଲା । ଷାଠିଏ ଦଶକର ଶେଷ ଭାଗରେ ସୋଭିଏତ୍ ୟୁନିଅନ୍‌ର ସହାୟତାରେ ୬୦ଟିରୁ ଅଧିକ ସଂସ୍ଥାର ନିର୍ମାଣ ଚାଲିଥିଲା କିମ୍ବା ନିର୍ମିତ ହେଉଥିଲା । ସତୁରି ଦଶକର ପ୍ରାରମ୍ଭରେ ସୋଭିଏତ୍ ସାହାଯ୍ୟରେ ନିର୍ମିତ କାରଖାନାଗୁଡ଼ିକରେ ଉତ୍ପନ୍ନ ହେଉଥିଲା ଦେଶର ଇସ୍‌ପାତର ୩୦ ଶତାଂଶ, ଭାରୀ ଯନ୍ତ୍ରପାତିର ୮୫ ଶତାଂଶ, ବିଦ୍ୟୁତ୍ ଶିଳ୍ପର ଭାରୀ ଯନ୍ତ୍ରପାତିର ୬୦ ଶତାଂଶ, ଆଲୁମିନିୟମର ୨୫ ଶତାଂଶ ଏବଂ ଦେଶରେ ଉତ୍ପନ୍ନ ତୈଳର ୮୦ ଶତାଂଶ । ଭାରତୀୟ ପଣ୍ୟ ରପ୍ତାନି ମାଧ୍ୟମରେ ପରିଶୋଧ୍ୟ ଏହି ସୋଭିଏତ୍ ଋଣ ଭାରତର ଶିଳ୍ପୋନ୍ନୟନରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ବିସ୍ତାର କରିଥିଲା ଏବଂ ଅନ୍ୟାନ୍ୟ କେତେକ କାର୍ଯ୍ୟ ସମେତ ତା'ର ଶିଳ୍ପ ରପ୍ତାନିରେ ସହାୟତା ଯୋଗାଇଥିଲା ।

ଦୁଇଟି ଦେଶ ମଧ୍ୟରେ ବର୍ତ୍ତମାନ ଅର୍ଥନୈତିକ ସଂଯୋଗର ସୂଚକ ହିସାବରେ ଏମାନଙ୍କ ମଧ୍ୟରେ ବାଣିଜ୍ୟିକ ନେଣଦେଣ ଦ୍ରୁତ ବୃଦ୍ଧି ପାଇଥିଲା । ସ୍ୱାଧୀନତା ଲାଭ ପରେ ସୋଭିଏତ୍ ୟୁନିଅନ୍ ଓ ଭାରତ ମଧ୍ୟରେ ବାଣିଜ୍ୟ ୩୦ ଗୁଣରୁ ଅଧିକ ବୃଦ୍ଧି ପାଇଥିଲା । ଏବେ ସୋଭିଏତ୍ ୟୁନିଅନ୍ ହେଲା ଭାରତର ଦ୍ୱିତୀୟ ବୃହତ୍ତମ ଅଂଶୀଦାର ।

## ଭାରତର ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତି କ୍ଷେତ୍ରରେ "ନେହରୁ-ଧାରାର" ଉନ୍ମେଷ

ରାଷ୍ଟ୍ରାୟତ୍ତ ପୁଞ୍ଜିବାଦର ଧାରାରେ ସ୍ୱାଧୀନ ଭାରତର ଅର୍ଥନୀତିର ବିକାଶ ସାଧନ ଏବଂ ବିଦେଶୀ ପୁଞ୍ଜିକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ କେତେକ ଅର୍ଥନୈତିକ ପଦକ୍ଷେପ ଗ୍ରହଣ ଓ ପ୍ରାକ୍ ପୁଞ୍ଜିବାଦୀ କୃଷି ସଂପର୍କର ଧରଣଗୁଡ଼ିକର କ୍ରମାନ୍ୱୟରେ ପରିବର୍ତ୍ତନ ସାଧନ – ଏସବୁ ଦେଶର ଅର୍ଥନୈତିକ ସ୍ୱାଧୀନତାକୁ ଦୃଢ଼ କରିଥିଲା ।

ଜବାହାରଲାଲ ନେହରୁଙ୍କ କର୍ତ୍ତୃକ ସୂତ୍ରବଦ୍ଧ "ମିଶ୍ର ଅର୍ଥନୀତିର" ଅବଧାରଣା ଅନୁଯାୟୀ ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ କ୍ଷେତ୍ରର ସମାନ୍ତରାଳ ବିକାଶ ପ୍ରଥମ ତିନୋଟି ପଞ୍ଚବାର୍ଷିକ ଯୋଜନାର ବୈଶିଷ୍ଟ୍ୟ ଥିଲା । ପଚାଶ ଓ ଷାଠିଏ ଦଶକରେ କଂଗ୍ରେସର ଅର୍ଥନୈତିକ କର୍ମନୀତି ଥିଲା ନେହରୁଙ୍କ ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିର ସାରମର୍ମ ।

୧୯୫୧-୧୯୫୨ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନରେ ଭାରତର ସଂସଦୀୟ ରାଜନୀତିରେ କେତେକ ବାମପନ୍ଥୀ ପ୍ରବଣତା ସ୍ପଷ୍ଟ ହୋଇ ଉଠିଥିଲା ଏବଂ ତାହା ଶାସକ ଦଳର ବାମପନ୍ଥୀ ଓ ମଧ୍ୟପନ୍ଥୀମାନଙ୍କ ଅବସ୍ଥାନକୁ ସୁଦୃଢ଼ କରିଥିଲା । କଂଗ୍ରେସ ମଧ୍ୟରେ ଥିବା ଗଣତାନ୍ତ୍ରିକ ଗୋଷ୍ଠୀ ସକ୍ରିୟ ହୋଇ ଉଠିଥିଲେ ଏବଂ ତଦନୁଯାୟୀ ଶ୍ରମଜୀବୀମାନଙ୍କର ଗଣ ସଂଗଠନଗୁଡ଼ିକ ବାମପନ୍ଥୀ ଦଳଗୁଡ଼ିକର ପ୍ରଭାବାଧୀନ ଥିବାରୁ ଏହି ପରିସ୍ଥିତିରେ ନେହରୁଙ୍କ ପକ୍ଷରେ ଭାରତରେ ବୁର୍ଜୁଆ ଗଣତନ୍ତ୍ରର ଭିତ୍ତିକୁ ମଜବୁତ୍ କରିବା ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ ଆଭ୍ୟନ୍ତରୀଣ ପଦକ୍ଷେପ ନେବା ସମ୍ଭବ ହୋଇଥିଲା ।

ସାରା ପୃଥିବୀ ଯେତେବେଳେ ସମାଜବାଦର ଅଭିମୁଖୀ ଏବଂ ଜାତୀୟ-ମୁକ୍ତି ଆନ୍ଦୋଳନରେ ସାମ୍ରାଜ୍ୟବାଦବିରୋଧୀ ଓ ପୁଞ୍ଜିବାଦବିରୋଧୀ ପରମ୍ପରା ଯେତେବେଳେ ସୁସ୍ପଷ୍ଟ, ସେତବେଳେ ଭାରତରେ ଆଧୁନିକ ବୁର୍ଜୁଆ ସମାଜର ଅଭ୍ୟୁଦୟ ଘଟିବା ଫଳରେ ଏହି ସମାଜର ପୁନର୍ଗଠନ କର୍ମସୂଚୀରେ ମଧ୍ୟ ଉପରୋକ୍ତ ପ୍ରବଣତାଗୁଡ଼ିକର ପ୍ରତିଫଳନ (ସମାଜବାଦୀ ଢାଞ୍ଚାର ସମାଜ) ଅନିବାର୍ଯ୍ୟ ଥିଲା । ୧୯୫୫ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ କଂଗ୍ରେସର ଆବାଡ଼ି ଅଧିବେଶନରେ ନେହରୁଙ୍କ ସୁପାରିସ ଅନୁଯାୟୀ ଏହି ସୂତ୍ରଟି କଂଗ୍ରେସର ଆନୁଷ୍ଠାନିକ କର୍ମସୂଚୀର ଅନ୍ତର୍ଭୁକ୍ତ ହୋଇଥିଲା । କାର୍ଯ୍ୟତଃ "କଂଗ୍ରେସ ସମାଜବାଦ" କହିଲେ ବ୍ୟକ୍ତିଗତ ସଂପତ୍ତି ବା ସଂପତ୍ତି ମଧ୍ୟରେ ମୂର୍ତ୍ତୀଭୂତ ଶୋଷଣ ବ୍ୟବସ୍ଥାର ଉଚ୍ଛେଦକୁ ବୁଝାଏ ନାହିଁ । ଏଥି ସଙ୍ଗେ ସଙ୍ଗେ କଂଗ୍ରେସର ତତ୍କାଳୀନ ନୀତି ପ୍ରଧାନତଃ ରାଷ୍ଟ୍ରାୟତ୍ତ କ୍ଷେତ୍ରର ଉନ୍ନୟନ, ରାଷ୍ଟ୍ରୀୟ ନିୟନ୍ତ୍ରଣରେ ବିବିଧ ଧରଣର ବିକାଶ, ବ୍ୟକ୍ତିଗତ କ୍ଷେତ୍ରର ନିୟନ୍ତ୍ରଣ ଆଦି ଉପରେ ବିଶେଷ ଜୋର

ଦେଉଥିଲା ଏବଂ ଅର୍ଥନୀତିର ବିଭିନ୍ନ କ୍ଷେତ୍ରରେ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀମାନଙ୍କୁ ସମର୍ଥନଦାନ ସହ ସାମନ୍ତବାଦବିରୋଧୀ ଓ ସାମ୍ରାଜ୍ୟବାଦବିରୋଧୀ ସାମାଜିକ ଅର୍ଥନୈତିକ ପରିବର୍ତ୍ତନ ସାଧନରେ ସହଯୋଗିତା କରୁଥିଲା ।

କଂଗ୍ରେସ କର୍ତ୍ତୃକ "ସମାଜବାଦୀ ଢାଞ୍ଚାର ସମାଜ" ଗଠନ ପ୍ରସ୍ତାବ ଗ୍ରହଣ ପରେ ଆଭ୍ୟନ୍ତରୀଣ ନୀତି କ୍ଷେତ୍ରରେ ନିଷ୍ପନ୍ନ ମୌଳିକ ପରିବର୍ତ୍ତନଗୁଡ଼ିକ ମଧ୍ୟରେ ଦେଶର ପ୍ରଶାସନିକ ଓ ଆଞ୍ଚଳିକ ଭୂଖଣ୍ଡର ପୁନର୍ଗଠନ ଥିଲା ବିଶେଷ ଉଲ୍ଲେଖଯୋଗ୍ୟ । ଉପମହାଦେଶର ବିଭିନ୍ନ ଭାଷାଭାଷୀମାନଙ୍କ ମଧ୍ୟରେ ପାର୍ଥକ୍ୟରୁ ସମ୍ଭୂତ ଉତ୍ତେଜନାରାଜିର ହ୍ରାସ ପାଇଁ ତାହା ଅପରିହାର୍ଯ୍ୟ ହୋଇ ଉଠିଥିଲା ।

## ୧୯୫୬ ଖ୍ରୀଷ୍ଟାବ୍ଦର ରାଜ୍ୟ ପୁନର୍ଗଠନ

ଭାରତର ସଂବିଧାନ ଅନୁଯାୟୀ "କ", "ଖ" ଓ "ଗ"—ଏହି ତିନୋଟି ବୃହତ୍ ବିଭାଗର ଅନ୍ତର୍ଭୁକ୍ତ ୨୮ଟି ରାଜ୍ୟ ଗଠିତ ହୋଇଥିଲା । ଏହି ନୂତନ ପ୍ରଶାସନିକ ଓ ରାଜନୈତିକ ବିଭାଗ ଗଠନ ଥିଲା ଦେଶୀୟ ରାଜ୍ୟଗୁଡ଼ିକର ଉଚ୍ଛେଦର ନାମାନ୍ତର । ପକ୍ଷାନ୍ତରେ ନୂତନ ରାଜ୍ୟ ସୀମା ନିର୍ଦ୍ଧାରଣ ମଧ୍ୟରେ କିନ୍ତୁ ଭାରତର ଭାଷାଗତ ବିଭାଗ ପ୍ରତିଫଳିତ ହୋଇ ନଥିଲା । ଏହିସବୁ ରାଜ୍ୟ ଜାତିଭିତ୍ତିକ ଅଞ୍ଚଳ ହିସାବରେ ମଧ୍ୟ ଗଠିତ ହୋଇ ନଥିଲା । ପ୍ରକୃତରେ ଏସବୁ ଥିଲା ବ୍ରିଟିଶ୍ ଶାସନ କାଳରେ ଗଢ଼ି ଉଠିଥିବା ପ୍ରଶାସନିକ ଓ ଆଞ୍ଚଳିକ ବିଭାଗବିଶେଷ । ଗଣ ଆନ୍ଦୋଳନ, ବିଶେଷ ଭାବେ କୃଷକ ଆନ୍ଦୋଳନ ମଧ୍ୟରେ ଜାତି ସମସ୍ୟା ସମାଧାନର ପ୍ରସଙ୍ଗଟି ବାରମ୍ବାର ପ୍ରକଟିତ ହୋଇ ଉଠିଥିଲା । ଏହି ଘଟଣାଗୁଡ଼ିକ ବିଶେଷତଃ ତେଲେଙ୍ଗାନା ଓ ଆନ୍ଧ୍ର ଏଲାକାରେ ପ୍ରାଧାନ୍ୟ ଲାଭ କରିଥିଲା । ଏହିସବୁ ଅଞ୍ଚଳରେ କେନ୍ଦ୍ରୀୟ ସରକାର ଜାତୀୟ ବୁର୍ଜୁଆ ଓ ଗଣତାନ୍ତ୍ରିକ ଜନସାଧାରଣଙ୍କ ସ୍ୱାର୍ଥର ଅନୁକୂଳରେ କେତେକ ସୁବିଧାଦାନ କରିଥିଲା ଏବଂ ଜାତିଗତ ବିବେଚନାର ଭିତ୍ତିରେ ପ୍ରଶାସନିକ ବିଭାଗ ଗଠନ କରିଥିଲା ।

ତେଲେଗୁ ଭାଷାଭାଷୀ ଜନସାଧାରଣଙ୍କର ପେଟି-ବୁର୍ଜୁଆ ସ୍ତରଗୁଡ଼ିକ ଆନ୍ଧ୍ର ରାଜ୍ୟ ଗଠନ ପଛରେ ପ୍ରଧାନ ଶକ୍ତି ଯୋଗାଇଥିଲେ । ୧୯୫୨ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସରେ ଜାତୀୟ କଂଗ୍ରେସର ପେଟି-ବୁର୍ଜୁଆ ଅଂଶର ଅନ୍ୟତମ ନେତା ପଟ୍ଟି ଶ୍ରୀରାମାଲୁ ମାନ୍ଦ୍ରାଜରୁ ସମ୍ବାଦପତ୍ର ମାଧ୍ୟମରେ ଜାତୀୟ କଂଗ୍ରେସର ନେତୃବୃନ୍ଦ ଓ ମାନ୍ଦ୍ରାଜ ସରକାର ନିକଟରେ ଏକ ବିଶେଷ ଆବେଦନ ମାଧ୍ୟମରେ ନୂତନ ଆନ୍ଧ୍ର ରାଜ୍ୟ ଗଠିତ ହେବ କି ନାହିଁ ଏ ସଂପର୍କରେ ଏକ ଆଶୁ ସିଦ୍ଧାନ୍ତ ଦାବି କରିଥିଲେ । ଅକ୍ଟୋବର ଶେଷ ଆଡ଼କୁ ଏହି ଆବେଦନର କୌଣସି ଉତ୍ତର ନମିଳିବାରୁ ସେ ଅନଶନ ଧର୍ମଘଟ ଆରମ୍ଭ କରିଥିଲେ । ଅଠାବନ ଦିନ ଅନଶନ ପରେ ୧୯୫୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ୧୫ ତାରିଖରେ ଶ୍ରୀରାମାଲୁ ମୃତ୍ୟୁବରଣ କଲେ ।

ଶ୍ରୀରାମାଲୁଙ୍କ ମୃତ୍ୟୁ ସାଥେ ସାଥେ କେନ୍ଦ୍ରୀୟ ସରକାର ଓ ମାନ୍ଦ୍ରାଜ ସରକାର ବିରୁଦ୍ଧରେ ସମଗ୍ର ଆନ୍ଧ୍ର ଅଞ୍ଚଳରେ ବ୍ୟାପକ ଗଣ ଆନ୍ଦୋଳନର ଢେଉ ଖେଳି ଯାଇଥିଲା । ଯୁଦ୍ଧ ପରେ ଏହା ଥିଲା ଭାରତର ଅଟଳତମ ଗଣ ବିକ୍ଷୋଭ । ବଡ଼ ବଡ଼ କଳକାରଖାନାରେ ଧର୍ମଘଟ ସମେତ ଆନୁଷଙ୍ଗିକ

ଘଟଣାବଳୀ ପରେ ୧୯୫୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୧୯ ତାରିଖରେ କେନ୍ଦ୍ରୀୟ ସରକାର ଏକ ପ୍ରସ୍ତାବ ମାଧ୍ୟମରେ ଆନ୍ଧ୍ର ରାଜ୍ୟ ଗଠନର ସିଦ୍ଧାନ୍ତକୁ ଅନୁମୋଦନ କରିଥିଲେ । କିନ୍ତୁ ରାଜ୍ୟଟି ଗଠିତ ହୋଇଥିଲା ଆଉରି ବର୍ଷକ ପରେ ।

ତେଲେଗୁ ଜନସାଧାରଣଙ୍କ ଆକାଙ୍‌କ୍ଷାର ପ୍ରତୀକ ଆନ୍ଧ୍ର ରାଜ୍ୟ ଗଠନ ଜାତି ସମସ୍ୟା ସମାଧାନ ଲକ୍ଷ୍ୟରେ ଏକ ସୁନିର୍ଦ୍ଦିଷ୍ଟ ପଦକ୍ଷେପ ହେଲେ ମଧ୍ୟ ଏହା ଦ୍ୱାରା ସମସ୍ୟାର ସର୍ବାଙ୍ଗୀନ ସମାଧାନ ହୋଇ ନଥିଲା । ହାୟଦରାବାଦର ତେଲେଙ୍ଗାନା ଜିଲ୍ଲାରେ ତେଲେଗୁ ଭାଷାଭାଷୀ ଜନସାଧାରଣଙ୍କର ଏକ ବଡ଼ ଅଂଶ ସେତେବେଳେ ଆନ୍ଧ୍ର ବାହାରେ ବିଚ୍ଛିନ୍ନ ଅବସ୍ଥାରେ ବାସ କରୁଥିଲେ ।

ଜାତିଗତ ସମସ୍ୟାର ସମାଧାନର ପରବର୍ତ୍ତୀ ପର୍ଯ୍ୟାୟଟି ୧୯୫୩-୧୯୫୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତର ପ୍ରଶାସନିକ ଓ ଆଞ୍ଚଳିକ ବିଭାଗଗୁଡ଼ିକ ପୁନର୍ବିବେଚନାର ଅନ୍ତର୍ଭୁକ୍ତ ଥିଲା । ୧୯୫୩ ଖ୍ରୀଷ୍ଟାବ୍ଦର ମେ ମାସରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଭାଷାଭିତ୍ତିକ ରାଜ୍ୟ ପୁନର୍ଗଠନ ପାଇଁ ଏକ ସରକାରୀ କମିସନ ଗଠନ ନିମିତ୍ତ ପ୍ରସ୍ତାବ ଗ୍ରହଣ କରିଥିଲା । ସେଇ ବର୍ଷ ଡିସେମ୍ବର ମାସରେ ଗଠିତ ରାଜ୍ୟ ପୁନର୍ଗଠନ କମିସନ ୧୯୫୫ ଖ୍ରୀଷ୍ଟାବ୍ଦରେ ତା'ର ରିପୋର୍ଟ ପ୍ରକାଶ କରିଥିଲେ । ୧୯୫୬ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୩୧ ତାରିଖ ଦିନ କମିସନର ରିପୋର୍ଟକୁ ଭିତ୍ତି କରି ଏକ ଖସଡ଼ା ଆଇନ୍ ପାର୍ଲିଆମେଣ୍ଟରେ ଅନୁମୋଦନ ଲାଭ କଲା ପରେ ସେପ୍‌ଟେମ୍ବର ମାସରେ ସଂବିଧାନର ପ୍ରୟୋଜନୀୟ ସଂଶୋଧନ କରାଯାଇଥିଲା । ୧୯୫୬ ଖ୍ରୀଷ୍ଟାବ୍ଦ ନଭେମ୍ବର ୧ ତାରିଖରେ ଭାରତର ପ୍ରଶାସନିକ ଓ ଆଞ୍ଚଳିକ ବିଭାଗଗୁଡ଼ିକରେ ସଂଶ୍ଳିଷ୍ଟ ନୂତନ ଆଇନ୍ ପ୍ରବର୍ତ୍ତିତ ହୋଇଥିଲା । ଏହା ପରେ ୧୪ଟି ରାଜ୍ୟ ଓ କେନ୍ଦ୍ରୀୟ ସରକାର ଶାସିତ ୬ଟି ୟୁନିଅନ୍ ଅଞ୍ଚଳ ଗଠିତ ହୋଇଥିଲା ।

ଏହି ଭାବେ ଭାରତର ରାଜନୈତିକ ମାନଚିତ୍ର ପୁନରଙ୍କିତ ଓ ନୂତନ ରାଜ୍ୟସମୂହ ଗଠିତ ହେଲା ପରେ କେନ୍ଦ୍ରୀୟ ସରକାର ଓ କଂଗ୍ରେସ ନେତୃବୃନ୍ଦ ଏ ସଂପର୍କରେ ଖୁବ୍ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ନୂତନ ପ୍ରଶାସନିକ ବିଭାଗ ଓ ଜାତିଭିତ୍ତିକ ରାଜ୍ୟ ଗଠନ ଫଳରେ ଆଞ୍ଚଳିକତା ଓ ବିଭିନ୍ନ ଭାଷାଭାଷୀ ଜନସାଧାରଣଙ୍କ ମଧ୍ୟରେ ମାରାତ୍ମକ ଦ୍ୱନ୍ଦ୍ୱ ଓ ସଂଘାତ ଦେଖା ଦେବାର ଅନିବାର୍ଯ୍ୟତା କଥା ଭାବି ସେମାନେ ଖୁବ୍ ଦୁଃଶ୍ଚିନ୍ତାରେ ପଡ଼ିଥିଲେ । ଏଭଳି ପରିସ୍ଥିତିରେ କେନ୍ଦ୍ରମୁଖୀ ପ୍ରବଣତାକୁ ସୁଦୃଢ଼ କରିବା ପାଇଁ କେନ୍ଦ୍ରୀୟ ସରକାର ଓ ରାଜ୍ୟ ସରକାରଗୁଡ଼ିକର ଆଲୋଚନା ସ୍ଥଳ ହିସାବରେ ଆଞ୍ଚଳିକ ପରିଷଦ ସହ ପାଞ୍ଚଟି ଅଞ୍ଚଳ ଗଠନର ସିଦ୍ଧାନ୍ତ ଗୃହୀତ ହୋଇଥିଲା । ନିଜ ନିଜ ମଧ୍ୟରେ ସମନ୍ୱୟ ଓ ପରିକଳ୍ପନାର ସମସ୍ୟା, ବିଭିନ୍ନ ରାଜ୍ୟର ଅର୍ଥନୈତିକ ଉନ୍ନୟନ କର୍ମସୂଚୀ ଏବଂ ନୂତନ ରାଜ୍ୟଗୁଡ଼ିକରେ ଜାତୀୟ ସଂଖ୍ୟାଲଘୁମାନଙ୍କର ସମସ୍ୟା ଆଦି ଆଲୋଚନା ଓ ମୀମାଂସା ଥିଲା ଆଞ୍ଚଳିକ ପରିଷଦର କାର୍ଯ୍ୟ । ତା'ଛଡ଼ା ନିଜ ନିଜ ମଧ୍ୟରେ ସୀମାବିରୋଧ, ଏକାଧିକ ରାଜ୍ୟସଂଶ୍ଳିଷ୍ଟ ଜଳବିଦ୍ୟୁତ୍ ପରିକଳ୍ପନାଗୁଡ଼ିକର ଯୌଥ ବ୍ୟବହାର, ପରିବହନ ପ୍ରଣାଳୀ ଆଦି ମଧ୍ୟ ଏହିସବୁ ପରିଷଦର କର୍ମସୂଚୀ ଭୁକ୍ତ ଥିଲା ।

୧୯୫୬ ଖ୍ରୀଷ୍ଟାବ୍ଦର ପ୍ରଶାସନିକ ଓ ଆଞ୍ଚଳିକ ବିଭାଗ ସଂସ୍କାର କିନ୍ତୁ ଭାରତର ଜାତିଗତ ସମସ୍ୟାର କୌଣସି ସ୍ଥାୟୀ ସମାଧାନ କରି ପାରି ନଥିଲା ।

ବହୁଭାଷୀ ଅଞ୍ଚଳଗୁଡ଼ିକ ବିଶେଷ ଭାବେ ଯେଉଁସବୁ ପ୍ରଶାସନିକ ବିଭାଗର ଅନ୍ତର୍ଭୁକ୍ତ ହୋଇଥିଲେ (ବମ୍ବେ, ଆସାମ, ପଞ୍ଜାବ) ସେଠାରେ ଭାଷାଭିତ୍ତିକ ନୂତନ ରାଜ୍ୟ ଗଠନର ସଂଗ୍ରାମ ଅବ୍ୟାହତ ରହିଥିଲା ।

ବମ୍ବେ ରାଜ୍ୟରେ ଗୁଜରାଟକୁ ମହାରାଷ୍ଟ୍ର ଠାରୁ ଅଲଗା କରିବାର ଆନ୍ଦୋଳନ ଆରମ୍ଭ ହୋଇ ଯାଇଥିଲା । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ଏକ ବ୍ୟାପକ ସାମ୍ମୁଖ୍ୟ ଗଠନ କରିବାରେ ସଫଳ ହୋଇଥିଲା ଏବଂ ଏହି ନୂତନ ପରିସ୍ଥିତିରେ ୧୯୫୭ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନରେ କଂଗ୍ରେସ ଅନେକ ଆସନ ହରେଇଥିଲା । ବ୍ୟାପକ ଗଣ ଆନ୍ଦୋଳନ ଫଳରେ ୧୯୬୦ ମସିହା ବସନ୍ତ କାଳରେ ମହାରାଷ୍ଟ୍ର (ରାଜଧାନୀ ବମ୍ବେ) ଓ ଗୁଜରାଟ (ରାଜଧାନୀ ଆହ୍‌ମଦାବାଦ) ଏହି ଦୁଇଟି ପୃଥକ୍ ରାଜ୍ୟ ଗଠନର ସିଦ୍ଧାନ୍ତ ଘୋଷଣା କରାଯାଇଥିଲା ।

ପଞ୍ଜାବରେ ଜାତି ସଂକ୍ରାନ୍ତ ପ୍ରଶ୍ନଟି ଦେଖା ଦେଇଥିଲା ଧର୍ମୀୟ ପ୍ରଶ୍ନ ସହିତ ପ୍ରତ୍ୟକ୍ଷ ଭାବେ ଯୁକ୍ତ ହୋଇ । "ପଞ୍ଜାବ ସୁବା" ନାମରେ ଏକ ପ୍ରଦେଶ ସୃଷ୍ଟି କରିବା ପାଇଁ ସେଠାରେ ଆନ୍ଦୋଳନ ଆରମ୍ଭ ହୋଇ ଯାଇଥିଲା (ପଞ୍ଜାବୀ ଭାଷୀ ସମସ୍ତ ଲୋକଙ୍କୁ ଏକତ୍ର କରି ଏବଂ ଶିଖ୍ ଧର୍ମାବଲମ୍ବୀମାନଙ୍କୁ ଅଭ୍ୟୁତ୍ଥାନ କରାଇବା ନିମିତ୍ତ) ।

ପଞ୍ଜାବର ଲୋକ ସଂଖ୍ୟା ଉଭୟ ପଞ୍ଜାବୀ ଏବଂ ହିନ୍ଦୀ ଭାଷୀ ଲୋକମାନଙ୍କୁ ନେଇ ଗଠିତ । ଜନସଂଖ୍ୟାର ଗଠନ ସମାନ ଭାବେ ବିଭକ୍ତ ନଥିଲା : ମାତ୍ର ଶତକଡ଼ା ୩୦ ଭାଗ ଥିଲେ ଶିଖ୍ । ଧର୍ମୀୟ କିମ୍ବା ଜାତୀୟ ବିଭାଗ ସମାନୁପାତିକ ମଧ୍ୟ ନଥିଲା, କାରଣ କେତେକ ହିନ୍ଦୁ ପଞ୍ଜାବୀ କହୁଥିଲା ବେଳେ ଆଉ କେତେକ ଶିଖ୍ ହିନ୍ଦୀ କହୁଥିଲେ ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ପଞ୍ଜାବର ସାଂସ୍କୃତିକ ଜୀବନରେ ପଞ୍ଜାବୀ ଭାଷାର ଭୂମିକା ଏବଂ ସ୍ଥାନ ସଂକ୍ରାନ୍ତ ପ୍ରଶ୍ନଟିକୁ ଅକାଳୀ ଦଳ ଉତ୍ଥାପନ କରିଥିଲେ । ତା'ପରଠୁ ଅକାଳୀ ଦଳର କର୍ମସୂଚୀ ତଥା ରାଜନୈତିକ ସଂଗ୍ରାମରେ ଦଳର ରଣନୀତିରେ ଭାଷା ସଂକ୍ରାନ୍ତ ପ୍ରଶ୍ନଟି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରି ଆସିଛି ।

ଅକାଳୀ ଦଳ ନେତାମାନଙ୍କ ଚାପରେ ପଡ଼ି ୧୯୪୯ ମସିହାରେ ସରକାର ପଞ୍ଜାବକୁ ଏକ ଦ୍ୱିଭାଷିକ ପ୍ରଦେଶ ବୋଲି ଘୋଷଣା କରିଥିଲେ : ମୁଖ୍ୟତଃ ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ପ୍ରାଥମିକ ଶିକ୍ଷା ହିନ୍ଦୀରେ ଏବଂ ପଞ୍ଜାବୀ ଭାଷାଭାଷୀ ଅଧ୍ୟୁଷିତ ଅଞ୍ଚଳରେ ଶିକ୍ଷା ପଞ୍ଜାବୀ ଭାଷା ମାଧ୍ୟମରେ । ତା ସତ୍ତ୍ୱେ, ଔପନିବେଶିକ ସମୟ ପରି ଏବେ ମଧ୍ୟ ସମ୍ବାଦପତ୍ର, ପତ୍ରିକା ଏବଂ ପୁସ୍ତକାଦି ହିନ୍ଦୀ ଏବଂ ଉର୍ଦ୍ଦୁରେ ପ୍ରକାଶ ପାଉଛି । ଇଂରେଜୀକୁ ଛାଡ଼ି ଦେଲେ ଉର୍ଦ୍ଦୁରେ ସରକାରୀ ସ୍ତରରେ ପତ୍ର ଆଦାନ ହେଉଥିଲା । ଏହି କାରଣରୁ ୧୯୫୧/୫୨ ମସିହାର ସାଧାରଣ ନିର୍ବାଚନ ବେଳେ ଅକାଳୀ ଦଳ ପ୍ରଥମ କରି ଏକ ସ୍ଲୋଗାନ ଦେଇଥିଲା ସମସ୍ତ ପଞ୍ଜାବୀ ଭାଷାଭାଷୀ ଲୋକଙ୍କୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ।

ତେବେ ଏହି ପାର୍ଟିର କୌଣସି ପ୍ରକୃତ ସାମାଜିକ କର୍ମସୂଚୀ ନଥିଲା । ଫଳରେ ଅଧିକାଂଶ ପେଟି-ବୁର୍ଜୁଆ ଏବଂ ଶ୍ରମଜୀବୀ କୃଷକ ବ୍ୟାପକ ଆକାରରେ ଜାତୀୟ କଂଗ୍ରେସକୁ ଭୋଟ ଦେଇଥିଲେ ।

୧୯୫୨ ମସିହାରେ ନିର୍ବାଚନରେ ପ୍ରାଦେଶିକ ବିଧାନ ସଭାର ୧୨୨ଟି ଆସନ ମଧ୍ୟରୁ ମାତ୍ର ୨୨ଟି ଆସନ ଲାଭ କରି ଅକାଳୀ ଦଳ ବଡ଼ ଧରଣର ଏକ ପରାଜୟ ବରଣ କରିଥିଲା । ତା'ପରେ "ପଞ୍ଜାବ ସୁବା" ସ୍ଲୋଗାନଟି ଭିନ୍ନ ଏକ ତାତ୍ପର୍ଯ୍ୟ ପ୍ରଦାନ କରିଥିଲା – ପୂର୍ବେ ଭାଷାକୁ ଭିତ୍ତି କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଜନସାଧାରଣଙ୍କ ମଧ୍ୟରେ ଆନ୍ଦୋଳନ ଚାଲୁଥିଲା ବେଳେ ୧୯୫୨ ମସିହାର ନିର୍ବାଚନ ପରେ ଅକାଳୀ ଦଳ ଶିଖ୍ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ନିଜର ସମ୍ମାନକୁ ପୁନଃପ୍ରତିଷ୍ଠା କରିବା ପାଇଁ ମୁଖ୍ୟତଃ ଶିଖ୍‌ମାନଙ୍କୁ ନେଇ ଏକ ପଞ୍ଜାବୀ ସୁବା ଗଠନ ଦାବି ପ୍ରଥମ ଥର ପାଇଁ ଉଠାଇଥିଲା ।

୧୯୫୬ ମସିହାରେ ପଞ୍ଜାବ ଏବଂ ପେପ୍‌ସୁକୁ ନେଇ ପଞ୍ଜାବ ପ୍ରଦେଶ ଗଠିତ ହେଲା ବେଳେ ଜାତୀୟ କଂଗ୍ରେସ ପଞ୍ଜାବୀ ଜନସାଧାରଣଙ୍କ ଅଭିପ୍ରାୟକୁ ଏବଂ ଜନସଂଖ୍ୟାର ବିଭିନ୍ନ ଅଂଶ ମଧ୍ୟରେ "ପଞ୍ଜାବୀ ସୁବା" ଦାବି ପ୍ରତି ଥିବା ଜନସମର୍ଥନକୁ ବିଚାର କରି ତଥାକଥିତ ଆଞ୍ଚଳିକ ସୂତ୍ରଟି ପେଶ୍ କରିଥିଲା । ଏହା ଗୃହୀତ ହୋଇ ପଞ୍ଜାବରେ କାର୍ଯ୍ୟକାରୀ ହେଲା । ପଞ୍ଜାବ ସରକାର ସହିତ ତଥାକଥିତ ଆଞ୍ଚଳିକ ପରିଷଦଟି ଯୁକ୍ତ କରି ବିଧାନ ସଭା ପ୍ରତିଷ୍ଠା କରାଗଲା : ପଞ୍ଜାବ ଆଞ୍ଚଳିକ ପରିଷଦ ଏବଂ ହରିଆନା ଆଞ୍ଚଳିକ ପରିଷଦ (ହିନ୍ଦୀ ଭାଷୀ ଅଧ୍ୟୁଷିତ ଏକ ଅଞ୍ଚଳ) । ସଂପୃକ୍ତ ଜିଲ୍ଲା ଏବଂ ମନ୍ତ୍ରୀମଣ୍ଡଳରୁ – ଶିଖ୍ ଏବଂ ହିନ୍ଦୁ ସଦସ୍ୟମାନଙ୍କୁ ଏହି ପରିଷଦର ଅନ୍ତର୍ଭୁକ୍ତ କରାଯାଇଥିଲା । ସେସବୁ ଥିଲେ ପରାମର୍ଶଦାତା ସଂସ୍ଥା । ସେଗୁଡ଼ିକ ସଂପୃକ୍ତ ଅଞ୍ଚଳର ଅର୍ଥନୈତିକ ବିକାଶ , ସରକାରୀ ଋଣ ବଣ୍ଟନର ତଦାରଖି ଏବଂ ଶିକ୍ଷା ତଥା ସଂସ୍କୃତି ସହିତ ଯୁକ୍ତ ପ୍ରଶ୍ନଗୁଡ଼ିକୁ ଦେଖା ଶୁଣା କରୁଥିଲେ ।

ପଞ୍ଜାବୀକୁ ରାଜ୍ୟର ସରକାରୀ ଭାଷାର ମର୍ଯ୍ୟାଦା ଦିଆଯାଇଥିଲା ଏବଂ ହିନ୍ଦୀ ଥିଲା ଦ୍ୱିତୀୟ ସରକାରୀ ଭାଷା । ସରକାରୀ କାର୍ଯ୍ୟକର୍ମରେ ଜିଲ୍ଲା ପର୍ଯ୍ୟାୟରେ ପଞ୍ଜାବର ଜିଲ୍ଲାମାନଙ୍କରେ ପଞ୍ଜାବୀ ଓ ହରିଆନାରେ ହିନ୍ଦୀ ବ୍ୟବହୃତ ହେଉଥିଲା ।

ଏହି ଆଞ୍ଚଳିକ ସୂତ୍ର ଗ୍ରହଣ ଦ୍ୱାରା ପଞ୍ଜାବର ଜାତିଗତ ସମସ୍ୟା ସମାଧାନର ଏକ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ଘଟିଥିଲା ।

ଏହି ସୂତ୍ରର ଭିତ୍ତିରେ ସ୍ୱାଧୀନତାର ପରବର୍ତ୍ତୀ କାଳରେ ପ୍ରଥମ କରି କଂଗ୍ରେସ ଓ ଅକାଳୀ ଦଳ ମଧ୍ୟରେ ଏକ ଚୁକ୍ତି ସଂପାଦନ ସମ୍ଭବ ହୋଇଥିଲା । ୧୯୫୭ ଖ୍ରୀଷ୍ଟାବ୍ଦର ଦ୍ୱିତୀୟ ସାଧାରଣ ନିର୍ବାଚନରେ ପଞ୍ଜାବର ଏହି ଦୁଇଟି ପ୍ରଧାନ ଦଳ ଐକ୍ୟବଦ୍ଧ ଭାବେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ।

କିନ୍ତୁ ପଚାଶ ଦଶକର ଶେଷ ଆଡ଼କୁ ଧର୍ମୀୟ ଉଗ୍ରପନ୍ଥୀମାନେ ଅକାଳୀ ଦଳ ମଧ୍ୟରେ ପ୍ରଭାବଶାଳୀ ହୋଇ ଉଠିଥିଲେ ଏବଂ ଧର୍ମୀୟ ଭିତ୍ତିରେ ପଞ୍ଜାବକୁ ଭାଗଭାଗ କରିବାର ଦାବି ଜଣାଇଥିଲେ । ଦୀର୍ଘ ସଂଗ୍ରାମ ପରେ ୧୯୬୪ ଖ୍ରୀଷ୍ଟାବ୍ଦରେ ପଞ୍ଜାବ ଦୁଇ ଭାଗ ହୋଇଥିଲା ଏବଂ ହିନ୍ଦୀ ଭାଷୀ ଅଧ୍ୟୁଷିତ ହରିଆନା ଏକ ପୃଥକ୍ ରାଜ୍ୟର ମର୍ଯ୍ୟାଦା ଲାଭ କଲା । ଏହା ଛଡ଼ା ପଞ୍ଜାବର ଏକ ଅଞ୍ଚଳକୁ ନେଇ ହିମାଚଳ ପ୍ରଦେଶ ଗଠିତ ହୋଇଥିଲା ।

ଉତ୍ତର-ପୂର୍ବ ଭାରତର ଆସାମ ରାଜ୍ୟରେ ମଧ୍ୟ ଜାତୀୟ ସ୍ୱାୟତ୍ତଶାସନର ସମସ୍ୟା ଯଥେଷ୍ଟ ତୀବ୍ର ହୋଇ ଉଠିଥିଲା । ସେଠାରେ ନାଗା , ମିଜୋ , ଲୁସାଇ ପ୍ରଭୃତି ଉପଜାତିଗୁଡ଼ିକର ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ପଚାଶ ଦଶକର ପ୍ରାରମ୍ଭରେ ଯଥେଷ୍ଟ ବିସ୍ତାର ଲାଭ କରିଥିଲା । ନାଗାମାନେ

ସରକାରୀ ସୈନ୍ୟ ଓ ପୁଲିସ୍ ବାହିନୀ ସହିତ ରୀତିମତ ଗରିଲା ଯୁଦ୍ଧ ଚଳେଇଥିଲେ । ଶେଷକୁ ୧୯୬୦ ମସିହାର ପ୍ରାରମ୍ଭରେ ନାଗାଲାଣ୍ଡ ରାଜ୍ୟ ପ୍ରତିଷ୍ଠିତ ହେଲା ଏବଂ ଫଳରେ ଆସାମର ଅନ୍ୟାନ୍ୟ ଉପଜାତି ଅଞ୍ଚଳଗୁଡ଼ିକରେ ସ୍ୱାୟତ୍ତଶାସନ ଲାଭ ପାଇଁ ଆନ୍ଦୋଳନ ବିସ୍ତାର ଲାଭ କରିଥିଲା ।

ଜାତିଭିତ୍ତିକ ନୂତନ ରାଜ୍ୟ ଗଠନର ଆନ୍ଦୋଳନ ବ୍ୟତୀତ ସରକାରୀ ଭାଷା ପ୍ରସଙ୍ଗଟି ଭାରତରେ ଜାତିଗତ ସମସ୍ୟା ସଂକ୍ରାନ୍ତ ସଂଗ୍ରାମର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହୋଇ ଉଠିଥିଲା । ୧୯୪୯ ଖ୍ରୀଷ୍ଟାବ୍ଦରେ ସଂବିଧାନସଭା ଦେବନାଗରୀ ଅକ୍ଷରରେ ଲେଖା ହିନ୍ଦୀକୁ ଭାରତର ସରକାରୀ ଭାଷା ଏବଂ ଇଂରେଜୀକୁ ଆଗାମୀ ୧୫ ବର୍ଷ ପର୍ଯ୍ୟନ୍ତ ଦ୍ୱିତୀୟ ସରକାରୀ ଭାଷା ରୂପେ ସ୍ୱୀକୃତି ଦେଇଥିଲା ।

ଭାରତର ରାଷ୍ଟ୍ରପତି ୧୯୫୫ ମସିହା ଜୁନ୍ ମାସରେ ବି.ଜି.ଖେରଙ୍କ ନେତୃତ୍ୱରେ ସରକାରୀ ଭାଷା କମିସନ ଗଠନ କରିଥିଲେ । କମିସନକୁ ଭାରତୀୟ ପ୍ରଜାତନ୍ତ୍ରରେ ସରକାରୀ କାର୍ଯ୍ୟରେ ହିନ୍ଦୀର ବ୍ୟାପକତର ବ୍ୟବହାର ସଂପର୍କରେ ରାଷ୍ଟ୍ରପତିଙ୍କ ନିକଟରେ ଏକ ସୁପାରିସ ପେଶ୍ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି ସୁପାରିସ ଦାଖଲ କଲା ସମୟରେ କମିସନ ଭାରତର ଅର୍ଥନୈତିକ, ସାଂସ୍କୃତିକ ଓ ବୈଜ୍ଞାନିକ ବିକାଶ ସମେତ ଅଣହିନ୍ଦୀ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଜନସାଧାରଣଙ୍କ ସ୍ୱାର୍ଥକୁ ବିବେଚନା କରିଥିଲେ । ବର୍ଷାଧିକ କାଳ କମିସନ ଏ ସଂପର୍କରେ ଅନୁସଂଧାନ ଚଳାଇଥିଲେ । ୧୯୫୬ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ କମିସନ ରାଷ୍ଟ୍ରପତିଙ୍କ ପାଖରେ ତାଙ୍କର ରିପୋର୍ଟ ପେଶ୍ କରିଥିଲେ ଏବଂ ତା ପରବର୍ଷ ଅଗଷ୍ଟ ମାସରେ ସେ ତାକୁ ପାର୍ଲିଆମେଣ୍ଟରେ ଉପସ୍ଥାପିତ କଲେ । ସଂବିଧାନରେ ବିଧିବଦ୍ଧ ଭାଷା ସଂକ୍ରାନ୍ତ ନୀତିଟିକୁ କମିସନ ସମର୍ଥନ କରିବା ସଙ୍ଗେ ସଙ୍ଗେ ଇଂରେଜୀକୁ ଦେଶର ସମସ୍ତ ଜନସାଧାରଣଙ୍କର ଶିକ୍ଷାର ମାଧ୍ୟମ ହିସାବରେ ଅନୁପଯୁକ୍ତ ବୋଲି ଘୋଷଣା କରିଥିଲେ । ଏଥିରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା କର୍ମସୂଚୀର ସାଫଲ୍ୟ ନିମିତ୍ତ ଏକକ ଭାବେ ସ୍ଥାନୀୟ ଭାରତୀୟ ଭାଷାର ବ୍ୟବହାର ଉପରେ ଜୋର ଦିଆଯାଇଥିଲା । ଅଧିକାଂଶ ରାଜ୍ୟର ସଂଖ୍ୟାଗୁରୁ ଜନସାଧାରଣଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନର ମାଧ୍ୟମ ହିସାବରେ ସରକାରୀ ଭାଷା ରୂପେ ହିନ୍ଦୀର ସମ୍ଭାବନାକୁ କମିସନ ମଧ୍ୟ ସ୍ୱୀକାର କରିଥିଲେ ।

କମିସନର ଏହି ରିପୋର୍ଟ ପ୍ରକାଶ ପାଇଲେ ବି ଭାଷା ସମସ୍ୟା ନେଇ ମତ ପାର୍ଥକ୍ୟର ଅବସାନ ଘଟିଲା ନାହିଁ । ତା'ଛଡ଼ା ୧୯୫୬ ଖ୍ରୀଷ୍ଟାବ୍ଦରେ ଭାଷାଭିତ୍ତିକ ପ୍ରଶାସନିକ ଓ ଆଞ୍ଚଳିକ ବିଭାଗଗୁଡ଼ିକ ପୁନର୍ଗଠନ କଲା ବେଳେ ସରକାରୀ ଭାଷାର ପ୍ରଶ୍ନଟି ଆଉରି ଅଧିକ ବିତର୍କପୂର୍ଣ୍ଣ ହୋଇ ଉଠିଥିଲା । ଅନେକ ନେତା, ବିଶେଷତଃ, ତାମିଲନାଡୁ ଓ ବଂଗଳାର ବହୁ ଜନ ନେତା ଓ ପ୍ରଖ୍ୟାତ ରାଜନୀତିବିଦ୍ କମିସନର ରିପୋର୍ଟ ବିରୁଦ୍ଧରେ ପ୍ରତିବାଦ ଜଣାଇଥିଲେ ।

୧୯୫୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ସ୍ୱରାଷ୍ଟ୍ର ମନ୍ତ୍ରୀ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ନେତୃତ୍ୱରେ ସରକାରୀ ଭାଷା ପ୍ରଶ୍ନଟି ପୁନର୍ବିବେଚନା ପାଇଁ ଏକ ପାର୍ଲିଆମେଣ୍ଟାରୀ କମିଟି ଗଠିତ ହେଲା । ସରକାରୀ ଭାଷା ସଂକ୍ରାନ୍ତ କମିସନର ରିପୋର୍ଟ ସଂପର୍କରେ କମିଟିକୁ ତା'ର ମତାମତ ରାଷ୍ଟ୍ରପତିଙ୍କ ନିକଟରେ ପେଶ୍ କରିବାକୁ କୁହାଗଲା । କମିଟି ୧୯୫୯ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ତାଙ୍କ ରିପୋର୍ଟଟିକୁ ରାଷ୍ଟ୍ରପତିଙ୍କ ନିକଟରେ ପେଶ୍ କରିଥିଲେ । କମିଟିର ସୁପାରିସରେ କୁହାଯାଇଥିଲା, ୧୯୬୫ ଖ୍ରୀଷ୍ଟାବ୍ଦ ପରେ ହିନ୍ଦୀ ସରକାରୀ ଭାଷା ହେଲେ ଇଂରେଜୀକୁ ପାର୍ଲିଆମେଣ୍ଟର ଅନୁମୋଦନ କ୍ରମେ ଦ୍ୱିତୀୟ ସରକାରୀ ଭାଷା ରୂପେ ଯେପର୍ଯ୍ୟନ୍ତ ପ୍ରୟୋଜନ, ସେପର୍ଯ୍ୟନ୍ତ କାର୍ଯ୍ୟକର ରଖିବା ସମୀଚୀନ ହେବ ।

ପୂର୍ବବର୍ତ୍ତୀ କମିସନ ଭଳି ଏହି ନୂତନ କମିଟି ଇଂରେଜୀରୁ ହିନ୍ଦୀକୁ ଉତ୍ତରଣର ଏକ ପରିକଳ୍ପନା କେନ୍ଦ୍ରୀୟ ସରକାର ଦ୍ୱାରା ବିଶଦୀକରଣ ପାଇଁ ସୁପାରିସ କରିଥିଲେ ।

ଇଂରେଜୀ ସ୍ଥାନରେ ହିନ୍ଦୀ ପ୍ରଚଳନ ପାଇଁ ନିର୍ଦ୍ଧାରିତ ୧୫ ବର୍ଷ ସମୟ (୧୯୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ଯେ ଯଥେଷ୍ଟ ସମୟ ନୁହେଁ, ତାହା ସ୍ପଷ୍ଟ ହୋଇ ଉଠିଥିଲା । ୧୯୬୨ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟର ଏକ ଅଧିବେଶନରେ ଘୋଷଣା କରାଗଲା ଯେ, ସରକାର ଅନିର୍ଦ୍ଦିଷ୍ଟ କାଳ ପାଇଁ ଇଂରେଜୀ ସ୍ଥାନରେ ହିନ୍ଦୀକୁ ପ୍ରଚଳନ କରିବାର ବିଷୟଟିକୁ ସ୍ଥଗିତ ରଖିଲେ । ଏଥି ସଙ୍ଗେ ସଙ୍ଗେ ଏହି ସିଦ୍ଧାନ୍ତ ମଧ୍ୟ ହେଲା ଯେ, ହିନ୍ଦୀରେ ବିଶେଷ ପରିଭାଷା ପ୍ରଣୟନର ପ୍ରଚେଷ୍ଟାକୁ ଆଉରି ସଂପ୍ରସାରିତ କରାଯିବ ଏବଂ ବିଶ୍ୱବିଦ୍ୟାଳୟଗୁଡ଼ିକ ହିନ୍ଦୀକୁ ସେମାନଙ୍କ ଶିକ୍ଷାର ମାଧ୍ୟମ ରୂପେ ବ୍ୟବହାର କରି ପାରିବେ ।

ଏହିସବୁ ସିଦ୍ଧାନ୍ତ ବୁର୍ଜୁଆ-ଜାତୀୟତାବାଦୀ ଚକ୍ର ମଧ୍ୟରେ, ବିଶେଷ ଭାବେ ଦକ୍ଷିଣ ଭାରତରେ ଉଲ୍ଲେଖଯୋଗ୍ୟ ବିରୋଧିତାର ସମ୍ମୁଖୀନ ହେଲା । ସ୍କୁଲରେ ବାଧ୍ୟତାମୂଳକ ପାଠ୍ୟ ଭାଷା ହିସାବରେ ହିନ୍ଦୀକୁ ଲଦି କରିବା ବିରୁଦ୍ଧରେ ଦେଶର ବିଭିନ୍ନ ଅଂଶରେ ବିକ୍ଷୋଭ ଓ ପ୍ରତିବାଦ ଅନୁଷ୍ଠିତ ହୋଇଥିଲା । ପରୁଶ ଦଶକ ପରେ ସ୍କୁଲରେ ଶିକ୍ଷଣୀୟ ଓ ବ୍ୟବସାୟ କ୍ଷେତ୍ରରେ ବ୍ୟବହାର୍ଯ୍ୟ ଭାଷାର ପ୍ରଶ୍ନଟି ଆଭ୍ୟନ୍ତରୀଣ ନୀତିର ଏକ ବିତର୍କମୂଳକ ବିଷୟରେ ପରିଣତ ହୋଇଥିଲା ।

ଜାତିଗତ ସମସ୍ୟା ସମାଧାନର ସଂଗ୍ରାମ କ୍ରମଶଃ ବ୍ୟାପକ ଗଣତାନ୍ତ୍ରିକ ଆନ୍ଦୋଳନ ମଧ୍ୟରେ ମିଶି ଯାଇଥିଲା ।

## କୃଷି ସଂସ୍କାର କାର୍ଯ୍ୟକର ହେଲା ବେଳେ କୃଷକ ଆନ୍ଦୋଳନ

ସାଧାରଣ ନିର୍ବାଚନ ପରେ ଦେଶର ରାଜନୈତିକ ବାତାବରଣ କୃଷକ ଆନ୍ଦୋଳନ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ଲଢ଼େଇ ଆରମ୍ଭ ପକ୍ଷରେ ଅନୁକୂଳ ହୋଇ ଉଠିଥିଲା । ନିଖିଳ ଭାରତୀୟ କୃଷକ ସଭା ଓ ସଂଯୁକ୍ତ କୃଷକ ସଭା ମଧ୍ୟରେ ଆଳାପ ଆଲୋଚନା ଆରମ୍ଭ ଫଳରେ ଏହି ଦୁଇଟି ସଂଗଠନର ବହୁ ସ୍ଥାନୀୟ ଶାଖା ନିଜର ସ୍ୱାତନ୍ତ୍ର୍ୟ ବିଲୋପ କରିଥିଲେ ଏବଂ ୧୯୫୩ ଖ୍ରୀଷ୍ଟାବ୍ଦରେ ସଂଯୁକ୍ତ କୃଷକ ସଭାର ସଭାପତି (ବିପ୍ଳବୀ ଗଣତନ୍ତ୍ରବାଦୀ) ଇନ୍ଦୁଲାଲ ଯାଜ୍ଞିକ କୃଷକ ସଭାର ସଭାପତି ନିର୍ବାଚିତ ହେଲେ । ୧୯୫୩ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ କାନ୍ନାନୋରରେ (କେରଳ) କୃଷକ ସଭାର ଏକାଦଶ ଅଧିବେଶନ ସମାପ୍ତ ହେଲା ପରେ ସଂଗଠନ ତା'ର ବାର୍ଷିକ ଅଧିବେଶନର ନିୟମିତ ଅନୁଷ୍ଠାନ ଅବ୍ୟାହତ ରଖିଥିଲା । ଅଧିବେଶନରେ ସଂଗଠନର ପୁନରୁଜ୍ଜୀବନ ପାଇଁ ନିଷ୍ପନ୍ନ କାର୍ଯ୍ୟାଦି ନେଇ ଆଲୋଚନା ଚାଲିଥିଲା ଏବଂ କୃଷକ ଆନ୍ଦୋଳନର କର୍ମନୀତି ଓ କର୍ମକୌଶଳ ସଂକ୍ରାନ୍ତ ଭାବୀ କାର୍ଯ୍ୟକଳାପର ରୂପରେଖା ରଚନା କରାଗଲା । ସଂପ୍ରତି ବାସ୍ତବାୟିତ କୃଷି ସଂସ୍କାରର ବିଚାର ବିବେଚନା ଭିତ୍ତିରେ କୃଷକ ସଭା ତା'ର ନୂତନ କର୍ମସୂଚୀ ଏହି ଅଧିବେଶନର "ନୀତି ନିର୍ଦ୍ଧାରଣୀ ବିବୃତିରେ" ସୂତ୍ରବଦ୍ଧ କରିଥିଲା । କର୍ମସୂଚୀରେ ରାଜ୍ୟ ଓ ଜିଲ୍ଲା ପର୍ଯ୍ୟାୟରେ ସମସ୍ତ କୃଷକ ସଂଗଠନକୁ ବ୍ୟାପକ ଭିତ୍ତିକ ସାମନ୍ତବାଦବିରୋଧୀ ସାମ୍ମୁଖ୍ୟ ଗଠନ ପାଇଁ ଆହ୍ୱାନ ଦିଆଯାଇଥିଲା ।

କୃଷି ସଂସ୍କାରର ବାସ୍ତବାୟନ ସଙ୍ଗେ ସଙ୍ଗେ କୃଷକ ଆନ୍ଦୋଳନର ଚରିତ୍ରରେ ମଧ୍ୟ ପରିବର୍ତ୍ତନ ଦେଖା ଦେଇଥିଲା । ଜମିଦାରି ଉଚ୍ଛେଦ ଆଇନ୍‌ର ଯଥା ସମ୍ଭବ ଦ୍ରୁତ ଓ ପୂର୍ଣ୍ଣ ପ୍ରୟୋଗ, ଅନ୍ୟାନ୍ୟ ଧରଣର ବୃହତ୍ ଭୂସଂପତ୍ତିକୁ ଏହି ଆଇନ୍‌ର ଅନ୍ତର୍ଗତକରଣ ଏବଂ ବଡ଼ ବଡ଼ ଜମିଦାରିରୁ ରଇତମାନଙ୍କୁ

ଉଚ୍ଛେଦ କରିବା ବିରୁଦ୍ଧରେ ପ୍ରତିବାଦ ଆଦି ଏହି ପର୍ଯ୍ୟାୟର ଗଣ ଆନ୍ଦୋଳନ ପକ୍ଷରେ ପ୍ରଧାନ ଦାବି ହୋଇ ଉଠିଥିଲା ।

ପ୍ରଜାସ୍ଵତ୍ଵ ସଂକ୍ରାନ୍ତ ନୂତନ ଆଇନ୍‌ରେ ନିଜ ଜମି ଚାଷ ପାଇଁ ପ୍ରୟୋଜନ ଦୃଷ୍ଟିରୁ ରଇତ ଉଚ୍ଛେଦର ବ୍ୟବସ୍ଥା ଥିବାର ପରିପ୍ରେକ୍ଷିତରେ ଜମିଦାର ଓ ଧନୀ କୃଷକମାନେ ପଚାଶ ଦଶକର ଦ୍ଵିତୀୟାର୍ଦ୍ଧରେ ଏହି ସୁଯୋଗର ସର୍ବାଧିକ ସଦ୍‌ବ୍ୟବହାର କରି ବ୍ୟାପକ "ଜମି ପରିଷ୍କରଣ" ଅଭିଯାନ ଆରମ୍ଭ କରି ଦେଇଥିଲେ । ଫଳରେ, ଲକ୍ଷ ଲକ୍ଷ ରଇତ ଚାଷୀ ସେମାନଙ୍କ ବଂଶାନୁକ୍ରମିକ ପ୍ରଜାସ୍ଵତ୍ଵର ଅଧିକାର ହରେଇବାକୁ ଲାଗିଲେ । ରଇତ ଉଚ୍ଛେଦର ଢେଉକୁ ରୋଧ କରିବା ଏହି କାଳପର୍ବରେ ଦରିଦ୍ର କୃଷକମାନଙ୍କ ଆନ୍ଦୋଳନର ପ୍ରଧାନ କାର୍ଯ୍ୟ ହୋଇ ଉଠିଥିଲା ।

ପାର୍ଲିଆମେଣ୍ଟର କମ୍ୟୁନିଷ୍ଟ ଓ ଗଣତନ୍ତ୍ରବାଦୀ ସଦସ୍ୟମାନେ ଉପରୋକ୍ତ ଘଟଣା ବିରୁଦ୍ଧରେ ସଂଗଠିତ ଗଣ ଆନ୍ଦୋଳନକୁ (ସଭା, ଶୋଭାଯାତ୍ରା) ସମର୍ଥନ କରିଥିଲେ ।

ଏହି ସମୟରେ ଦେଶର ବିଭିନ୍ନ ଅଞ୍ଚଳରେ (ଉତ୍ତର ପ୍ରଦେଶ, ପଶ୍ଚିମ ବଂଗ, ପଞ୍ଜାବ, ବିହାର, ଆସାମ) ଜମିଦାର ଓ କୃଷକମାନଙ୍କ ମଧ୍ୟରେ ସଂଘର୍ଷ ଏକ ନିୟମିତ ଘଟଣାରେ ପରିଣତ ହୋଇଥିଲା । ଏହି ଗଣ ଆନ୍ଦୋଳନ ଚାପରେ ଅଧିକାଂଶ ରାଜ୍ୟ ସରକାର ୧୯୫୪ ମସିହାରେ ରଇତ ଉଚ୍ଛେଦ ନିଷିଦ୍ଧ ଘୋଷଣା କରି ଦେଇଥିଲେ ।

ଏହି ସମୟରେ ସ୍ଵଳ୍ପ ଭୂମିମାଲିକ ବା ଭୂମିହୀନ ଚାଷୀମାନଙ୍କ ଦ୍ଵାରା ସରକାରୀ ଅନାବାଦୀ ଜମି ଦଖଲ କରିବା ଆନ୍ଦୋଳନ ଅନ୍ୟତମ ସଂଗ୍ରାମର ରୂପ ଧାରଣ କରିଥିଲା (ତ୍ରିଭାଙ୍କୁର-କୋଚିନ, ମାନ୍ଦ୍ରାଜ, ଆନ୍ଧ୍ର, ଉତ୍ତର ପ୍ରଦେଶ, ପଶ୍ଚିମ ବଂଗ) ଏବଂ ଧନୀ କୃଷକମାନଙ୍କ ଦ୍ଵାରା ଜୋରଜବରଦସ୍ତ ନିଜର ଖମାରର ଆକାର ବୃଦ୍ଧି କରିବା ବିରୁଦ୍ଧରେ ଲଢ଼େଇ ଚାଲିଥିଲା ।

ଏଥି ସାଥେ ସାଥେ କୃଷକମାନେ, ବିଶେଷତଃ, ରୟତଓ୍ଵାରି ଅଞ୍ଚଳରେ ପ୍ରଜାସ୍ଵତ୍ଵର ଉନ୍ନତ ବ୍ୟବସ୍ଥା ପାଇଁ ସଂଗ୍ରାମ ଚଳେଇଥିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଏହିସବୁ ଅଞ୍ଚଳରେ ଜମିଦାରମାନଙ୍କ ଖମାରର ଆୟତନ ଉପରେ ସେତେବେଳେ କୌଣସି ବିଧି ନିଷେଧ ଆରୋପିତ ହୋଇ ନଥିଲା ।

ଗ୍ରାମୀଣ ଜନସାଧାରଣଙ୍କ ଉପରେ ପ୍ରତ୍ୟକ୍ଷ କର ବୃଦ୍ଧି ବିରୁଦ୍ଧରେ କ୍ଷୁଦ୍ର ଖମାର ମାଲିକମାନେ ଏହି ସମୟରେ ସକ୍ରିୟ ହୋଇ ଉଠିଥିଲେ ଏବଂ କୃଷକମାନଙ୍କ ପକ୍ଷରେ ସୁବିଧାଜନକ ହାରରେ ଫସଲର ମୂଲ୍ୟ ବାନ୍ଧି ଦେବା ପାଇଁ ଦାବି ଜଣାଉଥିଲେ ।

ପୂର୍ବ ପରି କୃଷକ ଏବଂ ଛୋଟ ଛୋଟ ଭୂମିମାଲିକମାନେ ମଧ୍ୟ ଅର୍ଥନୈତିକ ସଂଗ୍ରାମରେ ଯୋଗ ଦେଇଥିଲେ । କିନ୍ତୁ ଗ୍ରାମାଞ୍ଚଳରେ ଅର୍ଥନୈତିକ ଏବଂ ସାମାଜିକ ସ୍ତରବିନ୍ୟାସ ପରିପ୍ରେକ୍ଷିତରେ କୃଷି ସଂସ୍କାରର ବାସ୍ତବାୟନ ସମୟରେ ଧନୀ କୃଷକମାନେ ସଂଗ୍ରାମ ପରିତ୍ୟାଗ କରିବାକୁ ଆରମ୍ଭ କରି ଦେଲେ ।

କ୍ଷେତ ମଜୁରିଆମାନଙ୍କ ସଂଗ୍ରାମ ମଧ୍ୟ ସେତେବେଳେ ଜୋରଦାର ହୋଇ ଉଠୁଥିଲା । ୧୯୫୪ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନରେ କୃଷକ ଐକ୍ୟ ଅତୁଟ ରଖିବାର ନୀତିକୁ ଭିତ୍ତି କରି ଗୃହୀତ କୃଷି ସଂକ୍ରାନ୍ତ ପ୍ରସ୍ତାବଟିରେ ଗ୍ରାମାଞ୍ଚଳର ତତ୍କାଳୀନ ଶ୍ରେଣୀ ଶକ୍ତିଗୁଡ଼ିକର ସ୍ଥିତି ପରିବର୍ତ୍ତନର ପରିସ୍ଥିତିରେ ଏକ ଶୁଦ୍ଧ ବିଶ୍ଳେଷଣ ଉପସ୍ଥାପିତ

କରାଯାଇଥିଲା । ଏହିସବୁ ପ୍ରସ୍ତାବ କ୍ଷେତ ମଜୁରିଆମାନଙ୍କର ସ୍ୱାଧୀନ ସଂଗଠନ ତିଆରିର ପ୍ରୟୋଜନୀୟତା ଉପରେ ବିଶେଷ ଗୁରୁତ୍ୱ ଦେଇଥିଲା ।

୧୯୫୭-୧୯୫୮ ଖ୍ରୀଷ୍ଟାବ୍ଦରେ ଜମିଦାରି ଉଚ୍ଛେଦ ଆଇନ୍‌ର ପ୍ରୟୋଗ ମୋଟାମୋଟି ଭାବେ ହେବା ପରେ ଏବଂ ଜମିଦାର ରଇତ ସଂପର୍କ ନିୟନ୍ତ୍ରଣ ସଂକ୍ରାନ୍ତ ଆଇନ୍ ଗୁଳ୍କ ଓ ଗ୍ରାମାଞ୍ଚଳରେ ବିଭିନ୍ନ ଧରଣର ପୁଞ୍ଜିବାଦୀ ସମବାୟ ଗଠିତ ହେବା ଫଳରେ ଭାରତର ଗ୍ରାମ୍ୟ ସମାଜରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା । କୃଷକମାନଙ୍କର ବିଭିନ୍ନ ସ୍ତର ମଧ୍ୟରେ ସାମାଜିକ ଦ୍ୱନ୍ଦ୍ୱ ସେତେବେଳେ ବୃଦ୍ଧି ପାଇବାକୁ ଲାଗୁଥିଲା ଏବଂ ଐକ୍ୟବଦ୍ଧ କୃଷକ ସାମୁଖ୍ୟ ଭାଙ୍ଗିବାକୁ ଲାଗୁଥିଲା । ଅନେକ ରାଜ୍ୟରେ କୃଷକ ସଭାର ଅଧସ୍ତନ ସଂଗଠନଗୁଡ଼ିକର ଶ୍ରେଣୀ ବିନ୍ୟାସରେ ପରିବର୍ତ୍ତନ ଘଟୁଥିଲା : ଏସବୁ ମୂଳତଃ ଦରିଦ୍ର କୃଷକମାନଙ୍କର ଅଧିକାର ରକ୍ଷା କରିବାର ସଂଗଠନ ହୋଇ ଉଠୁଥିଲା । ବହୁ ରାଜ୍ୟରେ ଧନୀ କୃଷକମାନେ କୃଷକସଭା ପରିତ୍ୟାଗ କରିବା ଫଳରେ ସଂଗଠନସବୁ ଯଥେଷ୍ଟ ଦୁର୍ବଳ ହୋଇ ପଡ଼ିଥିଲେ ଏବଂ ଏସବୁର ସଦସ୍ୟ ସଂଖ୍ୟା (୧୯୫୫ ଖ୍ରୀଷ୍ଟାବ୍ଦରେ ୧୦ ଲକ୍ଷାଧିକ ଥିଲା) ମଧ୍ୟ ହ୍ରାସ ପାଇଥିଲା ।

ଜନସାଧାରଣଙ୍କ ମଧ୍ୟରେ ନିଜର ପ୍ରଭାବ ବୃଦ୍ଧି କରିବା ପାଇଁ କଂଗ୍ରେସ ନେତୃବୃନ୍ଦ ପ୍ରାଦେଶିକ ଏବଂ ଜିଲ୍ଲା ପର୍ଯ୍ୟାୟରେ କଂଗ୍ରେସ କମିଟିଗୁଡ଼ିକରେ ୧୯୫୮ ଖ୍ରୀଷ୍ଟାବ୍ଦରେ "ମଣ୍ଡଳ ସମିତି" ଓ "କୃଷକ ବିଭାଗ" ଗଠନର ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

କୃଷକ ଆନ୍ଦୋଳନର ଏହି ପ୍ରବଣତା ରୋଧ ପାଇଁ ବିପ୍ଳବୀ-ଗଣତନ୍ତ୍ରବାଦୀମାନେ ଏବଂ ବିଶେଷ ଭାବେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଓ ନିଖିଳ ଭାରତୀୟ କୃଷକ ସଭା ଗ୍ରାମାଞ୍ଚଳରେ ବ୍ୟାପକ ପ୍ରଚାରାଭିଯାନ ଚଳାଇଥିଲେ । କିନ୍ତୁ କମ୍ୟୁନିଷ୍ଟମାନଙ୍କର ଏହି ପ୍ରଚେଷ୍ଟା ସତ୍ତ୍ୱେ କୃଷକ ସମିତିଗୁଡ଼ିକ ପକ୍ଷରେ ସେମାନଙ୍କ କ୍ରିୟାକଳାପ ବୃଦ୍ଧି କରିବା ସମ୍ଭବ ହୋଇ ନଥିଲା । କୃଷକ ସଭାର ସଦସ୍ୟ ସଂଖ୍ୟା ୧୦ ଲକ୍ଷ ୮୭ ହଜାରରୁ (୧୯୫୫ ଖ୍ରୀଷ୍ଟାବ୍ଦର) ହ୍ରାସ ପାଇ ୧୯୫୯-୧୯୬୦ ଖ୍ରୀଷ୍ଟାବ୍ଦ ବେଳକୁ ୫ ଲକ୍ଷ ୭୨ ହଜାରରେ ପହଞ୍ଚିଥିଲା ।

୧୯୫୫-୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କେତେକ ରାଜ୍ୟରେ, ବିଶେଷତଃ, ଆନ୍ଧ୍ର ଓ ପଶ୍ଚିମ ବଂଗରେ ବିଶେଷ କେତେକ ଅଞ୍ଚଳରେ କୃଷକ ସଭାର ପ୍ରଭାବ ଯଥେଷ୍ଟ ହ୍ରାସ ପାଇଥିଲା । ଅଥଚ, ସେପର୍ଯ୍ୟନ୍ତ ସେସବୁ ଅଞ୍ଚଳ ଥିଲା ଆନ୍ଦୋଳନର ଦୁର୍ଗ ସ୍ୱରୂପ । ୧୯୫୮ ଖ୍ରୀଷ୍ଟାବ୍ଦର ବସନ୍ତ କାଳରେ ଆହୂତ ଭାରତର କମ୍ୟୁନିଷ୍ଟ ପାର୍ଟିର ପଞ୍ଚମ ବିଶେଷ କଂଗ୍ରେସ ଏହି ସତ୍ୟକୁ ସ୍ୱୀକାର କରିଥିଲା । କୃଷକ ସଭାର ଦୃଢ଼ୀକରଣ ବୃଦ୍ଧି କ୍ଷେତ୍ରରେ ୧୯୫୮ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ଆହୂତ ଭାରତର କମ୍ୟୁନିଷ୍ଟ ପାର୍ଟିର ଜାତୀୟ ପରିଷଦରେ (ମାନ୍ଦ୍ରାଜରେ) ଗୃହୀତ କୃଷି ସଂକ୍ରାନ୍ତ ପ୍ରସ୍ତାବଟିର ଅବଦାନ ବିଶେଷ ଭାବେ ସ୍ମରଣୀୟ । ଏକ ଦିଗରେ, ସମସ୍ତ କୃଷକଙ୍କୁ ଐକ୍ୟବଦ୍ଧ କରିବା ଏବଂ, ଅନ୍ୟ ଦିଗରେ, କୃଷକମାନଙ୍କର ଧନୀ ସ୍ତରଗୁଡ଼ିକୁ ନିରପେକ୍ଷ କରିବାର ଆହ୍ୱାନ ଥିଲା ଏହି ପ୍ରସ୍ତାବର ପ୍ରଧାନ ବୈଶିଷ୍ଟ୍ୟ ।

ଏସବୁ ସତ୍ତ୍ୱେ କୃଷି ସଂସାର ପ୍ରବର୍ତ୍ତନ ଫଳରେ କୃଷକ ଆନ୍ଦୋଳନରେ, ବିଶେଷତଃ, ଏହାର ସଂଗଠିତ କର୍ମୀଦଳ ମଧ୍ୟରେ କେତେକ ଦୁର୍ବଳତାର ଅନୁପ୍ରବେଶ ଘଟିଥିଲା ଏବଂ ୧୯୫୨-୧୯୫୫ ଖ୍ରୀଷ୍ଟାବ୍ଦ ତୁଳନାରେ ଆନ୍ଦୋଳନରେ ସାଫଲ୍ୟର ମଧ୍ୟ ଊଣା ଘଟିଥିଲା । ଅବଶ୍ୟ, କୃଷି ସଂକ୍ରାନ୍ତ ପ୍ରଶ୍ନର ଭାବାଦର୍ଶଗତ ଦିଗ ଉପରେ ଏବଂ ରାଜନୈତିକ ସଂଗ୍ରାମ ତଥା ଜାତୀୟ ବୁର୍ଜୁଆମାନଙ୍କର ଉପସ୍ଥାପିତ କୃଷି ନୀତିରେ ଆନ୍ଦୋଳନଟି ଉଲ୍ଲେଖଯୋଗ୍ୟ ପ୍ରଭାବ ପକାଇଥିଲା ।

କୃଷକ ଆନ୍ଦୋଳନ ସହ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ଏବଂ ରାଜନୈତିକ ସଂଗ୍ରାମ ମଧ୍ୟ ସ୍ୱାଧୀନତା ପର ଭାରତର ଗଣ ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ରୂପ ହିସାବରେ ବିବେଚିତ । ସ୍ୱାଧୀନତା ଲାଭ ପରେ ସର୍ବହରାର ଅର୍ଥନୈତିକ ସଂଗ୍ରାମ ଯଥେଷ୍ଟ ଶକ୍ତିଶାଳୀ ହୋଇ ଉଠିଥିଲା : ତିରିଶ ଦଶକର (୧୯୩୦-୧୯୩୯) ତୁଳନାରେ ମୋଟ ହାରାହାରି ଧର୍ମଘଟର ସଂଖ୍ୟା ପଚାଶ ଦଶକରେ (୧୯୫୦-୧୯୫୯) ପାଞ୍ଚ ଗୁଣ ଏବଂ ଏଥିରେ ଅଂଶଗ୍ରହଣକାରୀ ଶ୍ରମଜୀବୀମାନଙ୍କ ସଂଖ୍ୟା ଶତକଡ଼ା ୩୦ ଭାଗ ବୃଦ୍ଧି ପାଇଥିଲା ।

ଭାରତର ଅଫିସ୍ କର୍ମଚାରୀମାନେ ମଧ୍ୟ ଧର୍ମଘଟ ଆନ୍ଦୋଳନର ସକ୍ରିୟ ଅଂଶୀଦାର ହେବାକୁ ଆରମ୍ଭ କରି ଦେଇଥିଲେ । ପଚାଶ ଦଶକର ଧର୍ମଘଟଗୁଡ଼ିକ ଦେଶବ୍ୟାପୀ ଆକାର ଧାରଣ କରିଥିଲା । ଏଥିରେ ଥିଲା : ଜାମ୍‌ସେଦପୁର ଟାଟା ଇସ୍‌ପାତ ଶ୍ରମିକମାନଙ୍କର ସାଧାରଣ ଧର୍ମଘଟ (୧୯୫୮), ଚା, କଫି ଆଦି ବଗିଚା ଶ୍ରମିକମାନଙ୍କର ସାଧାରଣ ଧର୍ମଘଟ (୧୯୫୮) ଏବଂ କଲିକତାର ଟ୍ରାମ ଶ୍ରମିକ ଧର୍ମଘଟ (୧୯୫୮) । ୧୯୫୯ ଖ୍ରୀଷ୍ଟାବ୍ଦରେ ବ୍ୟାପକ ଧର୍ମଘଟ ଫଳରେ ଝୋଟକଳଗୁଡ଼ିକ ଅଚଳ ହୋଇ ପଡ଼ିଥିଲା । ଏହି ସମୟରେ ପଶ୍ଚିମ ବଂଗର ସ୍କୁଲ ଶିକ୍ଷକମାନେ ମଧ୍ୟ ଧର୍ମଘଟ ଆରମ୍ଭ କରିଥିଲେ । ୧୯୬୦ ଖ୍ରୀଷ୍ଟାବ୍ଦରେ ସୂତାକଳ, ନାରିକେଳ ଶିଳ୍ପ କାରଖାନାରେ ଧର୍ମଘଟ ସହ ରାଷ୍ଟ୍ରୀୟ ସଂସ୍ଥାଗୁଡ଼ିକର ଅଫିସ୍ କର୍ମଚାରୀ ଓ ଶ୍ରମଜୀବୀମାନେ ପାଞ୍ଚ ଦିନ ବ୍ୟାପୀ ଧର୍ମଘଟ ପାଳନ କରିଥିଲେ ।

ଏହିସବୁ ଅର୍ଥନୈତିକ ଧର୍ମଘଟ ଛଡ଼ା ଶ୍ରମିକମାନେ ସେତେବେଳେ ରାଜନୈତିକ ଆନ୍ଦୋଳନରେ ସକ୍ରିୟତର ଭୂମିକା ପାଳନ କରିଥିଲେ : ଦୃଷ୍ଟାନ୍ତ ସ୍ୱରୂପ, ୧୯୫୯ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ସରକାରର ଖାଦ୍ୟନୀତି ବିରୁଦ୍ଧରେ କମ୍ୟୁନିଷ୍ଟ ପାର୍ଟିର ଉଦ୍ୟୋଗରେ ଅନୁଷ୍ଠିତ ବିକ୍ଷୋଭ ଓ ସଭା ସମିତି ଏବଂ ଏହି ବର୍ଷ କେରଳର ସମର୍ଥନରେ ଏହାର ପୁନରାନୁଷ୍ଠାନ ଉଲ୍ଲେଖଯୋଗ୍ୟ ।

ଧର୍ମଘଟ ଆନ୍ଦୋଳନ ବୃଦ୍ଧି ମଧ୍ୟରେ ଏହି ସମୟର ଟ୍ରେଡ୍‌ୟୁନିଅନ୍‌ର ବର୍ଦ୍ଧିତ କ୍ରିୟାକଳାପ ସହଜରେ ଲକ୍ଷଣୀୟ । ସ୍ୱାଧୀନତାର ପରବର୍ତ୍ତୀ ବାର ବର୍ଷ ମଧ୍ୟରେ ଟ୍ରେଡ୍‌ୟୁନିଅନ୍‌ର ସଦସ୍ୟ ସଂଖ୍ୟା ଦୁଇ ଗୁଣରୁ ଅଧିକ ବୃଦ୍ଧି ପାଇଥିଲା । ୧୯୫୬-୧୯୫୭ ଏବଂ ୧୯୫୮-୧୯୫୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଟ୍ରେଡ୍‌ୟୁନିଅନ୍‌ର ସଦସ୍ୟ ସଂଖ୍ୟା ଶତକଡ଼ା ୩୫ ଭାଗ ବୃଦ୍ଧି ପାଇଥିଲା । ଏହି ସମୟରେ ପ୍ରଧାନତଃ ଚାବଗିଚାର ଶ୍ରମିକ ଓ ଖେତ ମଜୁରିଆମାନେ ଆସିଯିବାରୁ ସଂଗଠିତ ଶ୍ରମିକମାନଙ୍କର ସଂଖ୍ୟା, ବିଶେଷ ଭାବେ ପରିବହନ, ଯୋଗାଯୋଗ ଓ କାରଖାନା କର୍ମୀମାନଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଥିଲା ।

୧୯୫୮-୧୯୫୯ ଖ୍ରୀଷ୍ଟାବ୍ଦରେ ସରକାରୀ ହିସାବ ଅନୁଯାୟୀ ବୃହଦାୟତନ ଶିଳ୍ପର ପ୍ରାୟ ୩୦ ଲକ୍ଷ ଶ୍ରମିକ ବା ମୋଟ ସଂଖ୍ୟାର ୪୦ ଶତାଂଶ କର୍ମୀ ଟ୍ରେଡ୍‌ୟୁନିଅନ୍‌ରେ ଯୋଗ ଦେଇଥିଲେ ।

୧୯୪୭-୧୯୪୯ ଖ୍ରୀଷ୍ଟାବ୍ଦରେ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଭାଗ ହୋଇଯିବା ଫଳରେ ଶ୍ରମିକ ଆନ୍ଦୋଳନ ମାରାତ୍ମକ ଭାବେ କ୍ଷତିଗ୍ରସ୍ତ ହୋଇଥିଲା । ପରବର୍ତ୍ତୀ ଦୁଇ ବର୍ଷ ମଧ୍ୟରେ "ହିନ୍ଦ୍ ମଜଦୁର ସଭା" ସର୍ବାଧିକ ପ୍ରଭାବଶାଳୀ ହୋଇ ଉଠିଥିଲା । ସଂସାରବାଦୀ ନୀତି ସତ୍ତ୍ୱେ ଏହି ଟ୍ରେଡ୍‌ୟୁନିଅନ୍‌କୁ ଶ୍ରମିକମାନେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ତୁଳନାରେ ଅଧିକତର

ସ୍ୱାଧୀନ ସଂଗଠନ ବୋଲି ବିଗ୍ରର କରୁଥିଲେ । ସ୍ମରଣ କରିବାର କଥା ଯେ, ଏହି ଶେଷୋକ୍ତ ଟ୍ରେଡ୍‌ୟୁନିଅନ୍ ସେତେବେଳେ ଯେକୌଣସି ଧର୍ମଘଟ ଆନ୍ଦୋଳନର ବିରୋଧୀ ଥିଲା ।

୧୯୫୧ ଖ୍ରୀଷ୍ଟାବ୍ଦ ଶେଷରେ ଆଭ୍ୟନ୍ତରୀଣ ପରିସ୍ଥିତି ଅଧିକତର ଗଣତାନ୍ତ୍ରିକ ହୋଇ ଉଠିବା ହେତୁ ଏବଂ କେତେକ ସଂଖ୍ୟକ ଟ୍ରେଡ୍‌ୟୁନିଅନ୍ ନେତାଙ୍କ ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗିର ଅବସାନ ଘଟାଇବା ଉଦ୍ଦେଶ୍ୟରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସକୁ ପୁନରୁଜ୍ଜୀବିତ କରିବାକୁ ଚେଷ୍ଟା କରାଯାଇଥିଲା । ୧୯୫୩ ଖ୍ରୀଷ୍ଟାବ୍ଦରେ ମଝାମଝି ବେଳକୁ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ତା'ର ଗଣ ସମର୍ଥନ ବୃଦ୍ଧି କରିବା ପାଇଁ ଉଦ୍ୟୋଗ ଗ୍ରହଣ କରିଥିଲା ।

୧୯୫୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତୀୟ ଟ୍ରେଡ୍‌ୟୁନିଅନ୍ ମଧ୍ୟରେ ଶକ୍ତିର ପୁନର୍ବଣ୍ଟନ ଘଟିଥିଲା ।

ଭାରତୀୟ ସମାଜବାଦୀ ଦଳର ସଂକଟ ଫଳରେ "ହିନ୍ଦ୍ ମଜଦୁର ସଭା" ତା'ର ପୂର୍ବ ସମର୍ଥନ ଅନେକ ପରିମାଣରେ ହରେଇଥିଲା । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଏବଂ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ—ଏହି ଦୁଇଟି ସଂଗଠନ ସେତେବେଳେ ସର୍ବାଧିକ ପ୍ରଭାବଶାଳୀ ହୋଇ ଉଠିଥିଲେ । ଇତିମଧ୍ୟରେ ଶେଷୋକ୍ତ ଟ୍ରେଡ୍‌ୟୁନିଅନ୍ ପୂର୍ବୋକ୍ତ ଟ୍ରେଡ୍‌ୟୁନିଅନ୍ ଓ "ହିନ୍ଦ୍ ମଜଦୁର ସଭାର" (ଏହା ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ପ୍ରଭାବ ଏବଂ ସଦସ୍ୟ ସଂଖ୍ୟା ଦୃଷ୍ଟିରୁ କମ୍ ଶକ୍ତିଶାଳୀ ଥିଲା) ତୁଳନାରେ ଅନେକ ସଦସ୍ୟ ଯୁକ୍ତ ଥିଲା ।

୧୯୫୬ ଖ୍ରୀଷ୍ଟାବ୍ଦର ମଝାମଝିରେ "ହିନ୍ଦ୍ ମଜଦୁର ସଭାର" ନେତାମାନେ ଟ୍ରେଡ୍‌ୟୁନିଅନ୍ ସଂହତି ଏବଂ ସାରା ଦେଶ ପାଇଁ ଗୋଟିଏ ମାତ୍ର ଟ୍ରେଡ୍‌ୟୁନିଅନ୍ ଗଠନର ଆହ୍ୱାନ ଦେଇଥିଲେ । ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ, ସଂଯୁକ୍ତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଏବଂ ସ୍ୱାଧୀନ ଶାଖାଗୁଡ଼ିକର ଟ୍ରେଡ୍‌ୟୁନିଅନ୍ ଫେଡେରେସନ ମଧ୍ୟ "ହିନ୍ଦ ମଜଦୁର ସଭାର" ଉଦ୍ୟୋଗକୁ ସ୍ୱାଗତ କରିଥିଲେ । ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତାମାନେ ଏ ସଂପର୍କରେ କୌଣସି ଆନୁଷ୍ଠାନିକ ଘୋଷଣା କରିବାରୁ ବିରତ ରହିଲେ ମଧ୍ୟ ସଂବାଦପତ୍ରରେ ପ୍ରଦତ୍ତ ବିଭିନ୍ନ ନେତାଙ୍କ ବିବୃତିରୁ "ହିନ୍ଦ୍ ମଜଦୁର ସଭା" ସହିତ ଆଳାପ ଆଲୋଚନା କାଳରେ ଏ ଦିଗରେ ସେମାନଙ୍କ ଆଗ୍ରହ ସ୍ପଷ୍ଟ ପ୍ରକାଶ ପାଇଥିଲା । ଏହି ନେତାମାନେ ସେତେବେଳେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ସହିତ ଯୋଗଦାନ କରିବାର ବିରୋଧୀ ଥିଲେ । ତେବେ ସେମାନେ ସ୍ୱାଧୀନ ଶାଖାଗୁଡ଼ିକର ଟ୍ରେଡ୍‌ୟୁନିଅନ୍ ଫେଡେରେସନର କେନ୍ଦ୍ରଗୁଡ଼ିକ ସହିତ ସହଯୋଗିତାର ବିରୋଧିତା କରି ନଥିଲେ ।

ଲକ୍ଷ୍ୟ କରିବାର କଥା ଯେ, ୧୯୫୪-୧୯୫୫ ଏବଂ ୧୯୫୬-୧୯୫୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ତା'ର କର୍ମକୌଶଳ କିଛି ପରିମାଣରେ ବଦଳେଇବାକୁ ବାଧ୍ୟ ହୋଇଥିଲା । ଠିକ୍ ଏହି ପର୍ଯ୍ୟାୟରେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସକ୍ରିୟ କର୍ମୀମାନେ ଆଶୁ ଅର୍ଥନୈତିକ ଦାବିକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ବେଳେ ବେଳେ ଶ୍ରମିକ ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ ।

୧୯୫୭ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ଅନୁଷ୍ଠିତ ତ୍ରିଦଳୀୟ ନିଖିଳ ଭାରତ ଶ୍ରମିକ ସମ୍ମେଳନର ୧୫ତମ ଅଧିବେଶନରେ ଗୃହୀତ ପ୍ରସ୍ତାବଟି ଶ୍ରମିକ ଶ୍ରେଣୀର ଏକ ଉଲ୍ଲେଖଯୋଗ୍ୟ ସାଫଲ୍ୟ ବୋଲି ବିବେଚିତ । ଏଥିରେ ଟ୍ରେଡ୍‌ୟୁନିଅନ୍ ପ୍ରତିନିଧିମାନେ "ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ମଜୁରି

ନୀତି ସଂପର୍କରେ” ଏକ ବିଶେଷ ପ୍ରସ୍ତାବ ଉତ୍‌ଥାପନ କରିଥିଲେ । ଏହିସବୁ ସୁପାରିସ ଥିଲା ନୂତନ ଖସଡ଼ା ପଞ୍ଚବାର୍ଷିକ ଯୋଜନାର ଅନୁରୂପ ପ୍ରସ୍ତାବ ତୁଳନାରେ ଅନେକ ବୈପ୍ଳବିକ ।

୧୯୫୭ ଖ୍ରୀଷ୍ଟାବ୍ଦରୁ ୧୫ତମ ଶ୍ରମିକ ସମ୍ମେଳନର ପ୍ରସ୍ତାବଗୁଡ଼ିକ କାର୍ଯ୍ୟକର କରିବାର ଦାବି ହିଁ ଭାରତୀୟ ଟ୍ରେଡ୍‌ୟୁନିଅନ୍‌ସମୂହର ମୁଖ୍ୟ ଦାବି ହୋଇ ଉଠିଥିଲା । ପାର୍ଲିଆମେଣ୍ଟରେ ଏବଂ ତ୍ରିପକ୍ଷୀୟ ଆପୋଷମୂଳକ ସଂସ୍ଥା ଓ ସଂଗଠନ ମଧ୍ୟରେ ଏହାକୁ ଘେନି ସଂଗ୍ରାମ ଚାଲିଥିଲା । ମଜୁରି ନୀତିର ଏହି ନୂତନ ଦାବିକୁ ସମର୍ଥନ କରି ଧର୍ମଘଟ, ବିକ୍ଷୋଭ ଓ ଅନ୍ୟାନ୍ୟ ଧରଣର ଆନ୍ଦୋଳନ ଚାଲିଥିଲା ।

୧୯୫୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଏବଂ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଦେଶର ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ଦୁଇଟି ମୁଖ୍ୟ ସଂଗଠନ ହୋଇ ଉଠିଥିଲେ ।

ଶ୍ରମିକମାନଙ୍କର ପ୍ରଧାନ ଦାବିଗୁଡ଼ିକ ସପକ୍ଷରେ ସଂଗ୍ରାମ, ଶ୍ରମଜୀବୀମାନଙ୍କ ମଧ୍ୟରେ ବ୍ୟାପକ ପ୍ରଚାରାଭିଯାନ ପରିଚାଳନା କ୍ଷେତ୍ରରେ ମୁଖ୍ୟ ଭୂମିକା ପାଳନ, ଶ୍ରମିକ ଶ୍ରେଣୀର ଐକ୍ୟ ପ୍ରତିଷ୍ଠାରେ ଅଭିନ୍ନ ପନ୍ଥାନୁସରଣ ଏବଂ ସ୍ୱାଧୀନ ଶାଖାଗୁଡ଼ିକର ଟ୍ରେଡ୍‌ୟୁନିଅନ୍ ଫେଡେରେସନ ମଧ୍ୟରେ ନିଜ କର୍ମୀମାନଙ୍କର କାର୍ଯ୍ୟକଳାପକୁ ନିରୀକ୍ଷଣ କରିବା ଥିଲା ପ୍ରଧାନତଃ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ଅବସ୍ଥାନ ମଜ୍‌ବୁତ୍ ହେବାର ଓ ବ୍ୟାପକତମ ସମର୍ଥନ ଲାଭ କରିବାର ତତ୍କାଳୀନ ଘଟଣା ।

୧୯୫୭ ଖ୍ରୀଷ୍ଟାବ୍ଦରେ ଶେଷ ଆଡ଼କୁ ଏର୍ଣ୍ଣାକୁଲମ୍‌ରେ (କେରଳ) ଅନୁଷ୍ଠିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ତା’ର ୨୫ତମ ଜୟନ୍ତୀ ଅଧିବେଶନରେ ଦେଶର ଶିଳ୍ପାୟନକୁ ସମର୍ଥନ ଜଣାଇଥିଲା ।

ଏହି ସମୟରେ ଦେଶର ପ୍ରତିକ୍ରିୟାଶୀଳ ଚକ୍ର ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ନିର୍ଦ୍ଧାରିତ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଓ ଭାରୀ ଶିଳ୍ପ ଉନ୍ନୟନ ବିରୁଦ୍ଧରେ ସମାଲୋଚନା ମୁଖର ହୋଇ ଉଠିଥିଲା । ଭାରତୀୟ ଜାତୀୟ ସାର୍ବଭୌମତ୍ୱର ଅନ୍ୟତମ ଅପରିହାର୍ଯ୍ୟ ପୂର୍ବସର୍ତ୍ତ ହିସାବରେ ଭାରୀ ଶିଳ୍ପର ଗୁରୁତ୍ୱ ପର୍ଯ୍ୟାଲୋଚନା କରି ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଉନ୍ନୟନର ଏହି ଧାରାକୁ ସମର୍ଥନ ଦେବାର (ଯେପର୍ଯ୍ୟନ୍ତ ଶ୍ରମଜୀବୀମାନଙ୍କ ସ୍ୱାର୍ଥ କ୍ଷୁଣ୍ଣ ନହେଉଛି) ଆଶ୍ୱାସ ଦେଇଥିଲା ।

ନିଜର ଅର୍ଥନୈତିକ ଅବସ୍ଥାର ଉନ୍ନୟନ ଏବଂ ୟୁନିଅନ୍‌ର ଅଧିକାର ସଂପ୍ରସାରଣ ପାଇଁ ଆବେଦନ ଜଣାଇବା ସଙ୍ଗେ ସଙ୍ଗେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ତା’ର ସଂଗ୍ରାମର ଧରଣ ରୂପେ ପାର୍ଲିଆମେଣ୍ଟ, ଆଳାପ ଆଲୋଚନା, ପରାମର୍ଶ, ସଂବାଦପତ୍ର ଓ ବିକ୍ଷୋଭର ବ୍ୟାପକତର ବ୍ୟବହାର ଏବଂ ଧର୍ମଘଟକୁ ସର୍ବଶେଷ ଆଶ୍ରୟ ହିସାବରେ ଗ୍ରହଣ କରିବାକୁ ସୁପାରିସ କରିଥିଲା ।

୧୯୫୭ ଖ୍ରୀଷ୍ଟାବ୍ଦରେ ଶ୍ରମିକ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ମଜ୍‌ବୁତ୍ ଅବସ୍ଥାନ ସହିତ କଂଗ୍ରେସ ଓ ଦକ୍ଷିଣପନ୍ଥୀ ସମାଜବାଦୀମାନଙ୍କ ଦ୍ୱାରା ପରିଚାଳିତ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର କ୍ଷୟମାନ ପ୍ରଭାବର ବୈସାଦୃଶ୍ୟ ଖୁବ୍ ସ୍ପଷ୍ଟ ଜଣା ପଡ଼ୁଥିଲା ।

ଇତିମଧ୍ୟରେ ଶ୍ରମିକ ଆନ୍ଦୋଳନରେ ଅର୍ଜିତ ସାଫଲ୍ୟ ଶିଳ୍ପପତିମାନଙ୍କ ମଧ୍ୟରେ ଭୟ ସଞ୍ଚାର କରିଥିଲା । ଦକ୍ଷିଣପନ୍ଥୀ ଶକ୍ତିମାନଙ୍କ ଚାପରେ ସରକାର ୧୯୫୮ ଖ୍ରୀଷ୍ଟାବ୍ଦରେ “ନିୟମାନୁବର୍ତ୍ତିତାର ନିର୍ଦ୍ଦେଶନାମା” ଜାରି କରି ଧର୍ମଘଟ ଅନୁଷ୍ଠାନରେ ଟ୍ରେଡ୍‌ୟୁନିଅନ୍‌ର ଅଧିକାରକୁ ସୀମିତ କରିଥିଲେ । ସରକାର ଦ୍ୱାରା ସମର୍ଥକ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସକୁ କିଛି ପରିମାଣରେ ଅଧିକ

ସୁବିଧା ପ୍ରଦାନ କରିଥିଲେ । ପରବର୍ତ୍ତୀ ତିନି ବର୍ଷ ମଧ୍ୟରେ ଏହି ଟ୍ରେଡ୍‌ୟୁନିଅନ୍‌ଟି ସରକାରୀ ଶ୍ରମବିଭାଗର ସହାୟତା ପାଇ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ, "ହିନ୍ଦ୍ ମଜ୍‌ଦୁର ସଭା" ଓ ସ୍ୱାଧୀନ ଶାଖାଗୁଡ଼ିକର ଟ୍ରେଡ୍‌ୟୁନିଅନ୍ ଫେଡେରେସନକୁ ହଟେଇ କିଛି ସୁବିଧା ଲାଭ କରିବାକୁ ସମର୍ଥ ହୋଇଥିଲା ।

ଶ୍ରମିକ ଆନ୍ଦୋଳନରେ ବାମପନ୍ଥୀମାନଙ୍କ ପ୍ରଭାବକୁ ଖର୍ବ କରିବା ଲକ୍ଷ୍ୟରେ ଜାତୀୟ କଂଗ୍ରେସ କର୍ତ୍ତୃକ ପ୍ରବର୍ତ୍ତିତ ବିଶେଷ ବ୍ୟବସ୍ଥା ମଧ୍ୟ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସକୁ ନିଜର ଅବସ୍ଥାନ ମଜ୍‌ବୁତ୍ କରିବାକୁ ସହାୟତା ଦେଇଥିଲା ।

୧୯୬୦ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ଜାତୀୟ କଂଗ୍ରେସ ଏବଂ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତୃବୃନ୍ଦ ଏକ ବିଶେଷ ଅଧିବେଶନରେ ମିଳିତ ହୋଇଥିଲେ । ଏହା ଥିଲା ପଶ୍ଚିମ ବଙ୍ଗ, ଉତ୍ତର ପ୍ରଦେଶ, ବିହାର ଓ ଅନ୍ୟାନ୍ୟ କେତେକ ରାଜ୍ୟର ଶ୍ରମ ମନ୍ତ୍ରୀମାନଙ୍କର ସହଯୋଗିତା ସହ ଗୋଟିଏ ବର୍ଷ ବ୍ୟାପୀ ଦୀର୍ଘ ପ୍ରଚେଷ୍ଟାର ଫଳଶ୍ରୁତି ।

ଏଥିରେ ଏକ ପ୍ରସ୍ତାବରେ କୁହାଯାଇଥିଲା, ଏହା ପରେ ଶାସକ ଦଳର ଶ୍ରମନୀତି ସଂକ୍ରାନ୍ତ ଯାବତୀୟ କ୍ରିୟାକଳାପ କେବଳ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ମାଧ୍ୟମରେ ନିଷ୍ପନ୍ନ ହେବ ।

ଏହି ଅଧିବେଶନର ପ୍ରତିନିଧିମାନେ ଜାତୀୟ କଂଗ୍ରେସର ସଦସ୍ୟମାନଙ୍କ ନିକଟରେ ଏଭଳିସବୁ ବ୍ୟବସ୍ଥା ଗ୍ରହଣର ସୁପାରିସ କରିଥିଲେ ଯଦ୍ୱାରା ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ସ୍ଥାନୀୟ ଶାଖାର ପରାମର୍ଶ ବିନା କୌଣସି ଟ୍ରେଡ୍‌ୟୁନିଅନ୍ ଗଠନ କରାଯିବ ନାହିଁ ଏବଂ ଜାତୀୟ କଂଗ୍ରେସ ସଦସ୍ୟମାନେ ହିଁ କେବଳ ଏହି ୟୁନିଅନ୍ ସହିତ ଯୁକ୍ତ ରହିବେ ।

୧୯୫୮ ଖ୍ରୀଷ୍ଟାବ୍ଦ ପରେ ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତାମାନେ ଐକ୍ୟବଦ୍ଧ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର ସମସ୍ତ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

୧୯୫୮ ଓ ୧୯୫୯ ଖ୍ରୀଷ୍ଟାବ୍ଦରେ ଏହି ନେତାମାନେ ଟ୍ରେଡ୍‌ୟୁନିଅନ୍‌କୁ ଭାଗଭାଗ କରିବା ପାଇଁ ଶ୍ରମିକମାନଙ୍କ ମଧ୍ୟରେ ମାରାତ୍ମକ କମ୍ୟୁନିଷ୍ଟବିରୋଧୀ ପ୍ରଚାର ଚଳେଇଥିଲେ ।

ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତାମାନଙ୍କ ଦ୍ୱାରା ଅନୁସୃତ କମ୍ୟୁନିଷ୍ଟବିରୋଧୀ ବିଭେଦ ସୃଷ୍ଟିକାରୀ କୌଶଳ ଫଳରେ ସମାଜବାଦୀମାନଙ୍କ ପ୍ରଭାବାଧୀନ ଟ୍ରେଡ୍‌ୟୁନିଅନ୍ ସଂଗଠନଗୁଡ଼ିକ ମଧ୍ୟରେ ଆଭ୍ୟନ୍ତରୀଣ ସଂକଟ ଦେଖା ଦେଇଥିଲା । ଏହା ଫଳରେ ସଂଗଠିତ ଶ୍ରମିକ ଆନ୍ଦୋଳନର ସମସ୍ୟା ତୀବ୍ର ହୋଇ ଉଠିଥିଲା । ୧୯୫୯ ଓ ୧୯୬୧ ଖ୍ରୀଷ୍ଟାବ୍ଦରେ ଯଥାକ୍ରମେ ସଂଯୁକ୍ତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଓ "ହିନ୍ଦ୍ ମଜ୍‌ଦୁର ସଭାରେ" ବିଭାଜନ ଦେଖା ଦେଇଥିଲା ।

ଦକ୍ଷିଣପନ୍ଥୀ ସୁବିଧାବାଦୀ ଟ୍ରେଡ୍‌ୟୁନିଅନ୍ ନେତାମାନଙ୍କର ବିରୋଧିତା ସତ୍ତ୍ୱେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଟ୍ରେଡ୍‌ୟୁନିଅନ୍ ଐକ୍ୟ ପାଇଁ ଦୃଢ଼ ସଂଗ୍ରାମ ଚଳେଇ ଯାଇଥିଲା ।

ଶ୍ରମିକ ଓ କୃଷକମାନଙ୍କର ଗଣ ଆନ୍ଦୋଳନ ସଂଗଠନର କ୍ରମବର୍ଦ୍ଧମାନ ସୁଯୋଗ ପ୍ରଧାନତଃ ଏହି ସମୟରେ ଭାରତର କମ୍ୟୁନିଷ୍ଟ ପାର୍ଟିର ପ୍ରଭାବ ବିସ୍ତାରରେ ସହାୟତା କରିଥିଲା । ପାର୍ଟିର ତୃତୀୟ କଂଗ୍ରେସରେ (୧୯୫୩ ଖ୍ରୀଷ୍ଟାବ୍ଦର ଡିସେମ୍ବର – ୧୯୫୪ ଖ୍ରୀଷ୍ଟାବ୍ଦ ଜାନୁଆରୀ) ବାମପନ୍ଥୀ ବିଚ୍ୟୁତିକୁ ଅତିକ୍ରମ କରିବା ଛଡ଼ା ବ୍ୟାପକ ଗଣତାନ୍ତ୍ରିକ ଐକ୍ୟ ସାମ୍ମୁଖ୍ୟ ଗଠନର ଏକ ବିଶଦ କର୍ମସୂଚୀ ରଚନା

କରିବା ସମ୍ଭବ ହୋଇଥିଲା । କିନ୍ତୁ ଏହି ସମୟରେ ଅର୍ଥନୈତିକ ଓ ରାଜନୈତିକ ସଂକଟ ବୃଦ୍ଧି ପାଉଛି ବୋଲି ଭାବି ଏବଂ ନେହରୁ ସରକାର ସ୍ଥାନରେ ଶ୍ରମିକ ଶ୍ରେଣୀର ନେତୃତ୍ୱାଧୀନ ସଂଯୁକ୍ତ ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠିତ କରିବାକୁ ଆହ୍ୱାନ ଦେଇ ପାର୍ଟି ଦେଶର ଶ୍ରେଣୀ ଶକ୍ତିଗୁଡ଼ିକର ପାରସ୍ପରିକ ସଂପର୍କକୁ ଅନୁଧାବନ କରିବାରେ ଭୁଲ କରିଥିଲା । ଏହି ପଦକ୍ଷେପ ଫଳରେ ଭାରତର କମ୍ୟୁନିଷ୍ଟ ପାର୍ଟି ପକ୍ଷରେ ସେତେବେଳେ ଜାତୀୟ କଂଗ୍ରେସର ପ୍ରଭାବାଧୀନ ଜନସାଧାରଣଙ୍କ ସହିତ ସଂଯୋଗ ପ୍ରତିଷ୍ଠା କରିବା କଠିନ ହୋଇ ଉଠିଥିଲା ।

୧୯୫୫ ଖ୍ରୀଷ୍ଟାବ୍ଦର ଜୁନ୍ ମାସରେ ଅନୁଷ୍ଠିତ ଭାରତର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନ ଏବଂ ୧୯୫୬ ଖ୍ରୀଷ୍ଟାବ୍ଦରେ ପାର୍ଟିର ୪ର୍ଥ କଂଗ୍ରେସରେ ଏହି ପଦକ୍ଷେପ ପୁନରାଲୋଚିତ ହୋଇଥିଲା । ପାର୍ଟି କଂଗ୍ରେସ ଆଶୁ ଦାବିଗୁଡ଼ିକର ଏକ କର୍ମସୂଚୀ ପ୍ରଣୟନ କରିଥିଲା ଏବଂ ଏକ ଫଳପ୍ରସୂ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ ପାଇଁ ଜନସାଧାରଣଙ୍କ ମଧ୍ୟରେ କାର୍ଯ୍ୟକଳାପ ଚଳେଇ ଯିବାକୁ ଏହାର ମୂଳ ଭିତ୍ତି ରୂପେ ଚିହ୍ନିତ କରିଥିଲା । ସଂଗ୍ରାମର ଆଶୁ ଲକ୍ଷ୍ୟ ହିସାବରେ ସରକାର ପରିବର୍ତ୍ତନର ଆହ୍ୱାନକୁ ଏହି କଂଗ୍ରେସ ପ୍ରତ୍ୟାଖ୍ୟାନ କରିଥିଲା । ଫଳରେ, କମ୍ୟୁନିଷ୍ଟମାନଙ୍କ ପକ୍ଷରେ ପୁନର୍ବାର ଜନସାଧାରଣଙ୍କର ବ୍ୟାପକତର ସମର୍ଥନ ଲାଭର ଅନୁକୂଳ ପରିସ୍ଥିତି ଦେଖା ଦେଇଥିଲା । ୧୯୫୭ ଖ୍ରୀଷ୍ଟାବ୍ଦର ଆସନ୍ନ ସାଧାରଣ ନିର୍ବାଚନ ପୂର୍ବରୁ ଏବଂ ନିର୍ବାଚନ କାଳରେ ଏଭଳି ଏକ ସାଫଲ୍ୟ ହାସଲ କରିବା ଖୁବ୍ ଜରୁରୀ ଥିଲା ।

## ଦ୍ୱିତୀୟ ସାଧାରଣ ନିର୍ବାଚନ । କେରଳରେ ପ୍ରଥମ କମ୍ୟୁନିଷ୍ଟ ସରକାର

ଦ୍ୱିତୀୟ ସାଧାରଣ ନିର୍ବାଚନର ଫଳାଫଳ (ପାର୍ଲିଆମେଣ୍ଟ ଓ ରାଜ୍ୟ ବିଧାନସଭା) ମଧ୍ୟରେ ପଞ୍ଚାଶ ଦଶକର ପ୍ରଥମାର୍ଦ୍ଧରେ ଭାରତର ସାମାଜିକ ଓ ରାଜନୈତିକ ଶକ୍ତିଗୁଡ଼ିକର ଭାରସାମ୍ୟଗତ ପରିବର୍ତ୍ତନଗୁଡ଼ିକ ସ୍ପଷ୍ଟ ହୋଇ ଉଠିଥିଲା । ମୂଳତଃ ସ୍ୱାଧୀନତାର ଅର୍ଥନୈତିକ ଭିତ୍ତି ସୃଷ୍ଟି ଏବଂ ଦେଶର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଜୀବନର ଔପନିବେଶିକ ଧରଣର ପରିବର୍ତ୍ତନ ଲକ୍ଷ୍ୟରେ ପରିଚାଳିତ ନେହରୁ ସରକାରଙ୍କ ଆଭ୍ୟନ୍ତରୀଣ ନୀତି ଇତିମଧ୍ୟରେ ଜାତୀୟ କଂଗ୍ରେସର ଜନପ୍ରିୟତାକୁ ଗଭୀରତର କରିଥିଲା । ଏହି ବର୍ଦ୍ଧିତ ଜନପ୍ରିୟତା ଏବଂ ସୁଦକ୍ଷ ନିର୍ବାଚନୀ ପ୍ରଚାର ପରିଚାଳନା ଫଳରେ ଶାସକ ଦଳ ପକ୍ଷରେ ପାର୍ଲିଆମେଣ୍ଟ ଏବଂ ରାଜ୍ୟ ବିଧାନ ସଭାଗୁଡ଼ିକରେ ନିରଙ୍କୁଶ ଓ ଆପେକ୍ଷିକ ଭୋଟାଧିକ୍ୟ (୧୯୫୨ ଖ୍ରୀଷ୍ଟାବ୍ଦରେ ୪୫ ଶତାଂଶରୁ ୧୯୫୭ ଖ୍ରୀଷ୍ଟାବ୍ଦରେ ୪୭.୮ ଶତାଂଶ) ଲାଭ ସମ୍ଭବ ହୋଇଥିଲା । ଲୋକସଭାରେ ବିପୁଳ ସଂଖ୍ୟାଗରିଷ୍ଠତା ସମେତ ଜାତୀୟ କଂଗ୍ରେସ ରାଜ୍ୟ ବିଧାନ ସଭାଗୁଡ଼ିକରେ ମଧ୍ୟ ୬୫.୧ ଶତାଂଶ ଆସନ ଦଖଲ କରିଥିଲା ।

ପ୍ରଜା-ସୋସାଲିଷ୍ଟ ପାର୍ଟି ଓ ଅନ୍ୟାନ୍ୟ ଦକ୍ଷିଣପନ୍ଥୀ-ସମାଜବାଦୀ ଦଳଗୁଡ଼ିକ ପାର୍ଲିଆମେଣ୍ଟ ନିର୍ବାଚନରେ ସାଙ୍ଘାତିକ ଭାବେ ପରାଜିତ ହେଲେ ମଧ୍ୟ ରାଜ୍ୟ ବିଧାନ ସଭାଗୁଡ଼ିକରେ କଂଗ୍ରେସ ପରେ ସେମାନେ ଅଧିକ ଆସନ ଲାଭ କରିଥିଲେ (ମୋଟ ୨୯୦୧ ଆସନ ମଧ୍ୟରୁ ଏମାନେ ୧୯୫, କଂଗ୍ରେସ ୧୮୮୯ ଏବଂ କମ୍ୟୁନିଷ୍ଟ ପାର୍ଟି ୧୬୨) । ପ୍ରଜା-ସୋସାଲିଷ୍ଟ ପାର୍ଟି ଜାତୀୟ କଂଗ୍ରେସର କୌଣସି ବିକଳ୍ପ କର୍ମସୂଚୀ ଦେଇ ପାରି ନଥିଲା । କମ୍ୟୁନିଷ୍ଟବିରୋଧୀ ପଦକ୍ଷେପ ହେତୁ ଏମାନେ ବହୁ ଭୋଟ

ହରେଇଥିଲେ । ନିର୍ବାଚନରେ ପ୍ରଜା-ସୋସାଲିଷ୍ଟ ପାର୍ଟିର ପରାଜୟ ଫଳରେ ଭାରତର ସମାଜବାଦୀ ଆନ୍ଦୋଳନରେ ମତବୈଷମ୍ୟ ଓ ପ୍ରତିଦ୍ୱନ୍ଦ୍ୱିତା ବୃଦ୍ଧି ପାଇଥିଲା ।

ଜାତୀୟ କଂଗ୍ରେସ ପ୍ରତି ବୁର୍ଜୁଆ ଏବଂ ପେଟି-ବୁର୍ଜୁଆ ଚକ୍ରର ସମର୍ଥନ ବୃଦ୍ଧି ଏବଂ ପାର୍ଟି ମଧ୍ୟରେ ସାମନ୍ତ ଭୂସ୍ୱାମୀ ଏବଂ ଜମିଦାର ଗୋଷ୍ଠୀର ପ୍ରଭାବ ହ୍ରାସ ଫଳରେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଉଭୟ ଧରଣର ବିରୋଧୀମାନେ ଅଧିକ ସଂଘବଦ୍ଧ ହୋଇ ଉଠୁଥିଲେ । ଇତିମଧ୍ୟରେ ଜନସମର୍ଥନହୀନ ହିନ୍ଦୁ ମହାସଭାର ସ୍ଥାନ ୧୯୫୧ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ନୂତନ ପାର୍ଟି, ଜନସଂଘ ଗ୍ରହଣ କରିଥିଲା । ଜନସଂଘର ରାଜନୈତିକ କର୍ମସୂଚୀର ଗଢ଼ଣ ପ୍ରଧାନତଃ ହିନ୍ଦୁ ସାଂପ୍ରଦାୟିକତା ଉପରେ ପ୍ରତିଷ୍ଠିତ ଥିଲା । ଏହି ପାର୍ଟି ପାର୍ଲିଆମେଣ୍ଟରେ ୪ଟି ଏବଂ ରାଜ୍ୟ ବିଧାନସଭାଗୁଡ଼ିକରେ ୪୬ଟି ଆସନ ଲାଭ କରିଥିଲା । କ୍ଷୁଦ୍ର ଏବଂ ମଧ୍ୟମ ଧରଣର ବ୍ୟବସାୟୀ, ଭାରତୀୟ ବୁଦ୍ଧିଜୀବୀମାନଙ୍କର ଉଗ୍ରଜାତୀୟତାବାଦୀ ଅଂଶ, ସହରର ମଧ୍ୟବିତ୍ତମାନଙ୍କର କେତେକ ସ୍ତର ଓ ସର୍ବୋପରି ଧନୀ କୃଷକମାନଙ୍କର ଏକ ଅଂଶ ଏହି ପାର୍ଟିକୁ ସମର୍ଥନ କରିଥିଲେ ।

ଅର୍ଥନୈତିକ ଏବଂ ରାଜନୈତିକ ଦିଗରୁ ଦେଶର ଅନ୍ୟତମ ଅତି ଅନଗ୍ରସର ରାଜ୍ୟ ଓଡ଼ିଶାରେ (ଏଠାରେ ସେତେବେଳେ ପୂର୍ବତନ ରାଜା ଓ ସେମାନଙ୍କ ଅନୁଗାମୀମାନେ ଯଥେଷ୍ଟ ପ୍ରଭାବଶାଳୀ ଥିଲେ) ଜାତୀୟ କଂଗ୍ରେସ ଓ ପ୍ରତିକ୍ରିୟାଶୀଳ ଗଣତନ୍ତ୍ର ପରିଷଦର ସଦସ୍ୟମାନଙ୍କୁ ନେଇ ଏକ ମିଳିତ ସରକାର ଗଠିତ ହୋଇଥିଲା ।

କିନ୍ତୁ ଏହି ସମୟରେ ବାମପନ୍ଥୀ ବିରୋଧୀମାନଙ୍କର ଶକ୍ତି ମଧ୍ୟ ବୃଦ୍ଧି ପାଇଥିଲା । ଏହା ଦ୍ୱାରା ସେତେବେଳେ ଜାତୀୟ କଂଗ୍ରେସର ନେତୃବୃନ୍ଦ ସେମାନଙ୍କର ରାଜନୈତିକ ଏକଚାଟିଆ ଅଧିକାର ପକ୍ଷରେ ଏକ ବଡ଼ ଆଶଂକାର କାରଣ ବୋଲି ବିଚାର କରୁଥିଲେ । ଭାରତର କମ୍ୟୁନିଷ୍ଟ ପାର୍ଟି କେରଳ, ପଶ୍ଚିମ ବଂଗ ଓ ଆନ୍ଧ୍ର ପ୍ରଦେଶରେ ମୁଖ୍ୟତଃ ସଫଳତା ଅର୍ଜନ କରିଥିଲା । କେରଳ ବିଧାନ ସଭାରେ ଏହା ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ କଲା ପରେ ୧୯୫୭ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ସେଠାରେ କମ୍ୟୁନିଷ୍ଟ ସରକାର ଗଠିତ ହୋଇଥିଲା । ଏହା ଥିଲା ଭାରତର କମ୍ୟୁନିଷ୍ଟ ଆନ୍ଦୋଳନ ପକ୍ଷରେ ଏକ ଐତିହାସିକ ଅଗ୍ରପଦକ୍ଷେପ ।

ସେଠାକାର କମ୍ୟୁନିଷ୍ଟ ନେତା ଇ.ଏମ୍.ଏସ୍.ନମ୍ବୁଦ୍ରିପଦଙ୍କ ନେତୃତ୍ୱରେ ଗଠିତ କେରଳ ସରକାରକୁ ଖୁବ୍ ପ୍ରତିକୂଳ ପରିସ୍ଥିତି ମଧ୍ୟରେ କାମ କରିବାକୁ ପଡ଼ିଥିଲା । ଭାରତର ରପ୍ତାନି ବାଣିଜ୍ୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକାସୀନ ଉଷ୍ଣ ମଣ୍ଡଳୀୟ ଫସଲ (ନଡ଼ିଆ, କାଜୁବାଦାମ, ଚା, ରବର, ମସଲା, ଆଦି) ଉପରେ ରାଜ୍ୟର ଅର୍ଥନୀତି ନିର୍ଭରଶୀଳ ଥିଲା । ଏଥି ସଙ୍ଗେ ସଙ୍ଗେ ରାଜ୍ୟଟିରେ ଜନସାଧାରଣଙ୍କର ପ୍ରଧାନ ଖାଦ୍ୟଶସ୍ୟ ଚାଉଳ ପାଇଁ ତାକୁ ଅନ୍ୟାନ୍ୟ ରାଜ୍ୟ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ତଦୁପରି କେରଳ ଥିଲା ଶିଳ୍ପ ଦିଗରୁ ଅନଗ୍ରସରତମ ରାଜ୍ୟଗୁଡ଼ିକ ମଧ୍ୟରୁ ଅନ୍ୟତମ । ଫଳତଃ, କେନ୍ଦ୍ରୀୟ ଓ ପ୍ରତିବେଶୀ ରାଜ୍ୟଗୁଡ଼ିକର ସରକାର ହାତରେ କେରଳର ବାମପନ୍ଥୀ ବିରୋଧୀ ସରକାରକୁ କବ୍‌ଜା କଲା ଭଳି ହତିଆରର ମଧ୍ୟ ଅଭାବ ନଥିଲା ।

ବୁର୍ଜୁଆ ସମ୍ବିଧାନର ଗଣ୍ଡି ମଧ୍ୟରେ ନମ୍ବୁଦ୍ରିପଦ ସରକାରକୁ କାର୍ଯ୍ୟ କରିବାକୁ ପଡ଼ିଥିଲା । କହିବା ବାହୁଲ୍ୟ ଯେ, ଏହି ସମ୍ବିଧାନ ବୈପ୍ଳବିକ ସାମାଜିକ-ଅର୍ଥନୈତିକ ସଂସ୍କାର ସାଧନର ସୁଯୋଗକୁ ସୀମିତ କରି ଦେଇଥିଲା । ଅର୍ଥାତ୍, ଜାତୀୟ କଂଗ୍ରେସର କର୍ମସୂଚୀରେ ଇତିମଧ୍ୟରେ ଅନ୍ତର୍ଭୁକ୍ତ

ଗଣତାନ୍ତ୍ରିକ ସଂସ୍କାରର ଗଣ୍ଡି ମଧ୍ୟରେ କେରଳ ସରକାର ତା'ର ଉଦ୍ୟୋଗକୁ ସୀମିତ ରଖିବାକୁ ବାଧ୍ୟ ହୋଇଥିଲା । ଏହା ବିଭିନ୍ନ ସହର ମଧ୍ୟରେ ପରିବହନର ଜାତୀୟକରଣ ସମେତ ରାଜ୍ୟର ପ୍ରଶାସନକୁ ପୁନର୍ଗଠିତ କରିଥିଲା ଏବଂ ପ୍ରଶାସନରେ ଦୁର୍ନୀତି ଓ ଲାଞ୍ଚଖୋରିକୁ ରୋକିବା ପାଇଁ ପ୍ରୟାସ ଚଳେଇଥିଲା । ରାଜ୍ୟର ଅର୍ଥ ବ୍ୟବସ୍ଥାକୁ ସୁସମ୍ବଦ୍ଧ କରିବା ଜରିଆରେ ପ୍ରଥମ କରି ରାଷ୍ଟ୍ରୀୟ ବଜେଟରେ ସୁଷମତା ଆସିଥିଲା ।

କିନ୍ତୁ କେରଳର ନୂତନ ସରକାରର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଉଦ୍ୟୋଗଟି ହେଲା କୃଷି ଏବଂ ଜନଶିକ୍ଷା ସଂସ୍କାର । ସରକାର ରଇତ ଚାଷୀମାନଙ୍କୁ ନିଜ ଜମିରୁ ଉଚ୍ଛେଦ ହେବାରୁ ବନ୍ଦ କରିବା ପାଇଁ ଏକ ନିର୍ଦ୍ଦେଶନାମା ଜାରି କରିବା ସଙ୍ଗେ ସଙ୍ଗେ ଜମିଦାରି ଡାଞ୍ଚାର (ସ୍ଥାନୀୟ ନାମ "ଜେନ୍‌ମି") ଭୂମିସ୍ୱତ୍ୱ ବିଲୋପର ଆଇନ୍ ପ୍ରଣୟନ କରିଥିଲା । ରାଜ୍ୟର ଅନାବାଦୀ ଜମିସବୁକୁ ଭୂମିହୀନ କୃଷକମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଥିଲା । ବଡ଼ ବଡ଼ ଜମିଦାରିର ଆୟତନ ହ୍ରାସ, ନିଜ ଜମି ଉପରେ ରଇତ ଚାଷୀମାନଙ୍କର ମାଲିକାନା ପ୍ରତିଷ୍ଠା ଓ ଖେତ ମଜୁରିଆମାନଙ୍କୁ ଜମି ଦେବା ଉଦ୍ଦେଶ୍ୟରେ ଏକ ପୂର୍ଣ୍ଣାଙ୍ଗ କୃଷି ସଂସ୍କାର ସାଧନ ପାଇଁ ଆଇନ୍‌ର ଏକ ଖସଡ଼ା ରଚନା କରି ସରକାର ବିଧାନ ସଭାରେ ଉପସ୍ଥାପିତ କରିଥିଲେ ।

ଶିକ୍ଷା କ୍ଷେତ୍ରରେ ସରକାର ସମସ୍ତ ବେସରକାରୀ ସ୍କୁଲ କଲେଜକୁ ରାଷ୍ଟ୍ରୀୟ ନିୟନ୍ତ୍ରଣକୁ ଆଣିବା ପାଇଁ ପଦକ୍ଷେପ ନେଇଥିଲା ।

କୃଷି ସଂସ୍କାର ଓ ଶିକ୍ଷା ସଂକ୍ରାନ୍ତ ବ୍ୟବସ୍ଥା ଗ୍ରହଣ ଫଳରେ ସରକାରକୁ ଦକ୍ଷିଣପନ୍ଥୀ ବିରୋଧୀମାନଙ୍କର, ବିଶେଷତଃ, କେରଳରେ ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କ୍ୟାଥଲିକ୍ ଗିର୍ଜାର ପ୍ରବଳ ବିରୋଧିତାର ମୁକାବିଲା କରିବାକୁ ପଡ଼ିଥିଲା । "ନାୟାର ସେବାସମିତି" (କେରଳରେ ନାୟାରମାନେ ସର୍ବୋଚ୍ଚ ବର୍ଣ୍ଣଗୁଡ଼ିକ ମଧ୍ୟରୁ ଅନ୍ୟତମ) ନାମକ ଉଗ୍ରଜାତୀୟତାବାଦୀ ହିନ୍ଦୁମାନେ ଏମାନଙ୍କ ସହିତ ଯୋଗ ଦେଇଥିଲେ ।

ସ୍ଥାନୀୟ କଂଗ୍ରେସର ନେତୃତ୍ୱାଧୀନ ବିରୋଧୀ ଦଳ କେବଳ ସରକାର ବିରୋଧୀ ବିକ୍ଷୋଭ ମଧ୍ୟରେ ସୀମିତ ରହି ନଥିଲା । ୧୯୫୭-୧୯୫୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏମାନେ ରାଜ୍ୟର ଦୈନନ୍ଦିନ ଜୀବନକୁ ବିପର୍ଯ୍ୟସ୍ତ କରିବା ଉଦ୍ଦେଶ୍ୟରେ ଅସଂଖ୍ୟ ଶୋଭାଯାତ୍ରା, ପ୍ରତିବାଦ, ଧର୍ମଘଟ ଆଦି ସଂଗଠନ କରିବା ସଙ୍ଗେ ସଙ୍ଗେ ଶାନ୍ତି ଭଙ୍ଗର ପରିବେଶ ସୃଷ୍ଟି କରି କେନ୍ଦ୍ରୀୟ ସରକାର ପକ୍ଷରୁ ହସ୍ତକ୍ଷେପ ପାଇଁ ସୁଯୋଗ ସୃଷ୍ଟି କରିଥିଲେ ।

୧୯୫୯ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ କଂଗ୍ରେସ ନେତୃତ୍ୱାଧୀନ ସଂଯୁକ୍ତ ବିରୋଧୀ ଦଳ ସ୍ଥାନୀୟ ଓ କେନ୍ଦ୍ରର ପ୍ରତିକ୍ରିୟାଶୀଳମାନଙ୍କର ସହଯୋଗିତା ଦ୍ୱାରା ରାଜ୍ୟରେ ଅଶାନ୍ତି ସୃଷ୍ଟି କରି ସରକାରୀ ପ୍ରଶାସନକୁ ଅଂଶତଃ ନିଷ୍କ୍ରିୟ କରି ଦେଇଥିଲେ । ସେହି ବର୍ଷ ଜୁଲାଇ ମାସରେ "ଆଇନ୍ ଶୃଙ୍ଖଳା" ପୁନଃସ୍ଥାପନର ଆଳରେ ରାଜ୍ୟ ବିଧାନସଭାକୁ ଭାଙ୍ଗି ଦେଇ, ନିର୍ବାଚିତ ସରକାରକୁ ବାତିଲ କରି ଦେଇ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରାଗଲା ।

୧୯୫୭-୧୯୫୯ ଖ୍ରୀଷ୍ଟାବ୍ଦର କେରଳର ଘଟଣାବଳୀ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନ ପାଇଁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହି ଘଟଣାବଳୀ ଦ୍ୱାରା ଶାନ୍ତିପୂର୍ଣ୍ଣ ଭାବେ କ୍ଷମତା ଦଖଲର ସମ୍ଭାବନା ସ୍ପଷ୍ଟ ହୋଇ ଉଠିଥିଲା ଏବଂ ୧୯୫୮ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଅମୃତସରରେ ଅନୁଷ୍ଠିତ ଭାରତର କମ୍ୟୁନିଷ୍ଟ ପାର୍ଟିର ପଞ୍ଚମ

ବିଶେଷ କଂଗ୍ରେସର ଏହା ଥିଲ ମୂଳ ଆଲୋଚ୍ୟ ବିଷୟ । ପାର୍ଟି କଂଗ୍ରେସ ମୁଖ୍ୟତଃ ସାଂଗଠନିକ ପ୍ରଶ୍ନାବଳୀ, ଗଣ ପାର୍ଟି ହିସାବରେ ଆତ୍ମପ୍ରତିଷ୍ଠାର ଏବଂ ଟ୍ରେଡ୍‌ୟୁନିଅନ୍ ଓ କୃଷକ ଆନ୍ଦୋଳନରେ ନିଜର ନେତୃତ୍ୱକୁ ମଜବୁତ୍ କରିବା ନିମିତ୍ତ ପାର୍ଟିର କାର୍ଯ୍ୟକଳାପର ପଥ ଓ ପଦ୍ଧତି ବ୍ୟାଖ୍ୟା କରିବାକୁ ଉଦ୍ୟମ କରିଥିଲ । ଏହି ଅଧିବେଶନରେ ଉକ୍ତ କଂଗ୍ରେସର ଠିକ୍ ପୂର୍ବବର୍ତ୍ତୀ ସମୟର ପାର୍ଟି କାର୍ଯ୍ୟକଳାପର ପୁଙ୍ଖାନୁପୁଙ୍ଖ ଆଲୋଚନା ମଧ୍ୟ ହୋଇଥିଲ । କଂଗ୍ରେସ ପାର୍ଟିର କେନ୍ଦ୍ରୀୟ ସଂଗଠନ ଏବଂ ଅଧସ୍ତନ ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପର ସମାଲୋଚନାମୂଳକ ମୂଲ୍ୟାୟନ କରିଥିଲ । ଏଥିରେ ପାର୍ଟିର ନୂତନ ସମ୍ବିଧାନ ଓ ସଂଗଠନ ସଂକ୍ରାନ୍ତ ଏକ ମୂଳ ପ୍ରସ୍ତାବ ଗୃହୀତ ହୋଇଥିଲ ।

ସୋଭିଏତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟିର ୨୦ତମ କଂଗ୍ରେସ ଏବଂ ସମାଜବାଦୀ ଦେଶସମୂହର କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟି ପ୍ରତିନିଧିମାନଙ୍କର ମସ୍କୋ ଅଧିବେଶନର ପ୍ରସ୍ତାବସମୂହ ଭାରତର କମ୍ୟୁନିଷ୍ଟ ପାର୍ଟିର ୫ମ କଂଗ୍ରେସରେ ଗୃହୀତ ପ୍ରସ୍ତାବଗୁଡ଼ିକ ଉପରେ ଦାଗ ସୃଷ୍ଟି କରିଥିଲ । ଏହି କଂଗ୍ରେସରେ ବିପ୍ଳବର ଶାନ୍ତିପୂର୍ଣ୍ଣ ବିକାଶର ପଥ ଗୃହୀତ ହୋଇଥିଲ । ଭାରତର କମ୍ୟୁନିଷ୍ଟ ପାର୍ଟି ଏହା ପରେ ଏକ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ ଦିଗରେ ଚେଷ୍ଟା କରି ଯିବାକୁ ପରିକଳ୍ପନା କରିଥିଲ । କିନ୍ତୁ ଅବିଳମ୍ବେ ସଂଶୋଧନବାଦୀ ଏବଂ ସଂକୀର୍ଣ୍ଣତାବାଦୀ ବିଚ୍ୟୁତି ପାର୍ଟିର ସଂଗଠନରେ ଦେଖା ଦେଇଥିଲ ଏବଂ ୧୯୬୧ରେ ଅନୁଷ୍ଠିତ ପାର୍ଟି କଂଗ୍ରେସରେ ଏହାକୁ ଦର୍ଶାଯାଇଥିଲ ।

## ଦ୍ୱିତୀୟ ସାଧାରଣ ନିର୍ବାଚନ ପରବର୍ତ୍ତୀ ଭାରତର ରାଜନୈତିକ ଘଟଣାବଳୀ

ଦ୍ୱିତୀୟ ସାଧାରଣ ନିର୍ବାଚନରେ ବାମପନ୍ଥୀମାନଙ୍କ ଦ୍ୱାରା ଅର୍ଜିତ ସାଫଲ୍ୟ ଏବଂ କେରଳରେ କମ୍ୟୁନିଷ୍ଟ ସରକାର ଗଠନ ଓ ଏହାର କ୍ରିୟାକଳାପ ଦେଶରେ ସାମାଜିକ ଓ ରାଜନୈତିକ ଶକ୍ତିଗୁଡ଼ିକର ଭାରସାମ୍ୟ ବଦଳେଇ ଦେଇଥିଲ । ଶାସକ ଦଳର ଦକ୍ଷିଣପନ୍ଥୀମାନଙ୍କର ଅଧିକ ରକ୍ଷଣଶୀଳ କେତେକ ନେତାମାନଙ୍କ ଦ୍ୱାରା ଦଳତ୍ୟାଗ (ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ଏନ୍.ଜି.ରଙ୍ଗା ପ୍ରମୁଖ) ଏବଂ ୧୯୫୯ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ପ୍ରତିକ୍ରିୟାଶୀଳ "ସ୍ୱତନ୍ତ୍ର" ଦଳ ନାମରେ ଏକ ନୂତନ ଦକ୍ଷିଣପନ୍ଥୀ ଦଳ ଗଠନ ଥିଲ ଏହାର ଆଶୁ ଫଳଶ୍ରୁତି । ରାଜଗୋପାଳାଚାରୀ, ରଙ୍ଗା ଏବଂ ପୂର୍ବତନ ଦକ୍ଷିଣପନ୍ଥୀ ସମାଜବାଦୀ ନେତା ମାସାନି ଏହି ଦଳର ନେତୃତ୍ୱ ନେଇଥିଲେ । ପ୍ରାରମ୍ଭରୁ ଏହି ଦଳ ନେହରୁ ସରକାରର କୃଷି ସଂସ୍କାର, ରାଷ୍ଟ୍ରାୟତ୍ତ କ୍ଷେତ୍ରର ସଂପ୍ରସାରଣ ପ୍ରଭୃତି ଗଣତାନ୍ତ୍ରିକ କାର୍ଯ୍ୟକଳାପ ଉପରେ ଖୋଲଖୋଲି ଆକ୍ରମଣ ଚଳାଇଥିଲ । ଭାରତର ଅର୍ଥନୈତିକ ଜୀବନର ଗଠନରେ ଯୋଜନା ନୀତି ପ୍ରବର୍ତ୍ତନକୁ ଏହା କଠୋର ଭାବେ ସମାଲୋଚନା କରୁଥିଲ ଏବଂ ବ୍ୟକ୍ତିଗତ ମାଲିକାନା ଓ "ଅବାଧ ଉଦ୍ୟୋଗର" ଉଗ୍ର ସମର୍ଥକ ଥିଲ । ବୈଦେଶିକ ନୀତି ସଂପର୍କରେ ଏହା ଥିଲ ଇତିବାଚକ ନିରପେକ୍ଷତା, ଭାରତର ପାଶ୍ଚାତ୍ୟପନ୍ଥୀ ନୀତିର ଅନୁଗାମୀ । ବୃହତ୍ ବୁର୍ଜୁଆ, ଜମିଦାର ଓ ପୁରାତନ ରାଜାମାନଙ୍କର ରାଜନୈତିକ ସଂଗଠନ ହିସାବରେ ଏହି ପାର୍ଟି ଅବିଳମ୍ବେ ଭାରତର ଜାତୀୟ ପ୍ରତିକ୍ରିୟାଶୀଳ ଶକ୍ତିର ମିଳନ କେନ୍ଦ୍ରରେ ପରିଣତ ହୋଇଥିଲ ।

ଦକ୍ଷିଣପନ୍ଥୀ ବିରୋଧୀମାନଙ୍କର ଏହି ଶକ୍ତିଶାଳୀ ସାମ୍ମୁଖ୍ୟର ଉପଶାଖା ହିସାବରେ ହିନ୍ଦୁ ଓ ମୁସଲିମ୍ ସାଂପ୍ରଦାୟିକ ଦଳଗୁଡ଼ିକର ମଧ୍ୟ ପୁନରୁଜ୍ଜୀବନ ଘଟିଥିଲ ।

ପଚାଶ ଦଶକର ଶେଷ ଆଡ଼କୁ ଗୋଇଓୟାଲକରଙ୍କ ନେତୃତ୍ୱାଧୀନ ହିନ୍ଦୁ ସାଂପ୍ରଦାୟିକମାନଙ୍କର ଅର୍ଦ୍ଧସାମରିକ ସଂଗଠନ "ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର" ସହାୟତାରେ ଜନସଂଘ ଧର୍ମୀୟ ଉନ୍ମାଦନାର ଏକ ନୂତନ ତରଙ୍ଗ ସୃଷ୍ଟି କରି ଅଣହିନ୍ଦୁ, ବିଶେଷତଃ, ମୁସଲମାନମାନଙ୍କ ସଂପର୍କରେ ଅସହିଷ୍ଣୁତା ପ୍ରଦର୍ଶନ କରିବାର ଉଲ୍ଲେଖନୀୟ ଭୂମିକା ପାଳନ କରିଥିଲା । ଜନସଂଘ ସେତେବେଳେ ଭାରତର ଅନୁସୃତ ଗଣତାନ୍ତ୍ରିକ ବିକାଶ ପଥର ବିରୋଧୀ ଥିଲା । ଏହି ପାର୍ଟି ତା'ର ପ୍ରଚାରାଭିଯାନରେ ହିନ୍ଦୁମାନଙ୍କ ଧର୍ମବୋଧ ପ୍ରତି ଆବେଦନ ଜଣାଉଥିଲା ଏବଂ ଦକ୍ଷତାର ସହିତ ବିପୁଳ ସଂଖ୍ୟକ ଅଶିକ୍ଷିତ ଜନସାଧାରଣଙ୍କର ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଅନଗ୍ରସରତାର ସୁଯୋଗ ନେଉଥିଲା । ନିଜକୁ "ଖାଣ୍ଟି ଜାତୀୟତାବାଦର" ପ୍ରକୃତ ଅନୁସାରୀ ବୋଲି ଘୋଷଣା କରି ଜନସଂଘ ପ୍ରକାଶ୍ୟରେ ନେହରୁଙ୍କ ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିରେ ନିହିତ ପ୍ରଗତିଶୀଳତାକୁ ଆକ୍ରମଣ କରୁଥିଲା ।

ଜନସଂଘ ଓ ହିନ୍ଦୁ ସାଂପ୍ରଦାୟିକ ସଂଗଠନଗୁଡ଼ିକର କ୍ରମବର୍ଦ୍ଧମାନ କାର୍ଯ୍ୟକଳାପ ମୁସଲମାନ ସମାଜର ପ୍ରତିକ୍ରିୟାଶୀଳ ସଂଗଠନ, ବିଶେଷତଃ, "ଜାମାତ୍-ଇ-ଇସ୍‌ଲାମୀ-ଇ-ହିନ୍ଦ୍" ଓ "ମଜ୍‌ଲିସ୍-ଇତେହାଦଉଲ୍-ମୁସଲିମ୍‌ନର" କ୍ରିୟାକଳାପ ବୃଦ୍ଧି ପ୍ରତି ଅନିବାର୍ଯ୍ୟ ଇନ୍ଧନ ଯୋଗେଇଥିଲା । ଏହି ସଂଗଠନଗୁଡ଼ିକ ମଧ୍ୟ ଜନସଂଘ ଭଳି ଶିଳ୍ପ ଓ କୃଷି କ୍ଷେତ୍ରରେ ପ୍ରଗତିଶୀଳ ସାମାଜିକ ଓ ଅର୍ଥନୈତିକ ସଂସ୍କାରର ବିରୋଧିତା କରୁଥିଲେ ।

ହିନ୍ଦୁ ମୁସଲମାନ ସାଂପ୍ରଦାୟିକ ସଂଗଠନଗୁଡ଼ିକର ନବପର୍ଯ୍ୟାୟର ଏହି କ୍ରିୟାକଳାପ ଫଳରେ ଖ୍ରୀଷ୍ଟୀୟ ଗିର୍ଜା ମଧ୍ୟ ରାଜନୈତିକ ବ୍ୟାପାରରେ ଅଧିକତର ହସ୍ତକ୍ଷେପ କରିବା ପାଇଁ ଉତ୍ସାହୀ ହୋଇ ଉଠିଥିଲା । ଭାରତର ଖ୍ରୀଷ୍ଟିଆନ୍ ଗିର୍ଜାର ସକ୍ରିୟ ସାମାଜିକ-ରାଜନୈତିକ ବାହୁ ସ୍ୱରୂପ କେରଳର କ୍ୟାଥଲିକ୍ କଂଗ୍ରେସ ୧୯୫୭, ୧୯୫୮ ଓ ୧୯୫୯ ଖ୍ରୀଷ୍ଟାବ୍ଦରେ କେରଳର କମ୍ୟୁନିଷ୍ଟ ସରକାର ବିରୁଦ୍ଧରେ ସକ୍ରିୟତମ ଭୂମିକା ପାଳନ କରିଥିଲା ।

ସାଂପ୍ରଦାୟିକତାର ବୃଦ୍ଧି ହେତୁ ଭାରତରେ ବର୍ଣ୍ଣ ଭେଦ ଭିତ୍ତିକ ସଂଘର୍ଷ ବିସ୍ତାର ଲାଭ କରିଥିଲା । ସ୍ୱାଧୀନତା ଲାଭ ପରେ (ଗ୍ରାମାଞ୍ଚଳରେ ଯେତେବେଳେ ଅର୍ଦ୍ଧ ସାମନ୍ତବାଦୀ ସାମାଜିକ ଓ ଅର୍ଥନୈତିକ ଗଢ଼ଣ ପ୍ରକଟିତ ଏବଂ ଜନସାଧାରଣଙ୍କ ରାଜନୈତିକ ସଂଗଠନ ଦୁର୍ବଳ) ଶିକ୍ଷା ବିସ୍ତାର, ସାର୍ବଜନୀନ ଭୋଟାଧିକାର ପ୍ରବର୍ତ୍ତନ, ସ୍ୱାୟତ୍ତଶାସିତ ଗ୍ରାମ "ପଞ୍ଚାୟତ" ବା ଗ୍ରାମ ପରିଷଦ ଭିତ୍ତିକ ସ୍ଥାନୀୟ ପ୍ରଶାସନର ନୂତନ ବ୍ୟବସ୍ଥା ଏବଂ ଦେଶର ରାଜନୈତିକ ଜୀବନରେ ବିପୁଳ ସଂଖ୍ୟକ ଲୋକଙ୍କର ଅଂଶଗ୍ରହଣ—ଏସବୁ ଫଳରେ ଦେଶରେ ସର୍ବତ୍ର ଜାତିଭିତ୍ତିକ ଦଳ ଗଠନ ହିଁ ସାମାଜିକ ସଂଗଠନର ସର୍ବାଧିକ ପ୍ରଚଳିତ ଢାଞ୍ଚା ହୋଇ ପଡ଼ିଥିଲା ।

ଏହି ପରିସ୍ଥିତିରେ "ପ୍ରଧାନ ଜାତି", ଅର୍ଥାତ୍, ଅଧିକାଂଶ ଜମିମାଲିକ ଓ ପ୍ରଧାନତଃ ଧନୀ କୃଷକମାନେ ନିର୍ଦ୍ଦିଷ୍ଟ ରାଜ୍ୟ ବା ଜିଲ୍ଲାରେ ପ୍ରଶାସନ ସଂସ୍ଥାରେ ନିଜର ଦଖଲକୁ ଦୃଢ଼ କରିବା ପାଇଁ ଜାତିଗତ ସଂହତିର ଧ୍ୱନିଟିକୁ ବ୍ୟବହାର କରୁଥିଲେ । ଫଳରେ, ଏକ ଦିଗରେ, କ୍ରମାନ୍ୱୟରେ ସମାଜର ଉଚ୍ଚ ସ୍ତରଗୁଡ଼ିକରେ ପ୍ରତିଦ୍ୱନ୍ଦ୍ୱୀ ଜାତିଗୁଡ଼ିକ ମଧ୍ୟରେ ଏବଂ ଅନ୍ୟ ଦିଗରେ ସମାଜର ଉଚ୍ଚ ଓ ନୀଚ ସ୍ତରର ଜାତିଗୁଡ଼ିକ ମଧ୍ୟରେ ସଂଘାତ ବୃଦ୍ଧି ପାଇଥିଲା ।

ପଚାଶ ଦଶକର ମଝାମଝି ବେଳକୁ ଭାରତର ଗ୍ରାମାଞ୍ଚଳରେ ଜାତିଗତ ସଂଘାତ ବିଶେଷ ଭାବେ

ତୀବ୍ର ଆକାର ଧାରଣ କରିଥିଲା । ଏଥିରେ ଗ୍ରାମୀଣ ଗରିବମାନଙ୍କ ସହିତ ସେଇ ସମାଜର ମୁଖ୍ୟ ଶ୍ରେଣୀ, ଜମିଦାର ଓ ଧନୀ କୃଷକମାନଙ୍କର ସଂଘାତ ବୃଦ୍ଧି ପାଇଥିଲା ।

ଶ୍ରମଜୀବୀମାନଙ୍କର ପ୍ରବଳ ଶ୍ରେଣୀ ସଂଗ୍ରାମ ସାଥେ ସାଥେ ଧର୍ମୀୟ, ସାଂପ୍ରଦାୟିକ ଓ ଜାତିଗତ ବୈଷମ୍ୟ ଜାତ ସଂଘାତ, ପ୍ରତିକ୍ରିୟାଶୀଳ ରାଜନୈତିକ ସଂଗଠନଗୁଡ଼ିକର ଅଧିକତର ସକ୍ରିୟତା, "ସ୍ୱତନ୍ତ୍ର" ପାର୍ଟି ଗଠନ—ଏସବୁ ଥିଲା ଦେଶର ରାଜନୈତିକ ଶକ୍ତିଗୁଡ଼ିକର କ୍ରମାଗତ ମେରୁବର୍ତ୍ତିତାର ପ୍ରମାଣ ।

୧୯୬୧ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ ଅନୁଷ୍ଠିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୬ଷ୍ଠ କଂଗ୍ରେସରେ ଗୃହୀତ ପ୍ରସ୍ତାବଗୁଡ଼ିକରେ ଭାରତର ତତ୍କାଳୀନ ପରିସ୍ଥିତିର ମୂଲ୍ୟାୟନ କରାଯାଇଥିଲା । ଏହି କଂଗ୍ରେସ ୧୯୬୦ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ମସ୍କୋରେ ଅନୁଷ୍ଠିତ କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟିମାନଙ୍କର ପ୍ରତିନିଧିମାନଙ୍କର ସମ୍ମିଳନୀର ସିଦ୍ଧାନ୍ତକୁ ମଧ୍ୟ ଅନୁମୋଦିତ କରିଥିଲା । ଏହି କଂଗ୍ରେସରେ ଦେଶର ମୂଳ ରାଜନୈତିକ ଶକ୍ତିଗୁଡ଼ିକ ସହିତ ପାର୍ଟିର ବିଦ୍ୟମାନ ସଂପର୍କକୁ ସମର୍ଥନ ଓ ଭାରତୀୟ ଜାତୀୟ ବୁର୍ଜୁଆମାନଙ୍କର ଦ୍ୱୈତ ଭୂମିକା ବିଶ୍ଳେଷଣ କରାଯାଇଥିଲା । କଂଗ୍ରେସରେ କମ୍ୟୁନିଷ୍ଟ ପାର୍ଟିର ପ୍ରଧାନ ସଂସ୍ଥା ଜାତୀୟ ପରିଷଦ ଗଠିତ ହେଲା ପରେ ପରିଷଦର ସାଧାରଣ ସଂପାଦକ ଅଜୟ କୁମାର ଘୋଷଙ୍କ (୧୯୬୨ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ମୃତ୍ୟୁ) ନେତୃତ୍ୱରେ କେନ୍ଦ୍ରୀୟ କମିଟି ନିର୍ବାଚିତ ହୋଇଥିଲା ।

ଏହି ପାର୍ଟି କଂଗ୍ରେସ ଶ୍ରମିକ ଶ୍ରେଣୀ ଓ ତା'ର ପାର୍ଟିର ନେତୃତ୍ୱରେ ଏକ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନର ନୀତିକୁ ବ୍ୟାଖ୍ୟା କରିଥିଲା । ଏଥିରେ ଦେଶର ସମସ୍ତ ପ୍ରଧାନ ଶ୍ରେଣୀ ଶକ୍ତି ସମେତ ସାମ୍ରାଜ୍ୟବାଦ ସହିତ ଅସଂଶ୍ଳିଷ୍ଟ ଜାତୀୟ ବୁର୍ଜୁଆମାନଙ୍କର ଏକାଂଶ ଅନ୍ତର୍ଭୁକ୍ତ ଥିଲେ । ଏହି ଲକ୍ଷ୍ୟ ଅର୍ଜନ ପାଇଁ ଭାରତର କମ୍ୟୁନିଷ୍ଟ ପାର୍ଟିକୁ କଂଗ୍ରେସର ଗଣତାନ୍ତ୍ରିକ ଅଂଶ ସହିତ ଐକ୍ୟବଦ୍ଧ ସାମ୍ମୁଖ୍ୟ ଗଠନ କରିବାରେ ସହଯୋଗିତା କରିବାକୁ ଆହ୍ୱାନ ଦିଆଯାଇଥିଲା । କିନ୍ତୁ ଜାତୀୟ କଂଗ୍ରେସ ଓ ସମାଜବାଦୀ ଦଳଗୁଡ଼ିକର ନେତୃବୃନ୍ଦଙ୍କ କମ୍ୟୁନିଷ୍ଟବିରୋଧୀ ପଦକ୍ଷେପ ଗ୍ରହଣ ଏବଂ ଖୋଦ୍ କମ୍ୟୁନିଷ୍ଟ ପାର୍ଟିର ବର୍ତ୍ତମାନ ଆଭ୍ୟନ୍ତରୀଣ ମତବୈଷମ୍ୟ ଆଦି ଫଳରେ ଭାରତର କମ୍ୟୁନିଷ୍ଟ ପାର୍ଟିର ଏହି କଂଗ୍ରେସର ନିର୍ଦ୍ଧାରିତ କାର୍ଯ୍ୟାବଳୀ ବାସ୍ତବାୟନ କରିବା ସମ୍ଭବ ହୋଇ ନଥିଲା ।

## ୧୯୬୨ ଖ୍ରୀଷ୍ଟାବ୍ଦର ତୃତୀୟ ସାଧାରଣ ନିର୍ବାଚନ ଏବଂ ଜାତୀୟ କଂଗ୍ରେସର ବର୍ତ୍ତମାନ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ

୧୯୬୨ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ଅନୁଷ୍ଠିତ ଭାରତର ତୃତୀୟ ସାଧାରଣ ନିର୍ବାଚନକାଳୀନ (ପାର୍ଲିଆମେଣ୍ଟ ଓ ରାଜ୍ୟ ବିଧାନସଭାସମୂହର) ପ୍ରଚାରାଭିଯାନ ସମୟରେ ଦେଶର ମୂଳ ଶ୍ରେଣୀ ଶକ୍ତିଗୁଡ଼ିକ ମଧ୍ୟରେ ବିସ୍ତାରମାନ ପାର୍ଥକ୍ୟର ଚିତ୍ରଟି ସ୍ପଷ୍ଟ ହୋଇ ଉଠିଥିଲା । ନିର୍ବାଚନ ଦେଶର ପ୍ରଧାନ ରାଜନୈତିକ ଦଳ ହିସାବରେ କଂଗ୍ରେସର ଅବସ୍ଥାନକୁ ପୁନଃପ୍ରମାଣିତ କରିଥିଲା : କଂଗ୍ରେସ ପାଇଥିଲା ପାର୍ଲିଆମେଣ୍ଟର ଲୋକ ସଭାର ମୋଟ ୫୨୦ଟି ଆସନ ମଧ୍ୟରୁ ୩୬୧ଟି ଏବଂ ଶତକଡ଼ା ୪୬.୦୨ ଭୋଟ । କିନ୍ତୁ ସେଇ ୧୯୬୨ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ନିରଙ୍କୁଶ ଓ ଆପେକ୍ଷିକ ସଂଖ୍ୟାଗରିଷ୍ଠତା ଉଭୟ ଖର୍ବିତ ହୋଇଥିଲା ଏବଂ ୧୯୫୭ ତୁଳନାରେ କଂଗ୍ରେସ ୬୦ ଲକ୍ଷାଧିକ ଭୋଟ

ହରେଇଥିଲ । ଏହି ସମୟରେ ଭାରତର କମ୍ୟୁନିଷ୍ଟ ପାର୍ଟିର ଅବସ୍ଥାନ ଆଉରି ଦୃଢ଼ ହୋଇଥିଲ । କମ୍ୟୁନିଷ୍ଟ ପାର୍ଟି ଲୋକ ସଭାରେ ୨୯ଟି ଆସନ ଲଭ କରି ପ୍ରଧାନ ବାମପନ୍ଥୀ ବିରୋଧୀ ଦଳର ମର୍ଯ୍ୟାଦା ପାଇଥିଲ । ଏଥି ସଙ୍ଗେ ସଙ୍ଗେ ପାର୍ଲିଆମେଣ୍ଟ ଏବଂ ରାଜ୍ୟ ବିଧାନ ସଭା ଉଭୟରେ ଦକ୍ଷିଣପନ୍ଥୀମାନଙ୍କର ସମର୍ଥକମାନଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲ ; (କମ୍ୟୁନିଷ୍ଟମାନଙ୍କର ୧୦ ଶତାଂଶ ଭୋଟ ସହିତ ଏମାନଙ୍କର ୧୩.୨ ଶତାଂଶ ଭୋଟର ଅଙ୍କଟି ତୁଳନୀୟ) ।

କିନ୍ତୁ ଏହି ସମୟରେ ଭାରତର କମ୍ୟୁନିଷ୍ଟ ପାର୍ଟି ବା ଜାତୀୟ କଂଗ୍ରେସ କେହି ଦକ୍ଷିଣପନ୍ଥୀମାନଙ୍କର ଏହି ଶକ୍ତି ବୃଦ୍ଧି ଦ୍ୱାରା ସମ୍ଭାବ୍ୟ ଆଶଙ୍କାର କୌଣସି କାରଣ ଦେଖି ନଥିଲେ ।

ଜାତୀୟ କଂଗ୍ରେସ ଏହି ସମୟରେ ତା'ର ଆଭ୍ୟନ୍ତରୀଣ ଦଳୀୟ କନ୍ଦଳ ଫଳରେ ଦୁର୍ବଳ ହୋଇ ପଡ଼ିଥିଲ । ତା'ର ଦୁଇଟି ମୂଳ କାରଣ ହେଲ : ଗୋଟିଏ ଦିଗରେ, ରାଜ୍ୟ ପର୍ଯ୍ୟାୟରେ କଂଗ୍ରେସ ନେତୃତ୍ୱର ବିଭିନ୍ନ ଗୋଷ୍ଠୀର, କଂଗ୍ରେସର ପାର୍ଲିଆମେଣ୍ଟ ସଦସ୍ୟଙ୍କ ସମେତ ଅନେକଗୁଡ଼ିଏ ରାଜ୍ୟ ବିଧାନ ସଭାର, ବିଶେଷତଃ, ହିନ୍ଦୀ ଭାଷାଭାଷୀ ଅଞ୍ଚଳ ଓ ପଶ୍ଚିମ ବଂଗର ସଦସ୍ୟମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ପରିପକ୍ୱ ହୋଇ ଉଠୁଥିଲ । ଏହି ଦ୍ୱନ୍ଦ୍ୱ ମଧ୍ୟରେ ସ୍ଥାନୀୟ ଓ ଜାତୀୟ ବୁର୍ଜୁଆମାନଙ୍କର ବିଭିନ୍ନ ଗୋଷ୍ଠୀ ଓ ଅନ୍ୟତ୍ର ଭାରତୀୟ ସମାଜର ବିଭଶାଳୀ ଗୋଷ୍ଠୀମାନଙ୍କ ମଧ୍ୟରେ ଗଭୀର ଅସଙ୍ଗତିର ପ୍ରକାଶ ଘଟିଥିଲ । ଅନ୍ୟ ଦିଗରେ, ଜାତୀୟ କଂଗ୍ରେସ ମଧ୍ୟରେ ଦକ୍ଷିଣ ଓ ବାମପନ୍ଥୀ ଶକ୍ତିମାନଙ୍କର ମେରୁବର୍ତ୍ତିତା ତୀବ୍ର ହୋଇ ଉଠିଥିଲ । କାର୍ଯ୍ୟତଃ ସେତେବେଳେ ପାର୍ଟି ମଧ୍ୟରେ ତିନୋଟି ପ୍ରଧାନ ଗୋଷ୍ଠୀର ଉନ୍ମେଷ ଘଟିଥିଲ : ନେହରୁ ଓ ତାଙ୍କ ସହକର୍ମୀମାନଙ୍କ ସମର୍ଥକ ମଧ୍ୟପନ୍ଥୀ ଗୋଷ୍ଠୀ ; କେନ୍ଦ୍ରୀୟ ସରକାରର କେତେକ ମନ୍ତ୍ରୀ – ଏସ୍.କେ.ପାଟିଲ, ମୋରାରଜୀ ଦେଶାଇ ଏବଂ ବିଭିନ୍ନ ରାଜ୍ୟର କେତେକ ନେତା (ପଶ୍ଚିମ ବଂଗର ଅତୁଲ୍ୟ ଘୋଷ୍, ଉତ୍ତର ପ୍ରଦେଶର ଚନ୍ଦ୍ରଭାନୁ ଗୁପ୍ତ) ସମର୍ଥିତ ଦକ୍ଷିଣପନ୍ଥୀ ଗୋଷ୍ଠୀ ଏବଂ କେନ୍ଦ୍ରୀୟ ସରକାରର ମନ୍ତ୍ରୀ କେ.ଡି.ମାଲବ୍ୟଙ୍କ ସମର୍ଥିତ ଓ ପୂର୍ବୋକ୍ତ ଗୋଷ୍ଠୀଗୁଡ଼ିକ ତୁଳନାରେ କିଛି ପରିମାଣରେ ଅସଂଗଠିତ ବାମପନ୍ଥୀ ଗୋଷ୍ଠୀ ।

୧୯୬୨ ଖ୍ରୀଷ୍ଟାବ୍ଦର ନିର୍ବାଚନ ପରେ ଜାତୀୟ କଂଗ୍ରେସର ଆଭ୍ୟନ୍ତରୀଣ ଉପଦଳୀୟ କନ୍ଦଳ ତୀବ୍ରତର ହୋଇ ଉଠିଥିଲ, ନିର୍ବାଚନରେ ଶାସକ ଦଳର ଅଭ୍ୟନ୍ତରରେ ବିଭିନ୍ନ ଗୋଷ୍ଠୀର ପ୍ରତିନିଧିମାନେ ବସ୍ତୁତଃ କଂଗ୍ରେସର ସରକାରୀ ପ୍ରାର୍ଥୀଙ୍କୁ ବିରୋଧିତା କରିଥିଲେ ।

୧୯୬୨ ଖ୍ରୀଷ୍ଟାବ୍ଦର ଶରତ କାଳରେ ପିକିଂର ପ୍ରରୋଚନାରେ ଭାରତ-ଚୀନ୍ ସୀମାନ୍ତରେ ଯୁଦ୍ଧ ଲଗିଗଲେ କଂଗ୍ରେସ ମଧ୍ୟରେ ଦକ୍ଷିଣପନ୍ଥୀମାନେ ଆଉରି ଶକ୍ତିଶାଳୀ ହୋଇ ଉଠିଥିଲେ । ଏମାନେ ପାର୍ଟି ବାହାରେ ଥିବା ରକ୍ଷଣଶୀଳ ଶକ୍ତିଗୁଡ଼ିକ ସହିତ ମେଣ୍ଟ ବାନ୍ଧିଥିଲେ ଏବଂ ୧୯୬୩ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ନେହରୁ ସରକାରର ପଦତ୍ୟାଗ ଦାବି କରିଥିଲେ । ପାର୍ଟିର ଆଭ୍ୟନ୍ତରୀଣ ସାଂଗଠନିକ ଐକ୍ୟ ଅଟୁଟ ରଖିବା ପାଇଁ ମାନ୍ଦ୍ରାଜର ତତ୍କାଳୀନ ପ୍ରଧାନମନ୍ତ୍ରୀ କାମରାଜଙ୍କ ପ୍ରସ୍ତାବ ଅନୁଯାୟୀ ସେଇ ବର୍ଷ ଅଗଷ୍ଟ ମାସରେ ତଥାକଥିତ କାମରାଜ ଯୋଜନା ଗୃହୀତ ହୋଇଥିଲ । ଏହି ଯୋଜନା ଅନୁଯାୟୀ ଜାତୀୟ କଂଗ୍ରେସର କେଇ ଜଣ ପ୍ରଧାନ ନେତାଙ୍କୁ ମନ୍ତ୍ରୀ ପଦରୁ ପାର୍ଟିର ସାଂଗଠନିକ କାର୍ଯ୍ୟକୁ ସ୍ଥାନାନ୍ତରିତ କରାଯାଇଥିଲ । ଏହି ଯୋଜନାର ବାସ୍ତବାୟନ ଫଳରେ ପୁନର୍ଗଠିତ କେନ୍ଦ୍ରୀୟ ସରକାରରେ ଦକ୍ଷିଣପନ୍ଥୀମାନେ କିଛି ପରିମାଣରେ କଣଠେସା ହୋଇଥିଲେ ମଧ୍ୟ କେଇ ଜଣ ଦକ୍ଷିଣପନ୍ଥୀ ନେତା କଂଗ୍ରେସ ମଧ୍ୟରେ ଏକ ବେସରକାରୀ ଗୋଷ୍ଠୀ "ସିଣ୍ଡିକେଟ" ଗଠନ କରିଥିଲେ ।

ଷାଠିଏ ଦଶକରେ ଶାସକଦଳର କର୍ମନୀତିରେ ଏହି ଗୋଷ୍ଠୀଟି ଗଭୀର ପ୍ରଭାବ ବିସ୍ତାର କରିଥିଲା । ୧୯୬୩ ଖ୍ରୀଷ୍ଟାବ୍ଦ ଶରତ କାଳରେ ଜୟପୁରରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ଅଧିବେଶନରେ କାମରାଜ ସଭାପତି ନିର୍ବାଚିତ ହୋଇଥିଲେ ।

୧୯୬୪ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ଭୁବନେଶ୍ୱରରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ଅଧିବେଶନରେ ପାର୍ଟିର ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ପ୍ରକାଶ ପାଇଥିଲା ଏବଂ କେ.ଡି.ମାଲବ୍ୟଙ୍କ ନେତୃତ୍ୱାଧୀନ ବାମପନ୍ଥୀ ଗୋଷ୍ଠୀ ସେଠାରେ "ଗଣତାନ୍ତ୍ରିକ ସମାଜବାଦର" କର୍ମସୂଚୀ ଉପସ୍ଥାପିତ କରିଥିଲେ । କିନ୍ତୁ ପ୍ରବଳ ଯୁକ୍ତିତର୍କ ପରେ ବାମପନ୍ଥୀମାନଙ୍କ ପ୍ରସ୍ତାବଗୁଡ଼ିକ ନାକଚ ହୋଇ ଯାଇଥିଲା ଏବଂ ଜାତୀୟ କଂଗ୍ରେସର ଦକ୍ଷିଣପନ୍ଥୀ ଶକ୍ତିଗୁଡ଼ିକ ପାଇଁ ଯଥେଷ୍ଟ ସୁବିଧାର ବ୍ୟବସ୍ଥା ସହ "ଗଣତାନ୍ତ୍ରିକ ସମାଜବାଦ" ପ୍ରସ୍ତାବଟିର ଏକ ସଂଶୋଧିତ ସଂସ୍କରଣ ଗୃହୀତ ହୋଇଥିଲା ।

ପଚାଶ ଦଶକର ଶେଷ ଏବଂ ଷାଠିଏ ଦଶକର ପ୍ରାରମ୍ଭରେ ଆଭ୍ୟନ୍ତରୀଣ ଓ ବୈଦେଶିକ ବାଧାର ସମ୍ମୁଖୀନ ଜାତୀୟ କଂଗ୍ରେସର ସଂକଟାପନ୍ନ ଅବସ୍ଥା ଏବଂ ଶାସକ ଦଳ ମଧ୍ୟରେ ବେଦନା ଶେଷକୁ ଜାତିର ନେତା ନେହରୁଙ୍କ ଉପରେ ପ୍ରଚଣ୍ଡ ଆଘାତ ହାଣିଥିଲା । ୧୯୬୪ ଖ୍ରୀଷ୍ଟାବ୍ଦ ମେ ୨୭ ତାରିଖରେ ସେ ମୃତ୍ୟୁ ବରଣ କରିଥିଲେ । ତାଙ୍କ ମୃତ୍ୟୁରେ ସ୍ୱାଧୀନ ଭାରତର ଗୌରବୋଜ୍ଜ୍ୱଳ ଇତିହାସର ପ୍ରଥମ ଅଧ୍ୟାୟର ସମାପ୍ତି ଘଟିଥିଲା, ଯେଉଁ ଅଧ୍ୟାୟରେ ପ୍ରତିଷ୍ଠିତ ହୋଇଥିଲା ଦେଶର ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିର ଭିତ୍ତି ।

## ପଚାଶ ଓ ଷାଠିଏ ଦଶକରେ ଭାରତର ବୈଦେଶିକ ନୀତି

ଭାରତ ପ୍ରଜାତନ୍ତ୍ର ଘୋଷିତ ହେଲା ପରେ ଭାରତ ସରକାରଙ୍କ ଦ୍ୱାରା ଅନୁସୃତ ବିବିଧ ବୈଦେଶିକ ନୀତି ସଂକ୍ରାନ୍ତ କର୍ମନୀତି ଓ ବିଶେଷ କରି ଏହି ନୂତନ ରାଷ୍ଟ୍ରର ଆନ୍ତର୍ଜାତିକ ସଂପର୍କ ପ୍ରତିଷ୍ଠା ମଧ୍ୟରେ ଭାରତର ବୈଦେଶିକ ନୀତିରେ ନେହରୁଙ୍କ ଅବଧାରଣାଟି ଯଥାଯଥ ରୂପ ଲାଭ କରିଥିଲା । ଏ କ୍ଷେତ୍ରରେ ସେ ଥିଲେ ସକ୍ରିୟ ନିରପେକ୍ଷ ନୀତିର ଅନୁଗାମୀ । ବିଶ୍ୱର ପ୍ରଧାନ ଦୁଇଟି ମେଣ୍ଟ ଠାରୁ ଭାରତର ନିରପେକ୍ଷତା ହେଲା ଏହାର ସାରମର୍ମ । ଏଥି ସଙ୍ଗେ ସଙ୍ଗେ ଭାରତର ବୈଦେଶିକ ନୀତି ଥିଲା ସଂପୂର୍ଣ୍ଣ ବିଚ୍ଛିନ୍ନତା ବର୍ଜିତ । ପକ୍ଷାନ୍ତରେ, ଭାରତ ଡୋମିନିଅନ ଥିଲା ବେଳେ ସଦ୍ୟ ସ୍ୱାଧୀନ ଦେଶଗୁଡ଼ିକୁ ସମର୍ଥନ ପ୍ରଦାନ କରି ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ନିଜର ଅବସ୍ଥାନ ଗ୍ରହଣ କରିଥିଲା ।

ଭାରତୀୟ ରାଜନୀତିରେ ନେହରୁଙ୍କ ଧାରା ସୁଦୃଢ଼ ହେଲା ବେଳେ ଆଫ୍ରିକା ଓ ଏସିଆର ଜାତୀୟ-ମୁକ୍ତି ଆନ୍ଦୋଳନ ସହିତ ତୃତୀୟ ଦୁନିଆର ଦେଶଗୁଡ଼ିକର ସ୍ୱାଧୀନ ରାଜନୈତିକ ଓ ଅର୍ଥନୈତିକ ବିକାଶ ପ୍ରତି ଭାରତର ସମର୍ଥନ ମୋଟାମୋଟି ଭାବେ ସଂଗତିପୂର୍ଣ୍ଣ ଥିଲା ।

କୋରିଆ ଯୁଦ୍ଧର ଅବସାନ ପ୍ରତି ଭାରତର ଅବଦାନ ଅନସ୍ୱୀକାର୍ଯ୍ୟ, ଯଦିଓ ୧୯୫୨ ମସିହାରେ ଯୁଦ୍ଧର ପ୍ରାରମ୍ଭରେ ଜାତି ସଂଘର ନିରାପତ୍ତା ପରିଷଦର ଅସ୍ଥାୟୀ ସଦସ୍ୟ ହିସାବରେ ତା'ର ଭୂମିକା ସର୍ବଦା ଦୃଢ଼ ନଥିଲା । ଚୀନ୍ କୋରିଆ ଆକ୍ରମଣ କରିଛି ବୋଲି ଯେଉଁ ଅଭିଯୋଗ ଉଠିଥିଲା ଭାରତ

ସରକାର ତା'ର ବିରୋଧିତା କରିବା ସଙ୍ଗେ ସଙ୍ଗେ ଯୁଦ୍ଧ ବିରତି ଓ ଯୁଦ୍ଧବନ୍ଦୀମାନଙ୍କର ପୁନର୍ବାସନରେ ସକ୍ରିୟ ସହାୟତା ଯୋଗାଇଥିଲା ।

ତା'ଛଡ଼ା ଇନ୍ଦୋଚୀନ୍‌ରେ ଯୁଦ୍ଧ ବନ୍ଦ ସଂପର୍କରେ ଭାରତ ଅବିଚଳ ଭୂମିକା ପାଳନ କରି ଯାଇଥିଲା । ଜେନିଭା ଚୁକ୍ତିର କାର୍ଯ୍ୟକାରିତା ଏବଂ ୧୯୫୪-୧୯୫୬ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ-ପୂର୍ବ ଏସିଆର ଏହି ଅଂଶରେ ସଂପର୍କ ସ୍ୱାଭାବିକୀକରଣ କରିବା ଦିଗରେ ଏହା ଯଥେଷ୍ଟ ସହାୟତା କରିଥିଲା ।

ଆନ୍ତର୍ଜାତିକ କ୍ଷେତ୍ରରେ ସର୍ବପ୍ରକାର ସ୍ଥାନୀୟ ସଂଘାତର ଅବସାନ, ସର୍ବତ୍ର ଦୀର୍ଘମିଆଦୀ ଶାନ୍ତି ଅତୁଟ ରଖିବା ପକ୍ଷରେ ଆବେଦନ ଏବଂ ସାମରିକ ମେଣ୍ଟ ଗଠନ, ଘାଟି ନିର୍ମାଣ ଓ ବିଦେଶରେ ସୈନ୍ୟ ରଖିବାର ବିରୋଧିତା ଥିଲା ଭାରତର ନୀତି ।

ନେହରୁ ସରକାରଙ୍କ ଦ୍ୱାରା ଅନୁସୃତ ଏହି ବୈଦେଶିକ ନୀତି ଫଳରେ ପାଶ୍ଚାତ୍ୟ ଦେଶଗୁଡ଼ିକ ସହିତ ଭାରତର ସଂପର୍କ କ୍ଷେତ୍ରରେ କେତେକ ଜଟିଳତା ଦେଖା ଦେଇଥିଲା । ଏକ ଦିଗରେ, ଭାରତ ମୋଟାମୋଟି ଅବିଚଳ ଭାବେ ଔପନିବେଶିକତା ଓ ନବ ଔପନିବେଶିକତାର ବିରୋଧିତା କରୁଥିଲା ଏବଂ, ଅନ୍ୟ ଦିଗରେ, ସାମ୍ରାଜ୍ୟବାଦୀ ଶକ୍ତିମାନେ ତା ଉପରେ ନିରନ୍ତର ଓ କ୍ରମବର୍ଦ୍ଧମାନ ମାତ୍ରାରେ ଚାପ ସୃଷ୍ଟି କରି ଚାଲିଥିଲେ । ଏଥି ପାଇଁ ସେମାନେ ଅର୍ଥନୈତିକ କବ୍‌ଜାକୁ ବ୍ୟବହାର କରିବାକୁ ପଛାଉ ନଥିଲେ । ଭାରତ ଆମେରିକା ଯୁକ୍ତ ରାଷ୍ଟ୍ରର ସାମରିକ ସାହାଯ୍ୟକୁ ପ୍ରତ୍ୟାଖ୍ୟାନ କଲେ ମଧ୍ୟ ୧୯୫୧-୧୯୫୨ ଖ୍ରୀଷ୍ଟାବ୍ଦରେ ଦୁଇ ଦେଶ ମଧ୍ୟରେ କାରୁବିଜ୍ଞାନଗତ ସହଯୋଗିତା ସଂକ୍ରାନ୍ତ ଅନେକ ଚୁକ୍ତି ସଂପାଦନ ଫଳରେ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ବହୁ କ୍ଷେତ୍ରରେ ଆମେରିକା ଯୁକ୍ତ ରାଷ୍ଟ୍ରର ଅନୁପ୍ରବେଶର ଭିତ୍ତି ତିଆରି ହୋଇଥିଲା ।

ସର୍ବକ୍ଷେତ୍ରରେ ବ୍ୟାପକ ଓ କ୍ରମବର୍ଦ୍ଧମାନ ସହଯୋଗିତାର ବିକାଶ ଲକ୍ଷ୍ୟରେ ସମାଜବାଦୀ ଦେଶଗୁଡ଼ିକ ସହିତ ଭାରତର ସଂପର୍କ କ୍ରମାଗତ ବୃଦ୍ଧି ପାଇବାରେ ଲାଗିଥିଲା । ୧୯୫୫ ଖ୍ରୀଷ୍ଟାବ୍ଦରେ ସୋଭିଏତ୍ ୟୁନିଅନ୍ ଓ ଭାରତର ନେତୃବୃନ୍ଦଙ୍କର ଭ୍ରମଣ ବିନିମୟ ଫଳରେ ଦୁଇ ଦେଶ ମଧ୍ୟରେ ବିଭିନ୍ନ ପର୍ଯ୍ୟାୟରେ ସରକାରୀ ପ୍ରତିନିଧି ବିନିମୟର ଭିତ୍ତି ସ୍ଥାପିତ ହୋଇଥିଲା । ଭାରତ ସହିତ ଚୀନ୍ ସମେତ ଅନ୍ୟାନ୍ୟ ସମାଜବାଦୀ ଦେଶଗୁଡ଼ିକର ସଂପର୍କ ମଧ୍ୟ ସମମାତ୍ରାରେ ବିକାଶ ଲାଭ କରିଥିଲା ।

୧୯୫୪ ଖ୍ରୀଷ୍ଟାବ୍ଦରେ ଭାରତ ଓ ଚୀନ୍ ମଧ୍ୟରେ ସଂପାଦିତ ତିବ୍ବତ ଚୁକ୍ତି ମଧ୍ୟ ଏସିଆର ଏହି ଅଞ୍ଚଳର ମର୍ଯ୍ୟାଦା ଘେନି ଦୁଇ ଦେଶ ମଧ୍ୟରେ ମତାନୈକ୍ୟର ଅବସାନ ଘଟିଥିଲା । ଏହି ଚୁକ୍ତିରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପାଞ୍ଚଟି ନୀତି ("ପଞ୍ଚଶୀଳ") ବ୍ୟାଖ୍ୟାୟିତ ହୋଇଥିଲା । ଏହା ପରେ ଦୁଇ ଦେଶ ମଧ୍ୟରେ ସରକାରୀ ପ୍ରତିନିଧିମାନଙ୍କର ଭ୍ରମଣ ବିନିମୟ ସେମାନଙ୍କର ବନ୍ଧୁତ୍ୱକୁ ସୁଦୃଢ଼ କରିବାରେ ସହାୟକ ହୋଇଥିଲା ।

ଚୀନ୍-ଭାରତ ସହଯୋଗିତା ୧୯୫୫ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ସାମରିକ ମେଣ୍ଟ ବହିର୍ଭୂତ ଦେଶଗୁଡ଼ିକର ଐତିହାସିକ ବାନ୍ଦୁଂ ସମ୍ମେଳନର ପଥ ପ୍ରଶସ୍ତ କରିଥିଲା ।

ତା ସତ୍ତ୍ୱେ ପଚାଶ ଓ ଷାଠିଏ ଦଶକରେ ଚୀନ୍‌ର ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିରେ ଦେଖା ଦେଉଥିବା ପରିବର୍ତ୍ତନସମୂହ କ୍ରମଶଃ ଚୀନ୍-ଭାରତ ସଂପର୍କର ଅବନତି ଘଟେଇଥିଲା ଏବଂ ଚୀନ୍‌ର ପ୍ରରୋଚନାରେ ୧୯୫୯ ଖ୍ରୀଷ୍ଟାବ୍ଦରେ ଏପରିକି ସୀମାନ୍ତ ସଂଘର୍ଷ ପର୍ଯ୍ୟନ୍ତ ଘଟିଥିଲା । ୧୯୬୨ ଖ୍ରୀଷ୍ଟାବ୍ଦରେ ଦୁଇ ଦେଶ ମଧ୍ୟରେ ପୁନର୍ବାର ସୀମାନ୍ତ ସଂଘର୍ଷ ଦେଖା ଦେଲା ଏବଂ ଏଥରକ ତାହା

ବଡ଼ ସାମରିକ ସଂଘର୍ଷରେ ପରିଣତ ହେଲା । ୧୯୬୨ ଖ୍ରୀଷ୍ଟାବ୍ଦର ଏହି ଘଟଣାବଳୀ ଭାରତର ଆଭ୍ୟନ୍ତରୀଣ କ୍ଷେତ୍ରରେ ନେତିବାଚକ ଫଳ ସୃଷ୍ଟି କରିଥିଲା । ଏହା ପରେ ପରେ ସମାଜବାଦବିରୋଧୀ, କମ୍ୟୁନିଷ୍ଟବିରୋଧୀ ଶକ୍ତିମାନଙ୍କର କ୍ରିୟାକଳାପ ଶୀର୍ଷଦେଶରେ ପହଞ୍ଚିଥିଲା । ଏହିସବୁ ଘଟଣା ଭାରତର ବୈଦେଶିକ ନୀତିକୁ ମଧ୍ୟ ଜଟିଳ କରି ପକାଇଥିଲା : ଚୀନ୍ ଗଣପ୍ରଜାତନ୍ତ୍ର ସହିତ ସଂଘାତ ସମୟରେ ଚୀନ୍ ସହିତ ପାକିସ୍ତାନର ସହଯୋଗିତା ବୃଦ୍ଧି ପାଇଥିଲା ଏବଂ ଫଳରେ, ଭାରତ-ପାକିସ୍ତାନ ରାଜିନାମାରେ ପହଞ୍ଚିବା, ବିଶେଷତଃ, କାଶ୍ମୀର ସମସ୍ୟାର ସମାଧାନ କଠିନତର ହୋଇ ପଡ଼ିଥିଲା ।

୧୯୫୪ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ସହିତ ଚୁକ୍ତି ସଂପାଦନ ଦ୍ୱାରା ଭାରତସ୍ଥ ଫରାସୀ ଉପନିବେଶଗୁଡ଼ିକୁ ଭାରତ ସହିତ ମିଶାଇ ନିଆଯାଇଥିଲା । ଏହା ପରେ ୧୯୬୧ ଖ୍ରୀଷ୍ଟାବ୍ଦରେ ଡିସେମ୍ବର ମାସରେ ଗୋଆ ଓ ଅନ୍ୟାନ୍ୟ ପର୍ତ୍ତୁଗୀଜ୍ ଉପନିବେଶଗୁଡ଼ିକର ମୁକ୍ତି ହାସଲ ସତ୍ତ୍ୱେ ଭାରତ ଉପମହାଦେଶରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ଦିଗରେ ପ୍ରତିକୂଳ ସମସ୍ୟାବଳୀର ସମାଧାନ ସମ୍ଭବ ହୋଇ ନଥିଲା ।

# "ନେହ୍ରୁ-ଧାରା" ଅନୁସରଣ ପାଇଁ ସଂଗ୍ରାମ (୧୯୬୪-୧୯୭୨)

## ବର୍ତ୍ତମାନ ଅର୍ଥନୈତିକ ଓ ରାଜନୈତିକ ସଂକଟ

ଆସନ୍ନ ତୃତୀୟ ସାଧାରଣ ନିର୍ବାଚନ (୧୯୬୨) ସମୟରେ ଆରମ୍ଭ ହୋଇଥିବା ସାମାଜିକ ଓ ରାଜନୈତିକ ଶକ୍ତିଗୁଡ଼ିକର ବର୍ତ୍ତମାନ ମେରୁବର୍ତ୍ତିତା ଦେଶର ପ୍ରଧାନ ପ୍ରଧାନ ରାଜନୈତିକ ଦଳଗୁଡ଼ିକରେ, ବିଶେଷତଃ, କଂଗ୍ରେସରେ ଆଭ୍ୟନ୍ତରୀଣ ସଂଗ୍ରାମକୁ ତୀବ୍ର କରିଥିଲା । ନେହରୁଙ୍କ ମୃତ୍ୟୁ ପରେ ଦେଶର ଆଭ୍ୟନ୍ତରୀଣ ରାଜନୀତିରେ ଆପେକ୍ଷିକ ସ୍ଥାୟିତ୍ୱର ଅବସାନ ସୂଚିତ ହୋଇଥିଲା ଏବଂ ଦେଶ ସାମାଜିକ ଓ ରାଜନୈତିକ ସଂଘାତ ସଂକୁଳ ଏକ ସମୟ କାଳରେ ପ୍ରବେଶ କରିଥିଲା ।

### କଂଗ୍ରେସର କ୍ରମବର୍ଦ୍ଧମାନ ଆଭ୍ୟନ୍ତରୀଣ ସଂଘାତ

ଶାସକ ଦଳ ମଧ୍ୟରେ ଉପଦଳୀୟ କନ୍ଦଳ ଆରମ୍ଭ ହେବାର ମୂଳରେ ଥିଲା ନେହରୁଙ୍କ ମୃତ୍ୟୁ, ଯାହାଙ୍କ ବ୍ୟକ୍ତିତ୍ୱ ଏକଦା ଏହିସବୁ ମତ ବୈଷମ୍ୟର ବିସ୍ତାରକୁ ପ୍ରତିହତ କରୁଥିଲା । ନୂତନ ପ୍ରଧାନ ମନ୍ତ୍ରୀ ଲାଲ ବାହାଦୂର ଶାସ୍ତ୍ରୀ ଇତିପୂର୍ବରୁ ବିଭିନ୍ନ ଉପଦଳ ମଧ୍ୟରେ କୌଶଳପୂର୍ଣ୍ଣ ନୀତି ପରିଚାଳନାରେ କେତେକ ନମନୀୟ ପଦ୍ଧତି ଅନୁସରଣ କରିବାରେ ସଫଳ ହେଲେ ମଧ୍ୟ ଏବେ କଂଗ୍ରେସର କେନ୍ଦ୍ରୀୟ ନେତୃତ୍ୱ ଏବଂ ରାଜ୍ୟ ପର୍ଯ୍ୟାୟରେ ପାର୍ଟି ସଂଗଠନ ମଧ୍ୟରେ କ୍ଷମତାଶାଳୀ ଗୋଷ୍ଠୀଗୁଡ଼ିକର ସ୍ୱାର୍ଥ ଲକ୍ଷ୍ୟ କରିବାରେ ଅଧିକ ଯତ୍ନଶୀଳ ହେବାକୁ ବାଧ୍ୟ ହୋଇଥିଲେ । ରାଜ୍ୟଗୁଡ଼ିକର ପାର୍ଟି ପରିଚାଳନାରେ ପ୍ରଭାବଶାଳୀ ଓ କେନ୍ଦ୍ରୀୟ କଂଗ୍ରେସ ନେତୃତ୍ୱ ବା କେନ୍ଦ୍ରୀୟ ସରକାରର ବ୍ୟକ୍ତିବିଶେଷଙ୍କ ସମର୍ଥକ ଗୋଷ୍ଠୀଗୁଡ଼ିକ କ୍ରମଶଃ ଶକ୍ତିଶାଳୀ ହୋଇ ଉଠିଥିଲେ । ଏଭଳି ଅବସ୍ଥାରେ ବିଭିନ୍ନ କଂଗ୍ରେସ ସଂଗଠନରେ ସ୍ଥାନୀୟ "କର୍ତ୍ତାର" ଭୂମିକା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ : ଯଥା ନିୟମରେ ଏହିସବୁ "କର୍ତ୍ତା" ସ୍ଥାନୀୟ ବୁର୍ଜୁଆମାନଙ୍କର ପ୍ରଭାବଶାଳୀ ଚକ୍ରଗୁଡ଼ିକ ସହିତ ଘନିଷ୍ଠ ଭାବେ ସହଯୋଗିତା କରୁଥିଲେ (ଯଥା, ପଶ୍ଚିମ ବଂଗରେ ଅତୁଲ୍ୟ ଘୋଷ୍, ଉତ୍ତର ପ୍ରଦେଶର ଚନ୍ଦ୍ରଭାନୁ ଗୁପ୍ତ, ଓଡ଼ିଶାରେ ବିଜୁ ପଟ୍ଟନାୟକ) । କଂଗ୍ରେସ ନେତୃତ୍ୱରେ ଦକ୍ଷିଣପନ୍ଥୀମାନଙ୍କର ରାଜନୈତିକ ଗୁରୁତ୍ୱ କେବଳ କେନ୍ଦ୍ର ସହିତ ସେମାନଙ୍କ ସଂପର୍କ ଦ୍ୱାରା ନୁହେଁ, ଗୋଟିଏ ଗୋଟିଏ ରାଜ୍ୟର ଶାସକ ଦଳର ବଡ଼ ବଡ଼ ସଂଗଠନଗୁଡ଼ିକର ସମର୍ଥନ ଉପରେ ମଧ୍ୟ ନିର୍ଭରଶୀଳ ଥିଲା (ଯଥା, ଗୁଜରାଟ ରାଜ୍ୟର କଂଗ୍ରେସ ସମର୍ଥିତ ମୋରାରଜୀ ଦେଶାଇ, ମହାରାଷ୍ଟ୍ରରେ ଅନୁରୂପ ସମର୍ଥନ ପ୍ରାପ୍ତ ଏସ୍.କେ.ପାଟିଲ) ।

କଂଗ୍ରେସ ସଂଗଠନ ମଧ୍ୟରେ ସ୍ଥାନୀୟ ଅଭିଭାବକମାନଙ୍କର କ୍ରମବର୍ଦ୍ଧମାନ ଭୂମିକା ଫଳରେ ପାର୍ଟି ମଧ୍ୟରେ କେବଳ ଉପଦଳୀୟ କନ୍ଦଳ ବୃଦ୍ଧି ପାଇ ନଥିଲା, ରାଜ୍ୟଗୁଡ଼ିକରେ ଏକ ଧରଣର ଦ୍ୱିମେରୁ ବ୍ୟବସ୍ଥା ମଧ୍ୟ ଗଢ଼ି ଉଠିଥିଲା, ଯେଉଁଠି ପ୍ରତିଦ୍ୱନ୍ଦ୍ୱୀ ଉପଦଳଗୁଡ଼ିକ ପ୍ରାୟ ମୁଖ୍ୟ ମନ୍ତ୍ରୀ ଓ ସ୍ଥାନୀୟ "ଦଳ ନେତାଙ୍କୁ" କେନ୍ଦ୍ର କରି ସଂଘବଦ୍ଧ ହେଉଥିଲେ । ନେହରୁଙ୍କ ମୃତ୍ୟୁ ପରେ ପାର୍ଟିର ଆଭ୍ୟନ୍ତରୀଣ ନୀତିର ବାସ୍ତବାୟନ ଓ ସରକାର ଦ୍ୱାରା ଅନୁସୃତ ପଥ ନିର୍ଦ୍ଧାରଣ, ଉଭୟ କ୍ଷେତ୍ରରେ କଂଗ୍ରେସ ସଭାପତି କାମରାଜଙ୍କର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା । ଫଳରେ, ଏହି ଶେଷୋକ୍ତ ପ୍ରବଣତା, ଏପରିକି କେନ୍ଦ୍ରରେ ମଧ୍ୟ, କ୍ରମଶଃ ଅଧିକ ପ୍ରକଟ ହୋଇ ଉଠିଥିଲା ।

ପାର୍ଟିର ଏହି ଆଭ୍ୟନ୍ତରୀଣ ସଂଘାତ ସମୟରେ ଦକ୍ଷିଣପନ୍ଥୀମାନଙ୍କର ଅବସ୍ଥାନ ଆଉରି ମଜବୁତ୍ ହୋଇଥିଲା ଏବଂ ସେମାନେ ସରକାରୀ ନୀତି ଉପରେ ଅଧିକରୁ ଅଧିକ ଚାପ ଦେଉଥିଲେ ।

ଦେଶର ବୃହତ୍ତମ ରାଜନୈତିକ ଦଳ ମଧ୍ୟରେ କେନ୍ଦ୍ରାତିଗ ପ୍ରବଣତାର ଉଦ୍‌ଭବ ଏବଂ ଦକ୍ଷିଣପନ୍ଥୀମାନଙ୍କର ଶକ୍ତି ବୃଦ୍ଧି ଭାରତର ଯାବତୀୟ ରାଜନୈତିକ କର୍ମନୀତି ଉପରେ ସେମାନଙ୍କ ପ୍ରଭାବ ପକାଉଥିଲା ।

ଶାସକ ଦଳ ମଧ୍ୟରେ ନିଟୋଳ ଐକ୍ୟ ଦୁର୍ବଳ ହୋଇ ଯିବାଟା ଉଭୟ ଦକ୍ଷିଣ ଏବଂ ବାମପନ୍ଥୀ ବିରୋଧୀ ଦଳଗୁଡ଼ିକୁ ସକ୍ରିୟତର କର୍ମକୌଶଳ ଗ୍ରହଣ ଦିଗରେ ଉତ୍ସାହ ଯୋଗାଇଥିଲା । କ୍ରମବର୍ଦ୍ଧମାନ ଶ୍ରେଣୀ ସଂଗ୍ରାମର ପରିପ୍ରେକ୍ଷିତରେ ଏବଂ ଅମୀମାଂସିତ ବହୁ ଗୁରୁତ୍ୱପୂର୍ଣ୍ଣ ସାମାଜିକ ସମସ୍ୟା ସମାଧାନର ଉଦ୍ୟୋଗ ପର୍ବରେ ଅନେକ ବିରୋଧୀ ଦଳର ଆଭ୍ୟନ୍ତରୀଣ କନ୍ଦଳ ମଧ୍ୟ ତୀବ୍ର ହୋଇ ଉଠିଥିଲା । ଉଦ୍‌ବେଳିତ ସାମାଜିକ-ରାଜନୈତିକ ଆବର୍ତ୍ତନରୁ ନିଜସ୍ୱ ପଥ ସନ୍ଧାନ କରିବାର ପ୍ରଚେଷ୍ଟା ମଧ୍ୟରୁ ଏହି ପରିସ୍ଥିତି ସୃଷ୍ଟି ହୋଇଥିଲା ।

ସ୍ୱଳ୍ପସ୍ଥାୟୀ ମିଳନ ପରେ (୧୯୬୪) ପ୍ରଜା-ସୋସାଲିଷ୍ଟ ପାର୍ଟି (ପି.ଏସ୍.ପି.) ଓ ସୋସାଲିଷ୍ଟ ପାର୍ଟି ନିଜ ନିଜର ପଥ ଅନୁସରଣ କରିବାକୁ ଆରମ୍ଭ କରି ଦେଇଥିଲେ (୧୯୬୫) । ଏନ୍.ଜି.ଗୋରେ ଓ ଏସ୍.ଏନ୍.ଦ୍ୱିବେଦୀଙ୍କ ନେତୃତ୍ୱାଧୀନ ପ୍ରଜା-ସୋସାଲିଷ୍ଟ ପାର୍ଟିର ଏକ ପୂର୍ବତନ ଅଂଶ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି (ଏସ୍.ଏସ୍.ପି.) ଠାରୁ ଅଲଗା ହୋଇ ଯାଇଥିଲା ।

ଗଣ ଆନ୍ଦୋଳନ ଏବଂ ଆଇନ୍ ସଭାଗୁଡ଼ିକରେ କମ୍ୟୁନିଷ୍ଟ ପାର୍ଟି ସହିତ ସହଯୋଗିତାର ପ୍ରଶ୍ନ ଉପରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ବିଭିନ୍ନ ଉପଦଳର ଭିନ୍ନ ଭିନ୍ନ ପଦକ୍ଷେପ ଗ୍ରହଣ କରିବା ଫଳରେ ମୂଳତଃ ପାର୍ଟି ନେତୃତ୍ୱରେ ଦ୍ୱନ୍ଦ୍ୱ ଦେଖା ଦେଇଥିଲା । ପୂର୍ବତନ ପ୍ରଜା-ସୋସାଲିଷ୍ଟ ପାର୍ଟିର ଦକ୍ଷିଣପନ୍ଥୀ ନେତାମାନେ କମ୍ୟୁନିଷ୍ଟ ଓ ସୋଭିଏତ୍ ୟୁନିଅନ୍ ବିରୋଧୀ ଦୃଷ୍ଟିଭଙ୍ଗି ଅବ୍ୟାହତ ରଖିଥିଲେ, କିନ୍ତୁ ଏସ୍.ଏମ୍.ଯୋଶୀ, ରାମମନୋହର ଲୋହିଆ ଓ ମଧୁ ଲିମାୟେ କମ୍ୟୁନିଷ୍ଟମାନଙ୍କ ସହିତ କିଛି ପରିମାଣରେ ସହଯୋଗିତା କରିବାକୁ ପ୍ରସ୍ତୁତ ଥିଲେ । ସମାଜବାଦୀମାନଙ୍କର ଦଳେ ସଦସ୍ୟ ପାର୍ଟିରୁ ପଦତ୍ୟାଗ କରି କଂଗ୍ରେସରେ ଯୋଗ ଦେବା ଦ୍ୱାରା ସୋସାଲିଷ୍ଟମାନେ ଅନେକ ଦୁର୍ବଳ ହୋଇ ପଡ଼ିଥିଲେ । ଏହି ଦଳତ୍ୟାଗୀମାନଙ୍କର ନେତା ଥିଲେ ପ୍ରଜା-ସୋସାଲିଷ୍ଟ ପାର୍ଟିର ପ୍ରତିଷ୍ଠାତା ଅଶୋକ ମେହ୍‌ତା । ଉଲ୍ଲେଖଯୋଗ୍ୟ ଯେ, ସେତେବେଳେ ସେ ଭାରତ ସରକାରର ଯୋଜନା ମନ୍ତ୍ରଣାଳୟର ଦାୟିତ୍ୱ ଗ୍ରହଣ କରିଥିଲେ ।

ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ଭାଙ୍ଗିଯିବା ପରେ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର "ହିନ୍ଦ୍ ମଜ୍‌ଦୁର ପଞ୍ଚାୟତ"

ଏହାର ପ୍ରଭାବରେ ରହିଥିଲା । କିନ୍ତୁ ବୃହତ୍ତର ଟ୍ରେଡ୍‌ୟୁନିଅନ୍ "ହିନ୍ଦ୍ ମଜ୍‌ଦୁର ସଭା" ଅଧିକ ସ୍ୱାଧୀନତା ଲାଭ କରିଥିଲା । ଶେଷୋକ୍ତ ସଂଗଠନର ନେତୃତ୍ୱ ପି.ଏସ୍.ପି., ଏସ୍.ଏସ୍.ପି. ଏବଂ ଅନ୍ୟାନ୍ୟ ରାଜନୈତିକ ଶକ୍ତିର ପ୍ରଭାବାଧୀନ ଥିବା ଦ୍ୱାରା ଏହା ଘଟିଥିଲା ।

## କମ୍ୟୁନିଷ୍ଟ ଆନ୍ଦୋଳନର ଆଭ୍ୟନ୍ତରୀଣ ପରିସ୍ଥିତି

୧୯୬୩ ମସିହାର ଶେଷ ବେଳକୁ ଚୀନ୍-ଭାରତ ସଂଘର୍ଷଜାତ ଉତ୍ତେଜନା କିଛି ପରିମାଣରେ ପ୍ରଶମିତ ହେଲା ପରେ କମ୍ୟୁନିଷ୍ଟ ପାର୍ଟି ପୁନର୍ବାର ଶ୍ରମଜୀବୀମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଗଣ ଆନ୍ଦୋଳନରେ ଅବତୀର୍ଣ୍ଣ ହୋଇଥିଲା ।

ଦଶ ବର୍ଷ କାଳ ବିରତି ପରେ ୧୯୬୩ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନର କର୍ମୀମାନଙ୍କ ସହିତ ଏକ ସମ୍ମିଳନୀରେ ମିଳିତ ହୋଇଥିଲେ । ସ୍ୱାଧୀନତାର ପରବର୍ତ୍ତୀ ଖ୍ରୀଷ୍ଟାବ୍ଦର ପରିବର୍ତ୍ତିତ ପରିସ୍ଥିତିରେ ଟ୍ରେଡ୍‌ୟୁନିଅନ୍‌ସମୂହର କର୍ତ୍ତବ୍ୟ ସଂପର୍କରେ ଏହି ସମ୍ମିଳନୀରେ ଆଲୋଚନା ହୋଇଥିଲା ।

ଜିନିଷପତ୍ରର ମୂଲ୍ୟ ଓ କର ହ୍ରାସ, ମଜୁରି ବୃଦ୍ଧି ଏବଂ ବ୍ୟାଙ୍କ୍ ଓ କେତେକ ଶିଳ୍ପ ଶାଖାର ଜାତୀୟକରଣ ଦାବି ଘେନି ବ୍ୟାପକ ଗଣ ଆନ୍ଦୋଳନ ଆହ୍ୱାନ ଦେଇ ଏଥିରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

୧୯୬୪ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ଭାରତର କମ୍ୟୁନିଷ୍ଟ ପାର୍ଟି ରାଷ୍ଟ୍ରାୟତ୍ତ ସଂସ୍ଥାଗୁଡ଼ିକର ଶ୍ରମିକ ଓ ଅଫିସ୍ କର୍ମଚାରୀମାନଙ୍କର ଏକ ଜାତୀୟ ସମ୍ମିଳନୀ ଆହ୍ୱାନ କରିଥିଲା । ଆଶୁ ଅର୍ଥନୈତିକ ଲକ୍ଷ୍ୟ ସହିତ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ନିଯୁକ୍ତ କର୍ମୀମାନଙ୍କର ଗଣତାନ୍ତ୍ରିକ ଅଧିକାର ସଂରକ୍ଷଣର ଆନ୍ଦୋଳନ ଏବଂ ଏହି କ୍ଷେତ୍ର ସହିତ ସଂପୃକ୍ତ ସଂସ୍ଥାସମୂହର ସୁଦକ୍ଷ ପରିଚାଳନାର ବିକାଶ ଘଟାଇବାର ଦାବି ଯେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର କର୍ତ୍ତବ୍ୟ, ଏହା ସମ୍ମିଳନୀରେ ସ୍ପଷ୍ଟ ହୋଇ ଉଠିଥିଲା ।

୧୯୬୩ ଖ୍ରୀଷ୍ଟାବ୍ଦ ଶେଷରେ ଶ୍ରମଜୀବୀମାନଙ୍କୁ ନେଇ ଏକ ବ୍ୟାପକ ଗଣ ଆନ୍ଦୋଳନ ଆରମ୍ଭ କରିଥିଲା କମ୍ୟୁନିଷ୍ଟ ପାର୍ଟି । ଏହି ବର୍ଷ ଅଗଷ୍ଟ ମାସରେ ବମ୍ବେରେ ସୋସାଲିଷ୍ଟ ପାର୍ଟି ଦ୍ୱାରା ଆୟୋଜିତ "ବନ୍ଦ୍"ରେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ଯୋଗ ଦେଇଥିଲା ।

ଗଣ ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟରେ ଭାରତର କମ୍ୟୁନିଷ୍ଟ ପାର୍ଟି "ମହା ଆବେଦନ ପତ୍ରରେ" ଦେଶବ୍ୟାପୀ ସ୍ୱାକ୍ଷର ସଂଗ୍ରହ ଅଭିଯାନ ଆରମ୍ଭ କରିଥିଲା । ୧୯୬୩ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ୧୩ ତାରିଖରେ ଦିଲ୍ଲୀରେ ଅନୁଷ୍ଠିତ ସମସ୍ତ ପ୍ରଦେଶରୁ ଆଗତ ପ୍ରତିନିଧିଙ୍କର ସମେତ "ମହାଭିଯାନ" ସହ ଆବେଦନପତ୍ରଟି ପାର୍ଲିଆମେଣ୍ଟରେ ଦାଖଲ କରାଯାଇଥିଲା । ଆବେଦନପତ୍ରରେ ସାମରିକ ମେଣ୍ଟ ବହିର୍ଭୂତ ନୀତି, ରାଷ୍ଟ୍ରୀୟ ଅର୍ଥନୈତିକ ପରିକଳ୍ପନା, ପ୍ରତିରକ୍ଷା ଉଦ୍ୟୋଗ ପ୍ରତି ସମର୍ଥନ ସମେତ ବାଧ୍ୟତାମୂଳକ ଋଣଦାନ ବ୍ୟବସ୍ଥା ରଦ୍, ମହଜୁଦ୍ ସ୍ୱର୍ଣ୍ଣ ଉପରେ ନିୟନ୍ତ୍ରଣ ଜାରି, ଦ୍ରବ୍ୟ ଦର ଓ କର ହ୍ରାସ ଏବଂ ବ୍ୟାଙ୍କ୍, ତୈଳଶିଳ୍ପ ଓ ବୈଦେଶିକ ବାଣିଜ୍ୟ ଜାତୀୟକରଣର ଦାବି କରାଯାଇଥିଲା ।

ଏହିସବୁ ଦାବିକୁ ଜାତୀୟ କଂଗ୍ରେସର ପ୍ରଗତିଶୀଳ ଅଂଶ ଏବଂ ବାମପନ୍ଥୀ ବିରୋଧୀଦଳଗୁଡ଼ିକ ସମର୍ଥନ କରିଥିଲେ । "ମହା ଆବେଦନ ପତ୍ରରେ" ସ୍ୱାକ୍ଷରକାରୀମାନଙ୍କର ସଂଖ୍ୟା ଥିଲା ୧ କୋଟି

୨ ଲକ୍ଷାଧିକ, ଅର୍ଥାତ୍, ୧୯୬୨ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନରେ କମ୍ୟୁନିଷ୍ଟମାନେ ପାଇଥିବା ଭୋଟ ସହିତ ପ୍ରାୟ ସମାନ । ସାରା ଦେଶରୁ ଆଗତ ୨ ଲକ୍ଷାଧିକ ଲୋକ "ମହାଭିଯାନରେ" ଯୋଗ ଦେଇଥିଲେ ।

୧୯୬୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ସାରା ଦେଶର ପ୍ରତିନିଧିମାନଙ୍କୁ ନେଇ ଏକ ସମ୍ମିଳନୀ ଆହ୍ୱାନ କରିଥିଲା ଏବଂ ଏଥିରେ ୧୯୬୪ ଖ୍ରୀଷ୍ଟାବ୍ଦରେ ଶ୍ରମଜୀବୀମାନଙ୍କୁ ନେଇ ଗଣ ଆନ୍ଦୋଳନ ଆରମ୍ଭ କରିବାକୁ ଆହ୍ୱାନ ଦିଆଯାଇଥିଲା ।

ଭାରତର କମ୍ୟୁନିଷ୍ଟ ପାର୍ଟି ଓ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତାମାନଙ୍କ ଉଦ୍ୟୋଗରେ ଏକ ତିନି ପର୍ଯ୍ୟାୟର କର୍ମସୂଚୀ ରଚିତ ହୋଇଥିଲା । ଏହାର ପ୍ରଥମ ପର୍ଯ୍ୟାୟରେ ସମଗ୍ର ଦେଶରେ ୧୯୬୪ ଖ୍ରୀଷ୍ଟାବ୍ଦ ଫେବୃଆରୀ ୨୦ ତାରିଖରୁ ଟ୍ରେଡ୍‌ୟୁନିଅନ୍ କର୍ମୀମାନେ ୩ ଦିନିଆ ଅନଶନ ଧର୍ମଘଟ ପାଳନ କରିଥିଲେ; ଦ୍ୱିତୀୟ ପର୍ଯ୍ୟାୟ ହିସାବରେ ମାର୍ଚ୍ଚ ୬ ତାରିଖ ଦିନ କଳକାରଖାନା ସମ୍ମୁଖରେ ୧୫ ମିନିଟିଆ ଏକ ପ୍ରତୀକ ବିକ୍ଷୋଭରେ ହଜାର ହଜାର କର୍ମୀ ଅଂଶଗ୍ରହଣ କରିଥିଲେ; ପ୍ରତ୍ୟେକ ରାଜ୍ୟରେ ଦିନିକିଆ "ବନ୍ଦ୍" ସହ ଜାତୀୟ ସତ୍ୟାଗ୍ରହ ମାଧ୍ୟମରେ କର୍ମସୂଚୀର ଶେଷ ପର୍ଯ୍ୟାୟଟି ପାଳିତ ହୋଇଥିଲା ଜୁଲାଇ ଓ ଅଗଷ୍ଟ ମାସରେ ।

କେରଳ, ଗୁଜରାଟରେ (ଭାରତର କମ୍ୟୁନିଷ୍ଟ ପାର୍ଟି ଓ ଦୁଇଟି ଗଣ ସଂଗଠନ ନେତୃତ୍ୱରେ ପ୍ରଧାନତଃ ରାଜଧାନୀ ଆହ୍‌ମଦାବାଦରେ), ମହାରାଷ୍ଟ୍ର (ପ୍ରଧାନତଃ ବମ୍ବେରେ ବାମପନ୍ଥୀ ବିରୋଧୀ ଦଳଗୁଡ଼ିକର ଉଦ୍ୟୋଗରେ, ୩୦ ଲକ୍ଷାଧିକ ଲୋକ ଏଥିରେ ଯୋଗ ଦେଇଥିଲେ) ଓ ଉତ୍ତର ପ୍ରଦେଶରେ (କାନ୍‌ପୁରକୁ କେନ୍ଦ୍ର କରି) ଦିନିକିଆ "ବନ୍ଦ୍" (ସାଧାରଣ ଧର୍ମଘଟ ଓ ପ୍ରତିବାଦ ସମାବେଶ) ପାଳିତ ହୋଇଥିଲା ।

ଅଗଷ୍ଟ ୨୪ରୁ ୨୮ ତାରିଖ ପର୍ଯ୍ୟନ୍ତ ସାରା ଦେଶରେ ଆଇନ୍ ଅମାନ୍ୟ ଆନ୍ଦୋଳନ, "ମହା ସତ୍ୟାଗ୍ରହ" ଆରମ୍ଭ ହୋଇଥିଲା ଏବଂ ସରକାରୀ ଅଫିସ୍, ବ୍ୟାଙ୍କ୍, ଷ୍ଟକ୍ ଏକ୍ସଚେଞ୍ଜ ଓ ବଜାର ସମ୍ମୁଖରେ ପିକେଟିଂ ଓ ବିକ୍ଷୋଭ ପ୍ରଦର୍ଶନ ହୋଇଥିଲା । ୮୦ ହଜାର ଲୋକ ଏଥିରେ ଯୋଗ ଦେଇଥିଲେ । ଉଲ୍ଲେଖଯୋଗ୍ୟ ଯେ, ଏହି ସଂଖ୍ୟାଟି ସ୍ୱାଧୀନତା ପରବର୍ତ୍ତୀ କାଳ ମଧ୍ୟରେ ବୃହତ୍ତମ । ପିକେଟିଂ କରି ଗିରଫ୍ ହୋଇଥିଲେ ୨୫ ହଜାର ସତ୍ୟାଗ୍ରହୀ ।

ସେପ୍‌ଟେମ୍ବର ୨୫ ତାରିଖରେ ଅନୁଷ୍ଠିତ "ସାରା ଭାରତ ବନ୍ଦ୍" କର୍ମସୂଚୀଟି ପାର୍ଟି ପ୍ରତ୍ୟାହାର କରି ନେଇଥିଲା । ଅନ୍ୟାନ୍ୟ ଟ୍ରେଡ୍‌ୟୁନିଅନ୍ ବିଶେଷତଃ, "ହିନ୍ଦ୍ ମଜ୍‌ଦୁର ସଭାର" ସମର୍ଥନ ନମିଳିବାରୁ ଏହା କରିବାକୁ ପଡ଼ିଥିଲା ।

ଭାରତୀୟ ଜନସାଧାରଣଙ୍କ ପରିଚିତ ଐତିହ୍ୟବାହୀ ସଂଗ୍ରାମ, ସେଇ ଔପନିବେଶିକ କାଳରୁ ପ୍ରଚଳିତ ହରତାଳ ଓ ସତ୍ୟାଗ୍ରହ ଜରିଆରେ କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ବାମପନ୍ଥୀ ଶକ୍ତିସମୂହ ଜନସାଧାରଣଙ୍କ ମଧ୍ୟରେ ପ୍ରଭାବ ବିସ୍ତାର କରିଥିଲେ ଏବଂ ଆନ୍ଦୋଳନର ଏହି ନୂତନ କ୍ରିୟା କେନ୍ଦ୍ର ସେତେବେଳେ ବିରୋଧୀ ବାମପନ୍ଥୀମାନଙ୍କର ଐକ୍ୟ ବୃଦ୍ଧି କରିବାରେ ସହାୟକ ହୋଇଥିଲା ।

୧୯୬୪ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଧର୍ମଘଟ ଆନ୍ଦୋଳନ ଦେଶ ସାରା ବ୍ୟାପୀ ଯାଇଥିଲା । ୧୯୬୫ ଖ୍ରୀଷ୍ଟାବ୍ଦରେ ଧର୍ମଘଟ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ବାମପନ୍ଥୀ ଟ୍ରେଡ୍‌ୟୁନିଅନ୍ ପ୍ରତିନିଧିମାନଙ୍କ ଉଦ୍ୟୋଗରେ ରାଜ୍ୟ ଓ ଜାତୀୟ ପର୍ଯ୍ୟାୟରେ ସଂଗ୍ରାମ ପରିଷଦ ପ୍ରତିଷ୍ଠିତ ହୋଇଥିଲା ।

ନିଖିଳ ଭାରତ ସଂଗ୍ରାମ ପରିଷଦ ସରକାର ନିକଟରେ ଅର୍ଥନୈତିକ ଓ ରାଜନୈତିକ ପ୍ରଶ୍ନାଦି ଘେନି ଶ୍ରମଜୀବୀମାନଙ୍କର ଦାବି ସମ୍ବଳିତ ଏକ ସନନ୍ଦ ଉପସ୍ଥାପିତ କରିଥିଲା । ୧୯୬୫ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ୨୧ ସନନ୍ଦର ସମର୍ଥନରେ "ଜାତୀୟ ସଂଗ୍ରାମ ଦିବସ" ପାଳନର ସିଦ୍ଧାନ୍ତଟି ଶେଷକୁ ସେଇ ମାସରେ ଭାରତ-ପାକିସ୍ତାନ ଯୁଦ୍ଧ ଆରମ୍ଭ ହୋଇ ଯିବା ଦ୍ୱାରା ଆଉ ବାସ୍ତବାୟିତ ହୋଇ ପାରିଲା ନାହିଁ ।

ଗଣ ଆନ୍ଦୋଳନ ବୃଦ୍ଧି ଏବଂ କମ୍ୟୁନିଷ୍ଟ ପାର୍ଟିର ବର୍ଦ୍ଧମାନ ପ୍ରଭାବ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରସାର ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଦ୍ୱାରା ବ୍ୟାହତ ହୋଇଥିଲା । ୧୯୬୨ ମସିହା ଶରତ କାଳରେ ଆରମ୍ଭ ହୋଇଥିବା ଏହି ପ୍ରକ୍ରିୟାଟି ୧୯୬୪, ଅକ୍ଟୋବରରେ ବେଶ୍ କେତେକ ପାର୍ଟି ନେତାଙ୍କ ପଦତ୍ୟାଗ ଫଳରେ ଶୀର୍ଷଦେଶରେ ପହଞ୍ଚିଥିଲା । ଏହି ଶେଷୋକ୍ତ ନେତାମାନେ କଲିକତାରେ ସମାନ୍ତରାଳ ଏକ କମ୍ୟୁନିଷ୍ଟ ପାର୍ଟିର ସମ୍ମିଳନୀ ଆରମ୍ଭ କରି ଏକ ପୃଥକ୍ କର୍ମସୂଚୀ ସମେତ ସାଧାରଣ ସଂପାଦକ ପି.ସୁନ୍ଦରାଇୟାଙ୍କ ନେତୃତ୍ୱରେ ଏକ କେନ୍ଦ୍ରୀୟ କମିଟି ଗଠନ କରିଥିଲେ । ଏହି ଭାବେ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ପ୍ରତିଷ୍ଠିତ ହୋଇଥିଲା ।

ଭାରତର କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱକୁ ସଂଶୋଧନବାଦୀ ବୋଲି ଅଭିଯୁକ୍ତ କରି ଏହି ପାର୍ଟିର ନେତାମାନେ ଶ୍ରମିକ, କୃଷକ ଓ ବୁଦ୍ଧିଜୀବୀମାନଙ୍କ ଗଣ ସଂଗଠନରେ ଭାରତର କମ୍ୟୁନିଷ୍ଟ ପାର୍ଟିର ପ୍ରଭାବକୁ ହ୍ରାସ କରିବା ଉଦ୍ଦେଶ୍ୟରେ ଏକ ଭାବାଦର୍ଶଗତ ପ୍ରଗ୍ରରାଭିଯାନ ଚଳାଇଥିଲେ । ଫଳରେ, ରାଜ୍ୟ ଓ ଜାତୀୟ ପର୍ଯ୍ୟାୟରେ ବିରୋଧୀ ବାମପନ୍ଥୀମାନଙ୍କର ଐକ୍ୟବଦ୍ଧ ଆନ୍ଦୋଳନ ପରିଗ୍ଳନାର ସମ୍ଭାବନା ସୀମିତ ହୋଇ ପଡ଼ିଥିଲା ।

୧୯୬୪ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ବମ୍ବେରେ ଅନୁଷ୍ଠିତ ଭାରତର କମ୍ୟୁନିଷ୍ଟ ପାର୍ଟିର ୭ମ କଂଗ୍ରେସ ଦେଶର ରାଜନୈତିକ ପରିସ୍ଥିତି ଓ କମ୍ୟୁନିଷ୍ଟ ଆନ୍ଦୋଳନ ବିଭକ୍ତ ହୋଇଯିବାର ପରବର୍ତ୍ତୀ ଅବସ୍ଥା ସଂପର୍କରେ ପୁଙ୍ଖାନୁପୁଙ୍ଖ ବ୍ୟାଖ୍ୟା ଉପସ୍ଥାପିତ କରିଥିଲା । ବମ୍ବେରେ ଗୃହୀତ କର୍ମସୂଚୀରେ ଏକ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନର ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ଏହା ପରେ ଆରମ୍ଭ ହୋଇଥିଲା ଶ୍ରମଜୀବୀମାନଙ୍କର ଗଣ ସଂଗଠନଗୁଡ଼ିକ ଉପରେ ପାର୍ଟି ବିଭାଗ ହେତୁ ଦୁର୍ଭାଗ୍ୟଜନକ ଫଳାଫଳକୁ ଅତିକ୍ରମ କରିବାର କଷ୍ଟସାଧ୍ୟ କାର୍ଯ୍ୟ ।

## ଭାରତ-ପାକିସ୍ତାନ ଯୁଦ୍ଧ

୧୯୬୫ ମସିହାର ପ୍ରାରମ୍ଭରେ ଭାରତ-ପାକିସ୍ତାନ ମଧ୍ୟରେ ସଂପର୍କ ଖୁବ୍ ଉତ୍ତେଜନାପୂର୍ଣ୍ଣ ଥିଲା । କାଶ୍ମୀର ସମସ୍ୟା ଘେନି ପୁନର୍ବାର ଆରମ୍ଭ ହୋଇ ଯାଇଥିଲା ଶତ୍ରୁତାମୂଳକ ଅଭିଯୋଗ ଆଉ ପ୍ରତିଅଭିଯୋଗ । ଆୟୁବ ଖାଁଙ୍କ ନେତୃତ୍ୱାଧୀନ ପାକିସ୍ତାନର ପ୍ରତିକ୍ରିୟାଶୀଳ ସରକାର ଭାରତ ବିରୋଧୀ ଉଗ୍ରଜାତୀୟତାବାଦୀ ଦୃଷ୍ଟିଭଙ୍ଗିର ଲାଳନରେ ସହାୟତା ଯୋଗାଉଥିଲା । ୧୯୬୫ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ କଚ୍ଛର ରାନ୍ ଅଞ୍ଚଳରେ ଏକ ସୀମାନ୍ତ ସଂଘର୍ଷ ଲାଗିଗଲା ଏବଂ ଏହା ପରେ କାଶ୍ମୀରର କେତେକ ଗୋଷ୍ଠୀ ପାକିସ୍ତାନର ଚରମପନ୍ଥୀ ଚକ୍ରଗୁଡ଼ିକର ପ୍ରରୋଚନାରେ ଅଗଷ୍ଟ ମାସରେ ସେଠାରେ ଅଶାନ୍ତି ସୃଷ୍ଟି ପାଇଁ ଉଦ୍ୟମ କରିଥିଲେ । କାଶ୍ମୀରର ଭାରତୀୟ ସୈନ୍ୟମାନେ ପାକିସ୍ତାନୀ ସେନାବାହିନୀ

ସହିତ ସେଠାରେ ସଂଘର୍ଷରେ ଲିପ୍ତ ହୋଇଥିଲେ ଏବଂ ଅଗଷ୍ଟ ମାସ ସାରା ଇତସ୍ତତଃ ଲଢ଼େଇ ଚାଲିଥିଲା । ଶେଷକୁ ସେପ୍ଟେମ୍ବର ୬ ତାରିଖରେ ପଞ୍ଜାବ ସୀମାନ୍ତରେ ଯୁଦ୍ଧ ଆରମ୍ଭ ହୋଇଗଲା ।

ସୋଭିଏତ୍ ୟୁନିଅନ୍ ଏହି ଯୁଦ୍ଧ ବନ୍ଦ କରିବା ପାଇଁ ଗୁରୁତ୍ୱପୂର୍ଣ୍ଣ ଅବଦାନ ରଖିଥିଲା । ସେଇ ଅଗଷ୍ଟ ମାସରେ ସେ ଏକ ଶାନ୍ତି ପରିକଳ୍ପନା ଉପସ୍ଥାପିତ କରିଥିଲା । ସୋଭିଏତ୍ ୟୁନିଅନ୍‌ର ମନ୍ତ୍ରୀ ପରିଷଦର ସଭାପତି ଏ.ଏନ୍.କସିଗିନ୍ ଏହି ସଂଘର୍ଷ ମୀମାଂସା ପାଇଁ ସୋଭିଏତ୍ ୟୁନିଅନ୍‌ର ସଦିଚ୍ଛା କଥା ଜଣାଇ ଭାରତ ଓ ପାକିସ୍ତାନର ରାଷ୍ଟ୍ରମୁଖ୍ୟମାନଙ୍କୁ ଏକ ବାର୍ତ୍ତା ପଠାଇଥିଲେ । ପ୍ରସ୍ତାବଟି ଗୃହୀତ ହେଲା ପରେ ୧୯୬୬ ଖ୍ରୀଷ୍ଟାବ୍ଦ ଜାନୁଆରୀ ୩-୧୦ ଜାନୁଆରୀ ପର୍ଯ୍ୟନ୍ତ ଏ.ଏନ୍. କସିଗିନ୍, ଲାଲ ବାହାଦୂର ଶାସ୍ତ୍ରୀ ଓ ଆୟୁବ ଖାଁଙ୍କ ଉପସ୍ଥିତିରେ ତାସ୍‌ଖନ୍ଦରେ ଅନୁଷ୍ଠିତ ଏକ ସମ୍ମିଳନୀ ଆରମ୍ଭ ହୋଇଥିଲା । ଏହି ସମ୍ମିଳନୀ ସାଫଲ୍ୟ ମଣ୍ଡିତ ହୋଇଥିଲା ଏବଂ ଏଥିରେ ତାସ୍‌ଖନ୍ଦ ଘୋଷଣା ସ୍ୱାକ୍ଷରିତ ହୋଇଥିଲା । ଏହି ଘୋଷଣା ଅନୁଯାୟୀ ସଂଘର୍ଷର ରାଜନୈତିକ ଓ ସାମରିକ ସର୍ତ୍ତାଦି ନିର୍ଦ୍ଧାରଣ ସମେତ ଦୁଇ ଦେଶ ମଧ୍ୟରେ ସଂପର୍କର ସ୍ୱାଭାବିକୀକରଣର ପଥ ଖୋଲି ଯାଇଥିଲା ।

ଏହି ସଂବାଦକୁ କେବଳ ଭାରତ-ପାକିସ୍ତାନ ଉପମହାଦେଶରେ ନୁହେଁ, ସାରା ଦୁନିଆର ଶାନ୍ତିକାମୀ ଲୋକେ ସ୍ୱାଗତ ଜଣାଇଥିଲେ । କିନ୍ତୁ ଘୋଷଣାଟି ସ୍ୱାକ୍ଷରିତ ହେଲା ପରେ ଲାଲ ବାହାଦୂର ଶାସ୍ତ୍ରୀଙ୍କ ଆକସ୍ମିକ ମୃତ୍ୟୁ ଏହି ଆନନ୍ଦୋତ୍ସବ ଉପରେ ଏକ ବିଷାଦର ଛାୟା ଖେଳେଇ ଦେଇଥିଲା । ଭାରତର ପ୍ରଧାନ ମନ୍ତ୍ରୀଙ୍କର ଏହି ମୃତ୍ୟୁ ଫଳରେ ଭାରତର ଆଭ୍ୟନ୍ତରୀଣ ରାଜନୈତିକ ମଞ୍ଚରେ ନୂତନ ଜଟିଳତା ଦେଖା ଦେଲା ।

ଏହି ନୂତନ ଜଟିଳତା ୧୯୬୫-୧୯୬୬ ଖ୍ରୀଷ୍ଟାବ୍ଦର ଅନାବୃଷ୍ଟି ହେତୁ ବଡ଼ ଧରଣର ଅର୍ଥନୈତିକ ଅସୁବିଧା ଏବଂ ବିଦେଶୀ ଓ ସ୍ୱଦେଶୀ ଶକ୍ତିଶାଳୀ ପୁଞ୍ଜିବାଦୀ ସଂସ୍ଥାସମୂହର କ୍ରମବର୍ଦ୍ଧମାନ ଚାପ ସହିତ ସଂପୃକ୍ତ ଥିଲା । ଭାରତ-ପାକିସ୍ତାନ ଯୁଦ୍ଧ ଫଳରେ ଏହା ଆଉରି ତୀବ୍ର ହୋଇ ଉଠିଥିଲା ।

## ଷାଠିଏ ଦଶକର ଅର୍ଥନୈତିକ ସଂକଟ

ଷାଠିଏ ଦଶକର ମଧ୍ୟ ଭାଗରୁ ଦେଶର ପୁଞ୍ଜିବାଦୀ ବିକାଶର ମଜ୍ଜାଗତ ଗଭୀର ଦ୍ୱନ୍ଦ୍ୱରାଶି କ୍ରମଶଃ ସ୍ପଷ୍ଟ ହୋଇ ଉଠୁଥିଲା । ଏସବୁ ହେଲା : ସଞ୍ଚୟର ନିମ୍ନ ହାର, ଦେଶୀୟ ବଜାରର ସଂକୀର୍ଣ୍ଣତା, ଶିଳ୍ପ ବିପ୍ଳବର ଅପୂର୍ଣ୍ଣତା, ଲଗ୍ନୀଯୋଗ୍ୟ ପୁଞ୍ଜିର ଅଭାବ, କୃଷି କ୍ଷେତ୍ରରେ ପୁଞ୍ଜିବାଦୀ ବିକାଶର ନିମ୍ନ ମାତ୍ରା, ବଣିକ ଓ ମହାଜନମାନଙ୍କ ପୁଞ୍ଜିର ଅବ୍ୟାହତ ମୁଖ୍ୟ ଭୂମିକା, ବିଦେଶୀ ପୁଞ୍ଜି ଉପରେ ଦେଶର ଅର୍ଥନୀତିର ସୁଦୂରପ୍ରସାରୀ ନିର୍ଭରତା, ରାଷ୍ଟ୍ରୀୟର ପୁଞ୍ଜିବାଦର କ୍ରମବର୍ଦ୍ଧମାନ ଦୁର୍ବଳତାର ବହିଃ ପ୍ରକାଶ (ସୀମିତ ପ୍ରଭାବ, ଅପାରଗତା, ଅମଲାତନ୍ତ୍ର ଆଦି), ପରିକଳ୍ପନାର ସୀମିତ ଓ ଅସଙ୍ଗତିପୂର୍ଣ୍ଣ ଚରିତ୍ର, ଅଯଥେଷ୍ଟ ଅର୍ଥଗତ ସମସ୍ୟା, ସାମାଜିକ-ଅର୍ଥନୈତିକ ଅସଙ୍ଗତି ବୃଦ୍ଧି ଆଦି । ଦେଶର ପୂରା ଅର୍ଥନୀତି ବଡ଼ ଧରଣର ଅସୁବିଧାର ସମ୍ମୁଖୀନ ହୋଇଥିଲା ଏବଂ କେବଳ ପୁଞ୍ଜିବାଦୀ କ୍ଷେତ୍ରର ଅନ୍ତର୍ଗତ କ୍ରମବର୍ଦ୍ଧମାନ ଦ୍ୱନ୍ଦ୍ୱ ହେତୁ ନୁହେଁ, ବିକାଶମାନ ପୁଞ୍ଜିବାଦୀ କ୍ଷେତ୍ର ଏବଂ ବନ୍ଧ୍ୟାବସ୍ଥାରେ ପତିତ ଅର୍ଥନୀତି, ପ୍ରାକ୍ ପୁଞ୍ଜିବାଦୀ କ୍ଷେତ୍ର ମଧ୍ୟରେ ବର୍ଦ୍ଧମାନ ଦ୍ୱନ୍ଦ୍ୱରାଶି ଓ ପାର୍ଥକ୍ୟ ପାଇଁ ଏହା ମଧ୍ୟ ଘଟିଥିଲା । ଦେଶୀୟ ଉତ୍ପାଦନର ଦୁଇ ତୃତୀୟାଂଶ ଅର୍ଥନୀତିର ଏହି

ଶେଷୋକ୍ତ କ୍ଷେତ୍ରର ଅନ୍ତର୍ଭୁକ୍ତ ଥିଲା ଏବଂ ତାହା ଭାରତର ପୁଞ୍ଜିବାଦ ବିକାଶକୁ ବ୍ୟାହତ କରୁଥିଲା । ଏହିସବୁ ଦ୍ୱନ୍ଦ୍ୱରାଶି ସହ କୃଷି ଉତ୍ପାଦନରେ ପ୍ରକଟିତ ସମସ୍ୟା ୧୯୬୫-୧୯୬୭ ଖ୍ରୀଷ୍ଟାବ୍ଦର ଅନାବୃଷ୍ଟି ଫଳରେ ତୀବ୍ରତର ହୋଇଥିଲା । ଅର୍ଥାତ୍, ଷାଠିଏ ଦଶକର ମଧ୍ୟ ଭାଗ ବେଳକୁ ଦେଶର ଅର୍ଥନୀତି ଦୀର୍ଘ ଓ ମାରାତ୍ମକ ପତନ ମଧ୍ୟରେ ପ୍ରବେଶ କରିଥିଲା ଏବଂ ବିକାଶ ହାର କମି ଆସୁଥିଲା । ଖାଦ୍ୟାଭାବ ସହିତ ଯଥେଷ୍ଟ ପରିମାଣର କର, ମୂଲ୍ୟ ଓ ମୁଦ୍ରା ସ୍ଫୀତି ବୃଦ୍ଧି ଫଳରେ ଶ୍ରମଜୀବୀମାନଙ୍କ ଜୀବନଯାତ୍ରାର ମାନ ଯଥେଷ୍ଟ କମି ଆସିଥିଲା । ଏହି ସମୟରେ ଶ୍ରମଜୀବୀମାନେ କେବଳ ପୁଞ୍ଜିବାଦୀ ଶୋଷଣ ନୁହେଁ ବିଭିନ୍ନ ଧରଣର ପ୍ରାକ୍ ପୁଞ୍ଜିବାଦୀ ଶୋଷଣ, ବର୍ଦ୍ଧିତ ସାମାଜିକ ଏବଂ ଅର୍ଥନୈତିକ ଅସାମ୍ୟ ହେତୁ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ ଏବଂ ଏଥି ପାଇଁ ବିଶେଷତଃ ସହରର ଜନସାଧାରଣଙ୍କ ମଧ୍ୟରେ କଂଗ୍ରେସ ଶାସନ ବିରୁଦ୍ଧରେ ଅସନ୍ତୋଷ ବୃଦ୍ଧି ପାଇଥିଲା ।

କ୍ରମବର୍ଦ୍ଧମାନ ଅର୍ଥନୈତିକ ସମସ୍ୟା ଏବଂ ସରକାର ଓ କଂଗ୍ରେସ ନେତୃତ୍ୱ ଉପରେ ପ୍ରଭାବ ବିସ୍ତାର କଲା ଭଳି ରକ୍ଷଣଶୀଳମନାଙ୍କର ଗ୍ରୁପ ଏକ ବିଶେଷ ପରିସ୍ଥିତି ସୃଷ୍ଟି କରିଥିଲା । ୧୯୬୩ ଖ୍ରୀଷ୍ଟାବ୍ଦର ଶେଷ ଆଡ଼କୁ ବିପଣନ ପ୍ରକ୍ରିୟାର ଉଦ୍ଦୀପନ, ବ୍ୟକ୍ତିଗତ ସଂସ୍ଥା ଓ ବ୍ୟକ୍ତିଗତ ଉଦ୍ୟୋଗକୁ କଠୋର ଭାବେ ଓ ପୂର୍ଣ୍ଣ ଭାବେ ନିୟନ୍ତ୍ରଣ କରିବାର ସରକାରୀ ନୀତି କ୍ରମଶଃ ଶିଥିଳ ହୋଇ ଆସିଥିଲା । ଏହାର ପ୍ରକାଶ ଘଟିଥିଲା ଖର୍ବିତ ଅର୍ଥନୈତିକ ପରିକଳ୍ପନାରେ, ଅମାନତ କ୍ଷେତ୍ରରେ ନିୟନ୍ତ୍ରଣ ବିଲୋପ ବା କଡ଼ାକଡ଼ି ହ୍ରାସରେ, ଶିଳ୍ପ ସଂସ୍ଥାଗୁଡ଼ିକୁ ଲାଇସେନ୍ସ ଦେବା ମଧ୍ୟରେ, ଦର ଓ ବଣ୍ଟନରେ, ଆମଦାନି ଆଇନ୍‌ର ଔଦାର୍ଯ୍ୟ ମଧ୍ୟରେ ଏବଂ ବ୍ୟକ୍ତିଗତ ସଂସ୍ଥାସମୂହର ଆର୍ଥିକ ସୁଯୋଗ ସୁବିଧାର ସଂପ୍ରସାରଣରେ । ଏସବୁକୁ ମିଳେଇ ଦେଖିଲେ, ଏହିସବୁ ପଦକ୍ଷେପ ଫଳରେ ବ୍ୟକ୍ତିଗତ କ୍ଷେତ୍ର ସ୍ୱାର୍ଥରେ ଜାତୀୟ ସଂପଦର ପୁନର୍ବଣ୍ଟନ ଘଟିଥିଲା ।

## ଆଭ୍ୟନ୍ତରୀଣ ରାଜନୈତିକ ଘଟଣାବଳୀ (୧୯୬୬-୧୯୬୯) ।

### ୧୯୬୭ ଖ୍ରୀଷ୍ଟାବ୍ଦର ଚତୁର୍ଥ ସାଧାରଣ ନିର୍ବାଚନ

ଲାଲ ବାହାଦୂର ଶାସ୍ତ୍ରୀଙ୍କ ମୃତ୍ୟୁ ଶାସକ ଦଳର ନେତୃତ୍ୱରେ ଦ୍ୱନ୍ଦ୍ୱର ଏକ ନୂତନ ଜୁଆର ସୃଷ୍ଟି କରିଥିଲା । ଜାତୀୟ କଂଗ୍ରେସର ସଂପୂର୍ଣ୍ଣ ଇତିହାସରେ ଏହି ପ୍ରଥମ କରି ପ୍ରଧାନମନ୍ତ୍ରୀ ପଦ ପାଇଁ ଦୁଇଜଣ ପ୍ରାର୍ଥୀ ମନୋନିତ ହୋଇଥିଲେ । ଏମାଙ୍କ ମଧ୍ୟରୁ ଜଣେ ବାମପନ୍ଥୀ ଓ ମଧ୍ୟପନ୍ଥୀପାନଙ୍କ ଦ୍ୱାରା ସମର୍ଥିତ ଜବାହାରଲାଲ ନେହରୁଙ୍କ କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏବଂ ଅନ୍ୟ ଜଣକ ହେଲେ ଦକ୍ଷିଣପନ୍ଥୀମାନଙ୍କର ପ୍ରତିନିଧି ମୋରାରଜୀ ଦେଶାଇ । କଂଗ୍ରେସ ପାର୍ଲିଆମେଣ୍ଟାରୀ ପାର୍ଟି ମଧ୍ୟରେ ଏକ ତୀବ୍ର ସଂଘାତ ପରେ ଇନ୍ଦିରା ଗାନ୍ଧୀ ସଂଖ୍ୟାଗରିଷ୍ଠଙ୍କର ସମର୍ଥନ ପାଇଥିଲେ । ୧୯୬୭ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନର ପ୍ରାକ୍‌କାଳରେ ଦଳର ଆଭ୍ୟନ୍ତରୀଣ ପରିସ୍ଥିତି ଓ ରାଜନୈତିକ ଭୂମିକା ଖୁବ୍ ଜଟିଳ ଆକାର ଧାରଣ କରିଥିଲା । ୧୯୬୫-୧୯୬୬ରେ ରାଜ୍ୟ ସ୍ତରରେ କେତେକ କଂଗ୍ରେସ ସଂଗଠନରେ ବିଭାଜନ ଦେଖା ଦେଇଥିଲା । ଏହି ଭାବେ ପଶ୍ଚିମ ବଙ୍ଗ, ବିହାର, ଓଡ଼ିଶା, ରାଜସ୍ଥାନ, କେରଳ ଓ ମହୀଶୂରରେ କଂଗ୍ରେସତ୍ୟାଗୀ ଉପଦଳ ଓ ନେତାମାନଙ୍କୁ ନେଇ ଗଠିତ ନୂଆ ନୂଆ ଆଞ୍ଚଳିକ ଦଳର ଅଭ୍ୟୁଦୟ ଏକ ନୈମିତ୍ତିକ ଘଟଣା ହୋଇ ଉଠିଥିଲା । ନିର୍ବାଚନ ଶେଷରେ

ନବନିର୍ବାଚିତ ରାଜ୍ୟ ବିଧାନସଭାରେ ବିଭିନ୍ନ ସମୟରେ ବିଭିନ୍ନ ଦଳ କଂଗ୍ରେସ ସହିତ ସଂପର୍କ ତ୍ୟାଗ କରିବାକୁ ଆରମ୍ଭ କଲେ । ଉତ୍ତର ପ୍ରଦେଶ, ହରିଆନା ଓ ମଧ୍ୟ ପ୍ରଦେଶରେ କଂଗ୍ରେସ ସରକାରର ପତନ ଘଟିଥିଲା ।

୧୯୬୭ ଖ୍ରୀଷ୍ଟାବ୍ଦର ମେ ମାସରେ ପୁରାତନ କଂଗ୍ରେସୀମାନଙ୍କ ମଧ୍ୟରୁ ଅଧିକାଂଶ ସ୍ଥାନୀୟ ପାର୍ଟି ନିଜ ନିଜର ସ୍ୱାତନ୍ତ୍ର୍ୟ ଓ ପୂର୍ବତନ ନାମ ବଜାଏ ରଖି ଭାରତୀୟ କ୍ରାନ୍ତି ଦଳ ନାମରେ ଏକ ନୂତନ ସର୍ବଭାରତୀୟ ଦଳ ଗଠନ କରିଥିଲେ ।

ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର (ଏସ୍.ଏସ୍.ପି.) ଅଧସ୍ତନ ସ୍ତରରେ ମଧ୍ୟ ପରିବର୍ତ୍ତନ ଘଟୁଥିଲା । ୧୯୬୬ ଖ୍ରୀଷ୍ଟାବ୍ଦରେ ପାର୍ଟି ଦ୍ୱାରା ଗୃହୀତ ନିର୍ଦ୍ଦିଷ୍ଟ ସାମାଜିକ-ଅର୍ଥନୈତିକ ପରିବର୍ତ୍ତନର କର୍ମସୂଚୀ ଥିଲା ବହୁଳାଂଶରେ ଭାରତର କମ୍ୟୁନିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) କର୍ମସୂଚୀର ସମପାତିକ । ଏସ୍.ଏସ୍.ପି. ଉତ୍ପାଦନ ଉପାୟ ଉପକରଣ ଉପରେ ଗଣ ମାଲିକାନା ପ୍ରତିଷ୍ଠାକୁ ସେମାନଙ୍କ ଶେଷ ଲକ୍ଷ୍ୟ ବୋଲି ଘୋଷଣା କରି ଶ୍ରେଣୀ ସଂଗ୍ରାମର ବାସ୍ତବତାକୁ ସ୍ୱୀକାର କରିଥିଲା । କିନ୍ତୁ ତତ୍ ସହିତ ଏହି ପାର୍ଟିର କର୍ମନୀତି ଓ ପ୍ରଚାରାଭିଯାନରେ ଜାତୀୟତାବାଦର ଲକ୍ଷଣୀୟ ପ୍ରାଧାନ୍ୟ ଥିଲା । ଏସ୍.ଏସ୍.ପି. ନେତାମାନଙ୍କର ରାଜନୈତିକ ପଦକ୍ଷେପ ଥିଲା ହଠକାରିତାପୂର୍ଣ୍ଣ । ଷାଠିଏ ଦଶକର ପ୍ରାରମ୍ଭରେ ଏହି ଦଳର ନେତା ଓ ତତ୍ତ୍ୱକାର ରାମମନୋହର ଲୋହିଆ କଂଗ୍ରେସକୁ ପରାଜିତ କରିବା ପାଇଁ ଦଳମତ ନିର୍ବିଶେଷରେ ସମସ୍ତ ବିରୋଧୀ ରାଜନୈତିକ ଦଳର ନିର୍ବାଚନ ପୂର୍ବ ଐକ୍ୟର ଧାରଣାଟି ଉପସ୍ଥାପିତ କରିଥିଲେ । ୧୯୬୭ ଖ୍ରୀଷ୍ଟାବ୍ଦର ନିର୍ବାଚନରେ ଏସ୍.ଏସ୍.ପି. ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଉଭୟ ଧରଣର ଦଳଗୁଡ଼ିକ ସହିତ ଐକ୍ୟ ସାମ୍ମୁଖ୍ୟ ଗଠନ ପାଇଁ ଉଦ୍ୟମ କରିଥିଲା ।

ଭୋଟଦାତାମାନଙ୍କ ଉପରେ ରାଜନୈତିକ ଦଳଗୁଡ଼ିକର ପ୍ରଭାବର ପରିସର କେତେ ବଦଳିଛି ଏବଂ ୧୯୬୨ ଖ୍ରୀଷ୍ଟାବ୍ଦର ନିର୍ବାଚନ ପରେ ପାର୍ଲିଆମେଣ୍ଟରେ ମଧ୍ୟ ସେମାନଙ୍କ ରାଜନୈତିକ ପ୍ରଭାବ କେତେ ବଜାଏ ରହିଛି – ୧୯୬୭ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନର ଫଳାଫଳରେ ତାହା ସ୍ପଷ୍ଟ ହୋଇ ଉଠିଥିଲା । କଂଗ୍ରେସର ଅବସ୍ଥାନଗତ ପରିବର୍ତ୍ତନ ମଧ୍ୟ ଏଥିରେ ପ୍ରକଟିତ ହୋଇଥିଲା ।

୧୯୬୭ ଖ୍ରୀଷ୍ଟାବ୍ଦର ନିର୍ବାଚନରେ କଂଗ୍ରେସ ପାଇଥିଲା ଶତକଡ଼ା ୪୦ ଭାଗ ଭୋଟ ଏବଂ ପାର୍ଲିଆମେଣ୍ଟର ଲୋକସଭାର ୫୪ ଭାଗ ଆସନ । ଏହି ହିସାବଟିକୁ ୧୯୬୨ ଖ୍ରୀଷ୍ଟାବ୍ଦର ୪୫ ଶତାଂଶ ଓ ୭୩ ଶତାଂଶ ଆସନ ସହିତ ତୁଳନା କରାଯାଇ ପାରେ । ପୂର୍ବ ତୁଳନାରେ କଂଗ୍ରେସ ୫ ଶତାଂଶ ଭୋଟ ଓ ୧୯ ଶତାଂଶ ଆସନ ହରେଇଥିଲା ।

କିନ୍ତୁ ଭୋଟ କମିଯିବାର ଅଙ୍କଟା ଯାହା ହେଉନା କାହିଁକି ଜନସାଧାରଣଙ୍କ ମଧ୍ୟରେ କଂଗ୍ରେସର ପ୍ରଭାବ ସେଇ ତୁଳନାରେ କମ୍ ହ୍ରାସ ପାଇଥିଲା । ପ୍ରଧାନତଃ, ବିରୋଧୀ ଦଳର ଐକ୍ୟ ଏବଂ ଏଥି ସଙ୍ଗେ ସଙ୍ଗେ ବୃହତ୍ତମ ବିରୋଧୀ ଦଳଗୁଡ଼ିକ ପ୍ରତି ଅନେକ ଭୋଟଦାତାମାନଙ୍କର ନୂତନ ଆଗ୍ରହ ମଧ୍ୟ ଭୋଟ ହାରକୁ ପ୍ରଭାବିତ କରିଥିଲା । କିନ୍ତୁ ତା ସତ୍ତ୍ୱେ ସଂଖ୍ୟାଗରିଷ୍ଠ ପ୍ରତିନିଧିତ୍ୱର ବ୍ୟବସ୍ଥାଟି ହେତୁ ଯଥାର୍ଥ ଭୋଟର (୪୦ ଶତାଂଶ) ତୁଳନାରେ ପାର୍ଲିଆମେଣ୍ଟ (୫୪ ଶତାଂଶ) ଓ ରାଜ୍ୟ ବିଧାନ ସଭାଗୁଡ଼ିକର (୫୦ ଶତାଂଶ) ଆସନ ସଂଖ୍ୟାରେ କଂଗ୍ରେସର ଅଂଶ ବୃଦ୍ଧି ପାଇଥିଲା ।

ଏଥିରୁ ଦେଖାଯାଏ ଯେ, ୧୯୬୭ ଖ୍ରୀଷ୍ଟାବ୍ଦର ନିର୍ବାଚନ ପରେ ଏବଂ ବିଶେଷ ଭାବେ ଏହା ପରେ ପରେ କେତେକ ରାଜ୍ୟରେ କଂଗ୍ରେସରେ ବିଭାଜନ ଦେଖା ଦେବା ଫଳରେ ଜାତୀୟ କଂଗ୍ରେସ

୧୭ଟି ରାଜ୍ୟ ମଧ୍ୟରୁ ୯ଟିରେ ଶାସକ ଦଳ ସଂଖ୍ୟାଗରିଷ୍ଠତା ହରେଇଥିଲା । ଏହି ୯ଟି ରାଜ୍ୟର ଜନସଂଖ୍ୟା ଥିଲା ସମଗ୍ର ଦେଶର ଜନସଂଖ୍ୟାର ପ୍ରାୟ ତିନି ପଞ୍ଚମାଂଶ ।

ଏହିସବୁ ରାଜ୍ୟରେ କଂଗ୍ରେସ ବିରୋଧୀମାନଙ୍କର ଯୁକ୍ତ ସାମ୍ମୁଖ୍ୟ ସରକାର ଗଠିତ ହୋଇଥିଲା । ପ୍ରାୟ ୬ କୋଟି ଜନସଂଖ୍ୟା ଅଧ୍ୟୁଷିତ କେରଳ ଓ ପଶ୍ଚିମ ବଂଗରେ ବାମପନ୍ଥୀ ଓ ଗଣତାନ୍ତ୍ରିକ ପାର୍ଟିଗୁଡ଼ିକ କମ୍ୟୁନିଷ୍ଟ, ବିଶେଷତଃ, ନବଗଠିତ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ନେତୃତ୍ୱରେ ମିଳିତ ସରକାର ଗଠନ କରିଥିଲେ । ଏହି ଶେଷୋକ୍ତ ଦଳଟି କେରଳ ସରକାରର ନେତୃତ୍ୱରେ ଏବଂ ପଶ୍ଚିମ ବଂଗର ମିଳିତ ସରକାରର ପ୍ରଧାନ ଦଳ ହିସାବରେ ଅଧିଷ୍ଠିତ ହୋଇଥିଲା । ବିହାର, ପଞ୍ଜାବ ଓ ଉତ୍ତର ପ୍ରଦେଶରେ ଭାରତର କମ୍ୟୁନିଷ୍ଟ ପାର୍ଟି ଓ ଦକ୍ଷିଣପନ୍ଥୀ କେତୋଟି ଦଳ (ବିଶେଷତଃ, ଜନସଂଘ) ନୂତନ ମିଳିତ ରାଜ୍ୟ ସରକାର ଗଠନ କରିଥିଲେ । ବିହାରରେ ବାମପନ୍ଥୀ ଦଳଗୁଡ଼ିକ (ବିଶେଷତଃ, ଏସ୍.ଏସ୍.ପି.), ଉତ୍ତର ପ୍ରଦେଶରେ ଦକ୍ଷିଣପନ୍ଥୀ ଦଳଗୁଡ଼ିକ (ବିଶେଷତଃ, ଜନସଂଘ) ଏବଂ ପଞ୍ଜାବରେ ସ୍ଥାନୀୟ ଅକାଳୀ ଦଳ ମିଳିତ ଦଳର ନେତୃତ୍ୱ ଦେଉଥିଲେ । ମାନ୍ଦ୍ରାଜରେ ସରକାର ଗଠନ କରିଥିଲା ସ୍ଥାନୀୟ ଦ୍ରାବିଡ଼ ମୁନେତ୍ର କାଜାଗାମ୍ (ଡି.ଏମ୍.କେ.) । ଅନ୍ୟ ଦୁଇଟି ରାଜ୍ୟରେ ଦକ୍ଷିଣପନ୍ଥୀମାନଙ୍କୁ ନେଇ ମିଳିତ ସରକାର ଗଠିତ ହୋଇଥିଲା — ଓଡ଼ିଶାରେ ସ୍ୱତନ୍ତ୍ର ପାର୍ଟି ଓ ମଧ୍ୟ ପ୍ରଦେଶରେ ଜନସଂଘ ଏବଂ ଉଭୟ ସ୍ଥାନରେ କଂଗ୍ରେସ ତ୍ୟାଗ କରିଥିବା ଉପଦଳର ସହାୟତାରେ । ହରିଆନାରେ କଂଗ୍ରେସ ତ୍ୟାଗୀ ଏକ ଉପଦଳ ଦକ୍ଷିଣପନ୍ଥୀମାନଙ୍କ ସମର୍ଥନରେ (ଏହି ରାଜ୍ୟରେ ଇତିମଧ୍ୟରେ ଦକ୍ଷିଣପନ୍ଥୀମାନେ ଯଥେଷ୍ଟ ପ୍ରଭାବଶାଳୀ ହୋଇ ଉଠିଥିଲେ) ସରକାର ଗଠନ କରିଥିଲେ । ଲକ୍ଷ୍ୟ କରିବାର କଥା ଯେ, ହରିଆନା ଛଡ଼ା ୯ଟି ରାଜ୍ୟ ମଧ୍ୟରୁ ୫ଟି ରାଜ୍ୟରେ (ପଶ୍ଚିମ ବଂଗ, ବିହାର, ଉତ୍ତର ପ୍ରଦେଶ, ପଞ୍ଜାବ ଓ ମଧ୍ୟ ପ୍ରଦେଶ) ପୂରାପୂରି କଂଗ୍ରେସ ବିହୀନ ମିଳିତ ସରକାର ଗଠିତ ହୋଇଥିଲା ଏବଂ ଏସବୁ ମଧ୍ୟରୁ ପ୍ରତ୍ୟେକଟିରେ କଂଗ୍ରେସତ୍ୟାଗୀ ଦଳର ନେତାମାନେ ଥିଲେ ମୁଖ୍ୟମନ୍ତ୍ରୀ ।

କଂଗ୍ରେସର ରାଜନୈତିକ ଏକାଧିପତ୍ୟର ମାରାତ୍ମକ କ୍ଷୟ ଏହିସବୁ ନିର୍ବାଚନରେ ସ୍ପଷ୍ଟ ହୋଇ ଉଠିଥିଲା । ଶୋଷକ ଶ୍ରେଣୀର ସ୍ୱାର୍ଥାନୁକୂଳ ଏକ ଦଳୀୟ ଶାସନ ବ୍ୟବସ୍ଥା ସ୍ଥଳରେ ସେତେବେଳେ ଦୁଇ ବା ବହୁଦଳୀୟ ଶାସନ ବ୍ୟବସ୍ଥାର ଉଦ୍‌ଭବ ଘଟିଥିଲା ।

୧୯୬୭ ଓ ୧୯୬୮ ଖ୍ରୀଷ୍ଟାବ୍ଦରେ "ସିଣ୍ଡିକେଟ୍" ଗୋଷ୍ଠୀର ନେତୃତ୍ୱରେ କଂଗ୍ରେସର ଦକ୍ଷିଣପନ୍ଥୀମାନେ ବୈଦେଶିକ ଓ ଆଭ୍ୟନ୍ତରୀଣ ନୀତି କ୍ଷେତ୍ରରେ ନେହରୁ ଧାରାନୁସରଣକୁ ବ୍ୟାହତ କରିବାକୁ ଏବଂ ଇନ୍ଦିରା ଗାନ୍ଧୀଙ୍କ ବ୍ୟକ୍ତିଗତ କ୍ଷମତାକୁ ଖର୍ବ କରିବାକୁ ଉଦ୍ୟମ କରିଥିଲେ ।

୧୯୬୯ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ଦଳର କ୍ଷୟମାନ ପ୍ରଭାବକୁ ପୁନଃପ୍ରତିଷ୍ଠା କରିବା ଚେଷ୍ଟାରେ ଇନ୍ଦିରା ଗାନ୍ଧୀ ୧୪ଟି ପ୍ରଧାନ ବେସରକାରୀ ବ୍ୟାଙ୍କ୍ ଜାତୀୟକରଣ କରି ଦେବାରୁ ଅର୍ଥମନ୍ତ୍ରୀ ମୋରାରଜୀ ଦେଶାଇ ପଦତ୍ୟାଗ କଲେ । ୧୯୬୯ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ପ୍ରୟାତ ଜାକିର ହୋସେନଙ୍କ ସ୍ଥାନରେ ନୂତନ ରାଷ୍ଟ୍ରପତି ନିର୍ବାଚନ ସମୟରେ ଜାତୀୟ କଂଗ୍ରେସର ବାମ — ମଧ୍ୟପନ୍ଥୀ ଦଳ ସେମାନଙ୍କ ପ୍ରତିନିଧି ହିସାବରେ ପ୍ରଖ୍ୟାତ ଟ୍ରେଡ୍‌ୟୁନିଅନ୍ ନେତା ଭି.ଭି.ଗିରି ଭେଙ୍କଟ ଗିରିଙ୍କୁ ନିର୍ବାଚିତ କରିବାରେ ସଫଳ ହୋଇଥିଲେ । ୧୯୬୯ ଖ୍ରୀଷ୍ଟାବ୍ଦର ଶରତ କାଳରେ କେନ୍ଦ୍ରରେ କଂଗ୍ରେସ ଦଳ ଭାଙ୍ଗି ଯିବାର ସୂଚନା ବସ୍ତୁତଃ ସ୍ପଷ୍ଟ ହୋଇ ଉଠିବା ପରେ ସାରା ଦେଶରେ ଦୁଇଟି ସମାନ୍ତରାଳ କଂଗ୍ରେସ ଗଠିତ ହେଲା ।

ରାଷ୍ଟ୍ରପତି ନିର୍ବାଚନରେ ସାଫଲ୍ୟର ଫଳାଫଳଗୁଡ଼ିକୁ ସଦ୍‌ବ୍ୟବହାର କରିବା ପାଇଁ ଇନ୍ଦିରା ଗାନ୍ଧୀ ବ୍ୟାଙ୍କ୍ ଜାତୀୟକରଣ ପରେ ଆଉ କେତେକ ପ୍ରଗତିଶୀଳ ସାମାଜିକ-ଅର୍ଥନୈତିକ ପଦକ୍ଷେପ ନେଇଥିଲେ ।

୧୯୬୯ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ କେତେକ ବ୍ୟବସାୟକୁ ନିୟନ୍ତ୍ରଣ କରିବା ପାଇଁ "ଏକଚାଟିଆ ଏବଂ ନିୟନ୍ତ୍ରଣମୂଳକ ଆଇନ୍" ଗୃହୀତ ହୋଇ ୧୯୭୦ ଖ୍ରୀଷ୍ଟାବ୍ଦ ଜୁନ୍ ପହିଲରେ ଚାଲୁ କରାଗଲା । ଏହି ଆଇନ୍ ଅନୁଯାୟୀ ଏକ କୋଟି ଟଙ୍କାରୁ ଅଧିକ ପରିସଂପଦର ଅଧିକାରୀ କୌଣସି ମୁଖ୍ୟ ଶିଳ୍ପ ଶାଖା ଗଠନ, ଏକତ୍ରୀକରଣ ବା ସଂପ୍ରସାରଣ ଏବଂ ୨୦ କୋଟି ଟଙ୍କାରୁ ଅଧିକ ପରିସଂପଦର ଅଧିକାରୀ କୌଣସି ମିଳିତ ଉଦ୍ୟୋଗ ପ୍ରତିଷ୍ଠା କରିବାକୁ ଗଲେ ସରକାରୀ ଅନୁମୋଦନ ନେବାକୁ ହେବ । ଏହି ଆଇନ୍ ଅନୁଯାୟୀ ଗଠିତ ଏକ ସ୍ଥାୟୀ କମିସନ ଉପରେ ଏକଚାଟିଆ ସଂସ୍ଥା ଓ ବ୍ୟବସାୟ ବାଣିଜ୍ୟକୁ ନିୟନ୍ତ୍ରଣ କରିବାର ଦାୟିତ୍ୱ ଅର୍ପିତ ହୋଇଥିଲା । ଏହି କମିସନକୁ ପ୍ରୟୋଜନ ଅନୁଯାୟୀ ଆନୁଷଙ୍ଗିକ ପ୍ରଶ୍ନାଦି ସଂପର୍କରେ ସରକାର ନିକଟରେ ସୁପାରିସ ଦାଖଲ କରିବାକୁ, ଏକଚାଟିଆ ବ୍ୟବସାୟ ସଂପର୍କରେ ପୁନର୍ବିବେଚନା କରିବାକୁ ଏବଂ ଜନସ୍ୱାର୍ଥ ବିରୋଧୀ ହେଲେ, ସେସବୁକୁ ବନ୍ଦ କରି ଦେବାକୁ ଅଧିକାର ଦିଆଯାଇଥିଲା ।

୧୯୭୦ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ରାଷ୍ଟ୍ରାୟତ୍ତ ସଂସ୍ଥା, ବୃହତ୍ ବ୍ୟକ୍ତିଗତ କଂପାନି, କ୍ଷୁଦ୍ର ଶିଳ୍ପ ଓ ଅନ୍ୟାନ୍ୟ ବ୍ୟକ୍ତିଗତ ଉଦ୍ୟୋଗର କ୍ଷେତ୍ର ନିର୍ଦ୍ଧାରଣ ସଂକ୍ରାନ୍ତ ସରକାରୀ ନୀତି ଘୋଷିତ ହୋଇଥିଲା । ଇତିମଧ୍ୟରେ ଦେଶରେ ସଂଘଟିତ ପରିବର୍ତ୍ତନକୁ ବିବେଚନା କରି ୧୯୫୬ ଖ୍ରୀଷ୍ଟାବ୍ଦର ଶିଳ୍ପନୀତି ସଂକ୍ରାନ୍ତ ପ୍ରସ୍ତାବର ଭିତ୍ତିରେ ରାଷ୍ଟ୍ରାୟତ୍ତ କ୍ଷେତ୍ର ନିର୍ଦ୍ଧାରିତ ହୋଇଥିଲା ।

୧୯୭୦ ଖ୍ରୀଷ୍ଟାବ୍ଦରେ ସରକାର ଚତୁର୍ଥ ପଞ୍ଚବାର୍ଷିକ ଯୋଜନାର (୧୯୬୯-୧୯୭୦ରୁ ୧୯୭୩-୧୯୭୪ ପର୍ଯ୍ୟନ୍ତ) ବଣ୍ଟନ ପୁନର୍ବିବେଚନା କରିବାକୁ ଘୋଷଣା କରିଥିଲେ । ପୁନର୍ବିବେଚନା ଅନୁଯାୟୀ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ଲଗ୍ନି ୧୨,୨୫୦ କୋଟି ଟଙ୍କାରୁ ୧୩.୬୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଥିଲା ଏବଂ ଫଳରେ, ଏହାର ଅଂଶ ୫୫ ଶତାଂଶ ହେବା ପରିବର୍ତ୍ତେ ୬୦ ଶତାଂଶ ହୋଇଥିଲା । ତଦନୁଯାୟୀ ବ୍ୟକ୍ତିଗତ କ୍ଷେତ୍ରର ଲଗ୍ନି ୪୫ ଶତାଂଶରୁ ୪୦ ଶତାଂଶକୁ କମେଇ ଆଣି ପୂର୍ବର ୧୦,୦୦୦ କୋଟି ପରିବର୍ତ୍ତେ ୮,୯୮୦ କୋଟି ଟଙ୍କା କରାଯାଇଥିଲା । ସେଇ ମାସରେ ବିରଳା ଗୋଷ୍ଠୀ ଓ ଅନ୍ୟାନ୍ୟ ଏକଚାଟିଆମାନଙ୍କ ବିରୁଦ୍ଧରେ ଅଭିଯୋଗ ତଦନ୍ତ ପାଇଁ ସରକାର ଏକ କମିସନ ଗଠନ କରିଥିଲେ ।

ଏହି ବର୍ଷ ମାର୍ଚ୍ଚ ମାସରେ ୩୮ଟି ପ୍ରକାରର ପଣ୍ୟ (ପୂର୍ବର ୨୨ ପ୍ରକାର ସ୍ଥାନରେ) ଆମଦାନି ଉପରେ କ୍ରମବର୍ଦ୍ଧମାନ ନିୟନ୍ତ୍ରଣ ସପକ୍ଷରେ ସରକାର ଏକ ପ୍ରସ୍ତାବ ପାଶ୍ କରିଥିଲେ । ୧୯୭୦ ଖ୍ରୀଷ୍ଟାବ୍ଦରେ ତୁଳା ଆମଦାନିକୁ ମଧ୍ୟ ରାଷ୍ଟ୍ରାୟତ୍ତ କରାଯାଇଥିଲା ।

ଏପ୍ରିଲ ମାସରେ ସରକାର ୧୭ଟି ଜରୁରୀ ଔଷଧର ମୂଲ୍ୟ କମେଇ ଦେଇଥିଲେ (୧୦ରୁ ୭୦ ଶତାଂଶ ପର୍ଯ୍ୟନ୍ତ) । ଏହି ମାସରେ ଦେଶର କଳକାରଖାନାଗୁଡ଼ିକରେ ଶ୍ରମିକ ଓ ଅଫିସ୍ କର୍ମଚାରୀମାନଙ୍କର ଜଣେ ପ୍ରତିନିଧିକୁ ପରିଚାଳକ ମଣ୍ଡଳୀର ଅନ୍ତର୍ଭୁକ୍ତ କରି ଏହିସବୁ ସଂସ୍ଥାର ପ୍ରଶାସନରେ ଶ୍ରମିକମାନଙ୍କର ଅଂଶଗ୍ରହଣକୁ ବଢ଼ାଇବା ପାଇଁ ସିଦ୍ଧାନ୍ତ ନିଆଯାଇଥିଲା ।

୧୯୭୦ ଖ୍ରୀଷ୍ଟାବ୍ଦରେ ସରକାର କେତେକ ପ୍ରସ୍ତାବ କରି ଚିନି ଓ ଇଂଜିନିୟରିଂ ଶିଳ୍ପ, ବିଦ୍ୟୁତ

ଶିଳ୍ପ ଏବଂ ବନ୍ଦର ଓ ସଡ଼କ କର୍ମୀମାନଙ୍କ ମଜୁରି ବୃଦ୍ଧିର ଦାବିକୁ ଆଂଶିକ ଭାବେ ପୂରଣ କରିଥିଲେ । ଲୌହ ଓ ଇସ୍‌ପାତ ଶିଳ୍ପ, ବ୍ୟାଙ୍କ୍ ଓ ବିମା କଂପାନିର ଶ୍ରମିକ ଓ ଅଫିସ୍ କର୍ମୀମାନଙ୍କ ସହିତ ମଜୁରି ସଂକ୍ରାନ୍ତ ଏକ ଚୁକ୍ତି ସଂପାଦନ କରାଯାଇଥିଲା ।

୧୯୭୧ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ କେନ୍ଦ୍ରୀୟ ସରକାର ଗ୍ରାମାଞ୍ଚଳରେ କର୍ମସଂସ୍ଥାନର ଏକ ବ୍ୟାପକ ପରିକଳ୍ପନା କଥା ଘୋଷଣା କରିଥିଲେ । ୧୯୭୧ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଆରମ୍ଭ ହୋଇ ଚତୁର୍ଥ ପଞ୍ଚବାର୍ଷିକ ଯୋଜନାର ଅବଶିଷ୍ଟ ତିନିବର୍ଷ ପର୍ଯ୍ୟନ୍ତ ଥିଲା ଏହି କର୍ମସୂଚୀର ସମୟ ସୀମା । ଏହି କର୍ମସୂଚୀ ଭୁକ୍ତ ବ୍ୟାପକ ଜନଶକ୍ତି ନିୟୋଗ କ୍ଷମ ପ୍ରକଳ୍ପଗୁଡ଼ିକର ପ୍ରଧାନ ଲକ୍ଷ୍ୟ ଥିଲା :(୧) ମୁଣ୍ଡ ପିଛା ହାରାହାରି ୧୦୦ ଟଙ୍କା ବେତନରେ ପ୍ରତ୍ୟେକ ଜିଲାରେ ବର୍ଷକୁ ଦଶ ମାସ ପାଇଁ ୧୦୦ଜଣଙ୍କ ନିମିତ୍ତ ନୂତନ କର୍ମସଂସ୍ଥାନ (ଯେଉଁସବୁ ପରିବାରରେ ପୂର୍ଣ୍ଣବୟସ୍କ କୌଣସି ଲୋକ କେଉଁଠି ରୋଜଗାର କରୁ ନାହାନ୍ତି, ସେହିସବୁ ପରିବାରକୁ ଅଗ୍ରାଧିକାର ଦେବା ଭିତ୍ତିରେ); (୨) ରାସ୍ତା, କ୍ଷୁଦ୍ର ସେଚନ ବ୍ୟବସ୍ଥା, ଭୂମି ଉନ୍ନୟନ ଆଦି ଦୀର୍ଘମିଆଦୀ ପରିସଂପଦ ସୃଷ୍ଟିର ଅନୁକୂଳ ଅର୍ଥନୈତିକ ଉନ୍ନୟନର ସ୍ଥାନୀୟ କର୍ମସୂଚୀର ବାସ୍ତବାୟନ । ଏହି ବ୍ୟୟଭାର (୫୦ କୋଟି ଟଙ୍କା ପର୍ଯ୍ୟନ୍ତ) କେନ୍ଦ୍ରୀୟ ସରକାର ବହନ କରିବାର ଥିଲା ।

## ବାମପନ୍ଥୀ ଶକ୍ତିମାନଙ୍କର ଦୃଢ଼ୀକରଣ । ଗଣ ଆନ୍ଦୋଳନର ଜୁଆର

୧୯୬୯-୧୯୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଇନ୍ଦିରା ଗାନ୍ଧୀଙ୍କ ସରକାର ଦ୍ୱାରା ଅନୁସୃତ ଗୁରୁତ୍ୱପୂର୍ଣ୍ଣ ପ୍ରଗତିଶୀଳ ସାମାଜିକ-ଅର୍ଥନୈତିକ କର୍ମସୂଚୀରେ ଭାରତର ତତ୍କାଳୀନ ରାଜନୈତିକ ଶକ୍ତି ସ୍ଥିତିରେ ବାମମୁଖୀନତାର ଲକ୍ଷଣ ସୂଚିତ ହୋଇଥିଲା । ଏହିସବୁ ଘଟଣା ମୂଳରେ ଥିଲା ପ୍ରଥମତଃ ଓ ପ୍ରଧାନତଃ ସାଧାରଣ ଗଣତାନ୍ତ୍ରିକ ପରିବର୍ତ୍ତନ ସପକ୍ଷରେ ଶ୍ରମଜୀବୀମାନଙ୍କର ବ୍ୟାପକ ଗଣ ଆନ୍ଦୋଳନ ।

କମ୍ୟୁନିଷ୍ଟ ଆନ୍ଦୋଳନ ଭାଗଭାଗ ହୋଇଯିବାଟା ଗଣ ଆନ୍ଦୋଳନ ଉପରେ ନାସ୍ତିବାଚକ ପ୍ରଭାବ ବିସ୍ତାର କରିଥିଲା । ଷାଠିଏ ଦଶକର ଦ୍ୱିତୀୟାର୍ଦ୍ଧରେ ଶ୍ରମିକ ଶ୍ରେଣୀର ସଂଗ୍ରାମରେ, ଅବଶ୍ୟ, ଗତି ସଞ୍ଚାର ଦେଖା ଦେଇଥିଲା । ଶ୍ରମିକ ଆନ୍ଦୋଳନର ବର୍ଦ୍ଧମାନ ଐକ୍ୟ ପାଇଁ ଏକ ବ୍ୟାପକ ଉଦ୍ୟୋଗ ହେତୁ ପ୍ରଧାନ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ରଗୁଡ଼ିକର ପ୍ରତିନିଧିମାନେ ସେମାନଙ୍କ ସାଧାରଣ ସଂଗ୍ରାମ ପାଇଁ ଏକ ନୂତନ କର୍ମସୂଚୀ ରଚନା କରିଥିଲେ । ଏହି କର୍ମସୂଚୀ ଦଲିଲଟି ଅବିଳମ୍ବେ ଜନପ୍ରିୟ ହୋଇ ଉଠିଥିଲା ଏବଂ ୧୯୬୯ ଖ୍ରୀଷ୍ଟାବ୍ଦର ମେ ପହିଲାରେ ୫୦ ଲକ୍ଷ ସ୍ୱାକ୍ଷର ସମ୍ବଳିତ ଏକ ଆବେଦନପତ୍ର ପାର୍ଲିଆମେଣ୍ଟରେ ଦାଖଲ କରାଯାଇଥିଲା । କିନ୍ତୁ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ବିଭାଜନ ଓ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ସମର୍ଥିତ ଅନ୍ୟ ଏକ ଟ୍ରେଡ୍‌ୟୁନିଅନ୍ – ଭାରତୀୟ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର ଗଠନ ଫଳରେ ଏହି ଐକ୍ୟ ଦୁର୍ବଳ ହୋଇ ପଡ଼ିଥିଲା ।

କମ୍ୟୁନିଷ୍ଟ ଆନ୍ଦୋଳନରେ ବିଭାଜନ କୃଷକ ସମିତିଗୁଡ଼ିକର କାର୍ଯ୍ୟକଳାପକୁ ମଧ୍ୟ ପ୍ରଭାବିତ କରିଥିଲା । ଚାରି ବା ପାଞ୍ଚ ବର୍ଷ କାଳ ବିରତି ପରେ ୧୯୬୫-୧୯୬୬ ଖ୍ରୀଷ୍ଟାବ୍ଦରେ କୃଷକ ସଭା ପୁନର୍ବାର ତା'ର କାର୍ଯ୍ୟ କର୍ମ ଆରମ୍ଭ କଲେ ମଧ୍ୟ ଇତିମଧ୍ୟରେ କେତେକ ରାଜ୍ୟରେ ସମାନ୍ତରାଳ କୃଷକ ସଂଗଠନ ଗଢ଼ି ଉଠିଥିଲା । ୧୯୬୮ ଖ୍ରୀଷ୍ଟାବ୍ଦରେ ଦୁଇଟି ନିଖିଳ ଭାରତ କୃଷକ ସଭା ପୁରୁଣା ସଂଗଠନଗୁଡ଼ିକର ସ୍ଥାନରେ ପ୍ରତିଷ୍ଠିତ ହେଲା ପରେ ବିଭାଜନକୁ ଆନୁଷ୍ଠାନିକ ଭାବେ ସ୍ୱୀକାର କରି ନିଆଯାଇଥିଲା । ସାଂପ୍ରତିକ ସଂଗ୍ରାମରେ ଗରିବ କୃଷକ, ବିଶେଷତଃ, ପଶ୍ଚିମ ବଙ୍ଗ, ବିହାର, ଉତ୍ତର ପ୍ରଦେଶ ଓ ତାମିଲନାଡୁର କ୍ଷେତ ମଜୁରିଆ ଓ ଭାଗ ଚାଷୀମାନେ ଖୁବ୍ ସକ୍ରିୟ ଭୂମିକା ପାଳନ କରିଥିଲେ । ପଶ୍ଚିମ ବଙ୍ଗରେ ଚରମପନ୍ଥୀମାନଙ୍କ ନେତୃତ୍ୱରେ କୃଷକମାନେ ସଶସ୍ତ୍ର ସଂଗ୍ରାମରେ ଯୋଗ ଦେଇଥିଲେ । ଦେଶର ଅନ୍ୟାନ୍ୟ ଅଂଶରେ ମଧ୍ୟ (ବିଶେଷତଃ, ଆନ୍ଧ୍ର ପ୍ରଦେଶ ଓ ପଞ୍ଜାବରେ) "ନକସାଲ" ଆନ୍ଦୋଳନ ବ୍ୟାପୀ ଯାଇଥିଲା । ଚରମ ବାମପନ୍ଥୀମାନେ କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ତ୍ୟାଗ କଲା ପରେ ୧୯୬୯ ଖ୍ରୀଷ୍ଟାବ୍ଦ ମେ ମାସରେ ଏକ ତୃତୀୟ କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ-ଲେନିନ୍‌ବାଦୀ) ଗଠନ କରିଥିଲେ ।

ଏହି ସମୟରେ କ୍ଷେତ ମଜୁରିଆମାନେ ମଧ୍ୟ ସେମାନଙ୍କ ଦାବି ନେଇ ଆନ୍ଦୋଳନ କରିଥିଲେ । ୧୯୬୮ ଖ୍ରୀଷ୍ଟାବ୍ଦରେ ଭାରତର କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ନିଖିଳ ଭାରତ କ୍ଷେତ ମଜୁରିଆ ୟୁନିଅନ୍ ଗଠିତ ହେଲା । ୧୯୬୯-୧୯୭୦ ଖ୍ରୀଷ୍ଟାବ୍ଦରେ ଭାରତର କମ୍ୟୁନିଷ୍ଟ ପାର୍ଟି, କୃଷକ ସଭା ଓ କ୍ଷେତ ମଜୁରିଆ ୟୁନିଅନ୍ ବଳପୂର୍ବକ ଜମି ଦଖଲ ଆନ୍ଦୋଳନ ଆରମ୍ଭ କରିଥିଲେ ।

ବ୍ୟକ୍ତିଗତ ସଂଗ୍ରାମ ସହ ହିଂସାତ୍ମକ କ୍ରିୟାକଳାପ ଏହା ପରେ ରାଜନୈତିକ ସଂଗ୍ରାମର ଏକ ସାଧାରଣ ପଦ୍ଧତି ହୋଇ ଉଠିଥିଲା । ଏହି ପରିପ୍ରେକ୍ଷିତରେ ସମାଜର ବ୍ୟାପକତର ସ୍ତର ଠାରୁ ରାଜନୈତିକ ସ୍ଥିତିର ତାଗିଦ କ୍ରମଶଃ ଜୋରଦାର ହୋଇ ଉଠୁଥିଲା । ଜନସାଧାରଣଙ୍କର ତତ୍କାଳୀନ ମନୋଭାବ ବିଚାର କରି ଏବଂ ଶାସକ ଦଳ ହିସାବରେ କଂଗ୍ରେସର ବର୍ତ୍ତମାନ ସମର୍ଥନ ଲାଭର ପରିସ୍ଥିତିରେ ପାର୍ଟି ନେତାମାନେ ଆଶୁ ସାଧାରଣ ନିର୍ବାଚନ ଅନୁଷ୍ଠାନର ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

ଇତିମଧ୍ୟରେ ବାସ୍ତବାୟିତ ସାମାଜିକ-ଅର୍ଥନୈତିକ ପରିବର୍ତ୍ତନସମୂହ ଏବଂ ଭବିଷ୍ୟତରେ ଅନୁରୂପ କାର୍ଯ୍ୟାଦି ସଂପାଦନ ଉପରେ ଜୋର ଦେଇ ଶାସକ ଦଳ ସେମାନଙ୍କ ବ୍ୟାପକ ପ୍ରଚାରାଭିଯାନ ଆରମ୍ଭ କରିଥିଲା । ଦେଶ ସାରା ଅନୁଷ୍ଠିତ ବହୁ ଜନସଭା ଓ ସମାବେଶରେ କଂଗ୍ରେସ ଦଳ ଓ ସରକାରର ବିଭିନ୍ନ ନେତାଙ୍କର ଅସଂଖ୍ୟ ବକ୍ତୃତା ସାଙ୍ଗକୁ ନିଖିଳ ଭାରତ କଂଗ୍ରେସ କମିଟି ଏକ ବିଶେଷ ପ୍ରଚାର ପୁସ୍ତିକା ପ୍ରକାଶ କରିଥିଲା । ଏଥିରେ ଥିଲା : ଶାସକ ଦଳର ସାମାଜିକ-ଅର୍ଥନୈତିକ କର୍ମନୀତି, ବିଶେଷତଃ, ଅର୍ଥନୀତି ସଂକ୍ରାନ୍ତ ବମ୍ବେ ପ୍ରସ୍ତାବ ଓ ପରବର୍ତ୍ତୀକାଳୀନ କାର୍ଯ୍ୟାଦି (୧୯୭୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ପ୍ରକାଶିତ) ଏବଂ ବ୍ୟାଙ୍କ୍‌ଗୁଡ଼ିକର ଜାତୀୟକରଣ ପରେ ନିଆଯାଇଥିବା ପଦକ୍ଷେପସମୂହ (୧୯୭୦ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ ପ୍ରକାଶିତ) । କାର୍ଯ୍ୟତଃ ନିର୍ବାଚନ ଘୋଷଣାର ବହୁ ପୂର୍ବରୁ ଶାସକ ଦଳ ବ୍ୟାପକ ନିର୍ବାଚନୀ ପ୍ରଚାର ଆରମ୍ଭ କରି ଦେଇଥିଲା । ପାର୍ଟିର ନିର୍ବାଚନୀ ଇସ୍ତାହାରରେ ପୂର୍ବୋକ୍ତ ଦଲିଲ ଓ ପୁସ୍ତିକାଗୁଡ଼ିକରେ ଉପସ୍ଥାପିତ ଆଶ୍ୱାସସମୂହ ପୁନରୁକ୍ତ ହୋଇଥିଲା । ପ୍ରତିଶ୍ରୁତ ସାମାଜିକ-ଅର୍ଥନୈତିକ ବ୍ୟବସ୍ଥାବଳୀର ବାସ୍ତବାୟନ ପାଇଁ ପାର୍ଲିଆମେଣ୍ଟରେ ପ୍ରୟୋଜନୀୟ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ ନିମିତ୍ତ ସରକାର ଏହି ନିର୍ବାଚନ ଘୋଷଣା କରିଥିଲେ ।

## ୧୯୭୧ ଓ ୧୯୭୨ ଖ୍ରୀଷ୍ଟାବ୍ଦର ସାଧାରଣ ନିର୍ବାଚନ

ଶାସକ ଦଳ ଓ ସରକାରର ସାମାଜିକ-ଅର୍ଥନୈତିକ କର୍ମନୀତିରେ ପ୍ରଗତିମୁଖୀ ଦିଗ ପରିବର୍ତ୍ତନ ଏବଂ ଏହିସବୁ ପରିବର୍ତ୍ତନ ଓ ଦେଶର ଭବିଷ୍ୟତ ଉନ୍ନୟନ ସହିତ ସଂଶ୍ଳିଷ୍ଟ ପ୍ରତିଶ୍ରୁତି ସଂପର୍କରେ ବ୍ୟାପକ ପ୍ରଚାର ୧୯୭୧ ଖ୍ରୀଷ୍ଟାବ୍ଦର ଅନ୍ତର୍ବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସର ସାଫଲ୍ୟ ଲାଭରେ ଉଲ୍ଲେଖଯୋଗ୍ୟ ଭୂମିକା ପାଳନ କରିଥିଲା । ସରକାରୀ ନୀତିର ଏହି ପରିବର୍ତ୍ତନ ମୂଳରେ ୧୯୬୭ ଓ ୧୯୬୯ ଖ୍ରୀଷ୍ଟାବ୍ଦର ନିର୍ବାଚନରେ ବାମପନ୍ଥୀ ଦଳଗୁଡ଼ିକର ସାଫଲ୍ୟ ମଧ୍ୟ ଯଥେଷ୍ଟ ଅବଦାନ ଯୋଗାଇଥିଲା ।

ଇତିପୂର୍ବରୁ ବାମପନ୍ଥୀ ଦଳଗୁଡ଼ିକ ଦ୍ୱାରା ବ୍ୟବହୃତ ସ୍ଲୋଗାନଗୁଡ଼ିକୁ ବ୍ୟବହାର କରି ବ୍ୟାପକ ସାମାଜିକ ପରିବର୍ତ୍ତନ ସାଧନର ଏବଂ ସେସବୁର ବାସ୍ତବାୟନର ବିଭିନ୍ନ ପ୍ରତିଶ୍ରୁତି ଦେଇ ଶାସକ ଦଳ ବାମପନ୍ଥୀମାନଙ୍କର ବହୁ ଭୋଟକୁ ଦଖଲ କରିବାକୁ ସକ୍ଷମ ହୋଇଥିଲା । ପକ୍ଷାନ୍ତରରେ "ସଂଗଠନ" କଂଗ୍ରେସକୁ ସାମାଜିକ-ଅର୍ଥନୈତିକ କ୍ଷେତ୍ରରେ ଏହିସବୁ ପ୍ରଗତିଶୀଳ ପରିବର୍ତ୍ତନର ପ୍ରଧାନ ପ୍ରତିବନ୍ଧକ ହିସାବରେ ଚିହ୍ନିତ କରି ଶାସକ ଦଳ ଅବିଭକ୍ତ କଂଗ୍ରେସ ଦଳର ପୂର୍ବତନ ସମର୍ଥକମାନଙ୍କ ମଧ୍ୟରୁ ଅନେକଙ୍କ ମନକୁ ଜୟ କରି ପାରିଥିଲେ ।

୧୯୭୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ପାର୍ଲିଆମେଣ୍ଟ ନିର୍ବାଚନ ପରେ ଶାସକ ଦଳ ପୁନର୍ବାର ପାର୍ଲିଆମେଣ୍ଟରେ ଦୁଇ ତୃତୀୟାଂଶ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ କରିଥିଲା । ସଂବିଧାନର ପ୍ରୟୋଜନୀୟ ସଂଶୋଧନ ପାଇଁ ଏହା ଅପରିହାର୍ଯ୍ୟ ଥିଲା ।

ପାର୍ଲିଆମେଣ୍ଟରେ ନିଶ୍ଚିତ ସଂଖ୍ୟାଗରିଷ୍ଠତାର ଅଧିକାରୀ ଓ ବାମପନ୍ଥୀମାନଙ୍କର ସମର୍ଥନ ପୁଷ୍ଟ ଜାତୀୟ କଂଗ୍ରେସ ସରକାର ୧୯୭୧ ଖ୍ରୀଷ୍ଟାବ୍ଦରେ ତା'ର ପ୍ରଗତିଶୀଳ ଅର୍ଥନୈତିକ କର୍ମସୂଚୀର ରୂପାୟନ କାର୍ଯ୍ୟ ଅବ୍ୟାହତ ରଖିଥିଲା । ସଂବିଧାନର ଦୁଇଟି ସଂଶୋଧନ ବଳରେ ପାର୍ଲିଆମେଣ୍ଟ ଉପରେ ବିନା କ୍ଷତିପୂରଣରେ ବ୍ୟକ୍ତିଗତ ସଂପତ୍ତିର ଅଧିକାରକୁ ସୀମିତ କରିବା ପାଇଁ ଆଇନ୍ ପ୍ରଣୟନ କରିବାର ଅଧିକାର ଅର୍ପଣ କରିଥିଲା । ଅର୍ଥନୈତିକ ଏବଂ ସାମାଜିକ ଆଇନ୍ କ୍ଷେତ୍ରରେ ପାର୍ଲିଆମେଣ୍ଟର ସାର୍ବଭୌମତ୍ୱ କାଏମ ହେବା ଫଳରେ ସୁପ୍ରିମ କୋର୍ଟର ପ୍ରତିକ୍ରିୟାଶୀଳ ସଂଖ୍ୟାଗରିଷ୍ଠଙ୍କ ପକ୍ଷରେ ଆଉ ବ୍ୟାଙ୍କ୍ ଜାତୀୟକରଣ ସଂକ୍ରାନ୍ତ ସରକାରୀ ସିଦ୍ଧାନ୍ତକୁ ରୂପାୟନ କରିବାରେ ବାଧା ସୃଷ୍ଟି କିମ୍ବା ଦେଶୀୟ ରାଜ୍ୟର ପୂର୍ବତନ ରାଜାମାନଙ୍କର ବିଶେଷ ସୁଯୋଗ ସୁବିଧା ଉଚ୍ଛେଦକୁ ରୋଧ କରିବା ସମ୍ଭବ ହୋଇ ନଥିଲା । ସେଇ ବର୍ଷ ଶେଷରେ ପାର୍ଲିଆମେଣ୍ଟ ପୂର୍ବତନ ରାଜନ୍ୟବର୍ଗଙ୍କୁ ଭତ୍ତା ଦେବା ବନ୍ଦ କରିବାର ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଏହା ଫଳରେ ବର୍ଷକୁ ୫ କୋଟି ଟଙ୍କା ବଞ୍ଚିଗଲା ଏବଂ ସାମନ୍ତ ଓ ପ୍ରତିକ୍ରିୟାଶୀଳ ଚକ୍ରଗୁଡ଼ିକ ଦ୍ୱାରା ଦେଶର ରାଜନୈତିକ ସ୍ଥାୟିତ୍ୱକୁ ନଷ୍ଟ କରିବାର ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା ।

ଏହି ସମୟରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଗତିଶୀଳ ବ୍ୟବସ୍ଥା ହିସାବରେ ଆଇନ୍ ପାଶ୍ କରି ବ୍ୟକ୍ତିମାଲିକାନାଧୀନ ସଂସ୍ଥାର ନିୟନ୍ତ୍ରଣ ଗ୍ରହଣର ଅଧିକାର ସରକାରକୁ ଦିଆଯାଇଥିଲା । ଏହି ଭାବେ ଇନ୍ଦିରା ଗାନ୍ଧୀଙ୍କ ସରକାର ୬୪ଟି ଭାରତୀୟ ଓ ୪୨ଟି ବିଦେଶୀ ବିମା କଂପାନି ସହ ୨୧୪ଟି କୋଇଲା ଖଣି ଓ ଅନ୍ୟାନ୍ୟ ସଂସ୍ଥାର ନିୟନ୍ତ୍ରଣ ଭାର ଗ୍ରହଣ କରିଥିଲେ । କେତେକ ରାଜ୍ୟରେ କିଛି କ୍ଷୁଦ୍ର ଶିଳ୍ପ ଓ ଖାଦ୍ୟ ଶିଳ୍ପ ମଧ୍ୟ ରାଷ୍ଟ୍ରୀୟ ନିୟନ୍ତ୍ରଣକୁ ଆସିଥିଲା ।

ଏହି ସମୟରେ ନୂତନ କୃଷି ସଂସ୍କାର କଥା ମଧ୍ୟ ଘୋଷିତ ହୋଇଥିଲା । ଏଥିରେ ଥିଲା : ବ୍ୟକ୍ତିଗତ ଜମିର "ସିଲିଂ" ଆଉରି ହ୍ରାସ ଏବଂ ଭାରତୀୟ ଅର୍ଥନୀତିର ଅନ୍ୟାନ୍ୟ କ୍ଷେତ୍ରରେ ବ୍ୟାପକତର ରାଷ୍ଟ୍ରୀୟ ନିୟନ୍ତ୍ରଣ ପ୍ରବର୍ତ୍ତନ । ଏହି ଭାବେ କଂଗ୍ରେସର ଜନପ୍ରିୟତା ଆଉରି ବୃଦ୍ଧି ପାଇଥିଲା ।

୧୯୭୨ ଖ୍ରୀଷ୍ଟାବ୍ଦର ରାଜ୍ୟ ବିଧାନ ସଭାଗୁଡ଼ିକର ନିର୍ବାଚନରେ କଂଗ୍ରେସ ୪୮ ଶତାଂଶ ଭୋଟ ଲାଭ କରିଥିଲା । ଏହି ଅଙ୍କଟିକୁ ପୂର୍ବ ବର୍ଷର ପାର୍ଲିଆମେଣ୍ଟ ନିର୍ବାଚନରେ ମିଳିଥିବା ୪୩.୬ ଶତାଂଶ ଭୋଟ ସହିତ ତୁଳନା କରାଯାଇ ପାରେ । ୧୯୬୭ ଖ୍ରୀଷ୍ଟାବ୍ଦରେ ରାଜ୍ୟ ବିଧାନ ସଭା ନିର୍ବାଚନରେ କଂଗ୍ରେସ (ବିଭାଜନ ପୂର୍ବରୁ) ୪୨.୭ ଶତାଂଶ ଭୋଟ ପାଇଥିଲା । କହିବା ବାହୁଲ୍ୟ ଯେ, ଏହା ଦ୍ୱାରା ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସର ସମ୍ମାନ ବୃଦ୍ଧି ପାଇଥିଲା । ଫଳରେ, କଂଗ୍ରେସ ରାଜ୍ୟ ବିଧାନ ସଭାଗୁଡ଼ିକରେ (ପ୍ରାୟ ୭୬ ଶତାଂଶ ଆସନର ଅଧିକାରୀ) ତା'ର ଆସନକୁ ମଜବୁତ୍ କରି ପାରିଥିଲା । ୧୯୬୭ ଖ୍ରୀଷ୍ଟାବ୍ଦରେ "ଆଦି" କଂଗ୍ରେସ ବିଧାନ ସଭାରେ ୫୦ ଶତାଂଶରୁ କମ୍ ଭୋଟ ପାଇଥିଲା ।

ଶାସକ କଂଗ୍ରେସ ୨୧ଟି ରାଜ୍ୟ ମଧ୍ୟରୁ ୧୫ଟିରେ ସରକାର ଗଠନ କରିଥିଲା (୫ଟିରେ ନିର୍ବାଚନ ସ୍ଥଗିତ ରହିଥିଲା) ।

ଲକ୍ଷ୍ୟ କରିବାର କଥା, ୧୬ଟି ରାଜ୍ୟ ମଧ୍ୟରୁ ୧୧ଟିରେ ବିଧାନ ସଭାରେ କଂଗ୍ରେସର ଦୁଇ ତୃତୀୟାଂଶ ସଂଖ୍ୟାଗରିଷ୍ଠତା ଥିବା ହେତୁ ୧୯୭୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଅନୁଷ୍ଠିତ ହେବାକୁ ଯାଉଥିବା ପାର୍ଲିଆମେଣ୍ଟର ରାଜ୍ୟସଭାର ନିର୍ବାଚନରେ ତା'ର ଅଧିକାଂଶ ଆସନ ଲାଭ ନିଶ୍ଚିତ ଥିଲା ।

କିନ୍ତୁ ଅଧିକାଂଶ ରାଜ୍ୟରେ ୧୯୭୨ ମସିହାରେ କଂଗ୍ରେସର ଭୋଟ ସଂଖ୍ୟା ୧୯୭୧ ମସିହାର ପାର୍ଲିଆମେଣ୍ଟ ନିର୍ବାଚନରେ ସେମାନଙ୍କୁ ମିଳିଥିବା ଭୋଟ ସଂଖ୍ୟା ଠାରୁ କମ୍ ଥିଲା । ଏହାର କାରଣ ହେଲା, ୧୯୭୨ ମସିହାର ନିର୍ବାଚନରେ ବହୁ ସ୍ଥାନୀୟ "ସମସ୍ୟାର" ଉଦ୍‌ଭବ ଏବଂ ରାଜ୍ୟ ପର୍ଯ୍ୟାୟରେ କଂଗ୍ରେସ ସଂଗଠନଗୁଡ଼ିକର ଅନେକ "ଗୋପନୀୟ" କାର୍ଯ୍ୟକଳାପ ପ୍ରକାଶ ପାଇ ଯାଇଥିଲା ।

ପାର୍ଲିଆମେଣ୍ଟ ନିର୍ବାଚନରେ ପ୍ରଧାନ ପ୍ରଧାନ ଦକ୍ଷିଣପନ୍ଥୀ ଦଳଗୁଡ଼ିକର ଦୁର୍ବଳତର ଅବସ୍ଥାନ ସ୍ପଷ୍ଟ ହୋଇ ଉଠିଥିଲେ ମଧ୍ୟ (ବିଧାନ ସଭାରେ ସେମାନଙ୍କ ଆସନ କମି ଆସିଥିଲା) ଜନସାଧାରଣଙ୍କ ମଧ୍ୟରେ ସେମାନଙ୍କ ପ୍ରଭାବ ସେତେ ହ୍ରାସ ପାଇ ନଥିଲା ।

୧୯୭୨ ଖ୍ରୀଷ୍ଟାବ୍ଦର ରାଜ୍ୟ ବିଧାନ ସଭାର ନିର୍ବାଚନରେ ବାମପନ୍ଥୀ ଦଳଗୁଡ଼ିକର ଅବସ୍ଥାନ ମୋଟାମୋଟି ଭାବେ ଅତୁଟ ରହିଥିଲା । ଏଥିରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପାଇଥିଲା ୪.୨ ଶତାଂଶ ଭୋଟ (୧୯୬୭ ଓ ୧୯୭୧ ଖ୍ରୀଷ୍ଟାବ୍ଦରେ ୪.୧ ଓ ୪.୯ ଶତାଂଶ ସହିତ ତୁଳନା କରାଯାଇ ପାରେ) । ପଶ୍ଚିମ ବଂଗରେ ସେତେବେଳେ ଏହି ଦଳର ପ୍ରଭାବ ବୃଦ୍ଧି ମଧ୍ୟ ଲକ୍ଷଣୀୟ (୧୯୬୭ ଓ ୧୯୭୨ ଖ୍ରୀଷ୍ଟାବ୍ଦରେ ଯଥାକ୍ରମେ ୭.୪ ଓ ୧୩ ଶତାଂଶ) । ଭାରତର କମ୍ୟୁନିଷ୍ଟ ପାର୍ଟି ଶାସକ କଂଗ୍ରେସ ସହିତ ପଶ୍ଚିମ ବଂଗ, ବିହାର, ପଞ୍ଜାବ, ରାଜସ୍ଥାନ, ମଧ୍ୟ ପ୍ରଦେଶ, ମହୀଶୂରରେ (ଅର୍ଥାତ୍, ଦିଲ୍ଲୀ ସମେତ ୧୬ଟି ରାଜ୍ୟ ମଧ୍ୟରୁ ୬ଟି ରାଜ୍ୟରେ) ଆସନ ବଣ୍ଟନ କ୍ଷେତ୍ରରେ ଏକ ନିର୍ବାଚନୀ ବୁଝାମଣାରେ ପହଞ୍ଚିଥିଲା ଓ ଫଳରେ, ଏହିସବୁ ରାଜ୍ୟ ବିଧାନ ସଭାରେ ନିଜ ଅବସ୍ଥାନକୁ ମଜବୁତ୍ କରିବାକୁ ସକ୍ଷମ ହୋଇଥିଲା ।

ଏହି ନିର୍ବାଚନରେ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ପାଇଥିଲା ୪.୬ ଶତାଂଶ

ଭୋଟ । ଏହି ସଂଖ୍ୟାଟି ୧୯୭୧ ଓ ୧୯୬୭ ଖ୍ରୀଷ୍ଟାବ୍ଦରେ ପ୍ରାପ୍ତ ୪.୯ ଓ ୪ ଶତାଂଶ ଭୋଟ ସହିତ ତୁଳନୀୟ ।

କିନ୍ତୁ ଏହି ଦଳର ନେତାମାନଙ୍କ ଦ୍ୱାରା ଅନୁସୃତ ବିଭାଜନ ସୃଷ୍ଟି ନୀତି ଫଳରେ ପଶ୍ଚିମ ବଂଗରେ ସେମାନଙ୍କର ଚରମ ପରାଜୟ ଘଟିଥିଲା ଏବଂ ରାଜ୍ୟ ବିଧାନ ସଭାରେ ସେମାନଙ୍କ ଅବସ୍ଥାନ ଯଥେଷ୍ଟ ଦୁର୍ବଳ ହୋଇ ପଡ଼ିଥିଲା । ରାଜ୍ୟ ବିଧାନ ସଭାରେ ପୂର୍ବର ୧୨୮ ସଦସ୍ୟ ସଂଖ୍ୟାଟି ଏହି ସମୟରେ ୩୪କୁ କମି ଆସିଥିଲା, ଅର୍ଥାତ୍, ଜାତୀୟ ପର୍ଯ୍ୟାୟରେ ଏହି ଦଳର ପ୍ରଭାବ ଯଥେଷ୍ଟ ହ୍ରାସ ପାଇଥିଲା ।

ଜନସାଧାରଣଙ୍କ ମଧ୍ୟରେ ସେତେବେଳେ ସୋସାଲିଷ୍ଟମାନଙ୍କ ପ୍ରଭାବ ମଧ୍ୟ ଅନେକ ଦୁର୍ବଳ ହୋଇ ପଡ଼ିଥିଲା (୧୯୬୭ ଖ୍ରୀଷ୍ଟାବ୍ଦରେ ଏମାନେ ପାଇଥିବା ୫.୧ ଶତାଂଶ ଭୋଟ ସହିତ ବର୍ତ୍ତମାନର ୪.୬ ଶତାଂଶ ଭୋଟର ପରିମାଣକୁ ତୁଳନା କରାଯାଇ ପାରେ) । ରାଜ୍ୟ ବିଧାନ ସଭାଗୁଡ଼ିକରେ ସେମାନଙ୍କ ଆସନ ସଂଖ୍ୟା ଲକ୍ଷଣୀୟ ଭାବେ ହ୍ରାସ ପାଇଥିଲା (ପୂର୍ବର ୧୧୭ଟି ସହିତ ବର୍ତ୍ତମାନର ୫୮ଟି ତୁଳନୀୟ) । କେବଳ ବିହାରରେ ସୋସାଲିଷ୍ଟମାନେ ଥିଲେ ପ୍ରଧାନ ବିରୋଧୀ ଦଳ (୧୬ ଶତାଂଶ) ।

ଇନ୍ଦିରା ସରକାରଙ୍କ କର୍ତ୍ତୃକ ପ୍ରଗତିଶୀଳ ସାମାଜିକ-ଅର୍ଥନୈତିକ ସଂସ୍କାର ରୂପାୟନ ମଧ୍ୟରେ, ଶ୍ରମଜୀବୀମାନଙ୍କର ଗଣ ଆନ୍ଦୋଳନର ଚାପ ଫଳରେ ସେତେବେଳେ ଭାରତରେ ବିଦ୍ୟମାନ ରାଜନୈତିକ ଶକ୍ତିସମୂହର ଭାରସାମ୍ୟରେ ବାମ ମୁଖୀନତା ହିଁ ପ୍ରକଟିତ ହୋଇଥିଲା ।

କଂଗ୍ରେସ ନେତୃତ୍ୱ ମଧ୍ୟରେ ବାମ-ମଧ୍ୟପନ୍ଥୀମାନଙ୍କ ପ୍ରଭାବ ବୃଦ୍ଧି ଫଳରେ ଦଳଗତ ଦୃଷ୍ଟିଭଙ୍ଗି, ଏହାର ସମର୍ଥକ ଗଣ ସଂଗଠନଗୁଡ଼ିକର ଦୃଷ୍ଟିଭଙ୍ଗି ଏବଂ ବାମପନ୍ଥୀମାନଙ୍କ ପ୍ରତି, ବିଶେଷତଃ, ଭାରତର କମ୍ୟୁନିଷ୍ଟ ପାର୍ଟି ପ୍ରତି ଏହାର ଦୃଷ୍ଟିଭଙ୍ଗିରେ ପରିବର୍ତ୍ତନ ଦେଖା ଦେଇଥିଲା । ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସର ନେତୃବୃନ୍ଦଙ୍କ ମଧ୍ୟରେ ପରିବର୍ତ୍ତନ ଘଟିଥିଲା ଏବଂ ପୂର୍ବ ତୁଳନାରେ ତାହା ଅଧିକତର ନିଷ୍ଠାର ସହିତ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ ଓ ଅନ୍ୟାନ୍ୟ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ର ସହିତ ସହଯୋଗିତା କରିଥିଲା । ୧୯୭୧, ମେ ମାସରେ ଦିଲ୍ଲୀରେ ଏକ ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ସମସ୍ତ ପ୍ରଧାନ ଟ୍ରେଡ୍‌ୟୁନିଅନ୍ ସମେତ ନିଖିଳ ଭାରତ ଜାତୀୟ ଟ୍ରେଡ୍‌ୟୁନିଅନ୍‌ର ସ୍ୱାଧୀନ ଶାଖାଗୁଡ଼ିକର ଫେଡେରେସନର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଶ୍ରମଜୀବୀମାନଙ୍କର ଅର୍ଥନୈତିକ ସ୍ୱାର୍ଥ ରକ୍ଷା ପାଇଁ ସଂଗ୍ରାମ ପରିଚାଳନାର ଏକ ବିସ୍ତୃତ କର୍ମସୂଚୀ ହିସାବରେ ସମ୍ମେଳନରେ ଏକ "ମିଳିତ ସଂଗ୍ରାମର ସନନ୍ଦ" ଗୃହୀତ ହୋଇଥିଲା ।

୧୯୭୧ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ କୋଚିନ୍‌ରେ ଅନୁଷ୍ଠିତ ଭାରତର କମ୍ୟୁନିଷ୍ଟ ପାର୍ଟିର ୯ମ କଂଗ୍ରେସରେ ପୁନର୍ବାର ସମସ୍ତ ବାମପନ୍ଥୀ ଓ ଗଣତାନ୍ତ୍ରିକ ଶକ୍ତିମାନଙ୍କର ଐକ୍ୟ ସାଧନ ପାଇଁ ଉଦ୍ୟୋଗ ଗ୍ରହଣ କରିବାକୁ ଆହ୍ୱାନ ଦିଆଯାଇଥିଲା । ଏହି କଂଗ୍ରେସ ଶ୍ରମଜୀବୀମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ଗଣ ଆନ୍ଦୋଳନ ବୃଦ୍ଧି କରିବା ଲକ୍ଷ୍ୟରେ ଜାତୀୟ କଂଗ୍ରେସର ଆଭ୍ୟନ୍ତରୀଣ ଓ ବହିଃସ୍ଥ ବାମପନ୍ଥୀମାନଙ୍କ ସହିତ ସହଯୋଗିତାକୁ ବିକଶିତ କରିବା ପାଇଁ ଏକ ନମନୀୟ ରଣକୌଶଳ ଗ୍ରହଣ କରିଥିଲା ।

ନିର୍ବାଚନ ପରେ ଜାତୀୟ କଂଗ୍ରେସ ହିଁ ଅଧିକାଂଶ ରାଜ୍ୟରେ ସରକାର ଗଠନ କରିଥିଲା । କିନ୍ତୁ ବହୁ ଦକ୍ଷିଣପନ୍ଥୀ ଉଚ୍ଚ ପଦରେ ପୁନଃପ୍ରତିଷ୍ଠିତ ହେବାରୁ ଦଳର ଆଭ୍ୟନ୍ତରୀଣ ପରିସ୍ଥିତିରେ ଜଟିଳତା

ଦେଖା ଦେଇଥିଲା । ଜାତୀୟ କଂଗ୍ରେସରେ ଦକ୍ଷିଣପନ୍ଥୀମାନଙ୍କର ସଂହତି ବୃଦ୍ଧି ଫଳରେ ପାର୍ଟିରେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଦେଖା ଦେଇଥିଲା ଏବଂ କେତେକ ରାଜ୍ୟରେ କଂଗ୍ରେସ ସରକାରର ସ୍ଥାୟିତ୍ୱ ବିପନ୍ନ ହେବାକୁ ଲାଗିଲା । ଏହା ଫଳରେ ୧୯୭୨ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ନିଖିଳ ଭାରତ କଂଗ୍ରେସ କମିଟିର ପରିକଳ୍ପିତ ପ୍ରଗତିଶୀଳ ଅର୍ଥନୈତିକ ସଂସ୍କାର ରୂପାୟନରେ ବାଧା ସୃଷ୍ଟି ହୋଇଥିଲା । ଦେଶର ଅର୍ଥନୈତିକ ଅବସ୍ଥାର କ୍ରମାବନତି (୧୯୬୯-୧୯୭୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜାତୀୟ ଆୟର ବୃଦ୍ଧି ହାରରେ ଅବ୍ୟାହତ ହ୍ରାସ) ଏବଂ ସାମାଜିକ ଉତ୍ତେଜନା ବୃଦ୍ଧିର ପରିପ୍ରେକ୍ଷିତରେ ଏହା ଘଟିଥିଲା । ସଂପ୍ରତି ସଂଘଟିତ ଭାରତୀୟ ରାଜନୀତିର ବାମ ମୁଖୀନତାକୁ ସଂହତ କରିବାର ଅତି ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ସଂପାଦନ ଏହା ପରେ କଠିନତର ହୋଇ ଉଠିଥିଲା ।

## ଇନ୍ଦିରା ସରକାରଙ୍କ ବୈଦେଶିକ ନୀତି (୧୯୭୦-୧୯୭୨) । ୧୯୭୧ ଖ୍ରୀଷ୍ଟାବ୍ଦର ଭାରତ-ପାକିସ୍ତାନ ଯୁଦ୍ଧ

୧୯୬୯ ଖ୍ରୀଷ୍ଟାବ୍ଦରେ ଜାତୀୟ କଂଗ୍ରେସର ବିଭାଜନ ପରେ ପାଶ୍ଚାତ୍ୟପନ୍ଥୀ, ବିଶେଷତଃ, ଆମେରିକା ଯୁକ୍ତ ରାଷ୍ଟ୍ରର ପକ୍ଷପାତୀ ନିରପେକ୍ଷ ବୈଦେଶିକ ନୀତିର ଅନୁଗାମୀ ଶାସକ ଦଳ ଭୁକ୍ତ ଶକ୍ତିମାନେ କିଛି ପରିମାଣରେ ଦୁର୍ବଳ ହୋଇ ପଡ଼ିଥିଲେ । ଅର୍ଥାତ୍, ଇନ୍ଦିରା ସରକାର ସେତେବେଳେ ନେହରୁଙ୍କ ଅନୁସୃତ ବୈଦେଶିକ ନୀତିର ମୂଳ ଧାରଣାନୁସରଣ କରିବା ସଙ୍ଗେ ସଙ୍ଗେ ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସମାଜବାଦୀ ଦେଶ ସହିତ ଘନିଷ୍ଠ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ସହଯୋଗିତା ବିକାଶର ଉଦ୍ୟୋଗସମୂହକୁ ରୂପାୟିତ କରିବାକୁ ସକ୍ଷମ ଥିଲା ।

"ତୃତୀୟ ଦୁନିଆରେ" ଭାରତର ଦୃଢ଼ତର ଅବସ୍ଥାନ ହେତୁ ୧୯୬୭-୧୯୬୯ ଖ୍ରୀଷ୍ଟାବ୍ଦ ଭଳି ଏବେ ଏସିଆ ଓ ଆଫ୍ରିକାର ଦେଶମାନଙ୍କ ସହିତ ଦ୍ୱିପାକ୍ଷିକ ସଂପର୍କକୁ ଦୃଢ଼ କରିବା ଥିଲା ତା'ର କୂଟନୈତିକ ଉଦ୍ୟୋଗର ଲକ୍ଷ୍ୟ । ଉନ୍ନତ ପୁଞ୍ଜିବାଦୀ ଦେଶଗୁଡ଼ିକ ସହିତ ତା'ର ସଂପର୍କକୁ ଦୃଢ଼ ଏବଂ ବିସ୍ତୃତ କରିବା ମଧ୍ୟ ଭାରତୀୟ ବୈଦେଶିକ ନୀତିର ଏକ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ ହୋଇ ଉଠିଥିଲା । ଯାହାକି ଥିଲା ଦେଶର ଅର୍ଥନୈତିକ ଓ ସାମାଜିକ-ସାଂସ୍କୃତିକ ଉନ୍ନୟନ ପାଇଁ ଅପରିହାର୍ଯ୍ୟ ।

ପୂର୍ବ ପରି ପାକିସ୍ତାନ ଏବଂ ଚୀନ୍ ଗଣ ପ୍ରଜାତନ୍ତ୍ର ସହିତ ତା'ର ସଂପର୍କର ବ୍ୟାପାରଟି ଥିଲା ଭାରତର ବୈଦେଶିକ ନୀତିର ପ୍ରଧାନ ସମସ୍ୟା । ଏକ ଦିଗରେ, ଭାରତ-ପାକିସ୍ତାନ ଏବଂ, ଅନ୍ୟ ଦିଗରେ, ଭାରତ ଚୀନ୍ ମଧ୍ୟସ୍ଥ ଦୀର୍ଘସ୍ଥାୟୀ ସଂଘାତ ଭାରତ ସହିତ ଅନ୍ୟାନ୍ୟ ଦେଶର, ବିଶେଷତଃ, ବୃହତ୍ ଶକ୍ତିଗୁଡ଼ିକର ସଂପର୍କକୁ ପ୍ରଭାବିତ କରିଥିଲା ।

୧୯୭୦ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମ କାଳରେ ରାବାତରେ ଅନୁଷ୍ଠିତ ମୁସଲିମ୍ ଦେଶଗୁଡ଼ିକର ସମ୍ମିଳନୀରେ ପ୍ରକଟିତ ପାକିସ୍ତାନ-ଭାରତ ସଂପର୍କର ଉତ୍ତେଜନାକର ପରିସ୍ଥିତି ପାକିସ୍ତାନର ଆଭ୍ୟନ୍ତରୀଣ ଅସଙ୍ଗତି ବୃଦ୍ଧି ଫଳରେ ୧୯୭୦ ଖ୍ରୀଷ୍ଟାବ୍ଦ ଶେଷ ପର୍ଯ୍ୟନ୍ତ ଅବନତି ଆଡ଼କୁ ଆଗେଇ ଗ୍ରଲିଥିଲା ।

ଇତିମଧ୍ୟରେ ପୂର୍ବ ପାକିସ୍ତାନରେ ଜାତୀୟ-ମୁକ୍ତି ଆନ୍ଦୋଳନ ବ୍ୟାପକ ହୋଇଥିଲା । ଏହାର କ୍ରମବର୍ଦ୍ଧମାନ ପ୍ରଭାବର ଫଳ ସ୍ୱରୂପ ପାକିସ୍ତାନର ଇତିହାସରେ ଅନୁଷ୍ଠିତ ପ୍ରଥମ ସାଧାରଣ ନିର୍ବାଚନରେ (୧୯୭୦ ଖ୍ରୀଷ୍ଟାବ୍ଦ ଡିସେମ୍ବର) ବଙ୍ଗାଳୀମାନଙ୍କର ଜାତୀୟ ଦଳ ଆଓ୍ୱାମୀ ଲୀଗ୍ ଏବଂ ପଶ୍ଚିମ

ପାକିସ୍ତାନରେ ଆୟୁବ ଖାଙ୍କ ସାମରିକ ଶାସନର ବିରୋଧୀ ଦଳ ଜୟ ଲାଭ କରିଥିଲା । କିନ୍ତୁ ପଶ୍ଚିମ ପାକିସ୍ତାନର ଶାସକ ଚକ୍ର ନିର୍ବାଚନର ଫଳକୁ ପ୍ରତ୍ୟାଖ୍ୟାନ କରି ପୂର୍ବ ପାକିସ୍ତାନର ବିଧାନ ସଭାକୁ ଭାଙ୍ଗି ଦେଇ ୧୯୭୧, ମାର୍ଚ୍ଚ ୨୬ ତାରିଖରେ ବଙ୍ଗାଳୀମାନଙ୍କର ଜାତୀୟ ନେତା ଶେଖ୍ ମୁଜିବୁର ରହମନଙ୍କୁ ଗିରଫ୍ କଲା ଏବଂ ବଙ୍ଗାଳୀ ଜାତୀୟ ସଂଗଠନଗୁଡ଼ିକ ଉପରେ ନିର୍ଯ୍ୟାତନା ଚଳାଇଲା । ଏହା ପରେ ଏହି ଘଟଣା ପ୍ରବାହର ଫଳ ସ୍ୱରୂପ ପୂର୍ବ ପାକିସ୍ତାନରେ ଗରିଲା ଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ତାକୁ ଦମନ କରିବା ପାଇଁ ପଶ୍ଚିମ ପାକିସ୍ତାନ ସେନାବାହିନୀ ସେଠାରେ ମୁକ୍ତି ଯୋଦ୍ଧା ଓ ସେମାନଙ୍କ ସମର୍ଥକ ବେସାମରିକ ଜନସାଧାରଣଙ୍କ ଉପରେ ବ୍ୟାପକ ଆକ୍ରମଣ ଚଳେଇବାକୁ ଲାଗିଲା । ପରବର୍ତ୍ତୀ ଆଠ ମାସ ଧରି ସରକାରୀ ସେନାବାହିନୀ ଦ୍ୱାରା ଅନୁସୃତ ନିର୍ବିଚାର ଗଣ ହତ୍ୟା ଓ ଧ୍ୱଂସାତ୍ମକ କାର୍ଯ୍ୟକଳାପ ଫଳରେ ଲକ୍ଷ ଲକ୍ଷ ବଙ୍ଗାଳୀ ଉଦ୍‌ବାସ୍ତୁ ଭାରତରେ ଆଶ୍ରୟ ନେଇଥିଲେ ଏବଂ ୧୯୭୧ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଏମାନଙ୍କ ସଂଖ୍ୟା ଏକ କୋଟିରେ ପହଞ୍ଚିଥିଲା ।

ଏହିସବୁ ଉଦ୍‌ବାସ୍ତୁମାନଙ୍କୁ ଆଶ୍ରୟ ଓ ଖାଦ୍ୟ ସଂସ୍ଥାନ ଯୋଗାଇବା ଭାରତର ଅର୍ଥନୀତି ଉପରେ ମାରାତ୍ମକ ଚାପ ସୃଷ୍ଟି କରିଥିଲା । ବଙ୍ଗାଳୀ ଜାତୀୟତାବାଦୀମାନଙ୍କ ପ୍ରତି ଭାରତର ନୈତିକ ସମର୍ଥନ ବିରୁଦ୍ଧରେ ସେତେବେଳେ ପାକିସ୍ତାନରେ ହିଂସ୍ର ଭାରତ ବିରୋଧୀ ପ୍ରଚାର ଶୀର୍ଷରେ ପହଞ୍ଚିଲା ଏବଂ ସେଠାକାର ସାମରିକ ସରକାର ଏଥିରେ ଇନ୍ଧନ ଯୋଗାଇଲା । ଫଳରେ, ଭାରତ-ପାକିସ୍ତାନ ସଂପର୍କରେ ଆଉରି ଅବନତି ଘଟିଲା । ଏଭଳି ଅବସ୍ଥାରେ ଚୀନ୍ ସରକାର ପାକିସ୍ତାନର ସାମରିକ ଚକ୍ରକୁ ସମର୍ଥନ ଦେବା ଫଳରେ ପରିସ୍ଥିତି ଜଟିଳତର ହୋଇ ଉଠିଥିଲା । ଏହି ସମୟରେ ଆମେରିକା ଯୁକ୍ତ ରାଷ୍ଟ୍ରର ସରକାର ପାକିସ୍ତାନର ନୀତିକୁ ସ୍ପଷ୍ଟତଃ ସମର୍ଥନ ଦେଉଥିଲେ ।

ଏଭଳି ପରିସ୍ଥିତିରେ ସୋଭିଏତ୍ ୟୁନିଅନ୍ ଦ୍ୱାରା ଅନୁସୃତ ଦୃଢ଼ ଓ ଅବିଚଳ ପଦକ୍ଷେପ ପରବର୍ତ୍ତୀ ଘଟନା ପ୍ରବାହରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା : ସୋଭିଏତ୍ ୟୁନିଅନ୍ ଦ୍ୱ୍ୟର୍ଥହୀନ ଭାବେ ରକ୍ତକ୍ଷୟ ବନ୍ଦ ଓ ମତବୈଷମ୍ୟର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଆହ୍ୱାନ ଦେଇଥିଲା । ଭାରତର ବୈଦେଶିକ ନୀତି ଓ ଆଭ୍ୟନ୍ତରୀଣ ରାଜନୀତି ସଂକ୍ରାନ୍ତ ଘଟଣାବଳୀର ଯୁକ୍ତିଯୁକ୍ତତା ଭାରତକୁ ସୋଭିଏତ୍ ୟୁନିଅନ୍ ସହିତ ଘନିଷ୍ଠତର ସହଯୋଗିତାର ପଥେ ପରିଚାଳିତ କରିଥିଲା । ୧୯୭୧ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୯ ତାରିଖରେ ଭାରତ-ସୋଭିଏତ୍ ଶାନ୍ତି, ମୈତ୍ରୀ ଓ ସହଯୋଗିତା ଚୁକ୍ତି ସ୍ୱାକ୍ଷର ଫଳରେ ଦୁଇ ଦେଶ ମଧ୍ୟରେ ସଂପର୍କ କେବଳ ଉଚ୍ଚତର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ନଥିଲା, ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ଅବସ୍ଥାନ ଆଉରି ଦୃଢ଼ ହୋଇ ଉଠିଥିଲା ।

ଭାରତୀୟ ମହାଦେଶରେ ଉତ୍ତେଜନାର ବିସ୍ତାରକୁ ରୋକିବା ପାଇଁ ସକଳ ପ୍ରଚେଷ୍ଟା ସତ୍ତ୍ୱେ ୧୯୭୧, ଡିସେମ୍ବର ୩ ତାରିଖରେ ଭାରତ ପାକିସ୍ତାନ ମଧ୍ୟରେ ଯୁଦ୍ଧ ଲାଗିଗଲା । ବିସ୍ତୃତ ସୀମାନ୍ତବ୍ୟାପୀ ଚଉଦ ଦିନ ଯୁଦ୍ଧ ପରେ ବସ୍ତୁତଃ ପାକିସ୍ତାନୀ ସୈନ୍ୟବାହିନୀର ପରାଜୟ ଘଟିଲା ଏବଂ ଭାରତ ଉଦ୍ୟୋଗରେ ଡିସେମ୍ବର ୧୭ ତାରିଖରେ ଯୁଦ୍ଧ ବିରତି ଘୋଷିତ ହେଲା ।

ପାକିସ୍ତାନର ପରାଜୟ ଏବଂ ତା'ର ସାମରିକ ସରକାରର ପତନ ପରେ, ଏକ ଦିଗରେ, ଗଣ ପ୍ରଜାତନ୍ତ୍ରୀ ବଙ୍ଗଳା ଦେଶ ପ୍ରତିଷ୍ଠିତ ହେଲା ଏବଂ, ଅନ୍ୟ ଦିଗରେ, ଭାରତର ବିଜୟ ଫଳରେ

ଦକ୍ଷିଣ-ପୂର୍ବ ଏସିଆ ତଥା ସ୍ୱୟଂ ଭାରତର ପରିସ୍ଥିତିରେ ଶକ୍ତିର ଭାରସାମ୍ୟରେ ଏକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଲା । ଏହିସବୁ କାରଣରୁ ଇନ୍ଦିରା ଗାନ୍ଧୀ ଓ ଜାତୀୟ କଂଗ୍ରେସର ସମ୍ମାନ ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ୧୯୭୨ ଖ୍ରୀଷ୍ଟାବ୍ଦର ରାଜ୍ୟ ବିଧାନ ସଭା ନିର୍ବାଚନରେ କଂଗ୍ରେସ ଜୟ ଲାଭ କଲା ।

ଭାରତ-ପାକିସ୍ତାନ ଯୁଦ୍ଧର ଫଳଜାତ ସମସ୍ୟାବଳୀର ସମାଧାନ ୧୯୭୨ ଖ୍ରୀଷ୍ଟାବ୍ଦରେ ଭାରତର ବୈଦେଶିକ ନୀତିକୁ ବ୍ୟାପକ ଭାବେ ପ୍ରଭାବିତ କରିଥିଲା । ୧୯୭୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଭାରତ ବଙ୍ଗଳା ଦେଶ ସହିତ ମୈତ୍ରୀ ଏବଂ ସହଯୋଗିତା ଚୁକ୍ତି (ଭାରତ ବଙ୍ଗଳା ଦେଶକୁ ଆନୁଷ୍ଠାନିକ ସ୍ୱୀକୃତି ଦେଇଥିଲା ୧୯୭୧, ଡିସେମ୍ବର ୬ ତାରିଖରେ) ସ୍ୱାକ୍ଷର କଲା ଏବଂ ତାକୁ ଅର୍ଥନୈତିକ ସାହାଯ୍ୟ ଦେଲା । ୧୯୭୨ ମାର୍ଚ୍ଚ ମାସରେ ବଙ୍ଗଳା ଦେଶରୁ ଭାରତୀୟ ସୈନ୍ୟବାହିନୀ ପ୍ରତ୍ୟାହୃତ ହେଲେ ।

୧୯୭୨ ଖ୍ରୀଷ୍ଟାବ୍ଦ, ଜୁଲାଇ ୩ ତାରିଖରେ ସିମଲାରେ ଇନ୍ଦିରା ଗାନ୍ଧୀ ଓ ପାକିସ୍ତାନର ନବ ନିଯୁକ୍ତ ରାଷ୍ଟ୍ରପତି ଜୁଲଫିକର ଅଲୀ ଭୁଟୋଙ୍କ ମଧ୍ୟରେ ଅନୁଷ୍ଠିତ ବୈଠକରେ ସ୍ୱାକ୍ଷରିତ ଏକ ଚୁକ୍ତି ଅନୁଯାୟୀ ଦୁଇ ଦେଶର ଅନ୍ତର୍ଗତ ଅମୀମାଂସିତ ବିଷୟସମୂହର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଏକ ଭିତ୍ତି ତିଆରି ହୋଇଥିଲା । ଏହି ଚୁକ୍ତି ଅନୁଯାୟୀ ୧୯୭୨ ଖ୍ରୀଷ୍ଟାବ୍ଦର ଶେଷ ବେଳକୁ ଦୁଇ ଦେଶ ମଧ୍ୟରେ ଯୁଦ୍ଧଜାତ ଅନେକ ସମସ୍ୟାର (କାଶ୍ମୀରରେ ନିୟନ୍ତ୍ରଣ ରେଖା ନିର୍ଦ୍ଧାରଣ, ସୈନ୍ୟ ପ୍ରତ୍ୟାହାର ଓ ଯୁଦ୍ଧବନ୍ଦୀ ବିନିମୟ ଆଦି) ନିଷ୍ପତ୍ତି ହୋଇ ଯାଇଥିଲା ।

ଯୁଦ୍ଧ ଚାଲିଥିଲା ବେଳେ ଆମେରିକା ଯୁକ୍ତ ରାଷ୍ଟ୍ରର ପାକିସ୍ତାନକୁ ସମର୍ଥନ ଓ ଭାରତକୁ ସାହାଯ୍ୟ ସ୍ଥଗିତ ଫଳରେ ଏହି ଦୁଇ ଦେଶ ମଧ୍ୟରେ ସଂପର୍କ ସାଂଘାତିକ ଭାବେ କ୍ଷତିଗ୍ରସ୍ତ ହୋଇଥିଲା । ଏଥି ସାଥେ ସାଥେ ଭାରତ ବିଶ୍ୱ ରାଜନୀତିରେ ପ୍ରଗତିଶୀଳ ଶକ୍ତିର ପ୍ରତିନିଧିମାନଙ୍କ ସହିତ ତା'ର ସଂପର୍କକୁ ମଜ୍‌ବୁତ୍ କରି ଚାଲିଥିଲା । ଭିଏତ୍‌ନାମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର, ଜର୍ମାନ୍ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରକୁ ସ୍ୱୀକୃତି ଏବଂ ଦକ୍ଷିଣ ଭିଏତ୍‌ନାମ ପ୍ରଜାତନ୍ତ୍ରର ଅସ୍ଥାୟୀ ବିପ୍ଳବୀ ସରକାରକୁ ଭାରତର ଆନୁଷ୍ଠାନିକ ସମର୍ଥନ ଦାନ ମଧ୍ୟରେ ଏହାର ଯଥାର୍ଥ୍ୟ ସ୍ପଷ୍ଟ ହୋଇ ଉଠିଥିଲା । ଭିଏତ୍‌ନାମରେ ଆମେରିକା ଯୁକ୍ତ ରାଷ୍ଟ୍ରର ନୀତି, ସାଇଗନ୍ ସରକାରର ପଦକ୍ଷେପ ଏବଂ ଆରବ ଦେଶସମୂହ ବିରୁଦ୍ଧରେ ଇସ୍‌ରାଏଲୀର ଆକ୍ରମଣ ବିରୁଦ୍ଧରେ ଭାରତ ତୀବ୍ର ସମାଲୋଚନା କରିଥିଲା ।

୧୯୭୧ ଖ୍ରୀଷ୍ଟାବ୍ଦର ସୋଭିଏତ୍-ଭାରତ ଚୁକ୍ତି ଦୁଇ ଦେଶ ମଧ୍ୟରେ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ସହଯୋଗିତା ବିକାଶରେ ଆଉରି ସାଫଲ୍ୟ ଲାଭକୁ ସହଜତର କରିଥିଲା । ୧୯୭୨ ଖ୍ରୀଷ୍ଟାବ୍ଦରେ ବ୍ୟାପକ ବୈଜ୍ଞାନିକ ଓ କାରିଗରିଗତ ସହଯୋଗିତା କ୍ଷେତ୍ରରେ ଉଭୟ ଦେଶ ମଧ୍ୟରେ ଅନେକଗୁଡ଼ିଏ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା ।

୧୯୭୨ ଖ୍ରୀଷ୍ଟାବ୍ଦଠାରୁ ଆରମ୍ଭ ହୋଇଥିବା ଆନ୍ତର୍ଜାତିକ ଉତ୍ତେଜନା ହ୍ରାସ ଦିଗରେ ସାଧାରଣ ଉଦ୍ୟୋଗ ମଧ୍ୟ ଭାରତର ବୈଦେଶିକ ନୀତିକୁ ପ୍ରଭାବିତ କରିଥିଲା ।

ପ୍ରସଙ୍ଗତଃ, ସୋଭିଏତ୍-ଭାରତ ମୈତ୍ରୀର ତାତ୍ପର୍ଯ୍ୟ ଏବଂ ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ଭାରତର ସ୍ଥାନ ସଂପର୍କରେ ସୋଭିଏତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପୂର୍ବତନ ସାଧାରଣ ସଂପାଦକ ଏଲ୍.ଆଇ.ବ୍ରେଜ୍‌ନେଭ୍‌ଙ୍କ ମୂଲ୍ୟାୟନଟି ଉଲ୍ଲେଖଯୋଗ୍ୟ । ତାଙ୍କ ଭାଷାରେ :

"ଏସିଆର ଭାଗ୍ୟ ନିର୍ଦ୍ଧାରଣ କ୍ଷେତ୍ରରେ ଭାରତର ମୁଖ୍ୟ ଭୂମିକାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ଆମେ ଏହି ଦେଶ ସହିତ ଶାନ୍ତି, ମୈତ୍ରୀ ଓ ସହଯୋଗିତାର ଏକ ଚୁକ୍ତି ଦ୍ୱାରା ଆବଦ୍ଧ । ଆମ ନିକଟରେ ଏହି ଚୁକ୍ତି ହେଲା ଶୁଭ ଓ ବନ୍ଧୁତ୍ୱପୂର୍ଣ୍ଣ ସ୍ଥାୟୀ ସଂପର୍କର ଏକ ନିର୍ଭରଣୀୟ ଭିତ୍ତି ସ୍ୱରୂପ । ବିଶ୍ୱ ରାଜନୀତିକୁ ଭାରତ ବିରାଟ ଏବଂ ମୂଲ୍ୟବାନ ଅବଦାନ ଦେଇଛି ଏବଂ ଆମେ ନିଶ୍ଚିତ ଯେ, ତା'ର ଏହି ଭୂମିକା ନିରନ୍ତର ବୃଦ୍ଧି ପାଇବ । ପ୍ରତିବର୍ଷ ଭାରତ-ସୋଭିଏତ୍ ମୈତ୍ରୀ ଦୃଢ଼ତର ହେଉଛି ଏବଂ କହିବା ବାହୁଲ୍ୟ ଯେ, ଆଗାମୀ କାଳରେ ଦୁଇ ଦେଶ ତଥା ବିଶ୍ୱ ଶାନ୍ତି ପକ୍ଷରେ କଲ୍ୟାଣକର ନୂଆ ନୂଆ ପଦକ୍ଷେପ ନିଆଯିବ ।"*

---

* "ପ୍ରାଭ୍‌ଦା", ୧୯୭୩, ସେପ୍‌ଟେମ୍ବର ୨୫ (ରୁଷ୍ ଭାଷାରେ) ।

# ସତୁରି ଦଶକର ମଧ୍ୟ ଭାଗ ଓ ଶେଷାର୍ଦ୍ଧରେ ଭାରତର ଆଭ୍ୟନ୍ତରୀଣ ବିକାଶରେ ଗଭୀର ଦ୍ୱନ୍ଦ୍ୱ (୧୯୭୩-୧୯୭୯)

୧୯୭୧ ଏବଂ ୧୯୭୨ ଖ୍ରୀଷ୍ଟାବ୍ଦର ନିର୍ବାଚନରେ ପ୍ରଗତିଶୀଳ ସାମାଜିକ-ଅର୍ଥନୈତିକ ସଂସ୍କାରର କର୍ମସୂଚୀ ଉପସ୍ଥାପନ ଫଳରେ ଭାରତୀୟ ଜାତୀୟ କଂଗ୍ରେସ ବ୍ୟାପକ ସ୍ତରର ଭୋଟଦାତାମାନଙ୍କ ଭୋଟ ପାଇଥିଲା । ନିର୍ବାଚନ ସମୟରେ କଂଗ୍ରେସ ଓ ଭାରତର କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ବୁଝାମଣା, କେତେକ କ୍ଷେତ୍ରରେ କମ୍ୟୁନିଷ୍ଟ ଓ ଶାସକ ଦଳର ବାମ-ମଧ୍ୟପନ୍ଥୀ ଅଂଶ ମଧ୍ୟରେ ସହଯୋଗିତା, ଏସବୁଥିରେ ଦେଶର ରାଜନୈତିକ ଜୀବନରେ ଅଧିକତର ବାମପନ୍ଥୀ ପ୍ରବଣତା ବିକାଶର ବାସ୍ତବ ସମ୍ଭବନା ସୃଷ୍ଟି ହୋଇଥିଲା । କିନ୍ତୁ ନିର୍ବାଚନ କାଳରେ ଘୋଷିତ ଇନ୍ଦିରା ଗାନ୍ଧୀଙ୍କ ବାମ-ମଧ୍ୟପନ୍ଥୀ କର୍ମସୂଚୀର ରୂପାୟନ ଭାରତର ବୁର୍ଜୁଆ ବିକାଶର କ୍ରମବର୍ଦ୍ଧମାନ ଦ୍ୱନ୍ଦ୍ୱ ଫଳରେ ଜଟିଳତର ହୋଇ ଉଠିଥିଲା । ୧୯୭୧ ଓ ୧୯୭୨ ଖ୍ରୀଷ୍ଟାବ୍ଦର ନିର୍ବାଚନରେ କଂଗ୍ରେସର ଜୟ ଲାଭ ଦେଶରେ ବୃଦ୍ଧି ପାଉଥିବା ସାମାଜିକ-ରାଜନୈତିକ ସମସ୍ୟାର ସମାଧାନ କରି ପାରି ନଥିଲା, କିନ୍ତୁ ଏଥିରେ "ନେହରୁ ଧାରାର" ଇତିବାଚକ ବୈଶିଷ୍ଟ୍ୟଗୁଡ଼ିକୁ ଅତୁଟ ରଖିବା ପାଇଁ ସଂଗ୍ରାମର ଏକ ନୂତନ ପର୍ଯ୍ୟାୟ ସୂଚୀତ ହୋଇଥିଲା ।

## ସତୁରି ଦଶକର ମଧ୍ୟ ଭାଗରେ ଦେଶର ଅର୍ଥନୈତିକ ଅବସ୍ଥା

ବୁର୍ଜୁଆ ପଥରେ ଭାରତର ବିକାଶର ଦ୍ୱନ୍ଦ୍ୱ ପ୍ରଥମେ ଦେଶର ଅର୍ଥନୈତିକ ଅସୁବିଧାରାଜି ମଧ୍ୟରେ ସ୍ପଷ୍ଟ ହୋଇ ଉଠିଥିଲା ।

ସ୍ୱାଧୀନତା ଲାଭ ପରେ ଭାରତ ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ନିର୍ଦ୍ଦିଷ୍ଟ ସାଫଲ୍ୟ ଲାଭ କରିଥିଲା । ସତୁରି ଦଶକର ମଧ୍ୟ ଭାଗ ବେଳକୁ ମୋଟ ଶିଳ୍ପ ଉତ୍ପାଦନ ଚାରି ଗୁଣରୁ ବେଶି ବୃଦ୍ଧି ପାଇଥିଲା । ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ କ୍ଷେତ୍ରରେ ନିଷ୍କାସନ ଓ ମ୍ୟାନୁଫାକ୍‌ଚରିଂ ଶିଳ୍ପର ନୂଆ କେତୋଟି ଶାଖା — ଧାତୁ ଶିଳ୍ପ ଓ ଭାରୀ ଯନ୍ତ୍ର ନିର୍ମାଣ ଶିଳ୍ପ — ନିର୍ମିତ ହୋଇଥିଲା । ସମସ୍ତ ପ୍ରକାରର ଶକ୍ତି ଉତ୍ପାଦନର ଭିତ୍ତି ମଧ୍ୟ ସଂପ୍ରସାରିତ ହୋଇଥିଲା : କୋଇଲା ନିଷ୍କାସନ ୨.୩ ଗୁଣ, ତୈଳ ୨୫ ଗୁଣ, ତୈଳଜାତ ଦ୍ରବ୍ୟ ୮୫ ଗୁଣ ଏବଂ ବିଦ୍ୟୁତ୍ ଶକ୍ତି ୧୦ ଗୁଣ ବୃଦ୍ଧି ପାଇଥିଲା । କୃଷି କ୍ଷେତ୍ରରେ ପୁଞ୍ଜିବାଦୀ ଉଦ୍ୟୋଗର ଯାନ୍ତ୍ରିକୀକରଣ ଓ ରାସାୟନିକୀକରଣର ସୂଚନା ପ୍ରକୃତରେ ଭାରତରେ ଶିଳ୍ପ ବିପ୍ଳବ ନୂତନ ପର୍ଯ୍ୟାୟରେ ଅନୁପ୍ରବେଶ କରିବାର ନାମାନ୍ତର ଥିଲା ।

କିନ୍ତୁ ଔପନିବେଶିକତାର ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ଅର୍ଥନୈତିକ ବ୍ୟବସ୍ଥାର ପୁନର୍ଗଠନ କାର୍ଯ୍ୟରେ ଯଥେଷ୍ଟ ସାଫଲ୍ୟର ସାଥେ ସାଥେ ଷାଠିଏ ଦଶକର ମଝାମଝି ବେଳକୁ ପୁଞ୍ଜିବାଦୀ ପଥରେ ଆଗେଇ ଯିବାର ଜଟିଳତା କ୍ରମଶଃ ସ୍ପଷ୍ଟତର ହୋଇ ଉଠିଥିଲା । ଏହାର ପ୍ରଥମ ପରିପ୍ରକାଶ ଘଟିଥିଲା ଅର୍ଥନୈତିକ ବିକାଶର ନିମ୍ନ ହାର ମଧ୍ୟରେ – ଯଥା , ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଶିଳ୍ପ ଉତ୍ପାଦନ ବୃଦ୍ଧିର ପରିମାଣ ବର୍ଷକୁ ହାରାହାରି ଥିଲା ୬.୫ ଶତାଂଶ , ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ୭.୩ ଶତାଂଶ , ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ୭.୮ ଶତାଂଶ ଏବଂ ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ (୧୯୬୯-୧୯୭୦ – ୧୯୭୩-୧୯୭୪) ମାତ୍ର ୩.୮ ଶତାଂଶ (୧୯୩୭-୧୯୪୬ ଖ୍ରୀଷ୍ଟାବ୍ଦ ମଧ୍ୟରେ – ୦.୬ ଶତାଂଶ) , ଯଦିବା ବୃଦ୍ଧିର ପରିକଳ୍ପନା ଥିଲା ବାର୍ଷିକ ୮-୧୦ ଶତାଂଶ । ସତୁରି ଦଶକର ପ୍ରଥମାର୍ଦ୍ଧରେ ଶିଳ୍ପୋତ୍ପାଦନ ବୃଦ୍ଧିର ଗତି ମାତ୍ରା ହ୍ରାସ ପାଇଥିଲା : ୧୯୭୧ ଖ୍ରୀଷ୍ଟାବ୍ଦରେ ୩.୬ ଶତାଂଶ , ୧୯୭୨ ଖ୍ରୀଷ୍ଟାବ୍ଦରେ ୨.୯, ୧୯୭୩ ଖ୍ରୀଷ୍ଟାବ୍ଦରେ ୨.୫ ଶତାଂଶ । ପରବର୍ତ୍ତୀ ୧୯୭୪ ଓ ୧୯୭୫ ଖ୍ରୀଷ୍ଟାବ୍ଦରେ ଶିଳ୍ପୋତ୍ପାଦନରେ କୌଣସି ଉନ୍ନତି ଘଟି ନଥିଲା ।

କୃଷି କ୍ଷେତ୍ରରେ ନିରବଚ୍ଛିନ୍ନ ଅନଗ୍ରସରତା ଥିଲା ଭାରତର ଶିଳ୍ପ ବିକାଶର ମନ୍ଦାବସ୍ଥାର ପ୍ରଧାନ କାରଣ । ସ୍ୱାଧୀନତା ଲାଭ ପରେ କୃଷି ଉତ୍ପାଦନରେ ନିର୍ଦ୍ଦିଷ୍ଟ ଉନ୍ନତି ଘଟିଥିଲା (ଘନୀଭୂତ ଓ ପରିବ୍ୟାପ୍ତ ଉଭୟ ଦିଗରୁ) : କୃଷି ଉତ୍ପାଦନରେ ମୋଟ ପରିମାଣ ଦ୍ୱିଗୁଣାଧିକ , ଚାଷ ଜମିର ପରିମାଣ ଶତକଡ଼ା ୩୦ ଭାଗ , ଜଳସେଚିତ ଜମିର ଆୟତନ ଦୁଇ ଗୁଣ , ପ୍ରଧାନ ଫସଲଗୁଡ଼ିକର ଫଳନ ଶତକଡ଼ା ୪୦ ଭାଗ ବୃଦ୍ଧି ପାଇଥିଲା । କିନ୍ତୁ ଷାଠିଏ ଦଶକର ମଝାମଝିରୁ "ସବୁଜ ବିପ୍ଳବ"ର ବିସ୍ତାର ସମୟରେ କୃଷି ଉତ୍ପାଦନ ବୃଦ୍ଧିର ଭିତ୍ତି ଖୁବ୍ ସଂକୀର୍ଣ୍ଣ ଥିଲା – ଏଥିରେ ଅନ୍ତର୍ଭୁକ୍ତ ଥିଲା ମୋଟ ଚାଷ ଜମିର ଏକ ପଞ୍ଚମାଂଶ ମାତ୍ର । ସେଇସବୁ ଜମି ମୁଖ୍ୟତଃ ଥିଲା ଧନୀ କୃଷକ ଓ ଜମିଦାରମାନଙ୍କର ଖମାର । ସତୁରି ଦଶକର ପ୍ରଥମାର୍ଦ୍ଧରେ ଦେଶରେ ମୋଟ ଚାଷ ଜମିର ଅର୍ଦ୍ଧେକ ସେମାନଙ୍କ ହାତରେ କେନ୍ଦ୍ରୀଭୂତ ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ , ସେଇସବୁ ଖମାର ମଧ୍ୟରୁ ଅଧିକାଂଶରେ ଆଗ ଭଳି ଆଦିମ ଧରଣର କାରୁକୌଶଳରେ ଚାଷ ହେଉଥିଲା । ସତୁରି ଦଶକର ମଝାମଝି ବେଳକୁ ଉତ୍ତର-ପଶ୍ଚିମ ଭାରତର ଉନ୍ନତତମ ଅଞ୍ଚଳ (ପଞ୍ଜାବ ଓ ହରିଆନା ଏବଂ ଉତ୍ତର ପ୍ରଦେଶର ପଶ୍ଚିମାଞ୍ଚଳ) ଏବଂ ଦେଶର ପଶ୍ଚିମ ଓ ଦକ୍ଷିଣବର୍ତ୍ତୀ ରାଜ୍ୟର ପୃଥକ୍ ପୃଥକ୍ ଅଞ୍ଚଳରେ "ସବୁଜ ବିପ୍ଳବ" ସଂଘଟିତ ହୋଇଥିଲା ।

ଅଧିକାଂଶ ଖମାରର ମାଲିକ ଥିଲେ (ପ୍ରାୟ ୭୦ ଭାଗ) ଅଳ୍ପ ଜମିର ମାଲିକ ଗରିବ ଚାଷୀ ଓ ଅର୍ଦ୍ଧ ସର୍ବହରା ଏବଂ ଚାଷ ଜମିର ଅର୍ଦ୍ଧେକ ଥିଲା ପ୍ରାୟ ଉତ୍ପାଦନହୀନ । ଏହିସବୁ "ଅଲାଭଜନକ" ଖମାରର ମାଲିକମାନେ ନିଃସ୍ୱ ଓ ସର୍ବହରା ପର୍ଯ୍ୟାୟକୁ ଆସି ଯାଇଥିଲେ ।

ଭାରତର କୃଷି ଓ ଶିଳ୍ପଜାତ ସାମଗ୍ରୀର ବୃଦ୍ଧି ହାର ପ୍ରକୃତରେ ଜନସଂଖ୍ୟା ବୃଦ୍ଧି ଠାରୁ ଅଧିକ ନଥିଲା (ବର୍ଷକୁ ୨.୫ ଶତାଂଶ) । ସେଥି ପାଇଁ ୧୯୫୦-୧୯୭୧ ଖ୍ରୀଷ୍ଟାବ୍ଦରେ ମୁଣ୍ଡ ପିଛା ବାର୍ଷିକ ଆୟର ବୃଦ୍ଧି ହାର ଥିଲା ମାତ୍ର ୧.୫ ଶତାଂଶ । ୧୯୭୨-୧୯୭୫ ଖ୍ରୀଷ୍ଟାବ୍ଦରେ ଏଥିରେ ନିୟମିତ ହ୍ରାସ ଘଟିଥିଲା ଏବଂ କେବଳ ୧୯୭୬-୧୯୭୭ ଖ୍ରୀଷ୍ଟାବ୍ଦରେ ଏଥିରେ ସାମାନ୍ୟ ବୃଦ୍ଧି ଦେଖା ଦେଇଥିଲା ।

ସରକାରୀ ତଥ୍ୟ ଅନୁଯାୟୀ ସତୁରି ଦଶକର ପ୍ରାରମ୍ଭରେ ଯଥାକ୍ରମେ ଗ୍ରାମୀଣ ଓ ସହର ଲୋକଙ୍କର ୪୦ ଭାଗ ଓ ୫୦ ଭାଗ "ଦାରିଦ୍ର୍ୟର ସୀମାରେଖା" ତଳେ ଜୀବନ ଅତିବାହିତ

କରୁଥିଲେ । ଅର୍ଥାତ୍, ପ୍ରତିମାସରେ ବ୍ୟକ୍ତିଗତ ପ୍ରୟୋଜନ ପାଇଁ ସେମାନେ ୨୦ ଟଙ୍କାରୁ ଅଧିକ ଖର୍ଚ୍ଚ କରି ପାରୁ ନଥିଲେ (୧୯୬୧ ଖ୍ରୀଷ୍ଟାବ୍ଦର ମୁଦ୍ରା ମୂଲ୍ୟ ଅନୁସାରେ) । ଏହି ବିରାଟ ଦାରିଦ୍ର୍ୟ ସାଙ୍ଗକୁ ବୃଦ୍ଧି ପାଉଥିଲା ଆର୍ଥିକ ଅସାମ୍ୟ ଏବଂ ଭାରତର ପତ୍ରପତ୍ରିକାମାନଙ୍କର ଭାଷାରେ ବିଭଶାଳୀ ଶ୍ରେଣୀଗୁଡ଼ିକର ଉପର ସ୍ତରରେ ବ୍ୟକ୍ତିଗତ ବ୍ୟୟ "କଳଙ୍କଜନକ" ମାତ୍ରାକୁ ବୃଦ୍ଧି ପାଇଥିଲା । ଭାରତର ବଡ଼ ବଡ଼ ସହରରେ, ବିଶେଷତଃ, ବମ୍ବେରେ ବୁର୍ଜୁଆ ବିକାଶର ଏହି ଦ୍ୱନ୍ଦ୍ୱରାଜି ପ୍ରକଟିତ ହୋଇଥିଲା । ସେଠାରେ ଝାଟିମାଟିରେ ତିଆରି ବସ୍ତିଗୁଡ଼ିକର ବିସ୍ତାର ପାଖକୁ ମହାର୍ଘ ବାଙ୍ଗଲେ ଏବଂ ନବ୍ୟ ଧନିକମାନଙ୍କର ବହୁତାଲା ବିଶିଷ୍ଟ କୋଠା ଗଢ଼ି ଉଠିଥିଲା ।

ଭାରତୀୟ ଜନସାଧାରଣଙ୍କର ମୂଳ ଅଂଶର ଅତ୍ୟନ୍ତ ନୀଚ କ୍ରୟ କ୍ଷମତା, ଭାରତର ଅର୍ଥନୀତିର ପ୍ରଧାନ ଶାଖାଗୁଡ଼ିକର କାରିଗରି ପୁନର୍ଗଠନରେ ସୀମିତ ସମ୍ଭାବନା ଓ ନିମ୍ନ ଗତି (ଭାରତର ଅର୍ଥନୀତିରେ ସେତେବେଳେ ନିଷ୍କାସନ ଓ ମ୍ୟାନୁଫାକ୍‌ଚରିଂ ଶିଳ୍ପର ଉନ୍ମେଷ ଘଟି ନଥିଲା), ବିଶ୍ୱ ବଜାରରେ ଭାରତୀୟ ପଣ୍ୟର ପ୍ରତିଦ୍ୱନ୍ଦ୍ୱିତା କରିବାର ନୀଚ କ୍ଷମତା—ଏହିସବୁ କାରଣରୁ ଭାରତୀୟ ଶିଳ୍ପର ବଜାର ଥିଲା ଖୁବ୍ ସଂକୀର୍ଣ୍ଣ । ଦେଶର ପ୍ରଧାନ ପ୍ରଧାନ ଶିଳ୍ପଶାଖାର ଉତ୍ପାଦନୀ କ୍ଷମତାର ଅସଂପୂର୍ଣ୍ଣ ବ୍ୟବହାର ଏକ ସ୍ୱକୀୟ ବୈଶିଷ୍ଟ୍ୟରେ ପରିଣତ ହୋଇଥିଲା ।

ସଂକଟର ଏହି ପୃଷ୍ଠଭୂମିରେ ଭାରତର ଅର୍ଥନୀତିର ଅସମାନୁପାତିକ ଉନ୍ନତିର ସମସ୍ୟା ତୀବ୍ର ହୋଇ ଉଠିଥିଲା । ବୁର୍ଜୁଆମାନଙ୍କ ମଧ୍ୟରେ ବିରୋଧ ମଧ୍ୟ ତୀବ୍ର ହୋଇ ଉଠିଥିଲା ।

ସତୁରି ଦଶକର ମଧ୍ୟ ଭାଗ ବେଳକୁ ଭାରତର ଶିଳ୍ପାୟନରେ ରାଷ୍ଟ୍ରୀୟ କ୍ଷେତ୍ରର ପ୍ରଧାନ ଭୂମିକା ପୂରାପୂରି ଭାବେ ନିର୍ଦ୍ଧାରିତ ହୋଇ ଯାଇଥିଲା । ଅର୍ଥନୈତିକ ବିକାଶ କ୍ଷେତ୍ରରେ ରାଷ୍ଟ୍ରୀୟ ପୁଞ୍ଜି ଲଗ୍ନିର ଅଂଶ ୧୯୫୦-୧୯୫୧ ଖ୍ରୀଷ୍ଟାବ୍ଦରେ ଥିବା ଶତକଡ଼ା ୩ ଭାଗରୁ ୧୯୭୧-୧୯୭୨ ଖ୍ରୀଷ୍ଟାବ୍ଦରେ ୪୮ ଭାଗକୁ ବୃଦ୍ଧି ପାଇଥିଲା । ବ୍ୟକ୍ତିଗତ ପୁଞ୍ଜିବାଦୀ କ୍ଷେତ୍ର ତୁଳନାରେ ରାଷ୍ଟ୍ରୀୟ କ୍ଷେତ୍ରରେ ଦ୍ରୁତ ଅର୍ଥ ଲଗ୍ନି ହୋଇଥିଲା । ସତୁରି ଦଶକର ପ୍ରାରମ୍ଭରେ ରାଷ୍ଟ୍ରୀୟର କ୍ଷେତ୍ରର (ଅବଗଢ଼ଣ ସମେତ) ଏବଂ ବ୍ୟକ୍ତିଗତ କ୍ଷେତ୍ରର ସଂସ୍ଥାଗୁଡ଼ିକରେ ମୋଟ ଅର୍ଥ ଲଗ୍ନି ଯଥାକ୍ରମେ ୨୨ ହଜାର କୋଟି ଏବଂ ୧୩ ହଜାର କୋଟି ହୋଇଥିଲା ।

କେତେକ କ୍ଷେତ୍ରରେ ରାଷ୍ଟ୍ରୀୟର କ୍ଷେତ୍ର ନିଷ୍ପତ୍ତିମୂଳକ ଭୂମିକା ପାଳନ କରିବାକୁ ଆରମ୍ଭ କରିଥିଲା । ରାଷ୍ଟ୍ରୀୟର କଳକାରଖାନାରେ ଏହା ପରେ ଉତ୍ପନ୍ନ ହୋଇଥିଲା : ୮୫ ଶତାଂଶ କଞ୍ଚା ଲୁହା, ୪୮ ଶତାଂଶ ଇସ୍‌ପାତ, ୯୫ ଶତାଂଶ ନିଷ୍କାସିତ ତେଲ ଓ ତୈଳଜାତ ସାମଗ୍ରୀ, ୮୦ ଶତାଂଶ ବିଦ୍ୟୁତ୍ ଶକ୍ତି, ୫୦ ଶତାଂଶ ରାସାୟନିକ ସାର ଆଦି ।

ଅବଗଢ଼ଣ କ୍ଷେତ୍ରରେ ମଧ୍ୟ ରାଷ୍ଟ୍ରର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ : ରେଳପଥ, ସଡ଼କ, ସମୁଦ୍ରବନ୍ଦର, ବିମାନ ପରିବହନ, ଯୋଗାଯୋଗ, ବଡ଼ ବଡ଼ ଜଳସେଚନ ବ୍ୟବସ୍ଥା, ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକ ଥିଲା ରାଷ୍ଟ୍ରାଧୀନ ।

ସଞ୍ଚଳନ କ୍ଷେତ୍ରରେ ମଧ୍ୟ ରାଷ୍ଟ୍ରର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଥିଲା : ବ୍ୟାଙ୍କ୍ ଜମାରେ ରାଷ୍ଟ୍ରର ଅଂଶ ଥିଲା ଶତକଡ଼ା ୮୨ ଭାଗ, ଆମଦାନି ବାଣିଜ୍ୟରେ ୭୦ ଭାଗ ଏବଂ ରପ୍ତାନି ବାଣିଜ୍ୟରେ ୩୦ ଭାଗ ।

କିନ୍ତୁ ସେପର୍ଯ୍ୟନ୍ତ ରାଷ୍ଟ୍ରୀୟର କ୍ଷେତ୍ର ଦେଶର ଅର୍ଥନୀତିରେ ପ୍ରଧାନ ସ୍ଥାନ ଅଧିକାର କରି ନଥିଲା ।

ମ୍ୟାନୁଫାକ୍ଚରିଂ ଶିଳ୍ପରେ ରାଷ୍ଟ୍ରାୟତ୍ତ କ୍ଷେତ୍ରର ଅଂଶ ଥିଲା ପ୍ରାୟ ୩୦ ଶତାଂଶ ଏବଂ ମୋଟ ଜାତୀୟ ଉତ୍ପାଦନରେ ୧୬ ଶତାଂଶ । ସତୁରି ଦଶକର ପ୍ରାରମ୍ଭରେ ଶିଳ୍ପୋତ୍ପାଦନ ଓ କୃଷି ଉତ୍ପାଦନ କ୍ଷେତ୍ରରେ ରାଷ୍ଟ୍ରାୟତ୍ତ କ୍ଷେତ୍ରର ଭାଗ ଯଥାକ୍ରମେ ମାତ୍ର ୮ ଓ ୦.୨ ଶତାଂଶ ଥିଲା ।

ରାଷ୍ଟ୍ରାୟତ୍ତ କ୍ଷେତ୍ରର କ୍ରମବର୍ଦ୍ଧମାନ କ୍ଷମତା ଏବଂ ତତ୍ ସଙ୍ଗେ ସଙ୍ଗେ ଦେଶର ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ରାଷ୍ଟ୍ରୀୟ ନିୟନ୍ତ୍ରଣର ବିଭିନ୍ନ ଧରଣର ଅବିରାମ ଗୁରୁତ୍ୱ ବୃଦ୍ଧି ଫଳରେ ବ୍ୟକ୍ତିଗତ ପୁଞ୍ଜିବାଦୀ ମହଲ ରାଷ୍ଟ୍ରାୟତ୍ତ ପୁଞ୍ଜିବାଦର ସମାଲୋଚନାରେ ମୁଖର ହୋଇ ଉଠିଥିଲେ । କେବଳ କଞ୍ଚାମାଲ, ପୁଞ୍ଜି ଓ ପଣ୍ୟ ବଜାରରେ ପ୍ରତିଦ୍ୱନ୍ଦ୍ୱିତା ପାଇଁ ନୁହେଁ, ଅଣପୁଞ୍ଜିବାଦୀ ବିକାଶର ଭବିଷ୍ୟତ ଅର୍ଥନୈତିକ ଭିତ୍ତି ରୂପେ ଶକ୍ତିଶାଳୀ ରାଷ୍ଟ୍ରାୟତ୍ତ କ୍ଷେତ୍ର ଗଢ଼ି ଉଠିବାର ଆଶଙ୍କା ଏଥିରେ ନିହିତ ଥିଲା । ଏଥି ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ କ୍ଷେତ୍ର ଓ ରାଷ୍ଟ୍ରୀୟ ପୁଞ୍ଜି ସଂପର୍କରେ ଜାତୀୟ ବୁର୍ଜୁଆମାନଙ୍କର ଦ୍ୱୈତ ଧାରଣା ଥିଲା । ଜାତୀୟ ବୁର୍ଜୁଆମାନେ ରାଷ୍ଟ୍ରାୟତ୍ତ କ୍ଷେତ୍ର ଉପରେ ନିର୍ଭରଶୀଳ । ତା'ଛଡ଼ା ଅର୍ଥନୀତିର ନିୟନ୍ତ୍ରଣମୂଳକ ବ୍ୟବସ୍ଥା ଓ ରାଷ୍ଟ୍ରର ପୃଷ୍ଠପୋଷକତା ନୀତିର ଅନୁକୂଳରେ ସ୍ୱାଧୀନତା ଲାଭ ପରେ ଗତ ୩୦ ବର୍ଷ ଧରି ସେମାନେ ନିଜର କର୍ମକ୍ଷେତ୍ର ବିସ୍ତାର କରିବାରେ ସକ୍ଷମ ହୋଇଥିଲେ । ରାଷ୍ଟ୍ରାୟତ୍ତ କ୍ଷେତ୍ର ଭାରତରେ ପୁଞ୍ଜିର ଘନୀଭବନ ଓ କେନ୍ଦ୍ରୀଭବନ ପ୍ରକ୍ରିୟାରେ ବାଧା ସୃଷ୍ଟି କରି ନାହିଁ । ଷାଠିଏ ଦଶକର ଏବଂ ସତୁରି ଦଶକର ପ୍ରାରମ୍ଭରେ ଏକଚ୍ଛଟିଆମାନଙ୍କର କ୍ରିୟାକଳାପକୁ ସୀମିତ କରିବା ଉଦ୍ଦେଶ୍ୟରେ ପ୍ରବର୍ତ୍ତିତ ବ୍ୟବସ୍ଥାବଳୀ ଫଳପ୍ରସୂ ହୋଇ ନଥିଲା : ସତୁରି ଦଶକର ପ୍ରାରମ୍ଭରେ ଭାରତୀୟ ଓ ବିଦେଶୀ ମୋଟ ୧୩୩ଟି ଅତି ବୃହତ୍ ଗୋଷ୍ଠୀ ହାତରେ ଥିଲା ବ୍ୟକ୍ତିଗତ ଶେୟାର କଂପାନିଗୁଡ଼ିକର ସମସ୍ତ ପୁଞ୍ଜିର ୭୫ ଶତାଂଶ । ଆଠଟି ବୃହତ୍ତମ ଏକଚ୍ଛଟିଆ ଗୋଷ୍ଠୀ ମଧ୍ୟରୁ ପ୍ରତ୍ୟେକଙ୍କ ହାତରେ ହଜାର କୋଟି ଟଙ୍କାରୁ ଅଧିକ ଅର୍ଥ ଜମା ଥିଲା : ବିରଳାର ୧୦ ହଜାର ୬୦୦ କୋଟି, ଟାଟାର ୯ ହଜାର ୭୦୦ କୋଟି ଏବଂ ମଫତଲାଲର ୬୯୦୦ କୋଟି ଟଙ୍କା ।

ବଡ଼ ବଡ଼ ବୁର୍ଜୁଆ ଓ ସେମାନଙ୍କ ଏକଚ୍ଛଟିଆ ଊର୍ଦ୍ଧ୍ୱ ସ୍ତରର ଅବସ୍ଥାନ ଦୃଢ଼ ହେବା ସାଥେ ସାଥେ ଛୋଟ ଛୋଟ ପୁଞ୍ଜିବାଦୀ ବ୍ୟବସାୟ ବାଣିଜ୍ୟର ଅଭିବୃଦ୍ଧି ଘଟିଥିଲା । ଅର୍ଦ୍ଧକୁଟୀର ଶିଳ୍ପ ଧରଣର ହଜାର ହଜାର ଛୋଟ ଛୋଟ କଳ ଓ ଶିଳ୍ପ ପ୍ରତିଷ୍ଠାନ ଗଢ଼ି ଉଠିବା ମଧ୍ୟରେ ପୁଞ୍ଜିବାଦର ବ୍ୟାପକତା ପରିଲକ୍ଷିତ ହୁଏ । ଏହି ସମୟରେ ଆଧୁନିକ କଳକାରଖାନା ତୁଳନାରେ ଅଧିକତର ଶ୍ରମିକନିର୍ଭର ଛୋଟ ଛୋଟ ଉତ୍ପାଦନ ସ୍ଥଳରେ କ୍ରମଶଃ ଆଧୁନିକ ପୁଞ୍ଜିବାଦୀ ଉତ୍ପାଦନ ଦେଖା ଦେଇଥିଲା । ଶିଳ୍ପ କ୍ଷେତ୍ରର ଉତ୍ପାଦିତ ଜାତୀୟ ଆୟରେ କ୍ଷୁଦ୍ର ଶିଳ୍ପର ଅଂଶ ୧୯୫୦-୧୯୫୧ରେ ୬୨ ଭାଗରୁ ୧୯୭୨-୧୯୭୩ରେ ୩୪.୬ ଭାଗକୁ କମି ଆସିଥିଲା । ଅର୍ଥନୀତିର ବିଭିନ୍ନ କ୍ଷେତ୍ରରେ ଯଥା ବୃହତ୍ ଉତ୍ପାଦନ ଉପରେ କ୍ଷୁଦ୍ର ଉତ୍ପାଦନର ନିର୍ଭରତା ସାଥେ ସାଥେ ସେସବୁ ମଧ୍ୟରେ ବିରୋଧ ମଧ୍ୟ ବୃଦ୍ଧି ପାଇଥିଲା ।

ଭାରତୀୟ ଅର୍ଥନୀତିର ଏହିସବୁ ଜଟିଳ ଏବଂ ପରସ୍ପରବିରୋଧୀ ପ୍ରକ୍ରିୟାଗୁଡ଼ିକ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା ।

# ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତି (୧୯୭୩-୧୯୭୫)

ଦେଶରେ କ୍ରମବର୍ଦ୍ଧମାନ ମୁଦ୍ରାସ୍ଫୀତି ଫଳରେ ସତୁରି ଦଶକର ପ୍ରଥମାର୍ଦ୍ଧରେ ପଣ୍ୟର ପାଇକାରୀ ଓ ଖୁଚୁରା ଉଭୟ ଦାମ୍ ଅବିରତ ବୃଦ୍ଧି ପାଉଥିଲା । କେବଳ ୧୯୭୪ ଖ୍ରୀଷ୍ଟାବ୍ଦରେ ଖୁଚୁରା ଦାମ୍ ଶତକଡ଼ା ୩୦ ଭାଗ ବୃଦ୍ଧି ପାଇଥିଲା । ଫଳରେ ବ୍ୟାପକ ସ୍ତରର ଶ୍ରମଜୀବୀମାନଙ୍କ ଦୁଃଖକଷ୍ଟର ବୋଝ ଆଉରି ଦୁର୍ବହ ହୋଇ ଉଠୁଥିଲା । ଶ୍ରମଜୀବୀମାନଙ୍କ ଧର୍ମଘଟ ସଂଗ୍ରାମ ବ୍ୟାପକ ହେବାରେ ଲାଗିଥିଲା । ଧର୍ମଘଟ ଫଳରେ ୧୯୭୧ ମସିହାରେ ଦେଢ଼ କୋଟି କର୍ମ ଦିବସ ନଷ୍ଟ ହେଲା ବେଳେ ୧୯୭୪ ମସିହାରେ ଏହି ସଂଖ୍ୟାଟି ୩ କୋଟି ୧୦ ଲକ୍ଷରେ ପହଞ୍ଚିଥିଲା । ୧୯୭୩-୧୯୭୪ ମସିହାରେ ସାରା ଭାରତ ଟ୍ରେନ୍-ଡ୍ରାଇଭରମାନଙ୍କ ଧର୍ମଘଟ, ବମ୍ବେର ବସ୍ତକଳ ଶ୍ରମିକମାନଙ୍କର ୪୦ ଦିନ ବ୍ୟାପୀ ଧର୍ମଘଟ, ପଶ୍ଚିମ ବଂଗର ଝୋଟକଳ ଶ୍ରମିକମାନଙ୍କର ୩୩ ଦିନିଆ ଧର୍ମଘଟ, କାନ୍‌ପୁର ଓ ତାମିଲନାଡୁର ବସ୍ତକଳ ଶ୍ରମିକ ଧର୍ମଘଟ ଥିଲା ଶ୍ରମିକ ଶ୍ରେଣୀର ବୃହତ୍ତର ଧର୍ମଘଟ । ଏହି ସଂଗ୍ରାମ ସମୟରେ ବିଭିନ୍ନ ଟ୍ରେଡ୍‌ୟୁନିଅନ୍‌ର ଐକ୍ୟବଦ୍ଧ କାର୍ଯ୍ୟକଳାପର ପରିସର ବୃଦ୍ଧି ପାଇଥିଲା । ୧୯୭୨ ଖ୍ରୀଷ୍ଟାବ୍ଦର ମେ ମାସରେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକର ଜାତୀୟ ପରିଷଦ ଗଠନର ଅନୁକୂଳ ପରିସ୍ଥିତି ଦେଖା ଦେଲା । ଜାତୀୟ ପରିଷଦରେ ଦେଶର ବୃହତ୍ତମ ଟ୍ରେଡ୍‌ୟୁନିଅନ୍ – ନିଖିଳ ଭାରତ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ, ଭାରତୀୟ ଜାତୀୟ ଟ୍ରେଡ୍‌ୟୁନିଅନ୍ କଂଗ୍ରେସ, "ହିନ୍ଦ୍ ମଜ୍‌ଦୁର ସଭା" ଅନ୍ତର୍ଗତ ହୋଇଥିଲେ । ତେବେ ଭାରତର କମ୍ୟୁନିଷ୍ଟ ପାର୍ଟିର ଓ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ଉଭୟର ପ୍ରଭାବାଧୀନ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ମଧ୍ୟରେ ବିଦ୍ୟମାନ ମତାନୈକ୍ୟ ଐକ୍ୟବଦ୍ଧ ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନ ପଥରେ ବାଧା ସୃଷ୍ଟି କରୁଥିଲା ।

ଶ୍ରମିକ ଶ୍ରେଣୀର ସଂଗ୍ରାମ ସାଥେ ସାଥେ ଶ୍ରମଜୀବୀ ଚାଷୀ ଓ ଖେତ ମଜୁରିଆମାନଙ୍କର କାର୍ଯ୍ୟକଳାପ ମଧ୍ୟ ବୃଦ୍ଧି ପାଇଥିଲା । ଉଭୟ କମ୍ୟୁନିଷ୍ଟ ପାର୍ଟିର ଅଧୀନସ୍ଥ ସମାନ୍ତରାଳ କର୍ମରତ ନିଖିଳ ଭାରତ କୃଷକ ସଭା ଦ୍ୱୟ ୧୯୭୨-୧୯୭୫ ମସିହାରେ ଜମିର "ସର୍ବୋଚ୍ଚ ସୀମା" ଆଇନ୍‌ର ରୂପାୟନ, ଭାଗ ଚାଷୀମାନଙ୍କର ସ୍ୱାର୍ଥରକ୍ଷା, କୃଷକମାନଙ୍କର ପ୍ରୟୋଜନୀୟ ଶିଳ୍ପପଣ୍ୟର ଦାମ୍ ହ୍ରାସ, କୃଷିଜାତ ଜିନିଷର କ୍ରୟ ମୂଲ୍ୟ ବୃଦ୍ଧିର ଉଦ୍ଦେଶ୍ୟରେ ଦେଶ ବ୍ୟାପୀ ଓ ସ୍ଥାନୀୟ ଭାବେ କେତେକ ଆନ୍ଦୋଳନ ଚଳେଇଥିଲେ । କୃଷକ ସମିତିଗୁଡ଼ିକର ଅତ୍ୟନ୍ତ ସଂଖ୍ୟା ଏବଂ ନିୟମିତ ସଂଗ୍ରାମ ଚାଳନାର ଅସାମର୍ଥ୍ୟରେ ଏସବୁର ଦୁର୍ବଳତା ନିହିତ ଥିଲା ।

୧୯୭୩ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ ଭାଟିଣ୍ଡା ସହରରେ (ପଞ୍ଜାବ) ଆୟୋଜିତ କୃଷକ ସଭାର ୨୧ତମ ଜାତୀୟ ସମ୍ମିଳନୀରେ କୃଷକ ଆନ୍ଦୋଳନର କର୍ମସୂଚୀ ବ୍ୟାଖ୍ୟା କରାଯାଇଥିଲା ।

ସେଇସବୁ ବର୍ଷରେ ନିଖିଳ ଭାରତ ଖେତ ମଜୁରିଆ ସମିତିର କ୍ରିୟାକଳାପ ମଧ୍ୟ ବୃଦ୍ଧି ପାଇଥିଲା । ଏହି ପ୍ରତିଷ୍ଠାନରେ, ବିଶେଷତଃ, ଭାଗ ଚାଷୀ ଓ ହରିଜନମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇଥିଲା । ସମିତିର କାର୍ଯ୍ୟକଳାପର ପ୍ରଧାନ ଲକ୍ଷ୍ୟ ହେଲା : ମଜୁରି ବୃଦ୍ଧି, ଜମି ହାସଲ, କୃଷି ସଂସ୍କାର ଓ ହରିଜନମାନଙ୍କ ପ୍ରତି ଜାତିଗତ ବୈଷମ୍ୟର ବିଲୋପ ପାଇଁ ସଂଗ୍ରାମ । ୧୯୭୪

ଖ୍ରୀଷ୍ଟାବ୍ଦରେ ତେନାଲି ସହରରେ (ଆନ୍ଧ୍ର ପ୍ରଦେଶ) ସମିତିର ତୃତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ଟ୍ରେଡ୍‌ୟୁନିଅନ୍ ଏବଂ କୃଷକ, ଯୁବ ଓ ଅନ୍ୟାନ୍ୟ ସଂଗଠନର ସହାୟତାରେ ଭାରତର କମ୍ୟୁନିଷ୍ଟ ପାର୍ଟି ୧୯୭୨-୧୯୭୪ରେ ଶ୍ରମଜୀବୀମାନଙ୍କର ଅର୍ଥନୈତିକ ଓ ରାଜନୈତିକ ସ୍ୱାର୍ଥ ରକ୍ଷା ଉଦ୍ଦେଶ୍ୟରେ ଦେଶ ସାରା କେତେକ ଗଣ ଆନ୍ଦୋଳନ ଚଳେଇଥିଲା ।

୧୯୭୨ ମସିହା ଅକ୍ଟୋବର ମାସରେ ଅନୁଷ୍ଠିତ ହୋଇଥିଲା ଦେଶବ୍ୟାପୀ ସତ୍ୟାଗ୍ରହ । ଏହି ଆନ୍ଦୋଳନ ସମୟରେ ପ୍ରଗତିଶୀଳ ଅର୍ଥନୈତିକ ନୀତି ଅନୁସରଣର ଧ୍ୱନି ସମେତ ତହସିଲ ଅଫିସ୍‌ମାନଙ୍କରେ ପିକେଟିଂ କରାଯାଇଥିଲା । ୧୯୭୩ ମସିହା ମାର୍ଚ୍ଚ ମାସ ୨୭ ତାରିଖରେ ଆୟୋଜିତ ପାର୍ଲିଆମେଣ୍ଟ ସମ୍ମୁଖରେ "ମହାଭିଯାନ"ରେ ୫ଲକ୍ଷ ଲୋକ ଯୋଗ ଦେଇଥିଲେ । ଜାତୀୟ କଂଗ୍ରେସର ପ୍ରାକ୍‌ନିର୍ବାଚନୀ କର୍ମସୂଚୀରେ ଘୋଷିତ ପ୍ରଗତିଶୀଳ ସାମାଜିକ-ଅର୍ଥନୈତିକ ସଂସ୍କାରର ଦାବିସମ୍ବଳିତ ଆବେଦନପତ୍ରରେ ଦେଢ଼ କୋଟି ଲୋକ ସ୍ୱାକ୍ଷର କରିଥିଲେ ।

୧୯୭୩ ଓ ୧୯୭୪ ମସିହାରେ ଭାରତର କମ୍ୟୁନିଷ୍ଟ ପାର୍ଟି ଶସ୍ୟ ମହଜୁତ୍‌କାରୀ ଓ ଘେରାବଜାରୀମାନଙ୍କ ବିରୁଦ୍ଧରେ ବ୍ୟାପକ ଅଭିଯାନ ଚଳେଇଥିଲା ।

ଭାରତର କମ୍ୟୁନିଷ୍ଟ ପାର୍ଟି ତା'ର ରାଜନୈତିକ ନୀତି ଅନୁସରଣ ମାଧ୍ୟମରେ, ଯଥା, ଏକ ଦିଗରେ, ପାର୍ଲିଆମେଣ୍ଟ ଓ ବିଧାନ ସଭାରେ କଂଗ୍ରେସକୁ ସମର୍ଥନ ଦେବା ଏବଂ ନିର୍ବାଚନରେ ଶାସକ ଦଳ ସହିତ ମେଣ୍ଟ ବାନ୍ଧିବା ସଙ୍ଗେ ସଙ୍ଗେ, ଅନ୍ୟ ଦିଗରେ, ୧୯୬୭-୧୯୭୨ ଖ୍ରୀଷ୍ଟାବ୍ଦରେ ଉଦ୍‌ଭୂତ ବାମ-ମଧ୍ୟପନ୍ଥୀ ପ୍ରବଣତାର ବିକାଶ ଉଦ୍ଦେଶ୍ୟରେ କଂଗ୍ରେସ ଉପରେ ଚାପ ସୃଷ୍ଟିର ବ୍ୟାପକ କ୍ରିୟାକଳାପ ଅବ୍ୟାହତ ରଖିଥିଲା ।

ଗଣ ଆନ୍ଦୋଳନ ସମୟରେ ବାମପନ୍ଥୀ ଦଳଗୁଡ଼ିକ ମଧ୍ୟରେ ଐକ୍ୟ ସୃଷ୍ଟି ପାଇଁ ଚେଷ୍ଟା ଚାଲିଥିଲା । ଏହି ଉଦ୍ଦେଶ୍ୟରେ ୧୯୭୪, ଏପ୍ରିଲ ମାସରେ ଭାରତର କମ୍ୟୁନିଷ୍ଟ ପାର୍ଟି, ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ), ସୋସାଲିଷ୍ଟ ପାର୍ଟି ଏବଂ କେତେକ ସ୍ଥାନୀୟ ବାମପନ୍ଥୀ ଦଳର ପ୍ରତିନିଧିମାନଙ୍କ ମଧ୍ୟରେ ବୈଠକ ଅନୁଷ୍ଠିତ ହୋଇଥିଲା ଏବଂ ସେମାନେ ଏକ ନିମ୍ନତମ ସାଧାରଣ କର୍ମସୂଚୀ ଗ୍ରହଣ କରିଥିଲେ । ବାମପନ୍ଥୀ ଐକ୍ୟ ହେତୁ ୧୯୭୪ ଖ୍ରୀଷ୍ଟାବ୍ଦ ମେ ମାସରେ ସାରା ଭାରତ ରେଲ ଶ୍ରମିକ ଧର୍ମଘଟ ସଫଳ ହୋଇଥିଲା । ଏଥିରେ ୧୫ ଲକ୍ଷ ଶ୍ରମିକ ଯୋଗ ଦେଇଥିଲେ ।

୧୯୭୫ ମସିହା ଜାନୁଆରୀ ୨୭ ତାରିଖରୁ ଫେବୃଆରୀ ୨ ତାରିଖ ପର୍ଯ୍ୟନ୍ତ ବିଜୟୱାଡ଼ାରେ (ଆନ୍ଧ୍ର ପ୍ରଦେଶ) ଆୟୋଜିତ ଭାରତର କମ୍ୟୁନିଷ୍ଟ ପାର୍ଟିର ୧୦ମ କଂଗ୍ରେସରେ ପାର୍ଟିର ୯ମ କଂଗ୍ରେସର (୧୯୭୧) ପରବର୍ତ୍ତୀ ସମୟକାଳର ପାର୍ଟି ପରିଚାଳିତ ସଂଗ୍ରାମର ଫଳାଫଳ ଆଲୋଚିତ ହୋଇଥିଲା ଏବଂ ବାମପନ୍ଥୀ ଓ ଗଣତାନ୍ତ୍ରିକ ଶକ୍ତିଗୁଡ଼ିକର ସାମ୍ମୁଖ୍ୟର କର୍ମସୂଚୀ ବ୍ୟାଖ୍ୟା କରାଯାଇଥିଲା ।

ତା ସତ୍ତ୍ୱେ ଦେଶର ଆଭ୍ୟନ୍ତରୀଣ ରାଜନୈତିକ ପରିସ୍ଥିତିର ପରବର୍ତ୍ତୀ ବିକାଶ ବାମପନ୍ଥୀ ଓ ଗଣତାନ୍ତ୍ରିକ ଶକ୍ତିସମୂହର ଦୃଢ଼ତର ଐକ୍ୟ ପକ୍ଷରେ ବାଧା ସୃଷ୍ଟି ହୋଇଥିଲା ।

ଅର୍ଥନୈତିକ ପରିସ୍ଥିତିର କ୍ରମାବନତି, କଂଗ୍ରେସର ବହୁଳ ପ୍ରଚାରିତ ଅର୍ଥନୈତିକ ଓ ସାମାଜିକ ସଂସ୍କାରର କର୍ମସୂଚୀ ରୂପାୟନ କ୍ଷେତ୍ରରେ ବିଫଳତା ଆଦି ଫଳରେ ଜନସାଧାରଣଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ଦେଖା ଦେଇଥିଲା ଏବଂ ଏହି ସୁଯୋଗରେ କଂଗ୍ରେସବିରୋଧୀ ଜାତୀୟତାବାଦୀ କ୍ଷୁଦ୍ର ବୁର୍ଜୁଆ ଓ ବୁର୍ଜୁଆ ପାର୍ଟିମାନେ ସକ୍ରିୟ ହୋଇ ଉଠିଥିଲେ ।

ପ୍ରସଙ୍ଗତଃ ୧୯୭୨-୧୯୭୩ ମସିହାରେ ଆନ୍ଧ୍ର ପ୍ରଦେଶରେ ବ୍ୟାପକ ଆନ୍ଦୋଳନଟି ଉଲ୍ଲେଖଯୋଗ୍ୟ । ଏହି ଆନ୍ଦୋଳନରେ ସ୍ଥାନୀୟ ଜାତୀୟତାବାଦୀ ଓ ସ୍ୱାତନ୍ତ୍ର୍ୟବାଦୀ ପ୍ରବଣତାର ବୃଦ୍ଧି ପ୍ରକାଶ ପାଇଥିଲା । ବିଚ୍ଛିନ୍ନ ଏକ ରାଜ୍ୟ ଗଠନ ଥିଲା ଆନ୍ଦୋଳନଟିର ଲକ୍ଷ୍ୟ ।

୧୯୭୪ ମସିହାର ପ୍ରାରମ୍ଭରେ ଉତ୍ତର ପ୍ରଦେଶ, ଓଡ଼ିଶା ଏବଂ ଆଉ ତିନୋଟି ରାଜ୍ୟ କେନ୍ଦ୍ରଶାସିତ ଅଞ୍ଚଳରେ କଂଗ୍ରେସ ଓ ଭାରତର କମ୍ୟୁନିଷ୍ଟ ପାର୍ଟି ପାରସ୍ପରିକ ସମର୍ଥନ ସଂପର୍କରେ ପୁନର୍ବାର ଚୁକ୍ତିବଦ୍ଧ ହୋଇଥିଲେ । କିନ୍ତୁ ଏ କ୍ଷେତ୍ରରେ ଏମାନଙ୍କର ବିରୋଧୀ ପାର୍ଟିଗୁଡ଼ିକ ମଧ୍ୟ ଯଥେଷ୍ଟ ସାଫଲ୍ୟ ଅର୍ଜନ କରିଥିଲେ ।

ରାଷ୍ଟ୍ରୀୟଭ କ୍ଷେତ୍ରକୁ ଆଉରି ଶକ୍ତିଶାଳୀ କରିବା ଏବଂ ୧୯୭୩-୧୯୭୪ ମସିହାରେ ଶସ୍ୟ ବାଣିଜ୍ୟ କ୍ଷେତ୍ରରେ ରାଷ୍ଟ୍ରୀୟ ଏକଚାଟିଆ ଅଧିକାର ପ୍ରତିଷ୍ଠା କରିବା ନୀତି ଫଳରେ ଅସନ୍ତୁଷ୍ଟ ସହର ଓ ଗ୍ରାମ୍ୟ ବୁର୍ଜୁଆମାନଙ୍କ ମଧ୍ୟରୁ ଅଧିକାଂଶ କଂଗ୍ରେସବିରୋଧୀ ଶକ୍ତିମାନଙ୍କୁ ସମର୍ଥନ ଦେଇଥିଲେ । ସେତିକିବେଳେ କେଇ ଶହ ଅଲାଭଜନକ କୋଇଲା ଖଣି ଓ ସୂତାକଳ ଉପରେ ରାଷ୍ଟ୍ରୀୟ ନିୟନ୍ତ୍ରଣ ଲାଗୁ କରିବାର ସରକାରୀ ପଦକ୍ଷେପ ଫଳରେ କେତେକ ମହଲରେ ଆଶଙ୍କା ସୃଷ୍ଟି ହୋଇଥିଲା ।

ଏପରି ପରିସ୍ଥିତିରେ ଖ୍ୟାତନାମା ଗାନ୍ଧୀବାଦୀ ସମାଜ କର୍ମୀ, ପୂର୍ବତନ ସୋସାଲିଷ୍ଟ ନେତା ଜୟ ପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ୧୯୭୪ ମସିହାରେ ଗୁଜରାଟ ଓ ବିହାରରେ ବ୍ୟାପକ ଆନ୍ଦୋଳନ ଦେଖା ଦେବା ଦ୍ୱାରା କଂଗ୍ରେସ ସାଂଘାତିକ ବିପଦାପନ୍ନ ହୋଇଥିଲା । କେନ୍ଦ୍ର ଏବଂ ରାଜ୍ୟ କଂଗ୍ରେସକୁ କ୍ଷମତାଚ୍ୟୁତ କରିବା ଉଦ୍ଦେଶ୍ୟରେ ଏହି ଆନ୍ଦୋଳନରେ "ସର୍ବାତ୍ମକ ବିପ୍ଳବର" ସ୍ଲୋଗାନ ଦିଆଯାଇଥିଲା । ଏହା ପରେ ଗୁଜରାଟରେ ବ୍ୟାପକ ଗଣ୍ଡଗୋଳ ଫଳରେ ବିଧାନ ସଭା ଭାଙ୍ଗି ଦେଇ ରାଷ୍ଟ୍ରପତି ଶାସନ ଜାରି କରାଗଲା । ବିହାରରେ ଭାରତର କମ୍ୟୁନିଷ୍ଟ ପାର୍ଟିର ସ୍ଥାନୀୟ ସଂଗଠନ ଏବଂ କଂଗ୍ରେସର ସକ୍ରିୟ କାର୍ଯ୍ୟକଳାପ ଫଳରେ ସେଠାକାର ସରକାର ଉଚ୍ଛେଦର ଧମକ ବ୍ୟର୍ଥ ହୋଇଥିଲା ।

ଜୟ ପ୍ରକାଶ ନାରାୟଣ ଓ ତାଙ୍କ ସମର୍ଥକ ସରକାରବିରୋଧୀ ଦଳଗୁଡ଼ିକର ଗଣ ଆନ୍ଦୋଳନ ସହିତ ଦକ୍ଷିଣପନ୍ଥୀ (ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଓ ଆନନ୍ଦ ମାର୍ଗ) ଏବଂ ବାମପନ୍ଥୀ ନକସାଲ୍, ଚରମପନ୍ଥୀ ସଂଗଠନଗୁଡ଼ିକ ଏବଂ ଗୋଷ୍ଠୀସମୂହ ଖୁବ୍ ସକ୍ରିୟ ହୋଇ ଉଠିଥିଲେ । ୧୯୭୫ ମସିହାର ଜାନୁଆରୀ ମାସରେ ବିହାରରେ ସନ୍ତ୍ରାସବାଦୀମାନେ ଭାରତର ପରିବହନ ମନ୍ତ୍ରୀ ଲଳିତ ନାରାୟଣ ମିଶ୍ରଙ୍କୁ ହତ୍ୟା କଲେ । ଦିଲ୍ଲୀର ସୁପ୍ରିମ କୋର୍ଟର ବିଚାରପତି ଏ.ଏନ୍.ରାୟଙ୍କୁ ହତ୍ୟା କରିବା ପାଇଁ ଚେଷ୍ଟା ହେଲା ।

ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ (ସେତେବେଳେ ସେ ପ୍ରତିବାଦ ଅନଶନ ଧର୍ମଘଟ ଘୋଷଣା କରିଥିଲେ) ବ୍ୟାପକ ଆନ୍ଦୋଳନ ଫଳରେ ଗୁଜରାଟରେ କଂଗ୍ରେସ ସରକାରର ପତନ ଘଟିଥିଲା ଏବଂ ରାଷ୍ଟ୍ରପତି ଶାସନ ଲାଗୁ ହୋଇଥିଲା । ଜୟ ପ୍ରକାଶ ନାରାୟଣଙ୍କ ଉଦ୍ୟୋଗରେ ସମସ୍ତ ପ୍ରଧାନ ପ୍ରଧାନ ବିରୋଧୀ ଦଳଙ୍କୁ ନେଇ ଗଠିତ "ଜନତା ସାମ୍ମୁଖ୍ୟ" ୧୯୭୫ ଖ୍ରୀଷ୍ଟାବ୍ଦରେ ଗୁଜରାଟ ବିଧାନ ସଭା ନିର୍ବାଚନରେ ଜୟ ଲାଭ କଲା । ଐକ୍ୟବଦ୍ଧ ବିରୋଧୀ ଶକ୍ତିଗୁଡ଼ିକଙ୍କ ସାମନାରେ ଗୁଜରାଟ ନିର୍ବାଚନ କଂଗ୍ରେସର ଦୁର୍ବଳତାକୁ ସ୍ପଷ୍ଟ କରିଦେଲା ।

ଏହା ପରେ ଶାସକ ଦଳ ମଧ୍ୟରେ ଜୟ ପ୍ରକାଶ ନାରାୟଣଙ୍କ ସହିତ ଏକ ବୁଝାମଣା କରିବା ପାଇଁ ଆଗ୍ରହ ପ୍ରକାଶ ପାଇଲା । ଏହି ଦୃଷ୍ଟିଭଙ୍ଗିର ବିଶେଷ ଉଦ୍ୟୋକ୍ତା ଥିଲେ "ତରୁଣ ତୁର୍କ" – ଚନ୍ଦ୍ର ଶେଖର, ମୋହନ ଧାରିଆ ଏବଂ ୧୯୬୫ ମସିହାରେ କଂଗ୍ରେସ ତ୍ୟାଗ କରିଥିବା ଏକ ବାମପନ୍ଥୀ ଗୋଷ୍ଠୀ ।

ରାୟ ବେରଲୀ ନିର୍ବାଚନ ମଣ୍ଡଳୀରେ ୧୯୭୧ ମସିହା ନିର୍ବାଚନରେ ଇନ୍ଦିରା ଗାନ୍ଧୀ କ୍ଷମତାର ଅପବ୍ୟବହାର କରିଥିଲେ ବୋଲି ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କ ଅଭିଯୋଗ କ୍ରମେ ଏଲାହାବାଦ ହାଇ କୋର୍ଟ ଶ୍ରୀମତୀ ଗାନ୍ଧୀଙ୍କୁ ଦୋଷୀ ସାବ୍ୟସ୍ତ କଲେ । ଅଦାଲତର ଏହି ସିଦ୍ଧାନ୍ତ ପରେ ଜୁନ୍ ମାସରେ କଂଗ୍ରେସବିରୋଧୀ ଶକ୍ତିସମୂହ ପ୍ରଧାନମନ୍ତ୍ରୀଙ୍କ ବିରୁଦ୍ଧରେ ଖୋଲାଖୋଲି ଆକ୍ରମଣ ଆରମ୍ଭ କରିଦେଲେ । ଅଦାଲତର ରାୟରେ ଶ୍ରୀମତୀ ଗାନ୍ଧୀଙ୍କ ପାର୍ଲିଆମେଣ୍ଟ ସଦସ୍ୟପଦ ବାତିଲ ହୋଇଗଲା (ଏଥି ସାଥେ ସାଥେ ପ୍ରଧାନମନ୍ତ୍ରୀପଦ ମଧ୍ୟ) ଏବଂ ଛଅ ବର୍ଷ ପାଇଁ ସେ ନିର୍ବାଚନରେ ଅଂଶଗ୍ରହଣ କରିବାର ଅଧିକାର ମଧ୍ୟ ହରେଇଲେ । ଏହି ସିଦ୍ଧାନ୍ତ ବିରୁଦ୍ଧରେ ଶ୍ରୀମତୀ ଗାନ୍ଧୀ ଉଚ୍ଚତମ ନ୍ୟାୟାଳୟରେ ଅପିଲ କରିଥିଲେ । ଉଚ୍ଚତମ ନ୍ୟାୟାଳୟ ଏକ ଦ୍ୱ୍ୟର୍ଥକ ରାୟ ଦେଇ ଏଲାହାବାଦ ହାଇ କୋର୍ଟର ସିଦ୍ଧାନ୍ତକୁ ମୁଲତବି ରଖିଦେଲେ ।

ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ସମେତ ଦେଶର ପ୍ରଧାନ ବିରୋଧୀଦଳସମୂହ ଇନ୍ଦିରା ଗାନ୍ଧୀଙ୍କ ପଦତ୍ୟାଗ ଦାବି କଲେ । ଏହା ପରେ ଦେଶବ୍ୟାପୀ ଆଇନ୍ ଅମାନ୍ୟ ଆନ୍ଦୋଳନର ସିଦ୍ଧାନ୍ତ ଗୃହୀତ ହେଲା । ଜୟ ପ୍ରକାଶ ନାରାୟଣ ସେତେବେଳେ ସରକାରର ନିର୍ଦ୍ଦେଶକୁ ଅସ୍ୱୀକାର କରିବାକୁ ସେନାବାହିନୀ ଓ ପୁଲିସ୍‌କୁ ଆହ୍ୱାନ ଦେଲେ ।

## ଆଭ୍ୟନ୍ତରୀଣ ରାଜନୈତିକ ବିକାଶର ମୋଡ଼ ପରିବର୍ତ୍ତନ : ଜରୁରୀ ଅବସ୍ଥା ଏବଂ ୧୯୭୭ ମସିହାର ନିର୍ବାଚନ

ଭି.ଭି.ଗିରିଙ୍କ ମିଆଦ ଶେଷ ହେବା ପରେ ୧୯୭୪ ମସିହା ଅଗଷ୍ଟ ମାସରେ ରାଷ୍ଟ୍ରପତି ରୂପେ ନିର୍ବାଚିତ ଫକରୁଦ୍ଦୀନ୍ ଅଲୀ ଆହମଦ ବିରୋଧୀ ପକ୍ଷର କାର୍ଯ୍ୟକଳାପର ମୁକାବିଲା ପାଇଁ ଜୁନ୍ ୨୬ ତାରିଖରେ ଜରୁରୀ ଅବସ୍ଥା ଘୋଷଣା କଲେ । ବିରୋଧୀଦଳସମୂହର ୬୦୦ରୁ ଅଧିକ ନେତାଙ୍କ ସମେତ ୧୯୭୫ ମସିହାରେ ବିରୋଧୀଦଳ ଏବଂ ଜୟ ପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ପରିଚାଳିତ ଆନ୍ଦୋଳନରେ ଅଂଶଗ୍ରହଣକାରୀ ୩୦ ହଜାରରୁ ଅଧିକ କର୍ମୀଙ୍କୁ ଗିରଫ୍ କରାଗଲା । ଜୁଲାଇ ୪ ତାରିଖ ଦିନ ୨୬ଟି ଚରମପନ୍ଥୀ ପ୍ରତିଷ୍ଠାନ (ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ, ଆନନ୍ଦ ମାର୍ଗ, ନକସାଲ୍ ପ୍ରଭୃତି) ବେଆଇନୀ ଘୋଷିତ ହୋଇଥିଲେ ।

ଇନ୍ଦିରା ଗାନ୍ଧୀ ତାଙ୍କ ବେତାର ଭାଷଣରେ ଜନସାଧାରଣଙ୍କ ନିକଟରେ ପ୍ରଗତିଶୀଳ ସାମାଜିକ-

ଅର୍ଥନୈତିକ ସଂସାରର ୨୦ ଦଫା ପରିକଳ୍ପନାର କଥା ଘୋଷଣା କଲେ । ଏଥିରେ ଥିଲା : ଦ୍ରୁତ କୃଷି ସଂସାର, ଖେତ ମଜୁରିଆଙ୍କ ଅବସ୍ଥାରେ ଉନ୍ନତି ସାଧନ, ଋଣ ଛାଡ଼ ଆଦି ।

ଦେଶର କ୍ରମୋନ୍ନତ ଅର୍ଥନୈତିକ ପରିସ୍ଥିତିରେ ଇନ୍ଦିରା ଗାନ୍ଧୀ ବିରୋଧୀ ପକ୍ଷଙ୍କ ଉପରେ ଏହି ଆଘାତ ହାଣିଥିଲେ । ୧୯୭୪-୧୯୭୫ କୃଷି ବର୍ଷରେ ଅଶ୍ରୁତପୂର୍ବ ଫସଲ ଅମଳ ପରେ (୧୨ କୋଟି ଟନ୍ ଶସ୍ୟ) ସରକାର ୧୯୭୪, ଶରତ କାଳରୁ ମୁଦ୍ରାସ୍ଫୀତି ହ୍ରାସ ଏବଂ ୧୯୭୬, ବସନ୍ତ କାଳ ପର୍ଯ୍ୟନ୍ତ ପାଇକାରୀ ଓ ଖୁଚୁରା ଦାମ୍ କମାଇବାକୁ ସକ୍ଷମ ହୋଇଥିଲେ ।

ଶାସକ ଦଳର ନେତାମାନେ ଘୋଷଣା କଲେ ଯେ, ଦକ୍ଷିଣପନ୍ଥୀ ବିପଦ ବିରୁଦ୍ଧରେ ହିଁ ଜରୁରୀ ଅବସ୍ଥା ପ୍ରବର୍ତ୍ତିତ ହୋଇଛି । ଭାରତର କମ୍ୟୁନିଷ୍ଟ ପାର୍ଟି ସରକାରର ଏହି ପଦକ୍ଷେପକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ୨୦ ଦଫା କର୍ମସୂଚୀର ରୂପାୟନରେ କଂଗ୍ରେସ ସହିତ ସକ୍ରିୟ ସହଯୋଗିତା କରିଥିଲା ।

ସରକାରୀ ତଥ୍ୟାନୁଯାୟୀ ୧୯୭୬ ମସିହା ଶରତ କାଳ ବେଳକୁ ସରକାର ୧୦ ଲକ୍ଷାଧିକ ହେକ୍ଟର "ଉଦ୍‌ବୃତ୍ତ ଜମି" ବାଜ୍ୟାପ୍ତ କରିଥିଲେ ଏବଂ ଭୂମିହୀନ ଓ କ୍ଷୁଦ୍ର ଚାଷୀମାନଙ୍କ ମଧ୍ୟରେ ୬ ଲକ୍ଷାଧିକ ହେକ୍ଟର ଜମି ବଣ୍ଟନ କରିଥିଲେ । ଏହି ସମୟରେ ଗୃହ ନିର୍ମାଣ ପାଇଁ ୭୦ ଲକ୍ଷ ଖେତ ମଜୁରିଆ ଜମି ପାଇଥିଲେ । ରାଷ୍ଟ୍ରପତିଙ୍କ ଅନୁଶାସନରେ କୃଷି ଋଣ ପରିଶୋଧ ସ୍ଥଗିତ ରଖିବା ସାଥେ ସାଥେ ଗୋତି ପ୍ରଥା ଉଚ୍ଛେଦ କରା ହୋଇଥିଲା ।

୧୯୭୫-୧୯୭୬ ମସିହାରେ କୃଷକ ସଭା ଓ ଖେତ ମଜୁରିଆ ସମିତି ୨୦ ଦଫା କର୍ମସୂଚୀର ରୂପାୟନ ଉଦ୍ଦେଶ୍ୟରେ ଏକ "ପଦଯାତ୍ରାର" ଆୟୋଜନ କରିଥିଲେ । ଗ୍ରାମର ଅଧିକାଂଶ ଗରିବମାନଙ୍କ ଅବସ୍ଥା ଉପରେ ସରକାରଙ୍କ ଦ୍ୱାରା ଘୋଷିତ କାର୍ଯ୍ୟକର୍ମ ବିଶେଷ କୌଣସି ପ୍ରଭାବ ପାତ କରି ପାରି ନଥିଲା ବୋଲି ସେଇ ଯାତ୍ରା ବେଳେ ଜଣା ପଡ଼ିଥିଲା ।

କାଳକ୍ରମେ ଜରୁରୀ ଅବସ୍ଥାର କୁଫଳ ସ୍ପଷ୍ଟ ହୋଇ ଉଠିବାକୁ ଲାଗିଲା । ଶିଳ୍ପପତିମାନେ "ଶିଳ୍ପ ଶାନ୍ତି ବଜାଏ ରଖିବା" ସଂପର୍କିତ ସର୍ତ୍ତଗୁଡ଼ିକୁ ପୂରଣ କଲେ ନାହିଁ—ତାଲା ବନ୍ଦ ଏବଂ ମଜୁରି ହ୍ରାସ ନିତ୍ୟନୈମିତ୍ତିକ ଘଟଣାର ପରିଣତ ହେଲା, କିନ୍ତୁ ଧର୍ମଘଟ ନିଷିଦ୍ଧ ରହିଲା । ବିମା ପାଣ୍ଠିରେ ମଜୁରିର ଏକାଂଶ ଯୋଗ କରିବାର ବ୍ୟବସ୍ଥା ଦ୍ୱାରା ଶ୍ରମିକ ଏବଂ ଅଫିସ୍ କର୍ମଚାରୀମାନେ ଅସନ୍ତୁଷ୍ଟ ହେଲେ ।

ସେନ୍‌ସର ବା ଯାଞ୍ଚ୍ ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା, ସମ୍ବାଦପତ୍ରମାନଙ୍କ ସ୍ୱାଧୀନତାକୁ ଖର୍ବ କରାଗଲା, ବୈଧାନିକ ସଂସ୍ଥାଗୁଡ଼ିକ ତୁଳନାରେ କାର୍ଯ୍ୟ ନିର୍ବାହୀ ସଂସ୍ଥାମାନଙ୍କର ଭୂମିକା ଅଧିକ ଗୁରୁତ୍ୱ ଲାଭ କଲା ।

ଇନ୍ଦିରା ଗାନ୍ଧୀଙ୍କ କେଶ୍‌ରେ ଏଲାହାବାଦ ହାଇ କୋର୍ଟର ରାୟକୁ ଭାରତର ସର୍ବୋଚ୍ଚ ନ୍ୟାୟାଳୟ ରଦ୍ କରିଦେଲେ । ୧୯୭୫ ଓ ୧୯୭୬ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟର ସଂଖ୍ୟାଗରିଷ୍ଠ ଭୋଟରେ ଏକ ବର୍ଷ ପାଇଁ ସାଧାରଣ ନିର୍ବାଚନ ସ୍ଥଗିତ ରଖିବା ନିମିତ୍ତ ନିଷ୍ପତ୍ତି ନିଆଗଲା । ବିରୋଧୀଦଳ ଏହାର ତୀବ୍ର ସମାଲୋଚନା କରିଥିଲେ ।

୧୯୭୫-୧୯୭୬ ଖ୍ରୀଷ୍ଟାବ୍ଦରେ କ୍ରମଶଃ କେନ୍ଦ୍ର ଭଳି ରାଜ୍ୟଗୁଡ଼ିକରେ ଦକ୍ଷିଣପନ୍ଥୀ ଶକ୍ତିଗୁଡ଼ିକର

କ୍ଷମତା ବୃଦ୍ଧି ପାଇବାକୁ ଲାଗିଲା । ସାମ୍ରାଜ୍ୟବାଦର ସମର୍ଥକ ଦଳଗୁଡ଼ିକ ଦେଶର ଅର୍ଥନୈତିକ ଓ ସାମାଜିକ ପରିସ୍ଥିତିର ବାସ୍ତବ ଜଟିଳତାର ସୁଯୋଗ ନେବାକୁ ଲାଗି ପଡ଼ିଲେ ।

ଇତିମଧ୍ୟରେ କଂଗ୍ରେସର ସମାଜବାଦୀ ଫୋରମଟିକୁ ଭାଙ୍ଗି ଦିଆଯିବା ଫଳରେ ଶାସକ ଦଳ ମଧ୍ୟରେ ବାମ-ମଧ୍ୟପନ୍ଥୀ ଶକ୍ତିର ପ୍ରଭାବ ହ୍ରାସ ପାଇବାକୁ ଲାଗିଲା ।

୧୯୭୭ ମସିହା ଜାନୁଆରୀ ମାସରେ ଆକସ୍ମିକ ଭାବେ ଘୋଷିତ ହେଲା ପାର୍ଲିଆମେଣ୍ଟର ନିର୍ବାଚନ । ଆଭ୍ୟନ୍ତରୀଣ ଏବଂ ବାହ୍ୟିକ କାରଣରୁ ଏହି ସିଦ୍ଧାନ୍ତଟି ନିଆଯାଇଥିଲା । ସମ୍ଭବତଃ, କଂଗ୍ରେସର ନେତୃତ୍ୱ ୨୦ ଦଫା କର୍ମସୂଚୀ ରୂପାୟନର ସୁଫଳ, ୧୯୭୬ ମସିହାର ଅର୍ଥନୈତିକ ସୁପରିସ୍ଥିତି ଏବଂ ୧୯୭୩ ମସିହାରୁ ଶିଳ୍ପପତିମାନଙ୍କ ସ୍ୱାର୍ଥାନୁକୂଳରେ ଅର୍ଥନୀତିର ରାଷ୍ଟ୍ରୀୟ ନିୟନ୍ତ୍ରଣ ସୀମିତକରଣ ଦ୍ୱାରା ବଡ଼ ବଡ଼ ଶିଳ୍ପପତିମାନଙ୍କର ସମର୍ଥନ ଲାଭ କରିବାକୁ ଏହି ନିର୍ବାଚନରେ ଚେଷ୍ଟା କରିଥିଲେ ।

କିନ୍ତୁ ଜରୁରୀ ଅବସ୍ଥାର କୁଫଳ କଂଗ୍ରେସ ଠାରୁ ନିର୍ବାଚକମାନଙ୍କର ଏକାଂଶକୁ ଦୂରେଇ ନେବାର କ୍ଷେତ୍ର ତିଆରି କରି ଦେଇଥିଲା । କଂଗ୍ରେସବିରୋଧୀ ନିର୍ବାଚନୀ ମେଣ୍ଟ ସେତେବେଳେ ଭାରତର କମ୍ୟୁନିଷ୍ଟ ପାର୍ଟିର ନୀତିକୁ ଶାସକ ଦଳର ନୀତି ସହିତ ସାମିଲ ବୋଲି ଘୋଷଣା କରି କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ ବ୍ୟାପକ ପ୍ରଚାର ଚଳେଇଥିଲେ ଏବଂ ଫଳରେ ଏହି ପାର୍ଟିର ସମର୍ଥନ ହ୍ରାସ ପାଇଥିଲା ।

ବିରୋଧୀ ପକ୍ଷର ଐକ୍ୟବଦ୍ଧ ପ୍ରଧାନ ଶକ୍ତିସମୂହ (ସଂଗଠନ କଂଗ୍ରେସ, ଭାରତୀୟ ଲୋକ ଦଳ, ଜନସଂଘ, ସୋସାଲିଷ୍ଟ ପାର୍ଟି ଏବଂ ଚନ୍ଦ୍ର ଶେଖରଙ୍କ ନେତୃତ୍ୱାଧୀନ ସମାଜବାଦୀ ଦଳ) ପ୍ରାକ୍ ନିର୍ବାଚନୀ ମେଣ୍ଟ ରୂପେ "ଜନତା ପାର୍ଟି" ଗଠନ କରିଥିଲେ । ନିର୍ବାଚନର ପ୍ରାକ୍‌କାଳରେ ଅନ୍ୟତମ କେନ୍ଦ୍ରୀୟ ମନ୍ତ୍ରୀ ଜଗଜୀବନ ରାମଙ୍କ ନେତୃତ୍ୱରେ ଗୋଟିଏ ଗୋଷ୍ଠୀ କଂଗ୍ରେସ ତ୍ୟାଗ କରି "କଂଗ୍ରେସ ଫର ଡେମୋକ୍ରାସି" ନାମରେ ଏକ ନୂତନ ଦଳ ଗଠନ କଲେ । ଏହି ନବଗଠିତ ପାର୍ଟି ଏବଂ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ଜନତା ପାର୍ଟି ସହିତ ମିଶି ଏକ ନିର୍ବାଚନୀ ବୁଝାମଣାରେ ପହଞ୍ଚିଥିଲେ ।

୧୯୭୭ ମସିହା ମାର୍ଚ୍ଚ ମାସରେ ପାର୍ଲିଆମେଣ୍ଟ ନିର୍ବାଚନ ଫଳରେ ଜନତା ପାର୍ଟି ମେଣ୍ଟ ଲୋକ ସଭାରେ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ଲାଭ କଲା । ଇନ୍ଦିରା ଗାନ୍ଧୀ ପଦତ୍ୟାଗ କଲେ ଏବଂ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେଲେ ।

ମେ ମାସର ପ୍ରାରମ୍ଭରେ ଏହି ମେଣ୍ଟ ଭୁକ୍ତ ପାର୍ଟିମାନେ ଏବଂ "କଂଗ୍ରେସ ଫର ଡେମୋକ୍ରାସି" ଆନୁଷ୍ଠାନିକ ଭାବେ ଜନତା ପାର୍ଟିରେ ଐକ୍ୟବଦ୍ଧ ହେଲେ । ଏହି ପାର୍ଟିର ସଭାପତି ହେଲେ ଚନ୍ଦ୍ର ଶେଖର ।

ସେଇ ବର୍ଷ ଗ୍ରୀଷ୍ମ କାଳରେ ୯ଟି ରାଜ୍ୟର ବିଧାନ ସଭା ପାଇଁ ନିର୍ବାଚନରେ ଜନତା ପାର୍ଟି ଏବଂ ତା'ର ମେଣ୍ଟଭୁକ୍ତ ଅନ୍ୟାନ୍ୟ ପାର୍ଟି – ପଶ୍ଚିମ ବଂଗରେ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ), ପଞ୍ଜାବରେ ଅକାଳୀ ଦଳ, ତାମିଲନାଡୁରେ ଡି.ଏମ୍.କେ. ଜୟ ଲାଭ କଲେ, ଯଦିଓ ପୂର୍ବ ତୁଳନାରେ କମ୍ ଭୋଟାଧିକ୍ୟରେ । ୧୯୭୭ ମସିହା ଜୁଲାଇ ମାସରେ ଜନତା ପାର୍ଟିର ପ୍ରାର୍ଥୀ ନୀଲମ୍ ସଂଜିବ ରେଡ୍ଡି ରାଷ୍ଟ୍ରପତି ନିର୍ବାଚିତ ହେଲେ ।

## ରାଜନୈତିକ ଶକ୍ତିଗୁଡ଼ିକର ପୁନର୍ବିନ୍ୟାସ

ଇତିମଧ୍ୟରେ ଭାରତବର୍ଷର ରାଜନୈତିକ ଶକ୍ତିସମୂହର ପୁନର୍ବିନ୍ୟାସ ଏକ ଜଟିଳ ପର୍ବରେ ପ୍ରବେଶ କରିଥିଲା । କଂଗ୍ରେସରେ ଇନ୍ଦିରା ଗାନ୍ଧୀଙ୍କ ଅନୁଗାମୀ ଏବଂ ଇନ୍ଦିରା ଗାନ୍ଧୀଙ୍କ ପରିପନ୍ଥୀମାନଙ୍କ ମଧ୍ୟରେ ସଂଗ୍ରାମ ତୀବ୍ରତର ହୋଇ ଉଠିବା ଫଳରେ ୧୯୭୮ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ପାର୍ଟିରେ ଆନୁଷ୍ଠାନିକ ବିଭାଜନ ଦେଖା ଦେଲା ଏବଂ ଇନ୍ଦିରା ଗାନ୍ଧୀ ଓ ବ୍ରହ୍ମାନନ୍ଦ ରେଡ୍ଡିଙ୍କ ନେତୃତ୍ୱରେ (ପରେ ସ୍ୱରଣ ସିଂହଙ୍କ ନେତୃତ୍ୱରେ) ଦୁଇଟି ନିଖିଳ ଭାରତୀୟ କଂଗ୍ରେସ ଗଢ଼ି ଉଠିଲା । ନୂତନ ଶାସକ ଦଳରେ ମଧ୍ୟ କ୍ରମଶଃ କେନ୍ଦ୍ରାତିଗ ଶକ୍ତିର ଉନ୍ମେଷ ଘଟିଲା । ରାଜନୈତିକ କର୍ମନୀତି ଦିଗରୁ ବିଭକ୍ତ ବାମପନ୍ଥୀ ଶକ୍ତିଗୁଡ଼ିକ – ଭାରତର କମ୍ୟୁନିଷ୍ଟ ପାର୍ଟି, ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ଏବଂ କଂଗ୍ରେସ, ଜନତା ଓ ଅନ୍ୟାନ୍ୟ ପାର୍ଟିର ବାମପନ୍ଥୀ ଗୋଷ୍ଠୀ ମଧ୍ୟରେ ପାରସ୍ପରିକ ବୁଝାମଣା ଓ ସହଯୋଗିତାର ପ୍ରଚେଷ୍ଟା କିଛି କାଳ ପାଇଁ ଅବ୍ୟାହତ ରହିଥିଲା ।

୧୯୭୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ଜନତା ପାର୍ଟିର କାର୍ଯ୍ୟକାରୀ କମିଟିର ଏକ ବୈଠକରେ ଭାରତରେ "ସମାଜବାଦୀ ସମାଜ" ଗଠନ ସଂପର୍କରେ ପାର୍ଟିର ଲକ୍ଷ୍ୟ କଥା ପୁନର୍ବାର ଘୋଷିତ ହୋଇଥିଲା । ଜନତା ସରକାର ଜରୁରୀ ଅବସ୍ଥାକାଳୀନ ନିୟନ୍ତ୍ରଣକୁ ବାତିଲ କରିଦେଲେ ଏବଂ ଅଧିକାଂଶ "ନକ୍ସାଲପନ୍ଥୀମାନଙ୍କୁ" କ୍ଷମା ପ୍ରଦର୍ଶନ ସହ ଜେଲରୁ ମୁକ୍ତ କରିଦେଲେ । ଏହି ସମୟରେ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟର ପ୍ରତିକ୍ରିୟାଶୀଳ ଶକ୍ତିଗୁଡ଼ିକ ପୁଣି ସକ୍ରିୟ ହୋଇ ଉଠିଥିଲେ, ଗ୍ରାମର ଧନୀ କୃଷକମାନଙ୍କର ଊର୍ଦ୍ଧ୍ୱତନ ସ୍ତରଗୁଡ଼ିକ ଅଧସ୍ତନ ଦରିଦ୍ର ହରିଜନମାନଙ୍କ ଉପରେ ନିର୍ଯ୍ୟାତନ ଚଳେଇବାକୁ ଲାଗିଲେ । ଶିଳ୍ପ ଶ୍ରମିକ ଓ ଖେତ ମଜୁରିଆମାନଙ୍କ ହରତାଳକୁ ଦମନ କରିବାରେ ପୁଲିସ୍ ଦ୍ୱାରା ଅସ୍ତ୍ର ବ୍ୟବହାର ଏକ ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହେଲା ।

୧୯୭୮ ମସିହାର ପ୍ରାରମ୍ଭରେ ସାମାଜିକ-ଶ୍ରେଣୀଗତ ବିରୋଧପୂର୍ଣ୍ଣ ପରିବେଶରେ ଛଅଟି ରାଜ୍ୟର ବିଧାନ ସଭାର ନିର୍ବାଚନ ଅନୁଷ୍ଠିତ ହେଲା । ଏହା ଫଳରେ ଜନତା ପାର୍ଟି ଆଉ ଏକ ରାଜ୍ୟ – ଆସାମରେ ସରକାର ଗଠନ କଲା । ମୋଟ ଉପରେ ନିର୍ବାଚନଗୁଡ଼ିକରେ ଫେଡେରାଲ ଧରଣର ବ୍ୟବସ୍ଥା ମଧ୍ୟରେ ବହୁକେନ୍ଦ୍ରିକ ଶାସନ ପଦ୍ଧତି ପୁନର୍ବାର ପ୍ରକଟିତ ହୋଇଥିଲା । ୨୨ଟି ରାଜ୍ୟ ମଧ୍ୟରୁ ଜନତା ପାର୍ଟି – ୧୦ଟି ରାଜ୍ୟରେ (ପ୍ରଧାନତଃ, ହିନ୍ଦୀ ଭାଷାଭାଷୀ ଉତ୍ତରାଞ୍ଚଳରେ); କଂଗ୍ରେସ (ଉଭୟ ପ୍ରତିଷ୍ଠାନ) – ୩ଟି ରାଜ୍ୟରେ (ମହାରାଷ୍ଟ୍ର, ଆନ୍ଧ୍ର, କର୍ଣ୍ଣାଟକ); ବାମପନ୍ଥୀ ପାର୍ଟିଗୁଡ଼ିକ – ତିନୋଟି ରାଜ୍ୟରେ – ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ପଶ୍ଚିମ ବଂଗରେ ଏବଂ ଏହି ପାର୍ଟିର ନେତୃତ୍ୱାଧୀନ ବାମପନ୍ଥୀ ମେଣ୍ଟ ତ୍ରିପୁରାରେ ଏବଂ ଭାରତର କମ୍ୟୁନିଷ୍ଟ ପାର୍ଟି ଓ କଂଗ୍ରେସର ମିଳିତ ସରକାର କେରଳରେ – ଶାସନଭାର ଗ୍ରହଣ କରିଥିଲେ । ଅବଶିଷ୍ଟ ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ଥିଲା ସ୍ଥାନୀୟ ପାର୍ଟିଗୁଡ଼ିକର ଅଧୀନରେ । ସର୍ବଭାରତୀୟ କ୍ଷେତ୍ରରେ ଦୁଇଟି ପାର୍ଟି ବ୍ୟବସ୍ଥା ପ୍ରଚଳିତ ହୋଇଥିଲା (ଜନତା ପାର୍ଟି – କଂଗ୍ରେସ) । ଇତିମଧ୍ୟରେ ଦୁଇଟି ପ୍ରଧାନ ବୁର୍ଜୁଆ ପାର୍ଟି ମଧ୍ୟରେ ଦ୍ୱନ୍ଦ୍ୱର ନାଟକୀୟ ଚରିତ୍ର ମଝିରେ ମଝିରେ ସ୍ପଷ୍ଟ ହୋଇ ଉଠୁଥିଲା । ୧୯୭୭ ମସିହା ଅକ୍ଟୋବର ମାସରେ ଏବଂ ପରବର୍ତ୍ତୀ ବର୍ଷ ଡିସେମ୍ବର ମାସରେ ଇନ୍ଦିରା ଗାନ୍ଧୀଙ୍କୁ ସ୍ୱଳ୍ପକାଳ ପାଇଁ ଗିରଫ୍ କରାଗଲା । ସେ ପାର୍ଲିଆମେଣ୍ଟରୁ ବହିଷ୍କୃତ ହେଲେ (କର୍ଣ୍ଣାଟକ ରାଜ୍ୟର ଏକ

ଲୋକସଭା ଆସନରୁ) । ୧୯୭୮ ଖ୍ରୀଷ୍ଟାବ୍ଦର ଶେଷ ଆଡ଼କୁ ରାଜନୈତିକ ପରିସ୍ଥିତି ସ୍ୱରଣ ସିଂହଙ୍କ ନେତୃତ୍ୱାଧୀନ କଂଗ୍ରେସ ଓ ଇନ୍ଦିରା ଗାନ୍ଧୀଙ୍କ କଂଗ୍ରେସର ପୁନର୍ମିଳନ ପାଇଁ ଆଳାପ ଆଲୋଚନା କରିବାକୁ ବାଧ୍ୟ କରିଥିଲା । କିନ୍ତୁ ଏହି ପୁନର୍ମିଳନରେ ବ୍ୟାଘାତ ସୃଷ୍ଟି କରିଥିଲେ ପ୍ରଥମୋକ୍ତ କଂଗ୍ରେସର ଏକ ପ୍ରଭାବଶାଳୀ ଅଂଶ ।

କମ୍ୟୁନିଷ୍ଟ ଆନ୍ଦୋଳନ ସେତେବେଳେ ଭାରତର କମ୍ୟୁନିଷ୍ଟ ପାର୍ଟି ଓ ଭାରତର କମ୍ୟୁନିଷ୍ଟ ପାର୍ଟି (ମାର୍କସ୍‌ବାଦୀ) ମଧ୍ୟରେ କେତେକ ଭାବାଦର୍ଶଗତ ଓ ରାଜନୈତିକ ପ୍ରଶ୍ନ ଘେନି ତୀବ୍ର ମତାନୈକ୍ୟ ଭିତରେ ରହିଥିଲା । କିନ୍ତୁ ତା ସତ୍ତ୍ୱେ, ୧୯୭୮, ଏପ୍ରିଲ ମାସରେ ଆୟୋଜିତ ଭାରତର କମ୍ୟୁନିଷ୍ଟ ପାର୍ଟିର ୧୧ଶ କଂଗ୍ରେସ ଏବଂ ଭାରତର କମ୍ୟୁନିଷ୍ଟ ପାର୍ଟିର (ମାର୍କସ୍‌ବାଦୀ) ୧୦ମ କଂଗ୍ରେସ ପରେ ଶ୍ରମଜୀବୀମାନଙ୍କ ସଂଗଠନଗୁଡ଼ିକର ସହଯୋଗିତା ପାଇଁ ଐକ୍ୟ ମତରେ ପହଞ୍ଚିଥିଲେ । ଏହି ସିଦ୍ଧାନ୍ତ ଟ୍ରେଡ୍‌ୟୁନିଅନ୍ ଓ କୃଷକ ସଭାର କ୍ରିୟାକଳାପ ଉପରେ ସୁପ୍ରଭାବ ବିସ୍ତାର କରିଥିଲା । ୧୯୭୮ ମସିହା ନଭେମ୍ବର ମାସରେ ସମସ୍ତ ପ୍ରଧାନ ଟ୍ରେଡ୍‌ୟୁନିଅନ୍ କେନ୍ଦ୍ରଗୁଡ଼ିକର ଯୁକ୍ତ ଉଦ୍ୟମରେ ଦିଲ୍ଲୀରେ ଲକ୍ଷାଧିକ ଶ୍ରମିକଙ୍କର ଏକ ଶୋଭାଯାତ୍ରା ପାର୍ଲିଆମେଣ୍ଟ ଆଗରେ ଧାରଣା ଦେଇଥିଲା ।

କଂଗ୍ରେସ ଭଳି ଜନତା ପାର୍ଟି ମଧ୍ୟ ଭିନ୍ନ ଧରଣର ଥିଲା – ପରସ୍ପରବିରୋଧୀ ସ୍ୱାର୍ଥର (ଧନିକ ଶ୍ରେଣୀଗୁଡ଼ିକର ଉପରି ଅଂଶ, ବିଶେଷତଃ, ବଡ଼ ବଡ଼ ବୁର୍ଜୁଆ, ଛୋଟ ବ୍ୟବସାୟୀ ଓ ବଣିକ, ଗ୍ରାମର ଧନିକ ଶ୍ରେଣୀ ସହିତ ସମାଜର ଗଣତାନ୍ତ୍ରିକ ସ୍ତରଗୁଡ଼ିକର ସ୍ୱାର୍ଥ) ଏକ ମିଶ୍ରଣ ସ୍ୱରୂପ । ଜନତା ପାର୍ଟିର ଶ୍ରେଣୀଗତ ଗଢ଼ଣର ବୈସାଦୃଶ୍ୟ ଏହାର ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ବୃଦ୍ଧିରେ ସହାୟତା କରିଥିଲା । ୧୯୭୭ ମସିହାର ପ୍ରାରମ୍ଭରେ ଯେଉଁସବୁ ରାଜନୈତିକ ଦଳକୁ ନେଇ ପାର୍ଟିଟି ଗଢ଼ି ଉଠିଥିଲା, ସରକାର ଓ ପାର୍ଟିରେ ପ୍ରଭାବ ବିସ୍ତାର ପାଇଁ ସେଇସବୁ ଦଳ ମଧ୍ୟରେ ସଂଘାତ ଦେଖା ଦେଲେ ଜନତା ପାର୍ଟିର ଅବସ୍ଥା ଖୁବ୍ ଜଟିଳ ହୋଇ ପଡ଼ିଲା । ଏହି ପାର୍ଟି ମଧ୍ୟରେ ମୁଖ୍ୟ ବିରୋଧାତ୍ମକ ଶକ୍ତିଗୁଡ଼ିକ ମଧ୍ୟରେ ଦ୍ୱନ୍ଦ୍ୱର ଅବସାନ ଘଟିଲା ନାହିଁ । ସେସବୁ ଶକ୍ତି ମଧ୍ୟରୁ ଗୋଟିଏ ଗୋଷ୍ଠୀ ହେଲେ ଭାରତୀୟ ଲୋକ ଦଳ (ଚରଣ ସିଂହ ଏବଂ ଦକ୍ଷିଣପନ୍ଥୀ ସମାଜବାଦୀ ରାଜ ନାରାୟଣଙ୍କ ନେତୃତ୍ୱାଧୀନ) ଏବଂ ଜନ ସଂଘ (ଅଟଳ ବିହାରୀ ବାଜପାଇ ଏବଂ ଲାଲ କୃଷ୍ଣ ଆଡଭାନିଙ୍କ ନେତୃତ୍ୱାଧୀନ) । ଜନତା ପାର୍ଟିର ଅନ୍ୟାନ୍ୟ ଅଂଶଗୁଡ଼ିକ (ସଂଗଠନ କଂଗ୍ରେସ, ସୋସାଲିଷ୍ଟ, ଜଗଜୀବନ ରାମଙ୍କ ନେତୃତ୍ୱାଧୀନ ଗଣତାନ୍ତ୍ରିକ କଂଗ୍ରେସ ଏବଂ ଅନ୍ୟାନ୍ୟ) ଏହି ସଂଗ୍ରାମ ମଧ୍ୟ ଦେଇ ଶାସକ ପାର୍ଟିର ଅବସ୍ଥାକୁ ଅତୀବ ଜଟିଳ କରି ଦେଲା ।

କେନ୍ଦ୍ର ଅପେକ୍ଷା ରାଜ୍ୟ ସ୍ତରରେ ଜନତା ପାର୍ଟି ମଧ୍ୟରେ ଆଭ୍ୟନ୍ତରୀଣ ସଂଗ୍ରାମ ଅଧିକ ତୀବ୍ର ରୂପ ଧାରଣ କରିଥିଲା । ଜନତା ପାର୍ଟି ରାଜତ୍ୱ କରୁଥିବା ପ୍ରଦେଶଗୁଡ଼ିକର ମନ୍ତ୍ରୀମଣ୍ଡଳଗୁଡ଼ିକରେ ସଂକଟର (ବିଶେଷ କରି ଉତ୍ତର ପ୍ରଦେଶ, ବିହାର, ହରିଆନା) ମୂଳରେ ଥିଲା ପ୍ରଥମତଃ ଜନତା ପାର୍ଟି ମଧ୍ୟରେ ଆଭ୍ୟନ୍ତରୀଣ କଳହ । ଏସବୁ ଫଳରେ ପ୍ରଶାସନର ସ୍ୱାଭାବିକ କ୍ରିୟାକର୍ମ ବାଧା ପ୍ରାପ୍ତ ହୋଇଥିଲା ଏବଂ ଭାରତୀୟ ଜନସାଧାରଣଙ୍କ ଦୃଷ୍ଟିରେ ଶାସକ ପାର୍ଟିର ସମ୍ମାନରେ ଆଞ୍ଚ ଆସିଥିଲା । ଏକ ସମନ୍ୱିତ ଅର୍ଥନୈତିକ କର୍ମନୀତି ଅନୁସରଣ କରିବା କଷ୍ଟକର ହୋଇ ପଡ଼ିଥିଲା ।

ଜନତା ପାର୍ଟି ଦ୍ୱାରା ପ୍ରକାଶିତ ଅର୍ଥନୈତିକ କର୍ମନୀତିରେ କୃଷି ଆଉ କ୍ଷୁଦ୍ର ଶିଳ୍ପର ବିକାଶ ଉପରେ ଅଗ୍ରାଧିକାର ଦିଆଯାଇଥିଲା । ଏହି କର୍ମସୂଚୀ ନେଇ ଯେଉଁ ବ୍ୟାପକ ଆଲୋଚନା ଆରମ୍ଭ

ହୋଇଥିଲା ସେଥିରେ ଭାରତବର୍ଷର ଅସମାହିତ ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ସମସ୍ୟାବଳୀ ତା'ର ସମସ୍ତ ଜଟିଳତା ସହ ପ୍ରକାଶ ପାଇଥିଲା । ତେବେ, ବାସ୍ତବରେ, ଜନତା ପାର୍ଟିର ଦୁଇ ବର୍ଷ ବ୍ୟାପୀ ରାଜତ୍ୱ କାଳରେ, କାର୍ଯ୍ୟସୂଚୀ ଉପରେ ମତପାର୍ଥକ୍ୟ ରହିବା ସତ୍ତ୍ୱେ, ଏହା ପୂର୍ବବର୍ତ୍ତୀ କାଳରେ ରଚିତ ସାମାଜିକ-ଅର୍ଥନୈତିକ ନୀତିକୁ ଅନୁସରଣ କରିଥିଲା । ଏଥି ସାଥେ ସାଥେ ବିଭିନ୍ନ ମନ୍ତ୍ରୀମାନଙ୍କର ବିବୃତି ଏବଂ ବାସ୍ତବ କ୍ରିୟାକଳାପରେ ପାର୍ଥକ୍ୟ ପ୍ରକାଶ ପାଉଥିଲା । ଏସବୁ ମନ୍ତ୍ରୀ ବିଭିନ୍ନ ସାମାଜିକ ଓ ଅର୍ଥନୈତିକ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଥିଲେ ।

ଜନତା ପାର୍ଟି ଓ ତଦ୍ୱାରା କେନ୍ଦ୍ର ତଥା କେତେକ ରାଜ୍ୟରେ ଗଠିତ ସରକାର ମଧ୍ୟରେ କେନ୍ଦ୍ରାପସାରୀ ପ୍ରବଣତା ପଛରେ ବହୁ କାରଣ ରହିଥିଲା । ପ୍ରଥମ କାରଣଟି ହେଲା ପାର୍ଟିର ଶ୍ରେଣୀଗତ ଗଠନରେ ଅସାମ୍ୟତା । ଏହି ଦୃଷ୍ଟିରୁ ଜନତା ପାର୍ଟି ପଚାଶ ଓ ଷାଠିଏ ଦଶକର କଂଗ୍ରେସ ସହିତ ସମାନ ହେଲେ ବି ଅସମାନ ମଧ୍ୟ ଥିଲା । ସେତେବେଳକାର କଂଗ୍ରେସ ମଧ୍ୟରେ ବିଭିନ୍ନ ସାମାଜିକ ଓ ଶ୍ରେଣୀ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଥିବା ଗୋଷ୍ଠୀଗୁଡ଼ିକ ସୁସଂଗଠିତ ରୂପେ ରହିଥିଲେ । ଦ୍ୱିତୀୟତଃ, ଯେଉଁସବୁ ପାର୍ଟିମାନଙ୍କୁ ନେଇ ଜନତା ପାର୍ଟି ଗଠିତ ହୋଇଥିଲା ସେମାନେ ରାଜନୀତିଗତ ଏବଂ ମତାଦର୍ଶଗତ ଦୃଷ୍ଟିରୁ ଗଭୀର ଭାବେ ପରସ୍ପରଠାରୁ ପୃଥକ୍ ଥିଲେ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକର ଥିଲା ନିଜସ୍ୱ ପରମ୍ପରା ଏବଂ ଏହି ପରମ୍ପରା ଐତିହାସିକ ଭାବେ ଗଠିତ ହୋଇଥିଲା । ତୃତୀୟତଃ, ନିୟମାନୁଯାୟୀ ସେମାନେ ସମସ୍ତ ଭାରତୀୟଙ୍କର ପ୍ରତିନିଧିତ୍ୱ କରୁ ନଥିଲେ, କେବଳ ଆଞ୍ଚଳିକ ସ୍ୱାର୍ଥକୁ, ବେଳେ ବେଳେ ବିଭିନ୍ନ ଜାତି ଓ ସ୍ତରଗୁଡ଼ିକର ପ୍ରତିନିଧିତ୍ୱ କରୁଥିଲେ । ଚତୁର୍ଥତଃ, ଏହିସବୁ କାରଣରୁ ବ୍ୟକ୍ତିଗତ ସଂପର୍କରାଜିର ଭୂମିକା, ପାର୍ଟି ଏବଂ ସରକାର ମଧ୍ୟରେ କ୍ଷମତା ପାଇଁ ବିଭିନ୍ନ ଗୋଷ୍ଠୀ ଭିତରେ ଲଢ଼େଇ ବୃଦ୍ଧି ପାଇଥିଲା, ଯେଉଁସବୁ ଗୋଷ୍ଠୀକୁ କେନ୍ଦ୍ର ଏବଂ ରାଜ୍ୟମାନଙ୍କରେ ଜନତା ପାର୍ଟିର ନେତୃତ୍ୱ ପ୍ରତିନିଧିତ୍ୱ କରୁଥିଲା ।

ଜନତା ପାର୍ଟି ମଧ୍ୟରେ ବିଭାଜନର ସୂଚନା ସ୍ୱରୂପ ରାଜ ନାରାୟଣଙ୍କ ନେତୃତ୍ୱରେ ପାର୍ଲିଆମେଣ୍ଟର ସଦସ୍ୟମାନଙ୍କର ଗୋଟିଏ ଦଳ ଏହି ପାର୍ଟି ମଧ୍ୟରୁ ବାହାରି ଆସିଥିଲେ । ସେମାନେ ନୂଆ ଏକ ଜନତା ପାର୍ଟି (ଧର୍ମ ନିରପେକ୍ଷ) ଗଠନ କଥା ଘୋଷଣା କରିଥିଲେ । ଏହି ଘଟଣାଟି ଘଟିଥିଲା ୧୯୭୯, ଜୁଲାଇ ମାସରେ ପାର୍ଲିଆମେଣ୍ଟ ବସିବାର ଅବ୍ୟବହିତ ପୂର୍ବରୁ । ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରୁ କେତେକ ମନ୍ତ୍ରୀ ପଦତ୍ୟାଗ କରିଥିଲେ । ଏହି ଗୋଷ୍ଠୀର ନେତା ଥିଲେ ଚରଣ ସିଂହ । ସେ ନବଗଠିତ ଜନତା ପାର୍ଟିର (ଧର୍ମ ନିରପେକ୍ଷ) ନେତା ରୂପେ ନିର୍ବାଚିତ ହେଲେ । ଇତିମଧ୍ୟରେ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଦେବରାଜ ଉରସ୍‌ଙ୍କ ନେତୃତ୍ୱରେ ଗୋଟିଏ ପ୍ରଭାବଶାଳୀ ଗୋଷ୍ଠୀ ଇନ୍ଦିରା ଗାନ୍ଧୀଙ୍କ କଂଗ୍ରେସରୁ ବାହାରି ଯାଇ ଶୀଘ୍ର ସ୍ୱରଣ ସିଂହଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସରେ ଯୋଗ ଦେଇଥିଲେ । ମୋରାରଜୀ ଦେଶାଇଙ୍କ ସରକାର ପାର୍ଲିଆମେଣ୍ଟରେ ସଂଖ୍ୟାଗରିଷ୍ଠତା ହରାଇ ପଦତ୍ୟାଗ କରିବାକୁ ବାଧ୍ୟ ହେଲେ । କେନ୍ଦ୍ରୀୟ ପାର୍ଲିଆମେଣ୍ଟରେ ଶକ୍ତିମାନଙ୍କର ପୁନର୍ବିନ୍ୟାସ ପ୍ରକ୍ରିୟା ମଧ୍ୟ ଦେଇ ଭାରତ ଇତିହାସରେ ପ୍ରଥମ ଥର ପାଇଁ କେନ୍ଦ୍ରରେ ଏକ ମିଳିତ ସରକାର ଗଠିତ ହେଲା । ନୂଆ ଜନତା ପାର୍ଟି (ଧର୍ମ ନିରପେକ୍ଷ) ଓ ସ୍ୱରଣ ସିଂହଙ୍କ ନେତୃତ୍ୱାଧୀନ କଂଗ୍ରେସର ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିଲା । ଚରଣ ସିଂହ ପ୍ରଧାନମନ୍ତ୍ରୀ ଏବଂ ଓ୍ୱାଇ.ଭି.ଚଭନ [ଉପପ୍ରଧାନ ମନ୍ତ୍ରୀ (ସ୍ୱରଣ ସିଂହଙ୍କ ନେତୃତ୍ୱାଧୀନ କଂଗ୍ରେସର ପାର୍ଲିଆମେଣ୍ଟ

ଦଳର ଜନୈକ ନେତା) ହେଲେ । ମୋରାରଜୀ ଦେଶାଇଙ୍କ ସ୍ଥାନରେ ଜଗଜୀବନ ରାମ ଜନତା ପାର୍ଟିର ନେତୃତ୍ୱ ଗ୍ରହଣ କଲେ । ଏହି ପାର୍ଟି ବିରୋଧୀଦଳର ଭୂମିକା ଗ୍ରହଣ କଲା ।

## ପାର୍ଲିଆମେଣ୍ଟ ନିର୍ବାଚନ ଓ କଂଗ୍ରେସ (ଇ)ର କ୍ଷମତାକୁ ପ୍ରତ୍ୟାବର୍ତ୍ତନ (୧୯୮୦, ଜାନୁଆରୀ)

ଭାରତ ଇତିହାସରେ ଜନତା ପାର୍ଟି କ୍ଷମତାକୁ ଆସିବା ଏବଂ କେନ୍ଦ୍ର ତଥା କେତେକ ରାଜ୍ୟରେ ଦୁଇ ବର୍ଷ କାଳ ରାଜତ୍ୱ କରିବାର ପ୍ରକୃତ ବ୍ୟାଖ୍ୟା ନିମ୍ନୋକ୍ତ କାରଣ ମଧ୍ୟରେ ନିହିତ । ଏକ ଦିଗରେ, ଏହିସବୁ ଘଟଣା ଭିତରେ ପ୍ରତିଫଳିତ ହୋଇଥିଲା ଦେଶର କ୍ଷମତାର ଜଟିଳ ରାଜନୈତିକ ଗଠନର ପ୍ରକ୍ରିୟା ଏବଂ, ଅନ୍ୟ ଦିଗରେ, ଦେଶର ପାର୍ଟିସମୂହ ଓ ରାଜନୈତିକ ଶକ୍ତିମାନଙ୍କର ଜଟିଳ ତଥା ଦୀର୍ଘ ପୁନର୍ବିନ୍ୟାସର ନୂଆ ଏକ ଯୁଗ ସୂତ୍ରପାତ ହୋଇଥିଲା । ଏପରି ଘଟିବା ପଛରେ ମୁଖ୍ୟ କାରଣଟି ହେଲା ପଚାଶ, ଷାଠିଏ ଦଶକରେ ଗଠିତ ବୁର୍ଜୁଆ ପାର୍ଟି ବ୍ୟବସ୍ଥା ଭାରତର ସାମାଜିକ ତଥା ଶ୍ରେଣୀ ଗଢ଼ଣ ମଧ୍ୟରେ ଦେଖା ଦେଇଥିବା ପରିବର୍ତ୍ତନ ଦ୍ୱାରା ଚହଲି ଯାଇଥିଲା ।

କେନ୍ଦ୍ରରେ ଏହି ମିଳିତ ସରକାର ପାର୍ଲିଆମେଣ୍ଟର ମୁଖ୍ୟ ଗୋଷ୍ଠୀଗୁଡ଼ିକର ସମର୍ଥନ ଉପରେ ପ୍ରତିଷ୍ଠିତ ଥିଲା । ତେବେ ସେଇ ବର୍ଷ ଅଗଷ୍ଟ ମାସରେ ପାର୍ଲିଆମେଣ୍ଟରେ ଏକ ଆସ୍ଥାଜ୍ଞାପକ ଭୋଟ ଗ୍ରହଣ ବେଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ନୂତନ ସରକାର ପ୍ରତି ସମର୍ଥନ ପ୍ରତ୍ୟାହାର କରି ନେଇଛନ୍ତି ବୋଲି ଘୋଷଣା କରିଥିଲେ । ଫଳରେ ମିଳିତ ସରକାର ପାର୍ଲିଆମେଣ୍ଟରେ ସଂଖ୍ୟାଗରିଷ୍ଠତା ହରେଇଲା । ତେବେ ବିଶେଷ ପାର୍ଲିଆମେଣ୍ଟ ନିର୍ବାଚନ ପର୍ଯ୍ୟନ୍ତ ଏହି ସରକାର କାର୍ଯ୍ୟଭାର ଚଳେଇ ଯାଇଥିଲେ । ଭାରତର ରାଷ୍ଟ୍ରପତି ଏକ ବିଶେଷ ଘୋଷଣା ଦ୍ୱାରା ୧୯୮୦, ଜାନୁଆରୀ ମାସରେ ଏହି ନିର୍ବାଚନ ହେବ ବୋଲି ଘୋଷଣା କଲେ । ପାର୍ଲିଆମେଣ୍ଟକୁ ରଦ୍ କରି ଦିଆଗଲା ।

୧୯୭୯ ମସିହାର ଶେଷ ୪ ମାସ ନିର୍ବାଚନ ପୂର୍ବ ପ୍ରଚାର ଅଭିଯାନ ଦେଶ ସାରା ଚାଲିଲା । ସେପ୍ଟେମ୍ବର ମାସ ବେଳକୁ ପରିଷ୍କାର ଜଣାଗଲା ଯେ, ଏହି ନିର୍ବାଚନ ଲଢ଼େଇ ମୁଖ୍ୟତଃ ତିନୋଟି ଶକ୍ତି ମଧ୍ୟରେ ଅନୁଷ୍ଠିତ ହେବ – ଶାସନକାରୀ ମିଳିତ ସାମ୍ମୁଖ୍ୟ, ଜନତା ପାର୍ଟି ଏବଂ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱାଧୀନ କଂଗ୍ରେସ ପାର୍ଟି ।

ଜନତା ପାର୍ଟିର (ଧର୍ମ ନିରପେକ୍ଷ) ନାମକୁ ପରିବର୍ତ୍ତନ କରି ଲୋକ ଦଳ ରଖାଗଲା । ଏହାର ସାଧାରଣ ସଂପାଦକ ମଧୁ ଲିମାୟେ ଉଦ୍ୟମ କରିଥିଲେ ଏହି ଶାସନକାରୀ ମିଳିତ ସାମ୍ମୁଖ୍ୟକୁ ବାମପନ୍ଥୀ ଏବଂ ଗଣତାନ୍ତ୍ରିକ ଶକ୍ତିସମୂହର କେନ୍ଦ୍ରରେ ପରିଣତ କରିବାକୁ । ସି.ପି.ଆଇ., ସି.ପି.ଆଇ.(ଏମ୍.) ଏବଂ ଆଉ କେତେକ ବାମପନ୍ଥୀ ଦଳ ଏହି ଲୋକ ଦଳ ସାମ୍ମୁଖ୍ୟ ଏବଂ କଂଗ୍ରେସ (ଉ) ସହିତ ଐକ୍ୟବଦ୍ଧ ହେବାକୁ ବାସ୍ତବରେ ନିଷ୍ପତ୍ତି ନେଇଥିଲେ । ଶେଷୋକ୍ତ ପାର୍ଟିଟିର ଦେବରାଜ ଉରସ୍ ନେତା ହେଲା ପରେ ଏପରି ଭାବେ ନାମିତ ହୋଇଥିଲା । ଏଥି ସାଥେ ସାଥେ ଶାସନକାରୀ ମିଳିତ ସାମ୍ମୁଖ୍ୟ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ହେତୁ ଅବସ୍ଥା ଖରାପ ହୋଇ ଉଠୁଥିଲା ।

କଂଗ୍ରେସ (ଉ) ଏବଂ ଲୋକ ଦଳର ମତରାଜି ମଧ୍ୟରେ ପାର୍ଥକ୍ୟ ଦୂର ନହେବା ଫଳରେ ମିଳିତ ସାମ୍ମୁଖ୍ୟ କୌଣସି ନିର୍ବାଚନ ଇସ୍ତାହାର ପ୍ରକାଶ କରି ପାରିଲା ନାହିଁ । କଂଗ୍ରେସର କେତେକ

ସଦସ୍ୟ ଏବଂ ମନ୍ତ୍ରୀ ସରକାରରୁ ପଦତ୍ୟାଗ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବ୍ରହ୍ମାନନ୍ଦ ରେଡ୍ଡି, ଯିଏକି ୧୯୭୮ ମସିହାରେ ଏହାର ପ୍ରଥମ ସଭାପତି ଥିଲେ ।

ଜନତା ପାର୍ଟି ଭିତରେ ଥିବା ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଆଭ୍ୟନ୍ତରୀଣ କନ୍ଦଳ ତୀବ୍ର ଆକାର ଧାରଣ କଲା । ନିର୍ବାଚନ ମଧ୍ୟରେ ଜଣା ପଡ଼ିଗଲା ଯେ କଂଗ୍ରେସ (ଇ), ହୁଏତ, ଭବିଷ୍ୟତ ସରକାର ଗଠନ କରିବାକୁ ସକ୍ଷମ ହେବ । ଏହା ଦ୍ୱାରା କଂଗ୍ରେସ (ଆଇ)ରୁ କଂଗ୍ରେସ (ଇ)କୁ ବ୍ୟାପକ ଆକାରରେ ଲୋକ ସମର୍ଥନରେ ପରିବର୍ତ୍ତନ ଘଟିଥିଲା, ବିଶେଷ କରି ଦକ୍ଷିଣ ଭାରତରେ ।

ନିର୍ବାଚନରେ କଂଗ୍ରେସ (ଇ) ତରଫରୁ ପରିଗ୍ରହିତ ନିର୍ବାଚନ ପ୍ରଚାରାଭିଯାନର ମୁଖ୍ୟ ସ୍ଲୋଗାନ ଥିଲା ଦେଶ ମଧ୍ୟରେ ରାଜନୈତିକ ସ୍ଥିରତା ଆଣିବା ଏବଂ କେନ୍ଦ୍ର ତଥା ରାଜ୍ୟରେ ସୁଦକ୍ଷ ପ୍ରଶାସନ ପ୍ରତିଷ୍ଠା କରିବା । ୧୯୭୯ ମସିହାରେ ଦେଶ ମଧ୍ୟରେ ବାସ୍ତବରେ ଅର୍ଥନୈତିକ ତଥା ରାଜନୈତିକ ପରିସ୍ଥିତି ଅଧିକରୁ ଅଧିକ ଖରାପ ହୋଇ ଉଠୁଥିଲା । ୧୯୭୮-୧୯୭୯ କୃଷି ବର୍ଷରେ ସର୍ବାଧିକ ଫସଲ ଉତ୍ପାଦନ (୧୩ କୋଟି ୫ ଲକ୍ଷ ଟନ୍) ସତ୍ତ୍ୱେ ମୁଣ୍ଡ ପିଛା ଖାଦ୍ୟ ସରବରାହ କମି ଆସିଥିଲା । ଦେଶର ଅଧିକାଂଶ ଅଞ୍ଚଳରେ ଦେଖା ଦେଇଥିଲା ମରୁଡ଼ି । ଶିଳ୍ପୋତ୍ପାଦନରେ ଅବନତି ଘଟିଥିଲା ଏବଂ ଏପରି ଘଟିବା ପଛରେ କାରଣ ହେଲା ବିଦ୍ୟୁତ୍ ଓ କୋଇଲା କ୍ଷେତ୍ରରେ ନଅଣ୍ଟ ଏବଂ ରେଳ ଚଳାଚଳ କ୍ଷେତ୍ରରେ ବିଶୃଙ୍ଖଳା । ଜିନିଷପତ୍ରର ଖୁଚୁରା ଦାମ୍ ବୃଦ୍ଧି ଦ୍ୱାରା ସହର ଏବଂ ଗ୍ରାମାଞ୍ଚଳରେ ଖାଉଟିମାନେ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଏହିସବୁ ଅସୁବିଧାରାଜିର ପୃଷ୍ଠପଟରେ ବଡ଼ ବ୍ୟବସାୟୀ, ବାଣିଜ୍ୟିକ ଏବଂ ଲାଭଜନକ ପୁଞ୍ଜିର ଅଭିବୃଦ୍ଧି ଘଟିଥିଲା ।

ଦେଶରେ ସାମାଜିକ ଉତ୍ତେଜନା ବଢ଼ିବା ପଛରେ କାରଣ ହେଲା ଧର୍ମଘଟ, ଗ୍ରାମାଞ୍ଚଳରେ ଶ୍ରେଣୀ ସଂଘର୍ଷ ଏବଂ କେତେକ ଜାତିଗତ ତଥା ବର୍ଣ୍ଣଗତ ସଂଘର୍ଷ ବୃଦ୍ଧି । ଜାମ୍‌ସେଦପୁର ଏବଂ ଦିଲ୍ଲୀର ଶିଳ୍ପକେନ୍ଦ୍ରମାନଙ୍କରେ ହିନ୍ଦୁ ମୁସଲମାନ ଦଙ୍ଗା ଦେଖା ଦେଇଥିଲା । ଏସବୁକୁ ପ୍ରରୋଚନା ଯୋଗାଇଥିଲେ ଧର୍ମୀୟ ଏବଂ ସାଂପ୍ରଦାୟିକ ଶକ୍ତିମାନେ । ଏହି ସଂଘର୍ଷ ଏପରି କେତେକ ଅଞ୍ଚଳରେ ଦେଖା ଦେଇଥିଲା, ଯେଉଁଠି ହିନ୍ଦୁ ଏବଂ ମୁସଲମାନମାନେ ପୂର୍ବେ ସଂପୂର୍ଣ୍ଣ ମିଳିମିଶି ବାସ କରୁଥିଲେ । ଅଲିଗଡ଼ ଏବଂ ଜାମ୍ମୁ ବିଶ୍ୱବିଦ୍ୟାଳୟ ଆଦି ସ୍ଥାନରେ ଧର୍ମୀୟ ଏବଂ ସାଂପ୍ରଦାୟିକତାର ଭିତ୍ତିରେ ସଂଘର୍ଷ ଘଟିଥିଲା । ଆସାମ ଏବଂ ଅନ୍ୟାନ୍ୟ ଉତ୍ତର-ପୂର୍ବାଞ୍ଚଳୀୟ ପ୍ରଦେଶମାନଙ୍କରେ ଜାତୀୟତାବାଦୀ ତଥା ବିଚ୍ଛିନ୍ନତାବାଦୀମାନଙ୍କ କ୍ରିୟାକଳାପ ବୃଦ୍ଧି ପାଇଥିଲା । ସେମାନଙ୍କୁ ବିଦେଶରୁ, ମୁଖ୍ୟତଃ, ଚୀନ୍‌ରୁ ସାହାଯ୍ୟ ମିଳୁଥିଲା ।

ଦେଶର ଆଭ୍ୟନ୍ତରୀଣ ରାଜନୈତିକ ବିକାଶ କ୍ଷେତ୍ରରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା, ଶ୍ରମିକ ଏବଂ କୃଷକ ଆନ୍ଦୋଳନରେ ଉଭୟ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ସହଯୋଗିତା । ୧୯୭୯, ଗ୍ରୀଷ୍ମ କାଳରେ ଅନୁଷ୍ଠିତ ନିଖିଳ ଭାରତ କୃଷକ ସଭାର ୨୨ଶ ଅଧିବେଶନ ଗ୍ରାମାଞ୍ଚଳରେ ଅର୍ଥନୈତିକ ତଥା ସାମାଜିକ ଅବସ୍ଥାରେ ପରିବର୍ତ୍ତନରାଜିକୁ ମୂଲ୍ୟାୟନ କରିଥିଲା । ନିଖିଳ ଭାରତ ଖେତ ମଜୁରିଆ ସଂଘ ମଧ୍ୟ ଏକ "ଦାବି ସନନ୍ଦ" ସପକ୍ଷରେ ଏକ ବ୍ୟାପକ ପ୍ରଚାର ଅଭିଯାନ ଚଳେଇଥିଲା ଏବଂ ପାର୍ଲିଆମେଣ୍ଟ ଆଗରେ ଏହାକୁ ଉପସ୍ଥାପିତ କରିଥିଲା ।

କେରଳର ସ୍ଥାନୀୟ ପଞ୍ଚାୟତ ନିର୍ବାଚନ ଫଳାଫଳରେ ପ୍ରକାଶ ପାଇଥିଲା ବାମପନ୍ଥୀ ଶକ୍ତିମାନଙ୍କର କ୍ରମବର୍ଦ୍ଧମାନ ପ୍ରଭାବ । ଏଥିରେ ସି.ପି.ଆଇ. (ଏମ୍.) ସଂଖ୍ୟାଗରିଷ୍ଠ ଆସନ ଲାଭ କରିଥିଲା । ୧୯୮୦

ଜାନୁଆରୀ ମାସରେ ଅନୁଷ୍ଠିତ ବିଧାନ ସଭା ନିର୍ବାଚନରେ ମିଳିତ ବାମପନ୍ଥୀ ସାମ୍ମୁଖ୍ୟ କ୍ଷମତାକୁ ଆସିଲା । ଏଥିରେ ସି.ପି.ଆଇ. ଏବଂ ସି.ପି.ଆଇ. (ଏମ୍.) ଅନ୍ତର୍ଭୁକ୍ତ ଥିଲେ । କେରଳର ଏହିସବୁ ଘଟଣା ସେ ରାଜ୍ୟର ରାଜନୀତିରେ ବାମପନ୍ଥୀ ଶକ୍ତିମାନଙ୍କର ପରମ୍ପରାକୁ ଶକ୍ତିଶାଳୀ କରିଥିଲା ।

୧୯୮୦, ଜାନୁଆରୀ ମାସର ନିର୍ବାଚନରେ ଇନ୍ଦିରା ଗାନ୍ଧୀ ଏବଂ ତାଙ୍କ ପାର୍ଟି ପରିଷ୍କାର ସଂଖ୍ୟାଗରିଷ୍ଠତା ଲାଭ କରିଥିଲେ । ୫୪୪ରୁ ୫୨୪ଟି ନିର୍ବାଚନ କ୍ଷେତ୍ରରେ ଅନୁଷ୍ଠିତ ନିର୍ବାଚନରେ କଂଗ୍ରେସ (ଇ) ୩୫୧ଟି କ୍ଷେତ୍ରରେ ଜୟ ଲାଭ କରି ସଂଖ୍ୟାଗରିଷ୍ଠ ହୋଇଥିଲା । ଆଉ କେତେକ ଅଞ୍ଚଳରେ, ବିଶେଷ କରି ଆସାମରେ, ଉତ୍ତେଜନାପୂର୍ଣ୍ଣ ରାଜନୈତିକ ପରିସ୍ଥିତି ହେତୁ ନିର୍ବାଚନ ସ୍ଥଗିତ ରହିଥିଲା । ପାର୍ଲିଆମେଣ୍ଟରେ ଅନ୍ୟାନ୍ୟ ପାର୍ଟିମାନଙ୍କର ଆସନ ସଂଖ୍ୟା ହେଲା ନିମ୍ନ ପ୍ରକାରର : ସି.ପି.ଆଇ. (ଏମ୍.) – ୩୫, ସି.ପି.ଆଇ. – ୧୧, ଲୋକ ଦଳ – ୪୧, ଜନତା – ୩୧, କଂଗ୍ରେସ (ଉ) – ୧୩ । ଅବଶିଷ୍ଟ ୪୨ଟି ଆସନ ଲାଭ କରିଥିଲେ ବିଭିନ୍ନ ଧର୍ମୀୟ ପାର୍ଟି ଓ ସ୍ୱାଧୀନ ପ୍ରାର୍ଥୀମାନେ । ଉଭୟ କମ୍ୟୁନିଷ୍ଟ ପାର୍ଟି ଏବଂ ବାମପନ୍ଥୀ ଦଳମାନେ ପାର୍ଲିଆମେଣ୍ଟରେ ମିଳିତ ଭାବେ ଏକ ସାମ୍ମୁଖ୍ୟ ଗଠନ କରି ପାରି ନଥିଲେ । ତେବେ ପାର୍ଲିଆମେଣ୍ଟ ମଧ୍ୟରେ ସେମାନଙ୍କ କ୍ରିୟାକଳାପକୁ ସମନ୍ୱୀତ କରିବାକୁ ଏକମତ ହୋଇଥିଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପୁଣି ଭାରତର ପ୍ରଧାନମନ୍ତ୍ରୀ ହେଲେ । ନିର୍ବାଚନରେ କଂଗ୍ରେସ (ଇ) ସଂଖ୍ୟାଗରିଷ୍ଠତା ଲାଭ କରିବା ପଛରେ କାରଣ ହେଲା : ଲୋକେ ଜନତା ପାର୍ଟି ତଥା ଚରଣ ସିଂହଙ୍କ ନୀତି ପ୍ରତି ଅସନ୍ତୁଷ୍ଟ ଥିଲେ । ଏଥି ସହିତ ଯୋଗ ହୋଇଥିଲା ଦେଶରେ ଅର୍ଥନୈତିକ ଏବଂ ସାମାଜିକ ତଥା ରାଜନୈତିକ ଅବସ୍ଥାର ଅବନତି, ପ୍ରଶାସନ ବ୍ୟବସ୍ଥାରେ କାର୍ଯ୍ୟ ଦକ୍ଷତା ହାନି । ପ୍ରଥମେ ଜନତା ପାର୍ଟି ମଧ୍ୟରେ ଏବଂ ତା'ପରେ ଶାସନରେ ଅଧିଷ୍ଠିତ ମିଳିତ ସାମ୍ମୁଖ୍ୟ "ଲୋକ ଦଳ" – କଂଗ୍ରେସ (ଉ) ମଧ୍ୟରେ ତୀବ୍ର କନ୍ଦଳର କୁପ୍ରଭାବ ପ୍ରଶାସନ ବ୍ୟବସ୍ଥା ଉପରେ ପଡ଼ିଥିଲା । ଇନ୍ଦିରା ଗାନ୍ଧୀ ଜନସାଧାରଣଙ୍କ ମଧ୍ୟରେ ଏକ ରାଜନୈତିକ ନେତା ରୂପେ ନିଜକୁ ପ୍ରମାଣିତ କରିଥିଲେ । ସେ ଥିଲେ ତାଙ୍କ ରାଜନୈତିକ ପ୍ରତିଦ୍ୱନ୍ଦ୍ୱିମାନଙ୍କ ଠାରୁ ଅଧିକ ଜନପ୍ରିୟ ।

କଂଗ୍ରେସ (ଇ) କ୍ଷମତାକୁ ଆସିଲା ପରେ ପ୍ରଥମ ତିନି ମାସ ଦେଶର ରାଜନୈତିକ କ୍ଷେତ୍ରରେ ନିଜର ଅବସ୍ଥାନକୁ ମଜ୍‌ବୁତ୍ କରିବାରେ ଧ୍ୟାନ ଦେଇଥିଲା । ଏହି ବର୍ଷ ମାର୍ଚ୍ଚ ମାସ ରାଷ୍ଟ୍ରପତି ସଂଜୀବ ରେଡ୍ଡି ନଅଟି ରାଜ୍ୟରେ ସମ୍ବିଧାନ ସଭାକୁ ଭାଙ୍ଗି ଦେଇ ସେସବୁ ଜାଗାରେ ରାଷ୍ଟ୍ରପତି ଶାସନ ଜାରି କରିବାକୁ ଘୋଷଣା କରିଥିଲେ ।

ଜାନୁଆରୀ ମାସରେ ଅନୁଷ୍ଠିତ ନିର୍ବାଚନରେ ଅର୍ଜିତ କଂଗ୍ରେସ (ଇ)ର ସାଫଲ୍ୟର ପରିପ୍ରେକ୍ଷିତରେ ବୁର୍ଜୁଆ ପାର୍ଟିଗୁଡ଼ିକ ମଧ୍ୟରେ ଆଉରି ବିଭାଜନ ଦେଖା ଦେଲା । ସ୍ୱାଧୀନ ଭାବେ ରାଜନୈତିକ ସଂଗଠନ ପୁନଃପ୍ରତିଷ୍ଠା କରିବାର ପ୍ରକ୍ରିୟାଟି ଆରମ୍ଭ ହୋଇଗଲା ଏହି ସମୟରେ । ୧୯୭୭ ମସିହାର ପ୍ରାରମ୍ଭରେ ଏହିସବୁ ରାଜନୈତିକ ସଂଗଠନଗୁଡ଼ିକୁ ନେଇ ପ୍ରତିଷ୍ଠିତ ହୋଇଥିଲା ଜନତା ପାର୍ଟି । ଲୋକ ଦଳ ମଧ୍ୟରେ ବିଭାଜନ ଘଟିବା ଦ୍ୱାରା ରାଜ ନାରାୟଣଙ୍କ ନେତୃତ୍ୱରେ ଗୋଟିଏ ଗୋଷ୍ଠୀ ବାହାରି ଆସି ଜନତା ପାର୍ଟି (ଧର୍ମ ନିରପେକ୍ଷ) ପ୍ରତିଷ୍ଠା କରିଥିଲେ ।

# ବୈଦେଶିକ ନୀତି

ପୂର୍ବ ପରି ସତୁରି ଦଶକର ମଧ୍ୟ ଭାଗରେ ଭାରତର ବୈଦେଶିକ ନୀତିରେ ଗଣପ୍ରଜାତନ୍ତ୍ରୀ ବଙ୍ଗଳା ଦେଶ ଓ ପାକିସ୍ତାନ ସହିତ ସଂପର୍କର ସମସ୍ୟାବଳୀ ପ୍ରଧାନ ସ୍ଥାନ ଲାଭ କରିଥିଲା । ଶିଳ୍ପ ଓ କୃଷି ଉତ୍ପାଦନ ପୁନଃସ୍ଥାପନ ଏବଂ ଭାରତକୁ ଆସିଥିବା ଲକ୍ଷ ଲକ୍ଷ ଉଦ୍‌ବାସ୍ତୁମାନଙ୍କୁ ସ୍ୱଦେଶରେ ପୁନର୍ବାସନ ପାଇଁ ଭାରତ ବିଭିନ୍ନ ଜିନିଷପତ୍ର, ଖାଦ୍ୟ ଦ୍ରବ୍ୟ ଆଦି ସରବରାହ ମାଧ୍ୟମରେ ବଙ୍ଗଳା ଦେଶକୁ ଉଲ୍ଲେଖନୀୟ ସାହାଯ୍ୟ ଯୋଗାଇଥିଲା । ଏହିସବୁ ସାହାଯ୍ୟ ମଧ୍ୟରୁ ଅଧିକାଂଶ ଥିଲା ଦାନ ସ୍ୱରୂପ । ତା'ଛଡ଼ା ଭାରତ ବଙ୍ଗଳା ଦେଶକୁ ବିଦେଶୀ ମୁଦ୍ରା ମଧ୍ୟ ଋଣ ଦେଇଥିଲା । ୧୯୭୨ ମସିହାରେ ସ୍ୱାକ୍ଷରିତ ମୈତ୍ରୀ ଚୁକ୍ତି ଓ ବାଣିଜ୍ୟ ଚୁକ୍ତିକୁ ଭିତ୍ତି କରି ଉଭୟ ପକ୍ଷ ସାଫଲ୍ୟର ସହିତ ଅର୍ଥନୈତିକ ଓ ରାଜନୈତିକ ସଂପର୍କ ବିକାଶ କରୁଥିଲେ ।

ଭାରତରୁ ପାକିସ୍ତାନର ସାମରିକ ଓ ବେସାମରିକ ବନ୍ଦୀମାନଙ୍କର ପାକିସ୍ତାନକୁ ପ୍ରତ୍ୟାବର୍ତ୍ତନ, ପାକିସ୍ତାନସ୍ଥ ବଙ୍ଗଳା ଦେଶର ନାଗରିକମାନଙ୍କର ଏବଂ ବଙ୍ଗଳା ଦେଶସ୍ଥ ପାକିସ୍ତାନୀ ନାଗରିକମାନଙ୍କର ପ୍ରତ୍ୟାବର୍ତ୍ତନର ସମସ୍ୟା ସେତେବେଳେ ଭାରତ, ପାକିସ୍ତାନ ଓ ବଙ୍ଗଳା ଦେଶର ସଂପର୍କକୁ ଜଟିଳ କରି ପକାଇଥିଲା । ୧୯୭୩ ମସିହା ଏପ୍ରିଲ ମାସରେ ଭାରତ ବଙ୍ଗଳା ଦେଶ ଦ୍ୱାରା ସ୍ୱାକ୍ଷରିତ ଘୋଷଣାପତ୍ର ଅନୁଯାୟୀ ଉପରୋକ୍ତ ତିନି ଧରଣର ସାମରିକ ଓ ବେସାମରିକ ବ୍ୟକ୍ତିମାନଙ୍କର ଏକକାଳୀନ ପ୍ରତ୍ୟାବର୍ତ୍ତନ କଥା ଥିଲା । ସେଇ ବର୍ଷ ଅଗଷ୍ଟ ମାସରେ ସ୍ୱାକ୍ଷରିତ ଭାରତ-ପାକିସ୍ତାନ ଚୁକ୍ତିରେ ପୂର୍ବୋକ୍ତ ଦଲିଲର ସର୍ତ୍ତାଦି ମଧ୍ୟ ଅନ୍ତର୍ଭୁକ୍ତ ହୋଇଥିଲା । ୧୯୭୪ ମସିହା ଏପ୍ରିଲ ୩୦ ତାରିଖରେ ଭାରତରୁ ପାକିସ୍ତାନର ୯୩ ହଜାର ସାମରିକ ଓ ବେସାମରିକ ବ୍ୟକ୍ତିଙ୍କର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସମାପ୍ତ ହୋଇଥିଲା ।

୧୯୭୪, ଫେବୃଆରୀ ମାସରେ ପାକିସ୍ତାନ ବଙ୍ଗଳା ଦେଶକୁ ସ୍ୱୀକୃତି ଦେଲା ଏବଂ ଭାରତ ପାକିସ୍ତାନ ମଧ୍ୟରେ ସଂପର୍କ ଆଉରି ସ୍ୱାଭାବିକ ହୋଇ ଉଠିଲା । ଏହି ବର୍ଷ ଏପ୍ରିଲ ମାସରେ ଦିଲ୍ଲୀରେ ଭାରତର ଉଦ୍ୟୋଗରେ ଆୟୋଜିତ ୩ଟି ଦେଶର ପରରାଷ୍ଟ୍ର ମନ୍ତ୍ରୀମାନଙ୍କ ବୈଠକରେ ସ୍ୱାକ୍ଷରିତ ଚୁକ୍ତିରେ ସ୍ୱାଭାବିକ ସଂପର୍କ ସ୍ଥାପନ ଏବଂ ଉପମହାଦେଶରେ ସୁଦୃଢ଼ ଶାନ୍ତି ସ୍ଥାପନର ପଥ ନିର୍ଦ୍ଧାରଣ କରାଯାଇଥିଲା । ୧୯୭୪, ସେପ୍‌ଟେମ୍ବର ମାସରେ ଇସ୍‌ଲମାବାଦରେ ଭାରତ ଓ ପାକିସ୍ତାନ ମଧ୍ୟରେ ଏକ ଆଳାପ ଆଲୋଚନା ଫଳରେ ସେଇ ବର୍ଷ ଅକ୍ଟୋବର ୧୫ ତାରିଖ ପରେ ଦୁଇ ଦେଶ ମଧ୍ୟରେ ଡାକ, ତାର ଓ ଟେଲିଗ୍ରାଫ୍ ଯୋଗାଯୋଗ ପୁନଃସ୍ଥାପିତ ହୋଇଥିଲା । ଏହା ପରେ ଭାରତ ଓ ପାକିସ୍ତାନର ନାଗରିକମାନେ ଉଭୟ ଦେଶ ମଧ୍ୟକୁ ଯାତାୟତ ଆରମ୍ଭ କରିଥିଲେ । ୧୯୬୫ ମସିହାରେ ଦୁଇ ଦେଶ ମଧ୍ୟରେ ଯୁଦ୍ଧ ଫଳରେ ପ୍ରବର୍ତ୍ତିତ ବାଣିଜ୍ୟ ସଂକ୍ରାନ୍ତ ନିଷେଧାଜ୍ଞାଟିକୁ ୧୯୭୪, ଡିସେମ୍ବର ମାସରେ ବାତିଲ କରି ଦିଆଗଲା । ଅବଶେଷରେ, ୧୯୭୬, ମେ ମାସରେ ଭାରତ ଓ ପାକିସ୍ତାନ କୂଟନୈତିକ ସଂପର୍କ ପୁନଃସ୍ଥାପନ କରିଥିଲେ । ଦୁଇ ଦେଶ ମଧ୍ୟରେ ବିମାନ, ରେଳ ଓ ମୋଟର ଚଳାଚଳ ପାଇଁ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ୧୯୭୬, ଜୁଲାଇ ମାସ ଉଭୟ ଦେଶ ମଧ୍ୟରେ ରାଷ୍ଟ୍ରଦୂତ ବିନିମୟ ହୋଇଥିଲା ।

କିନ୍ତୁ ୧୯୭୫ ମସିହାରେ ବଙ୍ଗଳା ଦେଶରେ ଏବଂ ୧୯୭୭ ମସିହାରେ ପାକିସ୍ତାନରେ ସାମରିକ ଅଭ୍ୟୁତ୍‌ଥାନ ପରେ ପଶ୍ଚିମ ଓ ପୂର୍ବର ପ୍ରଧାନ ପ୍ରତିବେଶୀ ସହିତ ଭାରତର ସଂପର୍କ ବିକାଶ ପଥରେ ଜଟିଳତା ଦେଖାଦେଲା ।

ପାକିସ୍ତାନ, ବଙ୍ଗଳା ଦେଶ ବ୍ୟତୀତ ଭାରତ ଅନ୍ୟାନ୍ୟ ପ୍ରତିବେଶୀ ଏସୀୟ ରାଷ୍ଟ୍ରମାନଙ୍କ ସହିତ ତା'ର ସଂପର୍କକୁ ଦୃଢ଼ କରିବା ପାଇଁ ଉଦ୍ୟମ କରିଥିଲା । ୧୯୭୩ ମସିହାରେ ଉଚ୍ଚତମ ପର୍ଯ୍ୟାୟରେ ନେପାଳ ଓ ଶ୍ରୀଲଙ୍କା ସହିତ ଯାତ୍ରା ବିନିମୟ ଘଟିଥିଲା । ୧୯୭୪, ଜାନୁଆରୀ ମାସରେ ଶ୍ରୀଲଙ୍କା ବାସୀ ଭାରତୀୟ ବଂଶୋଦ୍‌ଭୂତ ଦେଢ଼ ଲକ୍ଷ ଲୋକଙ୍କର ନାଗରିକତ୍ୱ ସଂପର୍କରେ ଏକ ଚୁକ୍ତି ସଂପାଦିତ ହୋଇଥିଲା । ଏମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଭାରତର ଏବଂ ଅନ୍ୟ ଅର୍ଦ୍ଧେକ ଶ୍ରୀଲଙ୍କାର ନାଗରିକତ୍ୱ ପାଇଥିଲେ । ସେଇ ବର୍ଷ ବଙ୍ଗଳା ଦେଶ ଓ ବର୍ମା ସହିତ ଜଳସୀମା ଏବଂ ଇଣ୍ଡୋନେସିଆ ଓ ଶ୍ରୀଲଙ୍କା ସହିତ ସମୁଦ୍ର ସୀମା ମଧ୍ୟ ନିର୍ଦ୍ଧାରିତ ହୋଇଥିଲା ।

୧୯୬୨ ମସିହାର ଭାରତ-ଚୀନ୍ ସଂଘର୍ଷରୁ ଜାତ ଦୁଇ ଦେଶର ସଂପର୍କରେ ଉତ୍ତେଜନା ଅବ୍ୟାହତ ରହିଥିଲା । ଭାରତ ଏହି ସଂପର୍କକୁ ସାମାନ୍ୟ ଉନ୍ନତ କରି ପାରି ନଥିଲା । ଭାରତ-ଚୀନ୍ ସୀମାନ୍ତ ନିକଟର ଚୀନା ଘାଟିଗୁଡ଼ିକର ଅବସ୍ଥିତି ଦୁଇ ଦେଶ ମଧ୍ୟରେ ସଂପର୍କକୁ ସ୍ୱାଭାବିକ କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଏହା ସୁବିଦିତ ଯେ, ନାଗାଲାଣ୍ଡ ଓ ଉତ୍ତର-ପୂର୍ବ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସକ୍ରିୟ ବିଦ୍ରୋହୀମାନଙ୍କୁ ଏହିସବୁ ଘାଟିରେ ତାଲିମ୍ ଦେବା ସଙ୍ଗେ ସଙ୍ଗେ ଅସ୍ତ୍ରସଜ୍ଜିତ କରାଯାଇଥିଲା । ୧୯୭୬, ଏପ୍ରିଲ ମାସରେ ରାଷ୍ଟ୍ରଦୂତ ପର୍ଯ୍ୟାୟରେ ଦୁଇ ଦେଶ ମଧ୍ୟରେ କୂଟନୈତିକ ସଂପର୍କର ପୁନଃସ୍ଥାପନର ସିଦ୍ଧାନ୍ତ ଗୃହୀତ ହେଲେ ମଧ୍ୟ ମୋଟ ଉପରେ ଭାରତ-ଚୀନ୍ ସଂପର୍କ କ୍ଷେତ୍ରରେ କୌଣସି ମୌଳିକ ସଂପର୍କ ଘଟି ନଥିଲା ।

ସତୁରି ଦଶକରେ ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ପୂର୍ବ ଭଳି ଭାରତ ସାମରିକ ମେଣ୍ଟ ବହିର୍ଭୂତ ଦେଶଗୁଡ଼ିକ ମଧ୍ୟରେ ଅନ୍ୟତମ ପ୍ରଧାନ ସ୍ଥାନ ଗ୍ରହଣ କରିଥିଲା । ଭାରତର କୂଟନୀତି ଥିଲା ଔପନିବେଶିକତା, ନବ-ଔପନିବେଶିକତା, ବର୍ଣ୍ଣ ବୈଷମ୍ୟ, ବର୍ଣ୍ଣବିଦ୍ୱେଷ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ସକ୍ରିୟ "ନେହରୁ ଧାରାର" ଅନୁସାରୀ । ଭିଏତ୍‌ନାମ, ଦକ୍ଷିଣ ଆଫ୍ରିକାର ଜନସାଧାରଣ, ଇସ୍ରାଇଏଲୀ ଆକ୍ରମଣର ଶିକାର ସ୍ୱରୂପ ଆରବ ଦେଶମାନଙ୍କ ସପକ୍ଷରେ ଭାରତ ଛିଡ଼ା ହୋଇଥିଲା ।

ସକ୍ରିୟ ନିରପେକ୍ଷତାର ଐତିହ୍ୟମୂଳକ ନୀତି ଅନୁସରଣ କରିଆରେ ଭାରତ ଆନ୍ତର୍ଜାତିକ ଉତ୍ତେଜନା ପ୍ରଶମନ, ଦୀର୍ଘ ସ୍ଥାୟୀ ଶାନ୍ତି ଏବଂ ସାଧାରଣ ନିରସ୍ତ୍ରୀକରଣକୁ ସମର୍ଥନ କରିଥିଲା । ତୃତୀୟ ବିଶ୍ୱର ଦେଶଗୁଡ଼ିକର ଅର୍ଥନୈତିକ ଓ ସାମାଜିକ ବିକାଶ, ଉନ୍ନତ ଓ ଉନ୍ନୟନଶୀଳ ଦେଶମାନଙ୍କ ମଧ୍ୟରେ ବାଣିଜ୍ୟିକ-ଅର୍ଥନୈତିକ ସଂପର୍କ, ନୂତନ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥା ପ୍ରତିଷ୍ଠା ଆଦି ପ୍ରଶ୍ନାବଳୀ ଆଲୋଚନା ସମୟରେ ଆନ୍ତର୍ଜାତିକ ବୈଠକରେ, ସର୍ବପ୍ରଥମ ଜାତି ସଂଘ ଓ ତା'ର ବିଶେଷ ପ୍ରତିଷ୍ଠାନଗୁଡ଼ିକରେ ଭାରତ ସୁସ୍ପଷ୍ଟ ମତାମତ ବ୍ୟକ୍ତ କରିଥିଲା । ଆଫ୍ରିକା ଏବଂ ଏସିଆ ମହାଦେଶର ବିଭିନ୍ନ ଦେଶ ମଧ୍ୟରେ ଅର୍ଥନୈତିକ ଓ ବାଣିଜ୍ୟିକ ଯୋଗସୂତ୍ରକୁ ବିକଶିତ କରିବାକୁ ଏହା ଗ୍ରହିଥିଲା । ଏହି ନୀତି ଅନୁସରଣ ଫଳରେ ୧୯୭୩-୧୯୭୪ରେ ଭାରତ ଏବଂ ଇରାନ୍ ମଧ୍ୟରେ ବାଣିଜ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅଭିବୃଦ୍ଧି ଘଟିଥିଲା । ଏହି ସମୟରେ ଇରାନ୍ ଭାରତକୁ ଏକ

ବିଶେଷ ଋଣ ପ୍ରଦାନ କରି ଭାରତକୁ ତା'ର ଅଶୋଧିତ ତୈଳ ରପ୍ତାନି ବହୁ ପରିମାଣରେ ବୃଦ୍ଧି କରି ଦେଇଥିଲା । ଉଭୟ ଦେଶର ଉଚ୍ଚସ୍ତରୀୟ ନେତୃବୃନ୍ଦ ଉଭୟ ଦେଶ ଗସ୍ତ କରିଥିଲେ ।

ସକ୍ରିୟ ନିରପେକ୍ଷତାର ନୀତି ଅନୁସରଣ କରି ଭାରତ ସାମରିକ ମେଣ୍ଟ ନିରପେକ୍ଷ ଦେଶଗୁଡ଼ିକର ଆନ୍ଦୋଳନର ଅଂଶୀଦାର ହୋଇଥିଲା । ଇନ୍ଦିରା ଗାନ୍ଧୀ ଆଲଜିଆର୍ସରେ (୧୯୭୩) ଓ କଲମ୍ବୋରେ (୧୯୭୬) ସାମରିକ ମେଣ୍ଟ ନିରପେକ୍ଷ ଦେଶମାନଙ୍କର ସମ୍ମିଳନୀରେ ଯୋଗ ଦେଇଥିଲେ । ଉନ୍ନୟନଶୀଳ ଦେଶମାନଙ୍କର ସମ୍ବାଦ ମାଧ୍ୟମ ଉପରେ ପାଶ୍ଚାତ୍ୟର ପ୍ରଭାବକୁ ହ୍ରାସ କରିବା ଉଦ୍ଦେଶ୍ୟରେ ସମ୍ବାଦ ପ୍ରତିଷ୍ଠାନ ଗଠନ ପାଇଁ ୧୯୭୬ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରେ ନିରପେକ୍ଷ ଦେଶମାନଙ୍କର ମନ୍ତ୍ରୀମାନଙ୍କର ଏକ ସମ୍ମିଳନୀ ଆହୂତ ହୋଇଥିଲା ।

ଭାରତ ସରକାର ଓ ସର୍ବସ୍ତରର ସାଧାରଣ ଲୋକେ ଭାରତ ମହାସାଗରରେ ଦିଏଗୋ-ଗାର୍ସିଆ ଦ୍ୱୀପରେ ଆମେରିକା ଯୁକ୍ତ ରାଷ୍ଟ୍ରର ସାମରିକ ଘାଟି ନିର୍ମାଣ ଓ ସଂପ୍ରସାରଣ ବିରୁଦ୍ଧରେ ଦୃଢ଼ ଅଭିମତ ବ୍ୟକ୍ତ କରିଥିଲେ । ଭାରତ ମହାସାଗରକୁ ବିଦେଶୀ ସାମରିକ ଶକ୍ତିର ପ୍ରଭାବମୁକ୍ତ ଶାନ୍ତି ଏଲାକାରେ ପରିଣତ କରିବାର ପକ୍ଷପାତୀ ଥିଲା ଭାରତବର୍ଷ ।

୧୯୭୧ ମସିହାରେ ଭାରତ ଓ ପାକିସ୍ତାନ ମଧ୍ୟରେ ସଂଘର୍ଷ ସମୟରେ ଭାରତ-ଆମେରିକା ଯୁକ୍ତ ରାଷ୍ଟ୍ର ସଂପର୍କରେ ଯେଉଁ ଅବନତି ଘଟିଥିଲା ଦିଏଗୋ-ଗାର୍ସିଆ ସମସ୍ୟା ହେତୁ ତାହା ଜଟିଳତର ହୋଇ ଉଠିଥିଲା । ତା ସତ୍ତ୍ୱେ ୧୯୭୩ ମସିହାରୁ ଉଭୟ ପକ୍ଷର ପାରସ୍ପରିକ ସଂପର୍କ ଉନ୍ନତି କରିବାର ପ୍ରୟାସ ଅବ୍ୟାହତ ରହିଥିଲା । ଭାରତକୁ ପ୍ରଦତ୍ତ ଆମେରିକା ଯୁକ୍ତ ରାଷ୍ଟ୍ରର ଅର୍ଥନୈତିକ ସାହାଯ୍ୟ କ୍ରମଶଃ ପୁନର୍ବାର ଆରମ୍ଭ ହୋଇଥିଲା । ସତୁରି ଦଶକର ବର୍ଷମାନଙ୍କରେ ଦିଲ୍ଲୀସ୍ଥ ଆମେରିକା ଦୂତାବାସରେ ସଞ୍ଚିତ ବିପୁଳ ଅର୍ଥ ସଂକ୍ରାନ୍ତ ସମସ୍ୟାଟିର ସମାଧାନ ଏକ ଉଲ୍ଲେଖଯୋଗ୍ୟ ଘଟଣା । ୨୨୫୦ କୋଟି ଟଙ୍କାର ଏହି ବିରାଟ ଅର୍ଥ ଭାରତକୁ ଆମେରିକା ଯୁକ୍ତ ରାଷ୍ଟ୍ରର ଖାଦ୍ୟ ଦ୍ରବ୍ୟ ପ୍ରେରଣ ଫଳରେ ଜମା ହୋଇଥିଲା । (ଚୁକ୍ତି ଫଳରେ ଅର୍ଥର ଦୁଇ ତୃତୀୟାଂଶ ବ୍ୟୟ କରିବାର ଅଧିକାର ଭାରତକୁ ଦିଆଯାଇଥିଲା, ୫୦୦ କୋଟି ଟଙ୍କା ଆମେରିକା ଯୁକ୍ତ ରାଷ୍ଟ୍ର ହାତରେ ରହିଥିଲା ଏବଂ ବାକି ଅଂଶ ଭାରତୀୟ ପକ୍ଷ ବିଦେଶୀ ମୁଦ୍ରାରେ ପରିଶୋଧ କରିଥିଲେ ।) ୧୯୭୪, ଅକ୍ଟୋବର ମାସରେ ଭାରତ ଗସ୍ତରେ ଆସିଥିବା ବୈଦେଶିକ ସଚିବ ହେନ୍‌ରି କିସିଞ୍ଜର ଅର୍ଥନୀତି, ବିଜ୍ଞାନ ଓ କାରିଗରି ସହଯୋଗିତା ପାଇଁ ଏକ ଯୁକ୍ତ କମିଶନ ଗଠନର ଚୁକ୍ତି ସ୍ୱାକ୍ଷର କରି ଯାଇଥିଲେ । ୧୯୭୩-୧୯୭୭ ମସିହାରେ ଭାରତ ଆମେରିକା ଯୁକ୍ତ ରାଷ୍ଟ୍ର ମଧ୍ୟରେ ସଂପର୍କର ଉନ୍ନତି ସତ୍ତ୍ୱେ ତାହା ଆଉ ପଚାଶ ଓ ଷାଠିଏ ଦଶକର ପ୍ରଥମାର୍ଦ୍ଧର ମାନରେ ପହଞ୍ଚି ପାରି ନଥିଲା ।

ଆମେରିକା ଯୁକ୍ତ ରାଷ୍ଟ୍ର ସମେତ ଅନ୍ୟାନ୍ୟ ପାଶ୍ଚାତ୍ୟ ପୁଞ୍ଜିବାଦୀ ଦେଶ ସହିତ ଭାରତର ବାଣିଜ୍ୟିକ-ଅର୍ଥନୈତିକ ସଂପର୍କର ବିକାଶ ଏବଂ ଅର୍ଥନୈତିକ ଓ ଆର୍ଥିକ ସାହାଯ୍ୟ ଲାଭ ଉପରେ ନିର୍ଭରଶୀଳ ଥିଲା । ୧୯୭୪ ମସିହାରୁ ଭାରତ "ଭାରତ ପାଇଁ ସାହାଯ୍ୟ" ନାମକ ପୁଞ୍ଜିପତିମାନଙ୍କ ସଂସ୍ଥା ନିକଟରୁ ନୂଆ ଦୀର୍ଘ ମିଆଦୀ ଋଣ ପାଇଥିଲା । ସତୁରି ଦଶକର ମଧ୍ୟଭାଗ ବେଳକୁ ପୁଞ୍ଜିବାଦୀ ଦୁନିଆରେ ଶକ୍ତି ଏବଂ ମୁଦ୍ରା ସଂକଟ ଦେଖା ଦେଲା । ଏହି ପୃଷ୍ଠପଟରେ ଉନ୍ନତ ପୁଞ୍ଜିବାଦୀ ଦେଶଗୁଡ଼ିକ ସହିତ ଭାରତର ବିରୋଧ ତୀବ୍ର ହେବାକୁ ଲାଗିଲା ଏବଂ ଭାରତର ଅର୍ଥନୀତିରେ ପାଶ୍ଚାତ୍ୟ ଦେଶସମୂହ ଓ ଜାପାନ୍‌ର ବହୁଜାତିକ କର୍ପୋରେଶନସମୂହ ଅନୁପ୍ରବେଶ କରିବାକୁ ସଚେଷ୍ଟ

ହୋଇ ଉଠିଥିଲେ । ତା'ଛଡ଼ା ଭାରତୀୟ ବଜାରକୁ ଦଖଲ କରିବା ପାଇଁ ପଶ୍ଚିମ ୟୁରୋପୀୟ ଓ ଆମେରିକା ଯୁକ୍ତ ରାଷ୍ଟ୍ରର ପ୍ରତିଦ୍ୱନ୍ଦ୍ୱୀମାନଙ୍କ ସହିତ ଜାପାନ୍‌ର ବିରୋଧ ତୀବ୍ର ହୋଇ ଉଠିଥିଲା ।

୧୯୭୫ ମସିହାର ପ୍ରାକ୍‌କାଳରେ ପର୍ତ୍ତୁଗାଲ ସହିତ କୂଟନୈତିକ ସଂପର୍କ ପୁନଃସ୍ଥାପନ ଥିଲା ପଶ୍ଚିମ ୟୁରୋପୀୟ ଦେଶମାନଙ୍କ ସଙ୍ଗେ ଭାରତର ସଂପର୍କ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଘଟଣା । ୧୯୭୫, ଜୁନ୍ ମାସରେ ଲିସ୍‌ବନ୍‌ରେ ସଂପାଦିତ ଚୁକ୍ତି ଅନୁଯାୟୀ ପର୍ତ୍ତୁଗାଲ ଗୋଆ ସମେତ ଭାରତରେ ଅନ୍ୟାନ୍ୟ ପୂର୍ବତନ ପର୍ତ୍ତୁଗୀଜ୍ ଉପନିବେଶ ଉପରେ ଭାରତର ସାର୍ବଭୌମତ୍ୱକୁ ସ୍ୱୀକାର କରି ନେଇଥିଲେ ।

ସତୁରି ଦଶକର ପ୍ରଥମାର୍ଦ୍ଧର ଓ ମଧ୍ୟ ଭାଗରେ ପାଶ୍ଚାତ୍ୟ ସହିତ ଭାରତର ଅର୍ଥନୈତିକ ଓ ରାଜନୈତିକ ସଂପର୍କ କ୍ଷେତ୍ରରେ ଜଟିଳତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସମାଜବାଦୀ ଦେଶମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସହଯୋଗିତାର ବୃଦ୍ଧି ଓ ବିକାଶ ଘଟିଥିଲା । ସେତେବେଳେ ବିଶ୍ୱ ସମାଜବାଦୀ ଦେଶ ପୁଞ୍ଜର ଦେଶମାନଙ୍କ ସହିତ ବାଣିଜ୍ୟିକ ବିନିମୟ ସହ ଅର୍ଥନୈତିକ, ବୈଜ୍ଞାନିକ, କାରିଗରି ଓ ସାଂସ୍କୃତିକ ସହଯୋଗିତା ବହୁ ଗୁଣ ବୃଦ୍ଧି ପାଇଥିଲା । ତା'ଛଡ଼ା ରାଜନୈତିକ ଯୋଗାଯୋଗ ମଧ୍ୟ ବିସ୍ତୃତ ହୋଇଥିଲା – ସମସ୍ତ ସମାଜବାଦୀ ଦେଶ ସାଥିରେ ସରକାରୀ ନେତୃବୃନ୍ଦ ଓ ପରରାଷ୍ଟ୍ର ମନ୍ତ୍ରୀ ପର୍ଯ୍ୟାୟରେ ଗସ୍ତ ବିନିମୟ ହୋଇଥିଲା ।

୧୯୭୧ ମସିହାରେ ସ୍ୱାକ୍ଷରିତ ଶାନ୍ତି, ମୈତ୍ରୀ ଓ ସହଯୋଗିତାର ଚୁକ୍ତିକୁ ଭିତ୍ତି କରି ବିକଶିତ ସୋଭିଏତ୍-ଭାରତୀୟ ସହଯୋଗିତା ସେଇସବୁ ବର୍ଷରେ ଭାରତର ରାଜନୈତିକ, ଅର୍ଥନୈତିକ ଓ ସାମରିକ ସ୍ୱାଧୀନତାକୁ ସୁଦୃଢ଼ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା ।

୧୯୭୩, ନଭେମ୍ବର ମାସରେ ସୋଭିଏତ୍ ୟୁନିଅନ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ଏଲ. ଆଇ. ବ୍ରେଜ୍‌ନେଭ୍‌ଙ୍କ ଭାରତ ଗସ୍ତ ସୋଭିଏତ୍-ଭାରତ ମୈତ୍ରୀପୂର୍ଣ୍ଣ ସଂପର୍କ ପଥରେ ଏକ ଐତିହାସିକ ଘଟଣା ରୂପେ ଚିହ୍ନିତ । ଦିଲ୍ଲୀରେ ରହଣି ଓ ଉଚ୍ଚ ପଦସ୍ଥ ସରକାରୀ ନେତାମାନଙ୍କ ସହିତ ତାଙ୍କର ଆଳାପ ଆଲୋଚନା ସମୟରେ ସ୍ୱାକ୍ଷରିତ ମିଳିତ ଘୋଷଣାପତ୍ରରେ ଉତ୍ତେଜନା ପ୍ରଶମନ ଏବଂ ଆନ୍ତର୍ଜାତିକ ପରିବେଶର ସୁସ୍ଥିରତା ପାଇଁ ସୋଭିଏତ୍ ୟୁନିଅନ୍ ଓ ଭାରତ ଭବିଷ୍ୟତରେ ସେମାନଙ୍କ ପ୍ରଚେଷ୍ଟାକୁ ଅବ୍ୟାହତ ରଖିବା ନିମିତ୍ତ ସଂକଳ୍ପ ବ୍ୟକ୍ତ କରିଥିଲେ । ଅସ୍ତ୍ରପ୍ରତିଯୋଗିତା ବନ୍ଦ, ସାଧାରଣ ଓ ସଂପୂର୍ଣ୍ଣ ନିରସ୍ତ୍ରୀକରଣ ପ୍ରଶ୍ନ ଉପରେ ବିଶ୍ୱ ସମ୍ମିଳନୀ ଆହ୍ୱାନ ସମେତ ଅବିଳମ୍ବେ ଔପନିବେଶିକତା ଓ ବର୍ଣ୍ଣବୈଷମ୍ୟର ବିଲୋପ ପାଇଁ ଏଥିରେ ଆହ୍ୱାନ ଦିଆଯାଇଥିଲା । ଏଲ୍.ଆଇ. ବ୍ରେଜ୍‌ନେଭ୍ ସେତେବେଳେ ତାଙ୍କର ଏକ ଭାଷଣରେ ଭାରତର ବୈଦେଶିକ ନୀତିର ଉଚ୍ଚ ମୂଲ୍ୟାୟନ କରିଥିଲେ । ସେ କହିଥିଲେ, "ଭାରତ ହେଉଛି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଉଦ୍ୟୋକ୍ତା ଏବଂ ଏହି ଆନ୍ଦୋଳନର ପ୍ରଗତିଶୀଳ ନୀତିସମୂହର ଅନ୍ୟତମ ରୂପକାର । ଔପନିବେଶିକତା ଓ ବର୍ଣ୍ଣବୈଷମ୍ୟ ସମେତ ସାମ୍ରାଜ୍ୟବାଦୀ ସାମରିକ ମେଣ୍ଟସମୂହର ବିରୋଧିତା, ଜାତୀୟ ମୁକ୍ତି ସଂଗ୍ରାମରତ ଜାତିମାନଙ୍କୁ ସମର୍ଥନ, ଶାନ୍ତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ନୀତିସମୂହ ପ୍ରତି ଆନୁଗତ୍ୟ – ଏହିସବୁ ପାଇଁ ଭାରତର ରାଜନୀତି ଯୁକ୍ତିଯୁକ୍ତ ଭାବେ ଉଚ୍ଚ ଖ୍ୟାତି ଅର୍ଜନ କରିଛି ।" *

---

* ଏଲ୍ .ଆଇ. ବ୍ରେଜ୍‌ନେଭ୍‌ଙ୍କ ଭାରତ ଗସ୍ତ, ମସ୍କୋ, ୧୯୭୩, ପ : ୮୭ ।

ଏହି ଘୋଷଣା ଛଡ଼ା ଏହି ଗସ୍ତ କାଳରେ ଆଉ କେତେକ ଦଲିଲରେ ସ୍ୱାକ୍ଷର କରାଯାଇଥିଲା : ଆଗାମୀ ପନ୍ଦର ବର୍ଷ ପାଇଁ ଆଉରି ଅଧିକ ଅର୍ଥନୈତିକ ଏବଂ ବାଣିଜ୍ୟିକ ସହଯୋଗ ପାଇଁ ଏକ ଚୁକ୍ତି ; ସୋଭିଏତ୍ ରାଷ୍ଟ୍ରୀୟ ଯୋଜନା କମିଟି ଓ ଭାରତୀୟ ଯୋଜନା କମିସନ ମଧ୍ୟରେ ସହଯୋଗ ଉପରେ ଚୁକ୍ତି ଏବଂ ଏକ ବାଣିଜ୍ୟିକ ଚୁକ୍ତି ।

ଲିଓନିଦ୍ ବ୍ରେଜ୍‌ନେଭ୍‌ଙ୍କ ଗସ୍ତ ଏବଂ ତଦ୍‌ଜାତ ଫଳସମୂହ ସୋଭିଏତ୍-ଭାରତୀୟ ଉଚ୍ଚ ସ୍ତରୀୟ ସଂପର୍କ କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ଏହା ଉଭୟ ଦେଶ ମଧ୍ୟରେ ପ୍ରତିଷ୍ଠିତ ପାରମ୍ପରିକ ମୈତ୍ରୀ ଉପରେ ପ୍ରତିଷ୍ଠିତ ଥିଲା ।

ସୋଭିଏତ୍ ୟୁନିଅନ୍‌ର ସହାୟତାରେ ଭିଲାଇ ଏବଂ ବୋକାରୋରେ ନିର୍ମିତ ଧାତବ ପ୍ରକଳ୍ପଗୁଡ଼ିକର ସଂପ୍ରସାରଣ ପାଇଁ ଏବଂ ସୋଭିଏତ୍ ସାହାଯ୍ୟରେ ନୂଆ ଏକ ତୈଳ ବିଶୋଧନାଗାର, ଲୌହେତର ଧାତୁ କାରଖାନା, କୋଇଲା, ଗ୍ୟାସ୍ ଉତ୍ତୋଳନ, ବୈଦ୍ୟୁତିକ ଶକ୍ତି, ଜାହାଜ ନିର୍ମାଣ ଏବଂ ଅନ୍ୟାନ୍ୟ ଉଦ୍ୟୋଗ ସମେତ ଇଲେକଟ୍ରନିକ୍, ମହାକାଶ ଗବେଷଣା ଏବଂ ଶାନ୍ତିପୂର୍ଣ୍ଣ ଉଦ୍ଦେଶ୍ୟରେ ପାରମାଣବିକ ଶକ୍ତିର ବିକାଶ ପାଇଁ ଚୁକ୍ତିରେ ସ୍ୱାକ୍ଷରିତ କରାଯାଇଥିଲା ।

ସୋଭିଏତ୍ ୟୁନିଅନ୍ ଏବଂ ଭାରତ ମଧ୍ୟରେ ବୈଜ୍ଞାନିକ ସହଯୋଗର ବିକାଶ ପାଇଁ ଭାରତର କ୍ରମବର୍ଦ୍ଧମାନ ବୈଜ୍ଞାନିକ ସମ୍ଭଳ ଅନୁକୂଳଜନକ ଅବସ୍ଥା ଯୋଗାଇ ଦେଇଥିଲା । ୧୯୭୪ ମସିହାରେ ଭାରତ ଶାନ୍ତିପୂର୍ଣ୍ଣ ଉଦ୍ଦେଶ୍ୟରେ ଏକ ଭୂଗର୍ଭସ୍ଥ ପାରମାଣବିକ ବିସ୍ଫୋରଣ ଘଟାଇଥିଲା ଏବଂ ୧୯୭୫, ଏପ୍ରିଲ ମାସରେ ପ୍ରଥମ ଭାରତୀୟ କୃତ୍ରିମ ଉପଗ୍ରହ "ଆର୍ଯ୍ୟଭଟ୍ଟ" ମହାକାଶକୁ ଉତ୍‌କ୍ଷିପ୍ତ ହୋଇଥିଲା ସୋଭିଏତ୍ ରକେଟ ସାହାଯ୍ୟରେ । ସୋଭିଏତ୍ ୟୁନିଅନ୍‌ର ବିଜ୍ଞାନ ଆକାଡେମି ଭାରତୀୟ ବୈଜ୍ଞାନିକମାନଙ୍କୁ ଯୋଗାଇ ଦେଇଥିଲା ଚନ୍ଦ୍ର ପୃଷ୍ଠରୁ ସୋଭିଏତ୍ ଗବେଷଣାତ୍ମକ ଯାନ ସାହାଯ୍ୟରେ ଆନୀତ ମୃତ୍ତିକା ।

୧୯୭୪ ଏବଂ ୧୯୭୫ ମସିହାରେ ପ୍ରାକୃତିକ ଏବଂ ସାମାଜିକ ବିଜ୍ଞାନ କ୍ଷେତ୍ରରେ ସୋଭିଏତ୍-ଭାରତୀୟ ସହଯୋଗିତା ଉପରେ ଦୀର୍ଘକାଳୀନ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା ।

୧୯୭୪-୧୯୭୭ ମଧ୍ୟରେ ସୋଭିଏତ୍-ଭାରତୀୟ ସହଯୋଗିତା ଦ୍ରୁତତାର ସହିତ ବୃଦ୍ଧି ପାଇଥିଲା । ୧୯୭୫ ମସିହାରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୫ତମ କଂଗ୍ରେସରେ ଲିଓନିଦ୍ ବ୍ରେଜ୍‌ନେଭ୍ ଭାରତ ପ୍ରତି ସୋଭିଏତ୍ ନୀତି ସଂପର୍କରେ କହିଥିଲେ : "ଆମେ ସେ ମହାନ୍ ଦେଶ ସହିତ ଆମର ବନ୍ଧୁତା ପ୍ରତି ବିଶେଷ ଗୁରୁତ୍ୱ ଅର୍ପଣ କରିଥାଉ ।" *

୧୯୭୦ ଦଶକର ମଧ୍ୟ ଭାଗ ବେଳକୁ ସୋଭିଏତ୍ ୟୁନିଅନ୍ ଭାରତର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ବାଣିଜ୍ୟିକ ଅଂଶୀଦାରରେ ପରିଣତ ହୋଇଥିଲା ।

୧୯୫୩ରୁ ୧୯୭୬ ମଧ୍ୟରେ ଉଭୟ ଦେଶ ଭିତରେ ବାଣିଜ୍ୟିକ ନେଣଦେଣ ୩୦୦ ଗୁଣ ବୃଦ୍ଧି ପାଇଥିଲା, ଏହାର ମୂଲ୍ୟ ଥିଲା ୯ ହଜାର କୋଟି ଟଙ୍କାରୁ ଅଧିକ । ଭିଲାଇ ଏବଂ ବୋକାରୋ ସମେତ ୮୦ଟି ଶିଳ୍ପୋଦ୍ୟୋଗ, ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, ତୈଳ ନିଷ୍କାସନ, ପ୍ରୋସେସିଂ କାରଖାନା, କୋଇଲା

---

* ସୋଭିଏତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟିର ୨୫ତମ କଂଗ୍ରେସର ଦଲିଲଗୁଡ଼ିକ, ମସ୍କୋ, ୧୯୭୬, ପୃ: ୧୪ ।

ଖଣି, ଭାରୀ ମେସିନ୍ ନିର୍ମାଣ ପ୍ରକଳ୍ପ, ଚିକିତ୍ସା ଯନ୍ତ୍ରପାତି ଏବଂ ଔଷଧ ଉତ୍ପାଦନ କାରଖାନା ସୋଭିଏତ୍ ସହାୟତାରେ ନିର୍ମିତ ହୋଇଥିଲା ।

ଶତକଡ଼ା ୮୦ ଭାଗ ଧାତବ ଯନ୍ତ୍ରପାତି, ୬୦ ଭାଗ ଭାରୀ ବିଦ୍ୟୁତ୍ ଯନ୍ତ୍ରପାତି, ୩୦ ଭାଗ ତରଳ ଇସ୍ପାତ, ୨୦ ଭାଗ ବିଦ୍ୟୁତ୍ ଶକ୍ତି, ୫୦ ଭାଗରୁ ଅଧିକ ତୈଳ ଏବଂ ୩୫ ଭାଗ ପେଟ୍ରୋଲିଅମ୍-ରସାୟନ ପଦାର୍ଥ ସୋଭିଏତ୍ ସହାୟତାରେ ନିର୍ମିତ ଶିଳ୍ପ ଉଦ୍ୟୋଗଗୁଡ଼ିକରୁ ଆସିଥାଏ ।

ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ପ୍ରତିଷ୍ଠିତ ଭାରତର ଶିଳ୍ପ ସମାହାର ଗଠନରେ ସୋଭିଏତ୍ ୟୁନିଅନ୍ ଓ ଭାରତ ମଧ୍ୟରେ ଅର୍ଥନୈତିକ ସହଯୋଗ ହେଉଛି ଅନ୍ୟତମ ନିଷ୍ପତ୍ତିମୂଳକ କାରଣ ।

୧୯୭୭ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ସାଧାରଣ ନିର୍ବାଚନର ଫଳ ସ୍ୱରୂପ ଭାରତରେ ଜନତା ପାର୍ଟି କ୍ଷମତାସୀନ ହେଲା । ନୂତନ ଜନତା ପାର୍ଟି ସରକାର ଭାରତର ପାରମ୍ପରିକ ବୈଦେଶିକ ନୀତିକୁ ଅନୁସରଣ କରିବେ ବୋଲି ଘୋଷଣା କରିଥିଲେ । ନୂତନ ବୈଦେଶିକ ମନ୍ତ୍ରୀ ଅଟଳ ବିହାରୀ ବାଜପାଇ ଭାରତ ସ୍ୱାଧୀନତା ପାଇବା ପରେ ୩୦ ବର୍ଷ କାଳ ଧରି ଅନୁସୃତ ବୈଦେଶିକ ନୀତି ଅନୁସରଣ କରିବାକୁ ଅଭିପ୍ରାୟ ପ୍ରଦର୍ଶନ କରିଥିଲେ । ୧୯୭୭ ମସିହା ଶେଷ ଭାଗରେ ମୋରାରଜୀ ଦେଶାଇଙ୍କ ସରକାରଙ୍କ ବୈଦେଶିକ ନୀତି ନିରପେକ୍ଷତା ପ୍ରତି ତା'ର ଆନୁଗତ୍ୟକୁ ଏବଂ ଉଭୟ ନିକଟ ଏବଂ ଦୂର ଦେଶ ସହିତ ସଂପର୍କକୁ ଉନ୍ନତ କରିବାର ଅଭିଳାଷକୁ ପ୍ରମାଣ କରିଥିଲା ।

୧୯୭୭-୧୯୭୯ ମସିହାରେ ମୋରାରଜୀ ଦେଶାଇ ଦୁଇ ଥର ସୋଭିଏତ୍ ୟୁନିଅନ୍ ଗସ୍ତରେ ଆସିଥିଲେ । ୧୯୭୯ ମସିହା ମାର୍ଚ୍ଚ ମାସରେ ସୋଭିଏତ୍ ୟୁନିଅନ୍‌ର ପ୍ରଧାନମନ୍ତ୍ରୀ ଏ.ଏନ୍.କସିଗିନ୍ ଭାରତକୁ ଏକ ସରକାରୀ ଗସ୍ତରେ ଯାଇଥିଲେ । ତାଙ୍କର ଏହି ଗସ୍ତ ବେଳେ ଉଭୟ ଦେଶ ମଧ୍ୟରେ ୧୦-୧୫ ବର୍ଷ ପାଇଁ ଅର୍ଥନୈତିକ, ବାଣିଜ୍ୟିକ, ବୈଜ୍ଞାନିକ ଏବଂ କାରିଗରିଗତ ସହଯୋଗିତାର ଏକ ଦୀର୍ଘକାଳୀନ କର୍ମସୂଚୀ ଓ ଅର୍ଥନୀତି, ବିଜ୍ଞାନ ଓ ସଂସ୍କୃତିର ବିଭିନ୍ନ କ୍ଷେତ୍ରରେ ସହଯୋଗିତା ଉପରେ ଚୁକ୍ତିମାନ ସଂପାଦିତ ହୋଇଥିଲା ।

୧୯୭୯ ଜୁନ୍ ମାସରେ ମୋରାରଜୀ ଦେଶାଇଙ୍କ ମସ୍କୋ ଗସ୍ତ ବେଳେ ଏଲ୍.ଆଇ.ବ୍ରେଜ୍‌ନେଭ୍ ଏବଂ ମୋରାରଜୀ ଦେଶାଇଙ୍କ ଦ୍ୱାରା ସ୍ୱାକ୍ଷରିତ ଘୋଷଣାରେ "ଉଭୟ ଦେଶ ମଧ୍ୟରେ ପରମ୍ପରାଗତ ମୈତ୍ରୀରେ ନୂଆ ଏକ ଉଚ୍ଚତର ସ୍ତର" କଥା କୁହାଯାଇଥିଲା ।

ଭାରତବର୍ଷର ଆଭ୍ୟନ୍ତରୀଣ ପରିସ୍ଥିତିରେ ପରିବର୍ତ୍ତନ ସତ୍ତ୍ୱେ ସୋଭିଏତ୍-ଭାରତୀୟ ସହଯୋଗିତା ବୃଦ୍ଧି ପାଇବାରେ ଲାଗିଲା ।

ଜନତା ପାର୍ଟି ମଧ୍ୟରେ ମତାନୈକ୍ୟ ଏବଂ ଆଭ୍ୟନ୍ତରୀଣ ସଂଘର୍ଷ ଫଳରେ ୧୯୭୯ ମସିହା ଗ୍ରୀଷ୍ମ କାଳରେ ପାର୍ଟି ଭାଗ ଭାଗ ହୋଇଗଲା ଏବଂ ମୋରାରଜୀ ଦେଶାଇଙ୍କ ସରକାର ପଦତ୍ୟାଗ କଲେ । ଏହା ପରେ ଚରଣ ସିଂହଙ୍କ ନେତୃତ୍ୱରେ ନୂଆ ଏକ ସରକାର ଗଠିତ ହେଲା । ଏହି ସରକାର ମୁଖ୍ୟ ଜନତା ପାର୍ଟି ମଧ୍ୟରୁ ଅଲଗା ହୋଇ ଆସିଥିବା ଜନତା ପାର୍ଟି (ପରେ ଲୋକ ଦଳ) ଓ କଂଗ୍ରେସ (ଉ) (ସ୍ୱରଣ ସିଂହ ଓ ଦେବରାଜ ଉରସ୍‌ଙ୍କ ନେତୃତ୍ୱାଧୀନ) ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ପାର୍ଲିଆମେଣ୍ଟରେ ଏହା ସଂଖ୍ୟାଗରିଷ୍ଠତା ହରାଇ ୧୯୮୦, ଜାନୁଆରୀରେ ଅନୁଷ୍ଠିତ ନିର୍ବାଚନ ପର୍ଯ୍ୟନ୍ତ ଅନ୍ତର୍ବର୍ତ୍ତୀକାଳୀନ ସରକାର ରୂପେ କାର୍ଯ୍ୟ ଚଳାଇଥିଲା । ଦେଶରେ ଅର୍ଥନୈତିକ ଅବସ୍ଥାରେ ଅବନତି, ରାଜନୈତିକ ଅସ୍ଥିରତା ଏବଂ ଅନ୍ୟାନ୍ୟ କେତେକ କାରଣ ହେତୁ ଲୋକ ଦଳ

(ଚରଣ ସିଂହଙ୍କ ନେତୃତ୍ୱାଧୀନ), ଜନତା (ଜଗଜ୍ଜୀବନ ରାମଙ୍କ ନେତୃତ୍ୱାଧୀନ) ଏବଂ କଂଗ୍ରେସ (ଉ) ପାର୍ଟିମାନେ ନିର୍ବାଚନରେ ପରାଜିତ ହୋଇଥିଲେ । ଏହିସବୁ ପାର୍ଟି ସ୍ୱାଧୀନ ଭାବେ ନିର୍ବାଚନରେ ଅଂଶଗ୍ରହଣ କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱାଧୀନ କଂଗ୍ରେସ ପାର୍ଲିଆମେଣ୍ଟରେ ସଂଖ୍ୟାଗରିଷ୍ଠତା ଲାଭ କରିଥିଲା ଏବଂ ସେ ସରକାର ଗଠନ କରିଥିଲେ । ସି.ପି.ଆଇ. ଏବଂ ସି.ପି.ଆଇ. (ଏମ୍.) ମିଳିତ ଭାବେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି ବିଶେଷ ଭାବେ କେରଳ ଏବଂ ପଶ୍ଚିମ ବଂଗରେ ସାଫଲ୍ୟ ଅର୍ଜନ କରିଥିଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ପ୍ରକାଶ୍ୟ ବିବୃତିସମୂହରେ ଭାରତ-ସୋଭିଏତ୍ ମୈତ୍ରୀ ଏବଂ ସହଯୋଗିତା ପ୍ରତି ତାଙ୍କର ଆନୁଗତ୍ୟ ଘୋଷଣା କରିଥିଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱାଧୀନ କଂଗ୍ରେସ କ୍ଷମତାକୁ ୧୯୮୦ରେ ଫେରି ଆସିଲା ପରେ ଭାରତର ପରମ୍ପରାଗତ ଭାରତର ସକ୍ରିୟ ନିରପେକ୍ଷ ନୀତି ନୂଆ ପ୍ରୋତ୍ସାହନ ଲାଭ କରିଥିଲା । ୧୯୮୦ର ପ୍ରଥମ ଚାରି ମାସରେ ଇନ୍ଦିରା ଗାନ୍ଧୀଙ୍କ ସରକାରର ବୈଦେଶିକ ନୀତି କ୍ଷେତ୍ରରେ ଉଲ୍ଲେଖନୀୟ କ୍ରିୟାକଳାପ ବିଶ୍ୱ ରାଜନୀତିରେ ଭାରତର ଭୂମିକାକୁ ଅଭିବୃଦ୍ଧି ଏବଂ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନରେ ଏହାର ପ୍ରଭାବକୁ ଶକ୍ତିଶାଳୀ କରିଥିଲା ।

ଜାତୀୟ-ମୁକ୍ତି ଆନ୍ଦୋଳନ ପ୍ରତି ସମର୍ଥନ ଦିଗରେ କ୍ରମାଧିକ ପ୍ରବଣତା ପ୍ରକାଶ ପାଇଥିଲା, ଦୃଷ୍ଟାନ୍ତ ସ୍ୱରୂପ, ପାଲେଷ୍ଟାଇନ୍ ମୁକ୍ତି ସଂଗଠନକୁ ପୂର୍ଣ୍ଣ କୂଟନୈତିକ ଦାନ ମଧ୍ୟରେ । ପାଲେଷ୍ଟାଇନ୍ ମୁକ୍ତି ସଂଗଠନର ନେତା ୟାସିର୍ ଆରାଫାତ୍‌ଙ୍କ ଦିଲ୍ଲୀ ଗସ୍ତ ବେଳେ ପାଲେଷ୍ଟାଇନ୍ ଜନସାଧାରଣଙ୍କ ମୁକ୍ତି ଆନ୍ଦୋଳନ ପ୍ରତି ଭାରତର ସମର୍ଥନ ବିଶେଷ ଭାବେ ଦୃଢ଼ୀଭୂତ ହୋଇଥିଲା । ଜିମ୍ବାୱେ୍‌ର ଜନସାଧାରଣଙ୍କ ଜାତୀୟ-ମୁକ୍ତି ଆନ୍ଦୋଳନର ବିଜୟକୁ ଭାରତ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲା ।

ମଧ୍ୟ ପ୍ରାଚ୍ୟ ସଂକଟରେ ଭାରତବର୍ଷ ପୂର୍ବପରି ଆରବ ଜାତିମାନଙ୍କ ଅବସ୍ଥାନକୁ ସମର୍ଥନ ଦେବା ସାଥେ ସାଥେ ଏହି ଅଞ୍ଚଳ ତଥା ଦକ୍ଷିଣ-ପଶ୍ଚିମ ଏସିଆରେ ସଂଘର୍ଷକୁ ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ କରିବା ପାଇଁ ଦାବି କରିଥିଲା ।

ଚୀନ୍ ଗଣ ପ୍ରଜାତନ୍ତ୍ର ସହିତ ସଂପର୍କକୁ ସ୍ୱାଭାବିକ କରିବା ଦିଗରେ ଭାରତ ମଧ୍ୟ ଆଗ୍ରହ ପ୍ରକାଶ କରିଥିଲା । ଭାରତ ମହାସାଗରରେ ଯୁଦ୍ଧ ଘାଟି ନିର୍ମାଣ ଏବଂ ଅସ୍ତ୍ରଶସ୍ତ୍ର ବୃଦ୍ଧି ବିରୁଦ୍ଧରେ ଭାରତ ମତ ପ୍ରକାଶ କରି ପାକିସ୍ତାନକୁ ଆମେରିକା ଯୁକ୍ତ ରାଷ୍ଟ୍ର ଓ ଚୀନ୍ ତରଫରୁ ଅସ୍ତ୍ରଶସ୍ତ୍ର ଯୋଗାଇବା ଦ୍ୱାରା ଉଦ୍‌ବେଗ ପ୍ରକାଶ କରିଥିଲା । ଏମନ୍ତ ପରିସ୍ଥିତିରେ ମଧ୍ୟ ପ୍ରାଚ୍ୟ ଓ ଦକ୍ଷିଣ-ପୂର୍ବ ଏସିଆ ସମେତ ଅଞ୍ଚଳରେ ଯୁଦ୍ଧୋତ୍ତେଜନା ଲୋପ ପାଇଁ ଦାବି କରିବା ସଙ୍ଗେ ସଙ୍ଗେ ସମସ୍ତ ବିରୋଧର ମୀମାଂସା ଶାନ୍ତିପୂର୍ଣ୍ଣ ଉପାୟରେ କରିବାକୁ, ଭାରତ ମହାସାଗରକୁ ଶାନ୍ତିପୂର୍ଣ୍ଣ ଅଞ୍ଚଳରେ ପରିବର୍ତ୍ତନ କରିବାକୁ ଏବଂ ଉପନିବେଶବାଦ, ବର୍ଣ୍ଣ ବୈଷମ୍ୟବାଦ ଏବଂ ବର୍ଣ୍ଣ ବିଦ୍ୱେଷବାଦର ଲୋପ ପାଇଁ ଭାରତ କହିଥିଲା । ପାରସ୍ପରିକ ଭିତ୍ତିରେ ପ୍ରତିବେଶୀ ରାଷ୍ଟ୍ରମାନଙ୍କ ସହିତ ସଂପର୍କକୁ ଉନ୍ନତ କରିବା ପାଇଁ ପୂର୍ବବର୍ତ୍ତୀ ସମୟରେ ପ୍ରଦର୍ଶିତ ଉଦ୍ୟମକୁ ଇନ୍ଦିରା ଗାନ୍ଧୀଙ୍କ ସରକାର ଅବ୍ୟାହତ ରଖିଥିଲେ ।

ଭିଏତ୍‌ନାମ ସମାଜବାଦୀ ପ୍ରଜାତନ୍ତ୍ରର ପ୍ରଧାନମନ୍ତ୍ରୀ ଫାମ୍ ଭାନ୍ ଦଙ୍ଗ୍‌ଙ୍କ ଦିଲ୍ଲୀ ଗସ୍ତ ଥିଲା ଭାରତର ବୈଦେଶିକ ନୀତି କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଅତୀବ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ

ମଧ୍ୟରେ ଅନୁଷ୍ଠିତ ଏହି ଗସ୍ତ ଭିଏତ୍‌ନାମର ପୁନର୍ନିର୍ମାଣ ଓ ବିକାଶ ପ୍ରତି ଭାରତ ଗଭୀର ଆଗ୍ରହ ପ୍ରକାଶ କରିଥିଲା ।

ସୋଭିଏତ୍-ଭାରତ ସଂପର୍କରାଜିର ସର୍ବୋମୁଖୀ ବିକାଶ ଦିଗରେ ଭାରତର ନୀତିକୁ ଇନ୍ଦିରା ଗାନ୍ଧୀଙ୍କ ସରକାର ପୁନର୍ବାର ଘୋଷଣା କରିଥିଲେ । ଏହା ଆଉରି ସୁଦୃଢ଼ ହୋଇଥିଲା ୧୯୮୦, ଫେବୃଆରୀ ମାସରେ ସୋଭିଏତ୍ ୟୁନିଅନ୍‌ର ବୈଦେଶିକ ମନ୍ତ୍ରୀ ଆନ୍ଦ୍ରେଇ ଗ୍ରୋମିକୋଙ୍କ ଭାରତ ଗସ୍ତ ଓ ଭାରତର ବୈଦେଶିକ ମନ୍ତ୍ରୀ, ପି.ଭି.ନରସିଂହରାଓଙ୍କ ୧୯୮୦, ଜୁନ୍‌ରେ ମସ୍କୋ ଗସ୍ତ ଫଳରେ । ଉଭୟ ଦେଶ ସୋଭିଏତ୍-ଭାରତ ସହଯୋଗିତାର ୨୫ତମ ବାର୍ଷିକୀକୁ ବ୍ୟାପକ ଭାବେ ପାଳନ କରିଥିଲେ । ଏହି ଅବସରରେ ସୋଭିଏତ୍ ସରକାରଙ୍କର ଏକ ପ୍ରତିନିଧିଦଳ ଭାରତ ଗସ୍ତରେ ଯାଇଥିଲେ । ମସ୍କୋ ଏବଂ ଦିଲ୍ଲୀରେ ସଭା ସମିତିମାନ ଅନୁଷ୍ଠିତ ହୋଇଥିଲା ଏବଂ ବାଣିଜ୍ୟ, ଅର୍ଥନୈତିକ, ବୈଜ୍ଞାନିକ ଏବଂ କାରିଗରିଗତ ସହଯୋଗିତା ଉପରେ ନୂଆ ଚୁକ୍ତିମାନ ସ୍ୱାକ୍ଷରିତ ହୋଇଥିଲା ।

ଏହି ଭାବେ ସୋଭିଏତ୍ ୟୁନିଅନ୍ ଏବଂ ଭାରତ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କର ବିକାଶ ଭାରତର ବୈଦେଶିକ ନୀତିର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ରୂପେ ରହି ଆସିଛି ଏବଂ ଆନ୍ତର୍ଜାତିକ ସଂପର୍କରାଜିର ସ୍ଥିରତା ଏବଂ ବିଶ୍ୱବ୍ୟାପୀ ସ୍ଥାୟୀ ଶାନ୍ତି ଦିଗରେ ଏକ ନିଷ୍ପତ୍ତିମୂଳକ ଶକ୍ତି ହୋଇ ପାରିଛି ।

ଗତ କେଇ ଦଶନ୍ଧି ଧରି ସମଗ୍ର ଆନ୍ତର୍ଜାତିକ ସଂପର୍କରାଜି କ୍ଷେତ୍ରରେ ଭାରତର କ୍ରମାଧିକ ଭୂମିକାରେ ପ୍ରତିଫଳିତ ହୋଇଛି ଫାସିବାଦର ଉଚ୍ଛେଦ, ସାମ୍ରାଜ୍ୟବାଦୀ ଔପନିବେଶିକ ବ୍ୟବସ୍ଥାର ପତନ ଓ ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଅଭ୍ୟୁଦୟ ପରେ ଦୁନିଆରେ ଘଟିଥିବା ବିପୁଳ ପରିବର୍ତ୍ତନ ଏବଂ ଭାରତ ସ୍ୱାଧୀନତା ଲାଭ ପରେ ଜାତୀୟ ପୁନରଭ୍ୟୁଦୟର ପ୍ରକ୍ରିୟା ।

ମାନବଜାତିର ବିକାଶ ପ୍ରତି ଉଲ୍ଲେଖନୀୟ ଅବଦାନ ରଖିଥିବା ଏବଂ ବୈଷୟିକ ତଥା ଆତ୍ମିକ କ୍ଷେତ୍ରରେ ଭାରତୀୟ ସଭ୍ୟତାର ସାର୍ବଜନୀନ ଭାବେ ସ୍ୱୀକୃତ ସାଫଲ୍ୟରାଜି ସୃଷ୍ଟି ହୋଇଥିଲା ବହୁବିଧ ଜାତୀୟ ଓ ସାଂସ୍କୃତିକ ଯୋଗାଯୋଗର ସୁଦୀର୍ଘ ଏବଂ ଲଗାତର ଆନ୍ତଃପ୍ରକ୍ରିୟା ମଧ୍ୟ ଦେଇ । ଭାରତୀୟ ଉପମହାଦେଶରେ ଜାତିଗତ ନୃଗୋଷ୍ଠୀ ସୃଷ୍ଟିର ଅତୀବ ଜଟିଳ ପ୍ରକ୍ରିୟା, ବିଶ୍ୱ ଧର୍ମଗୁଡ଼ିକର ହିନ୍ଦୁ ଧର୍ମ, ବୌଦ୍ଧ ଧର୍ମ, ଇସ୍‌ଲାମ୍ ଏବଂ ଖ୍ରୀଷ୍ଟ ଧର୍ମ ମଧ୍ୟରେ ଯୋଗାଯୋଗ ଏବଂ ଏହିସବୁ ଯୋଗାଯୋଗ ପ୍ରକ୍ରିୟା ମଧ୍ୟରୁ ଜୈନ ଧର୍ମ ଓ ଶିଖ ଧର୍ମର ଆବିର୍ଭାବ, ବାହାରର ସଂସ୍କୃତି ସହିତ ଭାରତୀୟ ସଭ୍ୟତାର ପୁରାତନ ଏବଂ ବ୍ୟାପକ ସଂପର୍କ – ଏସବୁ ଏବଂ ଅନ୍ୟାନ୍ୟ କାରଣଗୁଡ଼ିକ ଭାରତର ଚିରାୟତ ଏବଂ ଆଧୁନିକ ସଂସ୍କୃତିର ଅକଳନ ସଂପଦ ଏବଂ ବିବିଧତାକୁ ଶେଷକୁ ନିର୍ଦ୍ଧାରିତ କରିଛି ।

ଦେଶର ସାଂସ୍କୃତିକ ଐକ୍ୟରେ ପ୍ରତିଫଳିତ ହୋଇଛି ତା'ର ଅର୍ଥନୈତିକ, ସାମାଜିକ ଏବଂ ରାଜନୈତିକ ଐକ୍ୟ । ବିଭିନ୍ନ ଭାରତୀୟ ଜାତିମାନଙ୍କୁ ନେଇ ଶ୍ରେଣୀସଂପନ୍ନ ସମାଜ ଗଠନ ଓ ଆଉରି ବିକାଶ ବିଶ୍ୱ ଐତିହାସିକ ପ୍ରକ୍ରିୟାର ସାଧାରଣ ନିୟମାବଦ୍ଧତା ଅନୁଯାୟୀ ଘଟିଛି । ଏଥି ସାଥେ ସାଥେ ଭାରତୀୟ ସଭ୍ୟତାର ଚମତ୍କାର ଚରିତ୍ରଟି ନିଜକୁ ପ୍ରତିଫଳିତ କରିଛି, ବିଶେଷ କରି ସାମନ୍ତବାଦୀ ପର୍ଯ୍ୟାୟରେ ଉଭୟ ସଂସ୍କୃତି ଏବଂ ସାମାଜିକ-ଅର୍ଥନୈତିକ ବିକାଶ ମଧ୍ୟରେ ।

ଉପନିବେଶବାଦୀମାନଙ୍କ ଦ୍ୱାରା ଭାରତ ବିଜୟ ଭାରତୀୟ ଇତିହାସର ସ୍ୱାଭାବିକ ଗତିଧାରାକୁ ବିକୃତ କରି ଦେଇଥିଲା । କିନ୍ତୁ ଭାରତୀୟ ଜାତୀୟ-ମୁକ୍ତି ଆନ୍ଦୋଳନ , ଯିଏକି ମହାତ୍ମା ଗାନ୍ଧୀ ଏବଂ ଜବାହାରଲାଲ ନେହରୁଙ୍କ ଭଳି ନେତାଙ୍କୁ ଜନ୍ମ ଦେଇଥିଲା , ପୁଣି ଏହାକୁ ଫେରେଇ ଆଣିଛି ସ୍ୱାଧୀନ ବିକାଶର ପଥକୁ ।

ଅତୀବ ସ୍ୱଳ୍ପ ଏକ ଐତିହାସିକ କାଳ ମଧ୍ୟରେ – ଶତାବ୍ଦୀର ମାତ୍ର ଏକ ତୃତୀୟାଂଶ ସମୟ ମଧ୍ୟରେ ଭାରତ ତା'ର ଅର୍ଥନୈତିକ , ସାମାଜିକ ଏବଂ ସାଂସ୍କୃତିକ ବିକାଶର ବହୁ କ୍ଷେତ୍ରରେ ହୃଦୟଗ୍ରାହୀ ସାଫଲ୍ୟ ଅର୍ଜନ କରି ପାରିଛି । ଭାରତୀୟ ସାଫଲ୍ୟର ଏକ ସାଧାରଣ ସୂଚକ ହେଲା , ଏବେ ଏହା ଶିଳ୍ପ ଉତ୍ପାଦନ ଦୃଷ୍ଟିରୁ ପୃଥିବୀର ପ୍ରଥମ ଦଶଟି ଦେଶ ମଧ୍ୟରେ ସ୍ଥାନ ଲାଭ କରି ପାରିଛି । ଏକ ସଂଘୀୟ ବ୍ୟବସ୍ଥା ମଧ୍ୟରେ ବହୁଜାତିକ ଭାରତୀୟ ଐତିହାସିକ ସତ୍ତାର ଐକ୍ୟର ଦୃଢ଼ୀକରଣ ହେଉଛି ସ୍ୱାଧୀନ ଭାରତର ସାଫଲ୍ୟମଣ୍ଡିତ ବିକାଶର ଭିତ୍ତି ସ୍ୱରୂପ । କିନ୍ତୁ ଅର୍ଜିତ ସାଫଲ୍ୟରାଜି କ୍ରମାଧିକ ଭାବେ ଭାରତୀୟ ଜନସଂଖ୍ୟାର ଅଧିକାଂଶ ଭାଗର – ବିଶେଷ କରି ଗ୍ରାମାଞ୍ଚଳରେ , ଯେଉଁଠି ନିୟୁତ ନିୟୁତ କ୍ଷୁଦ୍ର ଏବଂ ଅତି କ୍ଷୁଦ୍ର ଖାଉଟି ତଥା ଅର୍ଦ୍ଧ ସର୍ବହରା କୃଷକ ଖମାରରେ ନିଯୁକ୍ତ – ଉପସ୍ଥିତ ଅତୀବ ନିମ୍ନମାନର ଭୋଗ ବ୍ୟବହାର ସହିତ ବିରୋଧିତାର ସମ୍ମୁଖୀନ ହେଉଛି ।

ଦେଶର ଆଶୁ ଐତିହାସିକ ଭବିତବ୍ୟ ବିପୁଳ ପରିମାଣରେ ନିର୍ଭର କରୁଛି ବିଂଶ ଶତାବ୍ଦୀର ଅବଶିଷ୍ଟ ଦଶନ୍ଧିଗୁଡ଼ିକରେ ଏହିସବୁ ଏବଂ ଅନ୍ୟାନ୍ୟ ଅର୍ଥନୈତିକ ତଥା ସାମାଜିକ ସମସ୍ୟାବଳୀକୁ ଏହା କେଉଁ ଉପାୟ ଆଉ ପଦ୍ଧତିରେ ସମାଧାନ କରିବ , ତା ଉପରେ ।

# ସ୍ମରଣୀୟ ଘଟଣାବଳୀ

## ଖ୍ରୀଷ୍ଟ ପୂର୍ବ

ଚତୁର୍ଥ ସହସ୍ରାବ୍ଦର ଶେଷ – ଭାରତର ପ୍ରଥମ କୃଷିଭିତ୍ତିକ ସଭ୍ୟତାସମୂହ
ଚତୁର୍ବିଂଶ-ସପ୍ତଦଶ ଶତାବ୍ଦୀ – ସିନ୍ଧୁନଦ ଉପତ୍ୟକାର ସଭ୍ୟତାସମୂହ
ଚତୁର୍ଦ୍ଦଶ-ତ୍ରୟୋଦଶ ଶତାବ୍ଦୀ – ଭାରତରେ ଭାରତୀୟ-ଆର୍ଯ୍ୟ ଉପଜାତିର ଆଗମନ
ଦ୍ୱାଦଶ/ଏକାଦଶ-ସପ୍ତମ ଶତାବ୍ଦୀ – ଚିତ୍ରକରା ଧୂସର ମାଟିପାତ୍ରର ସଭ୍ୟତା
ଦ୍ୱିତୀୟ ସହସ୍ରାବ୍ଦର ଶେଷ-ପ୍ରଥମ ସହସ୍ରାବ୍ଦର ଆରମ୍ଭ – ଋଗ୍‌ବେଦ ରଚନାକାଳ
ସପ୍ତମ-ଚତୁର୍ଥ ଶତାବ୍ଦୀ – ମୁଖ୍ୟ ଉପନିଷଦସମୂହର ରଚନାକାଳ
ଷଷ୍ଠ-ଦ୍ୱିତୀୟ ଶତାବ୍ଦୀ – ଉତ୍ତରାଞ୍ଚଳୀୟ କଳା ରଙ୍ଗ ପାଲିସ୍ ଦିଆ ମାଟିପାତ୍ରର ସଭ୍ୟତା
୫୬୩-୪୮୩ – ବୁଦ୍ଧଚରିତ ରଚନାକାଳ
୪୩୭-୪୧୩ – ହର୍ଯ୍ୟଙ୍କ ରାଜବଂଶ
୪୧୩-୩୪୫ – ଶିଶୁନାଗ ରାଜବଂଶ
୩୪୫-୩୧୭/୧୪ – ନନ୍ଦ ରାଜବଂଶ
୩୨୭-୩୨୫ – ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ
୩୧୭-୧୮୦ – ମୌର୍ଯ୍ୟ ରାଜବଂଶ
୩୧୭-୨୯୩ – ଚନ୍ଦ୍ରଗୁପ୍ତ ମୌର୍ଯ୍ୟ
୨୯୩-୨୬୮ – ବିନ୍ଦୁସାର
୨୬୮-୨୩୨ – ଅଶୋକ
୧୮୦-୬୮ – ଶୁଙ୍ଗ ରାଜବଂଶ
୬୮-୨୨ – କଣ୍ୱ ରାଜବଂଶ
ପ୍ରଥମ ଶତକ – ଶକ୍‌ମାନଙ୍କ ଦ୍ୱାରା ଭାରତ ଆକ୍ରମଣ
ପ୍ରଥମ ସହସ୍ରାବ୍ଦର ଶେଷ – ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ତୃତୀୟ ଶତାବ୍ଦୀ – ସାତବାହନମାନଙ୍କ ରାଜ୍ୟ

## ଖ୍ରୀଷ୍ଟାବ୍ଦ

ପ୍ରଥମ ଶତାବ୍ଦୀ-ତୃତୀୟ ଶତାବ୍ଦୀ – କୁଷାଣ ସାମ୍ରାଜ୍ୟ
ପ୍ରଥମ ଶତାବ୍ଦୀ-ଚତୁର୍ଥ ଶତାବ୍ଦୀର ଶେଷ – ପଶ୍ଚିମ କ୍ଷତ୍ରପମାନଙ୍କ ରାଜ୍ୟ

୨୫୫-ଷଷ୍ଠ ଶତାବ୍ଦୀର ପ୍ରଥମାର୍ଦ୍ଧ – ଭକତକମାନଙ୍କ ରାଜ୍ୟ
ତୃତୀୟ ଶତାବ୍ଦୀ-୮୯୮ – ପଲ୍ଲବ ରାଜ୍ୟ
୩୨୦ – ଗୁପ୍ତ ରାଜବଂଶର ସ୍ଥାପନ
୩୮୦-୪୧୩/୪୧୫ – ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ
୪୫୪ , ୪୯୫ – ହୁନ୍-ଏପ୍ଥାଲାଇଟ୍ ଉପଜାତିମାନଙ୍କର ଦଇ ଥର ଭାରତ ଆକ୍ରମଣ
ପଞ୍ଚ ଶତାବ୍ଦୀ-୭୫୭ – ବାତାପି ଠାରୁ ପଶ୍ଚିମୀ ଚାଲୁକ୍ୟ ରାଜ୍ୟ
୫୯୦-୯୧୦ – ପାଣ୍ଡ୍ୟମାନଙ୍କ ରାଜ୍ୟ
୬୦୬-୬୪୭ – ହର୍ଷବର୍ଦ୍ଧନଙ୍କ ରାଜ୍ୟ
୬୨୪-୧୦୭୦ – ପୂର୍ବାଞ୍ଚଳୀୟ ଚାଲୁକ୍ୟ ରାଜ୍ୟ
୭୧୧ – ସିନ୍ଧୁ ଦେଶରେ ଆରବମାନଙ୍କ ଅନୁପ୍ରବେଶ
୭୫୭-୯୭୩ – ରାଷ୍ଟ୍ରକୂଟମାନଙ୍କ ରାଜ୍ୟ
ଅଷ୍ଟମ ଶତାବ୍ଦୀର ମଧ୍ୟ ଭାଗ-୧୧୪୨ – ପାଳ ବଂଶର ପ୍ରଥମ ରାଜ୍ୟ
ନବମ ଶତାବ୍ଦୀ ମଧ୍ୟ ଭାଗ-୧୩୨୭ – ଚୋଳ ବଂଶର ରାଜ୍ୟ
୯୭୩-୧୧୮୯ – କଲ୍ୟାଣୀ ଠାରୁ ଚାଲୁକ୍ୟ ରାଜ୍ୟ
୧୦୦୧-୧୦୨୬ – ଉତ୍ତର ଭାରତରେ ତୁର୍କୀମାନଙ୍କ ଅନୁପ୍ରବେଶ
୧୦୭୦ – ଚୋଳ ରାଜବଂଶ ସହିତ ପୂର୍ବାଞ୍ଚଳୀୟ ଚାଲୁକ୍ୟ ରାଜବଂଶର ମିଳନ
୧୧୯୧-୧୧୯୨ – ତରାଇନ୍ ଯୁଦ୍ଧ
୧୨୦୬-୧୫୨୬ – ଦିଲ୍ଲୀରେ ସୁଲତାନ୍ ରାଜତ୍ୱ
୧୨୦୬-୧୨୧୧ – କୁତ୍‌ବ ଉଦ୍ଦିନ୍ ଆଇବେକ
୧୨୧୧-୧୨୮୯ – ଗୋଲାମ ରାଜବଂଶ
୧୨୧୧-୧୨୩୫ – ଶାମସ୍ ଉଦ୍ଦିନ୍ ଇଲ୍‌ତୁତ୍‌ମିଶ
୧୨୧୬-୧୩୨୭ – ଦ୍ୱିତୀୟ ପାଣ୍ଡ୍ୟ ରାଜ୍ୟ
୧୨୨୧ – ଭାରତରେ ମଙ୍ଗୋଲ ଆକ୍ରମଣ
୧୨୪୧ – ମଙ୍ଗୋଲମାନଙ୍କ ଦ୍ୱାରା ଲାହୋର ଦଖଲ
୧୨୬୫-୧୨୮୭ – ଗିୟାସ୍ ଉଦ୍ଦିନ୍ ବଲବନ୍
୧୨୯୦-୧୩୨୦ – ଖିଲ୍‌ଜି ରାଜବଂଶ
୧୨୯୦-୧୨୯୬ – ଜାଲାଲ ଉଦ୍ଦିନ୍ ଫିରୁଜ୍
୧୨୯୬-୧୩୧୬ – ଆଲ୍ଲା ଉଦ୍ଦିନ୍
୧୩୦୬ – ଇରାବତୀ ନଦୀର ତୀରରେ ମଙ୍ଗୋଲମାନଙ୍କ ବିରୁଦ୍ଧରେ ଯୁଦ୍ଧ
୧୩୦୭ – ମାଲିକ କାଫୁରଙ୍କ କର୍ତ୍ତୃକ ଦେବଗିରି ଓ ଓୟାରଙ୍ଗଲ ଦଖଲ
୧୩୧୧ – ଦ୍ୱାରସମୁଦ୍ର ଓ ମଦୁରାଇ ଦଖଲ
୧୩୧୬-୧୩୨୦ – କୁତବ ଉଦ୍ଦିନ୍ ମୁବାରକ ଶାହ୍
୧୩୨୦-୧୩୨୫ – ଗିୟାସ୍ ଉଦ୍ଦିନ୍ ତୁଘଲକ

୧୩୨୫-୧୩୫୧ – ମହମ୍ମଦ୍ ଶାହ୍
୧୩୩୦ ଦଶକ-୧୫୬୫ – ବିଜୟନଗର ରାଜ୍ୟ
୧୩୪୭-୧୫୨୭ – ବାହ୍ମନି ରାଜ୍ୟ
୧୩୪୭-୧୩୫୮ – ଆବୁଲ ମୁଜଫ୍ଫର ଆଲ ଉଦ୍ଦିନ୍ ବାହ୍ମନ
୧୩୫୧-୧୩୮୮ – ଫିରୁଜ୍ ତୁଘଲକ
୧୩୯୮ – ତୈମୁରଲଙ୍ଗଙ୍କ ଭାରତ ଅଭିଯାନ
୧୪୧୧-୧୪୪୨ – ପ୍ରଥମ ଆହ୍ମଦ ଶାହ୍
୧୪୧୪-୧୪୫୧ – ସୈୟଦ ସୁଲତାନ୍ ବଂଶ
୧୪୧୯ – ସାରେଙ୍ଗ୍ ବିଦ୍ରୋହ
୧୪୨୧-୧୪୩୪ – ମୁବାରକ ଶାହ୍
୧୪୨୨-୧୪୩୫ – ଆହ୍ମଦ ଶାହ୍ ବାହ୍ମନି
୧୪୪୬-୧୪୮୧ – ମାହ୍ମୁଦ୍ ଗାଓୟାନ୍
୧୪୫୧-୧୫୨୬ – ଲୋଦୀ ରାଜବଂଶ
୧୪୫୧-୧୪୮୯ – ବାହଲୁଲ ଖାଁ
୧୪୫୮-୧୫୧୧ – ପ୍ରଥମ ମାହ୍ମୁଦ୍ ବେଗାର୍ହା
୧୪୮୯-୧୫୧୫ – ସିକନ୍ଦର ଶାହ୍
୧୪୯୮ – ଭାରତରେ ପର୍ତ୍ତୁଗୀଜ୍ମାନଙ୍କ ଅନୁପ୍ରବେଶ
୧୫୦୯-୧୫୨୯ – କୃଷ୍ଣଦେବ ରାୟ
୧୫୧୦ – ପର୍ତ୍ତୁଗୀଜ୍ମାନଙ୍କ ଦ୍ୱାରା ଗୋଆ ଦ୍ୱୀପ ଦଖଲ
୧୫୨୬-୧୫୩୭ – ବାହାଦୁର ଶାହ୍
୧୫୩୫ – ଡିଉରେ ପର୍ତ୍ତୁଗୀଜ୍ମାନଙ୍କ ଦୁର୍ଗ ନିର୍ମାଣ
୧୪୬୯-୧୫୩୯ – ନାନକ , ଶିଖ୍ମାନଙ୍କ ପ୍ରଥମ ଗୁରୁ
୧୫୨୫-୧୫୩୦ – ମହମ୍ମଦ୍ ଜହିରୁଦ୍ଦୀନ୍ ବାବର
୧୫୨୬ – ପାଣିପଥ ଯୁଦ୍ଧ
୧୫୨୬-ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗ – ମୋଗଲ ସାମ୍ରାଜ୍ୟ
୧୫୫୬-୧୬୦୫ – ଆକବର
୧୬୦୫-୧୬୨୭ – ଜାହାଙ୍ଗିର
୧୬୦୮ – ବ୍ରିଟିଶ୍ ଇଷ୍ଟ-ଇଣ୍ଡିଆ କଂପାନିର ସୂତ୍ରପାତ
୧୬୨୭-୧୬୫୮ – ଶାହ୍ ଜାହାନ
୧୬୫୮-୧୭୦୭ – ଆଓରଙ୍ଗଜେବ
୧୬୬୪ – ଫରାସୀ ଇଷ୍ଟ-ଇଣ୍ଡିଆ କଂପାନିର ସୂତ୍ରପାତ
୧୬୬୯ – ଗୋକଲର ଅଭ୍ୟୁତ୍ଥାନ
୧୬୭୪ – ଶିବାଜୀଙ୍କ ରାଜ୍ୟାଭିଷେକ ଓ ସ୍ୱାଧୀନ ମରହଟ୍ଟା ରାଜ୍ୟର ପ୍ରତିଷ୍ଠା

୧୬୮୬ — ଆଓରଙ୍ଗଜେବଙ୍କ ବିଜାପୁର ଓ ଗୋଲ୍‌କୋଣ୍ଡା ଦଖଲ
୧୬୯୦ — ବ୍ରିଟିଶ୍‌ମାନଙ୍କ ଦ୍ୱାରା କଲିକତା ସ୍ଥାପନ
୧୭୩୯ — ନାଦୀର ଶାହ୍‌ଙ୍କ ଦିଲ୍ଲୀ ଦଖଲ
୧୭୪୬-୧୭୬୩ — ଭାରତ ଦଖଲ ପାଇଁ ବ୍ରିଟିଶ୍-ଫରାସୀ ଦ୍ୱନ୍ଦ୍ୱ
୧୭୪୮-୧୭୫୮ — ଆହ୍‌ମଦ ଶାହ୍ ଆବ୍‌ଦାଲୀଙ୍କ ଭାରତ ଅଭିଯାନ
୧୭୫୭, ଜୁନ୍ ୨୩ — ପଲାସୀ ଯୁଦ୍ଧ ଓ ବଙ୍ଗ ବିଜୟ
୧୭୬୧-୧୭୯୯ — ମହୀଶୂର ରାଜ୍ୟ
୧୭୬୧-୧୭୮୨ — ହାଯଦର ଅଲୀ
୧୭୬୪ — ବକ୍‌ସାର ଯୁଦ୍ଧ
୧୭୭୨-୧୮୩୩ — ରାମ ମୋହନ ରାୟ
୧୭୭୩ — ଭାରତ ନିୟନ୍ତ୍ରଣ ଆଇନ୍‌ର ଅନୁମୋଦନ
୧୭୭୪ — ପ୍ରଥମ ଭାରତ ଗଭର୍ଣ୍ଣର-ଜେନେରାଲ ଓ୍ୱାରେନ୍ ହେଷ୍ଟିଂସ୍
୧୭୭୫-୧୭୮୪ — ପ୍ରଥମ ବ୍ରିଟିଶ୍-ମରହଟ୍ଟା ଯୁଦ୍ଧ
୧୭୮୨-୧୭୯୯ — ଟିପୁ ସୁଲତାନ୍
୧୭୬୭ — ପ୍ରଥମ ବ୍ରିଟିଶ୍-ମହୀଶୂର ଯୁଦ୍ଧ
୧୭୮୦-୧୭୮୪ — ଦ୍ୱିତୀୟ ବ୍ରିଟିଶ୍-ମହୀଶୂର ଯୁଦ୍ଧ
୧୭୮୪ — ପିଟ୍‌ଙ୍କ ଆଇନ୍
୧୭୮୬ — ଭାରତର ଗଭର୍ଣ୍ଣର-ଜେନେରାଲ ରୂପେ ଲର୍ଡ କର୍ଣ୍ଣଓ୍ୱାଲିଶ୍‌ଙ୍କ ନିଯୁକ୍ତି
୧୭୯୦-୧୭୯୨ — ତୃତୀୟ ବ୍ରିଟିଶ୍-ମହୀଶୂର ଯୁଦ୍ଧ
୧୭୯୩ — ଚିରସ୍ଥାୟୀ ବନ୍ଦୋବସ୍ତ ସଂପର୍କରେ ଆଇନ୍
୧୭୯୮ — ଭାରତର ଗଭର୍ଣ୍ଣର-ଜେନେରାଲ ରୂପେ ଓୟେଲେସ୍‌ଲିଙ୍କ ନିଯୁକ୍ତି
୧୭୯୯ — ଚତୁର୍ଥ ବ୍ରିଟିଶ୍-ମହୀଶୂର ଯୁଦ୍ଧ
୧୭୯୯-୧୮୩୯ — ପଞ୍ଜାବରେ ରଣଜିତ୍ ସିଂହଙ୍କ ଶିଖ୍ ରାଜ୍ୟ
୧୮୦୩-୧୮୦୫ — ଦ୍ୱିତୀୟ ବ୍ରିଟିଶ୍-ମରହଟ୍ଟା ଯୁଦ୍ଧ
୧୮୦୭ — ଦିଲ୍ଲୀ ଅଞ୍ଚଳରେ କୃଷକମାନଙ୍କ ଅଭ୍ୟୁତ୍‌ଥାନ
୧୮୧୩ — ଭାରତ ନିୟନ୍ତ୍ରଣ ଆଇନ୍
୧୮୧୫ — "ଆତ୍ମୀୟ ସଭା" ପ୍ରତିଷ୍ଠା
୧୮୧୭-୧୮୯୮ — ସୈୟଦ ଆହ୍‌ମଦ ଖାଁ
୧୮୧୭-୧୮୧୯ — ତୃତୀୟ ବ୍ରିଟିଶ୍-ମରହଟ୍ଟା ଯୁଦ୍ଧ
୧୮୨୫-୧୯୧୭ — ଦାଦାଭାଇ ନାରୋଜୀ
୧୮୨୮ — ଭାରତର ଗଭର୍ଣ୍ଣର-ଜେନେରାଲ ଉଇଲିୟାମ ବେଣ୍ଟିଙ୍କ୍‌ଙ୍କ ନିଯୁକ୍ତି
୧୮୨୮ — "ବ୍ରାହ୍ମ ସମାଜ" ପ୍ରତିଷ୍ଠା
୧୮୩୩ — ଭାରତ ନିୟନ୍ତ୍ରଣ ଆଇନ୍

୧୮୩୮-୧୮୯୪ — ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ

୧୮୪୩ — ସିନ୍ଧୁ ଦଖଲ

୧୮୪୫-୧୮୪୬ — ପ୍ରଥମ ବ୍ରିଟିଶ୍-ଶିଖ ଯୁଦ୍ଧ

୧୮୪୮-୧୮୪୯ — ଦ୍ୱିତୀୟ ବ୍ରିଟିଶ୍-ଶିଖ ଯୁଦ୍ଧ ; ବ୍ରିଟିଶ୍‌ମାନଙ୍କର ଅଧୀନରେ ସମଗ୍ର ଭାରତ

୧୮୫୩ — ନାଗପୁର ଓ ବେରାର ଦଖଲ

୧୮୫୪ — ବମ୍ବେରେ ପ୍ରଥମ ବସ୍ତ୍ରକାରଖାନା ନିର୍ମାଣ

୧୮୫୬ — ଅଯୋଧ୍ୟା ଦଖଲ

୧୮୫୬-୧୯୨୦ — ତିଲକ , ବାଳଗଙ୍ଗାଧର

୧୮୫୭-୧୮୫୯ — ମହାଗଣ ଅଭ୍ୟୁତ୍‌ଥାନ

୧୮୫୭ — କଲିକତା , ବମ୍ବେ , ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା

୧୮୫୭ , ୧୧ ମେ — ବିଦ୍ରୋହୀମାନଙ୍କ ଦ୍ୱାରା ଦିଲ୍ଲୀ ଦଖଲ

୧୮୫୭ , ୧୪ ସେପ୍‌ଟେମ୍ବର — ବ୍ରିଟିଶ୍‌ମାନଙ୍କ ଦ୍ୱାରା ଦିଲ୍ଲୀ ଦଖଲ

୧୮୫୮ , ୨ ଅଗଷ୍ଟ — "ଭାରତରେ ସୁଶାସନ ପ୍ରବର୍ତ୍ତନ" ଆଇନ୍

୧୮୫୮ , ୧ ନଭେମ୍ବର — ଇଷ୍ଟ-ଇଣ୍ଡିଆ କଂପାନିର ବିଲୋପ ସାଧନ ; ବ୍ରିଟିଶ୍ ରାଣୀଙ୍କ କର୍ତ୍ତୃକ ଭାରତର ଶାସନଭାର ଗ୍ରହଣର ଘୋଷଣାପତ୍ର

୧୮୫୯ — ଭାରତର ପ୍ରଥମ ପ୍ରଜା ସ୍ୱତ୍ୱ ଆଇନ୍ (ବଙ୍ଗଳା ଭୂମିରାଜସ୍ୱ ଆଇନ୍)

୧୮୫୯-୧୮୬୨ — ନୀଳ ବିଦ୍ରୋହ

୧୮୬୧-୧୯୪୧ — ରବୀନ୍ଦ୍ରନାଥ ଠାକୁର

୧୮୬୧ — ଆହ୍ମଦାବାଦରେ ବସ୍ତ୍ରକାରଖାନା ନିର୍ମାଣ

୧୮୬୨-୧୯୦୨ — ସ୍ୱାମୀ ବିବେକାନନ୍ଦ

୧୮୬୯-୧୯୪୮ — ମୋହନଦାସ କରମଚାନ୍ଦ ଗାନ୍ଧୀ

୧୮୭୦ — ପୁନା ସାର୍ବଜନିକ ସଭା ପ୍ରତିଷ୍ଠା

୧୮୭୨ — ପଞ୍ଜାବରେ ନାମଧାରୀ ବିଦ୍ରୋହ

୧୮୭୨-୧୮୭୩ — ବଙ୍ଗଳା ଜିଲ୍ଲାରେ କୃଷକ ବିଦ୍ରୋହ

୧୮୭୩-୧୮୭୫ — ମହାଜନମାନଙ୍କ ବିରୁଦ୍ଧରେ ମହାରାଷ୍ଟ୍ରର କୃଷକ ଆନ୍ଦୋଳନ

୧୮୭୬ — ଭାରତ ଆସୋସିଏସନ ଗଠନ

୧୮୭୭ , ୧ ଜାନୁଆରୀ — ବ୍ରିଟିଶ୍ ରାଣୀ ଭିକ୍ଟୋରିଆଙ୍କୁ ଭାରତର ମହାରାଣୀ ରୂପେ ଘୋଷଣା

୧୮୭୭ — ନାଗପୁରର ବସ୍ତ୍ରକାରଖାନାରେ ପ୍ରଥମ ଶ୍ରମିକ ଧର୍ମଘଟ

୧୮୭୭ — କଲିକତାରେ ଜାତୀୟ ମୁସଲିମ୍ ଆସୋସିଏସନ ପ୍ରତିଷ୍ଠା

୧୮୭୯ — ବାସୁଦେବ ବଳବନ୍ତ ଫାଡ୍‌କେଙ୍କ (୧୮୪୫-୧୮୮୩) ଔପନିବେଶିକତାବାଦ ବିରୁଦ୍ଧରେ ବିଦ୍ରୋହ

୧୮୭୯-୧୮୮୦ — ରମ୍ପାରେ କୃଷକମାନଙ୍କ ଅଭ୍ୟୁତ୍‌ଥାନ

୧୮୮୧ — ପ୍ରଥମ ଭାରତୀୟ କାରଖାନା ଆଇନ୍

